ଦକ୍ଷିଣ ଭାରତର ବେଶ୍ ଅଜଣା ଅଞ୍ଚଳର ଏକ ସାଧାରଣ ପରିବାରରୁ ଆସିଥିବା ବିଚକ୍ଷଣ ସ୍ୱଶିକ୍ଷିତ ଗଣିତଜ୍ଞ ଶ୍ରୀନିବାସ ରାମାନୁଜନ୍‌ଙ୍କର ଅନତିଦୀର୍ଘ ଜୀବନର ଚିତ୍ତାକର୍ଷକ କାହାଣୀକୁ ଉପସ୍ଥାପିତ କରୁଥିବା 'ଦି ମ୍ୟାନ ହୁ ନିଉଁ ଇନ୍‌ଫିନିଟି' ବହିଟି ସବୁ ଶ୍ରେଣୀର ପାଠକଙ୍କର ଆଦର ପାଇଛି ଏବଂ ପୃଥିବୀର ଅନେକ ଭାଷାରେ ଅନୂଦିତ ହୋଇଛି । ରାମାନୁଜନ୍‌ଙ୍କ ୧୨୫ତମ ଜନ୍ମବାର୍ଷିକୀ ଉପଲକ୍ଷେ ଏବେ ତାହା ବିଭିନ୍ନ ଭାରତୀୟ ଭାଷାରେ ପ୍ରକାଶିତ ହେଉଛି । ଓଡ଼ିଆ ପାଠକମାନଙ୍କୁ ସେହି ବିସ୍ମୟକର ଗଣିତସାଧକଙ୍କ କର୍ମ ଓ ଜୀବନ ସହିତ ପରିଚିତ କରାଇବା ଓ ତାହା ଦ୍ୱାରା ଉଦ୍‌ବୁଦ୍ଧ କରାଇବା ଏହି ଅନୁସୃଜନର ଲକ୍ଷ୍ୟ ।



*ଜାତୀୟ ଜୀବନଚରିତ ମାଳା*

# ଅସୀମସନ୍ଧାନୀ ରାମାନୁଜନ୍

## ବିସ୍ମୟପ୍ରତିଭା ରାମାନୁଜନ୍‌ଙ୍କ ଜୀବନକାହାଣୀ


**ରବର୍ଟ କାନିଗେଲ୍**

ଅନୁବାଦ

**ନିଖିଳ ମୋହନ ପଟ୍ଟନାୟକ**





nbt.india

एकः सूते सकलम्

**ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ**

ରାମାନୁଜନ୍ ମ୍ୟାଥମେଟିକାଲ ସୋସାଇଟି ସହ ଚୁକ୍ତି ଅନୁଯାୟୀ 'The Man Who Knew Infinity : A Life of the Genius Ramanujan'ର ଏକ୍ସକ୍ଲୁସିଭ ପ୍ରକାଶିତ ଓଡ଼ିଆ ଅନୁବାଦ ।

ISBN 978-81-237-7012-3

ପ୍ରଥମ ସଂସ୍କରଣ 2013 (ଶକାବ୍ଦ 1935)

© ରବର୍ଟ କାନିଗେଲ୍, 1991

ଓଡ଼ିଆ ଅନୁବାଦ © ରାମାନୁଜନ୍ ମ୍ୟାଥମେଟିକାଲ୍ ସୋସାଇଟି

Original : The Man Who Knew Infinity :
A Life of the Genius Ramanujan *(English)*

Translation : Aseemasandhani Ramanujan (*Odia*)

₹ 250.00

ନିର୍ଦ୍ଦେଶକ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ
ନେହେରୁ ଭବନ, 5 , ଇନ୍‌ଷ୍ଟିଚ୍ୟୁସନାଲ ଏରିଆ, ଫେଜ୍ – II
ବସନ୍ତକୁଞ୍ଜ, ନୂଆଦିଲ୍ଲୀ – 110070 କର୍ତ୍ତୃକ ପ୍ରକାଶିତ
Website : www.nbtindia.gov.in

# ସୂଚୀପତ୍ର


ମୁଖବନ୍ଧ ix

ପ୍ରାକ୍‌କଥନ 1

**1. ଶୀତଳ ମନ୍ଦିର ବେଢ଼ାରେ (1887–1903) 11**

1. ଦକ୍ଷିଣ ଗଙ୍ଗା 11

2. ସରଙ୍ଗାପାନି ସନ୍ନିଧି ମାର୍ଗ 13

3. ବ୍ରାହ୍ମଣ ବାଳୁତ କାଳ 22

4. ମାପକାଠିର ଉପରେ 24

5. ନାମ୍ମାକାଲ୍‌ର ଦେବୀ 28

**2. ଉଲ୍ଲସିତ ବିଚରଣ (1903–1908) 37**

1. କାର୍‌ଙ୍କ ବହି 37

2. ଦକ୍ଷିଣ ଭାରତର କେମ୍ବ୍ରିଜ 43

3. ପଳାୟନ 46

4. ଆଉ ଏକ ଚେଷ୍ଟା 50

5. ନୋଟ୍ ଖାତା 55

6. ଈଶ୍ୱର ଚିନ୍ତା 63

7. ବହୁତ ହୋଇଗଲା 66

**3. ପୃଷ୍ଠପୋଷକ ଖୋଜା (1908–1913) 69**

1. ଜାନକୀ 69

2. ଦୁଆର ଦୁଆର ବୁଲା 72

3. ମାନ୍ଦ୍ରାଜରେ ଅବସର 79

4. ଜାକବ୍ ବର୍ଣ୍ଣୁଲି ଓ ତାଙ୍କ ସଂଖ୍ୟାରାଜି 83

5. ପୋର୍ଟ ଟ୍ରଷ୍ଟ 90

6. ଇଂରେଜ ଶାସନ 96

7. ଚିଠି 99

**4. ହାର୍ଡି (ଜି. ଏଚ୍. ହାର୍ଡି, 1913 ଆଗର କଥା) 105**

1. ଚିର ଯୌବନ 105
2. ହର୍ସସୁ ଲେନ୍ 108
3. ପଥର ପାଚିରୀ 114
4. ଟ୍ରିନିଟିର ଫେଲୋ 119
5. "ଯାଦୁକରୀ ପବନ" 127
6. ହାର୍ଡି-ଗଣିତ ଦଳ 134

**5. "ପରିଚୟ ଦେବା ପାଇଁ ମୁଁ ଅନୁମତି ମାଗୁଛି ..." (1913–1914) 147**

1. ଚିଠି 147
2. "ଆପଣଙ୍କୁ ମୁଁ ଜଣେ ନୂଆ ସାଥୀ ଭାବରେ ପାଇଲି ..." 160
3. "ରାମାନୁଜନ୍ ପୋଲାଣ୍ଡ ଦେଶର ଭାଷା ଜାଣନ୍ତି କି?" 166
4. ନାମାକ୍କାଲ୍‌ର ସ୍ୱପ୍ନ 170
5. ବନ୍ଦରରେ 179

**6. ବସନ୍ତ ଋତୁ (1914–1916) 183**

1. ଭାରତ ବାହାରେ 183
2. ଏକାଠି 188
3. ଲୁଭେନ୍‌ର ବହ୍ନି 197
4. ଜେଟା ଫଳନର ଶୂନଗୁଡ଼ିକ 199
5. ଏସ୍. ରାମାନୁଜନ୍, ବି.ଏ. 209

**7. ଇଂରେଜ ଶୀତଳତା (1916–1918) 217**

1. ମୁଖ୍ୟ ଟେବୁଲ୍ 217
2. ଇଂଲଣ୍ଡରେ ଜଣେ ଭାରତୀୟ 221
3. ଏକ ଅନନ୍ୟ ଓ ଆନନ୍ଦଦାୟକ ସହଯୋଗ 225
4. ବଢ଼ନ୍ତା ବିପଦ 232
5. ବଡ଼ ଷ୍ଟିମର 236
6. ଡେନ୍‌ମାର୍କର ଦୃଷ୍ଟାନ୍ତ 238
7. ଘରେ ସମସ୍ୟା 243
8. ନେଲ୍‌ସନ୍ ସ୍ମାରକୀ 246
9. ରାମାନୁଜନ୍, ଗଣିତ ଓ ଭଗବାନ 249
10. ଏକକ ସିଙ୍ଗୁଲାରିଟି 258
11. ବିସ୍ତୃତ ପ୍ରମାଣ 267

**8. କିଛି ମାତ୍ରାରେ ଅସୁସ୍ଥ (1918 ପରଠାରୁ)** **275**
1. ସାରା ଦୁନିଆ ଯୁବକ ମନେ ହେଉଛି 275
2. କାବେରୀକୁ ପ୍ରତ୍ୟାବର୍ତ୍ତନ 281
3. ଅନ୍ତିମ ସମସ୍ୟା 287
4. ଭାରତର ସନ୍ତାନ 293
5. ରାମାନୁଜନ୍‌ଙ୍କ ପୁନର୍ଜନ୍ମ 305
6. ଉନ୍ନତ ବ୍ଲାଷ୍ଟଫର୍ଣ୍ଣେସ୍? 310
7. ସ୍ୱୟଂଭୂ 315

**9. ଶେଷକଥା** **323**
ଟୀକା ଓ ଗ୍ରନ୍ଥସୂଚୀ 335
ଲେଖକୀୟ ସୂଚନା ଓ କୃତଜ୍ଞତା ଜ୍ଞାପନ 341
ପରିଭାଷା 347
ବିସ୍ତୃତ ସୂଚୀ 349

# ମୁଖବନ୍ଧ

ପ୍ରତ୍ୟେକ ସ୍କୁଲ ପଢୁଆ ଭାରତୀୟ ଶ୍ରୀନିବାସ ରାମାନୁଜନ୍ ନାଁ ସହିତ ପରିଚିତ। ତାଙ୍କ ବିଷୟରେ ବିଶେଷ କିଛି ନ ଜାଣିଥିଲେ ମଧ୍ୟ ସମସ୍ତେ ତାଙ୍କୁ ଜଣେ ବିସ୍ମୟକର ପ୍ରତିଭାସମ୍ପନ୍ନ ଗଣିତଜ୍ଞ ଭାବରେ ଚିହ୍ନନ୍ତି। ବର୍ତ୍ତମାନର ଯୁବପରିଭାଷାରେ ସେ ଥିଲେ ଭାରତର ଜଣେ ବୌଦ୍ଧିକ *ଆଇକନ୍*।

ଉଚ୍ଚତର ଶିକ୍ଷା ପାଇଥିବା ବ୍ୟକ୍ତିମାନେ ରାମାନୁଜନ୍‌ଙ୍କର ଜୀବନୀ ବିଷୟରେ କିଛି ଅଧିକ ଜାଣିବାର ସୁଯୋଗ ପାଆନ୍ତି ଏବଂ ବିଜ୍ଞାନରେ, ବିଶେଷ କରି ଗଣିତରେ, ଅଧିକ ଆଗ୍ରହ ରହୁଥିବା ବ୍ୟକ୍ତିମାନେ ତାଙ୍କ କାମ ବିଷୟରେ ମଧ୍ୟ କିଛି ମାତ୍ରାରେ ଜାଣନ୍ତି। ଅନ୍ତତଃ ପକ୍ଷେ ତାଙ୍କର ଟାକ୍ସି ନମ୍ବର ଗଣିତ ସମସ୍ତଙ୍କୁ ଆମୋଦିତ କରେ।

ଶିକ୍ଷା ଓ ବିଜ୍ଞାନର ଧାରା ଉପରେ ଚିନ୍ତା କରୁଥିବା ଲୋକଙ୍କ ପାଇଁ ରାମାନୁଜନ୍‌ଙ୍କ ଜୀବନୀ ଅନେକ ପ୍ରଶ୍ନ ଉଠାଏ। ଯେଉଁ ସବୁ ପ୍ରଶ୍ନ ତାଙ୍କ ମୃତ୍ୟୁ ପରଠାରୁ ଭାରତୀୟ ଚିନ୍ତକମାନଙ୍କୁ ଅସ୍ଥିର କରିଆସୁଛି। ସେଥିରୁ ଗୋଟିଏ ମୁଖ୍ୟ ପ୍ରଶ୍ନ ହେଉଛି ଶିକ୍ଷା ବ୍ୟବସ୍ଥାର ଯାନ୍ତ୍ରିକ ଅନମନୀୟତା ଭିତରେ ବିକଶିତ ହେବାର ସୁଯୋଗ ପାଉ ନ ଥିବା ପର ସମୟର ରାମାନୁଜନ୍‌ମାନଙ୍କ ସମ୍ପର୍କରେ। ସେ ପ୍ରଶ୍ନ ପଣ୍ଡିତ ନେହେରୁ ଉଠାଇଥିଲେ, ସି. ଭି. ରମଣ, ସୁବ୍ରମନ୍ୟମ୍ ଚନ୍ଦ୍ରଶେଖର ଆଦି ଉଚ୍ଚତମ ସ୍ତରର ବୁଦ୍ଧିଜୀବୀ ମଧ୍ୟ ଉଠାଇ ଥିଲେ। କିନ୍ତୁ ରାମାନୁଜନ୍ ବିଶ୍ୱଗଣିତ କ୍ଷେତ୍ରରେ ଚହଳ ପକାଇବାର ଶହେ ବର୍ଷ ପରେ ସେହି ପ୍ରଶ୍ନର ଉତ୍ତର ଏବେ କ'ଣ? ସାଧାରଣ ପରିବାରରୁ ଆସୁଥିବା ଅସାଧାରଣ ପିଲାଙ୍କର ସ୍ୱତନ୍ତ୍ର ଗୁଣ ପ୍ରତି ଆମର ସାମ୍ପ୍ରତିକ ଶିକ୍ଷା ବ୍ୟବସ୍ଥା କେତେ ସମ୍ବେଦନଶୀଳ, ତାକୁ ଚିହ୍ନଟ କରି ବିକଶିତ କରିବା ପାଇଁ କେତେ ସକ୍ଷମ?

ସୃଜନଶୀଳତାର ବିକାଶ ଦିଗରେ, ବିଜ୍ଞାନକୁ ପ୍ରଶ୍ନ କରିବାର ଓ ଉତ୍ତର ଖୋଜିବାର ଏକ ଆନନ୍ଦଦାୟକ ତଥା ସୃଜନାତ୍ମକ ଧାରା ଭାବରେ ଉପସ୍ଥାପିତ କରିବାରେ, ଆଗ୍ରହୀ 'ସୃଜନିକା'ର କର୍ମୀମାନଙ୍କ ପାଇଁ ଏହି ସବୁ ପ୍ରଶ୍ନ ଗୁରୁତ୍ୱପୂର୍ଣ୍ଣ ହୋଇଆସିଛି। କାମର ଆରମ୍ଭରୁ ହିଁ ସେଥିପାଇଁ ରାମାନୁଜନ୍ ଆମ ପାଇଁ ଏକ ସ୍ୱତନ୍ତ୍ର ପ୍ରତୀକର ସ୍ଥାନ ନେଇଆସିଛନ୍ତି।

ରବର୍ଟ କାନିଗେଲ୍ ହେଉଛନ୍ତି ରାମାନୁଜନ୍‌ଙ୍କର କଣେ ଜୀବନୀକାର। 1991 ମସିହାରେ ପ୍ରକାଶିତ ରାମାନୁଜନ୍‌ଙ୍କ ବିଷୟରେ ତାଙ୍କର ଚମତ୍କାର ବହି *ଦି ମ୍ୟାନ ହୁ ଇନ୍‌ଫିନିଟି* ପାଇଁ ଭାରତର ବୌଦ୍ଧିକ ସମାଜରେ ସେ ବେଶ୍ ପରିଚିତ। 2011 ଡିସେମ୍ବର ମାସରେ ରାମାନୁଜନ୍‌ଙ୍କର 125ତମ ଜନ୍ମ ବାର୍ଷିକୀ ପାଳନ ଅବସରରେ ସେ କ୍ଷୋଭ ପ୍ରକାଶ କରିଥିଲେ ଯେ ସେହି ବହୁଆଦୃତ ବହିଟି ଜର୍ମାନ, ଇଟାଲୀୟ, ଗ୍ରୀକ୍ ଆଦି ଭାଷାରେ ଅନୁବାଦିତ ହୋଇସାରିଛି, କିନ୍ତୁ ରାମାନୁଜନ୍‌ଙ୍କ ମାତୃଭାଷା ତାମିଲ ବା ଅନ୍ୟ କେଉଁ ଭାରତୀୟ ଭାଷାରେ ତାହା ପ୍ରକାଶ ପାଇନାହିଁ।

ଏହାର ପ୍ରତିକ୍ରିୟାରେ ହେଉ ବା ନିଜର ପୂର୍ବନିର୍ଦ୍ଧିଷ୍ଟ ଯୋଜନାରୁ ହେଉ 'ରାମାନୁଜନ 125' କାର୍ଯ୍ୟକ୍ରମର ଆୟୋଜକମାନେ ଭାରତର ସବୁ ଭାଷାରେ ସେହି ବହିର ପ୍ରକାଶନ କାମ ହାତକୁ ନେଲେ। ଓଡ଼ିଆ ଭାଷାନ୍ତର ପାଇଁ ସୁଯୋଗ ମିଳିବା ଆମ ପାଇଁ ଖୁସୀର କଥା ଥିଲା। ଯୋଜନା ଥିଲା, ଭାରତୀୟ ଭାଷାର ବହିଗୁଡ଼ିକ 2012 ଡିସେମ୍ବର ମାସରେ, ରାମାନୁଜନ୍‌ଙ୍କର 125ତମ ଜନ୍ମଦିନରେ, ପ୍ରକାଶ ପାଇବ। ସେହି ଲକ୍ଷ୍ୟରେ ଓଡ଼ିଆ ଲେଖାଟି 2012 ଅଗଷ୍ଟ ମାସରେ ଆୟୋଜକଙ୍କ ପାଖରେ ପହଞ୍ଚିଥିଲା, କିନ୍ତୁ ଏକ ବର୍ଷ ବିଳମ୍ବରେ ତାହା ଏବେ ପ୍ରକାଶିତ ହେବାକୁ ଯାଉଛି। ଉଚ୍ଚ ଶିକ୍ଷା ଓ ଗବେଷଣାରେ ସମ୍ପୃକ୍ତ ଆୟୋଜକମାନଙ୍କର ସାଧାରଣ ଲୋକଙ୍କ ପ୍ରତି ଉଦାସୀନତାର ଏହା ଯେ ଏକ ନିଦର୍ଶନ ତାହା ଏହି ଅନୁବାଦକ ଅନୁଭବ କରୁଛି।

ତଥାପି ବ୍ୟକ୍ତିଗତ ଭାବରେ ଅନୁବାଦକ ଏବଂ ଦଳଗତ ଭାବରେ ସୃଜନିକା ଆୟୋଜକମାନଙ୍କ ପାଖରେ କୃତଜ୍ଞ ଯେ ଓଡ଼ିଆ ପାଠକଙ୍କ ପାଖରେ ଏହି ଉଦ୍ଦୀପକ ରଚନାଟି ଏବେ ପହଞ୍ଚି ପାରୁଛି। ଏହାର ଶ୍ରେୟ ଇଣ୍ଡିଆନ୍ ଇନ୍‌ଷ୍ଟିଚୁଟ୍ ଅଫ୍ ସାଇନ୍ସର ଗଣିତ ଅଧ୍ୟାପକ ଡ. ଗଦାଧର ମିଶ୍ର ଏବଂ ରାମାନୁଜନ୍ 125 କମିଟିର ଅଧ୍ୟକ୍ଷ ଅଧ୍ୟାପକ ଏମ୍. ଏସ୍. ରଘୁନାଥନ୍‌ଙ୍କର ମଧ୍ୟ ପ୍ରାପ୍ୟ।

ବହିଟିର ଓଡ଼ିଆ ଅନୁସୃଜନ କାମରେ ବିଭିନ୍ନ ବାଟରେ ସମ୍ପୃକ୍ତ ଥିବା କର୍ମୀଙ୍କ ଭିତରେ ମୁଖ୍ୟ ଭୂମିକା ନେଇଛନ୍ତି ନଚିକେତା ଖମାରୀ ଶର୍ମା, ପୁଷ୍ପଶ୍ରୀ ପଟ୍ଟନାୟକ, ପଦ୍ମଜା ନନ୍ଦିନୀ ସାହୁ, ବାଉରିବନ୍ଧୁ ପଟ୍ଟନାୟକ, ଶିବପ୍ରସାଦ ପାତ୍ର ଓ ଜୀବନ କୁମାର ପଣ୍ଡା। ପ୍ରକାଶନରେ ଅନିଶ୍ଚିତତା କାରଣରୁ ବହିଟିର ଏକ ସଂକ୍ଷିପ୍ତ ରୂପକୁ ଧାରାବାହିକ ଭାବରେ ବାହାର କରିବା ପାଇଁ 'ସମଦୃଷ୍ଟି' ପତ୍ରିକା ଆଗେଇ ଆସିଥିଲା। ଏହି ସମସ୍ତଙ୍କ ପାଖରେ ଅନୁବାଦକ ବିଶେଷ ଭାବରେ ଋଣୀ। ପ୍ରକାଶନ କାମ ହାତକୁ ନେଇଥିବାରୁ ଏବଂ ପ୍ରାକ୍-ମୁଦ୍ରଣ ପ୍ରସ୍ତୁତିରେ ସାହାଯ୍ୟ କରିବା ପାଇଁ ବହିର ବଙ୍ଗଳା ସଂସ୍କରଣ ଯୋଗାଇ ଦେଇଥିବାରୁ ଏନ୍.ବି.ଟି.ର ନିର୍ଦ୍ଦେଶକ ଓ ଅନ୍ୟ କର୍ମକର୍ତ୍ତା ଧନ୍ୟବାଦର ପାତ୍ର।

ଏହି ଓଡ଼ିଆ ସଂସ୍କରଣ ଇଂରାଜୀ ବହିର ଆକ୍ଷରିକ ଅନୁବାଦ ନୁହେଁ, ବରଂ ଏକ ଅନୁସୃଜନ। ସ୍ଥଳ ବିଶେଷରେ ସଂକ୍ଷେପଣ କରାଯାଇଛି ଏବଂ ଅତି ଅଳ୍ପ କ୍ଷେତ୍ରରେ କିଛି ପାଠ ବାଦଦିଆଯାଇଛି। ତଥାପି ମୂଳ ବହିର ଉପସ୍ଥାପନା ଶୈଳୀ ଓ ଭାବପ୍ରବାହ ଏଥିରେ ଅକ୍ଷୁର୍ଣ୍ଣ ରହିଛି। ଇଂରାଜୀ ବହିରେ ରହିଥିବା ଅନେକ ଉକ୍ତି, ତଥ୍ୟ ଓ ସୂଚନାର ସପକ୍ଷରେ ବିଭିନ୍ନ ଉତ୍ସର ବିସ୍ତୃତ ବିବରଣୀ ଦିଆଯାଇଛି। ସାଧାରଣ ପାଠକ ପାଇଁ ଏହାର ମୂଲ୍ୟ ସୀମିତ, ସେସବୁ ପାଇବା ମଧ୍ୟ ପ୍ରାୟ ଅସମ୍ଭବ। ତେଣୁ ତାହା ଓଡ଼ିଆ ସଂସ୍କରଣରେ ଦିଆଯାଇନାହିଁ। ମୁଖ୍ୟ ସହାୟକ ଗ୍ରନ୍ଥଗୁଡ଼ିକର ସୂଚୀ କିନ୍ତୁ ଏଥିରେ ରହିଛି। ଆହୁରି ଅଧିକ ଜାଣିବାରେ ଆଗ୍ରହୀ ପାଠକମାନେ ଇଂରାଜୀ ବହିଟି ଦେଖିବାକୁ ଅନୁରୋଧ।

ଶେଷରେ, ଏହି ବହିଟିକୁ ପଢ଼ିକରି ପାଠକମାନେ ଯଦି ରାମାନୁଜନ୍‌ଙ୍କ ବିଷୟରେ ରୋମାଞ୍ଚିତ ହୁଅନ୍ତି ଏବଂ ନିଜ ଦାୟିତ୍ୱରେ ଥିବା ପିଲାମାନଙ୍କର ସର୍ବାଙ୍ଗୀନ ମାନସିକ ବିକାଶରେ ତାହାର ଭୂମିକା ଖୋଜନ୍ତି, ତେବେ ସେମାନେ ଏ ଅନୁସୃଜକର ଖୁସୀରେ ଭାଗିଦାର ବୋଲି ନିଶ୍ଚିନ୍ତ ରହିପାରନ୍ତି।

07 ଅକ୍ଟୋବର 2013 — ନିଖିଳ ମୋହନ ପଟ୍ଟନାୟକ,
ଜାଗମରା, ଭୁବନେଶ୍ୱର — 'ସୃଜନିକା'

# ପ୍ରାକ୍‌କଥନ

ସମୟ 1913 ମସିହାର ଗ୍ରୀଷ୍ମ ଋତୁ। ସ୍ଥାନ ମଧ୍ୟଯୁଗୀୟ ବିଶ୍ୱବିଦ୍ୟାଳୟ ସହର କେମ୍ବ୍ରିଜଠାରେ ଥିବା କିଙ୍ଗ୍‌ସ୍ କଲେଜର ପ୍ରାର୍ଥନାଳୟ। ବିଶାଳ ଓ ଗୌରବମୟ ସେହି ପ୍ରାର୍ଥନାଳୟଟି ଏକ ପ୍ରମୁଖ ଗୀର୍ଜା ଭଳି ମନେହୁଏ। 1446 ମସିହାରେ ଆରମ୍ଭ ହୋଇଥିବା ଏହି ପୀଠର ନିର୍ମାଣ ତିନିଜଣ ସମ୍ରାଟଙ୍କର ରାଜତ୍ୱକାଳ ଧରି ଚାଲିଥିଲା। ଦକ୍ଷିଣ କାନ୍ଥର ଚିତ୍ରିତ ରଙ୍ଗୀନ କାଚ ଝରକା ଦେଇ ଧାର ଧାର ହୋଇ ଆଲୁଅ ଭିତରେ ଖେଳାଇ ହେଉଥିଲା। ଶୋଭନ ଶିରାଯୁକ୍ତ ଗଗନଚୁମ୍ବୀ ସ୍ତମ୍ଭଗୁଡ଼ିକର ଉପର ଭାଗ ଓସାରିଆ ହୋଇ ବିସ୍ତୃତ ଗୋଲାକାର ଛାତରେ ମିଶି ଯାଇଥିଲେ। ସେଠାରେ ଛିଡ଼ା ହୋଇଥିଲେ କଲିକତାର ଏକ ପୁରୁଣା ସମ୍ଭ୍ରାନ୍ତ ଓ ଧନୀ ପରିବାରର କୋଡ଼ିଏ ବର୍ଷ ବୟସର ଜଣେ ଯୁବକ।

ଭାବବିହ୍ୱଳିତ ହୋଇ ଛିଡ଼ା ହୋଇଥିଲେ ପ୍ରଶାନ୍ତ ଚନ୍ଦ୍ର ମହଲାନବିଶ୍। ଲଣ୍ଡନରେ ପଢ଼ିବା ପାଇଁ ସେ ଭାରତରୁ ଜାହାଜ ଧରିଥିଲେ ଏବଂ ଓହ୍ଲାଇବାର ଅଳ୍ପ ସମୟ ପରେ ରେଳଗାଡ଼ିରେ କେମ୍ବ୍ରିଜ ବୁଲି ଯାଇଥିଲେ। ଏବେ କିନ୍ତୁ ଲଣ୍ଡନଫେରନ୍ତା ଶେଷ ଗାଡ଼ି ଚାଲି ଯାଇଥିଲା, ତେଣୁ ସେଠାରେ କିଛି ସାଥୀଙ୍କ ସହିତ ସେ ରହିଗଲେ। ହେଲେ ସେହି ପ୍ରାର୍ଥନାଳୟର ଚମତ୍କାର ଦୃଶ୍ୟ ଓ ବାତାବରଣ ବିଷୟରେ ସେ ଗପିବା ବନ୍ଦ କରିପାରିଲେ ନାହିଁ।

ଜଣେ ସାଙ୍ଗ ପ୍ରସ୍ତାବ ଦେଲେ ହୁଏତ ସେ ଲଣ୍ଡନରେ ପଢ଼ିବା କଥା ଭୁଲିଯାଇ କିଙ୍ଗ୍‌ସ୍ କଲେଜ ଚାଲିଆସିଲେ ଭଲ ହେବ। ବାସ୍, ସେତିକି ହିଁ ମହଲାନବିଶ୍‌ଙ୍କ ପାଇଁ ଯଥେଷ୍ଟ ଥିଲା। ତା'ପର ଦିନ ହିଁ ସେ ଏହି ବିଷୟରେ କଲେଜ ପରିଚାଳକଙ୍କ ସହିତ ଆଲୋଚନା କଲେ ଏବଂ ଦିନ କେତୋଟି ପରେ କେମ୍ବ୍ରିଜର କିଙ୍ଗ୍‌ସ୍ କଲେଜର ଛାତ୍ର ହୋଇଗଲେ। ତାଙ୍କ ପାଇଁ ଏହା ଖୁବ୍ ଆଶ୍ଚର୍ଯ୍ୟ ଓ ଆନନ୍ଦର କଥା ଥିଲା।

କେମ୍ବ୍ରିଜରେ ପ୍ରାୟ ଛଅ ମାସ କଟାଇଲା ପରେ ଦିନେ ତାଙ୍କ ଗଣିତ ଶିକ୍ଷକ ପଚାରିଲେ, "ତୁମର ବିସ୍ମୟକର ଦେଶବାସୀ ରାମାନୁଜନ୍‌ଙ୍କୁ ଭେଟିଛ କି ?"

ରାମାନୁଜନ୍‌ଙ୍କୁ ସେ ଭେଟି ନ ଥିଲେ, କିନ୍ତୁ ତାଙ୍କ ବିଷୟରେ ଶୁଣିଥିଲେ। ମାନ୍ଦ୍ରାଜ ସହରର ପାଖରୁ ଆସିଥିବା ରାମାନୁଜନ୍ ଜଣେ ଅସାଧାରଣ ପ୍ରତିଭାସମ୍ପନ୍ନ ସ୍ୱଶିକ୍ଷିତ ଗଣିତଜ୍ଞ ଥିଲେ। ମହଲାନବିଶ୍‌ଙ୍କର ଅତି ପରିଚିତ ମାର୍ଜିତ ଓ ବିକଶିତ କଲିକତାଠାରୁ ହଜାରେ ମାଇଲ ଦୂରରେ ଥିବା ମାନ୍ଦ୍ରାଜ ତାଙ୍କ ପାଇଁ ଗୋଟିଏ ଅଲଗା ଦୁନିଆ ଥିଲା। ଠିକ୍ ଯେପରି ଇଂଲଣ୍ଡଠାରୁ କଲିକତା ବେଶ୍ ଅଲଗା ମନେ ହେଉଥିଲା। ଉତ୍ତର ଭାରତର ଶିକ୍ଷିତ ବାସିନ୍ଦାମାନେ ଦକ୍ଷିଣ ଭାରତକୁ ଏକ ପଛୁଆ

ଓ ଅନ୍ଧବିଶ୍ୱାସ କବଳିତ ଅଞ୍ଚଳ ଭାବରେ ଦେଖୁଥିଲେ ଯାହା ତାଙ୍କ ଆଖିରେ ବମ୍ବେ ଓ କଲିକତାର ପ୍ରଗତିଶୀଳ ଚିନ୍ତାଧାରାଠାରୁ ବହୁ ଦୂରରେ ରହିଥିଲା। ତଥାପି କେଉଁ ଏକ ଧାରାରେ ସେଭଳି ଅଞ୍ଚଳରୁ ଗୋଟିଏ ଗରିବ ପରିବାରରୁ ଜଣେ ଅତି ବିଚକ୍ଷଣ ଗଣିତଜ୍ଞ ଆସିପାରିଥିଲେ। ତାଙ୍କର ଧୀଶକ୍ତି ଏତେ ଅସାଧାରଣ ଥିଲା ଯେ ଇଂରେଜମାନେ ତାଙ୍କୁ କେମ୍ବ୍ରିଜକୁ ମୁଣ୍ଡେଇ ନେଇଥିଲେ କହିଲେ ଚଳେ। ଯେପରି ଟ୍ରିନିଟି କଲେଜର ବିଦ୍ୱାନମାନେ ତାଙ୍କର ପ୍ରଜ୍ଞାର ଲାଭ ପାଇପାରିବେ ଏବଂ ଯାହା ସମ୍ଭବ ତାଙ୍କଠାରୁ ଶିଖିପାରିବେ।

କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର କଲେଜଗୁଡ଼ିକ ଭିତରେ ଟ୍ରିନିଟି ଥିଲା ସବୁଠାରୁ ବଡ଼ ଓ ଗୌରବମୟ ଐତିହ୍ୟର ଅଧିକାରୀ। ତାହା ଥିଲା ସମ୍ରାଟ, କବି ଓ ବିଶିଷ୍ଟ ବିଜ୍ଞ ବ୍ୟକ୍ତିଙ୍କ କର୍ମଭୂମି। ଆଇଜାକ୍ ନିଉଟନ ସେଠାରେ ପଢ଼ିଥିଲେ। 1755 ମସିହାରୁ ତାଙ୍କର ମାର୍ବଲ ପ୍ରତିମୂର୍ତ୍ତି ଟ୍ରିନିଟିର ପ୍ରାର୍ଥନାଳୟରେ ଶୋଭାପାଉଛି। ସେହି ମୂର୍ତ୍ତିର ହାତରେ ରହିଛି ଏକ ପ୍ରିଜମ୍ ଯେଉଁଥିରେ ନିଉଟନ୍ ଆଲୋକର ବର୍ଣ୍ଣାଳୀ ଉପରେ ପରୀକ୍ଷା ଚଳାଇଥିଲେ। ଟେନିସନ୍, ଥାକରେ ଓ ଫିଜେରାଲ୍ଡ ଟ୍ରିନିଟିରେ ଶିକ୍ଷା ପାଇଥିଲେ। ଐତିହାସିକ ମାକଲେ, ପଦାର୍ଥ ବିଜ୍ଞାନୀ ରଥରଫୋର୍ଡ, ଦାର୍ଶନିକ ବର୍ଟ୍ରାଣ୍ଡ ରସେଲ ଏବଂ ଇଂଲଣ୍ଡର ପାଞ୍ଚ ଜଣ ଭାବୀ ପ୍ରଧାନମନ୍ତ୍ରୀ ମଧ୍ୟ ଏଠାରେ ଅଧ୍ୟୟନ କରିଥିଲେ।

ଏବେ ରାମାନୁଜନ୍ ମଧ୍ୟ ଟ୍ରିନିଟିରେ ଥିଲେ।

ଅଳ୍ପ ଦିନ ଭିତରେ ମହଲାନବିଶ୍ ତାଙ୍କୁ ଭେଟିଲେ ଏବଂ ଦୁହିଁଙ୍କ ଭିତରେ ବନ୍ଧୁତା ଆସିଲା। ରବିବାର ସକାଳ ଜଳଖିଆ ପରେ ଦୁହେଁ ଲମ୍ବା ରାସ୍ତା ଚାଲି ଚାଲି ବୁଲୁଥିଲେ ଏବଂ ଜୀବନ, ଦର୍ଶନ ଓ ଗଣିତ ବିଷୟରେ କଥା ହେଉଥିଲେ। ପର ସମୟରେ ତାଙ୍କର ବନ୍ଧୁତ୍ୱ ଗଭୀର ହେବାର ମୁହୂର୍ତ୍ତକୁ ମହଲାନବିଶ୍ ଚିହ୍ନଟ କରିଥିଲେ। ତାହା ଥିଲା ରାମାନୁଜନ୍ ସେଠାରେ ପହଞ୍ଚିବାର ପରବର୍ତ୍ତୀ ଶରତ ଋତୁର ଗୋଟିଏ ଦିନ। ତାଙ୍କୁ ଭେଟିବା ପାଇଁ ମହଲାନବିଶ୍ ହ୍ୱେୱେଲ୍ ପ୍ରାଙ୍ଗଣକୁ ଯାଇଥିଲେ। ତାହା ଥିଲା ଚାରିକୋଣିଆ ଘାସ ବଗିଚାକୁ ଘେରିଥିବା ଏକ ତିନି ମହଲା ପଥର କୋଠା ଯେଉଁଥିରେ ଖିଲାଣଯୁକ୍ତ ଗଥୀୟ ଝରକା ଥିବା ଗୋଟିକିଆ କୋଠରୀମାନ ରହିଥିଲା। କୋଠରୀଗୁଡ଼ିକୁ ଯିବା ପାଇଁ ମଝିରେ ମଝିରେ ଗୁଡ଼ିଏ ଶିଡ଼ି ରହିଥିଲା। ସେଭଳି ଗୋଟିଏ ପ୍ରବେଶ ଦ୍ୱାର ପଛରେ ବଗିଚାରୁ ଗୋଟିଏ ଦୁଇଟି ପାହାଚ ଉପରେ ଥିଲା ରାମାନୁଜନ୍‌ଙ୍କ କୋଠରୀ।

କେମ୍ବ୍ରିଜରେ ସେତେବେଳକୁ ଶୀତ ପଡ଼ିଲାଣି। ମହଲାନବିଶ୍ ଭିତରକୁ ଆସି ଦେଖିଲେ ଯେ ରାମାନୁଜନ୍ ଜାକିଜୁକି ହୋଇ ନିଆଁ ପାଖରେ ବସିଛନ୍ତି। ମୁହଁଟି ତାଙ୍କର ଫୁଲକା, ସେଥିରେ ବସନ୍ତ ଦାଗ। ଭାରତର ଗୌରବ, ଯାହାଙ୍କୁ ଇଂରେଜମାନେ ଯତ୍ପରୋନାସ୍ତି ଚେଷ୍ଟା କରି ନିଜ ଦେଶକୁ ଆଣିଛନ୍ତି। କିନ୍ତୁ ସବୁ ଯୋଜନା ଗୋଳମାଳ ହୋଇଯାଇଛି। ଦୁର୍ଭାଗ୍ୟର ବର୍ଷ 1914 ମସିହାରେ ୟୁରୋପ ଯୁଦ୍ଧର କବଳରେ। ଟ୍ରିନିଟି ପରିସରରେ ସାର୍ କ୍ରିଷ୍ଟୋଫର ରେନ୍‌ଙ୍କ ସ୍ଥାପତ୍ୟର ଚିରନ୍ତନ ଛାପ ଦେଖାଯାଏ ନେଭିଲ୍ ପ୍ରାଙ୍ଗଣର ରମଣୀୟ ଆବୃତ ତୋରଣ ପଥଗୁଡ଼ିକରେ। ସେହି ନେଭିଲ୍ ପ୍ରାଙ୍ଗଣ ଏବେ ଗୋଟିଏ ଖୋଲା ଚିକିତ୍ସାଳୟରେ ପରିଣତ ହୋଇଛି। ହଜାର ହଜାର ଲୋକ ଯୁଦ୍ଧ କ୍ଷେତ୍ରକୁ ବାହାରି ଯାଇଛନ୍ତି। କେମ୍ବ୍ରିଜ ଏବେ ଶୂନଶାନ... ଏବଂ ଥଣ୍ଡା।

ରାମାନୁଜନ୍‌ଙ୍କୁ ନିଆଁ ପାଖରେ ଦେଖି ମହଲାନବିଶ୍ ପଚାରିଲେ, “ରାତିରେ ଉଷୁମ ରହୁଛ ତ?” ସବୁବେଳେ ଉଷୁମ ରହୁଥିବା ମାନ୍ଦ୍ରାଜର ବାସିନ୍ଦା ରାମାନୁଜନ୍ କହିଲେ, “ନାଁ”, ସେ ଗରମ ପୋଷାକ ପିନ୍ଧି, ଶାଲ ଘୋଡ଼ିହୋଇ ଶୋଉଥିଲେ। ରାମାନୁଜନ୍‌ଙ୍କ ପାଖରେ ଯଥେଷ୍ଟ କମ୍ବଳ ନାହିଁ ଭାବି ମହଲାନବିଶ୍ ନିଆଁ ଆରପଟରେ ଥିବା ଶୋଇବା ଜାଗାକୁ ଗଲେ। ସେ ଦେଖିଲେ ଯେ ବିଛଣାଢଙ୍କା ଚାଦରଟି ହୁଗୁଳା ହୋଇ ପଡ଼ିଛି ଯେପରି କିଏ ଏବେ ବିଛଣା ଛାଡ଼ିଛି, କିନ୍ତୁ ଗଦି ଉପରେ ଥିବା କମ୍ବଳ ସଜଡ଼ା ହୋଇ ରହିଛି, ଯେପରି ତାହା କେହି ବ୍ୟବହାର କରିନାହିଁ।

ହଁ, ରାମାନୁଜନ୍‌ଙ୍କ ବିଛଣାରେ ଯଥେଷ୍ଟ କମ୍ବଳ ଅଛି, କିନ୍ତୁ ସେ ତାହାର ବ୍ୟବହାର ବୁଝିନାହାନ୍ତି। ଧୈର୍ଯ୍ୟର ସହିତ ଅତି ନରମ ଭାବରେ ମହଲାନବିଶ୍ ବୁଝାଇଲେ... ବିଛଣାଢଙ୍କାକୁ କାଢ଼ିଦେଇ, କମ୍ବଳକୁ ଢିଲାକରି କିପରି ତା ତଳେ ପଶି ଶୋଇବାକୁ ହେବ।

x x x

ଯୁଦ୍ଧ ସମୟରେ ପାଞ୍ଚ ବର୍ଷ ଧରି ରାମାନୁଜନ୍ ଭାରତରୁ ବିଚ୍ଛିନ୍ନ ହୋଇଗଲେ ଏବଂ ଅପରିଚିତ, ଥଣ୍ଡା ଓ ଘନିଷ୍ଠତାଶୂନ୍ୟ ଇଂଲଣ୍ଡରେ ରହିବାକୁ ବାଧ୍ୟ ହେଲେ। ଏହି ସମୟରେ କିନ୍ତୁ ସେ ଏକୋଇଶଟି ଗୁରୁତ୍ୱପୂର୍ଣ୍ଣ ଗାଣିତିକ ନିବନ୍ଧ ଚୂଡ଼ାନ୍ତ କରିଥିଲେ ଯାହା କାଳଜୟୀ କୃତି ଭାବରେ ସ୍ୱୀକୃତ ହୋଇଛି। ଯୁଦ୍ଧ ଶେଷରେ ସେ ଭାରତ ଫେରିଲେ ଯେଉଁଠି ବିପୁଳ ସମ୍ବର୍ଦ୍ଧନା ତାଙ୍କୁ ଅପେକ୍ଷା କରିଥିଲା। ଆହୁରି ମଧ୍ୟ ଅପେକ୍ଷା କରିଥିଲା ସେହି ବହୁମୂଲ୍ୟ ଜୀବନର ଅକାଳ ବିଲୋପ!

ଜଣେ ଇଂରେଜ ବ୍ୟକ୍ତି କହିଥିଲେ, “ଶ୍ରୀନିବାସ ରାମାନୁଜନ୍ ଏପରି ଜଣେ ବିଶାଳ ଗଣିତଜ୍ଞ ଥିଲେ ଯିଏ କି କାହାରି ଈର୍ଷାର ବହୁ ଉପରେ ଥିଲେ। ଗତ ହଜାର ବର୍ଷରେ ଭାରତରୁ ବାହାରିଥିବା ଗଣିତଜ୍ଞମାନଙ୍କ ଭିତରେ ସେ ଥିଲେ ସର୍ବତୋଭାବେ ବିଶିଷ୍ଟ।” ତାଙ୍କର ସ୍ୱତଃପ୍ରସୂତ ଅନ୍ତର୍ଦୃଷ୍ଟିଭିତ୍ତିକ ଜ୍ଞାନର ପରିପ୍ରକାଶକୁ ଏବେ ମଧ୍ୟ ଅନ୍ୟ ଗଣିତଜ୍ଞମାନେ ବୁଝିବାରେ ସକ୍ଷମ ହୋଇ ନାହାନ୍ତି। ତାଙ୍କ ଜ୍ଞାନର ରହସ୍ୟକୁ ବୁଝିବା ପାଇଁ ତାଙ୍କର ନିବନ୍ଧଗୁଡ଼ିକର ବିଶ୍ଳେଷଣ ଏବେ ବି ବିଭିନ୍ନ ଧାରାରେ ଚାଲିଛି। ରାମାନୁଜନ୍‌ଙ୍କ ଉପପାଦ୍ୟମାନ ବହୁଳକ ରସାୟନ, କମ୍ପ୍ୟୁଟର, ଏପରିକି କର୍କଟ ରୋଗ ଆଦି କ୍ଷେତ୍ରରେ ଏବେ ପ୍ରୟୋଗ କରାଯାଉଛି। ତାଙ୍କ ଜୀବନ କାଳ ଭିତରେ ଏହା ଚିନ୍ତାର ବହୁ ଦୂରରେ ରହିଥିଲା। ଅନେକଙ୍କ ମନକୁ ଗୋଟିଏ ପ୍ରଶ୍ନ ଆଲୋଡ଼ିତ କରିଚାଲିଛି - ଯଦି ଆଉ କିଛି ବର୍ଷ ଆଗରୁ ରାମାନୁଜନ୍‌ଙ୍କ ପ୍ରତିଭା ଜଣା ପଡ଼ିଥା’ନ୍ତା ବା ଯଦି ସେ ଆଉ କିଛି ବର୍ଷ ବଞ୍ଚି ରହିଥା’ନ୍ତେ...?

ରାମାନୁଜନ୍ ଅତି ସରଳ ମଣିଷ ଥିଲେ। ତାଙ୍କର ଆବଶ୍ୟକତା ଥିଲା ସ୍ୱଳ୍ପ। ତାଙ୍କର ଆଚାର ବ୍ୟବହାର ଓ ରସବୋଧ ମଧ୍ୟ ସରଳ ଥିଲା। ସେ କିନ୍ତୁ ସୀମିତଧୀଶକ୍ତିବିଶିଷ୍ଟ ବିଦ୍ୱାନ ନ ଥିଲେ। ଗଣିତ ଭିନ୍ନ ଅନ୍ୟ କ୍ଷେତ୍ରରେ ତାଙ୍କର ଜ୍ଞାନ ଓ ବୋଧଶକ୍ତି କିଛି କମ୍ ନ ଥିଲା। ପରିଶ୍ରମୀ ଓ ଅଧ୍ୟବସାୟୀ ହେବା ସହିତ ସେ ନିଜସ୍ୱ ଧାରାରେ ଆକର୍ଷଣୀୟ ବ୍ୟକ୍ତିତ୍ୱର ଅଧିକାରୀ ମଧ୍ୟ ଥିଲେ। କିନ୍ତୁ କେମ୍ବ୍ରିଜ, କଲିକତା ବା ବମ୍ବେର ବିଚାରଧାରାରେ ସେ ଥିଲେ ଅତି ସରଳମନା ଏବଂ ସୀମିତ-ବ୍ୟକ୍ତିତ୍ୱର ମଣିଷ। କମ୍ବଳର ବ୍ୟବହାର ବିଷୟରେ ମହଲାନବିଶ୍‌ଙ୍କର ସାହାଯ୍ୟ ଭଳି ଛୋଟ ଛୋଟ

କଥା ତାଙ୍କ ମନରେ ଗଭୀର ଛାପ ପକାଉଥିଲା। ଅତି ମାମୁଲି ଆକ୍ଷେପ ତାଙ୍କୁ ବିଶେଷ ଲଜ୍ଜିତ କରୁଥିଲା। ଗଣିତ ବିଷୟକୁ ଛାଡ଼ିଦେଲେ ତାଙ୍କ ଚିଠିଗୁଡ଼ିକରେ କିଛି ସରସତା ନ ଥିଲା।

ଏହି ବହିରେ ମୁଁ ରାମାନୁଜନ୍‌ଙ୍କ କାହାଣୀ କହିବି – ଜଣେ ରହସ୍ୟମୟ ବିଦ୍ୱାନଙ୍କ କାହାଣୀ ଏବଂ ଏକ ସରଳ ହୃଦୟର କାହାଣୀ। ଏହା ଏକ ସାଂସ୍କୃତିକ ସଂଘର୍ଷର କାହାଣୀ। ଭାରତୀୟ ଓ ପାଶ୍ଚାତ୍ୟ ସଂସ୍କୃତିର ସଂଘର୍ଷ। ଦକ୍ଷିଣ ଭାରତର କୁମ୍ଭକୋଣମ୍‌ର ସରଙ୍ଗାପାନି ସନ୍ନିଧି ସରଣୀ – ରାମାନୁଜନ୍‌ଙ୍କର ନିଜସ୍ୱ ଦୁନିଆ – ଏବଂ କେମ୍ବ୍ରିଜର ଚକଚକିଆ ଦୁନିଆ ଭିତରେ ସଂଘର୍ଷ। ଅକାଟ୍ୟ ପ୍ରମାଣ ଆଧାରିତ ପାଶ୍ଚାତ୍ୟ ଗାଣିତିକ ପରମ୍ପରା ଏବଂ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟକୁ ଚମକାଇଥିବା ରାମାନୁଜନ୍‌ଙ୍କର ରହସ୍ୟମୟ ଅନ୍ତର୍ଦୃଷ୍ଟିଭିତ୍ତିକ ଗାଣିତିକ ପରିପ୍ରକାଶ ଭିତରେ ସଂଘର୍ଷ।

ଏହି କାହାଣୀ ହେଉଛି ଜଣେ ମଣିଷଙ୍କର ଓ ନିଜର ଦକ୍ଷତା ଉପରେ ତାଙ୍କର ଅଟଳ ବିଶ୍ୱାସର। ଏହା ଏଭଳି ଏକ କାହାଣୀ ନୁହେଁ ଯାହାର ଶେଷରେ 'ପ୍ରଜ୍ଞାର ହିଁ ବିଜୟ ହେବ'। ଯଦିଓ ରାମାନୁଜନ୍‌ଙ୍କ କ୍ଷେତ୍ରରେ ଏହା ମୋଟାମୋଟି ଭାବରେ ସତ ହୋଇଥିଲା, କିନ୍ତୁ ନହେବାର ସମ୍ଭାବନା ବେଶ୍ ଅଧିକ ଥିଲା। ଘଟଣା ପ୍ରବାହ ଯଦି ଟିକିଏ ଏପଟ ସେପଟ ହୋଇଥା'ନ୍ତା, ଭାଗ୍ୟ ଯଦି ତାଙ୍କ ସପକ୍ଷରେ ଯାଇନଥା'ନ୍ତା ବା ନିଜ ସାଧନାରେ ସେ ଯଦି ଦୃଢ଼ମନା ହୋଇ ଲାଗିରହି ନ ଥା'ନ୍ତେ, ତେବେ ରାମାନୁଜନ୍ ଇତିହାସର ଅଳିଆ ଗଦାରେ ଆଜି ଅଜଣା ହୋଇ ରହିଥା'ନ୍ତେ। ଗୋଟିଏ ଦୃଷ୍ଟିରୁ ଏହା ହେଉଛି ଶିକ୍ଷା ଓ ସାମାଜିକ ବ୍ୟବସ୍ଥାର ଏକ କାହାଣୀ – ସେ ବ୍ୟବସ୍ଥା କିପରି ପ୍ରତିଭାର ବିକାଶରେ ସହାୟକ ହୋଇପାରେ ବା ପ୍ରତିଭାକୁ ଦଳି ଦେଇପାରେ। ରାମାନୁଜନ୍‌ଙ୍କ ଜୀବନୀ କରୁଣ ପ୍ରଶ୍ନଟିଏ ଉଠାଏ – ଭାରତରେ ଆଜି ବି ତାଙ୍କ ଭଳି କେତେ କିଏ ଅଜଣା ଅଚିହ୍ନା ହୋଇ ରହିଛନ୍ତି? ଆହୁରି ବି ପ୍ରଶ୍ନ ଉଠାଏ ଆମେରିକା ବା ଇଂଲଣ୍ଡରେ ଆଜି କେତେ ଲୋକ ବର୍ଣ୍ଣଗତ ବା ଅର୍ଥନୈତିକ ଦୃଷ୍ଟିରୁ ନିଜକୁ ନିଜର ସୀମିତ ଦୁନିଆ ଭିତରେ ହିଁ ଆବଦ୍ଧ କରି ରଖିଛନ୍ତି? ବାହାର ଦୁନିଆ ଓ ତା'ର ମଣିଷମାନଙ୍କ ବିଷୟରେ ସେମାନଙ୍କର କେତେ ବା ଧାରଣା ରହିଛି?

ଅସାଧାରଣ ଧୀଶକ୍ତି ସମ୍ପନ୍ନ ଜଣେ ବ୍ୟକ୍ତିଙ୍କୁ ଆବିଷ୍କାର କଲା ପରେ କ'ଣ କରାଯାଇପାରେ ତାହା ମଧ୍ୟ ଏହି କାହାଣୀର ବିଷୟ। ରାମାନୁଜନ୍‌ଙ୍କୁ କେମ୍ବ୍ରିଜ ଆଣିଥିଲେ ଜଣେ ସମ୍ଭ୍ରାନ୍ତ ବ୍ୟକ୍ତି ଯିଏ ଜଣେ ଉଚ୍ଚକୋଟୀର ଗଣିତଜ୍ଞ ଥିଲେ। ରାମାନୁଜନ୍ ସେହି ଅପ୍ରତିଦ୍ୱନ୍ଦ୍ୱୀ ବୁଦ୍ଧିଜୀବୀ ଜି. ଏଚ୍. ହାର୍ଡିଙ୍କ ପାଖକୁ ଚିଠି ଲେଖି ସାହାଯ୍ୟ ମାଗିଥିଲେ। ହାର୍ଡି ବୁଝିପାରିଲେ ଯେ ରାମାନୁଜନ୍ ହେଉଛନ୍ତି ଜଣେ ବିରଳ ପ୍ରତିଭା; ଭାରତରେ ସେ ପାରମ୍ପରିକ ଗଣିତ ଶିକ୍ଷା ପାଇ ନ ଥିଲେ ହେଁ ଏବେ ଏହା ତାଙ୍କ ଉପରେ ଲଦିଦେବାଟା ତାଙ୍କ ପାଇଁ ଗ୍ରହଣୀୟ ହେବ ନାହିଁ। ହାର୍ଡି ଲେଖିଥିଲେ, "ମୋର ଭୟ ଥିଲା ଯେ ରାମାନୁଜନ୍‌ଙ୍କ ପାଇଁ ବିରକ୍ତିକର କଥା ଉପରେ ଜୋର ଦେଲେ ତାଙ୍କର ଆତ୍ମବିଶ୍ୱାସ ଭାଙ୍ଗିଯିବ ଏବଂ ତାଙ୍କର ଅନ୍ତର୍ନିହିତ ପ୍ରେରଣା ନଷ୍ଟ ହୋଇଯିବ।"

ରାମାନୁଜନ୍ ପ୍ରତିମା ପୂଜାର ପରମ୍ପରାରେ ବଢ଼ିଥିଲେ ଏବଂ ଜୀବନର ପ୍ରତ୍ୟେକ ପାଦରେ କୁଳଦେବୀଙ୍କ ଉପଦେଶ ମାଗୁଥିଲେ। ସେ କହୁଥିଲେ ଯେ ତାଙ୍କର ଗାଣିତିକ ଅନ୍ତର୍ଦୃଷ୍ଟି ହେଉଛି ପ୍ରକୃତରେ ସେହି ଦେବୀଙ୍କର। ଯେଉଁ ଗାଣିତିକ ଉପପାଦ୍ୟଗୁଡ଼ିକର ସଠିକତା ପ୍ରତିପାଦନ କରିବା ପାଇଁ ପ୍ରଚଣ୍ଡ ବୌଦ୍ଧିକ ପରିଶ୍ରମ ଦରକାର ପଡ଼ିଥିଲା ଏବଂ ଯାହା ଗଣିତଜ୍ଞମାନଙ୍କୁ କିଂକର୍ତ୍ତବ୍ୟବିମୂଢ଼

କରୁଥିଲା ଯେ ଜଣେ କେହି ସେଗୁଡ଼ିକର ପରିକଳ୍ପନା କରିପାରିଥିଲା। ତେଣୁ ଏହା ହେଉଛି ଗୋଟିଏ ବହି ଏକ ଅସାଧାରଣ ଓ ଏକକ ମାନସ ବିଷୟରେ ଏବଂ ସେହି ମନର ଅସ୍ୱାଭାବିକ ବ୍ୟବହାରରୁ ମିଳୁଥିବା ସୃଜନଶୀଳତା, ଅନ୍ତର୍ଦୃଷ୍ଟି ଓ ଧୀଶକ୍ତି ସମ୍ପର୍କିତ ସୂଚନା ବିଷୟରେ।

ଅଧିକାଂଶ ବହି ଭଳି ଏଇଟି ମଧ୍ୟ ଗୋଟିଏ ନିର୍ଦ୍ଦିଷ୍ଟ ଅବଧାରଣାକୁ ନେଇ ଆରମ୍ଭ ହୋଇଥିଲା। ତେବେ ସେ ଚିନ୍ତାଟି ମୋର ନ ଥିଲା, ଥିଲା କ୍ରାଉନ ପ୍ରକାଶନର ବରିଷ୍ଠ ସମ୍ପାଦକ ବାର୍ବାରା ଗ୍ରସ୍‌ମାନ'ଙ୍କର। ଏବେ *ସ୍କ୍ରିବ୍‌ନର* ପ୍ରକାଶନ ସହିତ କାମ କରୁଥିବା ବାର୍ବାରା ରାମାନୁଜନ୍‌ଙ୍କ ବିଷୟରେ ପ୍ରଥମେ ଜାଣିଲେ 1987 ମସିହାରେ। ତାହା ଥିଲା ରାମାନୁଜନ୍‌ଙ୍କର ଜନ୍ମ ଶତବାର୍ଷିକୀ ସମୟ ଯେବେ ଆମେରିକା, ଇଂଲଣ୍ଡ ଓ ଭାରତର ପତ୍ରପତ୍ରିକା ସବୁରେ ତାଙ୍କ ବିଷୟରେ ଅନେକ ଲେଖା ବାହାରୁଥିଲା। କିଙ୍ଗସ୍ କଲେଜର ପ୍ରାର୍ଥନାଳୟରେ ମହଲାନବିଶ୍‌ଙ୍କ ଭଳି ବାର୍ବାରା ମଧ୍ୟ ଭାବବିହ୍ୱଳିତ ହୋଇପଡ଼ିଲେ। ପ୍ରଥମେ ରାମାନୁଜନ୍‌ଙ୍କର ଅସାଧାରଣ ଜୀବନ କାହାଣୀ ବାର୍ବାରାଙ୍କୁ ରୋମାଞ୍ଚିତ କଲା। ତାଙ୍କୁ ଆହୁରି ଅଧିକ ରୋମାଞ୍ଚିତ କଲା ଆଜି ରାମାନୁଜନ୍‌ଙ୍କ ମୃତ୍ୟୁର ଏତେ ବର୍ଷ ପରେ, କମ୍ପ୍ୟୁଟର ଯୁଗ ବେଶ୍ ଆଗେଇବା ସତ୍ତ୍ୱେ, ତାଙ୍କର କେତେକ ପୁରୁଣା ଉପପାଦ୍ୟକୁ ଉଦ୍ଧାର କରି କାମରେ ଲଗାଯାଉଛି।

ମୋର ପ୍ରକାଶନ ପ୍ରତିନିଧି ଭିକି ବିଜୁର ଯେବେ ରାମାନୁଜନ୍‌ଙ୍କ ଜୀବନୀ ଲେଖିବା ପାଇଁ ବାର୍ବାରାଙ୍କର ଆଗ୍ରହ ବିଷୟରେ ମତେ କହିଲେ, ମୋର ପ୍ରତିକ୍ରିୟା ଥିଲା, "ସେ କିଏ?" କାମଟିର ମୂଲ୍ୟ ବିଷୟରେ ମୋର ଅନେକ ସନ୍ଦେହ ଥିଲା, ତଥାପି ମୁଁ କିଛି ପଢ଼ାପଢ଼ି କଲି। ତାଙ୍କ ବିଷୟରେ ଭାରତୀୟ ଲେଖକମାନଙ୍କର କିଛି ଲେଖା ପଢ଼ିଲା ପରେ ମୁଁ ମଧ୍ୟ ରାମାନୁଜନ୍‌ଙ୍କ ମାୟାରେ ପଡ଼ିଗଲି। ତାଙ୍କର ଜୀବନ ଥିଲା ବୌଦ୍ଧିକ ଦୃଷ୍ଟିରୁ ଏକ 'ଫକୀରରୁ ରାଜେନ୍ଦ୍ର' କାହାଣୀ। 1930 ଦଶକରେ ଇଂରେଜ ଗଣିତଜ୍ଞ ବି. ଏମ୍. ୱିଲ୍‌ସନ୍ ଲେଖିଥିଲେ, "ସେ କାହାଣୀର କିଛି ଅଂଶ କେଉଁ ସିନେମାର କାହାଣୀରୁ ସିଧାସଳଖ ଉଠାଇ ଆଣିଥିବା ଭଳି ମନେହୁଏ।" ଏବେ ମୋର ସବୁ ସନ୍ଦେହ ମିଳେଇ ଗଲା ଏବଂ ଏହି ବିସ୍ମୟକର ଧୀମାନଙ୍କର ଜୀବନ କଥା ତନ୍ନତନ୍ନ କରି ଖୋଜିବାର ସୁଯୋଗ ବିଷୟରେ ଏକ ଉନ୍ମାଦନା ଆସିଲା।

କାମର ଆରମ୍ଭ ସମୟରେ ରାମାନୁଜନ୍‌ଙ୍କ ଜୀବନୀ ଉପରେ ଏକ ବୃତ୍ତଚିତ୍ର ମୁଁ ଦେଖିଲି। ତାହା ଥିଲା ବିବିସି ପ୍ରାୟୋଜିତ ଇଂରେଜ ସିନେମାକାର କ୍ରିଷ୍ଟୋଫର ସାଇକ୍‌ସ୍‌ଙ୍କର 'ଜଣେ ଭାରତୀୟ ଅମଲାଙ୍କ ଚିଠିପତ୍ର' (*ଲେଟର୍ସ୍ ଫ୍ରମ୍ ଆନ୍ ଇଣ୍ଡିଆନ୍ କ୍ଲର୍କ*)। ଏକ ଘଣ୍ଟା ଅବଧିର ଏହି ବୃତ୍ତଚିତ୍ରଟି ରାମାନୁଜନ୍‌ଙ୍କ ଜୀବନର ଏକ ଚମତ୍କାର ଉପସ୍ଥାପନା ଥିଲା। କିନ୍ତୁ ଏହାକୁ ଦେଖିବା ପରେ ଜି. ଏଚ୍. ହାର୍ଡି ମଧ୍ୟ ମୋତେ ରହସ୍ୟମୟ ମନେ ହେଲେ। ମୁଁ ଜାଣିବାକୁ ପାଇଲି ଯେ ସାହାଯ୍ୟ ପାଇଁ ରାମାନୁଜନ୍‌ଙ୍କ ଚିଠି ପାଇବାରେ ହାର୍ଡି ଥିଲେ ତୃତୀୟ ଇଂରେଜ ଗଣିତଜ୍ଞ। ପ୍ରଥମ ଦୁଇ ଜଣଙ୍କ ପାଖରୁ ନିରାଶ ହେବା ପରେ ରାମାନୁଜନ୍ ହାର୍ଡିଙ୍କୁ ଚିଠି ଲେଖିଥିଲେ। ହାର୍ଡି କେବଳ ଯେ ରାମାନୁଜନ୍‌ଙ୍କ ପ୍ରତିଭାକୁ ଚିହ୍ନିପାରିଲେ ତାହା ନୁହେଁ, ଅନେକ କଷ୍ଟ କରି ସେ ରାମାନୁଜନ୍‌ଙ୍କୁ ଇଂଲଣ୍ଡ ଆଣିଲେ, ରାମାନୁଜନ୍‌ଙ୍କ ପାଇଁ ଅଜଣା ଥିବା ଗଣିତର କିଛି ବିଶେଷ ଦିଗ ସହିତ ତାଙ୍କୁ ପରିଚିତ କରାଇଲେ ଏବଂ ତାଙ୍କ ଆଡ଼କୁ ସାରା ଦୁନିଆର ଦୃଷ୍ଟି ଆକର୍ଷିତ କରାଇଲେ।

କାହିଁକି ହାର୍ଡି?

କେବଳ ତାଙ୍କର କ'ଣ ଗାଣିତିକ ସୂକ୍ଷ୍ମ ଦୃଷ୍ଟି ଥିଲା? ବୋଧହୁଏ ନା, କାରଣ ରାମାନୁଜନ୍‌ଙ୍କୁ ଚିହ୍ନି ପାରି ନ ଥିବା ଅନ୍ୟ ଦୁଇ ଗଣିତଜ୍ଞ ମଧ୍ୟ ହାର୍ଡିଙ୍କର ସମକକ୍ଷ ଥିଲେ। ହାର୍ଡିଙ୍କ ପାଖରେ ନିଶ୍ଚୟ ଅନ୍ୟ କିଛି ସ୍ୱତନ୍ତ୍ର ଗୁଣ ରହିଥିଲା ଯାହା ଜଣେ ଅଜଣା ଲୋକଙ୍କ ପାଇଁ ନିଜ ପ୍ରତିଷ୍ଠାକୁ ବାଜି ଲଗାଇବା ଦିଗରେ ତାଙ୍କୁ ଆଗେଇ ନେଲା। ବିଶେଷ ଧରଣର ଖୋଲାମନ ଓ ନିଜ ଜୀବନକୁ ବିଶୃଙ୍ଖଳିତ କରିବା ପାଇଁ ସମ୍ମତି ଭଳି ସେ ଗୁଣ ହୁଏତ ବୌଦ୍ଧିକ ଦୃଷ୍ଟିରୁ ତଳ ସ୍ତରର ମାନବିକ ଆବେଗ ଥିଲା।

ହାର୍ଡିଙ୍କ ବିଷୟରେ ମୁଁ ଜାଣିଲି ଯେ ତାଙ୍କର ବ୍ୟକ୍ତିତ୍ୱ ଅଦ୍ଭୁତ ଓ ଆକର୍ଷଣୀୟ ଥିଲା। ସେ ଗଭୀର ଭାବରେ କ୍ରିକେଟପ୍ରେମୀ ଥିଲେ ଏବଂ ତାଙ୍କର ଗଦ୍ୟ ରଚନା ଶୈଳୀ ଉଚ୍ଚକୋଟୀର ଥିଲା। ଦେଖିବାକୁ ସେ ଅତି ସୁନ୍ଦର ଥିଲେ, କିନ୍ତୁ ନିଜ ଆଖିରେ ତାଙ୍କ ଚେହେରା ଏତେ କଦର୍ଯ୍ୟ ଥିଲା ଯେ, ସେ ଦର୍ପଣରେ ନିଜକୁ ଦେଖୁ ନ ଥିଲେ। ରାମାନୁଜନ୍‌ଙ୍କ ଚିଠି ପାଇବା ସମୟରେ ଇଂରେଜ ଗଣିତଜ୍ଞଙ୍କ ଭିତରେ ଏହି ଅଣପାରମ୍ପରିକ ଓ ବିବାଦୀୟ ବ୍ୟକ୍ତି ଗଣିତ କ୍ଷେତ୍ରରେ ଏକ ବୈପ୍ଳବିକ କାମରେ ଲାଗିଥିଲେ ଯାହାର ପ୍ରଭାବ ଅନେକ ପିଢ଼ି ଧରି ଅନୁଭୂତ ହେବ।

ସାଧାରଣ ବାହ୍ୟରୂପ ଭିତରେ ଗଭୀର ପ୍ରତିଭାକୁ ଦେଖିବାର ଦକ୍ଷତା ନିମନ୍ତେ ହାର୍ଡି ନିଶ୍ଚୟ ପ୍ରଶଂସାର ପାତ୍ର। ଏହା ଫଳରେ ସାରା ଦୁନିଆ ଯେ ଲାଭବାନ ହେଲା ତାହା ମଧ୍ୟ ମାନିବାର କଥା। ତେବେ ମୁଁ ଲକ୍ଷ୍ୟ କଲି ଯେ ଏଥିରେ ହାର୍ଡି ମଧ୍ୟ ବିଶେଷ ଲାଭ ପାଇଲେ। ରାମାନୁଜନ୍‌ଙ୍କ ସହିତ କଟାଇଥିବା ସମୟତକ ତାଙ୍କର ପୂରା ଜୀବନକୁ ପ୍ରଭାବିତ କରିଥିଲା। ସେହି ସମୟକୁ ହାର୍ଡି କହନ୍ତି, "ମୋର ଜୀବନର ଏକମାତ୍ର ଅନୁରାଗଭରା ଘଟଣା"। ତେଣୁ ଏ କାହାଣୀଟି ଦୁଇଟି ମଣିଷଙ୍କର ଏବଂ ସେ ଦୁହିଁଙ୍କ ଭିତରେ ଜଣଙ୍କର ଅପର ଉପରେ ପ୍ରଭାବ ବିଷୟରେ।

ଆଉ ଗୋଟିଏ କଥା ମତେ ନିଶ୍ଚୟ କହିବାକୁ ହେବ, ଯଦିଓ ଏହା କିଛି ଲୋକଙ୍କ ସହିତ ମନାନ୍ତର ସୃଷ୍ଟି କରିବ। ଆମେରିକାବାସୀଙ୍କ ପାଇଁ ଭାରତ ଓ କେମ୍ବ୍ରିଜ ନିଶ୍ଚିତ ଭାବରେ ପରରାଷ୍ଟ୍ର ଏବଂ ଏଲ୍. ପି. ହାର୍ଟଲିଙ୍କ ଭାଷାରେ ଅତୀତ ମଧ୍ୟ ଏକ ଅପରିଚିତ ମୁଲକ, "ସେଠାକାର ଚାଲିଚଳନ ଅଲଗା"। ତେଣୁ ଆମ କାହାଣୀର ଆରମ୍ଭ ସମୟ, ବିଂଶ ଶତାବ୍ଦୀର ଆଦ୍ୟକାଳ ଯେତେବେଳେ ଭାରତ ଇଂରେଜ ସାମ୍ରାଜ୍ୟର ଅଂଶ ଥିଲା ଓ ଭିକ୍ଟୋରିଆ ମହାରାଣୀ ଥିଲେ, ହେଉଛି ଆବିଷ୍କାର ଅପେକ୍ଷାରେ ଥିବା ଏକ ଦ୍ୱିତୀୟ ଅପରିଚିତ ଦୁନିଆ। ଭୌତିକ ଦୂରତା ଓ ସମୟ ଦୃଷ୍ଟିରୁ ବହୁ ଦୂରରେ ଥିବା ଏହି ଦୁଇ ଦୁନିଆ ସହିତ ମୁଁ ଏବେ ଏକ ତୃତୀୟ ଦୂରନ୍ତ ଦୁନିଆ ଯୋଡ଼ିବି। ତାହା ହେଉଛି ଗଣିତ – ରାମାନୁଜନ୍‌ଙ୍କର ଓ ହାର୍ଡିଙ୍କର ଜୀବନବ୍ୟାପୀ ଏକକ ଓ ମିଳିତ ସାଧନାର କ୍ଷେତ୍ର।

ରାମାନୁଜନ୍‌ଙ୍କ ଜୀବନର କେବଳ ବିଚିତ୍ର ଓ ରସଯୁକ୍ତ ଅଂଶକୁ ପ୍ରାଧାନ୍ୟ ଦେଇ ଏବଂ ଗଣିତକୁ ବାଦ୍ ଦେଇ ଏ ଜୀବନୀ ଲେଖିବା ଏକ ଲୋଭନୀୟ ପ୍ରସ୍ତାବ। ବାସ୍ତବରେ ଆଗରୁ ରାମାନୁଜନ୍‌ଙ୍କ ବିଷୟରେ ଲେଖିଥିବା ପ୍ରାୟ ସବୁ ଲେଖକ ତାଙ୍କ କାମକୁ ଜୀବନ କଥାରୁ ଅଲଗା କରି ରଖିଛନ୍ତି। ଅଧିକାଂଶ ଜୀବନୀ ଗଣିତକୁ ପୂରା ଏଡ଼ାଇ ଯାଇଛନ୍ତି ବା ବହିର ଶେଷରେ ରଖିଛନ୍ତି। ସେହିଭଳି ରାମାନୁଜନ୍‌ଙ୍କ ଗଣିତ ବିଷୟରେ ଥିବା ନିବନ୍ଧଗୁଡ଼ିକରେ ତାଙ୍କ ଜୀବନର ଚର୍ଚ୍ଚା ଅତି ସୀମିତ ଥାଏ।

କିନ୍ତୁ ଯେଉଁ ଗଣିତକୁ ରାମାନୁଜନ୍ ଗଭୀର ଭାବରେ ଭଲ ପାଉଥିଲେ ଏବଂ ଯାହା ତାଙ୍କ ଜୀବନର ଆଧାର ଥିଲା ତା ବିଷୟରେ ସାମାନ୍ୟ ଧାରଣା ନ ଥାଇ ଆମେ ରାମାନୁଜନ୍‌ଙ୍କ ଜୀବନକୁ ବୁଝିପାରିବା କି? ଅନ୍ୟ ଭାଷାରେ କହିଲେ, ଜଣେ କଳାକାରର କଳା ବିଷୟରେ କିଛି ବି ଧାରଣା ନ ଥାଇ କଳାକାରକୁ ଆମେ ବୁଝିପାରିବା କି? ଦାର୍ଶନିକର ଚିନ୍ତାଧାରାକୁ ନ ଛୁଇଁ ତା'ର ଜୀବନକୁ ବୁଝିବା କି?

ମୁଁ ବୁଝୁଛି ଯେ ସାଧାରଣ ପାଠକ ଓ ଲେଖକ ପାଇଁ ଗଣିତ ସ୍ୱତନ୍ତ୍ର ସମସ୍ୟା ସୃଷ୍ଟି କରେ। କାରୁକଳା ବିଷୟରେ ପଢ଼ିଲା ବେଳେ ସେ ସବୁକୁ ଜଣେ ଦେଖିପାରିବ। ଦର୍ଶନ ଓ ସାହିତ୍ୟ ଯେତେ ଜଟିଳ ହେଲେ ମଧ୍ୟ ସାଧାରଣ ଭାଷାରେ ତାହା ଲେଖା ଯାଇପାରିବ। କିନ୍ତୁ ଗଣିତର ଭାଷା ବିଚିତ୍ର ସଙ୍କେତ ସବୁରେ ଭରା ଯାହା ଅଧିକାଂଶ ଲୋକଙ୍କ ପାଇଁ ଅପରିଚିତ। ଆହୁରି ମଧ୍ୟ ଗଣିତର ପରିସର ଅତି ଛୋଟ ଠାରୁ ଅତି ବଡ଼ ଯାଏଁ ବ୍ୟାପିଥାଏ ଯାହାକୁ ସାଧାରଣ ଭାଷାରେ ପ୍ରକାଶ କରିବା ମଧ୍ୟ କଷ୍ଟକର କଥା, ବୁଝିବା ତ ଆହୁରି ଦୁରୂହ। ମୁଁ ଶୁଣିଛି ଗଣିତ ଭିତରେ ଆଜି ଏତେ ସ୍ୱତନ୍ତ୍ର ଧାରା ରହିଛି ଯେ ଗବେଷଣା ପତ୍ରିକାରେ ପ୍ରକାଶିତ ଅଧିକାଂଶ ଗାଣିତିକ ନିବନ୍ଧ ଖୁବ୍ କମ୍ ଭାଗ ଗଣିତଜ୍ଞଙ୍କ ପାଇଁ ବୋଧଗମ୍ୟ ହୁଏ। ପେନ୍‌ସିଲ୍‌ଭାନିଆ ରାଜ୍ୟର ଜର୍ଜ ଆଣ୍ଡ୍ରୁଜ୍ ଟ୍ରିନିଟିଠାରେ ଅଜଣା ଅବସ୍ଥାରେ ଥିବା ରାମାନୁଜନ୍‌ଙ୍କର ଗୋଟିଏ ପାଣ୍ଡୁଲିପିର ଆବିଷ୍କାରକ। ସେ କହନ୍ତି ଯେ ଗଣିତର ଏକ ସ୍ୱତନ୍ତ୍ର ଓ କ୍ଷୁଦ୍ର କ୍ଷେତ୍ରରେ ବିଶେଷ ଦକ୍ଷତା ଥିବା ଲୋକ ହିଁ ସେହି ପାଣ୍ଡୁଲିପିର ଗୁରୁତ୍ୱ ବୁଝିପାରିବ। ପି.ଏଚ୍. ଡି. ଡିଗ୍ରୀଧାରୀ ଯେ କୌଣସି ପେଷାଦାର ଗଣିତଜ୍ଞଙ୍କ ପାଇଁ ତାହା ଆଦୌ ସମ୍ଭବ ହେବନାହିଁ।

ତେବେ ରାମାନୁଜନ୍‌ଙ୍କ କାମକୁ ସାମ୍ନା କରୁଥିବା ସାଧାରଣ ପାଠକ ପାଇଁ କ'ଣ ବା ଆଶା ରହିଛି?

ଯଦି ଜଣେ କୌଣସି 20 ପୃଷ୍ଠା ଲମ୍ବା ଦୁର୍ବୋଧ ଗାଣିତିକ ସଙ୍କେତଭରା ନିବନ୍ଧର ପ୍ରମାଣକୁ ବୁଝିବାକୁ ଚେଷ୍ଟା କରେ, ତା ପାଇଁ ଆଶା ନିଶ୍ଚିତ ଭାବରେ କମ୍। ରାମାନୁଜନ୍‌ଙ୍କ ନିବନ୍ଧରେ ଏହି ସମସ୍ୟା ଆହୁରି ଗୁରୁତର - ପ୍ରମାଣର ଡଜନେ ପାଦକୁ ସେ ନିୟମିତ ଭାବରେ ସଂକୁଚିତ କରି ଦୁଇ ତିନିଟି ପାଦରେ ପ୍ରକାଶ କରୁଥିଲେ ଏବଂ ମଝିର ପାଦଗୁଡ଼ିକୁ ପୂରଣ କରି ପ୍ରମାଣର ପ୍ରବାହ ବୁଝିବା କାମଟି ପାଠକର ଦାୟିତ୍ୱ ହେଉଥିଲା। ତଥାପି ଜଣେ ଯଦି ରାମାନୁଜନ୍‌ଙ୍କ କାମର ମୋଟାମୋଟି ସ୍ୱାଦ ପାଇବାକୁ ଚାହେଁ, ତାଙ୍କ କାମର ବିକାଶ ଧାରାର ଓ ଐତିହାସିକ ପୃଷ୍ଠଭୂମିର ଧାରଣା ପାଇବାକୁ ଚାହେଁ...? ତାହା ପୂରା ଅସାଧ ହେବା କଥା ନୁହେଁ। କୌଣସି ଜଟିଳ ଦାର୍ଶନିକ ତର୍କ ବା ସାହିତ୍ୟକୃତି ଆଦିର ମୋଟାମୋଟି ଧାରଣା ପାଇବା ଠାରୁ ବେଶି କଷ୍ଟକର କଥା ନୁହେଁ।

ଗୋଟିଏ ଦୃଷ୍ଟିରୁ ଦେଖିଲେ ଗଣିତର ଅନ୍ୟ କେତେ ବିଭାଗ ତୁଳନାରେ ରାମାନୁଜନ୍‌ଙ୍କ କାମକୁ ବୁଝିବା ସହଜ। କାରଣ ତାଙ୍କର କାମ ଆସେ ସଂଖ୍ୟାତତ୍ତ୍ୱ ବିଭାଗରେ ଯାହା ଆମର ନିତିଦିନିଆ କାମରେ ଲାଗୁଥିବା ସାଧାରଣ ସଂଖ୍ୟାମାନଙ୍କର ଗୁଣଧର୍ମ ଓ ବ୍ୟବହାରକୁ ବୁଝିବାକୁ ଚେଷ୍ଟା କରେ। 8, 19, 376 ଭଳି ସଂଖ୍ୟାଗୁଡ଼ିକ ନିଶ୍ଚୟ କ୍ୱାର୍କ୍, କ୍ୱାଜାର ବା ଫସ୍ଫୋକ୍ରିଏଟିନ୍ ଆଦି ଶବ୍ଦ ତୁଳନାରେ ଆମ ପାଇଁ ବେଶି ପରିଚିତ। ରାମାନୁଜନ୍ ତାଙ୍କର ଗାଣିତିକ ସମାଧାନ ପାଇଁ ଯେଉଁ

ସୂତ୍ର ଓ କୌଶଳ ସବୁ କାମରେ ଲଗାଉଥିଲେ ସେଗୁଡ଼ିକ ବେଶ୍ ସୂକ୍ଷ୍ମ ଓ ଶକ୍ତିଶାଳୀ ଥିଲେ। କିନ୍ତୁ ସେ ଯେଉଁ ସବୁ ସମସ୍ୟା ଉପରେ ସେ କୌଶଳଗୁଡ଼ିକ ପ୍ରୟୋଗ କରୁଥିଲେ ତାହା ଆଶ୍ଚର୍ଯ୍ୟଜନକ ଭାବରେ ସରଳ ଥିଲା।

ଏହି ବହିକୁ ରୂପ ଦେବାରେ ଅଗଣିତ ବ୍ୟକ୍ତି ମତେ ସାହାଯ୍ୟ କରିଛନ୍ତି। କିନ୍ତୁ ସାମଗ୍ରିକ ଭାବରେ ଦକ୍ଷିଣ ଭାରତର ଲୋକମାନେ ଏଥି ପାଇଁ ବିଶେଷ ଧନ୍ୟବାଦର ପାତ୍ର। ସେଠାରେ ମୁଁ ବିତାଇଥିବା ସମୟତକ ମୋ ପାଇଁ ବ୍ୟକ୍ତିଗତ ଭାବରେ ସନ୍ତୋଷଜନକ ହୋଇଛି।

ରାମାନୁଜନ୍‌ଙ୍କ ଜୀବନକୁ ଛୁଇଁଥିବା ସ୍ଥାନଗୁଡ଼ିକ ଦେଖିବା ପାଇଁ ମୁଁ ପାଞ୍ଚ ସପ୍ତାହ ଧରି ଦକ୍ଷିଣ ଭାରତରେ ବୁଲିଛି। ମୁଁ ରେଳଗାଡ଼ି ଓ ବସ୍ ଚଢ଼ିଛି, ମନ୍ଦିରକୁ ଯାଇଛି, କଦଳୀପତ୍ରରେ ହାତରେ ଖାଇଛି। କୁମ୍ଭକୋଣମ୍‌ର ରାସ୍ତାରେ ଗାଈଟିଏ ମତେ ପଛରୁ ଧକ୍କା ମାରିଛି, କୋଦୁମୁଡିରେ ଗୋଟିଏ କୋଠରୀରେ ଏଣ୍ଡୁଅଟିଏ ସହିତ ରହିଛି। ରାମାନୁଜନ୍‌ଙ୍କ ଜନ୍ମସ୍ଥାନ ଇରୋଡ୍‌କୁ ମୁଁ ଯାଇଛି। ସେ ଯେଉଁ ଘରେ ବଢ଼ିଥିଲେ ତାହା ମୁଁ ଦେଖିଛି, ତାଙ୍କ ସ୍କୁଲର ସକାଳ ବ୍ୟାୟାମରେ ଭାଗ ନେଇଛି, ତାଙ୍କ ଜୀବନର ଘଡ଼ିସନ୍ଧି ମୁହୂର୍ତ୍ତରେ ସେ ନାମାକ୍କାଲ୍‌ର ଯେଉଁ ମନ୍ଦିରକୁ ଆସୁଥିଲେ ତା'ର ବେଢ଼ାରେ ମୁଁ ବୁଲିଛି ଏବଂ ମାନ୍ଦ୍ରାଜରେ ଯେଉଁ କୋଠରୀରେ ସେ ଶେଷନିଶ୍ୱାସ ଛାଡ଼ିଥିଲେ ତାହା ମୁଁ ଦେଖିଛି। ଦକ୍ଷିଣ ଭାରତର ଲୋକମାନେ ମତେ ତାଙ୍କ ଘରକୁ ନେଇଛନ୍ତି ଏବଂ ମୋ ପ୍ରତି ଅତି ସଦୟ ହୋଇଛନ୍ତି। ଅଟୋରିକ୍ସା ଓ ସାଇକଲରିକ୍ସା ଚାଳକମାନେ ଅତି କଷ୍ଟ କରି ମତେ ଦୁର୍ଗମ ଜାଗା ସବୁ ବୁଲାଇଛନ୍ତି। ମୋର ଅଦ୍ଭୁତ ଉଚ୍ଚାରଣ ସତ୍ତ୍ୱେ ଦକ୍ଷିଣ ଭାରତର କେତେ ଜାଗାର ନାଁକୁ ସେମାନେ ଚେଷ୍ଟା କରି ବୁଝିଛନ୍ତି। ମୋର ଧଳା ଚମକୁ ସେମାନେ ହାଁ କରି ଦେଖିଛନ୍ତି, କିନ୍ତୁ ସବୁବେଳେ ମୋ ସହିତ ସଦୟ ଓ ଶୁଭେଚ୍ଛାପୂର୍ଣ୍ଣ ବ୍ୟବହାର କରିଛନ୍ତି।

ଦକ୍ଷିଣ ଭାରତର ଲୋକଙ୍କ ଭିତରେ କିଛି ସମୟ କଟାଇବା ପରେ କାହାର ଆଧ୍ୟାତ୍ମିକତା ନ ବଢ଼ି ରହିପାରିବ ନାହିଁ। ପାଶ୍ଚାତ୍ୟ ଜୀବନଧାରା ଓ ମୂଲ୍ୟବୋଧକୁ ପ୍ରଶ୍ନ କରୁଥିବା ଅଦୃଶ୍ୟ ଜଗତ ପ୍ରତି ଜଣକର ସମ୍ମାନ ମଧ୍ୟ ବଢ଼ିଯିବ। ଶହ ଶହ ବର୍ଷ ଧରି ପାଶ୍ଚାତ୍ୟ ଦେଶଗୁଡ଼ିକରେ କଳାକାରମାନେ ବାକ୍ ଭଜନ ଓ ଗଥୀୟ ଗୀର୍ଜା ସୃଷ୍ଟି କରିବା ଜରିଆରେ ଧାର୍ମିକ ଭାବନାକୁ ପ୍ରସ୍ଫୁଟିତ କରିବାକୁ ଏବଂ ଈଶ୍ୱରଙ୍କୁ କୃତଜ୍ଞତା ଓ ସମ୍ମାନ ଜଣାଇବାକୁ ଚେଷ୍ଟା କରିଛନ୍ତି। ଦକ୍ଷିଣ ଭାରତରେ ସେହି ଧାର୍ମିକ ଭାବନା ଏବେ ମଧ୍ୟ ସାରା ବାତାବରଣରେ ଭରିରହିଛି। ରାମାନୁଜନ୍‌ଙ୍କ ଗଣିତରେ ଯେଉଁ ଆଧ୍ୟାତ୍ମିକ ସମ୍ବେଦନ ଅନୁଭୂତ ହୁଏ, ତାହା ଧର୍ମନିରପେକ୍ଷ ପାଶ୍ଚାତ୍ୟ ତୁଳନାରେ ଦକ୍ଷିଣ ଭାରତର ବାତାବରଣରେ ହିଁ ପ୍ରାକୃତିକ ମନେହୁଏ।

ରାମାନୁଜନ୍‌ଙ୍କ ପୃଷ୍ଠପୋଷକ ହାର୍ଡି ଜଣେ ଦୃଢ଼ ନାସ୍ତିକ ଥିଲେ। ତଥାପି ତାଙ୍କର ମୃତ୍ୟୁରେ ଜଣେ ଶୋକପ୍ରକାଶ କରି କହିଥିଲେ, "ହାର୍ଡିଙ୍କର ଗଭୀର ବିଶ୍ୱାସ ଥିଲା ଯେ ଗାଣିତିକ ସତ୍ୟ ବିଶ୍ୱକୁ ଏକ ଉଜ୍ଜ୍ୱଳ ଓ ସ୍ୱଚ୍ଛ, ଅତୀବ ସୁନ୍ଦର ଓ ସୁଗଠିତ ସୃଷ୍ଟି ଭାବରେ ପରିକଳ୍ପନା କରିଥାଏ। ତାହା ତୁଳନାରେ ଭୌତିକ ବିଶ୍ୱ ହେଉଛି ମଳିନ ଓ ବିଶୃଙ୍ଖଳ। ଏଥିଯୋଗୁ ତାଙ୍କର ସାଥୀମାନେ ଭାବୁଥିଲେ ଯେ ଗଣିତ ପ୍ରତି ତାଙ୍କ ମାନସିକତାରେ ଆଧ୍ୟାତ୍ମିକତା ଭଳି କିଛି ରହିଥିଲା, ଯାହା ଧାର୍ମିକ ଚିନ୍ତାର ବେଶ୍ ପାଖାପାଖି ଥିଲା।"

ସେହି କଥା ରାମାନୁଜନ୍‌ଙ୍କ ପାଇଁ ମଧ୍ୟ କୁହାଯାଇପାରେ, କିନ୍ତୁ ଯଥେଷ୍ଟ ବେଶୀ ଜୋର ସହିତ। ଜୀବନ ସାରା ରାମାନୁଜନ୍ ହିନ୍ଦୁ ଦେବାଦେବୀଙ୍କ ଉପରେ ବିଶ୍ୱାସ ରଖିଥିଲେ ଏବଂ ଉଭୟ ଗାଣିତିକ ଓ ଆଧ୍ୟାତ୍ମିକ ବିଚାରରେ ଅସୀମକୁ ହିଁ ନିଜର ଦୁନିଆ ଭାବରେ ଆଦରି ନେଇଥିଲେ। ସେ ଥରେ କହିଥିଲେ, "କୌଣସି ଗାଣିତିକ ସୂତ୍ର ମୋ ପାଇଁ ଅର୍ଥହୀନ ଯଦି ତାହା ଈଶ୍ୱରଙ୍କର କିଛି ଚିନ୍ତାର ପରିପ୍ରକାଶ ନୁହେଁ।"

ବାଲ୍ଟିମୋର୍
ମେ ୧୯୯୦

# 1

# ଶୀତଳ ମନ୍ଦିର ବେଢ଼ାରେ

(1887–1903)

### 1. ଦକ୍ଷିଣ ଗଙ୍ଗା

ଥପ୍... ଥପ୍... ଥପ୍... - ଜୀବନ ସାରା ସେ ଏହି ଶବ୍ଦ ଶୁଣି ଆସିଛନ୍ତି। କାବେରୀ ନଦୀର କୂଳରେ ଅଗଭୀର ପାଣି ଭିତରୁ ମୁଣ୍ଡ ଟେକିଥିବା ପଥର ଉପରେ ଓଦା ଲୁଗା ପିଟା ହେବାର ଧୀର ମନ୍ଥର ଶବ୍ଦ। କାବେରୀ ନଦୀର କୂଳରେ ତାଙ୍କର ଜନ୍ମ, ତେଣୁ ଶୈଶବରୁ ହିଁ ସେ ଏ ଶବ୍ଦ ଶୁଣୁଛନ୍ତି। ନଈରୁ ପାଣି ଆଣିଲାବେଳେ, ସେଥିରେ ଗାଧୋଇବା ସମୟରେ ବା ସ୍କୁଲ ଛୁଟି ପରେ ନଈକୂଳ ବାଲିରେ ଖେଳିଲାବେଳେ ସେ ଏହି ଶବ୍ଦ ଶୁଣି ଶୁଣି ବଢ଼ିଛନ୍ତି। ଅନେକ ଦିନ ପରେ, କେତେ ବର୍ଷ ବିଦେଶରେ କଟାଇ ଭାରତକୁ ଫେରିବାପରେ, ରୁଗ୍‌ଣ ଓ ଜ୍ୱରାକ୍ରାନ୍ତ ଜୀବନର ପ୍ରାୟ ଶେଷ ଅବସ୍ଥାରେ ସେ ସେହି ନାଦ ପୁଣି ଶୁଣିଛନ୍ତି।

ରାମାନୁଜନ୍‌ଙ୍କ ଜୀବନରେ କାବେରୀ ଗୋଟିଏ ପରିଚିତ ଧ୍ରୁବ ହୋଇ ରହିଥିଲା ଯାହା ବାରମ୍ବାର ତାଙ୍କ ଜୀବନକୁ ଛୁଉଁଥିଲା। ତା'ର କୂଳରେ କେତେ ଜାଗାରେ ଓଜନିଆ ଫଳଭରା ତାଳ ଗଛସବୁ ପାଣି ଉପରକୁ ନଇଁ ରହିଥିଲେ। ଆଉ କେତେ ଜାଗାରେ ଝଙ୍କା ଗଛମାନ ନଈକୁ ସବୁଜ ଚାନ୍ଦୁଆରେ ଢାଙ୍କି ଦେଇଥିଲେ। ତାଙ୍କର ଅଙ୍କାବଙ୍କା ଗଣ୍ଠିଗଣ୍ଠିଆ ମୋଟା ଚେରଗୁଡ଼ିକ ସାପ ଭଳି ନଈ କୂଳରେ ମାଡ଼ିଥିଲେ। ବର୍ଷାଦିନରେ କାବେରୀ ଫୁଲି ଉଠୁଥିଲା, ତା'ର ପାଣି ଦଶ ପନ୍ଦର କୋଡ଼ିଏ ଫୁଟ ଯାଏଁ ଉଠିଯାଉଥିଲା। କେବେ କେବେ କୂଳରେ ଚରୁଥିବା ଗାଈଗୋରୁ ସେ ପାଣିରେ ଭାସି ବି ଯାଉଥିଲେ। କିନ୍ତୁ ଖରାଦିନେ ତା'ର କୂଳଡିଆଁ ପାଣି ସ୍ୱପ୍ନର କଥା ଥିଲା, ତା'ର ତଟ ବିସ୍ତୃତ ବାଲିଭରା ବେଳାଭୂମି ପାଲଟୁଥିଲା। ବାଲି ପଡ଼ିଆର ମଝିରେ ନଈର ଗଭୀରତମ ଅଂଶରେ କାବେରୀ ଏକ ଦୁର୍ବଳ ଧାରଟିଏ ହୋଇ ବହୁଥିଲା।

କିନ୍ତୁ କାବେରୀ କେବେ ଉଭେଇ ଯାଉନଥିଲା। ପାଞ୍ଚଶହ ମାଇଲ ପଶ୍ଚିମରେ ଥିବା କୁର୍ଗ ପର୍ବତମାଳାରୁ ବାହାରି, କେତେ ଶାଖା ଉପଶାଖା ମେଲାଇ, ଦାକ୍ଷିଣାତ୍ୟ ଭୂଖଣ୍ଡ ଉପରେ ତାହା ବହିଯାଉଥିଲା। ବନ୍ଧ ଓ କେନାଲ ସାହାଯ୍ୟରେ କାବେରୀର ପାଣି ତା'ର ଅବବାହିକାରେ ମାଡୁଥିଲା ଓ ସାରା ଅଞ୍ଚଳକୁ ମନଲୋଭା ସବୁଜିମାରେ ଭରୁଥିଲା। ତା ଦେହରେ କିଛି ବନ୍ଧ ଓ କେନାଲ ପନ୍ଦର

ଶହ ବର୍ଷ ତଳୁ ଗଢ଼ା ହୋଇଥିଲା। ସେହି ସବୁଜ ସରସ ପରିବେଶ ହିଁ ରାମାନୁଜନ୍‌ଙ୍କ ଦୁନିଆକୁ ତା'ର ନିଜସ୍ୱ ରୂପ ଦେଇଥିଲା।

ରାମାନୁଜନ୍‌ଙ୍କ ଘର, ମାନ୍ଦ୍ରାଜଠାରୁ 160 ମାଇଲ୍ ଦୂର ତାଞ୍ଜୋର ଜିଲ୍ଲାର କୁମ୍ଭକୋଣମ୍ ସହର, ଅତି ପାରମ୍ପରିକ ଦକ୍ଷିଣ ଭାରତର ଅଭ୍ୟନ୍ତରରେ ରହିଥିଲା। କାବେରୀ ଓ ତା'ର ଏକ ଶାଖା ନଦୀ କୁମ୍ଭକୋଣମ୍ ସହରକୁ ଘେରି ରହିଥିଲେ। ତାଞ୍ଜୋର ଜିଲ୍ଲାର ତିନିହଜାର ସାତଶହ ବର୍ଗ ମାଇଲ କ୍ଷେତ୍ରଫଳର ଅଧାଅଧି ଅଞ୍ଚଳକୁ କାବେରୀ ହିଁ ପାଣି ଯୋଗାଉଥିଲା। କାବେରୀର ପତନ ତୀଖା ନଥିଲା। ମାଇଲ ପ୍ରତି ପ୍ରାୟ ତିନି ଫୁଟ ହାରରେ ଖସି ତାହା ସମୁଦ୍ର ଆଡ଼କୁ ବହୁଥିଲା ଏବଂ ତା'ର ଅବବାହିକାରେ ପଟୁମାଟି ଖେଳାଇ ଚାଲିଥିଲା।

କାବେରୀର ଆଶୀର୍ବାଦ ଅନାବିଳ ଥିଲା। 1853 ମସିହାରେ କାବେରୀର ବନ୍ୟା ଯେତେବେଳେ ସାରା ଅବବାହିକାକୁ ପ୍ଲାବିତ କଲା ଓ ଅନେକ କ୍ଷୟକ୍ଷତି ଘଟାଇଲା, ଖୁବ୍ କମ୍ ଜୀବନହାନୀ ଘଟିଥିଲା। ଭାରତର ଅଧିକାଂଶ ଅଞ୍ଚଳ ମୌସୁମୀ ପ୍ରବାହର ଅନିୟମିତତା ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୁଅନ୍ତି। କିନ୍ତୁ କାବେରୀ ତା'ର ପାଖ ଅଞ୍ଚଳ ସବୁକୁ ଏହାଠାରୁ ସୁରକ୍ଷା ଦେଉଥିଲା। 1877 ମସିହାରେ ଲାଗ ଲାଗ ଦୁଇବର୍ଷ ଧରି ଠିକ୍ ବର୍ଷା ନ ହେବା ଫଳରେ ଦକ୍ଷିଣ ଭାରତରେ ମରୁଡ଼ି ଛାଇଗଲା, ଯେଉଁଥିରେ ହଜାର ହଜାର ଲୋକ ପ୍ରାଣ ହରାଇଥିଲେ। କିନ୍ତୁ ନିର୍ଭରଯୋଗ୍ୟ କାବେରୀ ଦ୍ୱାରା ପ୍ରତିପାଳିତ ତାଞ୍ଜୋର ଜିଲ୍ଲାକୁ ମରୁଡ଼ି ପ୍ରାୟ ଛୁଇଁ ନ ଥିଲା। ବରଂ ମରୁଡ଼ି କବଳିତ ଅଞ୍ଚଳ ସବୁରେ ଖାଦ୍ୟଶସ୍ୟର ମୂଲ୍ୟ ବଢ଼ିବା ଫଳରେ କାବେରୀ ଅବବାହିକା ଅଧିକ ସମୃଦ୍ଧ ହୋଇଥିଲା।

ତେଣୁ ହଜାରେ ମାଇଲ ଉତ୍ତରରେ ଥିବା ଗଙ୍ଗା ନଦୀ ଭଳି କାବେରୀ ମଧ୍ୟ ଏକ ପବିତ୍ର ନଦୀର ମାନ୍ୟତା ପାଇବା କିଛି ଆଶ୍ଚର୍ଯ୍ୟର କଥା ନ ଥିଲା। ପୁରାଣ କଥାରେ କାବେର ମୁନୀ ନାମକ ଜଣେ ଋଷି ବ୍ରହ୍ମାଙ୍କର ଗୋଟିଏ ଝିଅଙ୍କୁ ପାଳିତା କନ୍ୟା ଭାବରେ ଗ୍ରହଣ କରିଥିଲେ। ଋଷିଙ୍କ ପ୍ରତି ତାଙ୍କ ସମ୍ମାନ ଜଣାଇବା ପାଇଁ ଝିଅ ନଈର ରୂପରେ ବହିଲେ ଯାହାର ପାଣି ସବୁ ପାପକୁ ଧୋଇନେଇ ପାରିଲା। କୁହାଯାଏ ଯେ ପବିତ୍ର ଗଙ୍ଗା ନଦୀ ମଧ୍ୟ ସମୟ ସମୟରେ ଏକ ଗୁପ୍ତ ଭୂତଳ ପଥରେ କାବେରୀ ସହିତ ମିଶେ ଏବଂ ପାପିମାନଙ୍କ ଠାରୁ ଗ୍ରହଣ କରିଥିବା ପ୍ରଦୂଷଣରୁ କାବେରୀ ସାହାଯ୍ୟରେ ନିଜକୁ ମୁକ୍ତ କରେ।

ଦକ୍ଷିଣ ଗଙ୍ଗା ନାମରେ ଜଣା କାବେରୀ ଯୋଗୁ ହିଁ ତା'ର ଅବବାହିକା ଦକ୍ଷିଣ ଭାରତର ସବୁଠାରୁ ଜନବହୁଳ ଓ ସମୃଦ୍ଧ ଅଞ୍ଚଳ ହୋଇପାରିଛି। ଏହି ଅଞ୍ଚଳର ଜୀବନ ଧାରା, ତା'ର ସମ୍ପଦ ଓ ସମୃଦ୍ଧିରୁ ସୃଷ୍ଟି ହୋଇଥିବା ଆଧ୍ୟାତ୍ମିକ ଓ ବୌଦ୍ଧିକ ପରିବେଶ, ସବୁ କିଛି କାବେରୀର ପାଣି ଉପରେ ନିର୍ଭର କରୁଥିଲେ। କାବେରୀ ଥିଲା ଆଧ୍ୟାତ୍ମିକ ଶୁଦ୍ଧତାର ସ୍ଥାନ, କୃଷିକାର୍ଯ୍ୟର ଆଧାର, ମଣିଷ ଓ ପଶୁମାନଙ୍କ ଜୀବନଧାରଣ ପାଇଁ ଜଳର ଉତ୍ସ। ସ୍ତ୍ରୀ ଲୋକଙ୍କ ପାଇଁ ଏହା ଥିଲା ଲୁଗା ଧୋଇବାର ଜାଗା। ଆଣ୍ଠୁଏ ପାଣିରେ ଛିଡ଼ାହୋଇ ସେମାନେ ନଦୀର ଧୀର ସ୍ରୋତରେ ଲମ୍ବା ଲୁଗାଗୁଡ଼ିକ ଖେଳିବାକୁ ଛାଡ଼ିଦିଅନ୍ତି, ପୁଣି ଭିଡ଼ିଆଣି ମୋଞ୍ଚା କରି ଧରି ପୁଳାପୁଳା ଓଦା ଲୁଗାକୁ ଧୀରେ, ଅନବରତ ଭାବେ, ପାଣିଖିଆ ପଥର ଉପରେ କାଚି ଚାଲନ୍ତି।

## 2. ସରଙ୍ଗାପାନି ସନ୍ନିଧି ମାର୍ଗ

1887 ମସିହା ସେପ୍ଟେମ୍ବର ମାସରେ କୁମ୍ଭକୋଣମ୍‌ର ଜଣେ 19 ବର୍ଷିଆ ଝିଅ କୋମଳତାମ୍ମାଲ୍ ନଦୀର ଉପର ମୁଣ୍ଡରେ 150 ମାଇଲ ଦୂରରେ ଥିବା ତାଙ୍କ ବାପଘର ଇରୋଡ୍‌କୁ ଯିବାକୁ ବାହାରିଲେ। ଦୁଇମାସ ପରେ ହେବାକୁ ଥିବା ତାଙ୍କ ପିଲାର ପ୍ରସୂତି ପାଇଁ ତାଙ୍କର ସେଠାରେ ରହିବାର ଥିଲା। ପ୍ରସୂତି ପାଇଁ ଝିଅମାନଙ୍କର ବାପଘରକୁ ଫେରିବାର ପ୍ରଥା ପ୍ରାୟ ସମସ୍ତେ ମାନୁଥିଲେ, ତେଣୁ ଜନ୍ମମୃତ୍ୟୁର ହିସାବ ରଖୁଥିବା ଅଧିକାରୀମାନେ ମଧ୍ୟ ଏହାକୁ ସ୍ୱୀକୃତି ଦେଇଥିଲେ।

ଇରୋଡ୍ ଗୋଟିଏ ତହସିଲର ସଦର ମହକୁମା ଥିଲା। ପନ୍ଦର ହଜାର ଜନସଂଖ୍ୟାର ଏହି ସହରଟି ମାନ୍ଦ୍ରାଜର 250 ମାଇଲ ଦକ୍ଷିଣ-ପଶ୍ଚିମକୁ କାବେରୀ ଓ ତା'ର ଏକ ଉପନଦୀ ଭବାନୀର ସଂଗମସ୍ଥଳୀରେ ରହିଥିଲା। ଗୋଟିଏ ହିନ୍ଦୁ କିଂବଦନ୍ତି ଅନୁସାରେ ଶିବ ଥରେ ଅତି ରାଗିଯାଇ ବ୍ରହ୍ମାଙ୍କର ପାଞ୍ଚଟି ମୁଣ୍ଡରୁ ଗୋଟିଏ ଛିଣ୍ଡାଇ ସେଠାରେ ପକାଇ ଦେଇଥିଲେ। ତାହା ଅନୁସାରେ ଜାଗାଟିର ନାଁ ରହିଛି ଇରୋଡ୍ ଯାହାର ଅର୍ଥ ହେଉଛି 'ଓଦା ଖପୁରୀ'। ଇରୋଡ୍‌ଠାରେ କାବେରୀ ବେଶ୍ ପ୍ରଶସ୍ତ ଓ ସେଠାରେ ବଡ଼ ବଡ଼ ପଥର ଖଣ୍ଡ ପାଣି ଉପରକୁ ବାହାରି ରହିଛନ୍ତି। ନଈରୁ ଅଳ୍ପ ଦୂରରେ ଗଡ଼ ନାମରେ ଜଣା ସହରର ମୂଳ ବ୍ୟାବସାୟିକ ଅଞ୍ଚଳର ଟେପ୍ପୁକୁଳମ୍ ମାର୍ଗରେ କୋମଳତାମ୍ମାଲ୍‌ଙ୍କ ବାପାଙ୍କର ଛୋଟିଆ ଘରଟିଏ ଥିଲା।

ମାର୍ଗଶିର ମାସର ନବମ ଦିନର ସୂର୍ଯ୍ୟାସ୍ତ ପରେ ପରେ କୋମଳତାମ୍ମାଲ୍ ଓ ସ୍ୱାମୀ ଶ୍ରୀନିବାସଙ୍କର ପୁଅଟିଏ ଏଇଠି ଜନ୍ମ ହେଲା। ତାହା ଥିଲା ଗୁରୁବାର, 1887 ମସିହା ଡିସେମ୍ବର ମାସ 22 ତାରିଖ। ପରମ୍ପରା ଅନୁସାରେ ଜନ୍ମର ଏଗାର ଦିନରେ ପିଲାର ନାମକରଣ ଉତ୍ସବ ପାଳିତ ହେଲା ଏବଂ ପ୍ରାୟ ବର୍ଷକ ପରେ ଶ୍ରୀନିବାସ ରାମାନୁଜନ୍ ଆୟେଙ୍ଗାର ଓ ତାଙ୍କ ମା କୁମ୍ଭକୋଣମ୍‌କୁ ଫେରିଲେ। ଏହା ପରର ପ୍ରାୟ କୋଡ଼ିଏ ବର୍ଷ କାଳ ସେ ଏହିଠାରେ ହିଁ ବିତାଇଥିଲେ।

ଶ୍ରୀନିବାସ ତାଙ୍କ ବାପାଙ୍କ ନାଁ ଥିଲା, ତେଣୁ ତାହା ଆପେ ଆପେ ତାଙ୍କ ନାଁ ସହିତ ଯୋଡ଼ାଗଲା ଏବଂ ସାଧାରଣ ବ୍ୟବହାର ବେଳେ ତାହା କେବଳ ସଂକ୍ଷିପ୍ତ ରୂପରେ ଏସ୍. ଅକ୍ଷର ଭାବରେ ଲେଖାଗଲା। ତାଙ୍କ ପରିବାର ଯେଉଁ ଦକ୍ଷିଣ ଭାରତୀୟ ବ୍ରାହ୍ମଣ ସମ୍ପ୍ରଦାୟର ସଦସ୍ୟ ଥିଲେ ତାହା ଅନୁସାରେ 'ଆୟେଙ୍ଗାର' ଶବ୍ଦ ତାଙ୍କ ନାଁର ଅଂଶ ଭାବରେ ରହିଲା। ତେଣୁ ପୂରା ନାଁ ଭିତରୁ କେବଳ ରାମାନୁଜନ୍ ହିଁ ତାଙ୍କର ନିଜସ୍ୱ ନାଁ ଥିଲା। ପାଶ୍ଚାତ୍ୟ ସାଥୀମାନଙ୍କୁ ପରେ ସେ ବୁଝାଉଥିଲେ ଯେ ତାଙ୍କର କୌଣସି ବିଧିବଦ୍ଧ ସାଙ୍ଗିଆ ନାହିଁ। ମା ତାଙ୍କୁ ଚିନ୍ନାସ୍ୱାମୀ ବା 'କୁନି ଠାକୁର' ମଧ୍ୟ ଡାକୁଥିଲେ। ନଚେତ ସେ କେବଳ ରାମାନୁଜନ୍ ହିଁ ଥିଲେ। କେହି କେହି କହନ୍ତି ଯେ ଗୁରୁବାର ଦିନ ଜନ୍ମ ହୋଇଥିବାରୁ ତାଙ୍କୁ ରାମାନୁଜନ୍ ନାଁ ଦିଆଯାଇଥିଲା। କାରଣ ଏକାଦଶ ଶତାବ୍ଦୀର ବୈଷ୍ଣବ ସନ୍ଥ ରାମାନୁଜ, ଯିଏ ସେ ସମୟରେ ରୁଗ୍‌ଣ ହିନ୍ଦୁ ଧର୍ମକୁ ପୁନର୍ଜୀବନ ଦେଇଥିଲେ, ମଧ୍ୟ ଗୁରୁବାର ଦିନ ଜନ୍ମ ହୋଇଥିଲେ। ଦୁହିଁଙ୍କ ଜାତକ ଭିତରେ କିଛି ମେଳ ମଧ୍ୟ ରହିଥିବାର କୁହାଯାଏ। ଆକ୍ଷରିକ ଅର୍ଥରେ ରାମାନୁଜନ୍ ହେଉଛନ୍ତି ରାମାୟଣର ମୁଖ୍ୟ ଚରିତ୍ର ରାମ ଓ ଭାରତୀୟ ସଂସ୍କୃତିରେ ଆଦର୍ଶ ପୁରୁଷ ରାମଙ୍କ ଅନୁଜ ବା ସାନ ଭାଇ।

ଘର ପାଖର ମନ୍ଦିରରେ ରାମାନୁଜନ୍‌ଙ୍କ ମା କୋମଳତାମ୍ମାଲ୍ ଭଜନ ଗାଉଥିଲେ। ତାଙ୍କ

ଦଳର ଉପାର୍ଜନର ଅଧା ମନ୍ଦିର ପାଇଁ ରହୁଥିଲା, ବାକି ଅଧା ଗାୟକମାନେ ପାଉଥିଲେ। ତାଙ୍କ ସ୍ୱାମୀଙ୍କର ଆୟ ମାସକୁ ମାତ୍ର କୋଡ଼ିଏ ଟଙ୍କା ଥିଲା, ତେଣୁ କୋମଳତାମ୍ମାଲ୍ ଭଜନରୁ ପାଉଥିବା ପାଞ୍ଚ-ଦଶ ଟଙ୍କା ବେଶ୍ ଗୁରୁତ୍ୱପୂର୍ଣ୍ଣ ଥିଲା। ସେ କେବେ ବି ଗାଇବାର ସୁଯୋଗ ଛାଡୁ ନ ଥିଲେ ଓ ନିୟମିତ ଭାବରେ ଅଭ୍ୟାସ କରିବାକୁ ଯାଉଥିଲେ।

ତଥାପି ୧୮୮୯ ମସିହା ଡିସେମ୍ବର ମାସରେ ଲାଗ ଲାଗ ଚାରି ପାଞ୍ଚ ଥର ଅଭ୍ୟାସ ପାଇଁ ଗଲେନାହିଁ। ଏହାର କାରଣ ଜାଣିବା ପାଇଁ ଭଜନ ଦଳର ମୁଖ୍ୟ ଦିନେ ଯାଇ ତାଙ୍କ ଘରେ ପହଞ୍ଚିଲେ।

ସେଠାରେ ଦେଖିଲେ ଦୁଆର ପାଖରେ ନିମ୍ବ ପତ୍ର ଗଦାହୋଇଛି ଓ ଜାଣିଲେ ଯେ ଘରେ କିଏ ବସନ୍ତ ରୋଗରେ ପଡ଼ିଛି। ଭିତରକୁ ଆସି ସେ ଦେଖିଲେ ଯେ ଛୋଟିଆ କଳା ପିଲାଟିଏ ନିମ୍ବ ପତ୍ରର ବିଛଣାରେ ଶୋଇଛି। ପାଖରେ ମା ବସି ଅନବରତ ଭଜନ ଗାଉଛନ୍ତି ଓ ହଳଦି ପାଣିରେ ନିମ୍ବ ପତ୍ର ବୁଡ଼ାଇ ପିଲାର ଫୋଟକାଭରା ଦେହରେ ଧୀରେ ଧୀରେ ଘଷୁଛନ୍ତି। ଏପରି କଲେ ଅସହ୍ୟ କୁଣ୍ଡିଆରୁ ଆରାମ ମିଳିବା ସହିତ ଜର କମିଯାଏ ବୋଲି ଦକ୍ଷିଣ ଭାରତୀୟ ବୈଦ୍ୟମାନେ ଉପଦେଶ ଦେଇଥା'ନ୍ତି।

ରାମାନୁଜନ୍ ବଞ୍ଚିଗଲେ, କିନ୍ତୁ ତାଙ୍କ ଦେହରେ ସାରା ଜୀବନ ପାଇଁ ବସନ୍ତ ଦାଗ ରହିଗଲା। ତଥାପି ତାଙ୍କୁ ଭାଗ୍ୟବାନ ମନେ କରିବାକୁ ହେବ। କାରଣ ତାଙ୍କର ପିଲାଦିନେ ତାଞ୍ଜୋର ଜିଲ୍ଲାରେ ଖରାପ ବର୍ଷମାନଙ୍କରେ ଚାରି ହଜାର ଯାଏଁ ପିଲା ବସନ୍ତରେ ପ୍ରାଣ ହରାଉଥିଲେ। ପାଞ୍ଚ ଜଣରେ ଜଣକରୁ କମ୍ ପିଲା ଟିକା ନେବାର ସୁଯୋଗ ପାଉଥିଲେ। ରାମାନୁଜନ୍‌ଙ୍କୁ ଦଶବର୍ଷ ବୟସ ବେଳେ ସେଠାରେ ହଇଜା ମହାମାରୀରେ ପନ୍ଦର ହଜାର ଲୋକ ମରିଥିଲେ। ଶତକଡ଼ା 30ରୁ 40 ପିଲା ଜନ୍ମ ପରେ ବର୍ଷେ ଯାଏଁ ବି ବଞ୍ଚୁନଥିଲେ।

ଏଭଳି ଦୁଃଖଦ ପରିସଂଖ୍ୟାନ ରାମାନୁଜନ୍‌ଙ୍କ ପରିବାରରୁ ହିଁ ମିଳିପାରେ। ରାମାନୁଜନ୍‌ଙ୍କ ଜନ୍ମର ଦେଢ଼ ବର୍ଷ ପରେ ତାଙ୍କର ଭାଇ ସଦଗୋପାନ୍ ଜନ୍ମ ହୋଇଥିଲା, କିନ୍ତୁ ମାତ୍ର ତିନି ମାସରେ ସେ ଚାଲିଗଲା।

ରାମାନୁଜନ୍‌ଙ୍କୁ ଚାରିବର୍ଷ ବୟସ ବେଳେ, ୧୮୯୧ ମସିହା ନଭେମ୍ବର ମାସରେ, ତାଙ୍କର ଭଉଣୀଟିଏ ଜନ୍ମ ହେଲା। ହେଲେ ପର ବର୍ଷ ଫେବୃଆରି ମାସ ବେଳକୁ ସେ ଆଉ ନ ଥିଲା।

ରାମାନୁଜନ୍‌ଙ୍କର ଆଉ ଗୋଟିଏ ଭାଇ ଶେଷାନ୍ ଜନ୍ମ ହେବା ବେଳକୁ ରାମାନୁଜନ୍‌ଙ୍କ ବୟସ ସାଢ଼େ ଛ' ବର୍ଷ। କିନ୍ତୁ ବର୍ଷକ ଭିତରେ ସେ ମଧ୍ୟ ମରିଯାଇଥିଲା।

ଅନେକ ଦିନ ପରେ ଜନ୍ମ ହୋଇଥିବା ରାମାନୁଜନ୍‌ଙ୍କର ଆଉ ଦୁଇଟି ଭାଇ - ୧୮୯୮ରେ ଲକ୍ଷ୍ମୀ ନରସିଂହନ୍ ଓ ୧୯୦୫ରେ ତିରୁନାରାୟଣନ୍ - ବଡ଼ ହୋଇଥିଲେ। ତଥାପି ଛୋଟ ଥିବା ସମୟରେ ଅନ୍ୟ ଭାଇ ଭଉଣୀଙ୍କୁ ହରାଇଥିବାରୁ ରାମାନୁଜନ୍ ଏକମାତ୍ର ସନ୍ତାନର ଆଦର ଯତ୍ନ ପାଇ ବଢ଼ିଥିଲେ।

କୁଷ୍ଠରୋଗରେ ପଡ଼ିଥିବା ଜେଜେବାପାଙ୍କ ମୃତ୍ୟୁ ପରେ ସାତବର୍ଷ ବୟସର ରାମାନୁଜନ୍‌ଙ୍କ ଦେହ ସାରା କୁଣ୍ଡେଇ ହୋଇ ଫୋଟକା ହୋଇଗଲା। ମାନସିକ ଚାପରୁ ରାମାନୁଜନ୍‌ଙ୍କଠାରେ ଏଭଳି ଚରମ ଓ ଅପ୍ରତ୍ୟାଶିତ ପ୍ରତିକ୍ରିୟା ଆସିବା କଥା ଆଗରୁ ମଧ୍ୟ ଜଣାଥିଲା। ବାସ୍ତବରେ ରାମାନୁଜନ୍

ଜଣେ ସମ୍ବେଦନଶୀଳ, ଜିଦିଆ ଓ କିଛି ମାତ୍ରାରେ ଅବାଗିଆ ପିଲା ଥିଲେ। ଅତି ପିଲାବେଳେ ଇରୋଡ୍‌ରେ ସେ ମନ୍ଦିର ଛଡ଼ା ଆଉ କେଉଁଠି ଖାଉ ନ ଥିଲେ। ପରେ, କୁମ୍ଭକୋଣମ୍‌ରେ ସେ ଘରେ ଥିବା ସବୁ ବାସନ ନେଇ ଗୋଟିଏ କାନ୍ଥରୁ ଅନ୍ୟ କାନ୍ଥ ଯାଏଁ ଧାଡ଼ିକରି ସଜାଉଥିଲେ। ସେ ଖାଇବାକୁ ଚାହୁଁଥିବା ଜିନିଷ ଯଦି ମିଳୁ ନ ଥିଲା ତେବେ ସେ ହତାଶ ହୋଇ କାଦୁଅରେ ଗଡୁଥିଲେ।

ତିନିବର୍ଷ ବୟସ ଯାଏଁ ରାମାନୁଜନ୍ ପ୍ରାୟ କଥା କହୁ ନ ଥିଲେ। କେହି ହୁଏତ ଭାବିପାରେ ଯେ ସେ ବୋଧହୁଏ କଥା କହିବାକୁ ଚାହୁଁ ନ ଥିଲେ, ତେଣୁ ଜିଦିରେ କହୁ ନ ଥିଲେ। ସେ ସମୟର ପ୍ରଥା ଅନୁସାରେ ନୂଆ ବୋହୂମାନଙ୍କୁ ବାପଘର ଓ ଶାଶୂଘର ଭିତରେ ବାରମ୍ବାର ଯିବାଆସିବା କରିବାକୁ ପଡୁଥିଲା। ପୁଅର କଥା ନ କହିବା କାରଣରୁ କୋମଲତାମ୍ମାଲ୍ ଚିନ୍ତିତ ଥିଲେ, ତେଣୁ ଥରେ ସେ ମାନ୍ଦ୍ରାଜ ପାଖ କାଞ୍ଚିପୁରମ୍‌ରେ ରହୁଥିବା ତାଙ୍କ ବାପାଙ୍କ ପାଖକୁ ପୁଅକୁ ନେଲେ। ସେଠାରେ ବାପାଙ୍କର ଜଣେ ବୟସ୍କ ସାଙ୍ଗଙ୍କ ପରାମର୍ଶରେ ରାମାନୁଜନ୍ 'ଅକ୍ଷର ଅଭ୍ୟାସମ୍' ଆରମ୍ଭ କଲେ। ଚଟାଣରେ ଚାଉଳର ବହଳ ସ୍ତର ଉପରେ ଅଜା ରାମାନୁଜନ୍‌ଙ୍କ ହାତ ଧରି ତାମିଲ୍ ଅକ୍ଷର ସବୁ ଅଙ୍କାଇଲେ ଏବଂ ବଡ଼ ପାଟିରେ ସେଗୁଡ଼ିକର ଉଚ୍ଚାରଣ କରାଇଲେ।

ଅଳ୍ପଦିନ ଭିତରେ ରାମାନୁଜନ୍ କଥା ନ କହିବା ବିଷୟରେ ଆଉ କାହାରି ଡର ରହିଲା ନାହିଁ। ତାମିଲ ଭାଷାର 12ଟି ସ୍ୱରବର୍ଣ୍ଣ, 18ଟି ବ୍ୟଞ୍ଜନବର୍ଣ୍ଣ ଓ 216ଟି ଯୁକ୍ତାକ୍ଷର ସେ ଶିଖିବାରେ ଲାଗିପଡ଼ିଲେ। 1892 ମସିହା ଅକ୍ଟୋବର ପହିଲା ଦିନ ବିଜୟା ଦଶମୀ ପଡ଼ିଥିଲା। ସେଠାକାର ପରମ୍ପରା ଅନୁସାରେ ତାହା ଥିଲା ସ୍କୁଲ ଖୋଲିବାର ଦିନ। ସେଦିନ ବେଦପାଠ ସହିତ ତାଙ୍କର ନାଁ ଗୋଟିଏ ପିଆଲ୍ ବା ବାରଣ୍ଡା ସ୍କୁଲରେ ଲେଖାହେଲା। ସେଠାରେ କେହି ଜଣେ ଶିକ୍ଷକ ପାଞ୍ଚ ଛ ଜଣ ପିଲାଙ୍କୁ ଏକାଠିକରି କାହାର ବାରଣ୍ଡାରେ ବସି ପାଠ ପଢ଼ାଉଥିଲେ।

ପାଞ୍ଚ ବର୍ଷର ରାମାନୁଜନ୍‌ଙ୍କୁ ଶିକ୍ଷକ ଜଣକ ପସନ୍ଦ ହେଲେନାହିଁ, ତେଣୁ ସେ ସ୍କୁଲ ଯିବାକୁ ବିରୋଧ କଲେ। ପିଲାଦିନେ ବି ସେ ଏତେ ମନମାନିଆ ଥିଲେ ଯେ ସେ ଯଦି କିଛି କରିବା ପାଇଁ ନିଜେ ନ ଚାହିଁବେ ତେବେ ସେ ସେଥିରେ ଆଦୌ ମନ ଦେବେନାହିଁ। ତାଙ୍କ ପାଇଁ ସ୍କୁଲଟା ଶିକ୍ଷା ପାଇଁ ମାଧ୍ୟମ ନ ଥିଲା, ବରଂ ଗୋଟିଏ ବେଡ଼ି ଭଳି ଥିଲା ଯାହାକୁ ସେ ଛିଣ୍ଡାଇବାକୁ ଚାହୁଁଥିଲେ।

ରାମାନୁଜନ୍ ଚୁପ୍‌ଚାପ୍ ସ୍ୱଭାବର ଥିଲେ, ବସିରହି ଭାବିବାକୁ ଓ ପ୍ରଶ୍ନ ପଚାରିବାକୁ ଭଲପାଉଥିଲେ। 'ପୃଥିବୀର ପ୍ରଥମ ମଣିଷ କିଏ ଥିଲା?', 'ବାଦଲ ଖଣ୍ଡଗୁଡ଼ିକ କେତେ ଛଡ଼ାରେ ରହିଛନ୍ତି?' ଭଳି ପ୍ରଶ୍ନ ସବୁ ତାଙ୍କ ମୁଣ୍ଡରେ ଜୁଟୁଥିଲା। ଏକା ରହିବାକୁ ସେ ଭଲ ପାଉଥିଲେ। ବାପା ମା ମଧ୍ୟ ଏହାକୁ ପ୍ରୋତ୍ସାହିତ କରୁଥିଲେ ଓ ବାହାରକୁ ଯାଇ ସାଙ୍ଗମାନଙ୍କ ସହିତ ଖେଳିବାକୁ ମନା କରୁଥିଲେ। ତେଣୁ ରାସ୍ତା ପଟର ଝରକା ବାଟେ ସେ ସାଙ୍ଗମାନଙ୍କ ସହିତ କଥା ହେଉଥିଲେ। ଖେଳକୁଦରେ ତାଙ୍କର କୌଣସି ଆଗ୍ରହ ନ ଥିଲା। ଦକ୍ଷିଣ ଭାରତରେ ମୋଟାହେବା ସାଧାରଣ ନ ଥିଲା। ଜନ୍ତୁ ମଣିଷ ସମସ୍ତେ ହାଡୁଆ ଥିଲେ। ରାମାନୁଜନ୍ ପିଲାବେଳେ ଓ ଜୀବନର ଅଧିକାଂଶ ସମୟ ପାଇଁ ମୋଟା ଥିଲେ। ପିଲାବେଳେ ସେ କହୁଥିଲେ ଯେ ଯଦି କିଏ ତାଙ୍କ ସାଙ୍ଗରେ କଳି କରିବ ତେବେ ସେ ତା ଉପରେ ପଡ଼ିଯାଇ ତାକୁ ଛତୁ କରିଦେବେ। ଏକଥା ସେ ଥଟ୍ଟାରେ କି ଗର୍ବରେ କି ମୋଟାପଣିଆର ଦୁଃଖରେ କହୁଥିଲେ ତାହା ଅବଶ୍ୟ ଜଣାନାହିଁ।

ପ୍ରାୟ ଦୁଇବର୍ଷ ଧରି ରାମାନୁଜନ୍ ଏ ସ୍କୁଲ ସେ ସ୍କୁଲ ହେଲେ। କାଞ୍ଚିପୁରମ୍‌ରେ ଅଜା ଘରେ ଥିବାବେଳେ 1894 ମସିହା ମାର୍ଚ୍ଚ ମାସରେ ସେ ଗୋଟିଏ ନୂଆ ସ୍କୁଲରେ ନାଁ ଲେଖାଇଲେ। ସେଠାରେ ତାମିଲ ବଦଳରେ ପାଖ ରାଜ୍ୟର ତେଲୁଗୁ ଭାଷାରେ ପାଠ ପଢ଼ାଯାଉଥିଲା। ସେଠାରେ କେବେ କେବେ ତାଙ୍କୁ ହାତ ଛନ୍ଦି, ଚୁପ ରହିବା ପାଇଁ ଓଠରେ ଆଙ୍ଗୁଠି ଦେଇ ବସିରହିବାର ଦଣ୍ଡ ମିଳୁଥିଲା। ଏଥିରେ ସେ ବେଳେ ବେଳେ ରାଗିଯାଉଥିଲେ ଓ ଶ୍ରେଣୀରୁ ବାହାରି ପଳାଉଥିଲେ।

ଧାର ଉଧାରକୁ ନେଇ ଏକ ବିବାଦ ଯୋଗୁଁ ରାମାନୁଜନ୍‌ଙ୍କ ଅଜା ଚାକିରି ଛାଡ଼ିଦେଲେ ଓ କାଞ୍ଚିପୁରମ୍‌ରୁ ଚାଲିଗଲେ। ମା'ଙ୍କ ସହିତ ରାମାନୁଜନ୍ କୁମ୍ଭକୋଣମ୍ ଫେରିଆସି କାଙ୍ଗାୟନ୍ ପ୍ରାଥମିକ ବିଦ୍ୟାଳୟରେ ନାଁ ଲେଖାଇଲେ। କିନ୍ତୁ ତାଙ୍କ ଜେଜେଙ୍କ ମୃତ୍ୟୁ ପରେ ସେ ପୁଣି ମାନ୍ଦ୍ରାଜରେ ରହୁଥିବା ଅଜାଙ୍କ ପାଖକୁ ଫେରି ଆସିଲେ। ସେଠାରେ ସେ ସ୍କୁଲ ଯିବାକୁ ଏତେ ବିରୋଧ କଲେ ଯେ ତାଙ୍କ ଘର ଲୋକମାନେ ଜଣେ ପୋଲିସ କନେଷ୍ଟବଳଙ୍କ ସାହାଯ୍ୟରେ ତାଙ୍କୁ ସ୍କୁଲ ପଠାଇଲେ।

1895 ମସିହାର ମଝି ବେଳକୁ ମାନ୍ଦ୍ରାଜରେ ଛ ମାସ କାଳ ବଡ଼ ଅସୁଖୀ ହୋଇ ରହିବା ପରେ ରାମାନୁଜନ୍ କୁମ୍ଭକୋଣମ୍ ଫେରିଆସିଲେ।

କୁମ୍ଭକୋଣମ୍‌ର ଦୁଇ ପଟରେ କାବେରୀ ଓ ତା'ର ଉପନଦୀ ଆରାସାଲାର ବହୁଥିଲେ। ସହରର ଅଧିକାଂଶ ରାସ୍ତା ନଦୀ ଦୁଇଟି ସହିତ ସମାନ୍ତର ଭାବେ ରହିଥିଲେ କିମ୍ବା ତାଙ୍କ କୂଳରେ ମିଶୁଥିଲେ। ତେଣୁ ରାସ୍ତାଗୁଡ଼ିକ ଜାଲି ଭଳି ନିଜ ନିଜକୁ ଲମ୍ବ ଭାବରେ କାଟୁଥିଲେ। ଏହି ରାସ୍ତା-ଜାଲିର ମଝି ଅଞ୍ଚଳରେ ପ୍ରାୟ ତିରିଶ ଫୁଟ ଓସାରର ମାଟି ରାସ୍ତାଟି ଥିଲା ସରଙ୍ଗାପାନି ସନ୍ନିଧି ସରଣୀ। ରାସ୍ତାର ଦୁଇପାଖରେ ଛୋଟ ଛୋଟ ଅଳ୍ପ ଉଚ୍ଚ ଘରଗୁଡ଼ିକ ଖୁନ୍ଦିହୋଇ ରହିଥିଲେ ଯେଉଁଥିରୁ ଗୋଟିଏ ଥିଲା ରାମାନୁଜନ୍‌ଙ୍କ ଘର।

ରାସ୍ତାରୁ ଦଶଫୁଟ ଦୂରରେ ଥିବା ତାଳପତ୍ର ଛପର ଘରର ଆଗରେ, ଧୂଳି କାଦୁଅ ରାସ୍ତାରୁ କେତୋଟି ପାହାଚ ଉପରେ, ଦୁଇ ଥାକିଆ ବାରଣ୍ଡା ରହିଥିଲା। ତା'ର ଆଉ କେତୋଟି ପାହାଚ ଉପରକୁ ଘରର ଅଗଣା ଥିଲା। ରାସ୍ତା ପଟକୁ ଥିବା ବାର ଫୁଟିଆ ମାଟିଲିପା କାନ୍ଥରେ ବାମ ପଟକୁ ଝରକା ଓ ଡାହାଣ ପଟକୁ କବାଟ ରହିଥିଲା। ରାସ୍ତାରେ ଛିଡ଼ାହୋଇ ଦୁଆର ବାଟେ ଦେଖିଲେ ଅନ୍ଧାରିଆ ଘର ଭିତର ଦେଇ ପଛରେ ଥିବା ବାରି କବାଟର ଆଲୁଅ ଦେଖିହେଉଥିଲା। ଘରର ବାକି ଅଂଶ ଏହି ସଳଖ ବାଟର ବାମକୁ ଝରକା ପଛରେ ଥିଲା। ସେଠାରେ ଥିଲା ମୁଖ୍ୟ ରହିବା ଘର ଓ ତା ପଛରେ ବର୍ଷ ବର୍ଷ ଧରି ଚାଲିଥିବା ରାନ୍ଧଣାର ବାସ୍ନାଭରା ଛୋଟ ରୋଷେଇ ଘର।

ଦକ୍ଷିଣ ଭାରତରେ ସବୁବେଳେ ଖୁବ୍ ଗରମ ହୁଏନାହିଁ, କିନ୍ତୁ ସେଠାରେ କେବେ ବିଶେଷ ଥଣ୍ଡା ବି ପଡ଼େନାହିଁ। ପ୍ରାୟ ଏଗାର ଡିଗ୍ରୀ ଉତ୍ତର ଅକ୍ଷାଂଶରେ ଥିବା କୁମ୍ଭକୋଣମ୍ ଗ୍ରୀଷ୍ମମଣ୍ଡଳୀୟ ଅଞ୍ଚଳ ଭିତରେ ଯାଏ। ତେଣୁ ଶୀତ ଦିନରେ, ଜାନୁଆରି ମାସ ରାତିରେ, ହାରାହାରି ସତୁରି ଡିଗ୍ରୀ ଫାରେନ୍‌ହାଇଟ୍ ପର୍ଯ୍ୟନ୍ତ ଖସିପାରେ। ଏଭଳି ଜଳବାୟୁକୁ ସୁହାଇବା ଭଳି ଦକ୍ଷିଣ ଭାରତର ଘରଗୁଡ଼ିକ ତିଆରି ହୋଇଥାଏ, ଯେପରି ଘର ଭିତରକୁ ସବୁବେଳେ ବାହାରର ପବନ ଆସିପାରିବ। ଝରକାଗୁଡ଼ିକରେ ନିବୁଜ କାଚ ଲାଗି ନ ଥାଏ, କାନ୍ଥରେ କଣା ଦେହରେ ଅତି ବେଶିରେ ଖାଡ଼ି ବା ହୁଗୁଳା କବାଟ ଲାଗିଥାଏ। ଅଧିକାଂଶ ଘରର ମଝିରେ ଗୋଟିଏ ଖୋଲା ଅଗଣା ଥାଏ ଏବଂ

ସେଠାରେ ପଡୁଥିବା ବର୍ଷା ପାଣି ଗୋଟିଏ ନାଳୀ ବାଟେ ଘର ପଛକୁ ବାହାରେ। ବାହାରର ବାସ୍ନା ଘର ଭିତରେ ଖେଳେ, ବାରିର ଏଣ୍ଡୁଅମାନେ ଘର ଭିତରେ ଦଉଡ଼ନ୍ତି, ମଶାମାନେ ବିନା ବାଧାରେ ଉଡ଼ିବୁଲନ୍ତି। ଦକ୍ଷିଣ ଭାରତରେ ମୃଦୁ ପବନ ଫୁଲ, ଧୂପ ଓ ଘଷିଜଳା ଧୂଆଁ ଆଦିର ବାସ୍ନାଧରି ସବୁଆଡ଼େ ଖେଳୁଥାଏ।

ତାଙ୍କର ଘର ଆଗରେ ଥିଲା ଚୋଳ ସାମ୍ରାଜ୍ୟର ପ୍ରାଚୀନ ରାଜଧାନୀ। 1000 ଖ୍ରୀଷ୍ଟାବ୍ଦ ବେଳକୁ, ଯେବେ ୟୁରୋପ ଅନ୍ଧକାର ଯୁଗରେ ରହିଥିଲା, ଚୋଳ ସାମ୍ରାଜ୍ୟ ତା'ର ସବୁଠାରୁ ଉନ୍ନତ ଅବସ୍ଥାରେ ପହଞ୍ଚିଥିଲା। ଲଙ୍କାଦ୍ୱୀପର ଦକ୍ଷିଣ ଭାଗଠାରୁ ଆରମ୍ଭ କରି ରାମାନୁଜନ୍‌ଙ୍କ ସମୟରେ ମାନ୍ଦ୍ରାଜ ପ୍ରେସିଡେନ୍‌ସି ଭାବରେ ଜଣାଥିବା ଅଞ୍ଚଳର ଅଧିକାଂଶ ଭାଗ ସେହି ସାମ୍ରାଜ୍ୟର ଅଂଶ ଥିଲା। ଇଂରେଜଶାସିତ ଭାରତର ତିନି ମୁଖ୍ୟ ପ୍ରଶାସନିକ-ରାଜନୈତିକ ଅଞ୍ଚଳ ଭିତରୁ ଏହି ମାନ୍ଦ୍ରାଜ ପ୍ରେସିଡେନ୍‌ସି ଗୋଟିଏ ଥିଲା। କଲିକତା ଓ ବମ୍ବେ ଥିଲେ ଅନ୍ୟ ଦୁଇଟି। ଚୋଳ ରାଜତ୍ୱ କାଳରେ କୁମ୍ଭକୋଣମ୍ ଠାରେ ଅନେକଗୁଡ଼ିଏ ବଡ଼ ମନ୍ଦିର ନିର୍ମିତ ହୋଇଥିଲା ଯାହା ଫଳରେ ଏହା ଦକ୍ଷିଣ ଭାରତର ଏକ ମୁଖ୍ୟ ତୀର୍ଥସ୍ଥାନର ଆଦର ପାଉଥିଲା।

ଗୋଟିଏ କିଂବଦନ୍ତି କହେ ଯେ ପ୍ରଳୟ ପରେ ନୂତନ ସୃଷ୍ଟିର ବୀଜ ଗୋଟିଏ କୁମ୍ଭରେ ଭାସୁଥିଲା। ତାଙ୍କ ତ୍ରିଶୂଳରେ ଶିବ କୁମ୍ଭଟିକୁ ଭାଙ୍ଗି ସେ ବୀଜକୁ ମୁକ୍ତ କରିଥିଲେ ଏବଂ ତାହା ମନ୍ଦିର ଆଗରେ ଥିବା ମହାମ୍ମାଖମ୍ ପୁଷ୍କରିଣୀରେ ମିଶି ଯାଇଥିଲା। ବୀଜଧାରୀ କୁମ୍ଭ ଅନୁସାରେ ସେହି ଜାଗାର ନାଁ କୁମ୍ଭକୋଣମ୍ ରହିଛି ଏବଂ ବୀଜମୁକ୍ତି ଘଟଣାର ସ୍ମାରକୀ ରୂପେ ପ୍ରତି ବାର ବର୍ଷରେ, ଫେବୃଆରି-ମାର୍ଚ୍ଚ ମାସରେ, ସେଠାରେ ମହାମ୍ମାଖମ୍ ମେଳା ଅନୁଷ୍ଠିତ ହୁଏ। ମେଳା ସମୟରେ ସେଠାକୁ ସାତ ଆଠ ଲକ୍ଷ ତୀର୍ଥଯାତ୍ରୀ ଆସନ୍ତି ଏବଂ ମଣ୍ଡପଘେରା କୋଡ଼ିଏ ଏକର ବ୍ୟାପୀ ପୁଷ୍କରିଣୀରେ ବୁଡ଼ ପକାନ୍ତି। କୁହାଯାଏ ଯେ ଏତେ ଲୋକ ଏକ ସମୟରେ ପୁଷ୍କରିଣୀରେ ପଶନ୍ତି ଯେ ପାଣିର ପତନ କେତେ ଇଞ୍ଚ ଉପରକୁ ଉଠିଯାଏ। 1897 ମସିହାରେ ନଅ ବର୍ଷ ବୟସର ରାମାନୁଜନ୍ ଏହି ମେଳା ଦେଖିବାର ସୁଯୋଗ ପାଇଥିଲେ।

ମେଳା ଭଳି ବିଶେଷ ସମୟ ବାହାରେ ସେହି ପୁଷ୍କରିଣୀକୁ କେହି ପବିତ୍ର ମନେ କରିପାରିବ ନାହିଁ। କାରଣ ସେହି ପଥର ବନ୍ଧା ମାଛଭରା ପୋଖରୀର ପାଣି ଶୈବାଳ ଯୋଗୁ ଶାଗୁଆ ହୋଇଯାଏ ଏବଂ ମାଲେରିଆ ମଶାଙ୍କ ଏନ୍ତୁଡ଼ିଶାଳ ପାଲଟେ। ଦୁଇଟି ନଈ ମଝିର ଢାଲୁ ଅଞ୍ଚଳରେ ଅବସ୍ଥିତ କୁମ୍ଭକୋଣମ୍ ତା'ର ଖରାପ ପାଣି, ମଶା ଓ ବାତ ଜର ପାଇଁ କୁଖ୍ୟାତ ଥିଲା। ବାତ ଜରର ପ୍ରକୋପରେ ସେଠାରେ ଅନେକ ଲୋକଙ୍କର ଗୋଡ଼ ଗୋଦର ଓ ବିକୃତ ହୋଇଯାଏ, ଆଉ କେତେକଙ୍କର ଅଣ୍ଡକୋଷ ଫୁଲି ବେଶ୍ ବଡ଼ ହୋଇଯାଏ। ରାମାନୁଜନ୍‌ଙ୍କୁ ଛ ବର୍ଷ ହୋଇଥିଲାବେଳେ ସେଠାରେ ଗୁଡ଼ିଏ ନାଳ ଖୋଳାଯାଇଥିଲା। କିନ୍ତୁ ତାହା କେବଳ ଉପର ପାଣି ବାହାର କଲା, ମାଟି ତଳର ମଳମିଶା ପାଣି ନବାହାରିବାରୁ ସହରର ସ୍ୱାସ୍ଥ୍ୟ ସମସ୍ୟା ଲାଗିରହିଲା।

କୁମ୍ଭକୋଣମ୍‌ର ପ୍ରାୟ 200 ମାଇଲ ଉତ୍ତରକୁ ଥିବା ମାନ୍ଦ୍ରାଜ ତା'ର ସବୁଠାରୁ ପାଖ ମହାନଗରୀ ଥିଲା ଏବଂ ରେଳଗାଡ଼ିରେ ସେଠାକୁ ଯିବା ପାଇଁ ଦିନଟିଏ ଲାଗୁଥିଲା। କୁମ୍ଭକୋଣମ୍‌ରେ 72 ଜଣ ରୋଗୀ ରହିପାରିଲା ଭଳି ଗୋଟିଏ ଡାକ୍ତରଖାନା, ଚାରିଟି ଥାନା, ଦୁଇଟି ନିମ୍ନ ମାଧ୍ୟମିକ

ଇଂରାଜୀ ସ୍କୁଲ, ତିନିଟି ନିମ୍ନ ମାଧ୍ୟମିକ ତାମିଲ ସ୍କୁଲ, ଗୋଟିଏ ବେଶ୍ ନାମଜାଦା ଉଚ୍ଚ ମାଧ୍ୟମିକ ସ୍କୁଲ ଓ ଗୋଟିଏ କଲେଜ ଥିଲା। ରାମାନୁଜନ୍‌ଙ୍କ ସମୟରେ ତା'ର ଲୋକସଂଖ୍ୟା ଥିଲା ପଚାଶ ହଜାରରୁ ଅଧିକ। ବାସ୍ତବରେ ତାହା ସାଧାରଣ ମଫସଲ ଅଞ୍ଚଳ ନଥିଲା, ବରଂ ଗୋଟିଏ ମୁଖ୍ୟ ସହର ଥିଲା। ତାହା ଥିଲା ମାନ୍ଦ୍ରାଜ ପ୍ରେସିଡେନ୍‌ସିର ଷଷ୍ଠ ବୃହତ୍ତମ ସହର।

କୁମ୍ଭକୋଣମ୍ ସହରକୁ ଘେରି ରହିଥିବା ଚାଷ ଜମିଗୁଡ଼ିକ ସାରା ଭାରତର ଉର୍ବରତମ ଜମି ଭିତରେ ଥିଲା। ସେ ଅଞ୍ଚଳର ଦୁଇତୃତୀୟାଂଶ ଲୋକ ଚାଷକାମରେ ସମ୍ପୃକ୍ତ ଥିଲେ। ପାରାଇୟାନ୍ ଓ ପାଲ୍ଲାନ୍ ଭଳି କେତେ ସମ୍ପ୍ରଦାୟ କେବଳ ଏହି କାମରେ ଲାଗିଥିଲେ। କ୍ଷେତ ମଜୁରିଆମାନେ ଦିନକୁ ମାତ୍ର କେତେ ଅଣା ପାଉଥିଲେ। କାବେରୀର ଉର୍ବର ପଟୁ ପଡୁଥିବା ଯୋଗୁଁ ଖତ ସାର ପାଇଁ କିଛି ଖର୍ଚ୍ଚ କରିବାକୁ ପଡୁ ନ ଥିଲା। ନଈକୁ ଲାଗିରହିଥିବା ଜାଗାଗୁଡ଼ିକ ପ୍ରତିବର୍ଷ ପଟୁଭରା ବଢ଼ିପାଣିରେ ବୁଡୁଥିବାରୁ ଅଧିକ ଉର୍ବର ହେଉଥିଲା। ତେଣୁ ବାଉଁଶ, ତମାଖୁ ଓ କଦଳୀ ଚାଷ ପାଇଁ ତା'ର ଚାହିଦା ବେଶି ରହୁଥିଲା। ବାକି ସବୁ ଜମିର ପ୍ରାୟ ତିନି ଚତୁର୍ଥାଂଶରେ ଧାନଚାଷ ହେଉଥିଲା।

ବର୍ଷର ଅଧିକାଂଶ ସମୟରେ ଦକ୍ଷିଣ ଭାରତର ଅନେକ ଅଞ୍ଚଳରେ ମାଟି ଶୁଖିଲା ଓ ଧୂସର ରହେ। କିନ୍ତୁ କାବେରୀ ଅବବାହିକା ଧାନକ୍ଷେତରେ ଭରିଥିବାରୁ ସେ ଅଞ୍ଚଳ ଗାଢ଼ ସବୁଜ ରହୁଥିଲା। ଧାନର ପ୍ରକାରକୁ ନେଇ ବିଭିନ୍ନ ଗାଢ଼ତାର ସବୁଜ ରଙ୍ଗ ଯୋଗୁ ତାହା ଖୁବ୍ ସୁନ୍ଦର ଲାଗୁଥିଲା। ମଝିରେ ମଝିରେ ବେଶି ପାଣିଥିବା ଜମିରେ ତଳି ପକାଯାଇଥିବାରୁ ତାହା ଘଞ୍ଚ ମଖମଲ ଗାଲିଚା ଭଳି ଦିଶୁଥିଲା ଓ ପାଖ ଜମିଠାରୁ ବେଶ୍ ଅଲଗା ଜଣାପଡୁଥିଲା। ତିରିଶ ଚାଳିଶ ଦିନ ପରେ ତଳିଗୁଡ଼ିକ ବଢ଼ିଗଲେ ଚାଷୀମାନେ ତାହା ଓପାଡ଼ି ପାଣିଭରା ବଡ଼ କିଆରୀରେ ଲଗାଉଥିଲେ। ସେଠାରେ ବଢ଼ନ୍ତା ଧାନ ଗଛର ସବୁଜ ରଙ୍ଗ ଟିକିଏ ଫିକା ହେଉଥିଲା। ଶେଷରେ ତାହା ହଳଦିଆ ରଙ୍ଗ ଧରି ସୂଚାଇ ଦେଉଥିଲା ଯେ ଏବେ ଅମଳର ସମୟ ଆସିଗଲା।

କାବେରୀ ଅବବାହିକାର ପ୍ରତି ଚାଖଣ୍ଡ ଜମିରେ ଯୁଗ ଯୁଗ ଧରି ଚାଷ ହୋଇଆସୁଛି। ଚାଷଜମି ଏତେ ମୂଲ୍ୟବାନ ଥିଲା ଯେ ସେଠାରେ ଗୋଚର ଭୂମି ପ୍ରାୟ ନଥିଲା, ଜଙ୍ଗଲ ବି ନଥିଲା। ଠାଏ ଠାଏ କେବଳ ଗୋଟିକିଆ ନଡ଼ିଆ ବା ବରଗଛ କିଛି ଦେଖା ଯାଉଥିଲା ଏବଂ ସମୁଦ୍ର ପାଖରେ ତାଳ ଓ ଜଳପାଇ ଗଛ ମଧ୍ୟ ମିଳୁଥିଲା। 342 ବର୍ଗ ମାଇଲ କ୍ଷେତ୍ରଫଳ ବିଶିଷ୍ଟ ଏହି ତାଲୁକାରେ ପ୍ରାୟ ସାଢ଼େ ତିନିଶହ ଗାଁ ଥିଲା ଓ ତାଲୁକାର ମୁଖ୍ୟ ସହର ଥିଲା କୁମ୍ଭକୋଣମ୍। ଅଳ୍ପ କେତୋଟି ଚାଳଘର ଓ କେତେ ଶହ ମଣିଷର ଗାଁଗୁଡ଼ିକ ବେଶ୍ ଛୋଟ ଥିଲେ ଏବଂ ଫସଲଭରା ସମୁଦ୍ର ଭିତରେ ଛୋଟ ଛୋଟ ଦ୍ୱୀପ ଭଳି ଲାଗୁଥିଲେ। ଗାଁଗୁଡ଼ିକ ଚାଷଜମିରୁ କିଛି ଉଚ୍ଚ ଜାଗାରେ ଥିଲେ ବି ଅନେକ ସମୟରେ ନଡ଼ିଆଗଛ ଭିତରେ ଲୁଚି ରହୁଥିଲେ।

କିନ୍ତୁ ରାମାନୁଜନ୍‌ଙ୍କ ପରିବାର କ୍ଷେତ ବାଡ଼ିର ମଣିଷ ନ ଥିଲେ। ସେମାନେ ଥିଲେ ସହରି ମଣିଷ। ସେମାନେ ଗରିବ ଥିଲେ, କିନ୍ତୁ ସହରି ଗରିବ। ସେମାନେ କେବଳ ଭୌତିକ ଦୁନିଆ ଭିତରେ ନିଜକୁ ସୀମିତ ରଖୁ ନ ଥିଲେ, ମନ ଓ ଆତ୍ମାର ଦୁନିଆରେ ମଧ୍ୟ ତାଙ୍କର ପ୍ରବେଶ ଥିଲା। କାବେରୀର ଦୟାରୁ ସହରବାସୀ ଚାଷ ଚିନ୍ତାରୁ ମୁକ୍ତ ରହି ବି ସମୃଦ୍ଧ ଥିଲେ ଏବଂ ରାମାନୁଜନ୍‌ଙ୍କ ପରିବାର ମଧ୍ୟ ଏହି ପରୋକ୍ଷ ସମୃଦ୍ଧିରେ ଭାଗୀଦାର ଥିଲେ।

କୁମ୍ଭକୋଣମ୍ ସହରାଞ୍ଚଳର ପରିବେଶ ଚାରିପାଖର ଗାଉଁଲି ପରିବେଶଠାରୁ ବେଶ୍ ଭିନ୍ନ ଥିଲା। ଉନ୍ମୁକ୍ତ ମାନସିକତାର କୁମ୍ଭକୋଣମ୍ ସହର ଆଖି, ହାତ ଓ ମସ୍ତିଷ୍କର କାମର କେନ୍ଦ୍ର ଥିଲା ଯାହା ପାଇଁ ଅବସର ସମୟର ଆବଶ୍ୟକତା ରହିଥିଲା। ରାମାନୁଜନ୍‌ଙ୍କ ପିଲାଦିନେ ସେଠାରେ କରାଯାଇଥିବା ଏକ ସର୍ବେକ୍ଷଣରୁ ଜଣାପଡ଼ିଥିଲା ଯେ ମାନ୍ଦ୍ରାଜ ପ୍ରେସିଡେନ୍‌ସି ଭିତରେ ସବୁଠାରୁ ବେଶି ବୃତ୍ତିଧାରୀ ଲୋକ ଥିଲେ କୁମ୍ଭକୋଣମ୍‌ରେ। ଧାତୁ କାମ ଭଳି ହସ୍ତଶିଳ୍ପ ଏଠାକାର ମୁଖ୍ୟ ବୃତ୍ତି ଥିଲା। ତମ୍ବା, ରୁପା ଓ ପିତ୍ତଳର ସୂକ୍ଷ୍ମ କାରୁକାର୍ଯ୍ୟଭରା ଦେବାଦେବୀ ମୂର୍ତ୍ତୀ ଗଢ଼ିବା କାମରେ ସେଠି ଏକଦା 600 କାରିଗର ଲାଗିଥିଲେ ଓ ୟୁରୋପର ବଜାରକୁ ପଠାଉଥିଲେ।

କୁମ୍ଭକୋଣମ୍‌ର ଆଉ ଗୋଟିଏ ବଡ଼ ପେଶା ଥିଲା ରେଶମ ଶାଢ଼ୀ ବୁଣିବା। ଦୁଇ ହଜାର ତନ୍ତ ଓ ତିନି ହଜାର ମଣିଷ ଏହି କାମରେ ଲାଗିଥିଲେ। କୁମ୍ଭକୋଣମ୍ ଓ ପାଖରେ ଥିବା ତାଞ୍ଜୋର ତାଙ୍କର ସୁନା ଓ ରୁପା ସୂତାର ଧଡ଼ି ଥିବା ସୂକ୍ଷ୍ମ ରେଶମ ଶାଢ଼ୀ ପାଇଁ ଦକ୍ଷିଣ ଭାରତ ଭିତରେ ସବୁଠାରୁ ବେଶି ପ୍ରସିଦ୍ଧ ଥିଲେ। ଏହି ଶାଢ଼ୀଗୁଡ଼ିକର ଦାମ ଶହେ ଟଙ୍କା ଯାଏଁ ହେଉଥିଲା, ଯାହା କେଉଁ ଏକ ଗରିବ ପରିବାରର ବାର୍ଷିକ ଆୟର ପାଖାପାଖି ଥିଲା।

କାବେରୀ ଅବବାହିକାର ପ୍ରାଚୁର୍ଯ୍ୟ ଅନେକ ଧନୀ ଚାଷୀ ପରିବାର ସୃଷ୍ଟି କରିଥିଲା ଏବଂ ତାଙ୍କର ଝିଅ ବାହାଘର ପାଇଁ ଡଜନେ ବା ଅଧିକ ଶାଢ଼ୀ ଦରକାର ପଡୁଥିଲା। ବାହାଘର ଆଗରୁ ପୂରା ପରିବାର ସହରକୁ ଯାଇ ମନ ପସନ୍ଦର ଶାଢ଼ୀ ବାକିରେ ନେଇଆସୁଥିଲେ ଏବଂ ଦୋକାନୀମାନେ ମଧ୍ୟ ଏଭଳି ଧନୀ ଲୋକମାନଙ୍କୁ ବାକି ଦେବା ପାଇଁ ଖୁସିରେ ରାଜି ଥିଲେ। କେତେ ସମୟରେ ପୁରୁଷମାନେ ଯାଇ କିଣାକିଣି କରିଥା'ନ୍ତି, କାରଣ, ଜଣେ ଶାଢ଼ୀ ଦୋକାନୀର କହିବା ଅନୁସାରେ, ସେମାନଙ୍କର ଡର ଥାଏ ଯେ ମହିଳାମାନେ କାଳେ ବେଶି ଖର୍ଚ୍ଚ କରି ପକାଇବେ।

ରାମାନୁଜନ୍‌ଙ୍କ ଜନ୍ମ ସମୟରେ ତାଙ୍କ ବାପା ଶ୍ରୀନିବାସ ଆୟେଙ୍ଗାରଙ୍କୁ ଚବିଶ ବର୍ଷ ବୟସ ହୋଇଥିଲା ଏବଂ ସେ ତାଙ୍କ ସ୍ତ୍ରୀଙ୍କଠାରୁ ପାଞ୍ଚ ବର୍ଷ ବଡ଼ ଥିଲେ। ତାଙ୍କ ବାପା କୁପୁସ୍ୱାମୀଙ୍କ ଭଳି ଶ୍ରୀନିବାସ ମଧ୍ୟ ଗୋଟିଏ ଶାଢ଼ୀ ଦୋକାନରେ କିରାଣି ଚାକିରି କରୁଥିଲେ। ସାଧାରଣତଃ ଜୀବନ ସାରା ସେମାନେ ସେହି ଏକା କାମ କରିଥା'ନ୍ତି - ଗରାଖଙ୍କ କଥା ବୁଝିବା, ବରାଦ ରଖିବା, ନିତିଦିନିଆ ହିସାବ ବୁଝିବା, ହୁଏତ କେବେ ପାଖ ଗାଁମାନଙ୍କୁ ଯାଇ ବାକି ପଇସା ଆଣିବା ଇତ୍ୟାଦି। କେବେ କେବେ କେହି ମାଲିକ ଜଣେ କିରାଣିଙ୍କୁ ଦୋକାନର ଅଂଶିଦାର ଭାବରେ ନେଇପାରନ୍ତି ବା ଆଉ କେହି ନିଜର ଦୋକାନ ଖୋଲିପାରନ୍ତି। ସେଥିପାଇଁ କିନ୍ତୁ ସ୍ୱତନ୍ତ୍ର ଉଦ୍‌ଯୋଗ ଓ ବ୍ୟାବସାୟିକ ମନୋଭାବ ଦରକାର ପଡ଼ିଥାଏ। କନାର ଗୁଣ ଚିହ୍ନିବାରେ ଶ୍ରୀନିବାସଙ୍କର ବିଶେଷ ଦକ୍ଷତା ଥିଲା ଯାହା ଉପରେ ତାଙ୍କ ମାଲିକ ନିର୍ଭର କରୁଥିଲେ। କିନ୍ତୁ ଆହୁରି ଆଗକୁ ଯାଇ ଉଚ୍ଚତର ପଦବୀରେ ରହିବା ପାଇଁ ବା ସ୍ୱାଧୀନ ବ୍ୟବସାୟ କରିବା ପାଇଁ ଦରକାର ଉଦ୍‌ଯୋଗ ତାଙ୍କଠାରେ ନ ଥିଲା।

ଶ୍ରୀନିବାସ ଓ ଅନ୍ୟ କିରାଣିମାନେ ସକାଳ ପ୍ରାୟ ଆଠଟା ବେଳୁ କାମକୁ ଯାଇ ସୂର୍ଯ୍ୟାସ୍ତର ବେଶ୍ ପରେ ଘରକୁ ଫେରୁଥିଲେ। କୁମ୍ଭକୋଣମ୍ ବିଷୁବ ରେଖା ପାଖାପାଖି ଥିବାରୁ ସେଠାରେ ବର୍ଷସାରା ସନ୍ଧ୍ୟା ପ୍ରାୟ ଛ'ଟା ବେଳେ ସୂର୍ଯ୍ୟ ଅସ୍ତ ହେଉଥିଲା। କେବେ କେବେ ମଧ୍ୟାହ୍ନରେ ଖାଇବା ପାଇଁ ସେମାନେ ଘରକୁ ଆସୁଥିଲେ, କିନ୍ତୁ ଅଧିକାଂଶ ସମୟରେ ସେମାନେ ଦିନ ଖାଇବା ସାଙ୍ଗରେ

ନେଇ ଦୋକାନରେ ହିଁ ଖାଉଥିଲେ। ବର୍ଷର ଭଲ ସମୟ ଅନୁସାରେ କେବଳ କିଛି ନିର୍ଦ୍ଦିଷ୍ଟ ମାସରେ ବାହାଘର ସବୁ କରାଯାଏ। ତେଣୁ ଶାଢ଼ୀ ଦୋକାନଗୁଡ଼ିକର ବ୍ୟବସାୟ ସେତିକିବେଳେ ବେଶି ହୁଏ ଏବଂ ଅନ୍ୟ ସମୟରେ ମାନ୍ଦା ରହେ।

ଦିନ ଦିନ, ବର୍ଷ ବର୍ଷ ଧରି ଶ୍ରୀନିବାସ ଦୋକାନ ଯାଉଥିଲେ ଏବଂ ରାମାନୁଜନ୍‌ଙ୍କ ଜୀବନରୁ ପ୍ରାୟ ଅନୁପସ୍ଥିତ ରହୁଥିଲେ। ଭାରତୀୟ ସମାଜରେ ଘରେ ବାପାମାନଙ୍କର ଭୂମିକା ଖୁବ୍ କମ୍ ରହୁଥିଲା। ଫଳରେ ପିଲାଙ୍କ ସହିତ ତାଙ୍କର ସମ୍ପର୍କ ଦୂର, ଶୀତଳ, ଏପରିକି ନିୟମାନୁଗତ ଓ ଭୟମିଶ୍ରିତ ରହୁଥିଲା। ଘରର କାରବାରରେ ଶ୍ରୀନିବାସଙ୍କ ଉପସ୍ଥିତି ପ୍ରାୟ ଅନୁଭୂତ ହେଉ ନ ଥିଲା। ରାମାନୁଜନ୍‌ଙ୍କର ଜଣେ ପିଲାଦିନର ସାଙ୍ଗ ଶ୍ରୀନିବାସଙ୍କୁ 'ଅତି ଚୁପଚାପ' ଭାବରେ ବର୍ଣ୍ଣନା କରିଥିଲେ ଏବଂ ରାମାନୁଜନ୍‌ଙ୍କ ଜୀବନରେ ସେ ପ୍ରଭାବଶୂନ୍ୟ ଥିଲେ କହିଲେ ଚଳେ। ଚୁପଚାପ ସ୍ୱଭାବର ନ ହୋଇଥିଲେ ବି ରାମାନୁଜନ୍‌ଙ୍କୁ ପ୍ରଭାବିତ କରିବାରେ ସେ କୋମଳତାମ୍ମାଲ୍‌ଙ୍କ ସହିତ ପ୍ରତିଯୋଗିତାରେ ବହୁ ପଛରେ ପଡ଼ିଥା'ନ୍ତେ।

ଅନେକ ବର୍ଷ ପରେ ଇଂଲଣ୍ଡରେ ଥିବାବେଳେ ବାପାଙ୍କ ପାଖକୁ ଲେଖିଥିବା ଚିଠି ମାତ୍ର କେଇଧାଡ଼ିରେ ସୀମିତ ଥିଲା। ତା'ର ବିଷୟବସ୍ତୁ ଥିଲା ଘରର ରକ୍ଷଣାବେକ୍ଷଣ ଆଦି ମାମୁଲି କଥା। କିନ୍ତୁ ସେହି ସମୟରେ ମା'ଙ୍କ ପାଖକୁ ତାଙ୍କର ଚିଠି ଥିଲା ବିସ୍ତୃତ ଓ ଗଭୀର। ସେବେ ୟୁରୋପରେ ଚାଲିଥିବା ଭୟାବହ ସଂଘର୍ଷର ଟିକିନିଖି ବିବରଣୀ ସେ ମା'ଙ୍କ ଚିଠିରେ ଦେଇଥିଲେ। କେତେ ସୈନ୍ୟ କେଉଁଠି ଲଢୁଛନ୍ତି, ଯୁଦ୍ଧକ୍ଷେତ୍ରର ଆକାର, ଯୁଦ୍ଧରେ ଉଡ଼ାଜାହାଜର ବ୍ୟବହାର, ଇଂରେଜ ଯୁଦ୍ଧ ପ୍ରସ୍ତୁତି ପାଇଁ ଭାରତର ରାଜାମାନଙ୍କର ଦାନ ଆଦି ବିଷୟରେ ସେ ସେଥିରେ ଲେଖୁଥିଲେ।

ମା'ଙ୍କୁ ଯେ ଏସବୁ କଥା ଭଲ ଲାଗିବ ସେକଥା ସେ ନିଶ୍ଚୟ ଜାଣିଥିବେ, କାରଣ ସେ ଦୁହେଁ ଦୁହିଁଙ୍କୁ ବୁଝିଥିଲେ। ସେ ଦୁହେଁ ଏକା 'ଭାଷା'ରେ କଥା ହେଉଥିଲେ, ନିଜ ନିଜର ବୌଦ୍ଧିକ ସାହଚର୍ଯ୍ୟକୁ ଉପଭୋଗ କରୁଥିଲେ, ଦୁହିଁଙ୍କ ଭିତରେ ତୀବ୍ର ମାନସିକ ବନ୍ଧନ ରହିଥିଲା। ପିଲାବେଳେ ରାମାନୁଜନ୍ ମା'ଙ୍କ ସହିତ ବାଘ-ଛେଳି ଖେଳ ଖେଳୁଥିଲେ। ଏହି ଖେଳରେ ଗାର କଟା ଘର ଭିତରେ ତିନିଟି ବାଘ ପନ୍ଦରଟି ଛେଳିଙ୍କ ଉପରେ ଡେଇଁ ତାଙ୍କୁ ମାରିବାକୁ ଚେଷ୍ଟା କରୁଥିଲେ ଏବଂ ଛେଳିମାନେ ବାଘଙ୍କୁ ଘେରିଯାଇ ଅଚଳ କରିବାରେ ଲାଗିଥିଲେ। ଖେଳଟି ପାଇଁ ଗଭୀର ଚିନ୍ତାଶକ୍ତି, କୌଶଳ ଓ ଚେସ୍ ଖେଳ ଭଳି ଏକାଗ୍ରତା ଦରକାର ହେଉଥିଲା। ତେଣୁ ଏହି ଆହ୍ୱାନ ଦୁହିଁଙ୍କ ପାଇଁ ଅତି ଆନନ୍ଦଦାୟକ ଥିଲା।

କୋମଳତାମ୍ମାଲ୍‌ଙ୍କ ବିଷୟରେ ଜଣେ କହନ୍ତି ଯେ ସେ ଜଣେ 'ଚତୁର ଓ ସଂସ୍କୃତିସମ୍ପନ୍ନ' ମହିଳା ଥିଲେ। ରାମାନୁଜନ୍ ଦେଖିବାକୁ ମା'ଙ୍କ ଭଳି ଥିଲେ। କୋମଳତାମ୍ମାଲ୍‌ଙ୍କ କିଛି ପୂର୍ବପୁରୁଷ ରାଜାଙ୍କ ଦ୍ୱାରା ପ୍ରତିପାଳିତ ସଂସ୍କୃତ ପଣ୍ଡିତ ଥିଲେ। ତାଙ୍କ ବାପା ନାରାୟଣ ଆୟେଙ୍ଗାର ଇରୋଡ୍‌ର ଜଣେ ଜଣାଶୁଣା ଅମୀନ ଥିଲେ। ଜିଲ୍ଲା ନ୍ୟାୟାଳୟର ଜଣେ କର୍ମଚାରୀ ଭାବରେ ସାକ୍ଷୀ ନେବା, କଚେରୀ ବିବରଣୀ ଲେଖିବା, ଓକିଲଙ୍କ ସହିତ ଆଲୋଚନା କରିବା ଆଦି ତାଙ୍କର କାମ ଥିଲା। ରାମାନୁଜନ୍‌ଙ୍କୁ ଚାରିବର୍ଷ ବୟସ ବେଳେ ଅଜା ନାରାୟଣ ଆୟେଙ୍ଗାର ଜଣେ ଉପରିସ୍ଥ ଅଧିକାରୀଙ୍କର ରୋଷର ଶିକାର ହୋଇ ଚାକିରି ହରାଇଲେ ଏବଂ ସ୍ତ୍ରୀ ରଙ୍ଗାମ୍ମାଲ୍‌ଙ୍କ ସହିତ ମାନ୍ଦ୍ରାଜ ପାଖରେ ଥିବା

କାଞ୍ଚିପୁରମ୍‌କୁ ଚାଲିଗଲେ। ସେଠାରେ ସେ ଗୋଟିଏ ଧର୍ମଶାଳାର ପରିଚାଳନା ଦାୟିତ୍ୱ ନେଲେ ଯେଉଁଠି ସେ ବାହାଘର ଓ ଯାତ୍ରୀଙ୍କ ରହିବା ପାଇଁ ସୁବିଧା ଯୋଗାଇଲେ।

କୋମଲତାମ୍ମାଲ୍‌ଙ୍କର ଗୋଟିଏ ଫଟୋ ମିଳିଛି। ଫଟୋଉଠା ବେଳେ ସେ ତାଙ୍କ ଜୀବନର ଚାଳିଶ ବା ପଚାଶ ଦଶକରେ ଥିବା ଭଳି ମନେହେଉଛନ୍ତି। ନ ହାତିଆ ଶାଢ଼ୀ ପିନ୍ଧିଥିଲେ ବି ଫଟୋରୁ ତାଙ୍କର ମୋଟାପଣ ଜଣାପଡ଼ୁଛି। ତଥାପି ଚଉକିର ବାଡ଼ା ଉପରେ ଦିଶୁଥିବା ତାଙ୍କ ହାତ ରଖିବାର ଠାଣିରୁ ନିରୁଦ୍‌ବେଗତାର ସୂଚନା ମିଳୁଛି। ତାଙ୍କର ପୂରା ଦେହରେ ଏକ ଆବେଗମୟ ବ୍ୟକ୍ତିତ୍ୱ ଫୁଟି ଉଠୁଛି। ଫଟୋରେ ତାଙ୍କ ମୁଣ୍ଡ ଗୋଟିଏ କଡ଼କୁ ଅଳ୍ପ ଢଳିଛି, ସଜୀବ ଆଖି ଦୁଇଟି ଜଳନ୍ତା ପ୍ରାୟ, ଚିପା ଓଠ, ଆଗକୁ ଟିକିଏ ଝୁଙ୍କି ବସିଥିବା ଅବସ୍ଥାରେ କେବଳ ଗୋଇଠି ଦୁଇଟି ଚଟାଣ ଛୁଉଁଛି। ସତେ ଯେପରି ସେ ଡେଇଁବାକୁ ପ୍ରସ୍ତୁତ। ଫଟୋରୁ ଯେଉଁ ସାମଗ୍ରିକ ଆଭାସ ମିଳେ ତାହା ହେଉଛି ଏକ ବିଶାଳ ବ୍ୟକ୍ତିତ୍ୱର, ଯାହାକୁ ଧରିରଖିବା ପାଇଁ ସେ ସ୍ଥୂଳ ଶରୀରଟି ଯଥେଷ୍ଟ ନୁହେଁ।

ସେ ଜଣେ ତୀବ୍ର ବ୍ୟକ୍ତିତ୍ୱ ଓ ଅଭିନିବିଷ୍ଟ ଚିତ୍ତସମ୍ପନ୍ନ ମହିଳା ଥିଲେ ଯିଏ ନିଜ ଆଗ୍ରହର କାମରେ ତାଙ୍କ ବଳିଷ୍ଠ ବ୍ୟକ୍ତିତ୍ୱକୁ ପୂରା ମାତ୍ରାରେ ଲଦିଦେବା ପାଇଁ ପଛାଉ ନ ଥିଲେ ଏବଂ ସେହି ସମୟରେ ତାଙ୍କର ଏକମାତ୍ର ଆଗ୍ରହର ବସ୍ତୁ ଥିଲା ତାଙ୍କର ପୁଅ, ଚିନ୍ନାସ୍ୱାମୀ। ଭାରତରେ ଦୃଢ଼ ମାତା-ପୁତ୍ର ସମ୍ପର୍କ ପୁରାଣ ଯୁଗରୁ ବର୍ଣ୍ଣିତ ହୋଇଆସିଛି। ମା'ଙ୍କ ସହିତ ରାମାନୁଜନ୍‌ଙ୍କ ସମ୍ପର୍କ ନିଶ୍ଚୟ ସେହିଭଳି ଦୃଢ଼ ଥିଲା ଯାହା ବିଷୟରେ ଭାରତୀୟ ଜୀବନୀକାରମାନେ ମଧ୍ୟ ଟିପ୍ପଣୀ ଦେଇଛନ୍ତି।

କୋମଲତାମ୍ମାଲ୍ ରାମାନୁଜନ୍‌ଙ୍କୁ ଦହି-ଭାତ, ମସଲାଦିଆ ଫଳପରିବା ଆଚାର ଓ ସମ୍ବର ଖୁଆଉଥିଲେ। ତାଙ୍କ ଚୁଟିକୁ କୁଣ୍ଡାଇ ଗୁଛ କରି ଗୁଡ଼ାଇ ଦେଉଥିଲେ ଓ କେବେ କେବେ ସେଥିରେ ଫୁଲ ଖୋଷି ଦେଉଥିଲେ। ଧୋତି ପିନ୍ଧାଇ, ତିଳକ ଲଗାଇ ରାମାନୁଜନ୍‌ଙ୍କୁ ସେ ସ୍କୁଲରେ ଛାଡୁଥିଲେ। ସ୍କୁଲରେ ପଶିବା ଆଗରୁ ରାମାନୁଜନ୍ ମା'ଙ୍କ ପାଦ ଛୁଇଁ ଆଶୀର୍ବାଦ ମାଗୁଥିଲେ। ରାମାନୁଜନ୍ କାହା ସାଙ୍ଗରେ ସାଙ୍ଗ ହେଉଛନ୍ତି, କିପରି ସମୟ କଟାଉଛନ୍ତି ତାହା ଉପରେ ମା ସବୁବେଳେ ଆଖି ରଖୁଥିଲେ ଏବଂ ତାଙ୍କ ବିଷୟରେ ବିଭିନ୍ନ ନିଷ୍ପତ୍ତି ନେଉଥିଲେ। ଯେବେ ସେ ଭାବୁଥିଲେ ଯେ ରାମାନୁଜନ୍ ସ୍କୁଲରେ ଉଚିତ ବ୍ୟବହାର ପାଉନାହାନ୍ତି, ସେ ପ୍ରିନ୍‌ସିପାଲଙ୍କ ଅଫିସରେ ପଶି ପ୍ରତିବାଦ କରୁଥିଲେ। ଯେତେବେଳେ ମା ଭାବିଲେ ଯେ ରାମାନୁଜନ୍ ବିବାହ କରିବା ଉଚିତ, ସ୍ୱାମୀଙ୍କୁ କିଛି ମଧ୍ୟ ନ ପଚାରି, ସେ କନ୍ୟାଟିଏ ଠିକ୍ କରି ବାହାଘର ବ୍ୟବସ୍ଥା କରିଦେଲେ।

ଧର୍ମକର୍ମରେ କୋମଲତାମ୍ମାଲ୍ ପ୍ରଚୁର ଶକ୍ତି ଖଟାଉଥିଲେ। ହିନ୍ଦୁ ପରିବାରରେ ସାଧାରଣତଃ ପୁରୁଷଙ୍କ ତୁଳନାରେ ସ୍ତ୍ରୀମାନେ ବେଶି ଧର୍ମମନା ହୁଅନ୍ତି ଓ ବ୍ରତ ଉପବାସ ନିଷ୍ଠାପର ଭାବରେ ପାଳନ କରନ୍ତି। କୋମଲତାମ୍ମାଲ୍‌ଙ୍କ ପରିବାର ପାଇଁ ମଧ୍ୟ ଏହା ସତ ଥିଲା। ତାଙ୍କ ମା'ଙ୍କୁ କାଳିସୀ ଲାଗୁଥିଲା ବୋଲି କୁହାଯାଏ। ରାମାନୁଜନ୍‌ଙ୍କ ପରିବାରରେ ମଧ୍ୟ ସେହିପରି ଧାର୍ମିକତା ରହିଥିଲା। ଅତି ଧର୍ମମନା କୋମଲତାମ୍ମାଲ୍ ଘରେ ପ୍ରାର୍ଥନା କରାଉଥିଲେ, ମନ୍ଦିରରେ ଭଜନ ଗାଉଥିଲେ, ଭାଗ୍ୟ ଗଣନା କରାଉଥିଲେ। ସବୁବେଳେ ସେ ତାଙ୍କ କୁଳଦେବୀ ନାମାକ୍କାଲ୍‌ର ନାମଗିରିଙ୍କ ନାଁ ଜପୁଥିଲେ। ଜଣେ ପାରିବାରିକ ବନ୍ଧୁଙ୍କ କଥାରେ ସେ ଥିଲେ ଜଣେ 'ଅତି ବିଚକ୍ଷଣ, ଅଲୌକିକ ମାନସିକ ଶକ୍ତି

ଓ କଳ୍ପନା ଶକ୍ତିସମ୍ପନ୍ନ ମହିଳା'। ଅସଂଖ୍ୟ ପୁରାଣ କାହାଣୀ ତାଙ୍କୁ ଜଣାଥିଲା ଏବଂ ମହାଭାରତ ରାମାୟଣଠାରୁ ଆରମ୍ଭ କରି ପର ସମୟର ବିକ୍ରମ କାହାଣୀ ସବୁ ପିଲାଙ୍କୁ ଶୁଣାଉଥିଲେ। ଗପକୁହା ମଝିରେ ମଝିରେ ସେ ନାମଗିରିଙ୍କ ନାଁ ନେବା ପାଇଁ ଅଟକୁ ଥିଲେ।

ମା'ଙ୍କଠାରୁ ରାମାନୁଜନ୍ ତାଙ୍କର ପରମ୍ପରା, ଜାତିବର୍ଣ୍ଣ ଓ ପୁରାଣ ବିଷୟରେ ସବୁ କଥା ଶିଖୁଥିଲେ। ଭଜନ ଗାଇବା, ମନ୍ଦିରରେ ପୂଜା ପ୍ରାର୍ଥନା କରିବା, ହିତକର ଖାଦ୍ୟ ଖାଇବା, ଅଖାଦ୍ୟରୁ ଦୂରେଇ ରହିବା - ମୋଟ ଉପରେ କହିଲେ ଜଣେ ଭଲ ବ୍ରାହ୍ମଣ ହେବା ପାଇଁ କ'ଣ କରିବା ଉଚିତ ଓ କ'ଣ ଅନୁଚିତ - ସେସବୁ ସେ ଶିଖୁଥିଲେ।

## 3. ବ୍ରାହ୍ମଣ ବାଲୁତ କାଳ

ହଜାର ହଜାର ବର୍ଷ ଧରି ବ୍ରାହ୍ମଣମାନେ ଶିକ୍ଷକ, ପଣ୍ଡିତ ଓ ହିନ୍ଦୁ ଜୀବନଦର୍ଶନର ବ୍ୟାଖ୍ୟାକାର ହୋଇଆସିଛନ୍ତି। ଚନ୍ଦା ଭଳି ଦିଶୁଥିବା ନଣ୍ଡା ମୁଣ୍ଡ, ତିଳକ ସିନ୍ଦୁରଲଗା କପାଳ, ପଛରେ ଚଇତନ ଚୁଟି ଓ କାନ୍ଧରେ ପଇତା ପକାଇଥିବା ଅନେକ ବ୍ରାହ୍ମଣ କୁମ୍ଭକୋଣମ୍‌ର ରାସ୍ତା ଓ ମନ୍ଦିରରେ ସବୁବେଳେ ଦେଖାଯାଉଥିଲେ। ବ୍ରାହ୍ମଣମାନଙ୍କ ପାଇଁ କୁମ୍ଭକୋଣମ୍ ଏକ ମୁଖ୍ୟ ପୀଠ ଥିଲା।

ଦକ୍ଷିଣ ଭାରତରେ ଲୋକସଂଖ୍ୟାର ପ୍ରାୟ ଚାରି ଶତାଂଶ ବ୍ରାହ୍ମଣ ଥିଲେ ଏବଂ ହିନ୍ଦୁମାନଙ୍କ ପାଇଁ ସେମାନେ ଗଭୀର ସମ୍ମାନର ପାତ୍ର ଥିଲେ। ଆଗ କାଳରେ ଅନେକ ଧନୀ ପରିବାର ବ୍ରାହ୍ମଣମାନଙ୍କୁ ଜମି ଓ ଧନ ଦାନ କରି ପୁଣ୍ୟ ଅର୍ଜନ କରୁଥିଲେ ଓ ପାପରୁ ମୁକ୍ତି ପାଉଥିଲେ। ବ୍ରାହ୍ମଣମାନେ ପୂଜକ, ଜ୍ୟୋତିଷ, ଗୁରୁ, ବେଦ ବିଶାରଦ ଭାବରେ ସର୍ବୋଚ୍ଚ ପ୍ରତିଷ୍ଠା ଲାଭ କରୁଥିଲେ ଏବଂ ବିବାହ ଓ ଅନ୍ତିମ ସତ୍କାର ସମୟରେ ତାଙ୍କର ଉପସ୍ଥିତି ଅପରିହାର୍ଯ୍ୟ ଥିଲା।

ସେହି ସମୟରେ ଅନେକ ଇଂରେଜ ଲେଖକ ପାଠକଙ୍କୁ ଚମତ୍କୃତ କରିବା ପାଇଁ ଜାତିପ୍ରଥାର ଭୟାବହ ଚିତ୍ର ଦେଇ କେତେକ ବହି ଲେଖିଥିଲେ। ପୂର୍ବ ଜନ୍ମରେ କରିଥିବା ପାପ ପାଇଁ ଶାସ୍ତି ରୂପରେ ସେମାନେ ନୀଚ ଓ ଦଳିତ ଜାତିରେ ଜନ୍ମ ହେଉଥିବା ବିଶ୍ୱାସ କଥା ବର୍ଣ୍ଣନା କରୁଥିଲେ। ସେହି ବର୍ଣ୍ଣନା ଅନୁସାରେ ଚାରିଟି ଜାତି ଭିତରେ ବ୍ରାହ୍ମଣମାନେ ସର୍ବୋଚ୍ଚ ଥିଲେ; ଅନ୍ୟ ଜାତିଗୁଡ଼ିକ ଥିଲେ କ୍ଷତ୍ରିୟ ବା ଯୋଦ୍ଧା, ବୈଶ୍ୟ ବା ବଣିକ ଓ ଶୁଦ୍ର ବା ଶ୍ରମିକ। ଏହି ଚାରି ଜାତି ବାହାରେ ଏକ ପଞ୍ଚମ ଅଛୁଆଁ ଗୋଷ୍ଠୀ ରହିଥିଲା। ପ୍ରଥମ ଚାରି ଜାତିର ଲୋକମାନେ ମନ୍ଦିରକୁ ଯାଇ ପାରୁଥିଲେ କିନ୍ତୁ ଅଛୁଆଁମାନଙ୍କୁ ତାହା ମନାଥିଲା। ଗାଁ କୂଅରୁ ପାଣି ନେବା ମଧ୍ୟ ଅଛୁଆଁମାନଙ୍କୁ ମନା ଥିଲା। ଏପରିକି ଅଛୁଆଁଙ୍କ ଛାଇ ପଡ଼ିଲେ ବ୍ରାହ୍ମଣମାନଙ୍କୁ ଶୁଦ୍ଧି ହେବାକୁ ପଡୁଥିଲା।

ତୃତୀୟ ଶତାବ୍ଦୀ ବେଳକୁ ଲେଖା ହୋଇଥିବା ମନୁ ସଂହିତାରେ ଏହି ବର୍ଣ୍ଣ ବିଭାଗର ବର୍ଣ୍ଣନା ରହିଛି। ଦକ୍ଷିଣ ଭାରତରେ କିନ୍ତୁ ଜାତିପ୍ରଥା କିଛି ଅଲଗା ପ୍ରକାରର ଦେଖାଯାଉଥିଲା। ପ୍ରଥମତଃ ସେଠାରେ କ୍ଷତ୍ରିୟ ବର୍ଗ ପ୍ରାୟ ନାହିଁ। ଦ୍ୱିତୀୟତଃ ଭାରତର ଅନ୍ୟ ଅଞ୍ଚଳରେ ପ୍ରତି ଜାତି ଭିତରେ ବିଭିନ୍ନ ଗୋତ୍ର ଭଳି ଉପବିଭାଗମାନ ଦେଖାଯାଏ ଯାହା ଭିତରେ ବୈବାହିକ ସମ୍ବନ୍ଧ ଆଦି ନିୟନ୍ତ୍ରିତ ହୁଏ। ଦକ୍ଷିଣ ଭାରତରେ ସେଭଳି ଉପବିଭାଗ ଦେଖିବାକୁ ମିଳେନାହିଁ, ବରଂ ପେଷା ଆଧାରିତ ଜାତିମାନ ସେଠାରେ ଦେଖାଯାଏ। ଲୋକମାନେ ସେଠାରେ ଜଣେ ଭାନ୍ନିଆର ବା ଚେଟ୍ଟିଆର୍

ଭାବରେ ପରିଚିତ ହୁଅନ୍ତି। ଏହି ଧାରାରେ ରାମାନୁଜନ୍ ଜଣେ ବୈଷ୍ଣବ ବ୍ରାହ୍ମଣ ଥିଲେ ଏବଂ ତାଙ୍କ ସାଙ୍ଗିଆ ଆୟେଙ୍ଗାର ଏହା ସୂଚାଉ ଥିଲା।

ବ୍ରାହ୍ମଣମାନଙ୍କ ଭିତରେ ବୈଷ୍ଣବଙ୍କ ଅନୁପାତ ପ୍ରାୟ ଏକ ଚତୁର୍ଥାଂଶ ଥିଲା, ତାଙ୍କ ଭିତରେ ପୁଣି ତେଙ୍ଗାଲାଇ, ଭେଦଗାଲାଇ ଆଦି ଉପବିଭାଗ ରହିଥିଲା। ପାଶ୍ଚାତ୍ୟ ଧର୍ମରେ ମଧ୍ୟ ଏହିଭଳି ବିଭାଗ ଓ ଉପବିଭାଗ ଦେଖାଯାଏ। ଉଭୟ କ୍ଷେତ୍ରରେ ଏହି ବିଭାଗୀକରଣ ମୌଳିକ ବିଶ୍ୱାସ ଅପେକ୍ଷା ବେଶି ପ୍ରତିଫଳିତ ହୁଏ ଇତିହାସ, ରୀତିନୀତି ଓ ଉପାସନା ଧାରାରେ।

ସବୁ ହିନ୍ଦୁଙ୍କ ପାଇଁ ପୁନର୍ଜନ୍ମରେ ବିଶ୍ୱାସ, ରାମାୟଣ ମହାଭାରତ ଭଳି ପୁରାଣ, କିଛି ନିର୍ଦ୍ଦିଷ୍ଟ ମୂଲ୍ୟବୋଧ ଓ ସମ୍ବେଦନଶୀଳତା ଭଳି ଅନେକ କଥା ସମାନ ରହୁଥିଲା। କିନ୍ତୁ ଭିନ୍ନ ଗୋଷ୍ଠୀରେ ବିବାହ ସମ୍ଭବ ହେଉନଥିଲା। ବୈଷ୍ଣବ ବ୍ରାହ୍ମଣମାନେ କେବେ ବି ଶୈବ ବ୍ରାହ୍ମଣଙ୍କୁ ବିବାହ କରୁ ନ ଥିଲେ। ଏହି ଦୁଇ ସମ୍ପ୍ରଦାୟର ମଠ ମନ୍ଦିର ଆଦି ଅଲଗା ହେଉଥିଲା। ଏପରିକି ସେମାନେ କପାଳରେ ଲଗାଉଥିବା ତିଳକ ଚିତା ମଧ୍ୟ ଅଲଗା ଆକୃତିର ହେଉଥିଲା।

ଖାଇବା ସମୟରେ ଜାତିର ବାଛବିଚାର ବିଶେଷ ଭାବରେ ଦେଖାଯାଉଥିଲା। ବ୍ରାହ୍ମଣମାନେ କେବଳ ଅନ୍ୟ ବ୍ରାହ୍ମଣଙ୍କ ସହିତ ଖାଉଥିଲେ ଓ ବ୍ରାହ୍ମଣମାନେ ତାଙ୍କ ଖାଦ୍ୟ ପରଷୁଥିଲେ। ସହରରେ ହୋଟେଲରେ ବ୍ରାହ୍ମଣ ରୋଷେୟା ଥିବା କଥା ଗୁରୁତ୍ୱ ସହକାରେ ଘୋଷିତ ହେଉଥିଲା। ବାହାରେ ରହୁଥିବା ବ୍ରାହ୍ମଣମାନେ ତାଙ୍କର ଖାଦ୍ୟର ଶୁଦ୍ଧତା ବିଷୟରେ ପଚରାପଚରି କରି ନିଶ୍ଚିତ ହେଉଥିଲେ। ତୀର୍ଥଯାତ୍ରା ସମୟରେ ବ୍ରାହ୍ମଣମାନେ ତାଙ୍କର ଖାଦ୍ୟ ସାଙ୍ଗରେ ନେଉଥିଲେ। ଘରେ ପରିବାରର ମହିଳାମାନେ ରନ୍ଧାରନ୍ଧି କରୁଥିଲେ, ପୁରୁଷ ଓ ପିଲାମାନଙ୍କୁ ବାଢ଼ିକରି ଦେଉଥିଲେ ଏବଂ ଶେଷରେ ସଫାସଫି କରି ନିଜେ ଖାଉଥିଲେ। ଚଟାଣରେ ବସି ଥାଳିରେ ବା କଦଳୀପତ୍ରରେ ସମସ୍ତେ ହାତରେ ଖାଉଥିଲେ। ଭାତ ସହିତ ଅନ୍ୟ ସବୁ ଗୋଳାଇ, ଗୁଣ୍ଡା କରି ପାଟିକୁ ନେଉଥିଲେ।

ଉତ୍ତର ଭାରତରେ ମୁଖ୍ୟ ଖାଦ୍ୟଶସ୍ୟ ଥିଲା ଗହମ, କିନ୍ତୁ ଦକ୍ଷିଣରେ ଧାନ। ସାଧାରଣ ଦକ୍ଷିଣ ଭାରତୀୟ ଖାଦ୍ୟ ଥିଲା ଭାତ, ସମ୍ବର, ରାଗ ଆଚାର ଓ ଦହି। ପର୍ବ ବା ଭୋଜି ସମୟରେ ବେଶି ପ୍ରକାରର ଖାଦ୍ୟ ରନ୍ଧା ଯାଉଥିଲା। କିଛି ଖାଦ୍ୟ ଖୁବ୍ ରାଗ ହେଉଥିଲା, ଆଉ କିଛି ବେଶ୍ ମିଠା। ମୋଟାମୋଟି ଭାବରେ ସେଠାର ଖାଦ୍ୟ ପୁଷ୍ଟିକର ଓ ସୁସ୍ୱାଦୁ ହେଉଥିଲା। ଫଳ ଭିତରେ ମୁଖ୍ୟ ଥିଲେ ନଡ଼ିଆ, କଦଳୀ, ଆମ୍ବ ଓ ପିଜୁଳି। ସବୁ ବ୍ରାହ୍ମଣଙ୍କ ଭଳି ରାମାନୁଜନ୍ ନିରାମିଷାଶୀ ଥିଲେ। ଏହା କିଛି ବାଧ୍ୟ ବାଧକତାର ଫଳ ନ ଥିଲା ବରଂ ପ୍ରାକୃତିକ ଭାବରେ ସେଠାରେ ସମସ୍ତେ ଏଭଳି ହିଁ ଖାଉଥିଲେ। ଜଣେ ଇହୁଦୀ ବା ମୁସଲମାନ ଯେପରି ଘୁଷୁରି ମାଂସ ଖାଇବା କଥା କେବେ ଚିନ୍ତା ବି କରିବନାହିଁ।

ରାମାନୁଜନ୍‌ଙ୍କ ପିଲାଦିନର ଶିକ୍ଷା ଭିତରେ ରହିଥିଲା ନୈଷ୍ଠିକ ବ୍ରାହ୍ମଣ ହେବାର ପ୍ରସ୍ତୁତି। ସକାଳୁ ଘଷିମାଜି ହୋଇ ଗାଧୋଇବା ସହିତ ଖାଇବା ଆଗରୁ ଓ ପରେ ହାତ ମୁହଁ ଧୋଇବା ଉପରେ ଜୋର ଦିଆଯାଉଥିଲା। ଦେହକୁ ପରିଷ୍କାର ରଖିବା ସହିତ ମନକୁ ଅଦୃଶ୍ୟ ପ୍ରଦୂଷଣରୁ ମୁକ୍ତ ରଖିବାର ଗୁରୁତ୍ୱ ତାଙ୍କୁ ବୁଝାଯାଉଥିଲା। ଅସ୍ପୃଶ୍ୟତାର ଧାରଣା ଏବଂ 'ନୀଚଜାତି'ଙ୍କଠାରୁ ଦୂରତା ରଖିବା କଥା ତାଙ୍କ ଅବଚେତନ ମନରେ ଭରିଦିଆଯାଉଥିଲା।

ଅନେକ ସମୟରେ ବ୍ରାହ୍ମଣମାନେ ତାଙ୍କର ଗର୍ବ ପାଇଁ ଅପ୍ରିୟ ହେଉଥିଲେ। ତାଙ୍କର ଗର୍ବର କାରଣ ଥିଲା ଏହା ଯେ ଜଣେ ଗରିବ ବ୍ରାହ୍ମଣ ମଧ୍ୟ ଅନ୍ୟମାନଙ୍କ ତୁଳନାରେ ପରିଷ୍କାର ଓ ଶୁଦ୍ଧମନା ଥିଲା। ସାଧାରଣ ଶିକ୍ଷା ପାଇଥିବା ବ୍ରାହ୍ମଣ ମଧ୍ୟ କିଛି ସଂସ୍କୃତ ଜାଣିଥିଲା ଯେଉଁଥି ପାଇଁ ଅନ୍ୟ ଶ୍ରେଣୀର ଲୋକମାନେ ତାଙ୍କୁ ସମ୍ମାନ ଜଣାଉଥିଲେ। ଉଚ୍ଚତର ଶିକ୍ଷାରେ ଏବଂ ତାଙ୍କର ବୃତ୍ତିରେ ମଧ୍ୟ ବ୍ରାହ୍ମଣମାନେ ଉନ୍ନତ ଥିଲେ। ଏହିସବୁ କାରଣରୁ ବ୍ରାହ୍ମଣ ସମ୍ପ୍ରଦାୟ ନିଜକୁ ଈଶ୍ୱରଙ୍କ ପ୍ରିୟ ମନେ କରୁଥିଲେ ଏବଂ ସ୍ୱାଭାବିକ ଭାବରେ ରାମାନୁଜନ୍‌ଙ୍କ ମନରେ ମଧ୍ୟ ଏହି ଧାରଣା ରହିଥିଲା।

## 4. ମାପକାଠିର ଉପରେ

ଘରସଂସାର ଛାଡ଼ି ଆଧ୍ୟାତ୍ମିକ ସାଧନା ଲକ୍ଷ୍ୟରେ ସନ୍ୟାସ ନେଇଥିବା ବ୍ରାହ୍ମଣକୁ କେହି ଅପାରଗ ମନେ କରୁ ନ ଥିଲେ। ଜଣେ ସଂସ୍କୃତ ପଣ୍ଡିତ ଡାନିଏଲ୍ ଇଙ୍ଗଲ୍‌ସ୍ ବ୍ରାହ୍ମଣ ପରମ୍ପରା ଶୀର୍ଷକ ଏକ ପ୍ରବନ୍ଧରେ ଲେଖିଛନ୍ତି, "ପାଶ୍ଚାତ୍ୟରେ ଉଚ୍ଚ ଶ୍ରେଣୀର ଲୋକମାନେ କଳା ପ୍ରତି ଯେପରି ଆଦର ଦେଖାନ୍ତି, ସମ୍ଭ୍ରାନ୍ତ ଭାରତୀୟମାନେ ସନ୍ୟାସ ଓ ତନ୍ତ୍ର ସାଧନା ପ୍ରତି ସେଭଳି ସମ୍ମାନ ଦେଖାନ୍ତି।"

ଏହି ପରମ୍ପରାରେ ଧନ ପଛରେ ଆଖିବୁଜି ଦୌଡୁଥିବା ଲୋକଙ୍କୁ କମ୍ ପସନ୍ଦ କରାଯାଉଥିଲା ଏବଂ ସାଧାରଣ ସୁଖ ସ୍ୱାଚ୍ଛନ୍ଦ୍ୟକୁ କିଛି ମାତ୍ରାରେ ଛାଡ଼ି ବୌଦ୍ଧିକ ଓ ଆଧ୍ୟାତ୍ମିକ ଜୀବନ ବିତାଉଥିବା ଲୋକଙ୍କୁ ଅଧିକ ସମ୍ମାନ ମିଳୁଥିଲା। ଧନୀ ବ୍ରାହ୍ମଣମାନଙ୍କ ଜୀବନ ମଧ୍ୟ ପାଶ୍ଚାତ୍ୟ ଦେଶମାନଙ୍କର ଓ ଅନ୍ୟ ଶ୍ରେଣୀର ଧନୀ ଭାରତୀୟଙ୍କ ତୁଳନାରେ ସରଳ ଓ ମିତବ୍ୟୟୀ ଥିଲା। ଏହି ପରମ୍ପରାକୁ "ସରଳ ଜୀବନ, ଉନ୍ନତ ଚିନ୍ତନ" ଭାବରେ ବର୍ଣ୍ଣନା କରାଯାଉଥିଲା।

କିନ୍ତୁ ଏହିସବୁ ପରମ୍ପରା ଧୀରେ ଧୀରେ ବଦଳୁଥିଲା। ରାମାନୁଜନ୍‌ଙ୍କ ପିଲାଦିନେ ବ୍ରାହ୍ମଣମାନେ ପୁରୋହିତ, ଗୁରୁ, ଶାସ୍ତ୍ରୀ, କବି, ସଂସ୍କୃତ ବିଷାରଦ ଓ ସନ୍ୟାସୀ ଭଳି ଗୁରୁତ୍ୱପୂର୍ଣ୍ଣ କାମ କରୁଥିଲେ। କିନ୍ତୁ ଏହି ବୌଦ୍ଧିକ ମାନସିକତା ନୂଆ ଦିଗରେ ବିକଶିତ ହେବାକୁ ଆରମ୍ଭ କରୁଥିଲା, ତାହା ଧର୍ମକୈନ୍ଦ୍ରିକ ନ ହୋଇ ବ୍ୟାପକତର ମାନବିକ ସମସ୍ୟା ପ୍ରତି ଉନ୍ମୁକ୍ତ ହେଉଥିଲା। ଆମେରିକା ଓ ୟୁରୋପର ଇହୁଦୀ ସମ୍ପ୍ରଦାୟ କ୍ଷେତ୍ରରେ ମଧ୍ୟ ଏହିଭଳି ପ୍ରବାହ ଠିକ୍ ସେହି ସମୟରେ ଦେଖାଦେଇଥିଲା ଯେଉଁଥିରେ ସେମାନେ ନିଜର କୌଳିକ ବୃତ୍ତି ବଦଳରେ ଅନ୍ୟ ବୌଦ୍ଧିକ ବୃତ୍ତି ଆଦରିଲେ। ପ୍ରାୟ ଶହେବର୍ଷ ପରେ ଦକ୍ଷିଣ ଭାରତୀୟ ବ୍ରାହ୍ମଣମାନେ ଏହି ଦୁଇ ପ୍ରବାହର ସମାନତା ଉପରେ ନିୟମିତ ଚର୍ଚ୍ଚା କରିବାକୁ ଲାଗିଲେ।

1891 ମସିହାର ଜନଗଣନା ଅନୁସାରେ ଦକ୍ଷିଣ ଭାରତର ଛଅ ଲକ୍ଷ ବ୍ରାହ୍ମଣଙ୍କ ଭିତରୁ ପ୍ରାୟ ପନ୍ଦର ଶତାଂଶ ପ୍ରଶାସନିକ ସେବା, ବୌଦ୍ଧିକ ଓ ଅନ୍ୟ ପ୍ରକାରର ବୃତ୍ତିରେ ନିଯୁକ୍ତ ଥିଲେ। ସେ ସମୟର ବ୍ରାହ୍ମଣ ସମ୍ପ୍ରଦାୟ ପାଇଁ ଏହା ବେଶ୍ ବଡ଼ ଅନୁପାତ ଥିଲା। କଲେଜ ଶିକ୍ଷାଧାରୀଙ୍କ ଭିତରେ ବ୍ରାହ୍ମଣଙ୍କ ସଂଖ୍ୟା ଖୁବ୍ ବେଶି ଥିଲା। ଗୋଟିଏ ପିଢ଼ି ଭିତରେ, 1914 ମସିହା ବେଳକୁ, ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର 650 ସ୍ନାତକଙ୍କ ଭିତରୁ 452 ଥିଲେ ବ୍ରାହ୍ମଣ। ମୋଟ ଜନସଂଖ୍ୟାରେ ବ୍ରାହ୍ମଣଙ୍କର ଅନୁପାତ ତୁଳନାରେ ସ୍ନାତକଙ୍କ ଭିତରେ ତାଙ୍କ ଅନୁପାତ ଦଶ ଗୁଣରୁ ବେଶି ଥିଲା। ଏହା ଆଗରୁ ବ୍ୟବସାୟୀ ଓ ଆଇନଜୀବୀ ଭଳି ମଧ୍ୟମ ବର୍ଗର ପେଷାଦାରମାନେ ନିଜ ନିଜର

ଜାତିରୁ ଆସୁଥିଲେ। କିନ୍ତୁ ଇଂରେଜ ପ୍ରଶାସନ ଶିକ୍ଷକ, ଅମଲା, ସାମ୍ବାଦିକ, ଲେଖକ, ଦଲାଲ ଓ କିରାଣି ଭଳି ଅନେକ ନୂଆ ପେଷା ସୃଷ୍ଟି କଲା। ମୁଖ୍ୟତଃ ବ୍ରାହ୍ମଣମାନେ ଏହି ପଦବୀଗୁଡ଼ିକ ଭରିବାରେ ଲାଗିଲେ।

ବ୍ରାହ୍ମଣପ୍ରଧାନ କୁମ୍ଭକୋଣମ୍‌ରେ ପ୍ରାୟ ଏକପଞ୍ଚମାଂଶ ବୟସ୍କ ପୁରୁଷ ଲେଖାପଢ଼ା ଜାଣିଥିଲେ। ଜିଲ୍ଲାର ସଦର ମହକୁମା ତାଞ୍ଜୋର ଓ ମାନ୍ଦ୍ରାଜ ଛଡ଼ା ଦକ୍ଷିଣ ଭାରତରେ କୁମ୍ଭକୋଣମ୍‌ରେ ଶିକ୍ଷିତଙ୍କର ଭାଗ ଥିଲା ସବୁଠାରୁ ବେଶି। କୁମ୍ଭକୋଣମ୍‌ର ବ୍ରାହ୍ମଣମାନେ ଦାର୍ଶନିକ ଓ ବୌଦ୍ଧିକ ଚର୍ଚ୍ଚାରେ ଖୁବ୍ ଆଗ୍ରହୀ ଥିଲେ ଏବଂ ମାନସିକ ଅନୁଶୀଳନ ତାଙ୍କର ପସନ୍ଦର କାମ ଥିଲା। ଜଣେ ଇଂରେଜ ପର୍ଯ୍ୟବେକ୍ଷକ ଏହି ଦିଗରେ ସେମାନଙ୍କର ଦକ୍ଷତା ଓ ସୂକ୍ଷ୍ମଦୃଷ୍ଟିକୁ ଅତି ଉଚ୍ଚକୋଟୀର ବୋଲି ମତ ଦେଇଥିଲେ। ଆର୍ଥିକ ଦୃଷ୍ଟିରୁ ରାମାନୁଜନ୍‌ଙ୍କ ବାପା ମା ଦରିଦ୍ର ବା ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ଥିଲେ ଏବଂ ତାମିଲ ଶିକ୍ଷା ପାଇଥିଲେ ବି ଇଂରାଜୀ ଜାଣି ନ ଥିଲେ। କିନ୍ତୁ ତାଙ୍କ ସାଙ୍ଗମାନେ ସ୍ୱଚ୍ଛଳ ପରିବାରର ଥିଲେ ଏବଂ ଓକିଲ, ଇଞ୍ଜିନିଅର ବା ସରକାରୀ ଅଧିକାରୀ ହେବାକୁ ଯାଉଥିଲେ। ଏହିସବୁ ବୃତ୍ତି ପାଇଁ ଇଂରାଜୀ ଭାଷାଜ୍ଞାନ ହିଁ ବାଟ ଖୋଲିଦେଉଥିଲା।

ରାମାନୁଜନ୍‌ଙ୍କ ମାତୃଭାଷା ଥିଲା ତାମିଲ। ଦକ୍ଷିଣ ଭାରତରେ ଚଳୁଥିବା ଚାରି ଦ୍ରାବିଡ଼ୀୟ ଭାଷା ଭିତରୁ ଏହା ଥିଲା ଗୋଟିଏ। ତାମିଲ ଭାଷାର ତାତ୍ତ୍ୱିକ ସ୍ୱଷ୍ଟତା ପାଇଁ ତାହା ପ୍ରତି ୟୁରୋପୀୟ ଭାଷାବିତ୍‌ମାନଙ୍କର ବିଶେଷ ସମ୍ମାନ ରହିଥିଲା। କୁହାଯାଉଥିଲା ଯେ ତାମିଲ ଭାଷାକୁ ଆଇନ ଓ ବ୍ୟାକରଣ ବିଷାରଦମାନେ ସୃଷ୍ଟି କରିଛନ୍ତି। ମାନ୍ଦ୍ରାଜ ପ୍ରେସିଡେନ୍‌ସିର ବିସ୍ତୃତ ଅଞ୍ଚଳ ଏବଂ ଶ୍ରୀଲଙ୍କାର ଉତ୍ତରାଞ୍ଚଳର ପ୍ରାୟ ଦୁଇ କୋଟି ଲୋକ ଏହି ଭାଷା ବ୍ୟବହାର କରୁଥିଲେ। ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରୁ ଆରମ୍ଭ କରି ତାମିଲ ଭାଷାର ସମୃଦ୍ଧ ଐତିହ୍ୟ ରହିଥିଲା ଯାହା ଉତ୍ତର ଭାରତର ହିନ୍ଦୀ ସାହିତ୍ୟଠାରୁ ସ୍ୱତନ୍ତ୍ର ଥିଲା।

କିନ୍ତୁ ବିଂଶ ଶତାବ୍ଦୀର ଆରମ୍ଭରେ ଭାରତରେ ଇଂରାଜୀ ଭାଷାର ପ୍ରାଧାନ୍ୟ ବଢ଼ିଚାଲିଥିଲା। ଶାସକଙ୍କ ଭାଷା ଭାବରେ ପ୍ରଶାସନିକ ବ୍ୟବସ୍ଥାକୁ ଏହା ଚଳାଉଥିଲା। ଭାରତର ବିଭିନ୍ନ ଭାଷାଭାଷୀ ଅଞ୍ଚଳର ଶିକ୍ଷିତ ବର୍ଗ ନିଜ ନିଜ ଭିତରେ ସମ୍ପର୍କ ବଢ଼ାଇବା ପାଇଁ ଇଂରାଜୀକୁ ଯୋଗସୂତ୍ରର ଭାଷା ଭାବରେ ବ୍ୟବହାର କଲେ। ଅବଶ୍ୟ ଭାରତୀୟଙ୍କ ଭିତରେ ଇଂରାଜୀ ଜାଣିଥିବା ଲୋକଙ୍କ ସଂଖ୍ୟା ଅତି କମ୍ ଥିଲା। 1911 ମସିହାରେ ଉଚ୍ଚଶିକ୍ଷାଧାରୀ ତାମିଲ ବ୍ରାହ୍ମଣଙ୍କ ଭିତରେ ମାତ୍ର ଏଗାର ଶତାଂଶ ଇଂରାଜୀ ଜାଣିଥିଲେ। ଇଂରାଜୀ ଜାଣିଥିବା ଲୋକଙ୍କ ସଂଖ୍ୟା କମ୍ ଥିବାରୁ ସେମାନଙ୍କର ଚାହିଦା ବେଶି ଥିଲା। ଅଳ୍ପ ଇଂରାଜୀ ଜାଣିଥିବା କିରାଣି ମଧ୍ୟ କିଛି ଅଧିକ ଦରମା ପାଉଥିଲା। କହିବାକୁ ଗଲେ ଇଂରେଜ ଭାଷା ବିଭିନ୍ନ ଚାକିରି ପାଇଁ ଚାବିକାଠି ହୋଇଗଲା।

କାଙ୍ଗାୟଣ୍ ପ୍ରାଥମିକ ବିଦ୍ୟାଳୟରେ ପଢ଼ିଲା ବେଳେ ରାମାନୁଜନ୍ ଇଂରାଜୀ ଶିକ୍ଷା ଆରମ୍ଭ କରିଥିଲେ ଏବଂ ଦଶ ବର୍ଷ ବୟସ ବେଳକୁ 1897 ମସିହା ନଭେମ୍ବର ମାସରେ ପ୍ରାଥମିକ ଶିକ୍ଷା ଶେଷ କଲେ। ଇଂରାଜୀ, ତାମିଲ, ଅଙ୍କ ଓ ଭୂଗୋଳ ବିଷୟ ନେଇ ସେ ସାରା ଜିଲ୍ଲାରେ ପ୍ରଥମ ସ୍ଥାନ ପାଇଥିଲେ। ତା'ପର ଜାନୁଆରି ମାସରେ ସେ 'ଟାଉନ ହାଇ' ନାମକ ଇଂରାଜୀ ଉଚ୍ଚବିଦ୍ୟାଳୟରେ ନାଁ ଲେଖାଇଲେ।

ସହର ମଝି ଅଞ୍ଚଳର ଏକ ମୁଖ୍ୟ ରାସ୍ତା, ବିଗ୍ ଷ୍ଟ୍ରିଟ୍ ଉପରେ ଦୁଇଟି ଘରକୁ ନେଇ 1864 ମସିହାରେ ଟାଉନ ହାଇ ସ୍କୁଲ ଆରମ୍ଭ ହୋଇଥିଲା। କିଛିବର୍ଷ ପରେ ସ୍ଥାନୀୟ କଲେଜ ତା'ର ତଳ ଶ୍ରେଣୀଗୁଡ଼ିକ ବନ୍ଦ କରିଦେଲା। ସେହି ଶୂନ୍ୟସ୍ଥାନ ପୂରଣ କରିବା ପାଇଁ ଶିକ୍ଷାପ୍ରେମୀ ବାସିନ୍ଦାମାନେ ମିଶି ଟାଉନ ହାଇସ୍କୁଲରେ ନୂଆ ଉପର ଶ୍ରେଣୀ ଖୋଲିଲେ। ସେଥିପାଇଁ ନୂଆ କୋଠରୀ କିଛି ଦରକାର ପଡ଼ିଲା। ପୁରୁଣା ଘରକୁ ଭାଙ୍ଗି ସେଠାରେ ବଡ଼ ଘର ତିଆରି କରିବା ପାଇଁ ଯୋଜନା କରାଗଲା ବେଳେ ସ୍କୁଲ କମିଟିର ଜଣେ ପ୍ରମୁଖ ସଦସ୍ୟ ଥାମ୍ବୁସ୍ୱାମୀ ମୁଦାଲିଅର୍ ଏକ ବିକଳ୍ପ ପ୍ରସ୍ତାବ ଦେଲେ। ସାତ ଏକରର ଗୋଟିଏ କଦଳୀ ବଗିଚା ସ୍କୁଲର ନୂଆ ପରିସର ପାଇଁ ସେ ଦାନ କଲେ ଏବଂ ସେଠାରେ ସ୍କୁଲ ଘର ତିଆରି କାମର ତଦାରଖ ମଧ୍ୟ ସେ ନିଜେ କରିଲେ।

ଏବେ ଟାଉନ ହାଇର ସୁନ୍ଦର ଧଳା ଘରଗୁଡ଼ିକ ଏକ ମନୋରମ ଉଦ୍ୟାନ ଭିତରେ ଶୋଭାପାଉଛି ଏବଂ ସାମନା ପଡ଼ିଆରେ ଥିବା ଅନେକ ବଡ଼ ନିମ୍ବଗଛ ପାଖର ଗହଳିଆ ରାସ୍ତାର ଗୋଳମାଳରୁ ତାକୁ ରକ୍ଷା କରୁଛନ୍ତି। ରାମାନୁଜନ୍‌ଙ୍କ ସମୟରେ ତା'ର ପ୍ରଥମ ଶ୍ରେଣୀଗୃହ ଧାଡ଼ିକରେ ଟାଇଲ ଛାତ ପଡ଼ିଥିଲା ଓ ବାରଣ୍ଡାରେ ତାଳପତ୍ର ଚାଞ୍ଚ ଛାଉଣି ହୋଇଥିଲା। ଘର ଧାଡ଼ିକ ଗୋଟିଏ କୋଠରୀ ଚଉଡ଼ାର ହୋଇଥିଲା ଏବଂ ପବନ ଆସିବା ପାଇଁ ତା'ର ଦୁଇପଟେ ଝରକାମାନ ରହିଥିଲା।

ପିଲାଙ୍କର ଗୋଳମାଳ ମଧ୍ୟ ଝରକା ବାଟେ ଶୁଣାଯାଇଥା'ନ୍ତା, କିନ୍ତୁ ସେବେ ବୋଧହୁଏ କେହି ଗୋଳମାଳ କରିବା କଥା ଭାବୁ ବି ନ ଥିଲେ। ପୁରାତନ ଛାତ୍ରମାନେ ଲମ୍ବା କୋଟ ଓ ପଗଡ଼ି ପିନ୍ଧା ଶିକ୍ଷକମାନଙ୍କ ପ୍ରତି ତାଙ୍କର ଅଗାଧ ସମ୍ମାନ କଥା ଏବେ ବି ମନେ ପକାନ୍ତି। ରାମାନୁଜନ୍‌ଙ୍କ ସମୟର ପ୍ରଧାନ ଶିକ୍ଷକ ମୋଟରେ ବାଇଶ ବର୍ଷ ଧରି ଏହି ପଦବୀରେ ରହିଥିଲେ। ପ୍ରଧାନ ଶିକ୍ଷକ ଏସ୍. କ୍ରିଷ୍ଣସ୍ୱାମୀ ଆୟାର ଜଣେ ଗମ୍ଭୀର ଚେହେରାର ମଣିଷ ଥିଲେ ଏବଂ ଅନେକ ସମୟରେ ଶ୍ରେଣୀ ଆଡ଼କୁ ବୁଲି ଆସୁଥିଲେ। ବାଡ଼ିର ଠକ୍ ଠକ୍ ଶବ୍ଦ ଶୁଣି ପିଲା ଓ ଶିକ୍ଷକମାନେ ତାଙ୍କର ଆସିବା କଥା ଜାଣି ସଜାଗ ହୋଇ ଉଠୁଥିଲେ। କେବେ କେବେ ସେ କୌଣସି ଶ୍ରେଣୀରେ ପଶି ପିଲାଙ୍କୁ ପ୍ରଶ୍ନ ପଚାରୁଥିଲେ ଓ ବାକି ସମୟତକ ପଢ଼ାଉଥିଲେ। ତାଙ୍କ ପଢ଼ାଇବାର ଶୈଳୀ ଖୁବ୍ ମନଛୁଆଁ ଥିଲା ବୋଲି ଶୁଣାଯାଏ। ଯେବେ ସେ ଗ୍ରେ'ଙ୍କ 'ଇଟନ କଲେଜ' ବିଷୟ ପଢ଼ାଉଥିଲେ ଜଣେ ପିଲା ଟାଉନ ହାଇକୁ ଇଟନ୍ ଓ ତା'ର ମଝିରେ ବହୁଥିବା ପାଣି ନାଳକୁ ଟେମ୍ସ୍ ନଦୀ ବୋଲି ଭାବୁଥିଲା।

ସ୍କୁଲଟି ରାମାନୁଜନ୍‌ଙ୍କ ଘରୁ ମାତ୍ର ପାଞ୍ଚ ମିନିଟର ବାଟ ଥିଲା ଏବଂ ସହରର ସବୁଠାରୁ ଭଲ ପିଲାତକ ସେଠାରେ କଲେଜ ପାଇଁ ପ୍ରସ୍ତୁତ ହେଉଥିଲେ। ପୁରାତନ ଛାତ୍ରମାନେ ଏବେ ବି ଅତି ଶ୍ରଦ୍ଧାର ସହିତ ସ୍କୁଲ କଥା ମନେ ପକାନ୍ତି। ଛ ବର୍ଷ ଧରି ସେହି ସ୍କୁଲ ରାମାନୁଜନ୍‌ଙ୍କୁ ପାଠରେ ଆଗେଇନେଲା - ରାମାନୁଜନ୍‌ଙ୍କ ଜୀବନରେ ବୋଧହୁଏ ଏହା ହିଁ ଥିଲା ସବୁଠାରୁ ସନ୍ତୋଷଜନକ ଶିକ୍ଷା ସମ୍ବନ୍ଧୀୟ ଅନୁଭୂତି।

ପଛୁଆ ଦେଖିଲେ ବଡ଼ ମଣିଷାଙ୍କର ପିଲାଦିନ ଗୌରବମୟ ମନେହୁଏ ଏବଂ ସେ ଯେ କିଛି ବଡ଼ କାମ କରିବେ ସେଦିନରୁ ତା'ର ଆଭାସ ମିଳୁଥିଲା ବୋଲି ସମସ୍ତେ କହିବେ। ତଥାପି ନିଶ୍ଚିତ ଭାବରେ କୁହାଯାଇପାରେ ଯେ ରାମାନୁଜନ୍‌ଙ୍କ ପ୍ରତିଭା ସ୍କୁଲ ସମୟରୁ ଜଣା ପଡୁଥିଲା। ରାମାନୁଜନ୍

ଟାଉନ ହାଇର ପ୍ରଥମ 'ଫର୍ମ' (ମାଧ୍ୟମିକ ଶିକ୍ଷାର ପ୍ରଥମ ବର୍ଷ)ରେ ନାଁ ଲେଖାଇଲା ବେଳକୁ ତାଙ୍କୁ ଦଶ ବର୍ଷ ହୋଇଥିଲା। ତା'ପର ବର୍ଷକୁ ତାଙ୍କ ସହପାଠୀମାନେ ଗଣିତ ବିଷୟରେ ସାହାଯ୍ୟ ପାଇଁ ତାଙ୍କ ପାଖକୁ ଆସୁଥିଲେ ଏବଂ ତୃତୀୟ ଫର୍ମ ବେଳକୁ ରାମାନୁଜନ୍ ତାଙ୍କ ଶିକ୍ଷକମାନଙ୍କୁ ପ୍ରଶ୍ନ କରୁଥିଲେ। ଦିନେ ଗଣିତ ଶିକ୍ଷକ କହିଲେ ଯେ, ଯେ କୌଣସି ସଂଖ୍ୟାକୁ ତା ନିଜ ଦ୍ୱାରା ଭାଗକଲେ ଭାଗଫଳ ସବୁବେଳେ ଏକ ହେବ। ତିନିଟି ଫଳ ତିନି ଜଣ ପିଲାଙ୍କ ଭିତରେ ବାଣ୍ଟିଦେଲେ ପ୍ରତ୍ୟେକେ ଗୋଟିଏ କରି ପାଇବେ। ହଜାରେ ଫଳ ହଜାରେ ପିଲାଙ୍କୁ ବାଣ୍ଟିଲେ ଜଣକୁ ଗୋଟିଏ ହିଁ ମିଳିବ। ରାମାନୁଜନ୍ କହିଉଠିଲେ, "କିନ୍ତୁ ଶୂନକୁ ଶୂନରେ ଭାଗକଲେ କ'ଣ ଏକ ମିଳିବ? ଯଦି ଶୂନଟି ଫଳ ଶୂନ ପିଲାଙ୍କ ଭିତରେ ବଣ୍ଟାଯାଏ ତେବେ ବି କ'ଣ ପ୍ରତ୍ୟେକେ ଏକ କରି ପାଇବେ?"

ଆର୍ଥିକ ଅସୁବିଧା ଥିବାରୁ ରାମାନୁଜନ୍‌ଙ୍କ ପରିବାର ଘରେ କିଛି ପିଲାଙ୍କୁ ଭଡ଼ାରେ ରଖୁଥିଲେ। ରାମାନୁଜନ୍‌ଙ୍କୁ ଏଗାର ବର୍ଷ ବୟସ ବେଳେ ତାଙ୍କ ଘରେ ସେପରି ଦୁଇଜଣ ବ୍ରାହ୍ମଣ ପିଲା ରହୁଥିଲେ। ଜଣେ ଥିଲେ ପାଖର ତ୍ରିଚିନାପଲ୍ଲୀ ଜିଲ୍ଲାର, ଅନ୍ୟ ଜଣକ ଦକ୍ଷିଣରେ ବେଶ୍ ଦୂରକୁ ଥିବା ତିରୁନେଲ୍‌ଭେଲି ଜିଲ୍ଲାର। ସେ ଦୁହେଁ ପାଖରେ ଥିବା ସରକାରୀ କଲେଜରେ ପଢୁଥିଲେ। ଗଣିତ ପ୍ରତି ରାମାନୁଜନ୍‌ଙ୍କ ଆଗ୍ରହ ଦେଖି ସେମାନେ ଯାହା ଜାଣିଥିଲେ ତାହା ତାଙ୍କୁ ଶିଖାଉଥିଲେ। କିନ୍ତୁ କେଇ ମାସ ଭିତରେ ରାମାନୁଜନ୍ ସେମାନଙ୍କଠାରୁ ସବୁ ଶିଖିନେଇ ଲାଇବ୍ରେରୀରୁ ଅନ୍ୟ ବହି ଆଣିବା ପାଇଁ ତାଙ୍କୁ କହୁଥିଲେ। ସେମାନେ ଆଣିଦେଇଥିବା ବହି ଭିତରୁ ଗୋଟିଏ ଥିଲା ଏସ୍. ଏଲ୍. ଲୋନିଙ୍କ ଟ୍ରିଗୋନୋମେଟ୍ରି। 1893ର ଏହି ପାଠ୍ୟପୁସ୍ତକଟି ଇଂଲଣ୍ଡ ଓ ଦକ୍ଷିଣ ଭାରତର କଲେଜମାନଙ୍କରେ ବହୁଳ ଭାବରେ ଚଳୁଥିଲା। ଏହି ବହିରେ ଅନେକ ଉଚ୍ଚତର ବିଷୟ ରହିଥିଲା, କିନ୍ତୁ ତାଙ୍କୁ ତେର ବର୍ଷ ହେଲା ବେଳକୁ ରାମାନୁଜନ୍ ସେ ବହିର ବିଷୟରେ ଦକ୍ଷ ହୋଇସାରିଥିଲେ।

ଜଣେ ବଡ଼ ପିଲାଠାରୁ ରାମାନୁଜନ୍ ତ୍ରିଘାତ ସମୀକରଣର ସମାଧାନ ସୂତ୍ର ଶିଖିଥିଲେ। ସ୍କୁଲ ପାଠରେ ତ୍ରିକୋଣମିତିର ଫଳନଗୁଡ଼ିକ ସମକୋଣୀ ତ୍ରିଭୁଜର ବାହୁମାନଙ୍କର ଅନୁପାତ ଭାବରେ ଶିଖାଯାଏ। କିନ୍ତୁ ରାମାନୁଜନ୍ ସେସବୁ ଗଭୀରତର ଅସୀମ ଶ୍ରେଣୀର ଅବଧାରଣା ମାଧ୍ୟମରେ ବୁଝିଥିଲେ। ଉଚ୍ଚତର ଗଣିତରେ ବହୁଳ ଭାବରେ ବ୍ୟବହୃତ ହେଉଥିବା ଏବଂ ଇନ୍ଦ୍ରିୟାତୀତ ସଂଖ୍ୟା ଭାବରେ ପରିଚିତ ଦୁଇଟି ସଂଖ୍ୟା ହେଉଛି 'ପାଇ' ($\pi$) ଓ 'ଇ' (e)। ଏହି ଅଛିଣ୍ଡା ଭଗ୍ନାଂଶ ଦୁଇଟିର ଦଶମିକ ମୂଲ୍ୟ ଅନେକ ଅଙ୍କ ଯାଏ ରାମାନୁଜନ୍ କହିପାରୁଥିଲେ। ପରୀକ୍ଷା ଦେଲାବେଳେ ସେ ଅଧା ସମୟରେ ତାଙ୍କ ଉତ୍ତର ସବୁ ସାରିଦେଉଥିଲେ। ତାଙ୍କଠାରୁ ଦୁଇ ଶ୍ରେଣୀ ଉପରର ପିଲାମାନେ କଠିନ ଗଣିତ ପ୍ରଶ୍ନର ଉତ୍ତର ପାଇଁ ଆସିଲେ ସେ ତାହା ଦେଖୁ ଦେଖୁ ସମାଧାନ କରିଦେଉଥିଲେ।

ବେଳେବେଳେ ତାଙ୍କ ଗଣିତ ଦକ୍ଷତା ଭଲ କାମରେ ଲାଗୁଥିଲା। ତାଙ୍କ ସ୍କୁଲରେ ପ୍ରାୟ ବାରଶହ ପିଲା ପଢୁଥିଲେ ଏବଂ ସେମାନଙ୍କୁ ବିଭିନ୍ନ କୋଠରୀରେ ଓ ପ୍ରାୟ ତିନି ଡଜନ୍ ଶିକ୍ଷକଙ୍କ ଭିତରେ ବାଣ୍ଟିବାକୁ ପଡୁଥିଲା। ବାଣ୍ଟିଲା ବେଳେ ପୁଣି ଦେଖିବାକୁ ହେଉଥିଲା ଯେ ସମସ୍ତଙ୍କର ବିଶେଷ ଚାହିଦା ପୂରଣ ହେଉଛି କି ନାହିଁ। ଏହି କଠିନ କାମଟିର ଦାୟିତ୍ୱ ସବୁବେଳେ ଟାଉନ ହାଇର ବରିଷ୍ଠ ଗଣିତ ଶିକ୍ଷକ ଗଣପତି ସୁବିଏର୍‌ଙ୍କ ଭାଗରେ ପଡୁଥିଲା ଏବଂ ସେ ତାହା ରାମାନୁଜନ୍‌ଙ୍କୁ ଦେଇଦେଉଥିଲେ।

ଚଉଦ ବର୍ଷ ବୟସର ରାମାନୁଜନ୍ ଚତୁର୍ଥ ଫର୍ମରେ ପଢ଼ିବା ବେଳକୁ ତାଙ୍କର କିଛି ସାଙ୍ଗ ଭାବୁଥିଲେ ଯେ କେଉଁ ଅଜଣା ଦୁନିଆରେ ଉଡ଼ି ବୁଲୁଥିବା ରାମାନୁଜନ୍‌ଙ୍କ ସହିତ କଥାହେବା ସମ୍ଭବ ନୁହେଁ। ପ୍ରାୟ ପଚାଶ ବର୍ଷ ପରେ ତାଙ୍କର ଜଣେ ସାଙ୍ଗ ମନେପକାଉଥିଲେ ଯେ ସେମାନେ ଓ ଶିକ୍ଷକମାନେ ରାମାନୁଜନ୍‌ଙ୍କୁ ପ୍ରାୟ ବୁଝିପାରୁ ନ ଥିଲେ। ତାଙ୍କର ଦକ୍ଷତା ଆଗରେ କିଛି ଶିକ୍ଷକ ଅସ୍ୱସ୍ତିକର ବୋଧ କରୁଥିଲେ। କିନ୍ତୁ ତାଙ୍କୁ ବୁଝନ୍ତୁ ବା ନ ବୁଝନ୍ତୁ ସ୍କୁଲର ସମସ୍ତେ ରାମାନୁଜନ୍‌ଙ୍କ ପ୍ରତି ଅଭିଭୂତ ସମ୍ମାନ ଜଣାଉଥିଲେ।

ସେ ଜଣେ ଛୋଟକାଟିଆ ବିଖ୍ୟାତ ମଣିଷ ହୋଇଯାଇଥିଲେ କହିଲେ ଚଳେ। ସ୍କୁଲରେ ଥିବାବେଳେ ସବୁବର୍ଷ ସେ ଅନେକ ପ୍ରଶଂସାପତ୍ର ଓ ପୁରସ୍କାର ପାଉଥିଲେ। ଶେଷରେ, 1904 ମସିହାର ଏକ ଉତ୍ସବରେ, ସେ ଯେବେ ଗଣିତ ପାଇଁ କେ. ରଙ୍ଗନାଥ ରାଓ ପୁରସ୍କାର ପାଉଥିଲେ ତାଙ୍କ ପ୍ରଧାନ ଶିକ୍ଷକ କ୍ରିଷ୍ଣାସ୍ୱାମୀ ଆୟାର ରାମାନୁଜନ୍‌ଙ୍କ ପରିଚୟ ଦେବାକୁ ଯାଇ କହିଥିଲେ ଯେ ସେ ଜଣେ ଛାତ୍ର ଯିଏ ଶତକଡ଼ା ଶହେରୁ ବେଶି ପାଇବା ପାଇଁ ଯୋଗ୍ୟ।

ସାଧାରଣ ଏ+ ବା 100% ରାମାନୁଜନ୍‌ଙ୍କର ସଠିକ ମୂଲ୍ୟାୟନ ନୁହେଁ। ପ୍ରଧାନ ଶିକ୍ଷକଙ୍କ ଭାଷାରେ ସେ ଥିଲେ ମାପକାଠିର ଉପରେ।

ତଥାପି ତାଙ୍କର ସ୍କୁଲ ଜୀବନର ଅଧିକାଂଶ ଭାଗ ଦୋଦୁଲ୍ୟମାନ ଅବସ୍ଥାରେ କଟିଥିଲା। ସ୍କୁଲ ପଢ଼ା ସରିବାବେଳେ ସେ ଥିଲେ ଠିକ୍ ତାଙ୍କ ମା'ଙ୍କ ପୁଅ - ସଫଳ ଓ ଉଦ୍ଦୀପ୍ତ, ସହରର ଅନ୍ୟ ପଟରେ ଥିବା ସରକାରୀ କଲେଜରେ ଶିକ୍ଷାବୃତ୍ତି ସହ ପଢ଼ିବା ପାଇଁ ପ୍ରସ୍ତୁତ, ଶିକ୍ଷାରେ ଆଗେଇବା ପାଇଁ, ବୃତ୍ତିରେ ଯୋଗଦେବା ପାଇଁ, ବିବାହ ପାଇଁ...।

କିନ୍ତୁ ଅଳ୍ପଦିନ ଭିତରେ ତାଙ୍କର ସେହି ଅସ୍ଥିର ସନ୍ତୁଳନ ପୂରା ନଷ୍ଟ ହୋଇଗଲା। ମାନସିକ ସ୍ତରରେ ସେ ଏପରି ଏକ ଅସ୍ଥିର ଜଗତରେ ପ୍ରବେଶ କଲେ ଯେଉଁଠି ତୀବ୍ର ସାଲିସବିହୀନ ବୌଦ୍ଧିକ ଆବେଗ ତାଙ୍କର ବାକି ଜୀବନକୁ କବଳିତ କରିରଖିଲା। କାରଣ ବିଚାରବନ୍ତ ହେତୁବାଦୀ ଦିଗ ସହିତ ତାଙ୍କଠାରେ ଏକ ଅନ୍ତଃପ୍ରେରିତ ବିଚାରରହିତ ମାନସିକତା ମଧ୍ୟ ରହିଥିଲା। ସେହି ଦ୍ୱିତୀୟ ଦିଗକୁ ଅନ୍ୟମାନେ, ବିଶେଷ କରି ତାଙ୍କ ପାଶ୍ଚାତ୍ୟ ବନ୍ଧୁମାନେ, ବୁଝିବା ସମ୍ଭବ ନ ଥିଲା, କିନ୍ତୁ ରାମାନୁଜନ୍ ତାକୁ ସହଜ ଭାବରେ ଗ୍ରହଣ କରୁଥିଲେ ଏବଂ ନିୟନ୍ତ୍ରଣ କରିବାକୁ ଚେଷ୍ଟା କରୁ ନ ଥିଲେ।

## 5. ନାମ୍ମାକାଲ୍‌ର ଦେବୀ

ସରଙ୍ଗାପାନି ମନ୍ଦିରର ମୁଖଶାଳା ବେଶ୍ ଅନ୍ଧାରୁଆ ଥିଲା। ବିଶେଷ କରି ବାହାରର ଉଜ୍ଜ୍ୱଳ ସୂର୍ଯ୍ୟାଲୋକରୁ ଭିତରକୁ ଆସିବା ପରେ ଅନ୍ଧାର ସହିତ ଖାପ ଖୁଆଇବା ପାଇଁ ଆଖିକୁ କିଛି ସମୟ ଲାଗୁଥିଲା। କଡ଼ରୁ ଆସୁଥିବା କ୍ଷୀଣ ଆଲୁଅ ସୂକ୍ଷ୍ମ ଖୋଦେଇଯୁକ୍ତ ପଥର ମୂର୍ତ୍ତି ଓ ଖମ୍ବଗୁଡ଼ିକ ଉପରେ ଖେଳୁଥିଲା।

ଆଲୁଅଠାରୁ ଆହୁରି ଦୂରକୁ ଥିବା ଖମ୍ବ ମଝିର ଅନ୍ଧାର ଅଞ୍ଚଳରେ ବାଦୁଡ଼ିମାନେ ବସା ବାନ୍ଧିଥିଲେ। ସେଠାରେ ବସିରହି ରାମାନୁଜନ୍ ଝୁଲୁଥିବା ବାଦୁଡ଼ିମାନଙ୍କୁ ଦେଖିପାରୁଥିଲେ ଓ ମଝିରେ ମଝିରେ ତାଙ୍କ ଡେଣା ଫଡ଼ ଫଡ଼ ଶବ୍ଦ ଶୁଣିପାରୁଥିଲେ।

ପାଶ୍ଚାତ୍ୟର ଗୀର୍ଜାଗୁଡ଼ିକ ବେଶ୍ ଉଚ୍ଚ ହୁଅନ୍ତି, କିନ୍ତୁ ଭାରତୀୟ ମନ୍ଦିରସବୁ ଗଠନରେ ଗଭୀର ହୁଅନ୍ତି। ମନ୍ଦିରର ପାଚେରୀ ଭିତରେ ଥିବା ଖୋଲା ବେଢ଼ା ଡେଇଁ ଗୋଟିକ ପରେ ଗୋଟିଏ ଦ୍ୱାରଦେଇ ଭିତରକୁ ଯିବାକୁ ହୁଏ। ନାମ୍ମାକାଲ୍ ମନ୍ଦିର ଗୋଟିଏ ରଥ ରୂପରେ ଗଢ଼ା। ବଡ଼ ବଡ଼ ଚକଲଗା ପଥର ରଥକୁ କାରୁକାର୍ଯ୍ୟ ଖୋଦେଇରେ ଭରା ହାତୀ ଘୋଡ଼ା ଟାଣୁଥିଲେ। ଏହାର ଭିତରେ ଥିଲା ଗର୍ଭଗୃହ ଯେଉଁଠି ବାସୁକୀ ଉପରେ ବିଷ୍ଣୁ ଅନନ୍ତ ଶୟନରୁ ଉଠୁଥିଲେ। ଦୀପଟିଏ ସେଠାରେ ରାତି ଦିନ ଜଳୁଥିଲା।

ବେଢ଼ାରେ ଥିବା ପାର୍ଶ୍ୱଦେବାଦେବୀଙ୍କ ଛୋଟ ମନ୍ଦିରମାନଙ୍କରେ ସବୁବେଳେ ପୂଜା, ମନ୍ତ୍ରପାଠ ଚାଲିଥାଏ, ହୋମାଗ୍ନି ଓ ଧୂପ ଜଳୁଥାଏ। ମୁଖ୍ୟ ମନ୍ଦିର ପାଖକୁ ଆଗେଇଲେ ଭିତରେ ବେଶି ବେଶି ଅନ୍ଧାର ହୋଇଚାଲେ, ଜାଗା କମିଚାଲେ, ଅଧିକ ରହସ୍ୟମୟ ଓ ଅନ୍ତରଙ୍ଗ ଲାଗେ। ବାହାରର କୋଳାହଳମୟ ରାସ୍ତାରୁ ମନେହୁଏ ଯେ ମନ୍ଦିରର ଭିତର କେବଳ ବଡ଼ ଧରଣର ସାମୂହିକ ପୂଜା ପାଇଁ ଉପଯୋଗୀ। କିନ୍ତୁ ଶହ ଶହ ବର୍ଷର ହୋମ ଆଳତି ଆଦିର ଧୂଆଁରେ କଳା ପଡ଼ିଥିବା ଭିତର ଗୁମ୍ଫାରେ ଜଣେ ଠାକୁରଙ୍କ ସହିତ ଏକଲା ଥିବା ଭଳି ଅନୁଭବ କରେ।

ମନ୍ଦିରର ଗୋପୁରମ୍ ବା ମୁଖଶାଳା ଟ୍ରାପିଜିଅମ୍ ଆକୃତିର। ବାର ମହଲାଥିବା ନବେ ଫୁଟ ଓସାରର ମୁଖଶାଳାର ଉଚ୍ଚତା 146 ଫୁଟ। ସୂକ୍ଷ୍ମ କାରୁକାର୍ଯ୍ୟରେ ଭରା ସେହି ମୁଖଶାଳା 1350 ଖ୍ରୀଷ୍ଟାବ୍ଦ ପୂର୍ବରୁ ନାୟକ ବଂଶର ରାଜାମାନଙ୍କଦ୍ୱାରା ତିଆରି କରାଯାଇଥିଲା। ତଳେ ଛିଡ଼ାହୋଇ ଦେଖିଲେ ଉପରର ମୂର୍ତ୍ତି ଓ କାରୁକାର୍ଯ୍ୟର ସୂକ୍ଷ୍ମତା ବାରିହୁଏନାହିଁ। କିନ୍ତୁ କାରିଗରମାନେ ଅତି ଯତ୍ନରେ ଗଢ଼ିଥିବା ମୂର୍ତ୍ତି ସବୁ ଭିତରେ ବିଭିନ୍ନ ପ୍ରକାରର ମଣିଷ ଓ ଜୀବଜନ୍ତୁ ରହିଥିଲେ, କିଏ ପୋଷାକ ପିନ୍ଧିଥିଲା ତ କିଏ ଥିଲା ଫୁଙ୍ଗୁଳା, କିଏ ଛିଡ଼ାହୋଇଛି ତ କିଏ ବସିଛି। କିଛି ମୂର୍ତ୍ତି ବାସ୍ତବ ଥିଲେ, ଆଉ କିଛି କାଳ୍ପନିକ ଓ ଉଦ୍ଭଟ। କିନ୍ତୁ ସବୁର ମୁଖଭଙ୍ଗୀକୁ ରୂପଦେବାରେ କାରିଗରଙ୍କର ପ୍ରଗାଢ଼ ଯତ୍ନ ରହିଥିଲା। ନାଚୁଥିବା, ଦୌଡ଼ୁଥିବା, ରତିକ୍ରିୟାରେ ମାତିଥିବା ବା ବାଜା ବଜାଉଥିବା ମୂର୍ତ୍ତି ସବୁରେ ମଣିଷର ବିଭିନ୍ନ କାର୍ଯ୍ୟକଳାପ ପ୍ରତିଫଳିତ ହେଉଥିଲା।

ମନ୍ଦିରକୁ ଦେଖିଦେଖି ବଢ଼ିଥିବା ରାମାନୁଜନ୍ଙ୍କ ପାଇଁ ଏହି ମୂର୍ତ୍ତିସବୁ ନିର୍ଜୀବ ପଥର ନ ଥିଲେ। ପିଲାଦିନରୁ ମା'ଙ୍କଠାରୁ ଶୁଣିଆସିଥିବା ପୁରାଣ କାହାଣୀ କିଂବଦନ୍ତିର ପ୍ରଭାବରେ ପ୍ରତିଟି ମୂର୍ତ୍ତି ପାଇଁ ତାଙ୍କ ମନରେ ଅନେକ ଚିତ୍ର ଓ ଭାବ ଫୁଟିଉଠୁଥିଲା। ପ୍ରତି ହିନ୍ଦୁର ପିଲାମାନେ ନଟଖଟିଆ କୃଷ୍ଣଙ୍କ କଥା ଜାଣନ୍ତି। ଗୋପୁରମ୍ ଉପରକୁ ଚାହିଁଦେଲେ ବାଳୁତ କୃଷ୍ଣ ଗାଧୋଉଥିବା ଗୋପୀଙ୍କର ଲୁଗା ନେଇ ଗଛ ଉପରେ ରଖିଦେବା ଓ ଗୋପୀମାନେ ଲୁଗା ଫେରସ୍ତ ପାଇଁ ବିକଳ ଅନୁନୟ କରିବା ଭଳି କେତେ ଚିତ୍ର ରାମାନୁଜନ୍ଙ୍କ ମନରେ ଖେଳିଯାଏ।

ପୂଜା ଓ ଉତ୍ସବ ସମୟରେ ହେଉ ବା ଖାଲି ସମୟ କଟାଇବା ପାଇଁ ହେଉ ପରିବାର ସହିତ ବା ଏକଲା, ଅନେକ ସମୟରେ ରାମାନୁଜନ୍ ମନ୍ଦିରକୁ ଆସନ୍ତି। ମନ୍ଦିରର ଛାଇରେ ସେ ବଢ଼ିଛନ୍ତି କହିଲେ ଭୁଲ ହେବନାହିଁ। ଘରୁ ବାହାରି ଟିକିଏ କଡ଼କୁ ଚାହିଁଲେ ଗୋପୁରମ୍‌ର ବଡ଼ ମୂର୍ତ୍ତିଗୁଡ଼ିକ ବାରିହୁଅନ୍ତି। ଯେଉଁ ରାସ୍ତାରେ ତାଙ୍କ ଘର ଥିଲା ମନ୍ଦିର ଅନୁସାରେ ହିଁ ତା'ର ନାଁ ରହିଥିଲା ସରଙ୍ଗାପାନି ସନ୍ନିଧି ସରଣୀ। ମନ୍ଦିରର ମୁଖ୍ୟ ଦ୍ୱାର ଏହି ରାସ୍ତାରେ ରହିଥିଲା।

ମନ୍ଦିର ଭିତରେ କଥାହେବା ପାଇଁ କାହାରିକୁ ମନା ନ ଥିଲା, କିନ୍ତୁ ସେଠାର ବାତାବରଣ ସାଧାରଣ ଭାବରେ ନିରବ ଓ ଶାନ୍ତ ରହୁଥିଲା। ପାଚିରି ବାହାରର କୋଳାହଳ ଭିତରେ ତାହା ପଥରର ଏକ ମରୁଦ୍ୟାନ ଭଳି ମନେ ହେଉଥିଲା। ଏହି ଶୀତଳତା ଭିତରେ ରାମାନୁଜନ୍ ଆଶ୍ରୟ ନେଉଥିଲେ। ବାହାରର ଟାଣ ଖରା ଓ ପରିବାରଠାରୁ ଦୂରରେ ଏଠାରେ ସେ ଅନେକ ଦିନ ଦ୍ୱିପ୍ରହରରେ ଶୋଇପଡୁଥିଲେ। ବିଭିନ୍ନ ସୂତ୍ରରେ ଭରା ତାଙ୍କ ଗଣିତ ଖାତା ଶୋଇଲାବେଳେ ବି ହାତରୁ ଖସୁ ନ ଥିଲା। ତାଙ୍କ ଶୋଇବା ଜାଗା ଚାରିପଟର ପଥର ଉପରେ ଚକ୍ ଖଡ଼ିରେ ସେ ଗଣିତ ଭରିଦେଇଥିଲେ।

କୁମ୍ଭକୋଣମ୍ ସହର ଓ ପାଖ ଗାଁରେ ଅନେକ ବଡ଼ ବଡ଼ ଶିବ ବା ବିଷ୍ଣୁ ମନ୍ଦିର ରହିଥିଲା। ପ୍ରତ୍ୟେକର ସୁନ୍ଦର ଗୋପୁରମ୍, ଖମ୍ବଯୁକ୍ତ ମୁଖଶାଳା, ଅନ୍ଧାରିଆ ଗର୍ଭଗୃହ ଓ ପୋଖରୀମାନ ରହିଥିଲା। ମୋଟ ଉପରେ ଦେଖିଲେ ଧାର୍ମିକ ବାତାବରଣ ସେ ସହରକୁ ଘେରି ରହିଥିଲା। ପ୍ରତି ବାର ବର୍ଷରେ ମହାମ୍ମାଖାମ୍ ପୁଷ୍କରିଣୀକୁ ଗଙ୍ଗା ନଦୀର ପାଣି ଆସୁଥିଲା - ଭୌଗଳିକ ଦୃଷ୍ଟିରୁ ଅସମ୍ଭବ ଥିଲେ ବି କେହି ଏହି କଥାକୁ ଟିକିଏ ବି ପ୍ରଶ୍ନ କରୁ ନ ଥିଲେ। ଗଙ୍ଗାପାଣି ଆସିବା ବିଷୟରେ କେହି କହୁ ନ ଥିଲେ ଯେ, "ବିଶ୍ୱାସ କରାଯାଏ ଯେ..." ବା "କିଂବଦନ୍ତି ଅନୁସାରେ..."। ସେଠିକାର ଲୋକମାନଙ୍କ ପାଇଁ ଏହା ଥିଲା ସାଧାରଣ ତଥ୍ୟ।

ତାହା ଏପରି ଏକ ଦୁନିଆ ଥିଲା ଯେଉଁଠି ଆଧ୍ୟାତ୍ମିକତା, ରହସ୍ୟବାଦ ଓ ଆଧିଭୌତିକ ଚର୍ଚ୍ଚା ଅଳ୍ପ କିଛି ଲୋକଙ୍କ ଭିତରେ ସୀମିତ ନ ଥିଲା, ସେଠାରେ ଏହା ଜୀବନର ମୁଖ୍ୟ ସ୍ରୋତ ଥିଲା। ରାସ୍ତାରେ ବା ମନ୍ଦିରରେ ସବୁବେଳେ କେହି ନା କେହି ଅନ୍ୟର କଥା ଶୁଣିବାକୁ ପ୍ରସ୍ତୁତ ଥିଲେ - ସେ କଥା କୌଣସି ଦେବୀଙ୍କର ବିଶେଷ ଗୁଣ ଉପରେ ହେଉ, ସଂଖ୍ୟା ସାତର ରହସ୍ୟମୟ ପ୍ରଭାବ ବିଷୟରେ ହେଉ ବା ଭଗବଦ୍ ଗୀତା ଅନୁସାରେ ମଣିଷର କର୍ତ୍ତବ୍ୟ ଉପରେ ହେଉ।

ଉଚ୍ଚ କୁଳର ବ୍ରାହ୍ମଣମାନେ ବାସ୍ତବ ଦୁନିଆର ଆବଶ୍ୟକତାକୁ ଯେ ଏଡ଼ାଇ ଯାଉଥିଲେ ତାହା ନୁହେଁ। ଧନ, ଆରାମ, ସୁରକ୍ଷିତ ଜୀବନ ପ୍ରତି ସମସ୍ତଙ୍କର ଧ୍ୟାନ ରହିଥିଲା। କିନ୍ତୁ ଦେବାଦେବୀଙ୍କ ପ୍ରତି ଭକ୍ତିଭାବ, ତାଙ୍କର ପୂଜାର୍ଚ୍ଚନା ଓ ଉତ୍ସବ ପାଳନ ବିଷୟରେ ସମସ୍ତେ ବେଶ୍ ସଚେତନ ରହୁଥିଲେ। ଏହିସବୁ ପ୍ରତି ବ୍ରାହ୍ମଣଙ୍କ ନିତିଦିନିଆ ଜୀବନର ଅବିଚ୍ଛେଦ୍ୟ ଅଂଶ ହୋଇ ରହିଥିଲା। ଠିକ୍ ଯେପରି ସମ୍ଭ୍ରାନ୍ତ ଇଂରେଜଙ୍କ ପାଇଁ ଅପରାହ୍ଣର ଚା ଓ କ୍ରିକେଟ ଖେଳ ଏବଂ ଆମେରିକାବାସୀଙ୍କ ପାଇଁ ମୁକ୍ତ ବାଣିଜ୍ୟ ଓ ଗାଡ଼ିମଟର।

ରାମାନୁଜନ୍‌ଙ୍କ ମୃତ୍ୟୁ ପରେ ତାଙ୍କୁ ବୁଝିପାରିଥିବା ବୋଲି ଭାବୁଥିବା ତାଙ୍କର କିଛି ପାଶ୍ଚାତ୍ୟ ବନ୍ଧୁ କହୁଥିଲେ ଯେ ରାମାନୁଜନ୍ ପ୍ରକୃତରେ ଧର୍ମବିଶ୍ୱାସୀ ନ ଥିଲେ। ବରଂ ତାଙ୍କର ମନ କୌଣସି ବିଚକ୍ଷଣ ପାଶ୍ଚାତ୍ୟ ଲୋକଠାରୁ ଅଲଗା ନ ଥିଲା ଏବଂ ସେ କେବଳ ଯାନ୍ତ୍ରିକ ଭାବରେ ହିନ୍ଦୁ ଧର୍ମର ରୀତିନୀତି ମାନୁଥିଲେ।

ସେହି ବନ୍ଧୁମାନଙ୍କର ଧାରଣା ପୂରା ଭୁଲ ଥିଲା।

ରାମାନୁଜନ୍ ଜଣେ ପାରମ୍ପରିକ ହିନ୍ଦୁ ବ୍ରାହ୍ମଣ ଭାବରେ ବଢ଼ିଥିଲେ। ସେ ଚୁଟି ବାନ୍ଧୁଥିଲେ ଓ ମୁଣ୍ଡର ସାମନା ଭାଗ ତାଙ୍କର ନଣ୍ଡା ଥିଲା। ସେ ଥିଲେ ଶୁଦ୍ଧ ଶାକାହାରୀ, ମନ୍ଦିର ଯିବା ସହିତ ସେ

ଘରେ ପୂଜାରେ ଭାଗ ନେଉଥିଲେ, ଦକ୍ଷିଣ ଭାରତ ସାରା ସେ ତୀର୍ଥଯାତ୍ରା କରିଥିଲେ। ଅନେକ ସମୟରେ ସେ ତାଙ୍କର କୁଳଦେବୀ ନାମାକ୍କାଲ୍‌ର ନାମଗିରିଙ୍କ ନାମ ନେଉଥିଲେ ଏବଂ ଦେବୀଙ୍କର ଇଛା ମନେକରି ବିଭିନ୍ନ କାମରେ ହାତ ଦେଉଥିଲେ। ବିଦେଶୀ ଭାଷାରେ ଲେଖା ଗଣିତ ତଥ୍ୟସବୁ ବୁଝିବା ଦିଗରେ ତାଙ୍କର ଦକ୍ଷତାକୁ ସେ ଦେବୀକୃପା ଭାବରେ ମାନୁଥିଲେ। ବେଦ ଉପନିଷଦ ଭଳି ଅନେକ ହିନ୍ଦୁ ଧର୍ମଶାସ୍ତ୍ର ତାଙ୍କର କଣ୍ଠସ୍ଥ ଥିଲା। ସ୍ୱପ୍ନର ବ୍ୟାଖ୍ୟା କରିବାରେ ଓ ରହସ୍ୟମୟ ଘଟଣା ସବୁରେ ସେ ଆଗ୍ରହ ରଖୁଥିଲେ। ତାଙ୍କର ଭାରତୀୟ ସାଙ୍ଗମାନେ ତାଙ୍କଠାରେ ରହସ୍ୟବାଦୀ ମାନସିକତା ଲକ୍ଷ୍ୟ କରୁଥିଲେ।

କୁମ୍ଭକୋଣମ୍‌ରେ ବଢୁଥିଲାବେଳେ ରାମାନୁଜନ୍ ପ୍ରତିବର୍ଷ ଶ୍ରାବଣ ପୂର୍ଣ୍ଣିମାରେ ପୂର୍ବ ଦିଗକୁ ଯାଇଥିବା ରାସ୍ତାରେ ବାହାରି ପଡ଼ନ୍ତି। ରେଳ ଷ୍ଟେସନ ଟପି ସେ ସହର ବାହାରେ ପହଞ୍ଚିଲା ବେଳକୁ ରାସ୍ତା କଡ଼ରେ ଘର ସଂଖ୍ୟା କମିଯାଏ, ବାହାରେ ଗାଈବଳଦ ବନ୍ଧା ହୋଇଥା'ନ୍ତି, ଛେଳିମାନେ ଘର ପାଖରେ ବୁଲୁଥା'ନ୍ତି। ଶେଷରେ ରାସ୍ତା କଡ଼ର ଛୋଟ ଛୋଟ ମନ୍ଦିର ସବୁ ଟପି ସେ ଖୋଲା ପଡ଼ିଆରେ ପହଞ୍ଚନ୍ତି। ପ୍ରାୟ ଚାରି ମାଇଲ ଚାଲିବାପରେ ରାସ୍ତାରେ ବଡ଼ ବାଙ୍କଟିଏ ଆସେ। ସେଠାରେ ତିରୁନାଗେଶ୍ୱରମ୍ ସହରର ଆରମ୍ଭ ହୁଏ ଯେଉଁଠି ବେଶ୍ ପୁରୁଣା ଉପିଲିଆପାନ୍ କୋଏଲ୍ ମନ୍ଦିର ରହିଛି। ସେଦିନ ରାମାନୁଜନ୍ ଏଠାକୁ ତାଙ୍କର ପଇତା ବଦଳାଇବା ପାଇଁ ଆସନ୍ତି।

ପାଞ୍ଚବର୍ଷ ବୟସରେ ତାଙ୍କର ବ୍ରତ ହୋଇଥିଲା। ଚାରିଦିନ ଧରି ହୋମ ଓ ମନ୍ତ୍ରପାଠ ପରେ ସେ ପଇତା ପିନ୍ଧିଲେ ଏବଂ ବେଦପାଠ ଓ ବ୍ରାହ୍ମଣ ପରିବାରର କ୍ରିୟାକର୍ମ କରିବା ଆରମ୍ଭ କଲେ। ପ୍ରତିବର୍ଷ ଶ୍ରାବଣରେ ଉପିଲିଆପାନ୍ ମନ୍ଦିରରେ ବିଧି ଅନୁସାରେ ତାଙ୍କର ପଇତା ବଦଳାଇଲେ।

ଜଣେ ସାଙ୍ଗ ମନେପକାଇ କହନ୍ତି ଯେ ଥରେ ଜହ୍ନ ରାତିରେ ସେମାନେ ଚାଲି ଚାଲି ଛ ମାଇଲ ଦୂରରେ ଥିବା ନାଚିଆର୍‌କୋଭିଲ୍ ସହରକୁ ଗଲେ। ସେଠାର ବିଷ୍ଣୁ ମନ୍ଦିରରେ ଚାଲିଥିବା ମେଳା ଦେଖିବା ସେମାନଙ୍କର ଲକ୍ଷ୍ୟ ଥିଲା। ବାଟ ସାରା ରାମାନୁଜନ୍ ବିଭିନ୍ନ ଶାସ୍ତ୍ରର ଅଂଶ ଗାଉଥିଲେ ଓ ସେସବୁର ଅର୍ଥ ବୁଝାଉଥିଲେ।

ଆଉ ଥରେ, ତାଙ୍କୁ 21 ବର୍ଷ ବୟସ ବେଳେ, ସେ ଜଣେ ଶିକ୍ଷକଙ୍କ ଘରେ ପହଞ୍ଚି କଥା ହେଉଥିଲେ। ଧୀରେ ଧୀରେ ସେ ବୁଝାଇବାରେ ଲାଗିଲେ କିଭଳି ଈଶ୍ୱର, ଶୂନ ଓ ଅସୀମ ଭିତରେ ସମ୍ପର୍କମାନ ଦେଖୁଛନ୍ତି। ରାତି ଦୁଇଟା ଯାଏଁ ସେ ବର୍ଣ୍ଣନା କରି ଚାଲିଥିଲେ ଏବଂ ସମସ୍ତେ ତାହା ମନ୍ତ୍ରମୁଗ୍ଧ ହୋଇ ଶୁଣୁଥିଲେ। ରାମାନୁଜନ୍‌ଙ୍କ କ୍ଷେତ୍ରରେ ଏଭଳି ଘଟଣା ଅତି ସାଧାରଣ ଥିଲା। ଦୀର୍ଘ ଦାର୍ଶନିକ ଓ ରହସ୍ୟବାଦୀ ବଚନିକାରେ ସେ ନିଜକୁ ହଜାଇ ଦେଉଥିଲେ ଏବଂ ତାହା ଭିତରେ ଅଦ୍ଭୁତ କଳ୍ପନାମାନ ଆଣି ଥୋଉଥିଲେ ଯାହା ତାଙ୍କ ସାଥୀମାନଙ୍କ ପାଇଁ ଅବୋଧ କିନ୍ତୁ ଆଗ୍ରହଜନକ ଥିଲା। ତାଙ୍କ କଥା ଶୁଣିବାରେ ସେମାନେ ଏଭଳି ମଜ୍ଜିଯାଉଥିଲେ ଯେ ପରେ କେବଳ ରାମାନୁଜନ୍‌ଙ୍କ ଆଖିର ତୀବ୍ର ଚାହାଣୀ କଥା ମନେ ପକାଇପାରୁଥିଲେ।

ସହପାଠୀ ଆର୍. ରାଧାକ୍ରିଷ୍ଣା ଆୟାର ରାମାନୁଜନ୍‌ଙ୍କୁ "ଗଭୀର ଭାବରେ ଧର୍ମମନା" ବୋଲି କୁହନ୍ତି। ଆଉ ଜଣେ ସାଥୀ ପ୍ରାକ୍ତନ ଗଣିତ ଅଧ୍ୟାପକ ଆର୍. ଶ୍ରୀନିବାସନ୍ ରାମାନୁଜନ୍‌ଙ୍କୁ ଜଣେ ପ୍ରକୃତ "ରହସ୍ୟବାଦୀ... ତୀବ୍ର ଭାବରେ ଧାର୍ମିକ" ରୂପରେ ବର୍ଣ୍ଣନା କରନ୍ତି। ଜୀବନର ଶେଷ ଆଡ଼କୁ

ପାଶ୍ଚାତ୍ୟ ପ୍ରଭାବରେ ରାମାନୁଜନ୍ ହୁଏତ କିଛି ମାତ୍ରାରେ ଧର୍ମନିରପେକ୍ଷ ଓ ହେତୁବାଦୀ ଚିନ୍ତା ଦେଖାଇ ପାରିଥା'ନ୍ତି। କିନ୍ତୁ ତାହା ଆସିଥିଲା ବେଶ୍ ପରେ। ଦକ୍ଷିଣ ଭାରତର ଗଭୀର ଓ ସର୍ବବ୍ୟାପୀ ଆଧ୍ୟାତ୍ମିକତା ଭିତରେ ବଢ଼ିଥିବା କାରଣରୁ ତା'ର ଛାପକୁ ସେ ଏଡ଼ାଇବା ସମ୍ଭବ ହୋଇପାରି ନ ଥା'ନ୍ତା। ଧାର୍ମିକ ନ ହେଲେ ମଧ୍ୟ ବିଦ୍ରୋହୀ ଭାବରେ ସେ ନିଶ୍ଚୟ ପ୍ରଭାବିତ ହୋଇଥା'ନ୍ତେ।

ରାମାନୁଜନ୍ ବିଦ୍ରୋହ କରି ନ ଥିଲେ। ଆଧ୍ୟାତ୍ମ୍ୟର ଅଦୃଶ୍ୟ ଦୁନିଆର ଅସ୍ତିତ୍ୱକୁ ସେ ବିରୋଧ କରି ନ ଥିଲେ ବା ତାଠାରୁ ଦୂରେଇ ରହି ନ ଥିଲେ। ବରଂ ତାହାକୁ ସେ ଆପଣାଇ ନେଇଥିଲେ। ତାଙ୍କ ଜୀବନରେ ଦକ୍ଷିଣ ଭାରତ ପ୍ରତି ବିରୋଧାଭାଷର ଉତ୍ତେଜନା ନ ଥିଲା, ତା'ର ସ୍ପନ୍ଦନ ସହିତ ତାଳ ଦେଇ ତାଙ୍କ ଜୀବନ ନିନାଦିତ ହେଉଥିଲା।

ଦକ୍ଷିଣ ଭାରତ ଏକ ଭିନ୍ନ ଦୁନିଆ ଥିଲା। ଶହ ଶହ ବର୍ଷର ଇତିହାସରେ ଉତ୍ତର ଭାରତରେ ଅନେକ ବାହ୍ୟ ଆକ୍ରମଣ, ଯୁଦ୍ଧ, ବିଦ୍ରୋହ, ବ୍ୟୁତ୍ପାତ ଓ ପରିବର୍ତ୍ତନ ଘଟିଯାଇଛି। ଖ୍ରୀଷ୍ଟପୂର୍ବ 1500 ବେଳକୁ ଉତ୍ତର-ପଶ୍ଚିମର ପାର୍ବତ୍ୟ ପଥରେ ଆର୍ଯ୍ୟମାନେ ଭାରତକୁ ମାଡ଼ି ଆସିଥିଲେ। ଆଠ ଶତାବ୍ଦୀ ଧରି ପୂର୍ବପ୍ରତିଷ୍ଠିତ ବ୍ରାହ୍ମଣ ପରମ୍ପରା ବୌଦ୍ଧ ଧର୍ମର ସାମନା କରିବା ପରେ ନିଜର ପ୍ରାଧାନ୍ୟ ଫେରିପାଇଲା। ଦଶମ ଖ୍ରୀଷ୍ଟାବ୍ଦରେ ମୁସଲମାନ ଆକ୍ରମଣ ଆସିଲା। ସମୟକ୍ରମେ ଏହି ଆକ୍ରମଣକାରୀମାନେ ମୋଗଲ ସାମ୍ରାଜ୍ୟ ଗଢ଼ିଲେ। ଶାସକ ବଦଳିବା ସହିତ ବିଭିନ୍ନ ଜାତି ଭିତରେ ମିଶ୍ରଣ ଘଟିଲା, ଧର୍ମମାନଙ୍କ ଭିତରେ ପ୍ରତିଦ୍ୱନ୍ଦ୍ୱିତା ଚାଲିଲା ଏବଂ ଲୋକଙ୍କ ଭିତରେ ଲଢ଼େଇ ଲାଗିରହିଲା।

ଏସବୁ କିନ୍ତୁ ଦକ୍ଷିଣ ଭାରତକୁ ପ୍ରାୟ ଛୁଇଁଲାନାହିଁ। ପର୍ବତ ଓ ନଈ ସବୁର ପ୍ରାଚୀର ସହିତ ଦୂରତା ତାହାକୁ ସୁରକ୍ଷା ଯୋଗାଇଲା। ଭାରତର ପ୍ରାୟ ମଝିରେ ବିନ୍ଧ୍ୟ ପର୍ବତମାଳାର ଶୃଙ୍ଗମାନ 3000 ଫୁଟ ପର୍ଯ୍ୟନ୍ତ ଉଠିରହିଥିଲେ। ଏହାର ତଳକୁ ବହୁଥିଲେ ପଶ୍ଚିମମୁହାଁ ତାପ୍ତି ଓ ନର୍ମଦା ନଦୀ ଏବଂ ପୂର୍ବମୁହାଁ ମହାନଦୀ। ଏଗୁଡ଼ିକ ପଶ୍ଚିମରେ ଆରବ ଉପସାଗର ବା ପୂର୍ବରେ ବଙ୍ଗୋପସାଗରରେ ମିଶିଥିଲେ। ଏହି ସବୁ ବାଧା ଡେଇଁବା ସହଜ ନ ଥିଲା। ତାଛଡ଼ା ଭାରତର ଉତ୍ତର ସୀମାଠାରୁ ଦାକ୍ଷିଣାତ୍ୟର ଦୂରତା ଏତେ ଥିଲା ଯେ କିଛି ଦୂର ଆଗେଇବା ପରେ ତାହା ଆକ୍ରମଣକାରୀଙ୍କୁ ହତୋତ୍ସାହିତ ଓ ଶକ୍ତିହୀନ କରିଦେଉଥିଲା।

ଏହି ଭାବରେ ଦକ୍ଷିଣ ଭାରତ ଯୁଦ୍ଧର ଝଡ଼ଝଞ୍ଜା ଏଡ଼ାଇବା ସହିତ ଉତ୍ତର ଭାରତରେ ବହୁଥିବା ନୂଆ ସାଂସ୍କୃତିକ ସ୍ରୋତର ପ୍ରଭାବରୁ ମୁକ୍ତ ରହିଥିଲା। ନୃତତ୍ତ୍ୱ ଦୃଷ୍ଟିରୁ ଭାରତର ଅନ୍ୟ ଅଞ୍ଚଳ ତୁଳନାରେ ଦକ୍ଷିଣ ଭାରତରେ ସବୁଠାରୁ ବେଶି ସମାନତା ଦେଖାଯାଉଥିଲା। ସେଠାରେ ମୁଖ୍ୟତଃ ସ୍ଥାନୀୟ ଦ୍ରାବିଡ଼ ଶ୍ରେଣୀର ଲୋକମାନେ ବାସ କରୁଥିଲେ। ସେମାନଙ୍କର ରଙ୍ଗ ସାଧାରଣତଃ ବାଦାମୀରୁ କଳା, ମୁଣ୍ଡ ବାଳ କଳା ଓ କୁଞ୍ଚୁକୁଞ୍ଚିଆ ଓ ନାକ ମୋଟା। ଉତ୍ତର ଭାରତର ବ୍ରାହ୍ମଣମାନଙ୍କ ତୁଳନାରେ ଦକ୍ଷିଣ ଭାରତୀୟ ବ୍ରାହ୍ମଣମାନେ କମ୍ ଗୋରା। ଉତ୍ତର ଓ ଦକ୍ଷିଣ ଭାରତ ଭିତରେ ଭାଷାଗତ ପାର୍ଥକ୍ୟ ଗଭୀର। ତାମିଲ ଓ ଅନ୍ୟ ଦ୍ରାବିଡ଼ୀୟ ଭାଷା ଏବଂ ହିନ୍ଦୀ ଓ ଅନ୍ୟ ସଂସ୍କୃତ ଭିତ୍ତିକ ଭାଷା ଭିତରେ କିଛି ବି ସମାନତା ନ ଥିଲା କହିଲେ ଚଳେ। ଧର୍ମ ଦୃଷ୍ଟିରୁ ଦକ୍ଷିଣ

ଭାରତ ପ୍ରାୟ ପୂରା ହିନ୍ଦୁ ଥିଲା। ରାମାନୁଜନ୍‌ଙ୍କ ତାଞ୍ଜୋର ଜିଲ୍ଲାରେ ନବେ ଶତାଂଶ ହିନ୍ଦୁ ଓ ମାତ୍ର ପାଞ୍ଚ ଶତାଂଶ ମୁସଲମାନ ଥିଲେ। ରାଜନୈତିକ ବିଭାଗରେ କୌଣସି ଅଞ୍ଚଳର ନାଁ 'ଦକ୍ଷିଣ ଭାରତ' ନ ଥିଲା। କିନ୍ତୁ ସେ ଅଞ୍ଚଳର ବାସିନ୍ଦାମାନେ ନିଜର ସ୍ୱତନ୍ତ୍ରତା ବିଷୟରେ ଏତେ ବିଶ୍ୱାସୀ ଥିଲେ ଯେ ନିଜର ଡାକ ଠିକଣାରେ ସେମାନେ ଦକ୍ଷିଣ ଭାରତ ଲେଖୁଥିଲେ। ଏହା ଏକ ଗଭୀର ସାଂସ୍କୃତିକ ସତ୍ୟତା ଥିଲା କହିଲେ ଭୁଲ ହେବନାହିଁ।

ଦକ୍ଷିଣ ଭାରତରେ ଆଧ୍ୟାତ୍ମିକତା କୌଣସି ଦିଗରୁ ଗଭୀରତା ନ ହରାଇ ବଢ଼ିବାର ସୁଯୋଗ ପାଇଲା। ଉତ୍ତର ଭାରତ ନୂତନ ଜ୍ଞାନୋଦୟ ସମୟର ୟୁରୋପ ଭଳି ହୋଇଥିଲା ବେଳେ ଦକ୍ଷିଣ ଭାରତ ମଧ୍ୟ ଯୁଗରେ ରହିଥିଲା। ବମ୍ବେ ବାଣିଜ୍ୟର ଓ କଲିକତା ରାଜନୀତିର କେନ୍ଦ୍ର ଭାବରେ ଜଣାଥିବା ବେଳେ ମାନ୍ଦ୍ରାଜ ଧର୍ମଚିନ୍ତାରେ ବୁଡ଼ି ରହିଥିଲା। ସେଠାରେ ମନକୁ ଅନ୍ୟ ଦିଗରେ ଟାଣିବା ପାଇଁ ବିଶେଷ କିଛି ନ ଥିଲା, କେବଳ ଧାନ କ୍ଷେତ, ମନ୍ଦିର ଓ ଦେବାଦେବୀ ହିଁ ଥିଲେ।

ଧର୍ମନିରପେକ୍ଷ ଦୁନିଆଠାରୁ ଏହା ବହୁ ଦୂରରେ ରହିଥିଲା ଏବଂ ରହସ୍ୟମୟ ଓ ଐନ୍ଦ୍ରଜାଲିକ ଶକ୍ତି ଉପରେ ଅଗାଧ ବିଶ୍ୱାସ ରଖୁଥିବା ପାରମ୍ପରିକ ସଂସ୍କୃତି ଏଠାରେ ବ୍ୟାପି ରହିଥିଲା। ଏହି ପରିବେଶରେ ଦେବାଦେବୀଙ୍କ ଅଦୃଶ୍ୟ ନିୟନ୍ତ୍ରଣ ଉପରେ ରାମାନୁଜନ୍‌ଙ୍କ ବିଶ୍ୱାସ ସ୍ୱାଭାବିକ ଥିଲା। ଏଭଳି ଅଦୃଶ୍ୟ ସମ୍ପର୍କରେ ବନ୍ଧା ଏକ ମାନସିକ ଦୁନିଆ ତାଙ୍କ ପାଇଁ ପ୍ରାକୃତିକ ଭାବରେ ଆରାମଦାୟକ ଥିଲା।

ଦକ୍ଷିଣ ଭାରତ ସାରା ମାତ୍ର କେଇ ଘର ଥିବା ଛୋଟ ଛୋଟ ଗାଁରେ ମାରିଆମ୍ମା ବା ଆୟେନାର, ସେଲିଆମ୍ମା ବା ଆଙ୍ଗାଲାମ୍ମା ଆଦି ଦେବୀଙ୍କ ପାଇଁ ମନ୍ଦିର ରହୁଥିଲା। ଏହିସବୁ ଦେବୀ କୃଷିଭିତ୍ତିକ ସମାଜର ଆରମ୍ଭ ଦିନରୁ ସେଠାରେ ପୂଜା ପାଇ ଆସୁଥିଲେ। ସେମାନେ ବସନ୍ତ, ହଇଜା ବା ଗୋମଡ଼କ ଭଳି ଶକ୍ତିର ପ୍ରତିନିଧି ଥିଲେ, ତେଣୁ ଲୋକମାନେ ତାଙ୍କୁ ସବୁବେଳେ ସନ୍ତୁଷ୍ଟ କରି ରଖିବାକୁ ଚେଷ୍ଟା କରୁଥିଲେ। ଏମାନେ ମୁଖ୍ୟତଃ ଦେବୀ ଥିଲେ ଏବଂ ତାଙ୍କ ସାଙ୍ଗରେ ମିଶିଥିବା କିଛି ନୂଆ ଦେବୀ ଥିଲେ ନରହତ୍ୟାର ଶିକାର ବା ପ୍ରସବ ବେଳେ ପ୍ରାଣ ହରାଇଥିବା ମହିଳା। 1904 ମସିହାରେ ଗୋଟିଏ ଉଇ ହୁଙ୍କାରୁ ମହୁରୀର ଧ୍ୱନି ଆସୁଥିବା ଭଳି କିଛି ପିଲା ମନେକଲେ। ଅଳ୍ପ ସମୟ ଭିତରେ ସେ ହୁଙ୍କା ଦେବୀରୂପ ପାଇଲା ଏବଂ ଆଖପାଖର ହଜାର ହଜାର ଲୋକ ସେଠାରେ ପହଞ୍ଚି ଅତି ଭକ୍ତିରେ ପୂଜା କରିବାରେ ଲାଗିଲେ।

ଏହିସବୁ ଦେବୀ ଗ୍ରାମ ଦେବତା ଭାବରେ ପରିଚିତ ଥିଲେ ଏବଂ ବ୍ରାହ୍ମଣ ଧର୍ମ ସହିତ ଏହାର କିଛି ତାତ୍ତ୍ୱିକ ସମ୍ପର୍କ ନ ଥିଲା। ସାଧାରଣ ଭାବରେ ସମସ୍ତେ ବିଷ୍ଣୁ ବା ଶିବ ଦୁଇ ମୁଖ୍ୟ ଦେବତାଙ୍କୁ ପୂଜା କରନ୍ତି, କିନ୍ତୁ ମହାମାରୀ ବା ମରୁଡ଼ି ସମୟରେ ସେମାନେ ଗ୍ରାମ୍ୟଦେବତାଙ୍କ ନୁଆଣିଆ ଚୁଙ୍ଗି ପାଖରେ ପହଞ୍ଚନ୍ତି। ଇଟା ପଥର ଘେରା ହାତଗଢ଼ା ଚୁଙ୍ଗିର ଠାକୁର ହିଁ ଗାଁର ରକ୍ଷକର ମାନ୍ୟତା ପାଇଥା'ନ୍ତି।

ଏସବୁ କ'ଣ ଖାଲି ଆଦିମ ମୂର୍ତ୍ତି ପୂଜା? କିଛି ଲୋକଙ୍କ ମତରେ ତାହା ହିଁ ସତ। ଖାଲି ସେତିକି ନୁହେଁ, ହିନ୍ଦୁ ଧର୍ମ ସହିତ ଏହାର ସମ୍ପର୍କକୁ ଅତି ଦୁର୍ବଳ ବୋଲି ସେମାନେ ମନେକରନ୍ତି।

କୁମ୍ଭକୋଣମ୍‌ର ହିନ୍ଦୁ ଧର୍ମ, ଯେଉଁଥିରେ ରାମାନୁଜନ୍ ବୁଡ଼ି ରହିଥିଲେ, ଗାଁଗଣ୍ଡାର ମୂର୍ତ୍ତି ପୂଜା ଠାରୁ ପୂରା ଅଲଗା ଥିଲା। ଜଣେ ଇଂରେଜ ପର୍ଯ୍ୟବେକ୍ଷକ କୁହନ୍ତି, "ତାଞ୍ଜୋର ଜିଲ୍ଲାରେ ହିନ୍ଦୁ ଧର୍ମ ହେଉଛି ଜୀବନର ଏକ ବାସ୍ତବ ଅଙ୍ଗ। ଦୂରନ୍ତ ଅଞ୍ଚଳର ଆଦିମ ଉପଦେବୀ, ପ୍ରେତ ବା ସଇତାନ ପୂଜା ସହିତ ଏହାର କିଛି ବି ସମ୍ପର୍କ ନାହିଁ।"

ଦାକ୍ଷିଣାତ୍ୟର କୁମ୍ଭକୋଣମ୍, କାଞ୍ଚିପୁରମ୍, ତାଞ୍ଜୋର, ମଦୁରାଇ ଓ ରାମେଶ୍ୱରମ୍ ଆଦି ପ୍ରମୁଖ ମନ୍ଦିରଗୁଡ଼ିକ ଉତ୍ତର ଭାରତର ବଡ଼ ମନ୍ଦିରଗୁଡ଼ିକଠାରୁ ଉଚ୍ଚତର ଶ୍ରେଣୀର ବୋଲି କିଛି ବିଶାରଦ ମତ ଦିଅନ୍ତି। ଠିକ୍ ଯେପରି ୱେଷ୍ଟମିନିଷ୍ଟର ଆବି ଓ ସେଣ୍ଟ ପଲ୍ ଗୀର୍ଜା ଲଣ୍ଡନର ଅନ୍ୟ ଗୀର୍ଜାମାନଙ୍କଠାରୁ ଉଚ୍ଚତର। ସପ୍ତଦଶ ଶତାବ୍ଦୀରେ ତିଆରି ହୋଇଥିବା ରାମେଶ୍ୱରମ୍ ମନ୍ଦିର ଭାରତ ଓ ଶ୍ରୀଲଙ୍କା ମଝିରେ ଏକ ଦ୍ୱୀପ ଉପରେ ରହିଛି। ପୂରା ହେବା ପାଇଁ 100 ବର୍ଷ ଲାଗିଥିବା ଏହି ମନ୍ଦିରର ଲମ୍ବ 1000 ଫୁଟ ଓ ଚଉଡ଼ା 650 ଫୁଟ। ତା'ର ପ୍ରତି କଡ଼ରେ 100 ଫୁଟ ଉଚ୍ଚତାର ଗୋପୁରମ୍ ରହିଛି ଏବଂ ଭିତରେ ରହିଛି ସୂକ୍ଷ୍ମ କାରୁକାର୍ଯ୍ୟଭରା ଅନେକ ଅଳିନ୍ଦ ଯାହାର ମୋଟ ଲମ୍ବ ପ୍ରାୟ 4000 ଫୁଟ।

ମନ୍ଦିରର ଅସଂଖ୍ୟ ଦେବଦେବୀ ଦେଖିଲେ କେହି ପାଶ୍ଚାତ୍ୟ ପର୍ଯ୍ୟବେକ୍ଷକ ହତବୁଦ୍ଧି ହୋଇଯିବ। କିନ୍ତୁ କାଠ ବା ପଥରରେ ଗଢ଼ା, ଲୁଗା ବା ଫୁଲମାଳପିନ୍ଧା, କାରୁକାର୍ଯ୍ୟଭରା ସେହି ଛୋଟ ବଡ଼ ମୂର୍ତ୍ତି ସବୁ ହିନ୍ଦୁ ଧର୍ମର ବିଶାଳ ଚିତ୍ରପଟ୍ଟର ଅଂଶ। ହିନ୍ଦୁ ଧର୍ମର ଏହି ମୁଖ୍ୟ ସ୍ରୋତ ଗାଁଗଣ୍ଡାର ଆଦିମ ଧର୍ମଠାରୁ ଅନେକ ଗୁଣ ମାର୍ଜିତ ଓ ବିକଶିତ।

ହିନ୍ଦୁ ଧର୍ମର ତିନି ମୁଖ୍ୟ ଦେବତା ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଯଥାକ୍ରମେ ବିଶ୍ୱର ସ୍ରଷ୍ଟା, ପାଳକ ଓ ଧ୍ୱଂସକର୍ତ୍ତା ରୂପରେ କଳ୍ପିତ ହୋଇଛନ୍ତି। ବିଶ୍ୱ ସୃଷ୍ଟିକଲା ପରେ ବ୍ରହ୍ମା ନିର୍ଲିପ୍ତ ଓ ସୁପ୍ତ ରହିଥିବାର ବର୍ଣ୍ଣନା ପୁରାଣରେ ଦେଖାଯାଏ ଏବଂ ସେ ପ୍ରତ୍ୟକ୍ଷ ଭାବରେ ପୂଜିତ ହୁଅନ୍ତିନାହିଁ। ଫଳରେ ହିନ୍ଦୁ ଧର୍ମର ଦୁଇ ମୁଖ୍ୟ ଧାରା ଶିବ ଓ ବିଷ୍ଣୁଙ୍କୁ ଆଧାର କରି ବିକଶିତ ହେଲେ।

ଶୈବ ଉପାସନାରେ କିଛି ମାତ୍ରାରେ ଉଗ୍ରତା, ଯୌନତା ଓ ଅପଦେବତା ସମ୍ପର୍କିତ ଆଭାସ ଦେଖାଯାଉଥିଲା। ଯୌନ ଶକ୍ତିର ପ୍ରତୀକ ଭାବରେ କଳ୍ପିତ ଲିଙ୍ଗ ସବୁ ଶିବ ମନ୍ଦିରର କେନ୍ଦ୍ର ବିନ୍ଦୁ ଥିଲା। ଶିବଙ୍କୁ ପ୍ରଳୟର ପ୍ରତୀକ ରୂପରେ ଗ୍ରହଣ କରାଯାଇଥିଲା।

ସୃଷ୍ଟିର ପ୍ରତିପାଳକ ବିଷ୍ଣୁଙ୍କ ଉପାସନାକୁ ଭିତ୍ତି କରୁଥିବା ବୈଷ୍ଣବ ଧର୍ମ ଶାନ୍ତିର ପ୍ରତିଫଳକ ହୋଇଥାଏ। ଏହାକୁ ମାନବିକତା ଭାବରେ ମଧ୍ୟ ବର୍ଣ୍ଣନା କରାଯାଇଛି। ବୈଷ୍ଣବ ଉପାସନାରେ ପୂଜା ପାଉଥିବା ଦୁଇ ମୁଖ୍ୟ ଦେବତା ହେଉଛନ୍ତି ବିଷ୍ଣୁଙ୍କର ଦୁଇଟି ଅବତାର ରାମ ଓ କୃଷ୍ଣ।

ପୁରାଣ କଥାରେ ହିନ୍ଦୁ ଧର୍ମର ତିନି ମୁଖ୍ୟ ଦେବତା ବିଭିନ୍ନ ରୂପରେ ଆବିର୍ଭୂତ ହୁଅନ୍ତି। ଶିବଙ୍କର ପରମେଶ୍ୱର ରୂପ ଏବଂ ବିଷ୍ଣୁଙ୍କର ନରସିଂହ ବା ଭେଙ୍କଟେଶ୍ୱର ରୂପ ଏହାର ଉଦାହରଣ। ମୁଖ୍ୟ ଦେବତାମାନଙ୍କର ପତି ବା ପତ୍ନୀ ଏବଂ ସହଚରମାନେ ମଧ୍ୟ ତାଙ୍କ ସହିତ ପୂଜା ପା'ନ୍ତି ଏବଂ ସେମାନଙ୍କର ନିଜସ୍ୱ ଭକ୍ତ ଗୋଷ୍ଠୀମାନ ମଧ୍ୟ ଦେଖାଯା'ନ୍ତି। ଉଦାହରଣ ସ୍ୱରୂପ, ବିଷ୍ଣୁଙ୍କ ପତ୍ନୀ ଲକ୍ଷ୍ମୀ ଓ ସହଚର ହନୁମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟକ୍ତିତ୍ୱର କଳ୍ପନା କରାଯାଇଛି ଏବଂ ସେମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ମନ୍ଦିର ଓ ପୂଜା ବ୍ୟବସ୍ଥା ମଧ୍ୟ ରହିଛି।

କିଛି ଉପାସକ ପଥର ମୂର୍ତ୍ତିଗୁଡ଼ିକୁ ହିଁ ଦେବଦେବୀ ଭାବରେ ଦେଖୁଥିଲେ ଯାହା ଆଦିମ ଗ୍ରାମଦେବତାଙ୍କଠାରୁ ବିଶେଷ ଅଲଗା ନ ଥିଲା। ଗୋଟିଏ ମତ ଅନୁସାରେ ଗାଁର ଆଦିମ ଦେବତା ଓ ବିକଶିତ ବ୍ରାହ୍ମଣ ଧର୍ମର ଦେବତାମାନଙ୍କର ଏବଂ ବିଭିନ୍ନ ପୂଜାର୍ଚ୍ଚନା ବିଧିର ମିଶ୍ରଣ ପ୍ରାୟ ଦୁଇ ହଜାର ବର୍ଷ ତଳୁ ଆରମ୍ଭ ହୋଇଥିଲା। ଆଦିମ ମୂର୍ତ୍ତିପୂଜା ଜଣେ ସାଧାରଣ ମଣିଷକୁ ସୂକ୍ଷ୍ମତର ଆଧ୍ୟାତ୍ମିକ ମାର୍ଗରେ ନେଇପାରେ। କିନ୍ତୁ ମାର୍ଜିତ ହିନ୍ଦୁମାନେ ବୁଝୁଥିଲେ ଯେ ସେହି ପଥର ଦେବଦେବୀ ଏକତ୍ୱର ପ୍ରତୀକ ଏବଂ ଯେ କୌଣସି ମୂର୍ତ୍ତିର ପୂଜା ମାଧ୍ୟମରେ ଜଣେ ସମଗ୍ର ସତ୍ତାର ଉପଲବ୍ଧି ପାଇପାରେ।

ଏହି ଭାବରେ ହିନ୍ଦୁ ଧର୍ମ ସବୁ ପ୍ରକାରର ଲୋକଙ୍କ ପାଇଁ ଖୋଲା ରହିପାରିଲା ଏବଂ ଏକ ଉଦାର ଧର୍ମର ମାନ୍ୟତା ପାଇଲା। ଅନ୍ୟ ପ୍ରକାରର ବିଶ୍ୱାସକୁ ଏହା ବିରୋଧ କଲା ନାହିଁ। ପୂଜା ଉପାସନା ପାଇଁ ଏହା ଗୋଟିଏ ନିର୍ଦ୍ଦିଷ୍ଟ ବିଧି ଉପରେ ଜୋର ଦେଲା ନାହିଁ। ପ୍ରତି ମଣିଷର ପରିସ୍ଥିତିକୁ ଖାପ ଖାଇଲା ଭଳି ଓ ମନକୁ ଛୁଉଁଥିବା ଭଳି ଅଲଗା ଅଲଗା ଦେବଦେବୀ ରହିଥିଲେ ଯାହାର ପୂଜାରେ ସେ ସନ୍ତୋଷ ପାଇପାରିବ ଏବଂ ଆଧ୍ୟାତ୍ମିକ ମାର୍ଗରେ ଆଗେଇ ପାରିବ। ଲକ୍ଷ୍ୟ, ମାନସିକତା, ସାମାଜିକ ସ୍ଥିତି ଆଦିକୁ ନେଇ ଦେବଦେବୀ ମଧ୍ୟ ଭିନ୍ନ ହେଉଥିଲେ। ଏଭଳି ଅସଂଖ୍ୟ ରୂପ ନେବା ଫଳରେ ଈଶ୍ୱର ମୂଳତଃ ଅମୂର୍ତ୍ତ ଭାବରେ ଦେଖାଗଲେ ଏବଂ ବହୁନାମରେ ପରିଚିତ ହେଉଥିବାରୁ ତାଙ୍କର ମୂଳ ସତ୍ତା ନାମହୀନ ହୋଇ ରହିଲା।

ହଜାର ହଜାର ଦେବଦେବୀଙ୍କ ଭିତରୁ ଦକ୍ଷିଣ ଭାରତର ପ୍ରତ୍ୟେକ ପରିବାର ଜଣଙ୍କ ପ୍ରତି ବିଶେଷ ଭକ୍ତି ଓ ବିଶ୍ୱାସ ରଖୁଥିଲେ। ସେହି କୁଳଦେବତା ବଂଶ ପରମ୍ପରାର ଅଂଶ ହୋଇଯାଉଥିଲେ ଏବଂ ପିଢ଼ି ପିଢ଼ି ଧରି ପୂଜା ପାଉଥିଲେ। ବିପଦ ସମୟରେ କୁଳଦେବତାଙ୍କ ଉପରେ ପୂରା ପରିବାର ଭରସା ରଖୁଥିଲେ। ସେତେବେଳେ କୁଳଦେବତାଙ୍କ ସନ୍ତୋଷ ପାଇଁ ପୂଜାର୍ଚ୍ଚନା କଲା ପରେ ଅନ୍ୟ ଦେବଦେବୀଙ୍କ କଥା ଚିନ୍ତା କରାଯାଉଥିଲା। ଯେତେ ବିଦ୍ୱାନ, ବୁଦ୍ଧିଜୀବୀ, ଇଂରେଜ ପଢୁଆ ହୁଅନ୍ତୁ ପଛକେ ଅନେକ ଦକ୍ଷିଣ ଭାରତୀୟ ବ୍ରାହ୍ମଣ ପଣ୍ଡିତ ନିୟମିତ ଭାବରେ କୁଳଦେବତାଙ୍କ ପାଖରେ ଆବେଗମୟ ପ୍ରାର୍ଥନା କରନ୍ତି।

ରାମାନୁଜନ୍‌ଙ୍କ କୁଳଦେବୀ ଥିଲେ ନରସିଂହଙ୍କର ପତ୍ନୀ ନାମଗିରି। କୁମ୍ଭକୋଣମ୍‌ଠାରୁ ପ୍ରାୟ 100 ମାଇଲ ଦୂରରେ ଥିବା ନାମାକ୍କାଲଠାରେ ସେହି ଦେବୀଙ୍କ ପୀଠ ରହିଥିଲା। ଇରୋଡ୍ ପାଖରେ ଥିବା କୋମଳତାମ୍ମାଲ୍‌ଙ୍କ ଘରକୁ ଯିବା ବାଟରେ ତାହା ପଡୁଥିଲା। ମା'ଙ୍କ ମୁହଁରୁ ରାମାନୁଜନ୍ ସବୁବେଳେ ଦେବୀ ନାମଗିରିଙ୍କ ନାଁ ଶୁଣୁଥିଲେ। ମା'ଙ୍କ ପାଇଁ ସେ ମୁଖ୍ୟ ଆରାଧ୍ୟ ଦେବୀ ଥିଲେ ଏବଂ ଯାହା ଦେବୀଙ୍କର ଇଚ୍ଛା ବୋଲି ମନେ କରାଯାଉଥିଲା ତାହା ଗୁରୁତ୍ୱ ସହକାରେ ଗ୍ରହଣ କରାଯାଉଥିଲା।

ବିବାହର କିଛି ବର୍ଷ ଯାଏ ପିଲା ନ ହେବାରୁ ରାମାନୁଜନ୍‌ଙ୍କ ବାପା ମା ଦେବୀ ନାମଗିରିଙ୍କୁ ହିଁ ପ୍ରାର୍ଥନା କରୁଥିଲେ। ରାମାନୁଜନ୍‌ଙ୍କ ଆଈ ରଙ୍ଗାମ୍ମାଲ୍ ମଧ୍ୟ ନାମଗିରିଙ୍କର ଭକ୍ତ ଥିଲେ ଏବଂ କୁହାଯାଉଥିଲା ଯେ ସମ୍ମୋହିତ ଅବସ୍ଥାରେ ସେ ଦେବୀଙ୍କ ସହିତ କଥା ହେଉଥିଲେ। ତାଙ୍କ କହିବା ଅନୁସାରେ ଥରେ ଜଣେ ସ୍ଥାନୀୟ ଶିକ୍ଷକଙ୍କ ସମ୍ପୃକ୍ତିରେ ଗୋଟିଏ ହତ୍ୟାକାଣ୍ଡ ବିଷୟରେ ଦେବୀ ତାଙ୍କୁ

ଚେତାବନୀ ଦେଇଥିଲେ। ଆଉ ଥରେ ରାମାନୁଜନ୍‌ଙ୍କ ଜନ୍ମର ଅନେକ ବର୍ଷ ଆଗରୁ ଦେବୀ ଆଈଙ୍କୁ କହିଥିଲେ ଯେ ତାଙ୍କ ଝିଅଙ୍କ ପୁଅର ତୁଣ୍ଡରେ ଦେବୀ କଥା କହିବେ। ପିଲାଦିନରୁ ରାମାନୁଜନ୍ ଏହି କଥା ଶୁଣିଆସିଥିଲେ। ମା'ଙ୍କ ଭଳି ସେ ମଧ୍ୟ ସବୁବେଳେ ନାମଗିରିଙ୍କ ନାଁ ନେଉଥିଲେ ଏବଂ ତାଙ୍କୁ ଆଶୀର୍ବାଦ ଓ ଉପଦେଶ ମାଗୁଥିଲେ। ସାଙ୍ଗମାନଙ୍କୁ ସେ କହୁଥିଲେ ଯେ ତାଙ୍କର ଗାଣିତିକ ପ୍ରତିଭା ପ୍ରକୃତରେ ଦେବୀ ନାମଗିରିଙ୍କର ଦାନ। ଦେବୀ ହିଁ ତାଙ୍କ ଜିଭରେ ସମୀକରଣ ସବୁ ଲେଖୁଛନ୍ତି ଏବଂ ସ୍ୱପ୍ନରେ ତାଙ୍କୁ ନୂଆ ଅବଧାରଣାମାନ ଦେଉଛନ୍ତି।

ସାଙ୍ଗମାନଙ୍କୁ ତ ସେ ଏକଥା କହୁଥିଲେ। କିନ୍ତୁ ସେ କ'ଣ ତାହା ସତରେ ବିଶ୍ୱାସ କରୁଥିଲେ?

ବିଶ୍ୱାସ ତାଙ୍କ ଆଈ କରୁଥିଲେ, ତାଙ୍କ ମା ବି କରୁଥିଲେ। ଅନେକ ଦିନ ଧରି ନାମଗିରିଙ୍କୁ ପ୍ରାର୍ଥନା କଲାପରେ ପୁଅଟିଏ ପାଇଥିବାରୁ କୋମଲତାମ୍ମାଲ୍‌ଙ୍କର ଭକ୍ତି ଓ ବିଶ୍ୱାସ ଆହୁରି ବଢ଼ିଯାଇଥିଲା। ତାହା ହିଁ ଥିଲା କୋମଲତାମ୍ମାଲ୍‌ଙ୍କ ପ୍ରକୃତି - ଦାବିକରି ପୁଅ ପାଇଥିବା ଭଳି କଥା ଥିଲା। ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ଓ ପ୍ରଖର ଇଚ୍ଛାଶକ୍ତି ତାଙ୍କର ସବୁ କାମରେ ପ୍ରତିଫଳିତ ହେଉଥିଲା।

ମା'ଙ୍କଠାରୁ ରାମାନୁଜନ୍ ଏହି ଗୁଣ ଆପଣାଇ ଥିଲେ। ତାଙ୍କୁ ଶିଖାଇବାକୁ ପଡ଼ି ନ ଥିଲା, କାରଣ ମା'ଙ୍କର ପ୍ରତି କାମରେ ସେ ତାହା ଦେଖୁଥିଲେ। ଅନ୍ତରର ଧ୍ୱନିକୁ ବୁଝିବାର କଳା ଏବଂ ଇଚ୍ଛାଶକ୍ତି ବଳରେ ତାକୁ କାମରେ ରୂପାୟିତ କରିବାର କଳା ସେ ମା'ଙ୍କଠାରୁ ଶିଖିଲେ। ରାମାନୁଜନ୍‌ଙ୍କ ବାପାଙ୍କ ଜୀବନ ଗତାନୁଗତିକ ଶୃଙ୍ଖଳା ଏବଂ ଆର୍ଥିକ ଚିନ୍ତା ଭିତରେ ବନ୍ଧା ଥିଲା। ସେ ଚାହୁଁଥିଲେ ଯେ ରାମାନୁଜନ୍ ବିବାହ କରନ୍ତୁ - ଘରକୁ କିଛି ଟଙ୍କା ଆସୁ ଓ ରାମାନୁଜନ୍‌ଙ୍କ ଜୀବନରେ ସ୍ଥିରତା ଆସୁ। କିନ୍ତୁ କୋମଲତାମ୍ମାଲ୍‌ଙ୍କ ଚିନ୍ତା ଗଭୀରତର ଥିଲା। ସେ ତାଙ୍କ ଅନ୍ତରର ସମୃଦ୍ଧ ଦୁନିଆରେ ରହୁଥିଲେ ଏବଂ ରାମାନୁଜନ୍‌ଙ୍କୁ ତା ଭିତରକୁ ଟାଣି ନେଉଥିଲେ। ଫଳରେ ରାମାନୁଜନ୍‌ଙ୍କ ଜୀବନରେ ଯେବେ ଏକ ନୂଆ ପ୍ରଭାବ ଦେଖାଦେଲା ତାକୁ ଆଦରି ନେବା ପାଇଁ ଓ ସେହି ଦିଗରେ ଖୁସିରେ ନିଜର ଜୀବନ ଉତ୍ସର୍ଗ କରିବା ପାଇଁ ମା'ଙ୍କ ସ୍ୱୀକୃତି ରହିଥିଲା।

# 2

# ଉଲ୍ଲସିତ ବିଚରଣ

(1903–1908)

## 1. କାର୍‌ଙ୍କ ବହି

1903 ମସିହାରେ, ଟାଉନ ହାଇ ଛାଡ଼ିବାର କେତେ ମାସ ଆଗରୁ, ରାମାନୁଜନ୍‌ଙ୍କ ହାତକୁ ନୂଆ ବହି ଖଣ୍ଡେ ଆସିଲା। ତାଙ୍କ ଘରେ ରହୁଥିବା କଲେଜ ପିଲାମାନେ ବୋଧହୁଏ ତାହା ତାଙ୍କୁ ଦେଖାଇଥିଲେ। ବହିଟିର ନାଁ ଥିଲା 'ଶୁଦ୍ଧ ଓ ପ୍ରାୟୋଗିକ ଗଣିତ ବିଷୟକ ପ୍ରାଥମିକ ଫଳାଫଳର ସଂକ୍ଷିପ୍ତସାର' (ଏ ସିନୋପ୍‌ସିସ୍ ଅଫ୍ ଏଲିମେଣ୍ଟାରି ରେଜଲ୍ଟସ୍ ଇନ୍ ପିଓର୍ ଆଣ୍ଡ ଆପ୍ଲାଏଡ୍ ମାଥେମାଟିକ୍‌ସ୍)। ରାମାନୁଜନ୍‌ଙ୍କ ଉପରେ ତାହା କେତେ ଗଭୀର ପ୍ରଭାବ ପକାଇବ ତା'ର କିଛି ବି ସୂଚନା ବହିର ନାଁରୁ ମିଳୁ ନ ଥିଲା।

ମୋଟାମୋଟି ଭାବରେ ସେ ବହିଟି ପ୍ରାୟ 5000 ସମୀକରଣର ଏକ ସଂକଳନ ଥିଲା। ସେଥିରେ ପୃଷ୍ଠା ପୃଷ୍ଠା ଧରି ବିଭିନ୍ନ ଉପପାଦ୍ୟ, ସମୀକରଣ, ଜ୍ୟାମିତିକ ଅଙ୍କନ ଓ ଅନ୍ୟ ଗାଣିତିକ ତଥ୍ୟ ବିଷୟ ଅନୁସାରେ ଦିଆଯାଇଥିଲା। ଖୋଜିବାର ସୁବିଧା ପାଇଁ ପ୍ରତି ତଥ୍ୟର କ୍ରମିକ ସଂଖ୍ୟା ବଡ଼ ଅକ୍ଷରରେ ସୂଚିତ ହୋଇଥିଲା। ବୀଜଗଣିତ, ତ୍ରିକୋଣମିତି, କାଲ୍‌କୁଲସ୍, ବିଶ୍ଳେଷଣାତ୍ମକ ଜ୍ୟାମିତି, ଅବକଳ ସମୀକରଣ ଭଳି ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଜଣାଥିବା ଗଣିତର ବଡ଼ ବଡ଼ ବିଭାଗର ବହି ସବୁରେ ଗୋଟିଏ ଥାକ ଭରିଯିବା କଥା। କିନ୍ତୁ ସେ ସବୁର ସାରାଂଶ କାର୍ ସାଧାରଣ ମୋଟେଇର ଦୁଇ ଖଣ୍ଡ ବହିରେ ଏକାଠି କରି ଦେଇଥିଲେ। ଅବଶ୍ୟ ରାମାନୁଜନ୍ ସେହି ବହିର ଦ୍ୱିତୀୟ ଖଣ୍ଡଟି ବୋଧହୁଏ ସେତେବେଳେ ଦେଖି ନ ଥିଲେ।

ପରେ ଜଣେ ମତ ଦେଇଥିଲେ, "କୌଣସି ଦିଗରୁ ବହିଟି ମହାନ ନୁହେଁ, କିନ୍ତୁ ରାମାନୁଜନ୍ ତାକୁ ବିଖ୍ୟାତ କରିଦେଲେ।" ସଂକ୍ଷିପ୍ତ ସାର ବହିର ଲେଖକ ଜର୍ଜ ସୁବ୍ରିଜ୍ କାର୍‌ଙ୍କର ଗାଣିତିକ ପ୍ରତିଭା କିଛି ବିଶେଷ ନ ଥିଲା। ସେ ଜଣେ ମଧ୍ୟମ ବର୍ଗର ଗଣିତଜ୍ଞ ଥିଲେ ଏବଂ ଘରୋଇ ଶିକ୍ଷକତା ତାଙ୍କର ବୃତ୍ତି ଥିଲା। ବହିଟି ତାଙ୍କର କୋଚିଂ ନୋଟ ସବୁର ସାରାଂଶ ହିଁ ଥିଲା।

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଇଂଲଣ୍ଡରେ ଗଣିତ ଛାତ୍ରମାନେ ଟ୍ରାଇପସ୍ ନାମକ ପରୀକ୍ଷା ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ। ଏହା ଏକ ଅତି କଠିନ ପରୀକ୍ଷା ଥିଲା ଏବଂ

ଏହାର ଫଳ ଉପରେ ସେମାନଙ୍କର ଭବିଷ୍ୟତ ନିର୍ଭର କରୁଥିଲା। ସେଥିରେ ଭଲ କରିବା ପାଇଁ ଛାତ୍ରମାନେ ତତ୍ତ୍ୱ ନ ବୁଝି କେବଳ ପ୍ରଶ୍ନର ଉତ୍ତର ଦେବା ପାଇଁ ପ୍ରସ୍ତୁତି କରୁଥିଲେ। ତେଣୁ ଏହାର ସଂସ୍କାର ପାଇଁ ପର ସମୟରେ ବିଶେଷ ଦାବି ଉଠିଲା। କିନ୍ତୁ 1860 ଦଶକରେ ଟ୍ରାଇପସ୍‌ରେ ସଫଳ ହେବା ଗୋଟିଏ ବଡ଼ ଲକ୍ଷ୍ୟ ଥିଲା ଏବଂ ସେତିକିବେଳେ କାର୍‌ଙ୍କ ବହିଟି ଲେଖାଯାଇଥିଲା। ପରୀକ୍ଷାର ଗୁରୁତ୍ୱ ଦୃଷ୍ଟିରୁ ଅନେକ ଘରୋଇ ଗଣିତ ଶିକ୍ଷକ ସ୍ୱତନ୍ତ୍ର କୋଚିଙ୍ଗ ଦେବାକୁ ଲାଗିଲେ। କାର୍ ସେମାନଙ୍କ ଭିତରୁ ଜଣେ ଥିଲେ।

କାର୍‌ଙ୍କ ଶିକ୍ଷା ବୃତ୍ତାନ୍ତ ବିଚିତ୍ର ଥିଲା। ଆମେରିକା ଯାତ୍ରା ଆରମ୍ଭ ହେଉଥିବା ବନ୍ଦର ପାଖର ଟାଇନ୍‌ମାଉଥଠାରେ 1837 ମସିହାରେ ତାଙ୍କର ଜନ୍ମ। ଫ୍ରାନ୍‌ସ୍ ଉପକୂଳ ପାଖରେ ଇଂରେଜ ପ୍ରଣାଳୀ ଭିତରେ ଥିବା ଜର୍ସି ଦ୍ୱୀପରେ ସେ ସ୍କୁଲ ଶିକ୍ଷା ଆରମ୍ଭ କରିଥିଲେ ଏବଂ ପରେ ଲଣ୍ଡନର ୟୁନିଭର୍ସିଟି କଲେଜ ସ୍କୁଲରେ ପଢ଼ିଥିଲେ। 1866 ମସିହା ବା ତା ଆଗରୁ ସେ ଘରୋଇ ଶିକ୍ଷକତା ଆରମ୍ଭ କରିଥିଲେ। ଏହି କାମକୁ ସେ ବେଶ୍ ଗୁରୁତ୍ୱର ସହିତ କରୁଥିଲେ ଏବଂ ନିୟମିତ ଭାବରେ ତାଙ୍କ ନୋଟ ସବୁକୁ ଉନ୍ନତ କରି ଚାଲିଥିଲେ। ତା ସହିତ ସେ ତାଙ୍କ ଶିକ୍ଷା ଦେବାର ଧାରାକୁ ମଧ୍ୟ ମାର୍ଜିତ କରୁଥିଲେ ଏବଂ ବିଶାଳ ତଥ୍ୟ ଭଣ୍ଡାରକୁ ମନେ ରଖିବା ଦିଗରେ ଛାତ୍ରମାନଙ୍କୁ ସାହାଯ୍ୟ କଲାଭଳି ନୂଆ ନୂଆ ସ୍ମରଣ ସହାୟକମାନ ସୃଷ୍ଟି କରୁଥିଲେ।

ଅଠତିରିଶ ବର୍ଷ ବୟସରେ ସେ ଅଧିକ ପଢ଼ିବା ପାଇଁ ଚାହିଁଲେ ଏବଂ ସେ ସମୟ ପାଇଁ ଏକ ଅସାଧାରଣ ପଦକ୍ଷେପ ନେଇ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଗନ୍‌ଭିଲ୍ ଆଣ୍ଡ କେଅସ୍ କଲେଜରେ ନାଁ ଲେଖାଇଲେ। ସେଠାରେ 1880 ମସିହାରେ ସେ ବି.ଏ. ଏବଂ 46 ବର୍ଷ ବୟସରେ ଏମ୍.ଏ. ଉପାଧି ହାସଲ କଲେ।

କାର୍ ଅତି ଉଚ୍ଚ ସ୍ତରର ଛାତ୍ର ନ ଥିଲେ। ଟ୍ରାଇପସ୍‌ରେ ସେ ଉଚ୍ଚ ବର୍ଗର 'ରାଙ୍ଗଲର୍ସ୍'ଙ୍କ ଭିତରେ ନ ରହି 'ସିନିଅର୍ ଅପ୍ଟିମ୍' ବର୍ଗର ଦ୍ୱାଦଶ ସ୍ଥାନରେ ରହିଥିଲେ। ସେ ଅବଶ୍ୟ ତାଙ୍କର ସୀମିତ ଦକ୍ଷତା ବିଷୟରେ ସଚେତନ ଥିଲେ। ସଂକ୍ଷିପ୍ତ ସାର ବହିର ମୁଖବନ୍ଧରେ ସେ ଲେଖିଥିଲେ, "ମୋଠାରୁ ଅଧିକ ଦକ୍ଷ ଲୋକ ଆହୁରି ଭଲ ବହି ଲେଖିଥା'ନ୍ତେ। କିନ୍ତୁ ସେମାନେ ଅଧିକ ଗୁରୁତ୍ୱପୂର୍ଣ୍ଣ କାମରେ ବ୍ୟସ୍ତ ରହିଥିବାର ସମ୍ଭାବନା ମଧ୍ୟ ବେଶି।" ତାଙ୍କ ମନରେ ବୋଧହୁଏ "ଅଧିକ ଗୁରୁତ୍ୱପୂର୍ଣ୍ଣ" କାମ ଭିତରେ ଥିଲା ମୌଳିକ ଗାଣିତିକ ଗବେଷଣା ଯାହା ପାଇଁ ସେ ନିଜକୁ ଯୋଗ୍ୟ ଭାବି ନ ଥିଲେ।

ଗଣିତଜ୍ଞ ଭାବରେ କାର୍ ଅତି ଉଚ୍ଚ ସ୍ତରର ନ ଥିଲେ ବି ତାଙ୍କଠାରୁ ଯୋଗ୍ୟତର ଛାତ୍ରଙ୍କୁ ଗଣିତ ଶିକ୍ଷାଦେବା ଦିଗରେ ତାଙ୍କର ଉତ୍ସାହ ଏବଂ ତାଙ୍କର ଗଣିତପ୍ରୀତି ଗଭୀର ଥିଲା। ଏହି ଲକ୍ଷ୍ୟରେ ତାଙ୍କର ବି.ଏ. ଉପାଧି ପାଇଲା ବେଳକୁ ସେ ସଂକ୍ଷିପ୍ତ ସାର ବହିର ପ୍ରଥମ ଭାଗ ପୂରା କଲେ। ତାହା ଥିଲା ମେ 23, 1880 ମସିହାର କଥା। ବହିର ଦ୍ୱିତୀୟ ଭାଗ ପ୍ରକାଶ ପାଇଲା 1886 ମସିହାରେ। ସେହି ବହି ହିଁ ସବୁଦିନ ପାଇଁ କାର୍‌ଙ୍କ ନାଁକୁ ରାମାନୁଜନ୍‌ଙ୍କ ନାଁ ସହିତ ଯୋଡ଼ିଦେଲା।

କାର୍‌ଙ୍କ ବହିରେ ଗୋଟିଏ ପରେ ଗୋଟିଏ କରି ଅସଂଖ୍ୟ ସୂତ୍ର ଆପାତତଃ ଅମାର୍ଜିତ ଶୈଳୀରେ ଖୁନ୍ଦା ହୋଇଥିଲା। କିନ୍ତୁ ତାହା ବୋଧହୁଏ ସେ ବହିକୁ ଆକର୍ଷଣୀୟ ମଧ୍ୟ କରୁଥିଲା, କାରଣ ସୂତ୍ରଗୁଡ଼ିକ ଭିତରେ ଏକ ଗୁପ୍ତ ପ୍ରବାହ ରହୁଥିଲା।

ପ୍ରଥମ ପୃଷ୍ଠାର ପ୍ରଥମ ସୂତ୍ରର ଉଦାହରଣ ନେଇ ଦେଖିବା। ଏହି ସୂତ୍ରଟି ଥିଲା:

$$a^2 - b^2 = (a - b)(a + b)$$

ଏହା ଏକ ସରଳ ସମୀକରଣ। ସବୁ ସମୀକରଣ ଭଳି ଏହି ସମୀକରଣ କହେ ଯେ ଯାହା ବାମ ପଟରେ ଅଛି ତାହା ଡାହାଣ ପଟର ମୂଲ୍ୟ ସହ ସମାନ। ଠିକ ଯେପରି 2 + 2 = 4। କେବଳ ତଫାତ ଯେ ଉପରର ଉଦାହରଣରେ ସଂଖ୍ୟା ବଦଳରେ a, b ଭଳି କିଛି ସଙ୍କେତ ରହିଛି। କେତେ ସମୀକରଣରେ ସଙ୍କେତଗୁଡ଼ିକର କେବଳ କିଛି ନିର୍ଦ୍ଦିଷ୍ଟ ମୂଲ୍ୟ ପାଇଁ ବାମ ଡାହାଣ ସମାନ ହେବ। ସେହି କ୍ଷେତ୍ରରେ ସମୀକରଣର ସମାଧାନ କରି ସଙ୍କେତ ସବୁର ମୂଲ୍ୟ ବାହାର କରିବାକୁ ପଡ଼େ। ଉପରର ଉଦାହରଣରେ ସମୀକରଣଟି ସଙ୍କେତଗୁଡ଼ିକର ଯେ କୌଣସି ମୂଲ୍ୟ ପାଇଁ ବାମ ଡାହାଣ ସମାନ ହୁଏ। ଏହାକୁ ଅଭେଦ ବା ଆଇଡେଣ୍ଟିଟି କୁହାଯାଏ।

a = 11 ଓ b = 6 ନେଇ ଦେଖିବା ଫଳ କ'ଣ ହେଉଛି।

a + b = 11 + 6 = 17 ଏବଂ a – b = 11 – 6 = 5

ଡାହାଣ ପଟର ବନ୍ଧନୀ ଭିତରର ଏହି ଦୁଇ ମୂଲ୍ୟକୁ ଗୁଣନ କଲେ ଆମେ ପାଇବା 17 x 5 = 85, ଯାହା ହେବ ଡାହାଣ ପଟର ମୂଲ୍ୟ।

ସମୀକରଣର ବାମ ପଟର ମୂଲ୍ୟ ହେବ -

a ର ବର୍ଗ (= a x a = 11 x 11 = 121) ବିଯୁକ୍ତ b ର ବର୍ଗ (= b x b = 6 x 6 = 36)

121 - 36 = 85।

ଉଭୟ ବାମ ଓ ଡାହାଣ ପଟର ମୂଲ୍ୟ ଏଠାରେ 85, ତେଣୁ ସମୀକରଣଟି ଠିକ୍ ବୋଲି ଆମେ କହିବା।

ଏହି ସମୀକରଣଟି ଯେ ଅଭେଦ ତାହା ପ୍ରମାଣ କରିବା ପାଇଁ ଆମେ a ଓ b ର ଗୋଟିକ ପରେ ଗୋଟିଏ ମୂଲ୍ୟ ବସାଇ ପରୀକ୍ଷା କରିପାରିବା। କିନ୍ତୁ ଅନେକ ସଂଖ୍ୟା ନେଇ ପରୀକ୍ଷା କରିବା ପରେ ମଧ୍ୟ ଆମେ କହିପାରିବାନାହିଁ ଯେ ଗୋଟିଏ ନୂଆ ମୂଲ୍ୟ ନିଶ୍ଚିତ ଭାବରେ ଏକା ଫଳ ଦେବ। ତେଣୁ ଗଣିତଜ୍ଞମାନେ ସମୀକରଣର ପ୍ରମାଣ ଖୋଜନ୍ତି ଯେପରି ସେମାନେ କହିପାରିବେ ଯେ a ଓ b ର ଯେ କୌଣସି ମୂଲ୍ୟ ପାଇଁ ସମୀକରଣଟି ସବୁବେଳେ ଠିକ୍ ହେବ। ଏହା କରିବାକୁ ହେଲେ ସଙ୍କେତଗୁଡ଼ିକର ନିର୍ଦ୍ଦିଷ୍ଟ ସାଂଖ୍ୟିକ ମୂଲ୍ୟ ନ ନେଇ ସଙ୍କେତଗୁଡ଼ିକୁ ହିଁ ବ୍ୟବହାର କରିବାକୁ ହେବ। ସଂଖ୍ୟାର ମିଶାଣ ଗୁଣନ ଭଳି ସଙ୍କେତର ମିଶାଣ ଗୁଣନ ଆଦି କରିବାକୁ ହେବ।

ଉପରର ସମୀକରଣରେ (a – b) କୁ (a + b) ସହିତ ଗୁଣନ କରିବା ପାଇଁ ନିର୍ଦ୍ଦେଶ ରହିଛି, ଯାହା ବେଶ୍ ସହଜରେ କରାଯାଇ ପାରିବ। ଯଦି ଜଣେ ଘଣ୍ଟାକୁ 10 ଟଙ୍କା ମଜୁରୀ ପାଏ ଓ ସେଥିରୁ 1ଟଙ୍କା କାଟି ରଖାଯାଏ ତେବେ 8 ଘଣ୍ଟା କାମକଲେ ସେ କେତେ ଟଙ୍କା ଘରକୁ ନେବ? ଏହାର ଉତ୍ତର ପାଇବା ପାଇଁ 10 କୁ 8 ରେ ଗୁଣିବାକୁ ହେବ ଓ 1 କୁ ମଧ୍ୟ 8 ରେ ଗୁଣିବାକୁ ହେବ ଏବଂ ପ୍ରଥମ ଗୁଣନ ଫଳରୁ ଦ୍ୱିତୀୟକୁ ଫେଡ଼ିବାକୁ ପଡ଼ିବ। କିମ୍ବା 10 ରୁ 1 ଫେଡ଼ି ଫେଡ଼ାଣ ଫଳକୁ 8 ରେ ଗୁଣିଲେ ସେହି ଏକା ଉତ୍ତର ଆସିବ। ଆଗର ସମୀକରଣ କ୍ଷେତ୍ରରେ ଆମେ (a+b) କୁ

ପ୍ରଥମେ a ଦ୍ୱାରା, ତା'ପରେ b ଦ୍ୱାରା ଗୁଣନ କରି ପ୍ରଥମ ଫଳରୁ ଦ୍ୱିତୀୟକୁ ଫେଡ଼ି ପାରିବା। ସାଙ୍କେତିକ ଧାରାରେ ଲେଖିଲେ ଏହା ହେବ -

$$(a - b)(a + b) = a(a + b) - b(a + b)$$

ଆହୁରି ସରଳ କଲେ a (a + b) ହେବ $a^2 + ab$ ଏବଂ b (a + b) ହେବ $ab + b^2$। ab ଓ ba ସମାନ କାରଣ ଦୁହେଁ a ଓ b ର ଗୁଣଫଳ। ତେଣୁ ଆମେ ପାଇବା,

$$(a - b)(a + b) = (a^2 + ab) - (ab + b^2)$$

ସମୀକରଣର ସମାଧାନ କଲାବେଳେ ଗଣିତଜ୍ଞମାନଙ୍କ ଆଗରେ ସଂଖ୍ୟା ଓ ସଙ୍କେତର ଗୁଡ଼ାଏ ଅଳିଆ ଗଦା ହୋଇଯାଏ। ଆମେ ଯେପରି ଘରକୁ ସୁସଜ୍ଜିତ ଓ ମନଛୁଆଁ କରିବା ପାଇଁ ମଝିରେ ମଝିରେ ଅଳିଆ ସଫା କରେ, ଗଣିତଜ୍ଞମାନେ ସେପରି ତାଙ୍କ ସମୀକରଣରୁ ଗାଣିତିକ ଅଳିଆ ସଫାକରି ସେଗୁଡ଼ିକୁ ସରଳ ଓ ଆକର୍ଷଣୀୟ କରନ୍ତି। 'ଏକାଭଳି ପଦଗୁଡ଼ିକୁ ଏକାଠି ସଜାଇବା' ହେଉଛି ଏକ ପ୍ରକାରର ଗାଣିତିକ ସଫେଇ। ଏହି ଧାରାରେ ବିଭିନ୍ନ ପ୍ରକାରର ଚଳ ବା ସ୍ଥିରାଙ୍କଗୁଡ଼ିକୁ ଅଲଗା ଅଲଗା ଦଳରେ ରଖାଯାଏ, ଯେପରି ଘରେ ମଇଳା ଲୁଗା ଓ ଅଇଁଠା ବାସନ ପାଇଁ ଅଲଗା ଅଲଗା ଜାଗା ନିର୍ଦ୍ଦିଷ୍ଟ ହୋଇଥାଏ।

ଏହି ଧାରାରେ ଉପର ସମୀକରଣକୁ ସଫା କରିବା ପାଇଁ ଆମେ ବନ୍ଧନୀ ହଟାଇ $a^2$ ପଦ, $b^2$ ପଦ ଓ ab ପଦଗୁଡ଼ିକୁ ଦଳ ଦଳ କରି ରଖିବା। ଏପରି କଲେ ଆମେ ଦେଖିବା ଯେ ଦୁଇଟି ପଦରୁ ଗୋଟିଏ ଧନାତ୍ମକ (+) ଓ ଆରଟି ଋଣାତ୍ମକ (–)। ତେଣୁ ଏ ଦୁଇଟିର ଯୋଗଫଳ ଶୂନ ହେବ, ତେଣୁ ସେ ଦୁଇଟିକୁ ଆମେ ସମୀକରଣରୁ ବାହାର କରିଦେଇ ପାରିବା। ବାକି ରହିଯିବ $a^2 - b^2$ ଯାହା ମୂଳ ସମୀକରଣର ବାମ ପଟ ସହିତ ସମାନ। ଆମକୁ ଏହା ହିଁ ପ୍ରମାଣ କରିବାକୁ ଥିଲା - ବାମ ପଟର ମୂଲ୍ୟ ଡାହାଣ ପଟ ସହିତ ସମାନ।

ଏହି ସରଳ ଉଦାହରଣରୁ ଆମେ 'ପ୍ରମାଣ'ର ଏକ ଧାରଣା ପାଇପାରିବା, ଯଦିଓ ଗଣିତଜ୍ଞମାନେ ଏହି ଦାବିକୁ ହସି ଉଡ଼ାଇ ଦେବେ। ତଥାପି ଏହି ଅଙ୍କକଷାରୁ ଆମର ଆପାତତଃ ବିଶ୍ୱାସ ଆସୁଛି ଯେ ଏହି ସମୀକରଣର ଦୁଇ ପଟର ମୂଲ୍ୟ ସବୁବେଳେ ସମାନ ହେବ। a = 735 ଓ a = 0.021 ଭଳି ନୂଆ ସଂଖ୍ୟା ପାଇଁ ଆମକୁ ଗୁଣନ ଫେଡ଼ାଣ କରି ଦେଖିବାକୁ ହେବନାହିଁ। ସାଧାରଣ ପରିସ୍ଥିତି ପାଇଁ ପ୍ରମାଣ କରାଯାଇ ଥିବାରୁ ପ୍ରତି ସଂଖ୍ୟା ପାଇଁ ତାହା ଦୋହରାଇବାକୁ ପଡ଼ିବନାହିଁ।

ଏ ତ ଗଲା କାର୍‌ଙ୍କ ପ୍ରଥମ ସମୀକରଣର କଥା। ଏବେ ତାଙ୍କ ବହିର ଦ୍ୱିତୀୟ ଉଦାହରଣକୁ ଦେଖିବା -

$$a^3 - b^3 = (a - b)(a^2 + ab + b^2)$$

ଠିକ୍ ଆଗ ଭଳି ଧାରାରେ ଏହାର ପ୍ରମାଣ ଆମେ ପାଇପାରିବା। ସଙ୍କେତ ସବୁର ଗୁଣନ, ମିଶାଣ, ଫେଡ଼ାଣ କରି, ଏକା ପ୍ରକାରର ପଦଗୁଡ଼ିକୁ ଦଳରେ ସଜାଇ, ଆମେ ଶେଷ ଫଳରେ

ପହଞ୍ଚିବା। ମନେ ରଖିବାକୁ ହେବ ଯେ ଭିନ୍ନ ଭିନ୍ନ ପ୍ରକାରର ପଦ ମିଶିବେନାହିଁ। ଆଳୁ ରହିବ ଆଳୁ ସାଙ୍ଗରେ, କଖାରୁ କଖାରୁ ସାଙ୍ଗରେ, କଖାରୁ ଓ ଆଳୁ ଏକାଠି ରହିବେନାହିଁ। କିଛି ସମାନ ପଦ ନିଜ ନିଜକୁ କାଟି ଦେଲା ପରେ ବାମ ଓ ଡାହାଣ ପଟର ସଙ୍କେତଗୁଡ଼ିକ ସମାନ ହେବ। ତେଣୁ ଏବେ ଏଠାରେ ସେହି ଗୁଣନ ଆଦି କରିବାର କିଛି ଯଥାର୍ଥତା ନାହିଁ।

ସେହି 'କିଛି ଯଥାର୍ଥତା ନାହିଁ' କଥା ପଛରେ କାର୍‌ଙ୍କ ଶିକ୍ଷା ଅନୁଭୂତି ରହିଛି। ତାଙ୍କ ପାଇଁ ଓ ଅନ୍ୟ ଗଣିତଜ୍ଞଙ୍କ ପାଇଁ ଏହା ସ୍ୱାଭାବିକ ଓ ଉପଯୁକ୍ତ ବିଚାର। ଦ୍ୱିତୀୟ ସମୀକରଣଟି ପ୍ରଥମଟିଠାରୁ ଅଲଗା ହେଲେ ବି ଦୁହିଁଙ୍କ ଭିତରେ ମୋଟାମୋଟି ସାମଞ୍ଜସ୍ୟ ରହିଛି ଏବଂ ଦ୍ୱିତୀୟଟି ପ୍ରଥମର ଏକ ବିକଶିତ ରୂପ ଭଳି ମନେହେଉଛି। ଏହିଭଳି ସଜାଇବାରେ କାର୍‌ଙ୍କର ନିର୍ଦ୍ଦିଷ୍ଟ ବିଚାର ରହିଛି। ସେହି ବିଚାର ଗାଣିତିକ ତତ୍ତ୍ୱଭିତ୍ତିକ ନ ଥିଲା, ବରଂ ସାଧାରଣ ଗୁଣର ବିଚାର ଥିଲା। ପ୍ରଥମ ସମୀକରଣରେ a ଓ b ର ବର୍ଗ ବା ଘାତ 2 ରହିଥିବାବେଳେ ଦ୍ୱିତୀୟଟିରେ a ଓ b ର ଘନ ବା ଘାତ 3 ରହିଛି। ଏହି କ୍ରମରେ ଘାତ 4 ବିଷୟରେ ଜଣେ ଚିନ୍ତା କରି $a^4 - b^4$ ର ସମାଧାନ ଖୋଜିବ। ପ୍ରଥମ ସମୀକରଣ ଦୁଇଟିର ସମାଧାନ ପରେ ସେହି ଧାରାରେ ସେ ଏହି ନୂଆ ସମାଧାନ ପାଇଯିବ। ଜଣେ ବୁଦ୍ଧିମାନ ଛାତ୍ର ପାଇଁ ସେ ସମାଧାନରେ କିଛି ଆଶ୍ଚର୍ଯ୍ୟ ହେବା କଥା ନ ଥିବ।

ତେଣୁ କାର୍ ଗୋଟି ଗୋଟି କରି ସବୁ ସମୀକରଣର ତାଲିକା ଦେଇ ନ ଥିଲେ। ଦେଇଥିଲେ ତାହା ବିରକ୍ତିକର ଓ ମାମୁଲି ହୋଇଥା'ନ୍ତା। ତା ବଦଳରେ ସେହି ପ୍ରକାରର ସବୁ ସମୀକରଣ ପାଇଁ ସେ ଗୋଟିଏ ସାଧାରଣ ରୂପ ବାଢ଼ିଲେ। ତାହା ଥିଲା -

$$a^n - b^n = (a - b)\ (a^{n-1} + a^{n-2}b + ...b^{n-1})$$

ଏହା ଏକ ବିଶେଷ ପଦକ୍ଷେପ ଥିଲା, କାରଣ ଏପରି କରିବା ଫଳରେ ସମୀକରଣରେ ଆଗରୁ ରହୁଥିବା ଏକମାତ୍ର ସଂଖ୍ୟା ଉଭେଇଗଲା। ଏବେ ତାହା ଘାତ 2, ଘାତ 3 ବା ଘାତ 8ର ସମୀକରଣ ହୋଇ ରହିଲାନାହିଁ, ବରଂ ତାହା ହେଲା ଘାତ n ର ସମୀକରଣ ବା ଯେ କୌଣସି ସଂଖ୍ୟାର ସମୀକରଣ।

କହିବାକୁ ଗଲେ ଆମେ ହଠାତ ଏକ ନୂଆ ଦୁନିଆରେ ପହଞ୍ଚିଗଲେ। ଏବେ ବି ଏହା ବୀଜଗଣିତ, କିନ୍ତୁ 2, 3 ଆଦିର ଜାଗାରେ ରହସ୍ୟମୟ n ରଖିଦେବା ଫଳରେ ଆମକୁ ଅସଂଖ୍ୟ ଗୁଣନ ଫେଡ଼ାଣ କରିବାକୁ ପଡ଼ିବନାହିଁ। ଯେ କୌଣସି ସଂଖ୍ୟା ପାଇଁ ଏବେ ଏଭଳି ସମୀକରଣ ଅତି ସହଜରେ ଲେଖିହେବ, ଖାଲି n ଜାଗାରେ ନୂଆ ସଂଖ୍ୟାଟି ବସାଇବା କଥା। ଏହି ସାଧାରଣ ସମୀକରଣର ମଝିରେ ରହିଥିବା ... ସୂଚାଉଛି ଯେ ପ୍ରଥମ ଦୁଇ ପଦର ଢାଞ୍ଚାରେ ପରର ପଦଗୁଡ଼ିକ ଗଢ଼ିବାକୁ ହେବ। ଯଥା, ଘାତ 8 ପାଇଁ ସମୀକରଣ ଲେଖିବାକୁ ହେଲେ n ଜାଗାରେ 8, $n-1$ ଜାଗାରେ 7 ଆଦି ବସାଇବାକୁ ପଡ଼ିବ।

ଗଣିତର ଭାଷାରେ n ଥିବା ସମୀକରଣଟି ପ୍ରଥମ ଦୁଇ ଉଦାହରଣ ତୁଳନାରେ ଅଧିକ ସାଧାରଣ। ଆଉ ଗୋଟିଏ ବାଟରେ କହିଲେ ପ୍ରଥମ ଦୁଇ ସମୀକରଣ ହେଉଛନ୍ତି nଯୁକ୍ତ ସମୀକରଣର ବିଶେଷ ରୂପ। ରାମାନୁଜନ୍ ନିଶ୍ଚୟ ଏହା ସେତେବେଳେ ଜାଣିଥିବେ। ନ ଜାଣିଥିଲେ

ବି ସେ ଦେଖିଲା ମାତ୍ରକେ ଏହା ଠିକ୍ ବୋଲି ନିଶ୍ଚିତ ହୋଇଥା'ନ୍ତେ। ତଥାପି କାର୍‌ଙ୍କ ବହି ଗଣିତର ନୂଆ ଦୁନିଆକୁ ଜାଣିବାରେ ରାମାନୁଜନ୍‌ଙ୍କ ପାଇଁ ପଥପ୍ରଦର୍ଶକର କାମ ଦେଲା। କେବଳ କାର୍‌ଙ୍କର ତାଲିକା ନୁହେଁ, ଯେଉଁ ଧାରାରେ ସେ ଛାତ୍ରମାନଙ୍କୁ ତାଲିକାର ସୂତ୍ର ସବୁ ଭିତରେ ଆଗେଇ ନେଉଥିଲେ ତାହା ରାମାନୁଜନ୍‌ଙ୍କୁ ବିଶେଷ ସାହାଯ୍ୟ କଲା।

ଯେଉଁ ଧାରାରେ କାର୍ ପ୍ରମାଣ କରୁଥିଲେ ବା ପ୍ରମାଣ କରୁ ନ ଥିଲେ ତାହା ମଧ୍ୟ ଉପଯୋଗୀ ଥିଲା। ପ୍ରକୃତରେ କାର୍‌ଙ୍କ ବହିରେ ବେଶି କିଛି ପ୍ରମାଣ କରି ଦେଖାଯାଇ ନ ଥିଲା। ସେସମୟର ହେଉ ବା ଏବେକାର ହେଉ ଗଣିତ ପାଠ ବହିରେ ବିଧିବଦ୍ଧ ସମାଧାନ ଦିଆଯାଇଥାଏ। ସେଥିରେ ଉପପାଦ୍ୟଗୁଡ଼ିକର ବର୍ଣ୍ଣନା ସହିତ ପ୍ରମାଣର ଧାରା ପାଦ ପାଦ ହୋଇ ବୁଝାଯାଇଥାଏ। ଛାତ୍ରମାନଙ୍କୁ ଏହି ପାଦଗୁଡ଼ିକୁ ଦୋହରାଇ ସେସବୁର ପଛରେ ଥିବା ତର୍କ ବୁଝିବାକୁ ପଡ଼େ। ବେଳେ ବେଳେ ଲେଖକ ଉହ୍ୟ ରଖିଥିବା କିଛି ଛୋଟ ପାଦକୁ ଛାତ୍ରମାନଙ୍କୁ ମନେ ମନେ ଭରଣା କରିବାକୁ ହୁଏ।

ଗଣିତ ବିଷୟକୁ ନିଷ୍କ୍ରିୟ ଭାବରେ ଶିଖିଲେ କିଛି ଲାଭ ହୁଏନାହିଁ। ଉପନ୍ୟାସ ଭଳି ଏହା କିଛି ପିଇଯିବାର କଥା ନୁହେଁ। ଗଣିତକୁ ଆକ୍ରମଣ କରିବାକୁ ହୁଏ କହିଲେ ଭୁଲ ହେବନାହିଁ। ଠିକ୍ ଚେସ୍ ଖେଳାଳି ପ୍ରତିପକ୍ଷର ରାଜା ପଛରେ ଲାଗିବା ଭଳି। ଅନ୍ୟ କେହି କରିଥିବା ପ୍ରମାଣକୁ ଯାନ୍ତ୍ରିକ ଭାବରେ ପଢ଼ିଦେଇଗଲେ ତା'ର ଧାରାକୁ ବୁଝିବା ପାଇଁ କିଛି ସୁଯୋଗ ରହେନାହିଁ। ପ୍ରମାଣ ଦିଗରେ ଆକ୍ରମଣାତ୍ମକ ମନୋଭାବକୁ ମଧ୍ୟ ଏହା ଉତ୍ସାହିତ କରେନାହିଁ। କିଛିବର୍ଷ ତଳେ ରାମାନୁଜନ୍ ପଢ଼ିଥିବା ଲୋନିଙ୍କ ତ୍ରିକୋଣମିତି ବହିର ଅନ୍ୟ ଯାହା ଭଲଗୁଣ ଥାଉ ନା କାହିଁକି ତାହା ଏଭଳି ଯାନ୍ତ୍ରିକ ପଠନ ଧାରାକୁ ଅନୁସରଣ କରୁଥିଲା। ପ୍ରମାଣ କରିବା ଦିଗରେ ଛାତ୍ରର ଉଦ୍ୟମ ତାହା ଦାବି କରୁ ନ ଥିଲା।

କାର୍‌ଙ୍କ ବହି କିନ୍ତୁ ଅଲଗା ଧରଣର ଥିଲା।

ବିସ୍ତୃତ ପ୍ରମାଣ ପାଇଁ ସଂକ୍ଷିପ୍ତସାର ବହିରେ ଜାଗା ନ ଥିଲା। ଅନେକ ଉତ୍ତର ସହିତ ପଦଟିଏ ବି ବ୍ୟାଖ୍ୟା ନ ଥିଲା। କେତେ ଜାଗାରେ ଉତ୍ତର ସହିତ ଛୋଟ ଟୀକାଟିଏ ଦିଆଯାଉଥିଲା। ଯଥା, ଉପପାଦ୍ୟ 245 ପାଇଁ ଟୀକା ହେଉଛି, '(243), (244) ଧାରାରେ'। ଅର୍ଥାତ୍, 245 ଉପପାଦ୍ୟର ନିଷ୍କର୍ଷରେ ପହଞ୍ଚିବା ପାଇଁ ଉପପାଦ୍ୟ 243 ଓ 244ର ଧାରା ବ୍ୟବହାର କରାଯାଇ ପାରିବ। ସେହିଭଳି ଉପପାଦ୍ୟ 2912ର ଟୀକା ହେଉଛି, 'ପ୍ରମାଣ - (2911)ରେ $x$ ଜାଗାରେ $\pi x$ ବସାଅ'। ଗଣିତଜ୍ଞମାନେ ଏହି ଧାରାକୁ ନିୟମିତ ଭାବରେ କାମରେ ଲଗାନ୍ତି, ଯେଉଁଠି ଗୋଟିଏ ଚଳ ଜାଗାରେ ଅନ୍ୟ ଏକ ଚଳ ବସାଇଲେ ଉତ୍ତର ସ୍ପଷ୍ଟତର ହୋଇଯାଏ। ଏହି ଭାବରେ କାର୍ ତାଙ୍କ ବହିରେ ଆଗକୁ ଯିବା ପାଇଁ କେବଳ ବାଟ ଦେଖାଇ ଦେଉଥିଲେ।

ପରେ ଅନେକ ବିଦ୍ୱାନ କାର୍‌ଙ୍କ ବହିକୁ ଟିକିନିକି କରି ବିଶ୍ଳେଷଣ କରିଛନ୍ତି। ସେଥିରେ କାଳେ କ'ଣ ଗଭୀର ଗାଣିତିକ ଧାରା ଲୁଚି ରହିଥିବ ଯାହା ରାମାନୁଜନ୍‌ଙ୍କୁ ଆଗେଇ ନେଇଥିବ। କେହି ତା'ର ବିଷୟବସ୍ତୁ ଉପରେ ଜୋର ଦେଇଛନ୍ତି, ଆଉ କେହି ତା'ର ଅସାଧାରଣ ଭାବରେ ସହାୟକ ସୂଚୀ ଉପରେ ଗୁରୁତ୍ୱ ଦେଇଛନ୍ତି, ପୁଣି ଅନ୍ୟ କିଏ ବହିର ବିଷୟବସ୍ତୁର ବ୍ୟାପକତାକୁ ମୂଲ୍ୟବାନ ମନେ କରିଛନ୍ତି।

ବାସ୍ତବରେ ରାମାନୁଜନ୍‌ଙ୍କ ଭଳି ଷୋହଳ ବର୍ଷର ଜଣେ ଅକାଳ ବିକଶିତ ବାଳକକୁ ପ୍ରଭାବିତ କରିବା ପାଇଁ କାର୍‌ଙ୍କ ବହିଠାରୁ ଅଧିକ ଉପଯୋଗୀ କିଛି ଭାବିହୁଏନାହିଁ। କାରଣ ଏଥିରେ ଥିବା ସିଧାସଳଖ ଉତ୍ତର ଦେବାର ଧାରା ପାଠକ ପାଇଁ ନିଜେ ପ୍ରମାଣ କରିବାର ଆହ୍ୱାନ ଭଳି ଥିଲା। ରାମାନୁଜନ୍‌ଙ୍କ କ୍ଷେତ୍ରରେ ତାହା ହିଁ ଘଟିଲା ଏବଂ ପ୍ରତିଟି ଉପପାଦ୍ୟ ତାଙ୍କ ପାଇଁ ଗୋଟିଏ ଗୋଟିଏ ଗବେଷଣା ପ୍ରକଳ୍ପ ହୋଇଗଲା। ଗୋଲକଧନ୍ଦାର ଉତ୍ତର ଖୋଜିଲା ଭଳି ରାମାନୁଜନ୍ ଉପପାଦ୍ୟ ସମାଧାନର ନିଶାରେ ଘାରିହେଲେ।

ଏହା ଆକସ୍ମିକ ନ ଥିଲା, ବରଂ କାର୍ ଏଭଳି ପ୍ରତିକ୍ରିୟା ଆଶା କରୁଥିଲେ। ମୁଖବନ୍ଧରେ ସେ ଲେଖିଥିଲେ ଯେ ଅନେକ କ୍ଷେତ୍ରରେ ସେ ପ୍ରମାଣର କେବଳ ମୁଖ୍ୟ ପାଦଗୁଡ଼ିକୁ ଦେଖାଇଛନ୍ତି ବା ପ୍ରମାଣରେ ସାହାଯ୍ୟ କରୁଥିବା ଉପପାଦ୍ୟ ବିଷୟରେ ସୂଚନା ଦେଇଛନ୍ତି। ଆଉ କହିଛନ୍ତି,

> ... ଗାଣିତିକ ପ୍ରମାଣଟିଏ ପଢ଼ିଲେ ମନ ଉପରେ ଯେଉଁ ପ୍ରଭାବ ପଡ଼େ ପ୍ରମାଣଟି ନିଜେ କଲେ ତା'ଠାରୁ ବେଶ୍ ଅଲଗା ପ୍ରଭାବ ପଡ଼େ। ଠିକ୍ ଯେଭଳି ନୂଆ ଜାଗାରେ ଜଣେ ନିଜେ ବାଟ ଖୋଜି ବୁଲିବାରେ ଯେଉଁ ଆନନ୍ଦ ପାଏ, ତାହା ଅନ୍ୟର ସହାୟତାରେ ନିର୍ଲିପ୍ତ ଭାବରେ ବୁଲିବା ତୁଳନାରେ ଯଥେଷ୍ଟ ଅଲଗା ହୁଏ। ତେବେ 'ବାଟ ଖୋଜିବା' ପାଇଁ କାର୍ ଖୁବ୍ ଅଳ୍ପ ସୂଚନା ଦେଇଥିଲେ।

ରାମାନୁଜନ୍‌ଙ୍କ କାମକୁ ଭଲକରି ଜାଣିଥିବା ଜଣେ ପାଶ୍ଚାତ୍ୟ ଗଣିତଜ୍ଞ କହିଥିଲେ ଯେ ସଂକ୍ଷିପ୍ତସାର ବହି ରାମାନୁଜନ୍‌ଙ୍କୁ ଦିଗ୍‌ଦର୍ଶନ ଦେଇଥାଇପାରେ, କିନ୍ତୁ ତାଙ୍କର ଧାରା ଦିଗରେ ସେ ବହିର କୌଣସି ଅବଦାନ ନ ଥିଲା। ରାମାନୁଜନ୍‌ଙ୍କ ଗଣିତର ଗୁରୁତ୍ୱପୂର୍ଣ୍ଣ ଧାରାଗୁଡ଼ିକ ପୂରା ମୌଳିକ ଥିଲା। କାର୍‌ଙ୍କ ବହିରେ ପ୍ରାୟ କୌଣସି ଧାରାର ବର୍ଣ୍ଣନା ନ ଥିଲା। ତେଣୁ ରାମାନୁଜନ୍ ସେ ବହିରେ ଦିଆଯାଇଥିବା 5000 ସୂତ୍ରର ଘଞ୍ଚ ଗାଣିତିକ ଜଙ୍ଗଲ ଭିତରେ ଆଗେଇବା ପାଇଁ ଅସୀମ ଆନନ୍ଦରେ ନିଜର ବାଟ ବାହାର କରିଚାଲିଲେ। ଦୁଇ ଜଣ ଭାରତୀୟ ଜୀବନୀକାରଙ୍କ ଭାଷାରେ 'ତାଙ୍କ ଆଗରେ ଏବେ ଖୋଲିଯାଇଥିବା ନୂଆ ଦୁନିଆରେ ରାମାନୁଜନ୍ ଉଲ୍ଲସିତ ମନରେ ଘୂରିବୁଲିଲେ।'

## 2. ଦକ୍ଷିଣ ଭାରତର କେମ୍ବ୍ରିଜ

କାର୍‌ଙ୍କୁ ଆବିଷ୍କାର କରିବାର ଅଳ୍ପଦିନ ପରେ, 1904 ମସିହାରେ, ରାମାନୁଜନ୍ ତାଙ୍କ ସ୍କୁଲ ପଢ଼ା ଶେଷକରି କୁମ୍ଭକୋଣମ୍ ସରକାରୀ କଲେଜରେ ଶିକ୍ଷାବୃତ୍ତି ସହ ନାଁ ଲେଖାଇ ଏଫ୍.ଏ. ବା ଫାର୍ଷ୍ଟ ଆର୍ଟ୍‌ସ୍ ଡିଗ୍ରୀ ପାଠ୍ୟକ୍ରମରେ ପଢ଼ିଲେ। ସେତେବେଳେ ଏହି ଡିଗ୍ରୀ ବର୍ତ୍ତମାନର ପ୍ରଥମ କଲେଜ ଡିଗ୍ରୀ ତୁଳନାରେ ବେଶ୍ ଅଧିକ ମୂଲ୍ୟବାନ ଥିଲା।

ସହର ମଝିରୁ କଲେଜ ଯାଏଁ ଚାଲିକରି ଯିବାକୁ ପ୍ରାୟ 20 ମିନିଟ ଲାଗୁଥିଲା। ଟାଉନ ହାଇ କଡ଼ ଦେଇ ରାସ୍ତାଟି କାବେରୀ କୂଳରେ ପହଞ୍ଚୁଥିଲା ଓ ତା'ର କଡ଼େ କଡ଼େ ଡାହାଣକୁ ଯାଇ କଲେଜ ସିଧାରେ ଉଠୁଥିଲା। କଲେଜଟି ନଈର ଆର କୂଳରେ ଥିଲା, ତେଣୁ ଡଙ୍ଗାରେ ବା ପହଁରିକରି ପାରି ହେବାକୁ ପଡୁଥିଲା। ମାର୍ଚ୍ଚ ଓ ଏପ୍ରିଲରେ ନଈରେ ବେଶି ପାଣି ନ ଥିବାରୁ ପହଁରି ପାରିହେବା ସେତେ କଷ୍ଟ ନ ଥିଲା। 1944 ମସିହାରେ ନଈ ଉପରେ ପୋଲ ତିଆରି ହେଲା। ସରକାରୀ କଲେଜଟି ବେଶ୍

ଛୋଟ ଥିଲା ଓ ସେଠାରେ ପ୍ରାୟ ବାର ଜଣ ଅଧ୍ୟାପକ ଥିଲେ। ଅତି ଭଲ ପଢୁଥିବା ପିଲାମାନେ ତେଣୁ ଏହାକୁ ଛାଡ଼ି ମାନ୍ଦ୍ରାଜର ବଡ଼ କଲେଜଗୁଡ଼ିକୁ ଯିବା ଆରମ୍ଭ କରୁଥିଲେ। ତଥାପି ସେ ଛୋଟ କଲେଜର ବେଶ୍ ନାଁ ଡାକ ଥିଲା। ଏପରିକି ତାକୁ ଦକ୍ଷିଣ ଭାରତର କେମ୍ବ୍ରିଜ ମଧ୍ୟ କୁହାଯାଉଥିଲା। କେମ୍ବ୍ରିଜ ବିଶ୍ୱବିଦ୍ୟାଳୟକୁ ଛୁଇଁକରି କାମ୍ ନଦୀ ବହୁଥିଲା ଭଳି ଏଠାରେ କାବେରୀ ସରକାରୀ କଲେଜକୁ ଛୁଉଁଥିଲା। ଆହୁରି ମଧ୍ୟ ଏହି କଲେଜର ପ୍ରାକ୍ତନ ଛାତ୍ରମାନେ ବେଶ୍ ନାଁ କରିଥିଲେ ଏବଂ ଦକ୍ଷିଣ ଭାରତର ଅନେକ ବଡ଼ ପଦବୀରେ ରହିଥିଲେ।

1854 ମସିହାରେ ତାଞ୍ଜୋର ମହାରାଣୀ ଦେଇଥିବା ଜାଗାରେ କଲେଜର ନୂଆ ପରିସର ଗଢ଼ାଗଲା। ସେତେବେଳେ ନଈକୂଳରେ ଜେମାଙ୍କର ପ୍ରସାଧନ ଘର ଓ ଗାଧୁଆତୁଠର ପାହାଚ ସେଠାରେ ଦେଖିବାକୁ ମିଳୁଥିଲା। 1871 ମସିହାର ଆରମ୍ଭରେ ସେଠାରେ ଥିବା ପୁରୁଣା ରାଜବାଟିର ଘରଗୁଡ଼ିକର ମରାମତି କରାଗଲା ଏବଂ କିଛି ନୂଆ ଘର ତିଆରି କରାଗଲା। 1880 ଦଶକରେ କଲେଜର ତଳ ମାଧ୍ୟମିକ ଶ୍ରେଣୀଗୁଡ଼ିକୁ ବାଦ ଦିଆଗଲା ଏବଂ ତାହା ଏକ ପୂର୍ଣ୍ଣାଙ୍ଗ କଲେଜର ରୂପ ନେଲା। କଲେଜ ପରିସର ମଧ୍ୟ ବଢ଼ିଲା ଓ ତା'ର ପରିବେଶକୁ ସୁନ୍ଦର କରାଗଲା। କଲେଜ ପାଇଁ ଏକ ବ୍ୟାୟାମଶାଳା ମଧ୍ୟ ତିଆରି କରାହେଲା। ରାମାନୁଜନ୍ ସେଠାରେ ପଢୁଥିବା ବେଳେ 72 ଜଣ ରହିବା ପାଇଁ ଏକ ଛାତ୍ରାବାସ ମଧ୍ୟ ତିଆରି ଚାଲିଥିଲା, ଯେଉଁଠି ବ୍ରାହ୍ମଣ ଛାତ୍ରଙ୍କ ପାଇଁ ସ୍ୱତନ୍ତ୍ର ଖାଇବା ବ୍ୟବସ୍ଥା ରହିଥିଲା।

କଲେଜ ଅଞ୍ଚଳଟି ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭରିରହିଥିଲା। ପାଖରେ ନଈ ବହୁଥିଲା, ପକ୍ଷୀମାନଙ୍କର କାକଳୀ ଗୁଞ୍ଜରିତ ହେଉଥିଲା। ଘଞ୍ଚ ତୋଟାର ଛାଇ ଟାଣ ଖରାରୁ ରକ୍ଷା କରୁଥିଲା। ସବୁଆଡ଼େ ଗହଳ ଲଟା ମାଡ଼ୁଥିଲା ଓ କଲେଜ ଘରଗୁଡ଼ିକୁ କବଳିତ କରୁଥିଲା। କଲେଜ ପାଇଁ ଅନେକ ନୂଆ ଘର ତିଆରି ହେବା ସତ୍ତ୍ୱେ ତାହା ପ୍ରାକୃତିକ ପରିବେଶ ସହିତ ଖାପଖାଇ ରହୁଥିଲା। ପୂରା ଜାଗାଟି ମନୋରମ, ଶାନ୍ତ ଓ ସୁଖମୟ ଥିଲା।

ତାହା ମଧ୍ୟ ଥିଲା ଶିକ୍ଷା କ୍ଷେତ୍ରରେ ରାମାନୁଜନ୍‌ଙ୍କ ପାଇଁ ବିପର୍ଯ୍ୟୟର ସ୍ଥାନ।

ଜଣେ ସାଧାରଣ ପିଲା ଉପରେ କାର୍‌ଙ୍କ ବହିର ପ୍ରଭାବ ବିଷୟରେ କିଛି ଅନୁମାନ କରିହେବ। କିନ୍ତୁ ରାମାନୁଜନ୍‌ଙ୍କ କ୍ଷେତ୍ରରେ ତାହା ଏକ ତୀବ୍ର ଏକମୁହାଁ ବୌଦ୍ଧିକ ଅଭିକ୍ରିୟାର ନିଆଁ ଜଳାଇଦେଲା। ଏବେ ଯାଏଁ ସେ ଗଣିତ ଓ ଜୀବନର ଅନ୍ୟ ସବୁ ଦିଗ ଭିତରେ ସନ୍ତୁଳନ ରକ୍ଷା କରିଆସୁଥିଲେ। ଏବେ କିନ୍ତୁ ସେ ଗଣିତର ମାୟାରେ ପୂରା ବୁଡ଼ିଗଲେ ଏବଂ ଅନ୍ୟ ସବୁ କିଛିରେ ଆଗ୍ରହ ହରାଇ ବସିଲେ। ଗଣିତ ତାଙ୍କ ପାଇଁ କେବେ ଅତ୍ୟଧିକ ହେଉ ନ ଥିଲା। ପର ସମୟରେ ରାମାନୁଜନ୍‌ଙ୍କ ବନ୍ଧୁ ପାଲଟିଥିବା ଇଂରେଜ ଗଣିତଜ୍ଞ ଇ. ଏଚ୍. ନେଭିଲ୍ ଲେଖିଥିଲେ, "କଲେଜର ନିୟମ ମାନି ରାମାନୁଜନ୍ ଇତିହାସ ବା ଶରୀର ବିଜ୍ଞାନ ଶ୍ରେଣୀରେ ବସୁଥିଲେ, କିନ୍ତୁ ତାଙ୍କ ମନ ସେସବୁରୁ ମୁକ୍ତ ରହୁଥିଲା। କହିବାକୁ ଗଲେ ତାଙ୍କ ମନ ତାଙ୍କ ବିଚକ୍ଷଣତାର ଦାସ ପାଲଟି ଯାଇଥିଲା।"

ରୋମ ଇତିହାସ ପଢ଼ା ଚାଲିଥିଲାବେଳେ ରାମାନୁଜନ୍ ଶ୍ରେଣୀରେ ବସି ମନେ ମନେ ଗଣିତର ସୂତ୍ର ଘାଣ୍ଟୁଥିଲେ। ଜଣେ ସହପାଠୀ ଏନ୍. ହରି ରାଓ ମନେପକାନ୍ତି, "ତାଙ୍କ ଚାରିପଟେ

କ'ଣ ଘଟୁଛି ସେ ବିଷୟରେ ସେ ସଚେତନ ରହୁ ନ ଥିଲେ। ଶ୍ରେଣୀ ପାଠରେ ବା ଗଣିତ ଛଡ଼ା ଅନ୍ୟ କୌଣସି ବିଷୟରେ ଟିକିଏ ବି ଆଗ୍ରହ ସେ ଦେଖାଇ ନ ଥିଲେ।'' କୁହୁକ ବର୍ଗ - ବିଭିନ୍ନ ସଂଖ୍ୟାଥିବା ବର୍ଗକ୍ଷେତ୍ର ଯେଉଁଥିରେ ଯେଉଁ ଦିଗରେ ମିଶାଣ କଲେ ଫଳ ସମାନ ହୁଏ - ତିଆରି କରିବାର ଧାରା ସେ ହରି ରାଓଙ୍କୁ ଦେଖାଉଥିଲେ। ବୀଜଗଣିତ, ତ୍ରିକୋଣମିତି ଓ କାଲ୍‌କୁଲସ୍ ଆଦିର ସମସ୍ୟା ସମାଧାନରେ ସେ ଲାଗି ରହୁଥିଲେ। ମୌଳିକ ସଂଖ୍ୟା ସହିତ ସେ ଖେଳୁଥିଲେ ଓ ସେ ସବୁ ଭିତରେ ବିଭିନ୍ନ ସମ୍ପର୍କ ଖୋଜିବା ପାଇଁ ଚେଷ୍ଟା କରୁଥିଲେ। ଅନ୍ୟ ବିଦେଶୀ ଭାଷାରେ ଲେଖା କିଛି ଗଣିତ ବହି ସେ କଲେଜ ଲାଇବ୍ରେରୀରେ ପାଇଲେ ଏବଂ ସଙ୍କେତଗୁଡ଼ିକ ସବୁ ଭାଷାରେ ସମାନ ରହୁଥିବାରୁ ସେଥିରେ ସେ କିଛି ବାଟ ଆଗେଇ ପାରିଲେ।

ଜଣେ ଗଣିତ ଅଧ୍ୟାପକ ପି. ଭି. ଶେଷୁ ଆୟାର ବେଳେ ବେଳେ ତାଙ୍କ ଇଛା ଅନୁସାରେ କାମ କରିବା ପାଇଁ ରାମାନୁଜନ୍‌ଙ୍କୁ ଛାଡ଼ି ଦେଉଥିଲେ। ଏପରିକି ଲଣ୍ଡନ ମାଥେମାଟିକାଲ୍ ଗେଜେଟ୍‌ରେ ବାହାରୁଥିବା ଗାଣିତିକ ସମସ୍ୟାର ସମାଧାନ କରିବା ପାଇଁ ସେ ରାମାନୁଜନ୍‌ଙ୍କୁ ଉତ୍ସାହିତ କରୁଥିଲେ। ଅସୀମ କ୍ରମ ଉପରେ ତାଙ୍କର କିଛି କାମ ରାମାନୁଜନ୍ ଶେଷୁ ଆୟାରଙ୍କୁ ଦେଖାଇଲେ ଯାହା ଅଧ୍ୟାପକଙ୍କ ମତରେ 'ମୌଳିକ ଓ ବିଚକ୍ଷଣ' ଥିଲା। କିନ୍ତୁ ଏଭଳି ସାବାସୀ ବିରଳ ଥିଲା, ରାମାନୁଜନ୍‌ଙ୍କ ବୌଦ୍ଧିକ ଅସ୍ୱାଭାବିକତାକୁ ଅନ୍ୟମାନେ ପସନ୍ଦ କରୁ ନ ଥିଲେ। ରାମାନୁଜନ୍ ଥରେ ଜଣେ ଅଧ୍ୟାପକଙ୍କଠାରୁ କାଲ୍‌କୁଲସ୍ ବହି ଖଣ୍ଡେ ମାଗି ଆଣିଥିଲେ। କିନ୍ତୁ ସେ ଅଧ୍ୟାପକ ଯେତେବେଳେ ଦେଖିଲେ ଯେ ତାହା ରାମାନୁଜନ୍‌ଙ୍କ ଶ୍ରେଣୀପାଠରେ ବ୍ୟାଘାତ ଆଣୁଛି, ସେ ବହିଟିକୁ ଫେରାଇ ନେଲେ। ସାଧାରଣତଃ ଅନ୍ୟ ଅଧ୍ୟାପକମାନେ ଏହିଭଳି ପ୍ରତିକ୍ରିୟା ଦେଖାଉଥିଲେ। ଶେଷୁ ଆୟାର ମଧ୍ୟ ପୂରା ସହନଶୀଳ ହୋଇ ନ ଥିବେ, କାରଣ ରାମାନୁଜନ୍ ଥରେ ଜଣେ ସାଙ୍ଗ ଆଗରେ ଅଭିଯୋଗ କରୁଥିଲେ ଯେ ଶେଷୁ ଆୟାର ତାଙ୍କୁ ଉପେକ୍ଷା କରୁଛନ୍ତି।

ଏହି ସମୟରେ ସେ ଶରୀର ବିଜ୍ଞାନ, ଇଂରାଜୀ, ଗ୍ରୀସ ଓ ରୋମ ଇତିହାସ ଭଳି ତାଙ୍କ ପାଠ୍ୟକ୍ରମର ଅନ୍ୟ ବିଷୟଗୁଡ଼ିକ ପ୍ରତି ଆଦୌ ଧ୍ୟାନ ଦେଉ ନ ଥିଲେ। ସେ ଏବେ ସନ୍ତୁଳିତ ଛାତ୍ର ହୋଇ ରହିଲେନାହିଁ, ଯଦିଓ ସେ ବୋଧହୁଏ କେବେ ବି ତାହା ନ ଥିଲେ। 1897 ମସିହା ବେଳେ ପ୍ରାଥମିକ ପରୀକ୍ଷାରେ ଉଚ୍ଚ ସ୍ଥାନ ପାଇବା ପାଇଁ ଇଂରାଜୀ ସମେତ ଅନେକ ବିଷୟରେ ଭଲ କରିବାକୁ ପଡ଼େ। ପରେ ସେ ଲେଖିଥିବା ଇଂରାଜୀ ଚିଠିଗୁଡ଼ିକର ଭାଷା ଚମତ୍କାର ନହେଲେ ବି ତାଙ୍କ ଦକ୍ଷତାର ପରିଚୟ ଦେଉଥିଲା। ତାଙ୍କ ଗଣିତ ଖାତାସବୁରେ ସାଧାରଣ ଶବ୍ଦରେ ଲେଖାହୋଇଥିବା ବର୍ଣ୍ଣନା ମଧ୍ୟ ସେହି ଦକ୍ଷତା ଦେଖାଉଥିଲା। କିନ୍ତୁ ସରକାରୀ କଲେଜରେ ସେ ଇଂରାଜୀ ବିଷୟରେ ଫେଲ ହେଲେ। ଇ. ଏଚ୍. ନେଭିଲ୍ କହନ୍ତି ଯେ କଲେଜ କର୍ତ୍ତୃପକ୍ଷଙ୍କ ପାଇଁ ଅନ୍ୟମାନଙ୍କ ଭଳି ରାମାନୁଜନ୍ ଜଣେ ଛାତ୍ର ଥିଲେ ଯିଏ ଗୋଟିଏ ବିଷୟକୁ ଛାଡ଼ି ବାକି ସବୁ ବିଷୟ ପ୍ରତି ଗୁରୁତର ଅବହେଳା ଦେଖାଉଥିଲେ। ତେଣୁ ଦଣ୍ଡ ଅବଶ୍ୟମ୍ଭାବୀ ଥିଲା – ତାଙ୍କ ଛାତ୍ରବୃତ୍ତି କାଟି ଦିଆଗଲା।

ରାମାନୁଜନ୍‌ଙ୍କ ମା ରାଗି ନିଆଁ ହୋଇଗଲେ। ଅଧ୍ୟକ୍ଷଙ୍କୁ ଭେଟି ସେ ପ୍ରଶ୍ନ କଲେ କିପରି ଗଣିତରେ ଅପ୍ରତିଦ୍ୱନ୍ଦ୍ୱୀ ଥିବା ତାଙ୍କ ପୁଅକୁ ବୃତ୍ତିରୁ ବଞ୍ଚିତ କଲେ। ଅଧ୍ୟକ୍ଷ ନମ୍ର କିନ୍ତୁ ଅବିଚଳ

ଭାବରେ ଜଣାଇଦେଲେ ଯେ ତାଙ୍କ ପୁଅ ଇଂରାଜୀରେ ଅତି ଦୟନୀୟ ଭାବରେ ଫେଲ ହୋଇଛି। ତେଣୁ ନିୟମ ଅନୁସାରେ ସେ ତାଙ୍କ କାମ କରିଛନ୍ତି। ଏବଂ ତାହା ହିଁ ଶେଷ କଥା।

ରାମାନୁଜନ୍‌ଙ୍କ ପାଇଁ ଛାତ୍ରବୃତ୍ତି କେବଳ ସମ୍ମାନର କଥା ନ ଥିଲା। କାରଣ କଲେଜ ଦରମା ଥିଲା ବର୍ଷକୁ 32 ଟଙ୍କା – ବାପାଙ୍କର ଦେଢ଼ ମାସର ଦରମା। ଛାତ୍ରବୃତ୍ତି ତାଙ୍କୁ ଆର୍ଥିକ ଚାପରୁ ମୁକ୍ତ ରଖୁଥିଲା, କଲେଜ ଯିବା ପାଇଁ ତାହା ସେ ଦରକାର କରୁଥିଲେ।

ତଥାପି ସେ କେତେ ମାସ ପାଇଁ ଚଳାଇ ନେଲେ। ଯଥେଷ୍ଟ ସମୟ ଉପସ୍ଥିତ ରହି 1905 ମସିହା ଜୁଲାଇ ମାସରେ ସେ ଉପସ୍ଥାପନା ପ୍ରମାଣପତ୍ର ହାସଲ କଲେ। ତାଙ୍କ ପାଇଁ ନିଶ୍ଚୟ ତାହା ଖୁବ୍ କଷ୍ଟକର କାମ ହୋଇଥିବ। ତାଙ୍କର ଛାତ୍ରବୃତ୍ତି କଟିବା କଥା ସମସ୍ତେ ଜାଣିଗଲେ। ବାପାମା'ଙ୍କ ଉପରେ ଆର୍ଥିକ ଚାପ କଥା ମଧ୍ୟ ଜାଣୁଥିଲେ। ଅନ୍ୟ ବିଷୟଗୁଡ଼ିକରେ ଭଲ କରିବା ପାଇଁ ସେ ଚାପରେ ପଡ଼ିଲେ, କିନ୍ତୁ ସେଥିପାଇଁ ସେ ଗଣିତକୁ ଛାଡ଼ିବା ପାଇଁ ପ୍ରସ୍ତୁତ ନ ଥିଲେ। ସେ ଦ୍ୱନ୍ଦ୍ୱ ଭିତରେ ରହି ଅତି ମାତ୍ରାରେ ଅସୁଖୀ ହୋଇପଡ଼ିଲେ।

ପରିସ୍ଥିତିକୁ ସେ ଯେତେ ଦୂର ସମ୍ଭବ ସହି ନେବାକୁ ଚେଷ୍ଟା କଲେ। ଶେଷରେ ସେ ଆଉ ସହିପାରିଲେନାହିଁ। 1905 ମସିହା ଅଗଷ୍ଟ ମାସରେ 17 ବର୍ଷ ବୟସରେ ରାମାନୁଜନ୍ ଘର ଛାଡ଼ି ପଳାଇଲେ।

### 3. ପଳାୟନ

ଘଣ୍ଟାକୁ ପଚିଶ ମାଇଲ ବେଗରେ ରେଳଗାଡ଼ି ଧାଉଁଥିଲା, ଖୋଲା ଝରକା ବାଟେ ଗରମ ପବନ ମାଡ଼ି ଆସୁଥିଲା, ଆଉ ରାମାନୁଜନ୍ ପଛକୁ ଧାଉଁଥିବା ଗାଁଗଣ୍ଡାର ଦୃଶ୍ୟକୁ ଚାହିଁ ରହିଥିଲେ। ସମତଳ ଧାନ ବିଲ ଭିତରେ କେଉଁଠି କିଛି ଚାଳଘର, ଆଉ କେଉଁଠି ଜଙ୍ଗଲି ଫୁଲର ବୁଦା ବା ତାଳଗଛ ଉଠି ରହିଥାଏ। ଏତେ ଦୂରରୁ ବିଲରେ କାମ କରୁଥିବା ଲୋକମାନେ ଖଣ୍ଡେ ଖଣ୍ଡେ ଧୂସର କାଠି ଭଳି ମନେ ହେଉଥା'ନ୍ତି। ତାଙ୍କର ଧଳା ଧୋତି ଓ ଟୋପି ତୁଳା ମେଞ୍ଚା ଭଳି ଦେଖାଯାଉଥାଏ। ସ୍ତ୍ରୀ ଲୋକମାନେ ଉଜ୍ଜ୍ୱଳ ରଙ୍ଗର ଛିଟା ଭଳି ଲାଗୁଥା'ନ୍ତି। ତାଙ୍କର କମଳା ଓ ଲାଲ ରଙ୍ଗର ଶାଢ଼ି ସବୁଜ ଧାନ ଖେତ ଉପରେ ସହଜରେ ବାରି ହେଉଥାଏ।

ସାଧାରଣ ଭାବରେ ଏହା ପଲ୍ଲୀ ଜୀବନର ଗୋଟିଏ ସୁନ୍ଦର ଚିତ୍ରପଟ ହୋଇପାରନ୍ତା। କିନ୍ତୁ ରାମାନୁଜନ୍‌ଙ୍କ ପାଇଁ ତାହା ଥିଲା ଉତ୍ପାଦନଶୀଳ କାମରେ ଲାଗି ରହିଥିବା ଲୋକଙ୍କର ଏକ ଚିତ୍ର। ଗାଈଗୋରୁଙ୍କର ଯତ୍ନ ନେଉଥିବା ପୁରୁଷମାନଙ୍କର ଚିତ୍ର, ଖେତରେ ବଛାବଛି କାମରେ ଲାଗିଥିବା ସ୍ତ୍ରୀ ଲୋକମାନଙ୍କର ଚିତ୍ର। କେହି କେହି ଏକା ଥିଲେ, ଆଉ କେତେ ଦଳରେ କାମ କରୁଥିଲେ। କିଏ ମୁଣ୍ଡରେ କିଛି ଜିନିଷ ବୋହୁଥିଲା ତ ଆଉ କିଏ ଝରଣାରୁ ପାଣି ଆଣୁଥିଲା। କେଉଁଠି ମା' ସାଙ୍ଗରେ ଥିବା ପିଲାଟିଏ କ୍ଷେତ ଭିତରୁ ମୁଣ୍ଡ ଟେକି ରେଳଗାଡ଼ି ଆଡ଼େ ହାତ ହଲାଉଥିଲା। ଏ ସବୁକୁ ଡେଇଁ ରେଳଗାଡ଼ିଟି ରାମାନୁଜନ୍‌ଙ୍କୁ ଧରି ଉତ୍ତର ଦିଗରେ ବିଶାଖାପାଟଣା ଆଡ଼େ ମାଡ଼ି ଚାଲିଥିଲା।

ଯୁଗ ଯୁଗ ଧରି ବଳଦ ଗାଡ଼ି ବା ଗୋଟିକିଆ ଘୋଡ଼ାଟଣା ଝଟକା ଭାରତରେ ପରିବହନର ମାଧ୍ୟମ ହୋଇ ଆସିଥିଲା। ଏସବୁ ଗାଡ଼ିର ବେଗ କମ୍ ଥିଲା, ରାସ୍ତାଘାଟର ଅବସ୍ଥା ମଧ୍ୟ ଖରାପ

ଥିଲା। ରାମାନୁଜନ୍‌ଙ୍କ ସମୟରେ ମଧ୍ୟ ତାଞ୍ଜୋର ଜିଲ୍ଲାର 1700 ମାଇଲ ରାସ୍ତାର ଆଠ ଭାଗରୁ ଭାଗେ ମାତ୍ର ପଥର ଛାଉଣି ହୋଇଥିଲା। ଏହି ରାସ୍ତାରେ ବେଶି ସୁବିଧାରେ ଗାଡ଼ି ଯାଇପାରୁଥିଲା। ଖାଲ ଢିପ ମାଟି ରାସ୍ତାରେ ଯିବା ପାଇଁ ବାଧ୍ୟ ହେଉଥିବା ଶଗଡ଼ ଆଦିରେ କମ୍ ଜିନିଷ ବୋଝେଇ ହେଉଥିଲା ଓ ତାହା ସାଧାରଣ ବେଗଠାରୁ ଧୀରେ ଯାଉଥିଲା। ଏଥିରେ ପଚିଶ ମାଇଲ ଯିବା ପୂରା ଦିନର କାମ ହେଉଥିଲା।

ରେଳଗାଡ଼ିର ପ୍ରଚଳନ ଭାରତୀୟ ଜୀବନକୁ ବଦଳାଇଦେଲା। ଊନବିଂଶ ଶତାବ୍ଦୀର ମଝିରେ ବାହାରିଥିବା ଏହି ଗୁରୁତ୍ୱପୂର୍ଣ୍ଣ ବୈଷୟିକ କୌଶଳ ଭାରତର ଦୂର ଅଞ୍ଚଳଗୁଡ଼ିକୁ ଯୋଡ଼ିପାରିଲା। 1853 ମସିହାରେ ଦକ୍ଷିଣ ଭାରତରେ ପ୍ରଥମ ରେଳରାସ୍ତା ଖୋଲିଲା ଏବଂ 1874 ବେଳକୁ ତାହା ମାନ୍ଦ୍ରାଜ ଡେଇଁ ଆହୁରି ଦକ୍ଷିଣକୁ ଆଗେଇଲା। 1892 ମସିହାରେ ବିଶାଖାପାଟଣା ଯାଏଁ ରେଳରାସ୍ତା ପୂରା ହୋଇ ନ ଥିଲା। ତେଣୁ କୁମ୍ଭକୋଣମ୍‌ରୁ ସେଠାକୁ ଯିବା ପାଇଁ ରେଳଗାଡ଼ି ସହିତ ବଳଦଗାଡ଼ି ଓ ଡଙ୍ଗାରେ ଯିବାକୁ ହେଉଥିଲା ଏବଂ ମୋଟରେ ତିନି ସପ୍ତାହ ଲାଗିଯାଉଥିଲା। ଏହା ପରବର୍ଷ ରେଳରାସ୍ତା ପୂରା ହେବା ଫଳରେ ମାତ୍ର ଗୋଟିଏ ଦିନରେ ସେହି ଯାତ୍ରା ପୂରା କରିହେଲା।

ରେଳଯାତ୍ରା ଏକ ପ୍ରକାରର ସାମାଜିକ ସମତା ମଧ୍ୟ ଆଣିଦେଲା। ଜାତିର ବାଛବିଚାର ନ ମାନି ସମସ୍ତେ ତାହା ବ୍ୟବହାର କରିପାରିଲେ। ତୃତୀୟ ଶ୍ରେଣୀ ଡବାରେ ପଶିଗଲେ ଜାତିପ୍ରଥାର କଠୋର ବାଧା ଡେଇଁ ହେଉଥିଲା। ବ୍ରାହ୍ମଣ ଓ ଅଛୁଆଁ ଏକା ଜାଗାରେ ବସୁଥିଲେ, ଅନ୍ୟ ଜାଗାରେ ଛାଇ ଛୁଉଁ ନ ଥିବା ଲୋକମାନେ ଏକାଠି ହେଉଥିଲେ। ରେଳଯାତ୍ରାର ବାର୍ତ୍ତା ଥିଲା, "ଅଳ୍ପ ଖର୍ଚ୍ଚରେ ଯାତ୍ରା କରିବାକୁ ଚାହିଁଲେ ଜାତିଭେଦ ଭୁଲିଯାଅ।" ଯାତ୍ରା ସମୟରେ ଲୋକମାନେ ତାହା ଭୁଲିବାକୁ ବାଧ୍ୟ ହେଉଥିଲେ। ଷ୍ଟେସନ୍ ବାହାରେ ଅବଶ୍ୟ ତାହା ପୁଣି ମନେ ପଡୁଥିଲା।

ପିଲାଦିନେ କୁମ୍ଭକୋଣମ୍, କାଞ୍ଚିପୁରମ୍ ଓ ମାନ୍ଦ୍ରାଜର ସ୍କୁଲମାନ ବଦଳାଇବା ଭିତରେ ରାମାନୁଜନ୍ ରେଳଗାଡ଼ି ସହିତ ବଢ଼ିଥିଲେ। ଏବେ, 1905 ମସିହାରେ, ସରକାରୀ କଲେଜରେ ଛାତ୍ରବୃତ୍ତି ହରାଇବା ପରେ ତାଙ୍କର ପଳାୟନରେ ରେଳଗାଡ଼ି ସାହାଯ୍ୟ କଲା।

ଦକ୍ଷିଣ ଭାରତୀୟ ରେଳପଥରେ ମାନ୍ଦ୍ରାଜ କୁମ୍ଭକୋଣମ୍‌ଠାରୁ 194 ମାଇଲ ଉତ୍ତରକୁ ଥିଲା। ମୁଖ୍ୟ ରେଳପଥରେ ସେହି ଦିଗରେ ଆହୁରି 484 ମାଇଲ ଗଲେ ବିଶାଖାପାଟଣା ପଡୁଥିଲା। ଚାଳିଶ ହଜାର ଜନସଂଖ୍ୟାର ଏହି ସହରଟି ବଙ୍ଗୋପସାଗର ଉପକୂଳରେ ଏକ ଡଲ୍‌ଫିନ୍ ନାକ ଭାବରେ ଜଣା ଏକ ଉଚ୍ଚ ଅନ୍ତରୀପରେ ରହିଥିଲା। ଭାରତର ପୂର୍ବ ତଟରେ ଏହା ଏକମାତ୍ର ପ୍ରାକୃତିକ ବନ୍ଦର ହୋଇଥିବାରୁ ନୌବାଣିଜ୍ୟ ପାଇଁ ତାହା ଗୁରୁତ୍ୱପୂର୍ଣ୍ଣ ଥିଲା। ଏହି ବନ୍ଦର ବାଟେ ଭାରତକୁ ଲୁଗା ଓ ଅନ୍ୟ ପଣ୍ୟଦ୍ରବ୍ୟ ଆସୁଥିଲା ଏବଂ ମାଙ୍ଗାନିଜ ପଥର ଓ ଗୁଡ଼ ରପ୍ତାନୀ ହେଉଥିଲା। ଗୋଟିଏ ନୂଆ ବତୀଘର ସେଠାରେ ବସାଯାଇଥିଲା ଏବଂ ନଈ ମୁହାଣକୁ ଖୋଳି ବନ୍ଦରକୁ ବଢ଼ାଇବାର ଯୋଜନା ଚାଲିଥିଲା। ଏହିଭଳି ଅନେକ ଦିଗରୁ ବିଶାଖାପାଟଣା ବିକଶିତ ହୋଇ ଚାଲିଥିଲା।

ମାନ୍ଦ୍ରାଜ ଓ କଲିକତା ମଝାମଝି ଥିବା ଏହି ତେଲୁଗୁ ଭାଷାଭାଷୀ ସହରକୁ ରାମାନୁଜନ୍ କାହାକୁ ନଜଣାଇ ବାହାରି ପଡ଼ିଲେ। ତାଙ୍କର ଘର ଛାଡ଼ିବାର କାରଣର କୌଣସି ସଠିକ ସୂଚନା ମିଳିନାହିଁ। କିଏ କହେ ଜଣେ ସାଙ୍ଗର କଥାରେ ସେ ଏପରି କରିଥିଲେ, ଆଉ କିଏ କହେ ଯେ

ସେ ଶିକ୍ଷାବୃତ୍ତି ବା ପୃଷ୍ଠପୋଷକ ଖୋଜିବା ପାଇଁ ବାହାରିଥିଲେ। କେହି କେହି କହନ୍ତି ଯେ ବାପାଙ୍କ ଚାପରେ ସେ ଚାକିରି ଖୋଜିବା ଚେଷ୍ଟାରେ ଯାଇଥିଲେ। ତେବେ ସମସ୍ତେ କୁହନ୍ତି ଯେ ହତାଶାରେ ସେ ଏପରି କରିଥିଲେ। ବାପାମା'ଙ୍କୁ ସାହାଯ୍ୟ ମାଗିବା ତାଙ୍କ ପାଇଁ ଏକ ସ୍ୱର୍ଶକାତର କଥା ଥିଲା, ତେଣୁ ତାହା କରି ନ ପାରି ସେ ପଳାଇଥିଲେ। ତେବେ ବିଶାଖାପାଟଣାରେ କ'ଣ ସେ ଖୋଜୁଥିଲେ ତାହା ଜଣା ନ ଥିଲେ ବି ଏହା ସ୍ପଷ୍ଟ ଯେ ସେ କୌଣସି ଏକ ଜିନିଷଠାରୁ ଦୂରେଇଯିବାକୁ ଚାହୁଁଥିଲେ।

ସୂଚନା ମିଳେ ଯେ ତାଙ୍କ ପରିବାର ଦୁଃଖରେ ହତଜ୍ଞାନ ହୋଇ ଖବର କାଗଜରେ ବିଜ୍ଞାପନ ଦେଇଥିଲେ ଏବଂ ବାପା ମାନ୍ଦ୍ରାଜ ଓ ତ୍ରିଚିନାପଲ୍ଲୀରେ ଘର ଘର ବୁଲି ତାଙ୍କୁ ଖୋଜିଥିଲେ। କିନ୍ତୁ ରାମାନୁଜନ୍‌ଙ୍କ ଅପ୍ରତ୍ୟାଶିତ ପଳାୟନ ବିଷୟରେ ଖୁବ୍ କମ୍ ଜଣା ଅଛି। ଏହା କିନ୍ତୁ ଜଣାଅଛି ଯେ ଅଳ୍ପଦିନ ପରେ, ବୋଧହୁଏ ସେପ୍ଟେମ୍ବର ମାସ ଭିତରେ, ତାଙ୍କୁ ନିରାପଦରେ ଘରକୁ ଫେରାଇ ଅଣାଯାଇଥିଲା।

ଏହା ଥିଲା ରାମାନୁଜନ୍‌ଙ୍କର ପ୍ରଥମ ବିଖ୍ୟାତ ପଳାୟନ। ଏହା ପରେ ରାମାନୁଜନ୍ ଅନେକ ସମୟରେ ହଠାତ୍ ଉଭେଇ ଯାଉଥିଲେ, ଯାହାର କାରଣ ଆଦି ବିଷୟରେ କିଛି ବି ଜଣାପଡ଼ିନାହିଁ। ତାଙ୍କର ପ୍ରଥମ ଘର ଛାଡ଼ିବା ଆଗରୁ ମଧ୍ୟ ସେ ହଠାତ୍ କିଛି ଅବିଚାରିତ କରିବା କଥା ଜଣାଥିଲା। ବିଶେଷ କରି ଯଦି ସେ ଭାବୁଥିଲେ ଯେ ତାଙ୍କ ଆତ୍ମସମ୍ମାନ ଉପରେ ଅସହନୀୟ ଆଘାତ ଲାଗିଛି।

୧୮୯୭ ମସିହାରେ, ୨ ବର୍ଷ ବୟସରେ, ରାମାନୁଜନ୍ କୁମ୍ଭକୋଣମ୍ ଟାଉନ ହଲ୍‌ରେ ପ୍ରାଥମିକ ପରୀକ୍ଷା ଦେଲେ। ଅଙ୍କରେ ସେ 45ରୁ 42 ନମ୍ବର ପାଇଲେ, କିନ୍ତୁ ତାଙ୍କର ସାଙ୍ଗ କେ. ସରଙ୍ଗାପାନି ଆୟେଙ୍ଗାର 43 ନମ୍ବର ରଖିଥିଲେ। ରାଗ ଓ ଅପମାନରେ ସେ ଆୟେଙ୍ଗାରଙ୍କ ସହିତ କଥା ହେଲେନାହିଁ। ଏହା କିପରି ଯେ ଏକ ବଡ଼ କଥା ତାହା ଆୟେଙ୍ଗାର ବୁଝିପାରିଲେନାହିଁ ଓ ରାମାନୁଜନ୍‌ଙ୍କୁ ବୁଝାଇବାକୁ ଚେଷ୍ଟା କଲେ। ରାମାନୁଜନ୍ ଯେ ଅନ୍ୟ ସବୁ ବିଷୟରେ ବେଶି ରଖିଛନ୍ତି ତାହା ତାଙ୍କୁ ସେ କହିଲେ। କିନ୍ତୁ ରାମାନୁଜନ୍ ଶାନ୍ତ ହେଲେନାହିଁ, ରାଗିକରି ଜଣାଇଦେଲେ ଯେ ଗଣିତରେ ସେ ସବୁବେଳେ ସବୁଠାରୁ ବେଶି ନମ୍ବର ରଖନ୍ତି। ଏଥର ସେ ରଖିନାହାନ୍ତି ଏବଂ ସମସ୍ତେ ସେକଥା ଜାଣନ୍ତି। ଏହା ତାଙ୍କ ପାଇଁ ଅସହ୍ୟ ହେଉଥିଲା, ସେ ତେଣୁ କାନ୍ଦିକାନ୍ଦି ମା'ଙ୍କ ପାଖକୁ ପଳାଇଲେ।

ପରେ ହାଇସ୍କୁଲରେ ରାମାନୁଜନ୍ ବୁଝିପାରିଲେ ଯେ ସମକୋଣୀ ତ୍ରିଭୁଜ ସହିତ ତ୍ରିକୋଣମିତିକ ଫଳନଗୁଡ଼ିକର ସମ୍ପର୍କ ଅଗଭୀର। କିନ୍ତୁ ସେଗୁଡ଼ିକର ପ୍ରକୃତ ରୂପ ଅନ୍ୟ ବାଟରେ ପ୍ରକାଶ କରାଯାଇ ପାରିବ। ତାଙ୍କ ପାଇଁ ଏହା ଏକ ଆଶ୍ଚର୍ଯ୍ୟଜନକ ଆବିଷ୍କାର ଥିଲା। କିନ୍ତୁ ସେ ଜାଣିବାକୁ ପାଇଲେ ଯେ ସ୍ୱିଜରଲାଣ୍ଡର ଗଣିତଜ୍ଞ ଲିଓନାର୍ଡ ଅଏଲର ଏକଥା 150 ବର୍ଷ ପୂର୍ବରୁ ଦେଖାଇଛନ୍ତି। ଏହା ତାଙ୍କୁ ଏତେ ଗଭୀର ଆଘାତ ଦେଲା ଯେ ସେ ତାଙ୍କ ପ୍ରମାଣ ଲେଖାଥିବା କାଗଜ ସବୁ ଘରର ଚାଳରେ ଲୁଚାଇ ଦେଲେ।

ପ୍ରଚଣ୍ଡ ପ୍ରତିଭା ସମ୍ପନ୍ନ ବ୍ୟକ୍ତିଙ୍କ ଜୀବନର ବ୍ୟାପକତାରେ ଯୁବସୁଲଭ ଚପଳତା ଓ ପ୍ରଗଲ୍‌ଭତାର କ'ଣ ସ୍ଥାନ ନାହିଁ? ହୁଏତ ଅଛି। କିନ୍ତୁ ରାମାନୁଜନ୍‌ଙ୍କ କ୍ଷେତ୍ରରେ ଏହିଭଳି ଅନେକ

ଘଟଣାକୁ ନେଇ ସାମଗ୍ରିକ ଭାବରେ ଦେଖିଲେ ସାମାନ୍ୟତମ ଅପମାନର ଆଭାସ ପ୍ରତି ତାଙ୍କଠାରେ ଏକ ରୁଗ୍‌ଣ ସମ୍ବେଦନଶୀଳତା ଲକ୍ଷ୍ୟ କରିହୁଏ। ଅନେକ ବର୍ଷ ପରେ ଜଣେ ଘନିଷ୍ଠ ସାଙ୍ଗଠାରୁ ରାମାନୁଜନ୍ କିଛିଦିନ ଧରି ଚିଠିପତ୍ର ପାଇଲେନାହିଁ। ସେ ସାଙ୍ଗର ଭାଇଙ୍କ ପାଖକୁ ରାମାନୁଜନ୍ ଲେଖିଲେ, "ହୁଏତ ପରୀକ୍ଷାରେ ଫେଲ ହେବା କାରଣରୁ ବ୍ୟଥିତ ହୋଇ ସେ ଚିଠି ଲେଖୁନାହିଁ।" ଏହି ପ୍ରକାରର ବ୍ୟବହାର ତାଙ୍କ ତୀବ୍ର ସମ୍ବେଦନଶୀଳତାର ସୂଚନା ଦିଏ।

ସର୍ବସାଧାରଣରେ ଏଭଳି ଅପବାଦ ପ୍ରତି ସମ୍ବେଦନଶୀଳତାକୁ ମନସ୍ତତ୍ତ୍ୱବିତ୍‌ମାନେ ଅପମାନବୋଧ କୁହନ୍ତି। ଏହା ଅପରାଧବୋଧଠାରୁ ଅଲଗା, ଯାହା କିଛି ଭୁଲ କାମ କରି ଧରା ପଡ଼ିବାରୁ ବା ଧରା ପଡ଼ିବାର ଭୟରୁ ଆସିଥାଏ। ମେରିଲାଣ୍ଡ ବିଶ୍ୱବିଦ୍ୟାଳୟର ମନୋବ୍ୟାଧି ବିଶାରଦ ଲିଅନ୍ ୱୁର୍ମସର ତାଙ୍କ ଦ ମାସ୍କ ଅଫ୍ ଶେମ୍ ବହିରେ ଲେଖିଛନ୍ତି, "ଧରାପଡ଼ିବାର ସମ୍ଭାବନା ଅପରାଧବୋଧ ସହିତ ବାଧ୍ୟତାମୂଳକ ଭାବରେ ଯୋଡ଼ା। ସାଧାରଣତଃ ଧରାପଡ଼ିବାଟା ହଠାତ ଆସିଥାଏ ଏବଂ ତାହା ଆଶା ଓ ବାସ୍ତବତା ଭିତରେ ପାର୍ଥକ୍ୟ ଦେଖାଇଦିଏ। ଧରାପଡ଼ିବାର ଭୟରୁ ଅପ୍ରତ୍ୟାଶିତ ସମ୍ମାନହାନୀର ଅନୁଭୂତି ଆସେ। କାରଣ ସେହି ଦୁର୍ବଳତାର ଆବିଷ୍କାର ଦେଖାଇଦିଏ ଯେ ଜଣକର ପ୍ରକୃତ ରୂପ ପ୍ରତୀତ ରୂପଠାରୁ ଅଲଗା। ତାହା ସେ ଲୋକର ସର୍ବସାଧାରଣ ଚିତ୍ରରେ ଏକ କଳଙ୍କ ହୋଇ ରହିଯାଏ। ଅପରାଧବୋଧ ଆସିବା ପାଇଁ ପ୍ରକୃତ ଧରାପଡ଼ିବା ଜରୁରୀ ନୁହେଁ, ଧରାପଡ଼ିବାର ଚିନ୍ତା ହିଁ ଯଥେଷ୍ଟ। କେହି ନ ଦେଖିଲେ ବି ନିଜ ମନରେ ନିଜେ କଳଙ୍କିତ ହୋଇଥିବାର ଅନୁଭବ ଆସେ।"

ଅପରାଧବୋଧର ସବୁଠାରୁ ବେଶି ନିର୍ଭରଯୋଗ୍ୟ ଲକ୍ଷଣ ହେଉଛି ପଳାୟନ କରିବାର ପ୍ରବୃତ୍ତି। ୱୁର୍ମସର କୁହନ୍ତି ଯେ ଆତ୍ମଗୋପନ ଅପରାଧବୋଧ ସହିତ ଅଙ୍ଗାଙ୍ଗୀ ଭାବରେ ଯୋଡ଼ା। ଲୁଚିବା, ପଳାଇବା, ହାତରେ ମୁହଁ ଢାଙ୍କିଦେବା, ମାଟି ତଳେ ପଶିଯିବାର ଇଚ୍ଛା ଆଦି ଏଥିରୁ ଆସିଥାଏ। ଗଣିତରେ ଦ୍ୱିତୀୟ ହୋଇଥିବାର ଓ ତ୍ରିକୋଣମିତିକ ଫଳନର ପ୍ରଥମ ଆବିର୍ଷ୍କର୍ତ୍ତା ହୋଇ ନ ଥିବାର ଅପମାନରୁ ରାମାନୁଜନ୍ ଠିକ୍ ଏହା ହିଁ କରିଥିଲେ। ସେ ତାଙ୍କର କାଗଜପତ୍ର ଲୁଚାଇ ଦେଇଥିଲେ ଓ ବିଶାଖାପାଟଣାକୁ ପଳାଇଥିଲେ। କେହି କେହି କହନ୍ତି ଯେ ସେତେବେଳେ ରାମାନୁଜନ୍‌ଙ୍କର ସାମୟିକ ମାନସିକ ବିକୃତି ଘଟିଥିଲା। ବୋଧହୁଏ ଗଭୀର ଅପରାଧବୋଧ ହିଁ ଏହାର କାରଣ ଥିଲା।

ସ୍କୁଲରେ ଅସଫଳତାରୁ ଛାତ୍ରବୃତ୍ତି ହରାଇବାର ଅନୁଭୂତି ଯେପରି ଆଉ ନ ଆସେ ସେଦିଗରେ ସେ ସବୁବେଳେ ନିଶ୍ଚିତ ହେବାକୁ ଚାହୁଁଥିଲେ। ସରକାରୀ କଲେଜର ହାସ୍ୟାସ୍ପଦ ଘଟଣାର ଲଜ୍ୟା ତାଙ୍କୁ ଉତ୍କଟ ମାନସିକ ଯନ୍ତ୍ରଣାରେ ପକାଇଥିଲା। ସେଥିରୁ ରକ୍ଷା ପାଇବା ପାଇଁ ତାଙ୍କର ଆବେଗ ଥିଲା ପଳାୟନ ଦିଗରେ, ଯାହା ସେ ପରେ ଅନେକ ସମୟରେ ଦେଖାଇଛନ୍ତି। ବିଶାଖାପାଟଣାକୁ ଚାଲିଯିବା ତାଙ୍କ କ୍ଷେତ୍ରରେ ସେହି ଆବେଗ ପାଖରେ ନିଜର ସମର୍ପଣର ପ୍ରତିଫଳନ ଥିଲା।

ନିଜର ଗାଣିତିକ ପ୍ରତିଭା ବିଷୟରେ ରାମାନୁଜନ୍‌ଙ୍କର ଗଭୀର ବିଶ୍ୱାସ ରହିଥିଲା ଏବଂ ତାଙ୍କ ପ୍ରତି ଅନ୍ୟମାନଙ୍କର ଧାରଣା ବିଷୟରେ ସେ ସଚେତନ ଥିଲେ। କିନ୍ତୁ ତାଙ୍କର ସାମାଜିକ ଚିନ୍ତା ରକ୍ଷଣଶୀଳ ଥିଲା। ଗଣିତ କ୍ଷେତ୍ରରେ ସେ ଅନ୍ୟ କାହାକୁ ଅନୁସରଣ କରିବା ବଦଳରେ

ନୂଆ ବାଟରେ ଆଗେଇବା ପାଇଁ ପସନ୍ଦ କରୁଥିଲେ। କିନ୍ତୁ ସେ ଚାହୁଁଥିଲେ ଯେ ଅନ୍ୟମାନେ ତାଙ୍କୁ ଅନୁସରଣ କରନ୍ତୁ।

ଇଂଲଣ୍ଡରେ ଗୋଟିଏ ଗାଣିତିକ ପ୍ରତିଯୋଗିତା ବିଷୟରେ ଜାଣିବା ପରେ ସେଥିରେ ସେ ଭାଗନେଇ ପାରିବେ କି ନାହିଁ ତାହା ସେ ଅତି ବ୍ୟଗ୍ର ଭାବରେ ବୁଝାବୁଝି କଲେ। କାରଣ ସେ ବାହ୍ୟ ସ୍ୱୀକୃତି ପ୍ରତି କେବେ ବିମୁଖ ନ ଥିଲେ ବା ନ ଥିବାର ଛଳନା କରୁ ନ ଥିଲେ। ଇଂଲଣ୍ଡରେ ଥରେ ଗୋଟିଏ ଉଚ୍ଚ ସମ୍ମାନ ପାଇବା ପରେ ସେ ଯେଉଁ ସ୍ୱୀକାରପତ୍ର ପଠାଇଥିଲେ ତାହା ଉଦ୍ଦୀପନାରେ ଭରା ଥିଲା।

ଗଣିତଜ୍ଞ ଭାବରେ ସେ କ'ଣ ଅନ୍ୟମାନଙ୍କର ସମ୍ମାନର ପାତ୍ର ଥିଲେ? ସେ କ'ଣ ଏକ କର୍ତ୍ତବ୍ୟନିଷ୍ଠ ପୁତ୍ର ଓ ଜଣେ ଭଲ ବ୍ରାହ୍ମଣ ଥିଲେ? ତାଙ୍କର ଛାତ୍ରବୃତ୍ତି କ'ଣ ଗୁରୁତ୍ୱପୂର୍ଣ୍ଣ ଥିଲା? ସେ ପୁରସ୍କୃତ ହୋଇଛନ୍ତି କି? ଏହି ସବୁ ବାହ୍ୟ ସ୍ୱୀକୃତିର ସୂଚକ ତାଙ୍କ ପାଇଁ ଗୁରୁତ୍ୱପୂର୍ଣ୍ଣ ଥିଲା, ବିଶେଷ କରି ତାଙ୍କ କିଶୋର ଅବସ୍ଥାରେ ଯେତେବେଳେ ସେ ଅନ୍ୟମାନଙ୍କ ମତ ପ୍ରତି ଅତି ମାତ୍ରାରେ ସମ୍ବେଦନଶୀଳ ଥିଲେ।

ରାମାନୁଜନ୍‌ଙ୍କ କୈଶୋରର ଚିତ୍ର ଥିଲା ବାରଣ୍ଡାରେ ବସି ଗଣିତରେ ବୁଡ଼ି ରହିଥିବା ପିଲାଟିଏର। ତଳେ ଖେଳୁଥିବା ସାଙ୍ଗମାନଙ୍କର ହୋ ହା ତାଙ୍କୁ ଜଣାପଡୁ ନ ଥିଲା। ବେଳେ ବେଳେ ହୁଏତ ଖେଳରେ ସେ ଭାଗ ନେବାକୁ ଚାହିଁଥିବେ। ସ୍ୱୀକୃତି ପ୍ରତି ତାଙ୍କର ପିପାସା, ତାହା ନ ମିଳିବାରେ ମନକଷ୍ଟ, ଅପମାନ ପ୍ରତି ସମ୍ବେଦନଶୀଳତା ଆଦିରୁ ସେସବୁ ପ୍ରତି ସେ କେତେ ଧ୍ୟାନ ଦେଉଥିଲେ ତାହା ଜଣାପଡ଼ିଥାଏ।

### 4. ଆଉ ଏକ ଚେଷ୍ଟା

ପାଶ୍ୟାପ୍ପା ମୁଦାଲିଅର 1774 ମସିହାରେ ଗୋଟିଏ ଗରିବ ଘରେ ଜନ୍ମ ହୋଇଥିଲେ। ସେ ଜଣେ ଦ୍ୱିଭାଷୀ ହୋଇଥିବାରୁ ଇଂରେଜଙ୍କ ସହିତ ବ୍ୟବସାୟ କରୁଥିବା ଲୋକଙ୍କ ପାଇଁ ସେ ଯୋଗାଯୋଗର ଗୁରୁତ୍ୱପୂର୍ଣ୍ଣ ମାଧ୍ୟମ ଥିଲେ। ତାଙ୍କୁ 21 ବର୍ଷ ବୟସ ହେଲାବେଳକୁ ଏହି କାମରୁ ସେ ପ୍ରଚୁର ସମ୍ପତ୍ତି କମାଇ ସାରିଥିଲେ। ଛୟାଳିଶି ବର୍ଷ ବୟସରେ ତାଙ୍କର ମୃତ୍ୟୁ ହେଲା ଏବଂ ତାଙ୍କର ଇଚ୍ଛା ଅନୁସାରେ ତାଙ୍କର ବିଶାଳ ସମ୍ପତି ଜନହିତକର କାମରେ ଲାଗିଲା। 1842 ମସିହାରେ ତାଙ୍କ ନାମରେ ଗୋଟିଏ କଲେଜ ସ୍ଥାପିତ ହୋଇଥିଲା ଯାହା କେବଳ ହିନ୍ଦୁମାନଙ୍କ ପାଇଁ ଖୋଲା ଥିଲା। 1906 ମସିହା ବେଳକୁ ଏହା ଏକ ସମ୍ମାନାସ୍ପଦ ଅନୁଷ୍ଠାନ ଭାବରେ ଗଣାଯାଉଥିଲା। ମାନ୍ଦ୍ରାଜର ଜର୍ଜଟାଉନର ଚାଇନାଟାଉନ ମାର୍ଗରେ ଅବସ୍ଥିତ ଏହି କଲେଜର ଘର ମଧ୍ୟ ଆକର୍ଷଣୀୟ ଥିଲା। ବିଶାଳ ସ୍ତମ୍ଭଯୁକ୍ତ ତା'ର ଅଟ୍ଟାଳିକା ଏଥେନ୍ସ୍‌ର ଥେସିଅସ୍ ମନ୍ଦିର ଢାଞ୍ଚାରେ ଗଢ଼ାଯାଇଥିଲା।

1906 ମସିହାର ଆରମ୍ଭରେ ରାମାନୁଜନ୍ ସେହି ପାଶ୍ୟାପ୍ପା କଲେଜ ଅଭିମୁଖେ ବାହାରି ପଡ଼ିଲେ। ମାନ୍ଦ୍ରାଜର ଏଗ୍‌ମୋର ଷ୍ଟେସନରେ ପହଞ୍ଚିଲା ବେଳକୁ ସେ ଏତେ ହାଲିଆ ଓ ଦିଗହରା ଅନୁଭବ କରୁଥିଲେ ଯେ ଷ୍ଟେସନର ପ୍ରତୀକ୍ଷାଳୟରେ ଶୋଇପଡ଼ିଲେ। ଜଣେ ଲୋକ ତାଙ୍କୁ ନିଦରୁ ଉଠାଇ ନିଜ ଘରକୁ ନେଲେ ଓ ଖୁଆଇ ପିଆଇ କଲେଜକୁ ବାଟ ବତାଇଦେଲେ।

ସେ ସମୟରେ ଭାରତରେ ଭଲ ଚାକିରି ପାଇଁ କଲେଜ ଡିଗ୍ରୀ ଯେ କେବଳ ଜରୁରୀ ଥିଲା ତାହା ନୁହେଁ, କଲେଜରେ ପଢ଼ିଥିବା ପିଲା ପାଇଁ ଚାକିରି ଅପେକ୍ଷା କରିଥିଲା କହିଲେ ଚଳେ। ନିଜ ପେଷାରେ ଆଗେଇବା ପାଇଁ ତାହା ଭଲ ମୂଳଦୁଆ ପକାଉଥିଲା। ଡିଗ୍ରୀ ପାଇବା ପାଇଁ ନିର୍ଦ୍ଦିଷ୍ଟ ପରୀକ୍ଷା ଦେବାକୁ ହେଉଥିଲା ଯାହାର ପରିଚାଳକ ଥିଲା ବିଶ୍ୱବିଦ୍ୟାଳୟ। ବିଶ୍ୱବିଦ୍ୟାଳୟ ପରୀକ୍ଷା ଦେବା ଓ ସେଥିରେ ସଫଳ ହେବା ସବୁ ପଢୁଆ ଭାରତୀୟ ଯୁବାଙ୍କର ସ୍ୱପ୍ନ ଥିଲା। କୁମ୍ଭକୋଣମ୍ କଲେଜରେ ପଢୁଥିବା ରାମାନୁଜନ୍‌ଙ୍କର କିଛି ସାଥି ମାନ୍ଦ୍ରାଜର ପ୍ରେସିଡେନ୍‌ସି କଲେଜକୁ ଆସିଥିଲେ। ଦକ୍ଷିଣ ଭାରତର ସବୁଠାରୁ ନାମଜାଦା ଏହି କଲେଜ ସେମାନଙ୍କୁ ବିଶ୍ୱବିଦ୍ୟାଳୟ ପରୀକ୍ଷା ପାଇଁ ପ୍ରସ୍ତୁତ ହେବାରେ ବେଶି ସାହାଯ୍ୟ କରିବାର ଆଶା ରହିଥିଲା।

କିନ୍ତୁ ଅଧିକାଂଶ ଆଶାୟୀ ଏଥିରେ ନିରାଶ ହେଉଥିଲେ। କାରଣ ମାଟ୍ରିକୁଲେସନ୍ ପରୀକ୍ଷାରେ ପ୍ରାୟ ଅଧା ପିଲା ଫେଲ ହେଉଥିଲେ। କଲେଜର ପ୍ରତ୍ୟେକ ବର୍ଷରେ ମଧ୍ୟ ଅଧାଅଧି ଫେଲ୍ ହୋଇ ବାହାରିଯାଉଥିଲେ। ଏଫ୍.ଏ. ପରୀକ୍ଷାରେ ପାଶ୍ୟାପ୍ପା କଲେଜର ଶତକଡ଼ା 80 ଭାଗ ପିଲା ଫେଲ ହେଉଥିଲେ। 1904 ମସିହାରେ ପାଞ୍ଚ ହଜାରରୁ କିଛି କମ୍ ପୁଅ ଓ ମାତ୍ର 49 ଜଣ ଝିଅ ବିଭିନ୍ନ ପ୍ରେସିଡେନ୍‌ସି କଲେଜ ଓ ବୃତ୍ତିଭିତ୍ତିକ ଅନୁଷ୍ଠାନମାନଙ୍କରେ ପଢୁଥିଲେ। ଏମାନଙ୍କ ଭିତରୁ, ଭାରତର ମୋଟ 430 ଲକ୍ଷ ଲୋକ ସଂଖ୍ୟାରୁ, ମାତ୍ର 1000 ଜଣ ଏଫ୍.ଏ. ଡିଗ୍ରୀ ପାଉଥିଲେ।

ଅଠର ବର୍ଷୀୟ ରାମାନୁଜନ୍ ସେମାନଙ୍କ ଭିତରୁ ଜଣେ ହେବାର ଲକ୍ଷ୍ୟ ରଖିଥିଲେ। କୁମ୍ଭକୋଣମ୍‌ରେ ଫେଲ୍ ହେବାର ବର୍ଷକ ପରେ ସେ ମାନ୍ଦ୍ରାଜରେ କଲେଜ ଶିକ୍ଷା ପୂରା କରିବା ପାଇଁ ଆଉ ଥରେ ଚେଷ୍ଟା କଲେ। କିଛିଦିନ ପାଇଁ ସେ କଲେଜ ପାଖରେ ତାଙ୍କ ଆଈଙ୍କ ଘରେ ରହିଲେ। ତାହା ଥିଲା ବ୍ରଡ୍‌ୱେ ଫଳ ବଜାର ପାଖର ଗଳି ରାସ୍ତାରେ ଗୋଟିଏ ଛୋଟ ଅନ୍ଧାରୁଆ ଓ ପ୍ରାୟ ନିବୁଜ ଘର। ତଥାପି ସେ ଅନ୍ତତଃ କଲେଜ ଯାଇପାରିଲେ।

ରାମାନୁଜନ୍‌ଙ୍କ ନୂଆ ଗଣିତ ଅଧ୍ୟାପକ ତାଙ୍କ ଖାତା ଦେଖି ଏତେ ପ୍ରଭାବିତ ହେଲେ ଯେ ସେ ସାଙ୍ଗେ ସାଙ୍ଗେ ରାମାନୁଜନ୍‌ଙ୍କୁ ନେଇ ଅଧ୍ୟକ୍ଷଙ୍କ ସହିତ ଚିହ୍ନା କରିଦେଲେ। ଅଧ୍ୟକ୍ଷ ସବୁ ବୁଝିଲା ପରେ ରାମାନୁଜନ୍‌ଙ୍କ ପାଇଁ ଆଂଶିକ ଛାତ୍ରବୃତ୍ତିର ବ୍ୟବସ୍ଥା କରିଦେଲେ। ଗୁରୁତର ଆମାଶୟ ଯୋଗୁଁ ରାମାନୁଜନ୍‌ଙ୍କୁ ତିନି ମାସ ପାଇଁ କଲେଜ ବନ୍ଦ କରି କୁମ୍ଭକୋଣମ୍ ଆସିବାକୁ ହେଲା। ତଥାପି ପାଶ୍ୟାପ୍ପା କଲେଜରେ ତାଙ୍କର ଆରମ୍ଭ ସମୟଟି ଉତ୍ସାହଜନକ ହୋଇଥିଲା।

ଗଣିତ ଅଧ୍ୟାପକ ଏନ୍. ରାମାନୁଜଚାରିଆର୍ କୌଣସି ସମସ୍ୟାର ସମାଧାନ ପାଇଁ ଅନେକ ପାଦରେ ଦୁଇଟି କଳାପଟା ଭରୁଥିବା ବେଳେ କେବେ କେବେ ରାମାନୁଜନ୍ ଉଠିପଡ଼ି ସେହି ସମାଧାନ କିପରି ତିନି ଚାରିଟି ପାଦରେ କରିହେବ ତାହା ଦେଖାଇଦେଉଥିଲେ। ରାମାନୁଜଚାରିଆର୍ ଟିକିଏ କମ୍ ଶୁଣିପାରୁଥିଲେ, ତେଣୁ ରାମାନୁଜନ୍‌ଙ୍କୁ ଆଉ ଥରେ ବୁଝାଇବାକୁ କହୁଥିଲେ ଏବଂ ରାମାନୁଜନ୍ ଖୁସିରେ ପୁଣି ବୁଝାଉଥିଲେ। ବେଳେ ବେଳେ ସେ ଅଧ୍ୟାପକ ପଢ଼ାଉଥିବାବେଳେ ମଝିରେ ଅଟକି ରାମାନୁଜନ୍‌ଙ୍କ ମତ ପଚାରୁଥିଲେ। ସମସ୍ୟାର ସମାଧାନ କଲାବେଳେ ରାମାନୁଜନ୍ ଥରକରେ ଅନେକ ପାଦ ଡେଇଁଯା'ନ୍ତି ଯାହା ଫଳରେ ତାଙ୍କ ସହପାଠୀମାନେ ତାହା ସହଜରେ ବୁଝିପାରନ୍ତିନାହିଁ।

ପାଶ୍ୟାପ୍ପା କଲେଜର ବରିଷ୍ଠ ଗଣିତ ଅଧ୍ୟାପକ ପି. ସିଙ୍ଗାରାଭେଲୁ ମୁଦାଲିଅର୍ ଆଗରୁ ପ୍ରେସିଡେନ୍‌ସି କଲେଜରେ ପଢ଼ାଉଥିଲେ। ତେଣୁ ତାଙ୍କୁ ଆଣିପାରିଥିବାରୁ ପାଶ୍ୟାପ୍ପା କଲେଜ ବିଶେଷ ଖୁସି ଥିଲା। ରାମାନୁଜନ୍‌ଙ୍କ ଗାଣିତିକ ପ୍ରତିଭା ତାଙ୍କୁ ଆଚମ୍ବିତ କରିଥିଲା। ବେଳେ ବେଳେ ସେ ଦୁହେଁ ମିଶି ଗବେଷଣା ପତ୍ରିକାରେ ବାହାରୁଥିବା ବିଭିନ୍ନ ସମସ୍ୟାର ସମାଧାନ ଖୋଜୁଥିଲେ। ରାମାନୁଜନ୍ ଯଦି କିଛି ସମସ୍ୟାରେ ଅଟକିଯା'ନ୍ତି ତେବେ ସେ ତାହା ଅଧ୍ୟାପକଙ୍କୁ ଦେଉଥିଲେ। ରାତି ସାରା ଲାଗି ଯେତେ ଚେଷ୍ଟା କଲେ ମଧ୍ୟ ସେ ଅଧ୍ୟାପକ ପ୍ରାୟ ସଫଳ ହେଉ ନ ଥିଲେ।

ରାମାନୁଜନ୍‌ଙ୍କ ପ୍ରତିଭା ସମସ୍ତଙ୍କୁ ଚମତ୍କୃତ କରୁଥିଲା, କିନ୍ତୁ ତାହା କିଛି ନୂଆ କଥା ନ ଥିଲା। ସେଥିରୁ କିଛି ନିର୍ଦ୍ଦିଷ୍ଟ ଫଳ ମଧ୍ୟ ବାହାରୁ ନ ଥିଲା। ଫଳରେ କୁମ୍ଭକୋଣମ୍‌ର ଅନୁଭୂତି ପାଶ୍ୟାପ୍ପାରେ ମଧ୍ୟ ଦୋହରାଇଲା। କୁମ୍ଭକୋଣମ୍‌ରେ ଇଂରାଜୀ ବିଷୟ ରାମାନୁଜନ୍‌ଙ୍କୁ ଅଟକାଇଥିଲା। ଏଠାରେ ଗଣିତ ସହିତ ସମ୍ପର୍କ ନ ଥିବା ବିଷୟଗୁଡ଼ିକ ଭିତରେ ଶରୀର ବିଜ୍ଞାନ ତାଙ୍କୁ ବିରକ୍ତିକର, ଏପରିକି ଘୃଣ୍ୟ, ମନେହେଲା।

ପ୍ରାରମ୍ଭିକ ଶରୀର ବିଜ୍ଞାନ (ଫିଜିଓଲୋଜି ଫର ବିଗିନର୍ସ୍) ଗୋଟିଏ ଛୋଟ ପାଠ୍ୟପୁସ୍ତକ ଥିଲା ଯାହାର ଲେଖକ ଥିଲେ ଦୁଇଜଣ କେମ୍ବ୍ରିଜ ବିଦ୍ୱାନ – ମାଇକେଲ୍ ଫଷ୍ଟର ଓ ଲୁଇସ୍ ଇ. ସୋର୍। 1894 ମସିହାରେ ପ୍ରକାଶିତ ସେହି ବହିରେ ସେ ସମୟର ପ୍ରଚଳିତ ଧାରାରେ କେବଳ ଶୁଖିଲା ବର୍ଣ୍ଣନା ଦିଆଯାଇଥିଲା। ଏହାର କିଛି ଉଦାହରଣ ଥିଲା: "ପାକସ୍ଥଳୀର ଉପର-ବାମ ଅଂଶରେ ଖାଦ୍ୟନଳୀର ମୁହଁ ରହିଥାଏ। ସେହି ନଳୀ ମୁଖଗହ୍ୱରରୁ ବାହାରି ବେକ ଓ ଛାତି ବାଟ ଦେଇ ମଧ୍ୟଚ୍ଛଦାକୁ ଫୁଟାଇ ପାକସ୍ଥଳୀରେ ପ୍ରବେଶ କରେ।" ସେହି ବହିରେ ଅନେକ ବିଶଦ୍ ଚିତ୍ର ରହିଥିଲା। ଚମ କଢ଼ା ହୋଇଥିବା ଠେକୁଆର ବିଭିନ୍ନ ଆଭ୍ୟନ୍ତରୀଣ ଅଙ୍ଗ, ମେଣ୍ଢାର ହୃତପିଣ୍ଡ, ମଣିଷର ପାଟି ଓ ଜିଭ ଆଦିର କିଛି ଚିତ୍ର ସେଥିରେ ରହିଥିଲା।

ଗଣିତର ଅମୂର୍ତ୍ତ ଚିନ୍ତାଠାରୁ ଏହାର ଦୂରତା ଅକଳନୀୟ ଥିଲା। ଗଣିତ ଯଦି ଆଧୁନିକ ରେଖାଙ୍କିତ ଚିତ୍ରକଳା ଥିଲା, ତେବେ ଶରୀର ବିଜ୍ଞାନ ରଙ୍ଗଭରା ଲତାୟିତ ରୂପର କଳା ଭଳି ଲାଗୁଥିଲା। ଶାକାହାରୀ ରାମାନୁଜନ୍‌ଙ୍କ ପାଇଁ ଶରୀର ବିଜ୍ଞାନର ପ୍ରାୟୋଗିକ ଦିଗ ଆହୁରି ଅରୁଚିକର ହେଉଥିଲା। ସେହି ପାଠର କିଛି ନିର୍ଦ୍ଦେଶ ଥିଲା, "ସାଙ୍ଗେ ସାଙ୍ଗେ ମରାଯାଇଥିବା କିନ୍ତୁ ଚମ କଢ଼ାଯାଇ ନ ଥିବା ଗୋଟିଏ ଠେକୁଆ ନିଅ।... ତାକୁ ଚିତ୍ କରି ପଟାରେ ଶୁଆଇ ଚାରି ଗୋଡ଼କୁ ପଟାର ଚାରି କଣରେ ବାନ୍ଧିଦିଅ। ଗୋଟିଏ ଛୋଟ ମୁନିଆ ଛୁରି ଓ କଇଁଚି ସାହାଯ୍ୟରେ ...।"

ଏହି ପାଠ ପ୍ରତି ରାମାନୁଜନ୍ ଏକ ସ୍ୱଭାବବିରୋଧୀ ମଉଜିଆ ପ୍ରତିକ୍ରିୟା ଦେଖାଇଲେ। ଅଧ୍ୟାପକ ବେଙ୍ଗଟିଏ କାଟି ମଣିଷର ଅଙ୍ଗ ସହିତ ତା'ର ସାମଞ୍ଜସ୍ୟ ଦେଖାଉଥିବା ବେଳେ ରାମାନୁଜନ୍ ହଠାତ୍ ପଚାରୁଥିଲେ, "ଏ ବେଙ୍ଗ ଦେହରେ ସାପଟି କେଉଁଠି?" - ଶାସ୍ତ୍ରରେ ବର୍ଣ୍ଣିତ ମଣିଷର ସାପ ସ୍ୱଭାବକୁ ଲକ୍ଷ୍ୟ କରି ସେ ଥଟ୍ଟାରେ ଏପରି କହୁଥିଲେ। ଥରେ ପାକପ୍ରଣାଳୀ ବିଷୟରେ ଏକ ପରୀକ୍ଷା ଖାତାରେ ନିଜ ନାଁ ନ ଲେଖି କେବଳ ଲେଖିଥିଲେ, "ସାର୍, ପାକକ୍ରିୟା ବିଷୟରେ ଏହା ହେଉଛି ମୋର ହଜମ ହୋଇ ନ ଥିବା ଜ୍ଞାନ।" ଅବଶ୍ୟ ତାହା କାହାର ଖାତା ସେକଥା ଜାଣିବା ପାଇଁ ଅଧ୍ୟାପକଙ୍କୁ ବେଶି ପରିଶ୍ରମ କରିବାକୁ ପଡ଼ିଲାନାହିଁ।

କହିବା ଦରକାର ନାହିଁ ଯେ ରାମାନୁଜନ୍ ଶରୀର ବିଜ୍ଞାନ ପରୀକ୍ଷାରେ ଫେଲ ହେଲେ। ଗଣିତ ଛାଡ଼ିଦେଲେ ସେ ଅନ୍ୟ ସବୁ ବିଷୟରେ ଖରାପ କରୁଥିଲେ, କିନ୍ତୁ ଶରୀର ବିଜ୍ଞାନରେ ଶତକଡ଼ା ଦଶ ମଧ୍ୟ ସେ ରଖୁ ନ ଥିଲେ। ତିନିଘଣ୍ଟିଆ ଗଣିତ ପରୀକ୍ଷାକୁ ସେ ଅଧଘଣ୍ଟାରେ ସାରିଦେଉଥିଲେ, କିନ୍ତୁ ଅନ୍ୟ ସବୁ ବିଷୟରେ ଦୁର୍ବଳତାକୁ ଭରଣା କରିବା ପାଇଁ ତାହା ଯଥେଷ୍ଟ ନ ଥିଲା। 1906 ମସିହା ଡିସେମ୍ବର ମାସରେ ସେ ଆଉ ଥରେ ଏଫ୍.ଏ. ପରୀକ୍ଷା ଦେଲେ ଓ ଫେଲ୍ ହେଲେ। ତା ପର ବର୍ଷ ସେ ପୁଣି ସେହି ପରୀକ୍ଷା ଦେଇଥିଲେ ବି ପାସ୍ କଲେ ନାହିଁ।

କୁମ୍ଭକୋଣମ୍ ସରକାରୀ କଲେଜ, 1904, 1905... ମାଡ୍ରାଜ ପାଶ୍ୟାପ୍ପା କଲେଜ, 1906, 1907...। ବିଫଳ। ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଦକ୍ଷିଣ ଭାରତର ଉଚ୍ଚତର ଶିକ୍ଷା ବ୍ୟବସ୍ଥାରେ ଶ୍ରୀନିବାସ ରାମାନୁଜନ୍‌ଙ୍କ ପାଇଁ କୌଣସି ସ୍ଥାନ ନ ଥିଲା। ସେ ପ୍ରତିଭାବାନ୍ ଥିଲେ ଏବଂ ସମସ୍ତେ ତାହା ଜାଣୁଥିଲେ। କିନ୍ତୁ ତାଙ୍କୁ ସ୍କୁଲରେ ରଖିବା ପାଇଁ ବା ଡିଗ୍ରୀଟିଏ ଦେବା ପାଇଁ ତାହା ଯଥେଷ୍ଟ ମନେ କରାଯାଉ ନ ଥିଲା।

ଶିକ୍ଷା ବ୍ୟବସ୍ଥା ଅଟଳ ହିଁ ରହିଥିଲା।

ସେ ସମୟର ଉଚ୍ଚାକାଂକ୍ଷୀ ଭାରତୀୟ ଯୁବକଙ୍କର ଡିଗ୍ରୀ ମୋହ ବିଷୟରେ ଜଣେ ଇଂରେଜ ଲେଖକ ହର୍ବର୍ଟ କମ୍ପଟନ୍ କହିଥିଲେ ଯେ ଲୋକସଂଖ୍ୟା ତୁଳନାରେ ସୁଯୋଗ ଖୁବ୍ କମ୍, ତେଣୁ ଏହା ଅସଂଖ୍ୟ ଆଶାୟୀ ସୃଷ୍ଟି କରେ, ଯେଉଁମାନେ କିଛି ନ କରି ସୁଯୋଗ ଆଶାରେ ହିଁ ଅପେକ୍ଷା କରିରହନ୍ତି କିମ୍ବା ଶିକ୍ଷାର ଲକ୍ଷ୍ୟଠାରୁ ବିପରୀତ ପନ୍ଥା ଧରନ୍ତି। 1908 ମସିହାରେ ରାମାନୁଜନ୍ ଏହି ଆଶାୟୀମାନଙ୍କ ଭିତରୁ ଜଣେ ଥିବା ଭଳି ମନେ ହୋଇଥିବେ। ପଢ଼ା ଶେଷକରି ବିନା ଚାକିରିରେ ସେ କୁମ୍ଭାକୋନମ୍ ଠାରେ ଘରେ ବସି ରହିଲେ।

ରାମାନୁଜନ୍‌ଙ୍କ ପାଇଁ ସେ ସମୟ ବଡ଼ କଷ୍ଟକର ଥିଲା। ପାଶ୍ୟାପ୍ପାରେ ପଢୁଥିଲା ବେଳେ ଥରେ ସ୍କୁଲ ଯିବା ପାଇଁ ରେଳଗାଡ଼ିରେ ଚଢ଼ିବା ସମୟରେ ତାଙ୍କ ଟୋପିଟି ଉଡ଼ିଗଲା। ତାଙ୍କ ସଂସ୍କୃତ ଶିକ୍ଷକ ଟୋପି ପିନ୍ଧିବା ପାଇଁ ସମସ୍ତଙ୍କୁ ବାଧ୍ୟ କରୁଥିଲେ ଏବଂ ରାମାନୁଜନ୍‌ଙ୍କୁ ବଜାରକୁ ଯାଇ ନୂଆ ଟୋପିଟିଏ କିଣିବା ପାଇଁ କହିଲେ। ରାମାନୁଜନ୍ ଦୁଃଖ ପ୍ରକାଶ କରି କହିଲେ ଯେ ତାହା କିଣିବା ପାଇଁ ଦରକାର ହେଉଥିବା କେତେ ଅଣା ପଇସା ବି ତାଙ୍କ ପାଖରେ ନାହିଁ। (ସହପାଠୀମାନେ ରାମାନୁଜନ୍‌ଙ୍କ ପୋଷାକର ଜୀର୍ଣ୍ଣତା ଲକ୍ଷ୍ୟ କରି ଏହା ଜାଣୁଥିଲେ। ସେମାନେ ଚାନ୍ଦା କରି ତାଙ୍କ ପାଇଁ ଗୋଟିଏ ଟୋପି କିଣି ଦେଲେ।)

ରାମାନୁଜନ୍‌ଙ୍କ ବାପା ମାସକୁ ଅତି ବେଶିରେ କୋଡ଼ିଏ ଟଙ୍କା ପାଉଥିଲେ। ଟଙ୍କାକୁ ସେବେ ପଚିଶ ପାଉଣ୍ଡ (ପ୍ରାୟ ଏଗାର କିଲୋଗ୍ରାମ) ଚାଉଳ ମିଳୁଥିଲା। ପାଖର ଗାଁମାନଙ୍କରେ ଲୋକମାନେ ଦିନକୁ ଚାରି ପାଞ୍ଚ ଅଣା ରୋଜଗାର କରୁଥିଲେ। ସେ ଦୃଷ୍ଟିରୁ ରାମାନୁଜନ୍‌ଙ୍କ ପରିବାର ବେଶି ଭଲରେ ଥିଲେ। କିନ୍ତୁ ବୃତ୍ତିଧାରୀ ବ୍ରାହ୍ମଣ ସମାଜ ଭିତରେ ସେ ଅତି ଦରିଦ୍ର ଥିଲେ।

ଘରେ ସେମାନେ କିଛି ପିଲାଙ୍କୁ ଭଡ଼ାରେ ରଖି ମାସକୁ ଦଶ ଟଙ୍କା ପାଉଥିଲେ। କୋମଳତାମ୍ମାଲ୍ ମନ୍ଦିରରେ ଭଜନ ଗାଇ କରି ଆଉ କିଛି ଟଙ୍କା ପାଉଥିଲେ। ତଥାପି ବେଳେ ବେଳେ ରାମାନୁଜନ୍‌ଙ୍କୁ ଭୋକରେ ରହିବାକୁ ହେଉଥିଲା। ତାଙ୍କର ଜଣେ ପଡ଼ୋଶୀ ବୟସ୍କା ମହିଳା ବା ତାଙ୍କର ସାଙ୍ଗ

ଏସ୍. ଏମ୍. ସୁବ୍ରମନ୍ୟନ୍ କେବେ କେବେ ଘରକୁ ଡାକି ନେଇ ରାମାନୁଜନ୍ଙ୍କୁ ଖୁଆଉଥିଲେ। 1908 ମସିହାରେ ଥରେ ରାମାନୁଜନ୍ଙ୍କ ମା ସୁବ୍ରମନ୍ୟନ୍ଙ୍କ ଘରେ ପହଞ୍ଚି ଚାଉଳ ନ ଥିବା କଥାରୁ ଦୁଃଖ କରୁଥିଲେ। ତାହା ଶୁଣି ସୁବ୍ରମନ୍ୟନ୍ଙ୍କ ମା ତାଙ୍କୁ ଖାଇବାକୁ ଦେଲେ ଓ ରାମାନୁଜନ୍ଙ୍କୁ ଡାକି ଆଣିବା ପାଇଁ ସାନ ପୁଅ ଅନନ୍ତରମନକୁ ପଠାଇଲେ।

କିଛି ଉପାର୍ଜନ ପାଇଁ ରାମାନୁଜନ୍ ଚିହ୍ନା ଜଣା ଲୋକମାନଙ୍କୁ ଭେଟିଲେ। କାହାର ଯଦି କିଛି ହିସାବପତ୍ର କରିବାର ଥାଏ ବା ପିଲାଙ୍କ ପଢ଼ାପଢ଼ିରେ ସାହାଯ୍ୟ ଦରକାର ଥାଏ ତାହା ସେ କରିବା ପାଇଁ ବାହାରୁଥିଲେ। ସରକାରୀ କଲେଜର ଦର୍ଶନ ଶାସ୍ତ୍ର ଅଧ୍ୟାପକଙ୍କର ପୁଅ ବିଶ୍ୱନାଥ ଶାସ୍ତ୍ରୀ ତାଙ୍କର ଜଣେ ଛାତ୍ର ହେଲେ ଓ ତାଙ୍କୁ ମାସକୁ ସାତ ଟଙ୍କା ଦେଉଥିଲେ। ପ୍ରତିଦିନ ବଡ଼ି ସକାଳୁ ରାମାନୁଜନ୍ ସହର ଆରପଟରେ ସୋଲାଇଆପ୍ପା ମୁଦଲି ମାର୍ଗରେ ଥିବା ବିଶ୍ୱନାଥଙ୍କ ଘରକୁ ଚାଲିକରି ଯାଉଥିଲେ ଏବଂ ତାଙ୍କୁ ଗଣିତର ବିଭିନ୍ନ ବିଷୟ ପଢ଼ାଉଥିଲେ। ଗୋଟିଏ ଅସୁବିଧା ଥିଲା ଯେ ସେ କେବଳ ପାଠ ବିଷୟରେ ସୀମିତ ରହୁ ନ ଥିଲେ। ସେ ପାଠ ବିଷୟର ସାଧାରଣ ଧାରାରେ ପ୍ରଥମେ ବୁଝାଉଥିଲେ, କିନ୍ତୁ ବିଶ୍ୱନାଥ ଯଦି ତାହା ଭୁଲି ଯାଉଥିଲେ ତେବେ ତା ପରଦିନ ରାମାନୁଜନ୍ ଗୋଟିଏ ନୂଆ ଧାରା ବାହାର କରୁଥିଲେ। ଅଳ୍ପ ସମୟ ଭିତରେ ସେ ବିଶ୍ୱନାଥଙ୍କ ନିୟମିତ ଶିକ୍ଷକ ଛୁଇଁ ନ ଥିବା ବିଷୟ ସବୁ ପଢ଼ାଇବାରେ ଲାଗିଯାଉଥିଲେ।

କେବେ ସେ ଦାର୍ଶନିକ ଦିଗ ଉପରେ ଆଲୋଚନା ଆରମ୍ଭ କରିଦେଉଥିଲେ। ତ୍ରିକୋଣମିତିକ ଧାରାରେ ଗୋଟିଏ କାଛର ଉଚ୍ଚତା ବାହାର କରିବା ସମସ୍ୟା ସମାଧାନ କଲାବେଳେ ରାମାନୁଜନ୍ ଯୁକ୍ତି କରିବେ ଯେ ସେ ଉଚ୍ଚତା କେବଳ ଆପେକ୍ଷିକ। କାରଣ ଗୋଟିଏ ପିମ୍ପୁଡ଼ି ପାଇଁ ତାହା ଯେତେ ଉଚ୍ଚ ମନେହେବ ମଇଁଷିଟିଏ ପାଇଁ ସେତେ ହେବନାହିଁ। ଥରେ ସେ ପଚାରିଲେ ପୃଥିବୀ ସୃଷ୍ଟି ହେଲା ବେଳେ ତାହା ଦେଖିବାକୁ କେହି ନ ଥିଲେ, ତେଣୁ କିପରି ଜାଣିବା ସୃଷ୍ଟି ହେବା ପୂର୍ବରୁ କିପରି ଦିଶୁଥିବ ? ଛୋଟ ଛୋଟ ଗୋଲକଧନ୍ଦା ପଚାରିବାରେ ସେ ବେଶ୍ ମଜା ଉଠାଉଥିଲେ। ଥରେ ସେ ବିଶ୍ୱନାଥ ଓ ତାଙ୍କ ବାପାଙ୍କୁ ଏପରି ଗୋଟିଏ ଧନ୍ଦା ପଚାରିଥିଲେ – ଗୋଟିଏ ବେଲ୍ଟକୁ ପୃଥିବୀର ପ୍ରାୟ 25000 ମାଇଲ ଲମ୍ବା ବିଷୁବ ରେଖା ଉପରେ ଭିଡ଼ିକରି ପିନ୍ଧାଯାଉ। ବେଲ୍ଟକୁ ହୁଗାଳି ବକଲ୍‌କୁ $2\pi$ ଫୁଟ ବା ପ୍ରାୟ 6 ଫୁଟ ପଛକୁ ଖସାଇ ଦିଆଯାଉ। ଏହା କଲେ ବେଲ୍ଟଟି ପୃଥିବୀ ପୃଷ୍ଠରୁ କେତେ ଛାଡ଼ିକରି ରହିବ? ସମସ୍ତେ ଉତ୍ତର ଦିଅନ୍ତି ଇଞ୍ଚକର ଅତି ଛୋଟିଆ ଅଂଶ। କିନ୍ତୁ ତାହାର ଠିକ୍ ଉତ୍ତର ହେଉଛି ସମାନ ଏକ ଫୁଟ।

ବିଶ୍ୱନାଥ ଶାସ୍ତ୍ରୀ ରାମାନୁଜନ୍ଙ୍କୁ ପ୍ରେରଣାଦାୟକ ମନେ କରୁଥିଲେ, କିନ୍ତୁ ଅନ୍ୟ ଛାତ୍ରମାନେ ସେପରି ଭାବୁ ନ ଥିଲେ। ତାଙ୍କର ଜଣେ ହାଇସ୍କୁଲ ସହପାଠୀ ଏନ୍. ଗୋବିନ୍ଦରାଜ ଆୟେଙ୍ଗାର ଅବକଳ କାଲ୍‌କୁଲସ୍ ବୁଝିବା ପାଇଁ ରାମାନୁଜନ୍ଙ୍କ ସାହାଯ୍ୟ ଚାହିଁଲେ। କାଲ୍‌କୁଲସ୍‌କୁ ଜଣେ ଏକ ଶକ୍ତିଶାଳୀ ଗାଣିତିକ କୌଶଳ ଭାବରେ ଦେଖିପାରିବ କିମ୍ବା ଅତି ଛୋଟ ଓ ଅତି ବଡ଼ର ଗୁଣଧର୍ମ ସମ୍ପର୍କିତ ସୂକ୍ଷ୍ମ ପ୍ରଶ୍ନ ଉଠାଉଥିବା ଦିଗରୁ ତାକୁ ଦେଖିପାରିବ। ଅଧିକାଂଶ ଛାତ୍ର ଗାଣିତିକ କୌଶଳ ଦୃଷ୍ଟିରେ ତାକୁ ଦେଖନ୍ତି ଏବଂ ପରୀକ୍ଷାରେ ମଧ୍ୟ ତାହା ହିଁ ଆଶା କରାଯାଏ। ରାମାନୁଜନ୍ ଛାତ୍ରର ଆବଶ୍ୟକତାକୁ ଭୁଲିଯାଇ ବା ତାକୁ ଗୁରୁତ୍ୱପୂର୍ଣ୍ଣ ନ ଭାବି ଦ୍ୱିତୀୟ ଦିଗ ଉପରେ ଜୋର ଦେବାକୁ

ଲାଗିଲେ। ଛାତ୍ର ହିସାବରେ କିଛି ଖରାପ ନ ଥିବା ଗୋବିନ୍ଦରାଜ, ଯିଏ ପରେ ଭାରତର ପବ୍ଲିକ ସର୍ଭିସ୍ କମିସନ୍‌ର ଅଧ୍ୟକ୍ଷ ହୋଇଥିଲେ, ଲେଖିଥିଲେ, "ରାମାନୁଜନ୍ କେବଳ ଅସୀମ ଓ ଅତ୍ୟଣୁ ବା ଇନ୍‌ଫାଇନାଟେସିମାଲ୍ ବିଷୟରେ କହିଚାଲିବେ। ତାଙ୍କର ଏହି ପଢ଼ାଇବା ଯେ ପରୀକ୍ଷା ପାଇଁ ସହାୟକ ହେବନାହିଁ ତାହା ଅନୁଭବ କରି ମୁଁ ସେଥିରୁ ଓହରି ଆସିଲି।" ସେ ଦୁହିଁଙ୍କ ଭିତରେ କାଲ୍‌କୁଲସ୍ ପଢ଼ା ବ୍ୟବସ୍ଥା ମାତ୍ର ଦୁଇ ସପ୍ତାହ ତିଷ୍ଠିଥିଲା।

ରାମାନୁଜନ୍ ଛାତ୍ରବୃତ୍ତି ହରାଇଥିଲେ। ସ୍କୁଲ ପରୀକ୍ଷାରେ ଫେଲ୍ ହୋଇଥିଲେ। ତାଙ୍କର ପ୍ରିୟ ବିଷୟରେ ମଧ୍ୟ ଜଣେ ଘରୋଇ ଶିକ୍ଷକ ଭାବରେ ସେ ଗ୍ରହଣୀୟ ହେଲେନାହିଁ।

କହିବାକୁ ଗଲେ ସେ ଥିଲେ ନିଃସ୍ୱ।

ତଥାପି ଭିନ୍ନ ଦୃଷ୍ଟିରୁ ଦେଖିଲେ ତାଙ୍କର ସବୁ କିଛି ଥିଲା। ଗଣିତ ଖାତାଠାରୁ ତାଙ୍କୁ ଦୂରେଇ ରଖିବା ପାଇଁ ଏବେ ଆଉ କିଛି କାମ ରହିଲାନାହିଁ। ସେହି ଖାତାଗୁଡ଼ିକରେ ଅସଂଖ୍ୟ ଉପପାଦ୍ୟ ଖୁନ୍ଦିହୋଇ ରହିଥିଲେ ଏବଂ ଦିନକୁ ଦିନ ସେଗୁଡ଼ିକର ସଂଖ୍ୟା ବଢ଼ି ଚାଲିଥିଲା।

## 5. ନୋଟ୍ ଖାତା

"ଗୋଟିଏ ଉପପାଦ୍ୟ ପ୍ରମାଣ କଲାବେଳେ ସେ ଆଉ କେତୋଟି ଆବିଷ୍କାର କରୁଥିଲେ। ଏ ସବୁ ଫଳାଫଳକୁ ସେ ନୋଟ୍ ଖାତାରେ ଟିପି ରଖୁଥିଲେ।" - ଅନେକ ବର୍ଷ ପରେ ଏହା ଥିଲା ରାମାନୁଜନ୍‌ଙ୍କ ସାଥୀ ନେଭିଲ୍‌ଙ୍କ କହିବା କଥା। ସେଥିରୁ ନୋଟ୍ ଖାତାର ଉତ୍ପତ୍ତି ଓ ନାଁ ବିଷୟରେ ଜଣାପଡ଼େ। କାର୍‌ଙ୍କ ସଂକ୍ଷିପ୍ତସାର ବହିର ଉପପାଦ୍ୟଗୁଡ଼ିକର ସମାଧାନ କଲାବେଳେ 1904ରୁ 1907 ମସିହା ଭିତରେ ରାମାନୁଜନ୍ ଏହି ନୋଟ୍ ଖାତାରେ ଲେଖିବା ଆରମ୍ଭ କରିଥିଲେ।

ରାମାନୁଜନ୍‌ଙ୍କ ମୃତ୍ୟୁ ପରେ ତାଙ୍କ ଭାଇ ରାମାନୁଜନ୍‌ଙ୍କ ଜୀବନ ସମ୍ପର୍କିତ ବିଭିନ୍ନ ତଥ୍ୟ ଏକାଠି କରିବାକୁ ଲାଗିଲେ। ସଂରକ୍ଷିତ ହୋଇ ରହିଥିବା ସେହି ହାତଲେଖା କାଗଜଗୁଡ଼ିକରୁ ଜଣାପଡ଼େ କାମଟି ପାଇଁ ସେ କେତେ ଯତ୍ନ ଓ କଷ୍ଟ କରିଥିଲେ। ରଫ୍ ଲେଖାକୁ ଥର ଥର କରି ସେ ମାର୍ଜିତ ଓ କ୍ରମବଦ୍ଧ କରି ଏକ ଚୂଡ଼ାନ୍ତ ତାଲିକା କରିଥିଲେ।

ରାମାନୁଜନ୍‌ଙ୍କ ନୋଟ ଖାତା ମଧ୍ୟ ଏହି ଧାରାରେ ଲେଖା ହୋଇଥିବାର ବିଶ୍ୱାସ କରାଯାଏ।

ତାଙ୍କର ପ୍ରଥମ ପ୍ରକାଶିତ ନୋଟ୍ ଖାତା ବୋଧହୁଏ 1907 ମସିହାରେ ସେ ପାଶ୍ଚାତ୍ତ୍ୟା କଲେଜ ଛାଡ଼ିବା ସମୟରେ ଲେଖା ଯାଇଥିଲା। ଏକ ପ୍ରକାରର ଅସାଧାରଣ ଶାଗୁଆ କାଳିରେ ଲେଖା ହୋଇଥିବା ଦୁଇଶହରୁ ବେଶି ବଡ଼ ଆକାରର ପୃଷ୍ଠାର ସେହି ଖାତାରେ ଅତିଜ୍ୟାମିତିକ ଶ୍ରେଣୀ, ପ୍ରସାରିତ ଭଗ୍ନାଂଶ, ଅସାଧାରଣ ମାପାଂଶ ଆଦି ବିଷୟରେ ସୂତ୍ରମାନ ଖୁନ୍ଦା ହୋଇଥିଲା।

ସେହି ପ୍ରଥମ ନୋଟ୍ ଖାତା ପରେ ପରିବର୍ଦ୍ଧିତ ଓ ପରିମାର୍ଜିତ ହୋଇ ଦ୍ୱିତୀୟ ନୋଟ୍ ଖାତାର ରୂପ ନେଲା। ତାହା କିନ୍ତୁ କିଛି ଏଣୁତେଣୁ ତଥ୍ୟଭରା ମାମୁଲି ଟିପା ଖାତା ନ ଥିଲା। ତାହା ବିଷୟ ଅନୁସାରେ ବିଭିନ୍ନ ଅଧ୍ୟାୟରେ ରଖାହୋଇଥିଲା ଏବଂ ପ୍ରତି ଅଧ୍ୟାୟରେ ଉପପାଦ୍ୟ ସବୁ କ୍ରମିକ ସଂଖ୍ୟା ସହ ଲେଖାଯାଇଥଲା। ମନେହୁଏ ଯେ କାହା ଆଗରେ ଉପସ୍ଥାପିତ କରିବା ପାଇଁ ରାମାନୁଜନ୍ ତାଙ୍କ ମୂଳ ଖାତାର ଲେଖାକୁ ମାର୍ଜିତ କରିଥିଲେ। ହୁଏତ ଚାକିରି ଖୋଜିବାରେ ସାହାଯ୍ୟ

କରିବା ପାଇଁ ସେ ଏହା କରିଥିଲେ। ସେହି ମାର୍ଜିତ ଖାତାଟି ପ୍ରାୟ ନିର୍ଭୁଲ ଥିଲା ଏବଂ ପରିଷ୍କାର ହସ୍ତାକ୍ଷରରେ ପୃଷ୍ଠା ପ୍ରତି ପନ୍ଦର କୋଡ଼ିଏ ଧାଡ଼ି ଥାଇ ଲେଖା ହୋଇଥିଲା। ଏହି ଭାବରେ ସମ୍ପାଦିତ ଖାତାକୁ ପଢ଼ିବାକୁ କିଛି ଅସୁବିଧା ହେଉ ନ ଥିଲା। ମୋଟ ଉପରେ ଦେଖିଲେ ଏହି ନୋଟ୍ ଖାତା ତତ୍କାଳିକ ଗାରିଆଗାରି କାମ ନ ଥିଲା, ବରଂ ସଂଶୋଧିତ, ସୁସଜ୍ଜିତ ଓ ଯୋଜନାବଦ୍ଧ ଭାବରେ ପ୍ରସ୍ତୁତ କରାଯାଇଥିଲା।

ଅନ୍ତତଃପକ୍ଷେ ତାହା ହିଁ ରାମାନୁଜନ୍‌ଙ୍କ ଲକ୍ଷ୍ୟ ଥିଲା। ପ୍ରଥମେ ସେ ଯୋଜନାବଦ୍ଧ ଭାବରେ ଅଧ୍ୟାୟ ଅଧ୍ୟାୟ କରି ଖାତାର କେବଳ ଡାହାଣ ପଟ ପୃଷ୍ଠାରେ ଲେଖୁଥିଲେ। କିନ୍ତୁ ପରେ ତାଙ୍କର ଧୈର୍ଯ୍ୟ ଭାଙ୍ଗି ଯାଇଥିବା ଭଳି ମନେ ହୁଏ, କାରଣ ସେ ଖାତାର ବାମ ପଟେ ରଫ୍ ହିସାବ କରିବାକୁ ଲାଗିଲେ ବା କୌଣସି ଅଧ୍ୟାୟରେ ଖାପ ଖାଉ ନ ଥିବା ଫଳାଫଳକୁ ଲେଖିଲେ। ତାଙ୍କ ଗାଣିତିକ ଲେଖାର ପରିମାଣ ବଢ଼ି ଚାଲିଲା, କିନ୍ତୁ ହସ୍ତାକ୍ଷର ତରବରିଆ ହେବାକୁ ଲାଗିଲା ଓ ଖାତାରେ କଟାକଟି ଦେଖିବାକୁ ମିଳିଲା। ବେଳେ ବେଳେ ଖାତାରେ ବାମରୁ ଡାହାଣକୁ ନଲେଖି ସେ ତଳ-ଉପର କରି ଲେଖିଲେ। ମନେହୁଏ ଯେ ସେ ଲେଖା ଆରମ୍ଭ କଲା ବେଳେ ସୁନ୍ଦର ଭାବରେ ଲେଖିବାର ଯତ୍ନ କରୁଥିଲେ, କିନ୍ତୁ ସମାଧାନର ଧାରାରେ ମଜ୍ଜିଗଲା ପରେ ମନକୁ ଯାହା ଆସିଲା ତାକୁ ଆଗରେ ଯେଉଁ ସାଦା ପୃଷ୍ଠା ପଡୁଥିଲା ସେଥିରେ ଟିପି ପକାଉଥିଲେ। ତେଣୁ ରାମାନୁଜନ୍‌ଙ୍କର ଖାତାଗୁଡ଼ିକ କାଗଜ ଓ କାଳିରେ ଚିନ୍ତା ପ୍ରବାହର ପରିସ୍ଫୁଟନ ହୋଇ ରହିଗଲା।

ଏଭଳି ଚିନ୍ତା ପ୍ରବାହରୁ ହିଁ ତାଙ୍କର ପ୍ରଥମ ନୋଟ୍ ଖାତାଗୁଡ଼ିକ ଆସିଥିବ ବୋଲି ମନେହୁଏ। ପ୍ରଥମେ ସେ କାର୍‌ଙ୍କ ବହିର ଉପପାଦ୍ୟଗୁଡ଼ିକୁ ପ୍ରମାଣିତ କରିବାକୁ ଚେଷ୍ଟା କରୁଥିଲେ। କିନ୍ତୁ ସମୟକ୍ରମେ ତାକୁ ଟପି ସେ ଆଗକୁ ଚାଲିଲେ। ନୂଆ ନୂଆ ଦିଗରେ ସେ ପରୀକ୍ଷା ଚଳାଇଲେ ଏବଂ କାର୍ ବା ଅନ୍ୟ କେହି ଭାବି ନ ଥିବା ଉପପାଦ୍ୟ ସବୁ ଆବିଷ୍କାର କଲେ। ଏହି କାମରେ ଆଗେଇ ଚାଲିବା ଭିତରେ କେବେ ସେ ସେସବୁକୁ ଲେଖି ରଖିବା ପାଇଁ ଠିକ୍ କଲେ। ବର୍ଷ ବର୍ଷ ଧରି ଲେଖିବା ପରେ ତାଙ୍କର କିଛି ଖାତା ପ୍ରାଥମିକ ଅସଜଡ଼ା ରୂପରୁ ମାର୍ଜିତ ହୋଇ ପ୍ରକାଶିତ ନୋଟ୍ ଖାତା ଅବସ୍ଥାକୁ ଆସିଲା। ପ୍ରକାଶ ପାଇବା ପରେ ରାମାନୁଜନ୍‌ଙ୍କ ଟିପା ଖାତାଗୁଡ଼ିକ ଏବେ ମଧ୍ୟ କେତେ ଗଣିତଜ୍ଞଙ୍କ ପାଇଁ ଅଧ୍ୟୟନ କ୍ଷେତ୍ର ହୋଇ ରହିଛି।

"ଦୁଇଟି ମାଙ୍କଡ଼ ଗୋଟିଏ ଫଳ ବଗିଚାରେ ପଶି କେତୋଟି ପିଜୁଳି ଓ ତା'ର ତିନି ଗୁଣ କଦଳୀ ଛିଣ୍ଡାଇଲେ। ତାକୁ ଖାଇବାକୁ ଯିବା ବେଳକୁ ସେ ଦୁହେଁ ଦେଖିଲେ ଯେ ବଗିଚାର ମାଲିକ ବାଡ଼ି ଖଣ୍ଡେ ଧରି ଛପି ଛପି ଆସୁଛି। ସେମାନେ ହିସାବ କଲେ ଯେ ମାଲିକ ତାଙ୍କ ପାଖରେ ପହଞ୍ଚିବାକୁ $2\frac{1}{4}$ ମିନିଟ ଲାଗିବ। ଗୋଟିଏ ମାଙ୍କଡ଼, ଯିଏ ମିନିଟକୁ 10ଟି ପିଜୁଳି ଖାଇପାରେ, ପିଜୁଳିତକ $2/3$ ସମୟରେ ସାରିଦେଇ ଆର ମାଙ୍କଡ଼କୁ କଦଳୀ ଖାଇବାରେ ସାହାଯ୍ୟ କଲା ଏବଂ ଠିକ୍ ସମୟରେ ସେମାନେ ଖାଇବା ଶେଷ କଲେ। ପ୍ରଥମ ମାଙ୍କଡ଼ ପିଜୁଳି ଖାଇବାର ଦୁଇଗୁଣ ବେଗରେ କଦଳୀ ଖାଇପାରେ। ତେବେ ଦ୍ୱିତୀୟ ମାଙ୍କଡ଼ କେତେ ବେଗରେ କଦଳୀ ଖାଇପାରୁଥିବ?"

ଏହି ମଜାଳିଆ ସମସ୍ୟାଟି ରାମାନୁଜନ୍‌ଙ୍କ ସମୟର କିଛି ଆଗରୁ ଭାରତୀୟ ଗଣିତ ପାଠ ବହିରେ ଦିଆ ଯାଇଥିଲା। ଶୁଖିଲା ଗଣିତ ପାଠକୁ ସରସ କରିବା ଲକ୍ଷ୍ୟରେ ଏଭଳି ସମସ୍ୟା ଦେବା

ପାଇଁ ଇଂଲଣ୍ଡର ଶିକ୍ଷାବିତ୍‌ମାନେ ଚେଷ୍ଟା କରୁଥିଲେ। କେବଳ ଜନ୍ତୁ ଓ ଫଳର ନାଁକୁ ଏଠାରେ ବଦଳାଇ ଦିଆ ଯାଇଥିଲା। ଏହି ସମସ୍ୟାର ସମାଧାନ ପାଇଁ ଯେତେ ମୁଣ୍ଡ ଖେଳାଇବା ଦରକାର ହେଉଥିଲେ ବି ରାମାନୁଜନ୍‌ଙ୍କ ନୋଟ୍ ଖାତାର ସମସ୍ୟା ସହିତ ତା'ର କିଛି ବି ସମ୍ପର୍କ ନ ଥିଲା।

ରାମାନୁଜନ୍‌ଙ୍କ ମନରେ ଆଗ୍ରହ ଜନ୍ମାଇବା ପାଇଁ ମାଙ୍କଡ଼ ଉପାଖ୍ୟାନ ଦରକାର ପଡୁ ନ ଥିଲା। ତାଙ୍କ ପାଇଁ ସମୀକରଣର ପ୍ରୟୋଗ ଗୁରୁତ୍ୱପୂର୍ଣ୍ଣ ନ ଥିଲା। ସେ ସମୀକରଣର ଅନ୍ତର୍ନିହିତ ଗୁଣଧର୍ମରେ ହିଁ ଆଗ୍ରହୀ ଥିଲେ। ସମୀକରଣର ସାଂଖ୍ୟିକ ସମାଧାନରେ ରାମାନୁଜନ୍‌ଙ୍କର କୌଣସି ଆଗ୍ରହ ନ ଥିଲା, ବରଂ ସମୀକରଣ ସହିତ ଖେଳିବା ହିଁ ତାଙ୍କର ଲକ୍ଷ୍ୟ ଥିଲା। ତାକୁ ଓଲଟାଇ, ବଦଳାଇ, ଭାଙ୍ଗି, ଯୋଡ଼ି, ନୂଆ ରୂପ ଦେଇ ସେଥିରେ ସେ ବିଭିନ୍ନ ସମ୍ଭାବନା ଖୋଜୁଥିଲେ। ଠିକ୍ ଯେପରି ଜଣେ କବି ଶବ୍ଦ ଓ ରୂପକ ସହିତ ଖେଳେ, ଚିତ୍ରକର ରେଖା ଓ ରଙ୍ଗ ସହିତ ଏବଂ ଦାର୍ଶନିକ ତତ୍ତ୍ୱ ସହିତ ଖେଳେ।

ରାମାନୁଜନ୍‌ଙ୍କ ମାନସ ଦୁନିଆରେ ପ୍ରତି ସଂଖ୍ୟାର ସ୍ୱତନ୍ତ୍ର ଗୁଣଧର୍ମ ରହିଥିଲା। ରସାୟନ ବିଜ୍ଞାନର ଛାତ୍ରମାନେ ବିଭିନ୍ନ ମୌଳିକର ଗୁଣଧର୍ମ, ପର୍ଯ୍ୟାୟ ସାରଣୀରେ ସେମାନଙ୍କର ସ୍ଥାନ, ତାଙ୍କର ବର୍ଗ ଏବଂ ପାରମାଣବିକ ଗଠନ ବିଷୟରେ ଜାଣନ୍ତି। ଠିକ୍ ସେମିତି ସଂଖ୍ୟାମାନଙ୍କର ଗୁଣଧର୍ମକୁ ନେଇ ତାଙ୍କୁ ବିଭିନ୍ନ ଶ୍ରେଣୀ ଓ ପ୍ରକାରରେ ଭାଗ କରାଯାଏ।

2, 4, 6 ଆଦି ସଂଖ୍ୟା ଯୁଗ୍ମ ଏବଂ 1, 3, 5 ଆଦି ଅଯୁଗ୍ମ। ଏହା ଏକ ସରଳ ବର୍ଗୀକରଣ।

ସେହିଭଳି 2, 3, 17 ଆଦି ପୂର୍ଣ୍ଣ ସଂଖ୍ୟା ହୋଇଥିବା ବେଳେ $^{171}/_{4}$ ଓ 3.778 ଆଦି ଅପୂର୍ଣ୍ଣ ସଂଖ୍ୟା।

4, 9, 16 ଓ 25 ଭଳି କେତେ ସଂଖ୍ୟା 2, 3, 4 ଓ 5 କୁ ନିଜ ସହିତ ଗୁଣନ କଲେ ମିଳିଥାଏ। ସେହି ସଂଖ୍ୟାଗୁଡ଼ିକୁ ବର୍ଗ ସଂଖ୍ୟା କୁହାଯାଏ। କିନ୍ତୁ 3, 10, 24 ଭଳି ସଂଖ୍ୟା ବର୍ଗ ନୁହନ୍ତି।

ସଂଖ୍ୟା 6 ଓ 5 ଭିତରେ ଏକ ମୌଳିକ ପାର୍ଥକ୍ୟ ରହିଛି। 2 ଓ 3କୁ ଗୁଣନ କରି 6 ମିଳିପାରିବ। କିନ୍ତୁ କେବଳ ତା ନିଜ ସହିତ 1 ଗୁଣନ କଲେ 5 ମିଳିବ। 5 ଏବଂ 2, 3, 5, 7 ଭଳି ଅନ୍ୟ ସଂଖ୍ୟାଗୁଡ଼ିକୁ ଗଣିତରେ ମୌଳିକ ସଂଖ୍ୟା କୁହାଯାଏ। 6 ଭଳି ଅନ୍ୟର ଗୁଣନ ଫଳ ହେଉଥିବା ସଂଖ୍ୟାଗୁଡ଼ିକୁ ଯୌଗିକ ସଂଖ୍ୟା କୁହାଯାଏ।

କିଛି ସଂଖ୍ୟା ପୂର୍ଣ୍ଣ ସଂଖ୍ୟା ବା ପୂର୍ଣ୍ଣ ସଂଖ୍ୟାମାନଙ୍କର ଅନୁପାତ ଭାବରେ ପ୍ରକାଶ କରାଯାଇ ପାରିବନାହିଁ। ସେଗୁଡ଼ିକୁ ଅପରିମେୟ କୁହାଯାଏ। $\sqrt{2}$ (ଦୁଇର ବର୍ଗମୂଳ) ହେଉଛି ଏକ ଅପରିମେୟ ସଂଖ୍ୟା ଯାହାର ମୂଲ୍ୟ ପ୍ରାୟ 1.414...। ଦଶମିକ ପରେ ଯେତେ ସ୍ଥାନ ଯାଏ ହିସାବ କଲେ ମଧ୍ୟ ତାହା ଛିଣ୍ଡିବନାହିଁ, ତେଣୁ ତା'ର ମୂଲ୍ୟ ସବୁବେଳେ 'ପାଖାପାଖି' ରହିବ। ଏହାର ବିପରୀତ ଧାରାରେ 3, ¼, $^{911}/_{16}$ ଭଳି ସଂଖ୍ୟାଗୁଡ଼ିକ ପରିମେୟ।

ବିଯୁକ୍ତ ଏକ (–1) ଭଳି ଋଣାତ୍ମକ ସଂଖ୍ୟାର ବର୍ଗମୂଳକୁ ପୁଣି କ'ଣ କହିବା? ତାହା ଅସମ୍ଭବ ବା ଉଦ୍ଭଟ ମନେହୁଏ। ଗଣିତର ଧାରାରେ ଦୁଇଟି ଋଣାତ୍ମକ ସଂଖ୍ୟାର ଗୁଣନ ଫଳ ଧନାତ୍ମକ ହୁଏ। ତେଣୁ କୌଣସି ସଂଖ୍ୟା ନିଜ ସହିତ ଗୁଣା ହୋଇ କିପରି ଋଣାତ୍ମକ ଫଳ ଦେବ? କୌଣସି ସାଧାରଣ ସଂଖ୍ୟା ପାଇଁ ଏହା ସତ ହେବନାହିଁ, ତେଣୁ ଏଭଳି ବ୍ୟବହାର ଦେଖାଉଥିବା

ସଂଖ୍ୟାଗୁଡ଼ିକୁ 'କାଳ୍ପନିକ' ବା ଇମାଜିନାରି ସଂଖ୍ୟା କୁହାଯାଏ ଏବଂ ତାଙ୍କ ପାଇଁ ସଙ୍କେତ ରୂପେ i ବ୍ୟବହାର କରାଯାଏ। ଏହି ଧାରାରେ $\sqrt{(-16)} = 4\sqrt{(-1)} = 4\,i$ । ସାଧାରଣ ସଂଖ୍ୟା ଭଳି ଏହି ସଂଖ୍ୟାଗୁଡ଼ିକ ଉପରେ ଗଣିତର ସବୁ ଧାରା ଲଗାଇହେବ। ବ୍ୟୋମଗତିକୀ ଓ ଇଲେକ୍‌ଟ୍ରନିକୀ ଭଳି କ୍ଷେତ୍ରରେ କାଳ୍ପନିକ ସଂଖ୍ୟାର ବହୁଳ ବ୍ୟବହାର ଦେଖାଯାଏ।

ଗଣିତ କ୍ଷେତ୍ରରେ ଅନେକ ସମୟରେ ଦେଖାଯାଏ ଯେ ମାମୁଲି, ଅନିୟମିତ ବା ବିରୋଧାଭାଷ ସମ୍ପନ୍ନ ମନେ ହେଉଥିବା କିଛି ଅବଧାରଣା ଗୁରୁତ୍ୱପୂର୍ଣ୍ଣ ଓ ଉପଯୋଗୀ ହୋଇପାରେ। 1, 2, 5 ଭଳି ସାଧାରଣ ସଂଖ୍ୟା ସହିତ ବଢ଼ିଲା ପରେ ଋଣାତ୍ମକ ସଂଖ୍ୟାର ଧାରଣା ପ୍ରଥମେ ଅଖାଡୁଆ ଲାଗେ। ତଥାପି ତାକୁ ଗ୍ରହଣ କରିବା ପାଇଁ ବେଶି କଷ୍ଟ ହୁଏନାହିଁ। ତାପମାତ୍ରା ବଢ଼ିବା ବା କମିବାର ଉଦାହରଣରୁ ଏହା ବେଶ୍ ବୁଝିହୁଏ। ତାପମାତ୍ରା 6 ଡିଗ୍ରୀ ବଢ଼ିଲେ ସାଙ୍କେତିକ ରୂପରେ ତାକୁ $t = 6$ ଲେଖି ପ୍ରକାଶ କଲେ ସେତିକି କମିବା ପାଇଁ $t = -6$ ଲେଖିହେବ। ସେହିଭଳି ଉପଯୁକ୍ତ ଉଦାହରଣ ଓ ପ୍ରୟୋଗ ଜରିଆରେ କାଳ୍ପନିକ ସଂଖ୍ୟା ଓ ଅନ୍ୟ କେତେ ଉଦ୍ଭଟ ମନେହେଉଥିବା ଗାଣିତିକ ଧାରଣାର ଯୁକ୍ତିଯୁକ୍ତତା ହୃଦୟଙ୍ଗମ କରିହେବ।

ରାମାନୁଜନ୍‌ଙ୍କ ଟିପା ଖାତାର ପରିସର ଅତି ବ୍ୟାପକ ଥିଲା। ତେବେ ଏହି ପରିସର ପ୍ରାୟ ପୂରା ଶୁଦ୍ଧଗଣିତ ସମ୍ପର୍କିତ ଥିଲା। ଭବିଷ୍ୟତରେ ତାହାର କିଛି ପ୍ରାୟୋଗିକ ମୂଲ୍ୟ ରହିବ କି ନାହିଁ ସେ ବିଷୟରେ ରାମାନୁଜନ୍‌ଙ୍କର ଟିକିଏ ବି ଚିନ୍ତା ନ ଥିଲା। ମାଙ୍କଡ଼-ପିଜୁଳି ଅଙ୍କ କଷା ବିଷୟରେ ସେ ହୁଏତ ହସିଥା'ନ୍ତେ, କିନ୍ତୁ ଏହା ନିଶ୍ଚିତ ଭାବରେ କୁହାଯାଇପାରେ ଯେ ଦକ୍ଷିଣ ଭାରତରେ ଧାନ ଉତ୍ପାଦନ ବଢ଼ାଇବା ଦିଗରେ ସେ କେବେ ଚିନ୍ତା କରି ନ ଥିଲେ। ଏପରିକି ତାତ୍ତ୍ୱିକ ପଦାର୍ଥ ବିଜ୍ଞାନ କ୍ଷେତ୍ରରେ କିଛି ପ୍ରଭାବ ପକାଇବା ମଧ୍ୟ ତାଙ୍କ ଚିନ୍ତାର ବାହାରେ ଥିଲା, କାରଣ ତାଙ୍କ ପାଇଁ ତାହା ବି ଥିଲା ପ୍ରାୟୋଗିକ।

ଗଣିତ ପାଇଁ ହିଁ ସେ ଗଣିତ କରୁଥିଲେ। ରାମାନୁଜନ୍ ଜଣେ କଳାକାର ଥିଲେ। ସଂଖ୍ୟା ଓ ସେମାନଙ୍କର ସମ୍ପର୍କ ବୁଝାଉଥିବା ଗାଣିତିକ ଧାରା ତାଙ୍କ ପାଇଁ କଳାର ମାଧ୍ୟମ ଥିଲା।

ରାମାନୁଜନ୍‌ଙ୍କ ଟିପା ଖାତାଗୁଡ଼ିକର ନିଜସ୍ୱ ବୈଶିଷ୍ଟ୍ୟ ରହିଥିଲା। ସାଧାରଣ ଭାବରେ ବ୍ୟବହୃତ ଅନେକ ଗାଣିତିକ ରାଶି ସେଥିରେ ନୂଆ ଅର୍ଥ ନେଉଥିଲେ। ସାଧାରଣ ଅର୍ଥରେ ଯାହା 'ଉଦାହରଣ' ରାମାନୁଜନ୍‌ଙ୍କ ପାଇଁ ତାହା ଏକ ନୂଆ ଉପପାଦ୍ୟ ହୋଇପାରେ। ଗୋଟିଏ ଉପପାଦ୍ୟରୁ ବାହାରୁଥିବା ଅନ୍ୟ ଏକ ଉପପାଦ୍ୟ - ଉପପ୍ରମେୟ - ସାଧାରଣତଃ ସ୍ୱତନ୍ତ୍ର ପ୍ରମାଣ ଦରକାର କରେନାହିଁ। କିନ୍ତୁ ରାମାନୁଜନ୍‌ଙ୍କ ପାଇଁ ବେଳେ ବେଳେ ତାହା ହୁଏ ଏକ ବ୍ୟାପକୀକରଣ ଯାହାର ନିଜସ୍ୱ ପ୍ରମାଣ ଦରକାର ପଡ଼େ। ତାଙ୍କର ଗାଣିତିକ ସଙ୍କେତଗୁଡ଼ିକ ଅନ୍ୟମାନେ ବ୍ୟବହାର କରୁଥିବା ସଙ୍କେତଠାରୁ ପ୍ରାୟ ଅଲଗା ହେଉଥିଲା।

ଗଣିତରେ x ଓ y ଆଦି ସଙ୍କେତର ବ୍ୟବହାର ପାଇଁ କିଛି ନିର୍ଦ୍ଦିଷ୍ଟ ନିୟମ ନାହିଁ। କୌଣସି ଏକ ସମୀକରଣ କିଛି ଗଭୀର ତତ୍ତ୍ୱକୁ ବୁଝାଉଥିଲେ ମଧ୍ୟ ସେଥିରେ ରହିଥିବା ସଙ୍କେତ ସବୁ ମନଇଚ୍ଛା ବଛାଯାଇପାରେ। ତଥାପି ଏକ ପରିପକ୍ୱ ବିଷୟ କ୍ଷେତ୍ରରେ ବିଭିନ୍ନ ସଙ୍କେତର ବ୍ୟବହାର

କିଛି ନିର୍ଦ୍ଦିଷ୍ଟ ଢାଞ୍ଚାରେ ପଡ଼ିଯାଏ। କିଛି ନୂଆ କାମ ଆରମ୍ଭ କଲାବେଳେ ଜଣେ ହୁଏତ ଗ୍ରୀସୀୟ ଅକ୍ଷର $\pi$ କୁ ଏକ ନିର୍ଦ୍ଦିଷ୍ଟ ଚଳର ସଙ୍କେତ ଭାବରେ ବାଛିଥିଲା। ସମୟକ୍ରମେ ତାହାକୁ ସମସ୍ତେ ସେହି ନିର୍ଦ୍ଦିଷ୍ଟ ଅର୍ଥରେ ବ୍ୟବହାର କରିବାକୁ ଲାଗିଲେ। ଫଳରେ ସେହି ଐତିହାସିକ 'ଦୁର୍ଘଟଣା'ର ଫଳସ୍ୱରୂପ ତାହା ଗାଣିତିକ ଲିପିରେ ସେହି ବିଶେଷ ଅର୍ଥରେ ରହିଗଲା।

ସ୍କୁଲ ବୀଜଗଣିତ ପାଠରେ ଉପବୃତ୍ତକୁ ବୁଝାଉଥିବା ଦ୍ୱିଘାତ ସମୀକରଣର ଦୁଇ ମୂଳର ମୂଲ୍ୟ ହୁଏ -

$$x = \frac{-b \pm \sqrt{b^2 - 4ac}}{2a}$$

ଯେଉଁଠି a, b, c ତିନିଟି ସ୍ଥିରାଙ୍କ ଏବଂ x ଗୋଟିଏ ଚଳ। ଏହି ସମୀକରଣଟି ଉପରର ରୂପରେ ଏତେ କାଳରୁ ସବୁଠାରେ ଚଳିଆସିଛି ଯେ ତା'ର ଅନ୍ୟ କେଉଁ ରୂପ କଳ୍ପନା କରିବା ମଧ୍ୟ କଷ୍ଟର କଥା। କିନ୍ତୁ a, b, c ବଦଳରେ p, q, r କିମ୍ବା m1, m2, m3 ବ୍ୟବହାର ନ କରିବାର କୌଣସି ବି କାରଣ ନାହିଁ। ବର୍ଗମୂଳ ଚିହ୍ନ ତଳେ ଥିବା ଅଙ୍କଟିକୁ ଦୁଇଟି ବର୍ଗର ଫେଡ଼ାଣ ଭାବରେ ଦେଖି ତାକୁ ଦୁଇଟି ରାଶିରେ ଭାଗ କରାଯାଇପାରେ। ବର୍ଗମୂଳଟି ମଧ୍ୟ ଭଗ୍ନାଂଶ ଘାତ ରୂପରେ ଦେଖାଯାଇପାରେ। ଦୁଇ ମୂଳର ସମାଧାନ ପାଇଁ ଦୁଇଟି ଅଲଗା ସମୀକରଣ ମଧ୍ୟ ଦିଆଯାଇପାରେ। ଏପରି କଲେ ଫଳ ହେବ -

$$x_1 = -{}^1\!/_2 \frac{m_2}{m_1} + \frac{\left[\left(m_2 + 2\sqrt{m_1 m_3}\right)\left(m_2 - 2\sqrt{m_1 m_3}\right)\right]^{1/2}}{2m_1}$$

$$x_2 = -{}^1\!/_2 \frac{m_2}{m_1} - \frac{\left[\left(m_2 + 2\sqrt{m_1 m_3}\right)\left(m_2 - 2\sqrt{m_1 m_3}\right)\right]^{1/2}}{2m_1}$$

ଏତେ ଗାଣିତିକ କସରତ ପରେ ମିଳିଥିବା ଏହି ସମୀକରଣ ଦୁଇଟି ଶେଷ ଫଳ ଦୃଷ୍ଟିରୁ ପ୍ରଥମ ସମୀକରଣ ସହିତ ପୂରା ସମାନ। କିନ୍ତୁ ନୂଆ ରୂପରେ ଏହାକୁ ଚିହ୍ନିବା ଅସମ୍ଭବ। ପ୍ରଥମ ରୂପ ବିଷୟରେ ଜାଣି ନ ଥିବା ଲୋକ କେହି ଯଦି ଦ୍ୱିତୀୟ ରୂପଟି ନିଜେ ବାହାର କରେ ତେବେ ଅନ୍ୟମାନଙ୍କୁ ତାହା ବୁଝାଇବା କଷ୍ଟକର ହେବ। ଅଣପାରମ୍ପରିକ ବା ଅଦ୍ଭୁତ କହି ସାଧାରଣ ଗଣିତଜ୍ଞମାନେ ତାକୁ ଏଡ଼ାଇ ମଧ୍ୟ ଯାଇପାରନ୍ତି।

ରାମାନୁଜନ୍‌ଙ୍କ ସମସାମୟିକ ହୁଅନ୍ତୁ ବା ବର୍ତ୍ତମାନ ସମୟର ହୁଅନ୍ତୁ ଗଣିତଜ୍ଞମାନେ ତାଙ୍କ ଗଣିତ ଖାତାଗୁଡ଼ିକୁ ଏହିଭଳି ହିଁ ଦେଖିଥା'ନ୍ତେ। ଉପବୃତ୍ତାକାର ଫଳନ କ୍ଷେତ୍ରରେ 'ମାପାଙ୍କ' ହେଉଛି ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥିରାଙ୍କ। ତାହା ପାଇଁ ସମସ୍ତେ $k$ ବ୍ୟବହାର କରନ୍ତି, କିନ୍ତୁ ରାମାନୁଜନ୍ $\sqrt{\alpha}$ ବା

$\sqrt{x}$ ବ୍ୟବହାର କରିଥିଲେ। ରାମାନୁଜନ୍‌ଙ୍କ ନୋଟ ଖାତାରେ କେତେ ଜାଗାରେ $n$ ପ୍ରସାରିତ ଚଳ (କଣ୍ଟିନିଉଡ୍ ଭାରିଏବଲ୍) ପାଇଁ ବ୍ୟବହାର କରାଯାଇଛି, କିନ୍ତୁ ଗଣିତଜ୍ଞମାନେ ଏହି ବ୍ୟବହାର କେବେହେଲେ କରନ୍ତିନାହିଁ। $\pi(x)$ ଲେଖିଲେ ସମସ୍ତେ ବୁଝନ୍ତି ଯେ ତାହା ହେଉଛି ପ୍ରଥମ $x$ଟି ପୂର୍ଣ୍ଣସଂଖ୍ୟା ଭିତରେ ଥିବା ମୌଳିକ ସଂଖ୍ୟାମାନଙ୍କର ସଂଖ୍ୟା, କିନ୍ତୁ ରାମାନୁଜନ୍‌ଙ୍କ ଖାତାରେ ଏହା ଆଦୌ ଦେଖାଯାଏନାହିଁ।

ରାମାନୁଜନ୍ ଯାହା ଲେଖୁଥିଲେ ତାହା ଭୁଲ ନ ଥିଲା, କେବଳ ଅସ୍ୱାଭାବିକ ଥିଲା। ଅନ୍ୟ ଗଣିତଜ୍ଞମାନଙ୍କ ସହ ଯୋଗାଯୋଗ ନ ଥିବା ଏହାର ଏକ କାରଣ ହୋଇପାରେ। ଆହୁରି ମଧ୍ୟ ସେ ଗଣିତ ବିଷୟରେ ବାହାରୁଥିବା ବିଭିନ୍ନ ଗବେଷଣା ପତ୍ରିକା ପଢ଼ିବାକୁ ପାଉ ନ ଥିଲେ ବା କୌଣସି ଗାଣିତିକ ଅନୁଷ୍ଠାନର ସଦସ୍ୟ ନ ଥିଲେ। ରାମାନୁଜନ୍‌ଙ୍କ କାମକୁ ବୁଝୁଥିବା ଓ ବୁଝାଉଥିବା ଗଣିତଜ୍ଞମାନେ ଏବେ ଲେଖନ୍ତି, "ରାମାନୁଜନ୍‌ଙ୍କ ସଙ୍କେତରେ ଲେଖା..." ବା "ରାମାନୁଜନ୍‌ଙ୍କ ଅବଧାରଣାକୁ ସାଧାରଣ ଗାଣିତିକ ଲିପିରେ ଲେଖିଲେ..." କିମ୍ବା ସେହିଭଳି ଅନ୍ୟ କିଛି ଲେଖି ସେସବୁର ବ୍ୟାଖ୍ୟା କରନ୍ତି।

କହିବାକୁ ଗଲେ ରାମାନୁଜନ୍ ଥିଲେ ବିବର୍ତ୍ତନର ମୁଖ୍ୟ ସ୍ରୋତରୁ ବାଟ ଭାଙ୍ଗି ଅଲଗା ରହିଯାଇଥିବା ଜୀବଟିଏ ଭଳି। ଅଷ୍ଟ୍ରେଲୀୟ ଏକିଡ୍ନା ବା ଗାଲାପାଗୋସ୍ କଇଁଛ ଭଳି ସେ ନିଜର ଏକ କୋଣରେ ବାହାର ଦୁନିଆଠାରୁ ଅଲଗା ହୋଇ ରହିଯାଇଥିଲେ।

ରାମାନୁଜନ୍‌ଙ୍କ ଗଣିତ ଖାତାର ସଙ୍କେତଭରା ଲେଖା ଯଦି ଅନ୍ୟ ଗାଣିତିକଙ୍କ ପାଇଁ ଅଲଗା ପ୍ରକାରର ଥିଲା, ସାଧାରଣ ଲୋକଙ୍କ ପାଇଁ ତାହା କେଉଁ ଅଜଣା ବିଦେଶୀ ଭାଷା ମନେ ହେଉଥିଲା। ତଥାପି ସେସବୁ ଲେଖା ଯେତେ ରହସ୍ୟମୟ ମନେ ହେଉଥିଲେ ବି ସେଥିରେ ବର୍ଣ୍ଣିତ ଅବଧାରଣାଗୁଡ଼ିକ ଆଶ୍ଚର୍ଯ୍ୟଜନକ ଭାବରେ ସ୍ପଷ୍ଟ ଥିଲା।

ଉଦାହରଣ ସ୍ୱରୂପ ରାମାନୁଜନ୍‌ଙ୍କ ଖାତାରେ ଭରି ରହିଥିବା $f(\mathrm{x})$ - ଏଫ୍ ଅଫ୍ ଏକ୍ସ - ଓ ଅନ୍ୟ ଫଳନ ସଙ୍କେତ (ଫଙ୍କ୍ସନାଲ୍ ନୋଟେସନ୍)ର କଥା ଦେଖାଯାଉ। ଏଠାରେ $f(\mathrm{x})$ ର ଅର୍ଥ $f$ ଓ $x$ ଗୁଣନ ନୁହେଁ, ବରଂ $x$ର କିଛି ଫଳନ ବା ଯାହା $x$ ଉପରେ ନିର୍ଭର କରେ। ଫଳନର ସ୍ୱରୂପ ଜାଣିଲେ ତାହା $x$ ଉପରେ କିପରି ନିର୍ଭର କରେ ତାହା ଜାଣି ହେବ। ଯଦି କୁହାଯାଏ ଯେ $f(\mathrm{x}) = 3\ \mathrm{x} + 1$ ତେବେ ହିସାବ କରି ଦେଖିହେବ ଯେ $x$ ର ମୂଲ୍ୟ 1 ହେଲେ $f(\mathrm{x})$ର ମୂଲ୍ୟ 4 ହେବ ଏବଂ $x = 1$ ହେଲେ $f(\mathrm{x}) =$ ୭ ହେବ। ଗଣିତଜ୍ଞମାନେ କିନ୍ତୁ ନିର୍ଦ୍ଦିଷ୍ଟ ମୂଲ୍ୟ ବସାଇ ହିସାବ କରିବା ବଦଳରେ ଫଳନ ସଙ୍କେତ ବ୍ୟବହାରକୁ ପସନ୍ଦ କରନ୍ତି। କାରଣ ତାହା ସେମାନଙ୍କୁ ଗୋଟିଏ ନିର୍ଦ୍ଦିଷ୍ଟ ସମସ୍ୟା ସହିତ ବାନ୍ଧିହୋଇ ରହିବାରୁ ମୁକ୍ତ କରେ ଏବଂ ବ୍ୟାପକତର ଅମୂର୍ତ୍ତ ପରିସରରେ କାମ କରିବାକୁ ସୁଯୋଗ ଦିଏ।

ସେହିଭଳି 'ଫି ଅଫ୍ ଏ, ବି' ବା $\phi(a,b)$ ର ଅର୍ଥ ହେବ ଯେ ନିର୍ଦ୍ଦିଷ୍ଟ କରାଯାଇ ନ ଥିବା ଫଳନ $\phi$, ଚଳ a ଓ b ର ମୂଲ୍ୟ ଉପରେ ନିର୍ଭର କରେ। ଚଳଗୁଡ଼ିକର ମୂଲ୍ୟ ବଦଳାଇ ଫଳନର ମୂଲ୍ୟ ବଦଳାଯାଇ ପାରେ। କିନ୍ତୁ ଅଧିକାଂଶ ସମୟରେ ଗଣିତଜ୍ଞମାନେ ସାଙ୍କେତିକ ଦୁନିଆରେ ରହି

ସାର୍ବତ୍ରିକ କ୍ଷେତ୍ରରେ କାମ କରନ୍ତି। ଦରକାର ଅନୁସାରେ ସେମାନେ ଫଳନର ଏକ ନିର୍ଦ୍ଦିଷ୍ଟ ଦୃଷ୍ଟାନ୍ତ ନେଇ ତା'ର ଅସାଧାରଣ ଗୁଣଧର୍ମ ଆବିଷ୍କାର କରିବାକୁ ଚେଷ୍ଟା କରନ୍ତି। ଏହାର ଏକ ଉଦାହରଣ ରହିଛି ରାମାନୁଜନ୍‌ଙ୍କ ପ୍ରଥମ ନୋଟ୍ ଖାତାର 75 ପୃଷ୍ଠାରେ। ପୂର୍ବର ଏକ ଉପପାଦ୍ୟକୁ ଆଧାର କରି ସେ ଲେଖିଛନ୍ତି -

$$\phi(x)+\phi(-x)=\tfrac{1}{2}\phi(-x^2)$$

ପ୍ରଥମେ $x = \frac{1}{2}$ ନେଇ ଏହାର ମୂଲ୍ୟ ବାହାର କରାଯାଉ, ପୁଣି $x = -\frac{1}{2}$ ବସାଇ ମିଳୁଥିବା ମୂଲ୍ୟକୁ ପ୍ରଥମ ମୂଲ୍ୟ ସହ ମିଶାଇ ଦିଆଯାଉ। $x = -\frac{1}{4}$ ହେଲେ ଯେଉଁ ମୂଲ୍ୟ ମିଳିବ, ତାହା ଆଗର ମିଶାଣ ଫଳର ଅଧା ହେବ। କିନ୍ତୁ ରାମାନୁଜନ୍‌ଙ୍କ ସୂତ୍ର ଏହି ହିସାବକୁ ବ୍ୟାପକତର ରୂପରେ ଦେଖାଉଛି ଏବଂ ସେହି ଫଳନର ଗାଣିତିକ ବିଶେଷତା ଦେଖାଉଛି। ଖୁବ୍ କମ୍ ଶବ୍ଦରେ ତାହା ସୂତ୍ର ମାଧ୍ୟମରେ ହୋଇପାରୁଛି।

ଏହି ଅଳ୍ପ ଶବ୍ଦରେ ଅନେକ କଥା ପ୍ରକାଶ କରୁଥିବା ଗୁଣ ଯୋଗୁ ରାମାନୁଜନ୍ ଓ ଅନ୍ୟ ଗଣିତଜ୍ଞମାନେ ଏଭଳି ବିଚିତ୍ର ଦେଖାଯାଉଥିବା ସଙ୍କେତମାନ ବ୍ୟବହାର କରନ୍ତି। ପୃଷ୍ଠା 86 ଓ ଆହୁରି କେତେ ଜାଗାରେ ରାମାନୁଜନ୍ ଯେତେବେଳେ Σ ଲେଖନ୍ତି ତାହା ବୁଝାଏ ଯେ 'ସଂଖ୍ୟାଗୁଡ଼ିକର ମିଶାଣ ଫଳ...'। ତଳ ସୂତ୍ରର ଅର୍ଥ ହେବ 'xର kଘାତ ବିଭକ୍ତ kର ମିଶାଣ ଫଳ, ଯେଉଁଠି kର ମୂଲ୍ୟ 1ରୁ ଅସୀମ ଯାଏଁ ବଢ଼ିଚାଲିବ।' k ଜାଗାରେ 1, 2, 3… ବସାଇ ଅସୀମ ଯାଏଁ ହିସାବ କରି ଚାଲିବା ପରେ ମିଳୁଥିବା ସବୁ ସଂଖ୍ୟାର ମିଶାଣଫଳ ବାହାର କରାଯିବ।

$$\sum_{k=1}^{\infty}\frac{x^k}{k}$$

ଏହାର ଅନ୍ୟ ରୂପ ହେବ

$$x+\frac{x^2}{2}+\frac{x^3}{3}+\frac{x^4}{4}+\cdots$$

ଗଣିତରେ ଏହିଭଳି ଅନେକ ସରଳ ଅବଧାରଣା ବିଚିତ୍ର ଦେଖା ଯାଉଥିବା ସାଙ୍କେତିକ ସୂତ୍ର ପଛରେ ଲୁଚି ରହିଥା'ନ୍ତି। ଧନାତ୍ମକ ପରେ ଋଣାତ୍ମକ ପରେ ଧନାତ୍ମକ... ପଦମାନ ରହିଥିବା ସଂଖ୍ୟା ଶ୍ରେଣୀଟିଏ ଦରକାର? ତାହା ପାଇବା ବେଶ୍ ସହଜ, ସୂତ୍ରରେ $(-1)^k$ ପଦଟି ଯୋଡ଼ିଦେଲେ ତାହା ହୋଇଯିବ। ପୂର୍ଣ୍ଣସଂଖ୍ୟା କ୍ରମରେ k ଏକ ଏକ କରି ବଢ଼ିଚାଲିଲେ ତା'ର ମୂଲ୍ୟ ଆପେ ଆପେ –ରୁ +ରୁ – ହୋଇ ବଦଳି ଚାଲିବ, କାରଣ ବିଯୁକ୍ତ ଗୁଣନ ବିଯୁକ୍ତ ସମାନ ଯୁକ୍ତ ଏବଂ ବିଯୁକ୍ତ ଗୁଣନ ଯୁକ୍ତ ସମାନ ବିଯୁକ୍ତ ହୁଏ। କେବଳ ଅଯୁଗ୍ମ ସଂଖ୍ୟାର କ୍ରମ ଦରକାର? $2n+1$ ପଦଟି ଏହା ଯୋଗାଇଦେବ। nର ମୂଲ୍ୟ 0 ହେଲେ $2n+1=1$ ହେବ, $n=1$ ହେଲେ $2n+1=3$ ହେବ, $n=2$ ହେଲେ $2n+1=5$...।

ସଂକ୍ଷିପ୍ତ ଓ ସୁନ୍ଦର।

ଭାଷାଜ୍ଞାନ ନ ଥିଲେ ଦରଖାସ୍ତ ଖଣ୍ଡେ ଲେଖିହେବନାହିଁ କି ଗଳ୍ପ ଉପନ୍ୟାସ ଲେଖିହେବନାହିଁ। କିନ୍ତୁ ଉପେନ୍ଦ୍ର ଭଞ୍ଜ ବା ଫକୀର ମୋହନଙ୍କ ଭଳି ଲେଖିବା ପାଇଁ କେବଳ ଭାଷା ଜ୍ଞାନ ଯଥେଷ୍ଟ ହେବନାହିଁ। ରାମାନୁଜନ୍‌ଙ୍କ ଖାତା କ୍ଷେତ୍ରରେ ତାହା ହିଁ ସତ ଥିଲା। ତାଙ୍କର ଗାଣିତିକ ସଙ୍କେତ ଓ ସୂତ୍ରକୁ ପଢ଼ିବା ଓ ସେସବୁର ଗାଣିତିକ ହିସାବକୁ ବୁଝିବା ଗଣିତଜ୍ଞମାନଙ୍କ ପାଇଁ ବଡ଼ କଥା ନ ଥିଲା। କିନ୍ତୁ ସେହି ସୂତ୍ର ଓ ଉପପାଦ୍ୟ ସବୁର ପଛରେ ଥିବା ତତ୍ତ୍ୱ ଓ ଅର୍ଥକୁ ବୁଝିବା ହିଁ ଅସଲ କାମ ଥିଲା।

ଆଉ ସେ କାମ ଥିଲା ବିଶାଳ। ସୂତ୍ରର ସମାଧାନ କରିବା, ଗାଣିତିକ ଧାରାରେ ସେସବୁର ହିସାବ କରିବା, ବିଶେଷ ପରିସ୍ଥିତିରେ ସତ୍ୟତା ପରୀକ୍ଷା କରିବା, ଜଣାଥିବା ଉପପାଦ୍ୟକୁ ନୂଆ କ୍ଷେତ୍ରରେ ପ୍ରୟୋଗ କରିବା... ଭଳି ଅନେକ କାମ। ସୂତ୍ରମାନଙ୍କରେ ବିଭିନ୍ନ ସଂଖ୍ୟା ବସାଇ ହିସାବ କରିବା ମଧ୍ୟ ଦରକାର ପଡୁଥିଲା। କାରଣ ରାମାନୁଜନ୍‌ଙ୍କ ପାଇଁ "ପ୍ରତ୍ୟେକ ପରିମେୟ ସଂଖ୍ୟା ଏକ ବ୍ୟକ୍ତିଗତ ସାଥୀ ଥିଲା।" ସାଙ୍ଗସାଥୀଙ୍କ ମେଳରେ ରହିବାର ଖୁସି ଭଳି ସଂଖ୍ୟାମାନଙ୍କ ସହିତ ସମୟ କଟାଇବା ରାମାନୁଜନ୍‌ଙ୍କ ପାଇଁ ଖୁସିର କଥା ଥିଲା।

ପ୍ରକାଶିତ ନୋଟ୍ ଖାତାରେ ମଧ୍ୟ ଦେଖାଯାଏ ଯେ ଅନ୍ୟମାନେ ଯେଉଁ ସୂତ୍ରକୁ ସାଙ୍କେତିକ ରୂପରେ ଛାଡ଼ିଦେଇଥା'ନ୍ତେ, ରାମାନୁଜନ୍ ସେଠାରେ ସଂଖ୍ୟା ବସାଇ ହିସାବ କରିଛନ୍ତି ଏବଂ ଫଳନଗୁଡ଼ିକ କିପରି 'ଆଚରଣ' କରୁଛନ୍ତି ତାହା ସେ ଦେଖିବାକୁ ଚେଷ୍ଟା କରିଛନ୍ତି। କେତେ ପୃଷ୍ଠାରେ କମ୍ ସଙ୍କେତ ରହିଥିବା ବେଳେ ବିଭିନ୍ନ ସଂଖ୍ୟାରେ ସେଗୁଡ଼ିକ ଭରି ରହିଛନ୍ତି। ଫଳରେ ତାହା ଉଚ୍ଚ ସ୍ତରର ଗାଣିତିକ ଗ୍ରନ୍ଥ ବଦଳରେ ଛୋଟ ପିଲାଙ୍କ ଅଙ୍କ ଖାତା ଭଳି ଦେଖାଯାଉଛି। ତାହା ଥିଲା ଗଣିତରେ ହାତ କାଦୁଅ କରିବା ଭଳି କଥା, ଆଉ ରାମାନୁଜନ୍ ତାହା ବ୍ୟାପକ ଭାବରେ କରିଛନ୍ତି। ରାମାନୁଜନ୍‌ଙ୍କ ଉପରେ ଗବେଷଣା କରୁଥିବା ବି. ଏମ୍. ୱିଲ୍‌ସନ୍ କୁହନ୍ତି ଯେ ସଂଖ୍ୟାତତ୍ତ୍ୱ ବିଷୟରେ କିଛି ଗବେଷଣାଲବ୍ଧ ତତ୍ତ୍ୱ ଦେବା ଆଗରୁ ଅନେକ ସମୟରେ ରାମାନୁଜନ୍ ସାଂଖ୍ୟିକ ଫଳାଫଳର ସାରଣୀମାନ ଦିଅନ୍ତି। ସେହି ସାରଣୀଗୁଡ଼ିକ ଏତେ ବ୍ୟାପକ ହୋଇଥାଏ ଯେ ଅନ୍ୟ କେହି ସେତେ ହିସାବ କରିବାକୁ ଡରି ଛାଡ଼ିଦେବ।

ସାଂଖ୍ୟିକ ହିସାବ ପାଇଁ ତାଙ୍କର ସମ୍ମାନ ନିଶ୍ଚୟ ରହିଥିଲା, ତଥାପି କେହି କେହି ତାକୁ କିଛି ମାତ୍ରାରେ ବିଦ୍ରୂପାତ୍ମକ ଦୃଷ୍ଟିରେ ଦେଖୁଥିଲେ। ସେମାନେ ଆଶ୍ଚର୍ଯ୍ୟ ହେଉଥିଲେ ଯେ ରାମାନୁଜନ୍‌ଙ୍କ ଭଳି କେହି ଜଣେ ଏତେ ତଳ ସ୍ତରର ଅଙ୍କ କଷାରେ ସମୟ ଖର୍ଚ୍ଚ କରିବ। କିନ୍ତୁ ରାମାନୁଜନ୍ ତାହା କରୁଥିଲେ ଯାହା ବଡ଼ କଳାକାରମାନେ କରନ୍ତି - ବାସ୍ତବ ଉପାଦାନ ସହିତ ପ୍ରତ୍ୟକ୍ଷ ସମ୍ପର୍କ ଯୋଡ଼ିବାର କାମ। ରାମାନୁଜନ୍ ସଂଖ୍ୟାମାନଙ୍କ ସହିତ ଅନ୍ତରଙ୍ଗ ବୁଝାମଣା ସୃଷ୍ଟି କରୁଥିଲେ। ଠିକ୍ ଯେପରି ଜଣେ ଚିତ୍ରକର ତରତର ନ ହୋଇ ଦେଖି ଭାବି ରଙ୍ଗ ସବୁ ମିଶାଏ ଏବଂ ଜଣେ ସଙ୍ଗୀତଜ୍ଞ ତାଳ ରାଗ ଉପରେ ଅସରନ୍ତି ଅଭ୍ୟାସ ଚଳାଇରଖେ।

ଏହା ତାଙ୍କ ଅନ୍ତର୍ଦୃଷ୍ଟିକୁ ସାହାଯ୍ୟ କରୁଥିଲା। ଠିକ୍ ଯେପରି ଗବେଷଣାଗାରରେ ରାତି କଟାଉଥିବା ଜୀବବିଜ୍ଞାନୀ ଅନ୍ୟମାନଙ୍କ ପାଇଁ ଅଜଣା ଥିବା କିଛି କଥା ଜାଣିପାରେ, କାରଣ ତାହା

ସେ ରାତିରେ ଦେଖିପାରେ। ଏହି ଧାରାରେ ଗଣିତ ତାଙ୍କର ଅନ୍ତର୍ଦୃଷ୍ଟି ବଳରେ ସାଙ୍ଗମାନଙ୍କୁ ଅତି କଷ୍ଟ ମନେ ହେଉଥିବା ସ୍କୁଲ ଗଣିତ ସବୁକୁ ଦେଖୁ ଦେଖୁ ସେ ସମାଧାନ କରି ପାରୁଥିଲେ। ତେଣୁ ତାଙ୍କୁ କଷ୍ଟ ଲାଗୁଥିବା ଗଣିତ ସବୁର ସମାଧାନରେ ସେ ଲାଗୁଥିଲେ। ତାଙ୍କର ସଫଳତା କେବଳ ଆକସ୍ମିକ ପ୍ରେରଣାରୁ ଆସୁ ନ ଥିଲା, ତାହା କଠୋର ପରିଶ୍ରମର ଫଳ ଥିଲା। ମଝିରେ ମଝିରେ ସେ ଭୁଲ କରୁଥିଲେ, ସୁଧାରୁଥିଲେ। ଏସବୁ ପାଇଁ ବେଶ୍ ସମୟ ଲାଗୁଥିଲା।

ତାହା ହିଁ ଥିଲା ଏକ ବିଡ଼ମ୍ବନା। ସ୍କୁଲରେ ଫେଲ ହେବା ପରେ ତାଙ୍କ ପାଖରେ ଯଥେଷ୍ଟ ପରିମାଣରେ ରହିଥିବା ଏକମାତ୍ର ଜିନିଷ ଥିଲା ସମୟ।

## 6. ଈଶ୍ୱର ଚିନ୍ତା

1807 ମସିହାରେ ରାମାନୁଜନ୍ ଶେଷ ଥର ପାଇଁ ଏଫ୍. ଏ. ପରୀକ୍ଷାରେ ଫେଲ ହୋଇ ଭାରତୀୟ ଶିକ୍ଷା ବ୍ୟବସ୍ଥାର ଯନ୍ତ୍ରଣାଦାୟକ ଅନମନୀୟତାର ଅନୁଭୂତି ପାଇବାର ଶହେ ବର୍ଷ ଆଗର କଥା। ଭାରତ ବିଷୟରେ ଅଭିଜ୍ଞ ୱିଲିଅମ୍ ଥାକରେ ନାମକ ଜଣେ ଇଂରେଜ ଅନୁବାଦକ, ବିଚାରପତି ଓ ପ୍ରଶାସକ 'କନ୍ନଡ଼, ମାଲାବାର ଓ ସମର୍ପିତ ଜିଲ୍ଲା ସମୂହ ସମ୍ପର୍କିତ ରିପୋର୍ଟ' ଚୂଡ଼ାନ୍ତ କରିଥିଲେ। ସେଥିରେ ସେ ଲେଖିଥିଲେ:

> ଇଂଲଣ୍ଡରେ ଏହା ଉଚିତ ମନେ କରାଯାଏ ଯେ ଦେଶର ଉତ୍ପାଦନର ଏକ ବଡ଼ ଅଂଶ କିଛି ସ୍ୱଚ୍ଛଳ ପରିବାରଙ୍କ ପାଇଁ ଖର୍ଚ୍ଚ କରାଯାଏ, ଯେଉଁ ପରିବାର ସବୁରୁ ସାଂସଦ, ବିଦ୍ୱାନ ଓ ବୀରପୁରୁଷମାନେ ବାହାରି ପାରିବେ। ଅର୍ଥାତ, ସଂସଦ, ସେନା ବାହିନୀ ଏବଂ ବିଜ୍ଞାନ ତଥା ଅନ୍ୟ ବୌଦ୍ଧିକ କ୍ଷେତ୍ରରେ କାମ କରି ଦେଶର ସେବା କରୁଥିବା ଧନୀ ସମ୍ଭ୍ରାନ୍ତ ବର୍ଗ ଭୂରାଜସ୍ୱର ଏକ ବଡ଼ ଭାଗ ପାଇବା ଉଚିତ। ଏହା ତାଙ୍କୁ ଅବସର ସମୟ ଯୋଗାଇବା ସହିତ ସ୍ୱାଧୀନତା ଓ ଉଚ୍ଚ ମୂଲ୍ୟବୋଧସମ୍ପନ୍ନ ଜୀବନ କଟାଇବାରେ ସାହାଯ୍ୟ କରିବ ଯାହା ଫଳରେ ସେମାନେ ଇଂଲଣ୍ଡକୁ ଗୌରବର ଶୀର୍ଷ ସ୍ଥାନରେ ପହଞ୍ଚାଇ ପାରିବେ। ଦୀର୍ଘ ସମୟ ଧରି ତାହା ସେମାନେ ପାଉଥା'ନ୍ତୁ। କିନ୍ତୁ ଭାରତରେ ବିଶାଳ ସମ୍ପତ୍ତିର ଅଧିକାରୀମାନେ କେବେ କେବେ ଦେଖାଉଥିବା ଅବିନୀତ ଉତ୍ସାହ, ସ୍ୱାଧୀନ ଚେତନା ଓ ଗଭୀର ଚିନ୍ତନ ଆଦିକୁ ଦବାଇ ରଖିବା ଜରୁରୀ। ଏଗୁଡ଼ିକ ଆମର କ୍ଷମତା ଓ ସ୍ୱାର୍ଥର ବିରୋଧ କରନ୍ତି। ପ୍ରାକୃତିକ ପରିସ୍ଥିତି ଏବଂ ସବୁ ଶାସକଙ୍କର ଅନୁଭୂତି ଦୃଷ୍ଟିରୁ ଏହି ବିଷୟରେ ଅଧିକ କହିବା ଦରକାର ନୁହେଁ। ଏଠାରେ ଆମେ ସେନାଧକ୍ଷ, କୁଟନୀତିଜ୍ଞ ବା ସାଂସଦ ଚାହୁଁନାହୁଁ, ଚାହୁଁଛୁ କର୍ମଠ ଶ୍ରମିକ। ଆମେ ଯଦି ଉଚ୍ଚାକାଙ୍କ୍ଷୀ ଓ ଅଦମ୍ୟ ଉତ୍ସାହର ବ୍ୟକ୍ତି ଖୋଜୁଥାଉ ତେବେ ସାରା ଦାକ୍ଷିଣାତ୍ୟକୁ ଭରିଦେବା ପାଇଁ ଯଥେଷ୍ଟ ସଂଖ୍ୟାର ଲୋକ ମାଲାବାରରେ ମିଳିବେ।

ଥାକରେଙ୍କ ଚିନ୍ତା ଭାରତ ପାଇଁ ଇଂରେଜ ଶିକ୍ଷାନୀତିରେ ପ୍ରତିଫଳିତ ହେଉଥିଲେ ତା'ର ବଡ଼ ସାକ୍ଷୀ ହୁଅନ୍ତେ ରାମାନୁଜନ୍। ତାଙ୍କ କ୍ଷେତ୍ରରେ 'ଅବିନୀତ ଉତ୍ସାହ, ସ୍ୱାଧୀନତା ଓ ଗଭୀର ଚିନ୍ତନ'କୁ ଦବାଇବା ପାଇଁ କଲେଜ ଏକ ବ୍ୟବସ୍ଥା ଭଳି ମନେହେଉଥିଲା। ବାସ୍ତବରେ, ଏଭଳି ଏକ ନିଶ୍ଚିତ ଓ ବିଶେଷ ପ୍ରତିଭାକୁ ଆଗେଇ ନେବାରେ ଭାରତୀୟ ଉଚ୍ଚ ଶିକ୍ଷା ବ୍ୟବସ୍ଥାର ବିଫଳତା ସୂଚାଇ ଦିଏ ଅମଲାତନ୍ତ୍ର ଓ ନୀତି ନିୟମ କେତେ ପ୍ରଭାବଶାଳୀ। ବ୍ୟକ୍ତିଗତ ସ୍ତରରେ ଲୋକମାନେ ରାମାନୁଜନ୍‌ଙ୍କର ପ୍ରତିଭାକୁ ବୁଝୁଥିଲେ ଓ ସମ୍ମାନ ଜଣାଉଥିଲେ, କିନ୍ତୁ ବ୍ୟବସ୍ଥା ଭିତରେ ତାଙ୍କ ପାଇଁ ସ୍ଥାନ ରହିଲାନାହିଁ।

ସେ ବ୍ୟବସ୍ଥାର ଲକ୍ଷ୍ୟ ଥିଲା ଭାରତକୁ ଶାସନ କରିବା କାମରେ ଇଂରେଜ ଶାସକଙ୍କୁ ସାହାଯ୍ୟ କରିବା ପାଇଁ 'ସନ୍ତୁଳିତ' ଯୁବକ ତିଆରି କରିବା। 'ଉଚ୍ଚାକାଂକ୍ଷୀ ଓ ଅଦମ୍ୟ ଉତ୍ସାହର ବ୍ୟକ୍ତି' - ଯାହା ବିଷୟରେ ଥାକରେ ଚେତାବନୀ ଦେଇଥିଲେ - ସୃଷ୍ଟିକରିବା ତା'ର ଲକ୍ଷ୍ୟ ନ ଥିଲା।

ଗୋଟିଏ ଦୃଷ୍ଟିରୁ ଦେଖିଲେ 1904ରୁ 1909 ଭିତରେ ପାଞ୍ଚ ବର୍ଷ ଧରି ରାମାନୁଜନ୍ ପ୍ରାୟ ସ୍କୁଲ କଲେଜ ବାହାରେ, ବିନା ଡିଗ୍ରୀରେ, ବିନା ଚାକିରିରେ, ଅନ୍ୟ ଗଣିତଜ୍ଞଙ୍କ ସହିତ ସମ୍ପର୍କ ନ ଥିବା ଅବସ୍ଥାରେ ଅସହାୟ ହୋଇ ଛଟପଟ ହେଉଥିଲେ। ତଥାପି ଏହାର ଅନ୍ୟ ଦିଗ ମଧ୍ୟ ରହିଥିଲା। ଅଧା ପାଣି ଥିବା ଗିଲାସଟି ଅଧା ଭରା ନା ଅଧା ଖାଲି?

ଇ. ଟି. ବେଲ୍ ତାଙ୍କର 'ଗଣିତ ପୁରୁଷ' (*ମେନ୍ ଅଫ୍ ମାଥେମାଟିକ୍ସ*) ବହିରେ ଊନବିଂଶ ଶତାବ୍ଦୀର ମହାନ ଗଣିତଜ୍ଞ ଜାକୋବିଙ୍କ ବିଷୟରେ ଗୋଟିଏ କଥା ଲେଖିଛନ୍ତି।

> ଜାକୋବି କହୁଥିଲେ, "ଯୁବ ଗଣିତଜ୍ଞମାନଙ୍କୁ ଗଣିତର ଥଣ୍ଡା ପାଣି ଭିତରକୁ ଠେଲି ଦେବା ଉଚିତ, ତା ହେଲେ ସେମାନେ ନିଜେ ନିଜେ ପହଁରିବା ଶିଖିବେ ବା ବୁଡ଼ିବେ। ଅନେକ ଛାତ୍ର ନିଜର ସମସ୍ୟା ବିଷୟରେ ଅନ୍ୟମାନେ କରିଥିବା କାମ ସବୁକୁ ଆୟତ୍ତ କରିବାରେ ବହୁତ ସମୟ କଟାନ୍ତି ଏବଂ ସ୍ୱାଧୀନ ଭାବରେ ନିଜେ କିଛି କରିବାର ଚେଷ୍ଟାକୁ ବହୁତ ଡେରି କରି ଦିଅନ୍ତି। ଏହାର ଫଳ ହୁଏ ଯେ ଖୁବ୍ କମ ଜଣ ସ୍ୱାଧୀନ ଭାବରେ କାମ କରିବାର ଦକ୍ଷତା ହାସଲ କରନ୍ତି।"

ରାମାନୁଜନ୍ ବର୍ଷ ବର୍ଷ ଧରି ଥଣ୍ଡା ପାଣିରେ ଏକଲା ହୋଇ ଛାଟିପିଟି ହେଉଥିଲେ। ସେହି କ୍ଲେଶ ଏବଂ ବୌଦ୍ଧିକ ନିଃସଙ୍ଗତା କ'ଣ ତାଙ୍କ ପାଇଁ ଭଲ ହେବ? ତାଙ୍କର ସ୍ୱାଧୀନ ଚିନ୍ତନକୁ କ'ଣ ଏହା ଉତ୍ସାହିତ କରିବ ଏବଂ ତାଙ୍କର ମେଧାକୁ ତୀବ୍ରତର କରିବ? ଭାରତରେ କେହି ବି ସେକଥା ସେତେବେଳେ ଭାବୁ ନ ଥିଲେ। କିନ୍ତୁ ସେହି ଦୁଃସମୟର ଫଳାଫଳ ଏହା ହିଁ ହେଲା। ଆନୁଷ୍ଠାନିକ ଶିକ୍ଷାରେ ତାଙ୍କର ଅସଫଳତା ତାଙ୍କର ବୌଦ୍ଧିକ ବିକାଶକୁ ଏକ ଅଣପାରମ୍ପରିକ ଦିଗ ଦେଲା। ଆନୁଷ୍ଠାନିକ ବନ୍ଧନ ତାଙ୍କୁ ପୁରୁଣା ଗୁଳାରେ ଚାଲିବା ପାଇଁ ବାଧ୍ୟ କରିଥା'ନ୍ତା, କିନ୍ତୁ ସେହି ବନ୍ଧନରୁ ମୁକ୍ତ ହୋଇ ସେ ନୂଆ ଦିଗରେ ଆଗେଇ ପାରିଲେ।

ପାଞ୍ଚବର୍ଷ ଧରି ରାମାନୁଜନ୍ ବିନା ବାଧାରେ ଗଣିତ ସାଧନା କରିଚାଲିଲେ। ସେ କାହାଠାରୁ ଦିଗ୍‌ଦର୍ଶନ ପାଉ ନ ଥିଲେ, ତାଙ୍କୁ ଉତ୍ସାହିତ କରିବାକୁ କେହି ନ ଥିଲେ, ଘରୋଇ ଶିକ୍ଷକତା କାମରୁ ଅଳ୍ପ କିଛି ଟଙ୍କାକୁ ଛାଡ଼ିଦେଲେ ସେ କାହାଠାରୁ କିଛି ଆର୍ଥିକ ସାହାଯ୍ୟ ମଧ୍ୟ ପାଉ ନ ଥିଲେ। ଘର ଉପରେ ନିର୍ଭରଶୀଳ ହୋଇ ରହୁଥିଲେ ମଧ୍ୟ କେହି ତାଙ୍କୁ ନିରୁତ୍ସାହିତ କରୁ ନ ଥିଲେ। ଅନ୍ତତଃ ଗଣିତ ଛାଡ଼ିବା ପାଇଁ କେହି ତାଙ୍କୁ ଚାପ ଦେଉ ନ ଥିଲେ। କୁହାଯାଇପାରେ ଯେ ଭାରତ ତାଙ୍କ ଭିତରେ ଥିବା ନିଃସଙ୍ଗ ବିଚକ୍ଷଣତା ପାଇଁ ସ୍ଥାନ ରଖିଥିଲା। ଠିକ୍ ଯେପରି ମୁନି, ଋଷି ଓ ତାନ୍ତ୍ରିକମାନଙ୍କ ପାଇଁ ଭାରତରେ ସ୍ଥାନ ରହୁଥିଲା। ତାଙ୍କର ସାଙ୍ଗସାଥୀ, ତାଙ୍କ ମା, ଏପରିକି ତାଙ୍କର ବାପା ମଧ୍ୟ ତାଙ୍କୁ ସହ୍ୟ କରୁଥିଲେ ଏବଂ ଚାକିରି ଖୋଜିବା ପାଇଁ ବା 'କିଛି କାମର ହେବା ପାଇଁ' ବଡ଼ ଧରଣର ଚାପ କେହି ପକାଉ ନ ଥିଲେ।

ରାମାନୁଜନ୍‌ଙ୍କର ଏହି ସମୟକୁ ନେଭିଲ୍ କୁହନ୍ତି, "1909 ପୂର୍ବର ଦାୟିତ୍ୱମୁକ୍ତ ସମୟ।" ଗୋଟିଏ ଦୃଷ୍ଟିରୁ ତାହା ରାମାନୁଜନ୍‌ଙ୍କ ପାଇଁ ପ୍ରକୃତରେ ଦାୟିତ୍ୱମୁକ୍ତ ଥିଲା। କିଛି ଦିଗରୁ ତାହା

ରାମାନୁଜନ୍‌ଙ୍କ ଜୀବନର ସବୁଠାରୁ ବେଶି ସୃଜନଶୀଳ ସମୟ ଥିଲା। ଗଣିତ ଭିତରେ ରାମାନୁଜନ୍ ଏକ ଆବାସ ପାଇଥିଲେ, ସେହି ଆବାସ ଏତେ ଆରାମଦାୟକ ଥିଲା ଯେ ସେ ତାକୁ ଛାଡ଼ିବା କଥା ସ୍ୱପ୍ନରେ ବି ଭାବୁ ନ ଥିଲେ। ବୌଦ୍ଧିକ, ସୌନ୍ଦର୍ଯ୍ୟବୋଧ ଓ ମାନସିକ ଦୃଷ୍ଟିରୁ ଏହି ଆବାସ ରାମାନୁଜନ୍‌ଙ୍କୁ ସନ୍ତୋଷ ଦେଉଥିଲା।

ଜଣାପଡ଼େ ଯେ ଆଧ୍ୟାତ୍ମିକ ଦିଗରୁ ମଧ୍ୟ ରାମାନୁଜନ୍‌ଙ୍କ ପାଇଁ ସମୟଟି ସନ୍ତୋଷଜନକ ଥିଲା। ରାମାନୁଜନ୍‌ଙ୍କ ମନରେ ଗାଣିତିକ ଓ ଆଧିଭୌତିକ ଦିଗ ଦୁଇଟି ଅବିଚ୍ଛେଦ୍ୟ ଭାବରେ କିପରି ଛନ୍ଦିହୋଇ ରହିଥିଲେ ସେ ବିଷୟରେ ଅସଂଖ୍ୟ କାହାଣୀ ଶୁଣାଯାଏ। ପାଶ୍ୟାପ୍ପା କଲେଜରେ ପଢୁଥିଲାବେଳେ ଥରେ ସେ ଗୋଟିଏ ଅସୁସ୍ଥ ଶିଶୁକୁ ଅନ୍ୟ ଜାଗାକୁ ନେଇଯିବା ପାଇଁ ତା'ର ବାପାମା'ଙ୍କୁ କହିଥିଲେ। ତାଙ୍କର ମତ ଥିଲା, "କେବଳ କିଛି ନିର୍ଦ୍ଦିଷ୍ଟ ସ୍ଥାନ-କାଳ ସନ୍ଧିରେ ହିଁ ମୃତ୍ୟୁ ଘଟିପାରିବ।" ଆଉ ଥରେ ସେ ସ୍ୱପ୍ନରେ ଦେଖିଥିଲେ ଯେ ପ୍ରବାହିତ ରକ୍ତ ଉପରେ ଗୋଟିଏ ହାତ ଉପବୃତ୍ତୀୟ ସମାକଳ ସବୁ ଲେଖୁଛି।

ରାମାନୁଜନ୍ ବହୁଳ ଭାବରେ ପ୍ରଚାର କରିଥିବା ଗୋଟିଏ ଗାଣିତିକ ରାଶି ହେଉଛି 2n-1। ତାଙ୍କର ଜଣେ ସାଙ୍ଗଙ୍କ କହିବା ଅନୁସାରେ ରାମାନୁଜନ୍ ବୁଝାଉଥିଲେ ଯେ ତାହା "ଆଦିମ ଈଶ୍ୱର ଏବଂ ଅନେକଗୁଡ଼ିଏ ପରମପୁରୁଷଙ୍କର ପ୍ରତିନିଧିତ୍ୱ କରେ। n ଯେତେବେଳେ ଶୂନ ହୁଏ ସେହି ରାଶିଟି ମଧ୍ୟ ଶୂନ ହୁଏ। n = 1 ହେଲେ ପଦର ମୂଲ୍ୟ 1 ହୁଏ ଏବଂ ତାହା ଐକ୍ୟ ବା ଅସୀମ ଈଶ୍ୱରଙ୍କୁ ବୁଝାଏ। n=2 ହେଲେ ପଦର ମୂଲ୍ୟ ହୁଏ 3, ଯାହା ଟ୍ରିନିଟି ବା ଈଶ୍ୱରଙ୍କ ତିନି ରୂପକୁ ବୁଝାଏ। n = 3 ହେଲେ ଫଳ ହୁଏ 7 ଯାହା ସପ୍ତ ଋଷିଙ୍କର ପ୍ରତିନିଧିତ୍ୱ କରେ... ଇତ୍ୟାଦି।"

ଆଧିଭୌତିକ ଚିନ୍ତା ପ୍ରତି ରାମାନୁଜନ୍‌ଙ୍କ ମନୋଭାବ ସବୁବେଳେ ଅନୁକୂଳ ଥିଲା। କୁମ୍ଭକୋଣମ୍‌ରେ ସତ୍ୟପ୍ରିୟ ରାଓ ନାମକ ଜଣେ ବ୍ୟାୟାମ ଶିକ୍ଷକ ଅନେକ ଉଦ୍ଭଟ କଥା କହୁଥିଲେ ଯାହାକୁ ସାଧାରଣତଃ ସହନଶୀଳ ଦକ୍ଷିଣ ଭାରତୀୟମାନେ ମଧ୍ୟ ବିଶ୍ୱାସ କରୁ ନ ଥିଲେ। ସେ କାବେରୀ କୂଳରେ ଛିଡ଼ାହୋଇ, ସୂର୍ଯ୍ୟକୁ ଚାହିଁ, ଅସଂଗତ ଭାବରେ ବକିଚାଲିବେ। ବେଳେ ବେଳେ ସେ ଏତେ ପ୍ରଗଲ୍‌ଭ ହୋଇଉଠନ୍ତି ଯେ ତାଙ୍କୁ ବାନ୍ଧି ରଖିବାକୁ ହୁଏ। ଅଧିକାଂଶ ଲୋକ ତାଙ୍କ ପ୍ରତି ଧ୍ୟାନ ଦିଅନ୍ତିନାହିଁ। କିନ୍ତୁ ରାମାନୁଜନ୍ ତାଙ୍କ ପାଇଁ କେବେ କେବେ ଖାଦ୍ୟ ଯୋଗାଡ଼ କରିଦିଅନ୍ତି ଯେଉଁଥି ପାଇଁ ଲୋକେ ରାମାନୁଜନ୍‌ଙ୍କୁ ପାଗଳ କୁହନ୍ତି। ରାମାନୁଜନ୍ ରାଓଙ୍କ ପକ୍ଷ ନେଇ କହନ୍ତି ଏକଥା ସତ ଯେ ସେ ଉଦ୍ଭଟ କଳ୍ପନା କରନ୍ତି, ଅବାସ୍ତବ ମନେ ହେଉଥିବା ଦୃଶ୍ୟ ଦେଖନ୍ତି, କିନ୍ତୁ ପୂର୍ବ ଜନ୍ମରେ ସେ ଅନେକ ଜ୍ଞାନ ଅର୍ଜନ କରିଥିଲେ। ଅନ୍ୟମାନଙ୍କ ପାଇଁ ଯାହା ପାଗଳର ପ୍ରଳାପ ଥିଲା ରାମାନୁଜନ୍‌ଙ୍କ ପାଇଁ ତାହା ଥିଲା ବିଶ୍ୱର ଏକ ଅତି ବିକଶିତ ମାନସ ଚିତ୍ର।

ପରେ ଇଂଲଣ୍ଡରେ ଥିବା ବେଳେ ସେ ଶୂନ ଓ ଅସୀମକୁ ଆଧାର କରି ବାସ୍ତବତାର ଏକ ତତ୍ତ୍ୱ ବାଢ଼ିଥିଲେ, ଯଦିଓ ତାଙ୍କର ସାଙ୍ଗମାନେ ତାଙ୍କର କଥା କିଛି ବୁଝିପାରୁ ନ ଥିଲେ। ତାଙ୍କ ତତ୍ତ୍ୱରେ ଶୂନ ପରମ ବାସ୍ତବତାକୁ ବୁଝାଉଥିଲା ଏବଂ ଅସୀମ ବୁଝାଉଥିଲା ସେହି ବାସ୍ତବତାର ଅଗଣିତ ରୂପଗୁଡ଼ିକୁ। ଶୂନ ଓ ଅସୀମର ଗୁଣନଫଳ ଗୋଟିଏ ସଂଖ୍ୟା ନ ଥିଲା, ବରଂ ସବୁ ସଂଖ୍ୟା ଥିଲା ଏବଂ ପ୍ରତ୍ୟେକଟି ସଂଖ୍ୟା ସୃଷ୍ଟିର ଗୋଟିଏ ଗୋଟିଏ ପାଦକୁ ବୁଝାଉଥିଲା। ଦାର୍ଶନିକମାନେ ହୁଏତ

ତାକୁ ଏକ ନିର୍ବୋଧ ଚିନ୍ତା ବୋଲି ଭାବୁଥିଲେ, ଗଣିତଜ୍ଞମାନେ ନିଶ୍ଚିତ ଭାବରେ ତାକୁ ମୂର୍ଖାମୀର ପରିଚାୟକ ଭାବରେ ଦେଖୁଥିଲେ। କିନ୍ତୁ ରାମାନୁଜନ୍ ତାକୁ ଅର୍ଥପୂର୍ଣ୍ଣ ଭାବୁଥିଲେ। ଶୀତରେ ଥରୁଥିବା ଅବସ୍ଥାରେ ତାଙ୍କୁ ଦେଖିଥିବା ତାଙ୍କର ସାଥୀ ପି. ସି. ମହଲାନବିଶ୍ ଲେଖିଥିଲେ, "ବିଭିନ୍ନ ଦାର୍ଶନିକ ପ୍ରଶ୍ନ ବିଷୟରେ ରାମାନୁଜନ୍ ଏତେ ଉତ୍ସାହର ସହିତ କଥା ହେଉଥିଲେ ଯେ ସେ ନିଜର ଦାର୍ଶନିକ ତତ୍ତ୍ୱକୁ ପ୍ରମାଣିତ କରିପାରିଥିଲେ ଗଣିତର ପ୍ରମାଣ ପାଇବା ତୁଳନାରେ ବୋଧହୁଏ ବେଶି ଖୁସୀ ହୋଇଥା'ନ୍ତେ।"

ପାଶ୍ଚାତ୍ୟରେ ଗୋଟିଏ ପୁରୁଣା ବିତର୍କ ଏପରି ଥିଲା – ଗାଣିତିକ ବାସ୍ତବତା ଗଣିତଜ୍ଞମାନଙ୍କର ସୃଷ୍ଟି ନା ତାହା ସ୍ୱାଧୀନ ଭାବରେ ସୃଷ୍ଟି ହୋଇଛି ଯାହାକୁ ଗଣିତଜ୍ଞମାନେ ପରେ କେବଳ ଆବିଷ୍କାର କରିଛନ୍ତି? ରାମାନୁଜନ୍ ଦ୍ୱିତୀୟ ମତର ଦୃଢ଼ ସମର୍ଥକ ଥିଲେ। ତାଙ୍କ ପାଇଁ ବିଭିନ୍ନ ସଂଖ୍ୟା ଓ ସଂଖ୍ୟାଗୁଡ଼ିକ ଭିତରେ ଥିବା ଗାଣିତିକ ସମ୍ପର୍କ ବିଶ୍ୱର ଗଠନ ବିଷୟରେ ସୂଚନା ଯୋଗାନ୍ତି। ପ୍ରତ୍ୟେକ ନୂଆ ଉପପାଦ୍ୟ ହେଉଛି ସେହି ଅସୀମ ଅନାବିଷ୍କୃତ ଜ୍ଞାନଭଣ୍ଡାରର ଅଂଶ। ସେ ଜଣେ ସାଙ୍ଗଙ୍କୁ କହିଥିଲେ, "ଈଶ୍ୱରଙ୍କର ଏକ ଚିନ୍ତାର ପ୍ରତିଫଳନ ନ ହୋଇଥିଲେ କୌଣସି ଗାଣିତିକ ସମୀକରଣ ମୋ ପାଇଁ ମୂଲ୍ୟହୀନ"–ଏଭଳି କଥା କହିବା ପଛରେ ତାଙ୍କର ମୁର୍ଖାମୀ ବା ଚାଲାକି ବା ମଜାକିଆମି ନ ଥିଲା।

## 7. ବହୁତ ହୋଇଗଲା

ପିଲାଦିନରୁ ରାମାନୁଜନ୍ ମୋଟା ଥିଲେ ଏବଂ ବର୍ତ୍ତମାନ କୋଡ଼ିଏ ବର୍ଷ ବୟସରେ ସେ ସେହିପରି ରହିଥିଲେ। ସେ ଗେଡ଼ା ଓ ମୋଟା ଥିଲେ। ତାଙ୍କ ମୁହଁ ଫୁଲକା ଥିଲା ଓ ସେଥିରେ ହାଲୁକା ବସନ୍ତ ଦାଗ ଥିଲା, ନାକ ମୋଟା ଥିଲା ଏବଂ ନିଶ ଦାଢ଼ି ନ ଥିଲା। ମୁଣ୍ଡର ଆଗ ପଟରେ ସେ ନଣ୍ଡା ଥିଲେ ଏବଂ କପାଳରେ ଲାଲ ଓ ଧଳା ତିଳକ ପିନ୍ଧୁଥିଲେ। ପଛ ପଟର ମୋଟା ଚୁଟିକୁ ସେ ଗୁଛ କରି ବାନ୍ଧୁଥିଲେ। ଏସବୁ ଯୋଗୁ ସେ ଆହୁରି ବେଶି ମୋଟାଳିଆ ଦେଖାଯାଉଥିଲେ।

ଏସବୁ ସତ୍ତ୍ୱେ ରାମାନୁଜନ୍ ଧୀମା ନ ଥିଲେ। ବରଂ ଜଣେ ସୁମୋ ମଲ୍ଲଯୋଦ୍ଧା ଭଳି ତାଙ୍କ ଗତିବିଧି ହାଲୁକା ଓ ଲଳିତ ଥିଲା। ଚାଲିଲା ବେଳେ ତାଙ୍କ ମୁଣ୍ଡ ସିଧା ରହୁଥିଲା ଏବଂ ଆଗକୁ ଝୁଙ୍କି ଚାଲିଲା ବେଳେ ତାଙ୍କ ପଦକ୍ଷେପରେ ଚଞ୍ଚଳତା ବାରି ହେଉଥିଲା। ତାଙ୍କର ବାହୁ ଲମ୍ବା, ହାତ ଆଶ୍ଚର୍ଯ୍ୟଜନକ ଭାବରେ ମସୃଣ ଏବଂ ଆଙ୍ଗୁଠିଗୁଡ଼ିକ ସରୁ ଥିଲା। କଥା କହିଲାବେଳେ ତାଙ୍କର ଆଙ୍ଗୁଠି କେବେ ସ୍ଥିର ରହୁ ନ ଥିଲା।

ଉତ୍ତେଜିତ ହୋଇଗଲେ ତାଙ୍କ କଥା ବନ୍ଦ ହେଉ ନ ଥିଲା, ଖାଇବା ସମୟରେ ମଧ୍ୟ ସେ କଥା କହି ଚାଲୁଥିଲେ। ସେତେବେଳେ ତାଙ୍କ ଆଖି ଦୁଇଟି ଉଦ୍ଦୀପ୍ତ ହୋଇ ଉଠୁଥିଲା। ଶୁଣୁଥିବା ଲୋକଙ୍କୁ ସେହି ଆଲୋକିତ ଆଖି ଦୁଇଟି ହିଁ ବାନ୍ଧି ରଖୁଥିଲା, ସତେ ଯେପରି ତାଙ୍କ ଦେହର ଅନ୍ୟ ସବୁ ଅଂଶ ଉଭେଇ ଯାଇଛି।

ରାମାନୁଜନ୍ କେବେ କେବେ ବହି ଆଣିବାକୁ, କେଉଁ ଅଧ୍ୟାପକଙ୍କୁ ଭେଟିବାକୁ ବା ବକ୍ତୃତା ଶୁଣିବା ପାଇଁ ତାଙ୍କ ପୁରୁଣା କଲେଜକୁ ଯାଉଥିଲେ। ଆଉ କେବେ ସେ ମନ୍ଦିର ଆଡ଼େ ବୁଲିଆସୁଥିଲେ।

ନହେଲେ ତାଙ୍କର ଅଧିକାଂଶ ସମୟ ସରଙ୍ଗାପାନି ସନ୍ନିଧି ସରଣୀ ଘରର ବାରଣ୍ଡାରେ କଟୁଥିଲା। ସେଠାରେ ସେ ଗୋଡ଼ ଜାକି ବସି କୋଳରେ ଧରିଥିବା ବଡ଼ ସିଲଟରେ ଜୋରରେ ଲେଖି ଚାଲିଥିବେ। ସିଲଟ ଉପରେ ଖଡ଼ିର ରାମ୍ପିହେବା ଶବ୍ଦ ବି ବୋଧହୁଏ ସେ ଶୁଣିପାରୁ ନ ଥିଲେ। ରାସ୍ତାରେ ଗାଡ଼ି, ମଣିଷ ଓ ଗାଈଗୋରୁଙ୍କ କୋଳାହଳ ସତ୍ତ୍ୱେ ସେ ଶାନ୍ତିର ଦୁନିଆରେ ନିଜକୁ ହଜାଇ ଦେଉଥିଲେ। ଅନ୍ୟ ଦିଗରୁ ମଧ୍ୟ ସେ ମୁକ୍ତ ଥିଲେ - ଦେବାକୁ ଚାହୁଁ ନ ଥିବା ପରୀକ୍ଷାରୁ ଏବଂ ପଢ଼ିବାକୁ ଚାହୁଁ ନ ଥିବା ବିଷୟ ସବୁରୁ।

1୫୫୨ ମସିହାରେ ଦକ୍ଷିଣ ଭାରତର ପ୍ରମୁଖ ଇଂରାଜୀ ଖବର କାଗଜ ହିନ୍ଦୁ ଦିନେ ସମ୍ପାଦକୀୟରେ ଲେଖିଥିଲା,

> ଭାରତୀୟଙ୍କ ଭିତରେ ନିଶ୍ଚେଷ୍ଟ ସଦ୍‌ଗୁଣର ଅଭାବ ନାହିଁ। ଧୈର୍ଯ୍ୟ, ମମତା, ନମ୍ରତା ଆଦି ସାଧାରଣ ଭାବରେ ଦେଖିବାକୁ ମିଳେ। କିନ୍ତୁ ଅନେକ କାଳ ଧରି ଭାରତ ମାତାର ସନ୍ତାନମାନଙ୍କ ମଧ୍ୟରେ ଗର୍ଡନ, ଗାରିବାଲ୍‌ଡି ବା ୱାଶିଙ୍ଗଟନ୍...ଙ୍କ ଭଳି କୌଣସି ବି କ୍ଷେତ୍ରରେ କେହି ଦେଖାଯାଇ ନାହାନ୍ତି। ...ଏଥିପାଇଁ ବଳିଷ୍ଠ ବ୍ୟକ୍ତିତ୍ୱ ସଫଳ ହେବା ପାଇଁ ଏବଂ ଲକ୍ଷ୍ୟ ହାସଲର ଚେଷ୍ଟାରେ ସବୁ କିଛି ତ୍ୟାଗ କରିବା ପାଇଁ ଦୃଢ଼ତା ଦରକାର।

ରାମାନୁଜନ୍ ପାର୍ଥିବ ସଫଳତା ପ୍ରତି ଉଦାସୀନ ମନେ ହେଉଥିଲେ ମଧ୍ୟ ତାଙ୍କ ପାଖରେ ହିନ୍ଦୁର ସମ୍ପାଦକୀୟ ଲେଖକ ଚାହୁଁଥିବା ସବୁ ଗୁଣ ରହିଥିଲା। ସଫଳ ହେବା ପାଇଁ ଏବଂ ଲକ୍ଷ୍ୟ ହାସଲର ଚେଷ୍ଟାରେ ସବୁ କିଛି ତ୍ୟାଗ କରିବା ପାଇଁ ଦୃଢ଼ତା - ଏହା ଏକ ଅସୁଖୀ ଓ ଅସନ୍ତୁଳିତ ଜୀବନ ପାଇଁ ମଧ୍ୟ ବାଟ ଖୋଲିଦେବ।

ବାରଣ୍ଡାରେ ବସି ଗଣିତ ଚିନ୍ତା କରୁଥିଲା ବେଳେ କେବେ କେବେ ସେ ତଳେ ଖେଳୁଥିବା ପିଲାଙ୍କ ଆଡ଼କୁ ଚାହିଁ ରହନ୍ତି। କିନ୍ତୁ ଜଣେ ପଡ଼ୋଶୀ କହନ୍ତି ଯେ ତାହା ଥିଲା ଏକ 'ଭାବହୀନ ଓ ଅନ୍ୟମନସ୍କ' ଚାହାଣୀ। ତାଙ୍କ ମନ ଭିତରେ କିନ୍ତୁ ତୀବ୍ର ଚିନ୍ତନର ନିଆଁ ଜଳୁଥିଲା। ଗଭୀର ଚିନ୍ତାରେ ତାଙ୍କ ମୁହଁ କେବେ ସଙ୍କୁଚିତ ହୋଇପଡ଼େ ଓ ଆଖି ଦୁଇଟି ସରୁ ହୋଇଯାଏ। ଖୋଜୁଥିବା ସମାଧାନ ମିଳିଗଲେ ସେ ନିଜେ ନିଜେ କଥା ହୁଅନ୍ତି, ହସନ୍ତି ଓ ଖୁସିରେ ମୁଣ୍ଡ ହଲାନ୍ତି। କେବେ କିଛି ଭୁଲ ହୋଇଗଲେ ସେ ସିଲଟକୁ ତଳେ ନ ଥୋଇ ହାତକୁ ବଙ୍କାଇ ଆଣନ୍ତି ଏବଂ କହୁଣିରେ ଭୁଲ ଲେଖାକୁ ଲିଭାଇ ଦିଅନ୍ତି।

ରାମାନୁଜନ୍‌ଙ୍କ ଧୀଶକ୍ତି ଶାନ୍ତ ଓ ସ୍ଥିର ଭାବରେ କାମ କରୁ ନ ଥିଲା, ତାଙ୍କ କାମର ଧାରା ଥିଲା ଶକ୍ତିର ତୀବ୍ର ସ୍ଫୁରଣ।

ସାଧାରଣ ଦୃଷ୍ଟିରେ ରାମାନୁଜନ୍ ଥିଲେ ଘରେ ବସିଥିବା ଜଣେ ଯୁବକ ଯିଏ ଦୁଇଟି କଲେଜରୁ ଫେଲ ହୋଇଥିଲେ, ଯାହାର ଚାକିରି ନ ଥିଲା, ଯାହାର ରହସ୍ୟବାଦାତ୍ମକ ଦୀର୍ଘ ଆଲୋଚନାକୁ ଖୁବ୍ କମ୍ ଲୋକ ବୁଝୁଥିଲେ ଏବଂ ଯାହାର ଗଣିତକୁ କେହି ବୁଝିପାରୁ ନ ଥିଲେ। ଅନ୍ୟ କାହା ପାଇଁ ତାଙ୍କ କାମର ମୂଲ୍ୟ କ'ଣ ଥିଲା? ହୁଏତ ସେ ଅତି ବିଚକ୍ଷଣ ଥିଲେ ବା ପାଗଳ ଥିଲେ। ଯାହା ହେଲେ ବି ଜୀବନର ସାଧାରଣ ଲକ୍ଷ୍ୟ ସହିତ କୌଣସି ସମ୍ପର୍କ ନ ଥିବା କାମରେ ଏତେ ସମୟ ଓ ଶକ୍ତି କିଏ ଖଟାଇବ ବା କାହିଁକି? ସାଧାରଣ କିରାଣି କାମ କରୁଥିବା ତାଙ୍କର

ବାପା ନିଜର ଓ ଦୁନିଆର ଅଧିକ ହିତ କରୁନାହାନ୍ତି କି? ବାହାର ଲୋକଙ୍କର ଏହି ସବୁ ଅକୁହା ଚିନ୍ତା ହୁଏତ ରାମାନୁଜନ୍‌ଙ୍କୁ ଛୁଉଁ ନ ଥିଲା।

ଅନେକ ବର୍ଷ ଧରି ତାଙ୍କର ବାପାମା' ସବୁ କିଛି ସହିଲେ। କିନ୍ତୁ ସମୟ ଆସିଲା ଯେବେ ସେମାନେ ମଧ୍ୟ ବିରକ୍ତ ଓ ଧୈର୍ଯ୍ୟହରା ହୋଇପଡ଼ିଲେ। ବାସ୍, ବହୁତ ହୋଇଗଲା - ତାଙ୍କ ମା ଠିକ୍ କଲେ। ବୋଧହୁଏ 1908 ମସିହାର ଶେଷ ବେଳକୁ ସେ ଗୋଟିଏ ବଡ଼ ନିଷ୍ପତ୍ତି ନେଲେ ଯାହାକୁ ମନସ୍ତତ୍ତ୍ୱବିତ୍ ଆଶିଷ ନନ୍ଦୀ କୁହନ୍ତି 'ସମୟ-ପରୀକ୍ଷିତ ଭାରତୀୟ ମନୋଚିକିତ୍ସା'। ତାହା ଥିଲା ରାମାନୁଜନ୍‌ଙ୍କ ବାହାଘର ବ୍ୟବସ୍ଥା।

# 3

# ପୃଷ୍ଠପୋଷକ ଖୋଜା

(1908–1913)

## 1. ଜାନକୀ

1908 ମସିହାର ଶେଷ ଆଡ଼କୁ ଦିନେ ରାମାନୁଜନ୍‌ଙ୍କ ମା କୁମ୍ଭକୋଣମ୍‌ରୁ ଷାଠିଏ ମାଇଲ ଦୂରରେ ଥିବା ରାଜେନ୍ଦ୍ରମ୍ ଗାଁକୁ ବୁଲିଯାଇଥିଲେ। ସେଠାରେ ଚମକୁଥିବା ଆଖି ଥିବା ଗୋଟିଏ ପତଳା ଝିଅ ଉପରେ ତାଙ୍କ ଆଖି ପଡ଼ିଲା। ସେ ଥିଲା ତାଙ୍କର ଜଣେ ଦୂର ସମ୍ପର୍କୀୟଙ୍କ ଝିଅ ଜାନକୀ। ସେ ଝିଅର ଜାତକ ମଗାଇଲେ ଓ କାନ୍ଥରେ ରାମାନୁଜନ୍‌ଙ୍କ କୋଷ୍ଠୀ ଆଙ୍କି ମିଳାଇଲେ। ଜାତକ ମେଳକ ହେଲା ଏବଂ ନ ବର୍ଷିଆ ଜାନକୀ ଓ ରାମାନୁଜନ୍‌ଙ୍କ ବାହାଘର କଥାବାର୍ତ୍ତା ଆଗେଇଲା।

ଉଭୟ ପରିବାରର ସାମାଜିକ ସ୍ଥିତି ବେଶ୍ ଦୁର୍ବଳ ଥିଲା। ଜାନକୀଙ୍କ ସୌନ୍ଦର୍ଯ୍ୟ ଅସାଧାରଣ ନ ଥିଲା। ତାଙ୍କ ଗାଁଟି ଛୋଟ ଓ ପ୍ରାୟ ଅଜଣା ଥିଲା। ଜାନକୀଙ୍କ ପରିବାର ଦିନେ ସ୍ୱଚ୍ଛଳ ଥିଲେ। ସେତେବେଳେ ତାଙ୍କ ବାପା ଗହଣା ତିଆରି ପାଇଁ ଯନ୍ତ୍ରପାତି ଯୋଗାଉଥିଲେ ଏବଂ ତାଙ୍କର କିଛି ଜମିବାଡ଼ି ମଧ୍ୟ ଥିଲା। କିନ୍ତୁ ଏବେକାର ଅବସ୍ଥାରେ କନ୍ୟାପକ୍ଷ ବିଶେଷ କିଛି ଯୌତୁକ ଦେଇପାରିବେ ନାହିଁ। ବରପାତ୍ର ବିଷୟରେ ସେମାନେ ମଧ୍ୟ ବାଛବିଚାର କରିବା ଅବସ୍ଥାରେ ନ ଥିଲେ, କାରଣ ଜାନକୀଙ୍କର ଆଉ ଚାରି ଭଉଣୀ (ଓ ଜଣେ ଭାଇ) ଥିଲେ। ଝିଅ ପାଇଁ ସେମାନେ ଗୋଟିଏ ଭଲ ଘର ଚାହୁଁଥିଲେ ଯେଉଁଠି ଖୁସିରେ ରହିବ। ବିଶେଷ କରି ପିଲାଛୁଆ ହେବା ଆଗରୁ ଯେତେବେଳେ ବୋହୂମାନେ ଶାଶୂଙ୍କ କଡ଼ା ନଜରରେ ରହି ଘରକାମ ସବୁ ତୁଲାଉଥିଲେ।

ବରପାତ୍ର ହିସାବରେ ମଧ୍ୟ ରାମାନୁଜନ୍ ଖୁବ୍ ପସନ୍ଦଯୋଗ୍ୟ ନ ଥିଲେ। ପ୍ରଥମ ଦୃଷ୍ଟିରେ ସେ ଥିଲେ ଜଣେ ବିଫଳ ମଣିଷ - ଡିଗ୍ରୀ, ଚାକିରି, ଭବିଷ୍ୟତ ପାଇଁ ସମ୍ଭାବନା ନ ଥିବା ମଣିଷ। ଜାନକୀ ତାଙ୍କ ଭବିଷ୍ୟତ ସ୍ୱାମୀଙ୍କ ବିଷୟରେ କିଛି ବି ଜାଣି ନ ଥିଲେ, ତାଙ୍କୁ ଦେଖିବା ତ ଦୂରର କଥା। ଯଦି ବି କୋମଳତାମ୍ମାଲ୍ ରାମାନୁଜନ୍‌ଙ୍କ ଗଣିତ ପ୍ରତିଭା ବିଷୟରେ କନ୍ୟା ଘରେ କିଛି କହିଥିବେ, ଜାନକୀଙ୍କ କାନରେ ତାହା ପଡ଼ି ନ ଥିବ।

ରାମାନୁଜନ୍‌ଙ୍କ ଘରେ ମା'ଙ୍କ କଥା ହିଁ ଶେଷ କଥା, ତେଣୁ ବାହାଘର କଥା ସେଇଠି ପକ୍କା ହୋଇଗଲା। ଶ୍ରୀନିବାସ ପୁଅର ବାହାଘର କଥା ପରେ ଜାଣିଲେ ଏବଂ ରାଗିଗଲେ। ତାଙ୍କ କହିବା

କଥା ଥିଲା ଯେ ରାମାନୁଜନ୍ ନିଶ୍ଚୟ ଆହୁରି ଭଲଘରେ ବାହା ହୋଇ ପାରିଥା'ନ୍ତେ। କୁମ୍ଭକୋଣମ୍‌ର ଅନେକ ପରିବାର ତାଙ୍କୁ ଜ୍ୱାଇଁ କରିବାକୁ ବାହାରିଥା'ନ୍ତେ। ଦୁଇ ବର୍ଷ ତଳେ ରାମାନୁଜନ୍ ପାଶ୍ୟାପ୍ପା କଲେଜରେ ପଢୁଥିବା ସମୟରେ କାଞ୍ଚିପୁରମ୍‌ରୁ ଗୋଟିଏ ଭଲ ପ୍ରସ୍ତାବ ଆସିଥିଲା। କିନ୍ତୁ ଝିଅ ଘରେ ଜଣକର ମୃତ୍ୟୁ ଯୋଗୁ ତାହା ଆଗେଇ ପାରିନଥିଲା। ତେବେ ଶ୍ରୀନିବାସଙ୍କର ରାଗର ଅସଲ କାରଣ ଥିଲା ବାହାଘର ବିଷୟରେ ତାଙ୍କର ମତ ନ ନେବା। କିଛି ବି ତାଙ୍କ ରାଗ ଥଣ୍ଡା କରିପାରିଲା ନାହିଁ। ଜୁଲାଇ ମାସରେ ଯେତେବେଳେ ବାହାଘର ପାଇଁ ସମସ୍ତେ କନ୍ୟା ଘରକୁ ଗଲେ ସେତେବେଳେ ସେ ଘରେ ରହିଲେ। ତାହା ଏକ ଅସାଧାରଣ ସାମାଜିକ କଥା ଥିଲା।

ସେ ସମୟରେ ଭାରତରେ ଯୋଗାଡ଼ ବିବାହ ଓ ବାଲ୍ୟବିବାହ ପ୍ରଥା ସାଧାରଣ କଥା ଥିଲା। ବାହାଘର ପରେ ଅପ୍ରାପ୍ତବୟସ୍କା କନ୍ୟା ବାପାମା'ଙ୍କ ପାଖରେ ରହୁଥିଲା ଓ ବୟଃପ୍ରାପ୍ତ ହେଲା ପରେ ସ୍ୱାମୀ ସହିତ ମିଳିତ ହେଉଥିଲା। ଏହି ବ୍ୟବସ୍ଥାକୁ ୟୁରୋପୀୟମାନେ ପସନ୍ଦ କରୁ ନ ଥିଲେ, କିନ୍ତୁ ସ୍ଥାନୀୟ ପରମ୍ପରା ପ୍ରତି ସମ୍ମାନ ଦେଖାଇ ଇଂରେଜମାନେ ତାକୁ ବାଧା ଦେଉ ନ ଥିଲେ। 1894 ମସିହାରେ ମହୀଶୂର ରାଜ୍ୟ ଆଠ ବର୍ଷରୁ କମ୍ ବୟସର ଝିଅମାନଙ୍କର ବାହାଘରକୁ ନିଷେଧ କରି ଏକ ଆଇନ ପ୍ରଣୟନ କରିଥିଲା। ମାନ୍ଦ୍ରାଜରେ କିନ୍ତୁ ଏହା ଗୃହୀତ ହୋଇପାରିଲା ନାହିଁ।

ଭାରତୀୟ ବିବାହ ଉତ୍ସବ ଚାରି ପାଞ୍ଚ ଦିନ ଧରି ଚାଲେ। ସେସମୟରେ ରଙ୍ଗବେରଙ୍ଗ ପୋଷାକ, ସାଜସଜ୍ଜା, ନାଚଗୀତ ଓ ଖିଆପିଆ ଭିତରେ ସମସ୍ତେ ବୁଡ଼ିରହନ୍ତି। ଏଥିରେ ବେଶ୍ କିଛି ଖର୍ଚ୍ଚ ହୁଏ ଯେଉଁଥି ପାଇଁ କେହି ଦ୍ୱିଧା କରନ୍ତିନାହିଁ। ଗରିବ ଲୋକମାନେ ମଧ୍ୟ ନିଜର ସଞ୍ଚୟକୁ ଶେଷକରି ଧାରଉଧାର କରି ଲୁଗାପଟା, ଭୋଜିଭାତ ଓ ବାହାଘରର ଖର୍ଚ୍ଚ ଉଠାନ୍ତି।

ଜାନକୀ ଓ ତାଙ୍କ ଭଉଣୀ ବିଜୟଲକ୍ଷ୍ମୀ ଏକା ଦିନରେ ବାହା ହେଉଥିଲେ। ବିଜୟଲକ୍ଷ୍ମୀଙ୍କ ବର ଠିକ୍ ସମୟରେ ଆସି ପହଞ୍ଚିଲେ, କିନ୍ତୁ ରାମାନୁଜନ୍‌ଙ୍କ ଦଳ ବାହାଘରର ପୂର୍ବ ରାତି ଯାଏଁ ବି ପହଞ୍ଚିଲେ ନାହିଁ। ଜାନକୀଙ୍କ ବାପା ରଙ୍ଗାସ୍ୱାମୀ ରାମାନୁଜନ୍‌ଙ୍କ ବିଷୟରେ ଅତି ଖୁସୀ ନ ଥିଲେ। ତେଣୁ ସେ କହିବାରେ ଲାଗିଲେ ଯେ ରାମାନୁଜନ୍ ନ ଆସିଲେ ସେ ଜାନକୀଙ୍କ ବାହାଘର ଯାହା ସହିତ ହେଲେ ବି କରାଇଦେବେ।

ରାଜେନ୍ଦ୍ରମ୍‌ର ପାଖ ଷ୍ଟେସନ କୁଳିତାଲାଇରେ କୁମ୍ଭକୋଣମ୍‌ରୁ ଆସୁଥିବା ରେଳଗାଡ଼ି କେତେ ଘଣ୍ଟା ଡେରିରେ ପହଞ୍ଚିଲା। ସେଠାରୁ ବଳଦ ଗାଡ଼ିରେ ଆସି କନ୍ୟା ଘରେ ପହଞ୍ଚିଲା ବେଳକୁ ରାତି ଅଧ ପରେ। ଅତି ବିବ୍ରତ ଅବସ୍ଥାରେ ଥିବା ରଙ୍ଗାସ୍ୱାମୀ ରାଗରେ ପାଟିତୁଣ୍ଡ କଲେ, ବାହାଘର ବନ୍ଦ କରିବାର ଧମକ ଦେଲେ। କିନ୍ତୁ କୋମଳତାମ୍ମାଲ୍ ନିଜର ମନାଇନେବାର ଦକ୍ଷତାକୁ କାମରେ ଲଗାଇ ଅବସ୍ଥା ସୁଧାରି ନେଲେ। ଅବଶ୍ୟ ରଙ୍ଗାସ୍ୱାମୀଙ୍କୁ ସେ ମନେ ପକାଇବାକୁ ଭୁଲିଲେ ନାହିଁ ଯେ ପାଞ୍ଚଟି ଝିଅର ବାପା ହିସାବରେ ସେ ବାହାଘର ସୁଯୋଗ ହାତଛଡ଼ା କରିବାଟା ମୂର୍ଖାମୀ ହେବ।

ସବୁବେଳ ଭଳି କୋମଳତାମ୍ମାଲ୍‌ଙ୍କର କଥା ରହିଲା ଏବଂ ରାତି ଗୋଟାଏ ବେଳେ ବରଯାତ୍ରୀଙ୍କର ଚର୍ଚ୍ଚା କରାଗଲା। ତା'ପରେ ବିବାହ କର୍ମର ବିଭିନ୍ନ ରୀତି ଆରମ୍ଭ ହେଲା। ଶେଷରେ 1909 ମସିହା ଜୁଲାଇ ମାସ ଚଉଦ ତାରିଖରେ ଜାନକୀ ଓ ରାମାନୁଜନ୍‌ଙ୍କ ବିବାହ ଚୂଡ଼ାନ୍ତ ହେଲା।

ବାହାଘର ସମୟରେ କେତେଗୁଡ଼ିଏ ଘଟଣା ଘଟିଲା ଯାହାକୁ ଅଶୁଭ ସଙ୍କେତ ଭାବରେ

ଦେଖାଯାଇଥିଲା। ରାମାନୁଜନ୍ ଓ ଜାନକୀ ପାରମ୍ପରିକ ଦୋଳିରେ ବସି ବନ୍ଧା ହେଉଥିଲା ବେଳେ ମାନସିକ ବିକାରଗ୍ରସ୍ତ ପିଲାଟିଏ ଚିତ୍କାର କରିବାରେ ଲାଗିଲା। ଏହା ସେ ମୁହୂର୍ତ୍ତର ସଙ୍ଗତିକୁ ବିଶୃଙ୍ଖଳିତ କରିଦେଲା। କିଛି ସମୟ ପରେ ଜାନକୀ ରାମାନୁଜନ୍‌ଙ୍କ ଗଳାରେ ପକାଇବାକୁ ଯାଉଥିବା ମାଳଟି ତାଙ୍କ ହାତରୁ ଖସି ପଡ଼ିଲା। ଶେଷ ପର୍ଯ୍ୟାୟରେ ବାଦ୍ୟ ଓ ସଙ୍ଗୀତ କାର୍ଯ୍ୟକ୍ରମ ସମୟରେ ବିବାହ ବେଦୀର ଗୋଟିଏ କଣରେ ନିଆଁ ଲାଗିଗଲା। ଅଳ୍ପ ସମୟ ଭିତରେ ତାହାକୁ ଲିଭାଇ ଦିଆଯାଇଥିଲେ ବି ଅଶୁଭ ସୂଚନା ଭାବେ ତାହାର ଡର ରହିଗଲା।

ଏସବୁ ଭିତରେ ସାହସୀ କୋମଳତାମ୍ମାଲ୍ ତାଙ୍କର ସରସତା ହରାଇ ନ ଥିଲେ। ଏଭଳି ଅବିଚଳିତ ରହିଥିବା ଦେଖି ତାଙ୍କୁ ସମସ୍ତେ ସହାନୁଭୂତି ଜଣାଇବା ସହିତ ପ୍ରଶଂସା କରୁଥିଲେ ଏବଂ କିଛି ମାତ୍ରାରେ ଆଶ୍ଚର୍ଯ୍ୟ ମଧ୍ୟ ହେଉଥିଲେ।

ବାହାଘର ପରେ ରାମାନୁଜନ୍‌ଙ୍କ ନିତିଦିନିଆ ଜୀବନରେ ବିଶେଷ କିଛି ବଦଳିଲା ନାହିଁ। ଜାନକୀ ଆହୁରି ତିନି ବର୍ଷ ଯାଏଁ ଶାଶୂଘରକୁ ଆସିବାର ନ ଥିଲା। ଏବେ ସେ ମା'ଙ୍କ ପାଖରେ ରହି ରାନ୍ଧଣା ଓ ଅନ୍ୟ ଘରକରଣା କଥା ଶିଖିବେ। ମୋଟ ଉପରେ କହିଲେ ଜଣେ ଭଲ ବୋହୂ ଓ ସ୍ତ୍ରୀ ହେବାର କଳାରେ ସେ ତାଲିମ ପାଇବେ। ଏଭିତରେ କିନ୍ତୁ ରାମାନୁଜନ୍‌ଙ୍କୁ ଘର ଚଳାଇବା ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ। ସାମାଜିକ ଦୃଷ୍ଟିରୁ ଏବେ ସେ ଗୃହସ୍ଥ। ତାଙ୍କ ଉପରେ ଅନେକ ଦାୟିତ୍ୱ ରହିଛି। ଏବେ ତାଙ୍କର ସ୍ତ୍ରୀ ଅଛନ୍ତି, ବାପାଙ୍କ ବୟସ ମଧ୍ୟ ବଢ଼ିଲାଣି। ତେଣୁ ସେ ଆଉ ଚିନ୍ତାମୁକ୍ତ ହୋଇ ଗଣିତ ରାଜ୍ୟରେ ଘୂରିବୁଲି ପାରିବେନାହିଁ। ମାନସିକ ସ୍ତରରେ ଏବେ ତାଙ୍କୁ ଦାୟିତ୍ୱବାନ ବୟସ୍କ ହେବାକୁ ପଡ଼ିବ।

ଏତିକି ବେଳେ ସେ ଅସୁସ୍ଥ ହୋଇପଡ଼ିଲେ। ଏକ ସ୍ପର୍ଶକାତର ସମସ୍ୟା ହୋଇଥିବାରୁ କେତେ ଜାଗାରେ ତାଙ୍କର ବୃକକ୍‌ରେ ଅସୁବିଧା ହୋଇଥିଲା ବୋଲି ଲେଖା ଅଛି। ପ୍ରକୃତରେ କିନ୍ତୁ ତାଙ୍କର ଅଣ୍ଡକୋଷ ବୃଦ୍ଧି ହୋଇଥିଲା। ଏହା ନିଜେ କୌଣସି ରୋଗ ନୁହେଁ, ବରଂ ଫାଇଲେରିଆ ରୋଗର ଏକ ପ୍ରତିକ୍ରିୟା। ଦକ୍ଷିଣ ଭାରତରେ ବ୍ୟାପକ ଭାବରେ ଦେଖାଯାଉଥିବା ଏହି ରୋଗ ମଶା ଜରିଆରେ ବ୍ୟାପେ। ରୋଗ ଜୀବାଣୁ ମଣିଷର ଲସିକା ପ୍ରଣାଳୀକୁ ଆକ୍ରାନ୍ତ କରେ। ଲସିକା ପ୍ରବାହରେ ବାଧା ଆସିଲେ ଅଣ୍ଡକୋଷ ଫୁଲିବା ଭଳି ଲକ୍ଷଣମାନ ଦେଖାଯାଏ। ସାଧାରଣ ଅବସ୍ଥାରେ ଏହା କୌଣସି ସମସ୍ୟା ସୃଷ୍ଟି କରେନାହିଁ। କିନ୍ତୁ ଅଣ୍ଡକୋଷ ଅତି ବଡ଼ ହୋଇଗଲେ ଚଳପ୍ରଚଳ ହେବାରେ ଅସୁବିଧା ହୋଇପାରେ, ତେଣୁ ଅସ୍ତ୍ରୋପଚାର କରି ତାହାର ଆକାର କମାଇବା ଦରକାର ପଡ଼େ। ସେହି ଅସ୍ତ୍ରୋପଚାର ବେଶ୍ ସରଳ ଏବଂ ସେଥିରେ ପ୍ରାୟ କିଛି ଜଟିଳତା ଦେଖା ଯାଏନାହିଁ।

ରାମାନୁଜନ୍‌ଙ୍କ କ୍ଷେତ୍ରରେ ଅନ୍ୟ ଗୋଟିଏ ଅସୁବିଧା ଥିଲା - ଅସ୍ତ୍ରୋପଚାର ପାଇଁ ତାଙ୍କ ଘରେ ପଇସା ନ ଥିଲା। କାହାରିଠାରୁ କିଛି ସାହାଯ୍ୟ ମଧ୍ୟ ମିଳିଲା ନାହିଁ। ଶେଷରେ 1910 ମସିହା ଜାନୁଆରି ମାସରେ ଜଣେ ଡାକ୍ତର କୁପ୍ପୁସ୍ୱାମୀ ମାଗଣାରେ ତାଙ୍କ ଚିକିତ୍ସା କରିବାକୁ ରାଜିହେଲେ। ଜଣେ ସାଥୀ ଆଶ୍ଚର୍ଯ୍ୟର ସହିତ ମନେପକାନ୍ତି ଯେ ତାଙ୍କୁ ନିଶ୍ଚେତକ ଦିଆଗଲା ବେଳେ ରାମାନୁଜନ୍ ଲକ୍ଷ୍ୟ କରୁଥା'ନ୍ତି କେଉଁ କ୍ରମରେ ତାଙ୍କର ଇନ୍ଦ୍ରିୟଗୁଡ଼ିକ ଅକାମୀ ହେଉଛନ୍ତି।

କିଛିଦିନ ପାଇଁ ରାମାନୁଜନ୍‌ଙ୍କୁ ଶୋଇ ରହିବାକୁ ହେଲା। ତଥାପି ଅଧୈର୍ଯ୍ୟ ହୋଇ ସେ

ପୂରା ଭଲହେବା ଆଗରୁ ସାଥୀ ଅନନ୍ତରମଣଙ୍କ ସହିତ କେତେ ମାଇଲ ଦୂରରେ ଥିବା ଗୋଟିଏ ଗାଁକୁ ଚାଲି ଚାଲି ଗଲେ। ଫଳରେ ଅସ୍ତ୍ରୋପଚାର କ୍ଷତରୁ ରକ୍ତ ବହିବାକୁ ଲାଗିଲା, କିନ୍ତୁ ତାହା ବଡ଼ ଅସୁବିଧା କଲାନାହିଁ ଏବଂ କେତେ ଦିନ ପୂରା ବିଶ୍ରାମ ପରେ ଭଲ ହୋଇଗଲା। ଏହି ଲମ୍ବା ବିଶ୍ରାମ ରାମାନୁଜନ୍‌ଙ୍କ ମନରେ ନୂଆ ଉତ୍ସାହ ଆଣିଦେଲା - ସେ ତାଙ୍କ ବାରଣ୍ଡା ଛାଡ଼ି ଏବେ ବାହାର ବିସ୍ତୃତ ଦୁନିଆରେ ବୁଲିବାକୁ ଲାଗିଲେ।

## 2. ଦୁଆର ଦୁଆର ବୁଲା

ରାମାନୁଜନ୍ ଏବେ ଆଉ ଛାତ୍ରବୃତ୍ତି ଖୋଜିବାରେ ବା ଗଣିତଜ୍ଞ ହେବାର ଚେଷ୍ଟାରେ ଲାଗିଲେନାହିଁ। ତାଙ୍କର ପ୍ରଧାନ ଚିନ୍ତା ହେଲା ଚାକିରିଟିଏ ଯୋଗାଡ଼ କରି ଭବିଷ୍ୟତକୁ ସୁରକ୍ଷିତ କରିବା। ସେଥିପାଇଁ ଦୁଇ ବର୍ଷ ଧରି ସେ କୁମ୍ଭକୋଣମ୍ ଓ ମାନ୍ଦ୍ରାଜର ଚାରିପାଖରେ ବୁଲିବାରେ ଲାଗିଲେ।

ତାଙ୍କୁ ପୁଣି ରେଳଗାଡ଼ିରେ ଯିବାକୁ ହେଲା, କିନ୍ତୁ ଟିକେଟ ଖର୍ଚ୍ଚ ପାଇଁ ତାଙ୍କୁ ସାଙ୍ଗ ବା ଶୁଭେଚ୍ଛୁମାନଙ୍କ ଉପରେ ନିର୍ଭର କରିବାକୁ ପଡୁଥିଲା। ଖୁନ୍ଦାଖୁନ୍ଦି ହୋଇ ତୃତୀୟ ଶ୍ରେଣୀରେ ଯାତ୍ରା କରିବା ପାଇଁ ମଧ୍ୟ ରାମାନୁଜନ୍‌ଙ୍କୁ ବାଧୁଥିଲା। ମାଇଲ ପ୍ରତି ପ୍ରାୟ ଏକ ପଇସା ହାରରେ ସେ ଟିକେଟର ଦାମ ତାଙ୍କ ବାପାଙ୍କର ସପ୍ତାହକର ଦରମାଠାରୁ ବେଶି ଥିଲା। ସେତିକି ପଇସାରେ ଶହେ ପାଉଣ୍ଡରୁ ବେଶି ଚାଉଳ କିଣାଯାଇ ପାରୁଥିଲା।

ବୁଲିଲା ବେଳେ ତାଙ୍କର ଘର ବୋଲି କିଛି ନ ଥିଲା, ସାଙ୍ଗମାନଙ୍କ ପାଖରେ ସେ ରହୁଥିଲେ। ଥରେ ସେ ଜଣେ ସାଙ୍ଗର ଘରେ ପହଞ୍ଚି ରହିବାକୁ ଚାହିଁଲେ ଏବଂ ଜଣେ ବୟସ୍କ ସାଧୁ ରହୁଥିବା ଜାଗାରେ ତାଙ୍କୁ ରହିବାକୁ ହେଲା। 1910 ମସିହାର କିଛିଦିନ ପାଇଁ ସେ କୁମ୍ଭକୋଣମ୍‌ରେ ତାଙ୍କର ଛାତ୍ରଥିବା ଏବଂ ଏବେ ମାନ୍ଦ୍ରାଜ ପ୍ରେସିଡେନ୍‌ସି କଲେଜରେ ପଢୁଥିବା ବିଶ୍ୱନାଥ ଶାସ୍ତ୍ରୀଙ୍କ ସହିତ ରହିଲେ। ବିଶ୍ୱନାଥ କଲେଜ ପାଖରେ ଭିକ୍ଟୋରିଆ ହଷ୍ଟେଲରେ ରହୁଥିଲେ। ତାହା ଥିଲା ଲାଲ ଓ କଳା ରଙ୍ଗର ଏକ ବଡ଼ ଇଟା ତିଆରି ତିନି ମହଲା କୋଠା ଯେଉଁଥିରେ ଅନେକ ମୀନାର ଓ ଖମ୍ବଯୁକ୍ତ ଖିଲାଣ ରହିଥିଲା। ଦେଖିଲେ ଲାଗୁଥିଲା ସତେ ଯେମିତି କେହି ସେ ଘରଟିକୁ ଇଂଲଣ୍ଡରୁ ଉଠାଇ ଆଣିଛି। ସେଠାରେ ରହି ରାମାନୁଜନ୍ ପ୍ରତିଦିନ ସକାଳୁ ବାହାରକୁ ଯାଇ ପଢ଼ାଇବା ପାଇଁ ପିଲା ଖୋଜିବାରେ ଲାଗିଲେ।

କିନ୍ତୁ ପାଠ୍ୟକ୍ରମ ଅନୁସାରେ ପଢ଼ାଉ ନ ଥିବା ଜଣେ ଶିକ୍ଷକ ଭାବରେ ସମସ୍ତେ ତାଙ୍କୁ ଜାଣିଯାଇଥିଲେ, ତେଣୁ ବେଶି କେହି ତାଙ୍କ ପାଖରେ ପଢ଼ିବାକୁ ବାହାରିଲେ ନାହିଁ। ବିଶ୍ୱନାଥ ଶାସ୍ତ୍ରୀ ମନେପକାନ୍ତି ଯେ ରାତିରେ ରାମାନୁଜନ୍ ତାଙ୍କର ଦୟନୀୟ ଜୀବନକୁ ନେଇ ବିଳାପ କରନ୍ତି। ତାଙ୍କୁ ଉତ୍ସାହିତ କରିବା ପାଇଁ ବିଶ୍ୱନାଥ ତାଙ୍କର ପ୍ରତିଭା କଥା ମନେ ପକାଇ ଦିଅନ୍ତି ଓ କହନ୍ତି ଯେ ସମୟ ଆସିବ ଯେତେବେଳେ ସେ ସ୍ୱୀକୃତି ପାଇବେ। ରାମାନୁଜନ୍ ଉତ୍ତର ଦିଅନ୍ତି ଯେ ଗାଲିଲିଓଙ୍କ ଭଳି ମହାନ ବ୍ୟକ୍ତି ବନ୍ଦୀ ହୋଇ ମଲେ, ଆଉ ଦାରିଦ୍ର୍ୟରେ ମରିବା ହେଉଛି ତାଙ୍କର ଭାଗ୍ୟ। ଭଗବାନଙ୍କ ଉପରେ ଭରସା ରଖି ଆଗେଇ ଚାଲିବା ପାଇଁ ବିଶ୍ୱନାଥ ତାଙ୍କୁ ଉତ୍ସାହିତ କରିଚାଲୁଥିଲେ।

ମାନସିକ ସ୍ତରରେ ଏହି ସମୟଟି ରାମାନୁଜନ୍ ପାଇଁ ଅତି କଷ୍ଟକର ଥିଲା ଏବଂ ଯାହା ତାଙ୍କୁ

ଟିକିଏ ବି ଖୁସି ଦେଉଥିଲା ତାହା ତାଙ୍କ ମନରେ ଆଙ୍କିହୋଇ ରହୁଥିଲା। ଅନେକ ବର୍ଷ ପରେ ଏହି ସମୟରେ କେବେ ତାଙ୍କୁ ମିଳିଥିବା ସ୍ୱାଦିଷ୍ଟ ରସମ୍ କଥା ସେ ମନେପକାଇ ପାରୁଥିଲେ।

1910ର ଶେଷ ଆଡ଼କୁ ଓ ତା'ର ପର ବର୍ଷର କିଛି ସମୟ ପାଇଁ ସେ ସେଣ୍ଟ୍ରାଲ ଷ୍ଟେସନର ଲାଲ କୋଠା ପାଖରେ ପାର୍କ ଟାଉନର ଭେଙ୍କଟନାରାୟଣନ୍ ଲେନ୍‌ରେ ରହିଲେ। କୁମ୍ଭକୋଣମ୍‌ର ଦୁଇଜଣ ପୁରୁଣା ସାଙ୍ଗ ଏଠାରେ ରହିବାରେ ତାଙ୍କୁ ସାହାଯ୍ୟ କଲେ। ତାଙ୍କ ଭିତରୁ ଜଣେ ଥିଲେ କେ. ସରଙ୍ଗାପାନି ଆୟେଙ୍ଗାର, ଦଶ ବର୍ଷ ପୂର୍ବେ ଗଣିତରେ ଅଧିକ ରଖିଥିବାରୁ ରାମାନୁଜନ୍ ଯାହା ଉପରେ ଭୀଷଣ ରାଗିଥିଲେ। ଅନ୍ୟ ଜଣକ ଥିଲେ ସରଙ୍ଗାପାନିଙ୍କ ଭାଇ କେ. ନରସିଂହ ଆୟେଙ୍ଗାର। କୁମ୍ଭକୋଣମ୍‌ରେ ଥିବାବେଳେ ଏହି ଦୁଇ ଭାଇ ଲୁଗାପଟା ଓ ରେଳଗାଡ଼ି ଖର୍ଚ୍ଚ ପାଇଁ ରାମାନୁଜନ୍‌ଙ୍କୁ ସାହାଯ୍ୟ କରୁଥିଲେ। ଏବେ ସେମାନେ ପୁଣି ସାହାଯ୍ୟ କଲେ।

ନରସିଂହ ମାଡ୍ରାସ୍ କ୍ରିଷ୍ଟିଆନ୍ କଲେଜର ଛାତ୍ର ଥିଲେ ଏବଂ ରାମାନୁଜନ୍ ତାଙ୍କୁ ଗଣିତ ପଢ଼ାଇଲେ। ଏଫ୍.ଏ. ପରୀକ୍ଷା ପାଖେଇ ଆସିଲାରୁ ନରସିଂହ ଛାନିଆ ଓ ବିଶାଦଗ୍ରସ୍ତ ହୋଇପଡ଼ିଲେ ଏବଂ ପରୀକ୍ଷା ନ ଦେବା କଥା ମଧ୍ୟ ଚିନ୍ତା କଲେ। ପରୀକ୍ଷା ଆରମ୍ଭ ଦିନ ରାମାନୁଜନ୍ ଚାରି ମାଇଲ ଚାଲିକରି ପ୍ରେସିଡେନ୍‌ସି କଲେଜ ପରୀକ୍ଷା କେନ୍ଦ୍ରକୁ ଗଲେ ଏବଂ ନରସିଂହଙ୍କୁ ଖୋଜି ବାହାର କଲେ। ତାଙ୍କୁ ବୁଝାଇ, ଉତ୍ସାହଭରା କଥା କହି, ପରୀକ୍ଷାରେ ସାହାଯ୍ୟ କଲା ଭଳି କିଛି ସୂଚନା ଦେଇ ତାଙ୍କୁ ପରୀକ୍ଷାରେ ବସାଇଲେ। ସାମାନ୍ୟତମ ହେଲେ ବି ରାମାନୁଜନ୍‌ଙ୍କ କଥା ବୋଧହୁଏ କାମ ଦେଲା, କାରଣ ନରସିଂହ ସବୁଠାରୁ କମ୍ ନମ୍ବର ରଖିଥିଲେ ମଧ୍ୟ ପାସ୍ କରିଗଲେ।

ଏହାର ଅଳ୍ପଦିନ ପରେ ରାମାନୁଜନ୍ ଦିନେ ଗୋଟିଏ ଘୋଡ଼ାଗାଡ଼ିରେ ଆସି ପାଶ୍ୟାପ୍ପା ବେଳର ସାଙ୍ଗ ଆର୍. ରାଧାକ୍ରିଷ୍ଣା ଆୟାରଙ୍କ ଘରେ ପହଞ୍ଚିଲେ। ସେତେବେଳେ ସେ ଅସୁସ୍ଥ ଥିଲେ। ବୋଧହୁଏ ତାଙ୍କର ପୁରୁଣା କ୍ଷତ ପୁଣି ଅସୁବିଧା କରୁଥିଲା। ରାଧାକ୍ରିଷ୍ଣା ତାଙ୍କୁ ଖୁଆଇ ପିଆଇ ଡାକ୍ତର ଦେଖାଇଲେ। ରାମାନୁଜନ୍‌ଙ୍କର ଅନବରତ ଯତ୍ନନେବା ଦରକାର ବୋଲି ଡାକ୍ତର ନାରାୟଣସ୍ୱାମୀ କହିଲେ। ତେଣୁ ରାଧାକ୍ରିଷ୍ଣା ତାଙ୍କୁ ରେଳଗାଡ଼ିରେ ବସାଇ କୁମ୍ଭକୋଣମ୍ ପଠାଇଦେଲେ। ଗାଡ଼ି ଛାଡ଼ିବାର ପୂର୍ବ ମୁହୂର୍ତ୍ତଟି ରାଧାକ୍ରିଷ୍ଣା କେବେ ଭୁଲିବେ ନାହିଁ। ସେତେବେଳେ ରାମାନୁଜନ୍ ବିଚଳିତ ହୋଇ କହିଥିଲେ, "ମୁଁ ଯଦି ମରିଯାଏ ତେବେ ଏଗୁଡ଼ିକ ପାଶ୍ୟାପ୍ପା କଲେଜର ଅଧ୍ୟାପକ ସିଙ୍ଗାରାଭେଲୁ ବା ମାଡ୍ରାସ୍ କ୍ରିଷ୍ଟିଆନ୍ କଲେଜର ଇଂରେଜ ଅଧ୍ୟାପକ ଏଡ୍‌ୱାର୍ଡ ବି. ରସ୍ (ରାମାନୁଜନ୍ ଯାହାଙ୍କୁ ଅଳ୍ପ ଦିନ ତଳେ ଚିହ୍ନିବାକୁ ପାଇଥିଲେ)ଙ୍କୁ ଦେଇଦେବ।"

ଏହା କହି ରାମାନୁଜନ୍ ତାଙ୍କୁ ଗଣିତ ଖୁନ୍ଦା ହୋଇଥିବା ଦୁଇଟି ମୋଟା ଖାତା ଦେଇଥିଲେ।

ଏହି ଘଟଣାରୁ ସୂଚନା ମିଳେ ଯେ ରାମାନୁଜନ୍ ଏବେ ତାଙ୍କ ଗଣିତ ଖାତାକୁ କେବଳ ନିଜ ଚିନ୍ତାର ଟିପାଖାତା ବୋଲି ଭାବୁ ନ ଥିଲେ। ବରଂ ତାଙ୍କ ମନରେ ଏହା ଥିଲା କିଛି ମୂଲ୍ୟବାନ ସମ୍ପତ୍ତି ଯାହା ସେ ସର୍ବସାଧାରଣଙ୍କ ପାଇଁ ଛାଡ଼ିଯିବାକୁ ଚାହୁଁଥିଲେ। ଚାକିରି ପାଇବା ପାଇଁ ତାଙ୍କ ଦକ୍ଷତାର ପ୍ରମାଣ ଭାବରେ ସେ ଭେଟୁଥିବା ପ୍ରଭାବଶାଳୀ ଲୋକମାନଙ୍କୁ ତାହା ଦେଖାଉଥିଲେ। ସେ ଦେଖାଇବାକୁ ଚାହୁଁଥିଲେ ଯେ ଡିଗ୍ରୀ ହାସଲ କରିବାରେ ତାଙ୍କର ବିଫଳତା ସତ୍ତ୍ୱେ ସେ ମନେହେଉଥିବା ଭଳି

ନିକମା ନୁହନ୍ତି। କାମ ଖୋଜୁଥିବା କଳାକାରମାନେ ଯେପରି ତାଙ୍କ ଚିତ୍ରକଳାର ନମୂନା ଧରି ବୁଲନ୍ତି, ସେହିଭଳି ରାମାନୁଜନ୍ ତାଙ୍କ ଗଣିତ ଖାତା ଧରି ସମ୍ଭାବ୍ୟ ନିଯୁକ୍ତିଦାତାଙ୍କ ପାଖକୁ ଯାଉଥିଲେ। କହିବାକୁ ଗଲେ ସେ ଜଣେ ବୁଲାବିକାଳି ଥିଲେ ଯିଏ ନିଜକୁ ହିଁ ବିକିବାକୁ ଚେଷ୍ଟା କରୁଥିଲେ।

ଅନ୍ୟ ସବୁ ଦେଶ ଭଳି ଭାରତରେ ଚିଠି ବା ଦରଖାସ୍ତ ଜରିଆରେ ଚାକିରି ପାଇବା ସହଜ ନ ଥିଲା। ଏଥିପାଇଁ ବ୍ୟକ୍ତିଗତ ଚିହ୍ନା ପରିଚୟ ବେଶି ସାହାଯ୍ୟ କରୁଥିଲା। ଚିହ୍ନା ଅଚିହ୍ନା ଲୋକଙ୍କ ପାଖରେ ପହଞ୍ଚି ରାମାନୁଜନ୍ ଗୋଟିଏ କଥା କହୁଥିଲେ - ବାପା ମା ତାଙ୍କର ବାହାଘର କରି ଦେଇଛନ୍ତି, ତେଣୁ ତାଙ୍କର ଚାକିରି ଖଣ୍ଡେ ଅତି ଦରକାର। ତାଙ୍କର ଡିଗ୍ରୀ ନାହିଁ, କିନ୍ତୁ ସେ ସ୍ୱାଧୀନ ଭାବରେ ଗଣିତ ବିଷୟରେ ଗବେଷଣା ଚଳାଇଛନ୍ତି। ଗବେଷଣାର କିଛି ଫଳାଫଳ ଏହି ଖାତାରେ ରହିଛି, ମହାଶୟ ଦୟାକରି ଏହାକୁ ଦେଖିବେ କି?

ସବୁଆଡ଼େ ଚାକିରି ଦେଇପାରିବା ଲୋକମାନେ କିନ୍ତୁ ଖୋଜନ୍ତି ଡିଗ୍ରୀ ବା ଅନ୍ୟ ପ୍ରମାଣ ପତ୍ର, ଗବେଷଣାଫଳ ଭରା ଖାତା ନୁହେଁ। ପାଶ୍ଚାତ୍ୟ ଦେଶମାନଙ୍କ ତୁଳନାରେ ଭାରତରେ ଏହା ଆହୁରି ବେଶି ଦେଖାଯାଏ। ନାଁ ଆଗରେ ଓ ପଛରେ ଡିଗ୍ରୀ ଓ ଉପାଧି ଯୋଡ଼ିବାର ବ୍ୟଗ୍ରତା ଏଠାରେ ଅଧିକ। ଏହି ଆତ୍ମପ୍ରଚାର ବିଷୟରେ ବିଶିଷ୍ଟ ଲେଖକ ନିରଦ ସି. ଚୌଧୁରୀ କହିଥିଲେ, “ସେନାବାହିନୀ ଭଳି ସାଙ୍ଗରେ ଆମେ ବାଜା ଧରି ଯିବା ଜରୁରୀ। ସୈନିକମାନେ ଆଗେଇବା ପାଇଁ ଯେପରି ବାଜା ଦରକାର କରନ୍ତି, ଆମର ପେଷାରେ ଆଗେଇବା ପାଇଁ ସେଭଳି ନିଜର ପ୍ରଚାର ବାଜା ବଜାଇବା ଦରକାର। ଆମ ସମାଜରେ ପଦବୀ ହିଁ ମଣିଷର ପରିଚାୟକ ହୁଏ।” ଏବଂ ରାମାନୁଜନ୍‌ଙ୍କ ପଦବୀ ଥିଲା ବେକାର ଓ ଫେଲ୍। ଜଣେ ବିଶିଷ୍ଟ ଗଣିତ ଅଧ୍ୟାପକ ରୋକ୍‌ଠୋକ୍ ଭାବରେ ତାଙ୍କୁ ଶୁଣାଇଦେଲେ ଯେ ବି.ଏ. ଡିଗ୍ରୀ ବିନା ସେ କିଛି କାମର ହେବେ ନାହିଁ।

ରାମାନୁଜନ୍‌ଙ୍କ ବୁଲା ବିକାଳି କାମ ଖୁବ୍ କଷ୍ଟକର ଥିଲା। କିନ୍ତୁ ଏହି କାମରେ ତାଙ୍କର ବିଶେଷ ଗୁଣ ସବୁ ଫୁଟି ଉଠିଲା ଯାହା ଫଳରେ ସବୁଆଡ଼େ ସେ ଆଦର ପାଇଲେ।

ମାଡ୍ରାଜରେ ରାମାନୁଜନ୍‌ଙ୍କୁ ଜାଣିଥିବା ଜଣେ ଲୋକ କହନ୍ତି ଯେ ସେ ଅତି ମେଳାପୀ ଓ କୌତୁକପ୍ରିୟ ଥିଲେ। ତାମିଲ ଓ ଇଂରାଜୀ ଶବ୍ଦର ଅଲଗା ଅର୍ଥ ସବୁ ବାହାର କରି ସେ ମଜାଳିଆ କଥା କହୁଥିଲେ। ବେଳେ ବେଳେ ସେ ଲମ୍ବା ଗପମାନ କହୁଥିଲେ ଓ ମଜା କଥା ଉଠିଲେ ଜୋରରେ ହସିଉଠୁଥିଲେ। ଏଭଳି ଅବସ୍ଥାରେ ତାଙ୍କ ଚୁଟି କେବେ କେବେ ଖୋଲିଯାଏ, ଗପକୁହା ବନ୍ଦ ନ କରି ସେ ତାହା ବାନ୍ଧିବାରେ ଲାଗନ୍ତି। ମଜାକଥାର ଶେଷ ବେଳକୁ ସେ ଏତେ ଜୋରରେ ହସନ୍ତି ଯେ ତାଙ୍କ କଥା ବୁଝିହୁଏନାହିଁ, ତେଣୁ ତାହା ତାଙ୍କୁ ଦୋହରାଇବାକୁ ପଡ଼େ। ତାଙ୍କଠାରେ ସବୁବେଳେ ଫୂର୍ତ୍ତି ଫୁଟୁଥିଲା ଏବଂ ତାଙ୍କ ଆଖିରେ ଚଗଲାମି ଓ ଚମକ ଖେଳୁଥିଲା। ଯେ କୌଣସି ବିଷୟରେ ସେ ଆଲୋଚନା କରି ପାରୁଥିଲେ। ମୋଟ ଉପରେ ଦେଖିଲେ ତାଙ୍କୁ ଭଲ ନ ପାଇ କେହି ରହିପାରୁ ନ ଥିଲା।

ତା'ର ମାନେ ନ ଥିଲା ଯେ ରାମାନୁଜନ୍ ଯେ କେହି ଅଜଣା ଲୋକ ସହିତ ଥଟ୍ଟା ତାମସାରେ ମାତି ଯାଉଥିଲେ। ସେ ବେଶ୍ ଲାଜକୁଳା ଥିଲେ ଏବଂ ଅଳ୍ପ କେତେ ଜଣ ସାଙ୍ଗଙ୍କ ମେଳରେ ତାଙ୍କ ମେଳାପୀ ଗୁଣ ବାହାରୁଥିଲା, ବେଶି ଲୋକଙ୍କ ଗହଳିରେ ନୁହେଁ। ବ୍ୟକ୍ତିଗତ ସମ୍ପର୍କର ସୂକ୍ଷ୍ମ ଦିଗ

ପ୍ରତି ସେ ବିଶେଷ ସଚେତନ ନ ଥିଲେ। ତଥାପି ଅନେକ ସାଥୀ ତାଙ୍କ ସାଙ୍ଗରେ କଟାଇଥିବା ସମୟକୁ ଅତି ଆଦରର ସହିତ ମନେପକାନ୍ତି। କୁମ୍ଭକୋଣମ୍ କଲେଜର ସହପାଠୀ ଏନ୍. ହରି ରାଓ ଥରେ ରାମାନୁଜନ୍‌ଙ୍କୁ ଭେଟିବା ପାଇଁ ମାଦ୍ରାଜ ଆସିଥିଲେ। ସେହି ଅନୁଭୂତି ବିଷୟରେ ସେ କହନ୍ତି, "ରାମାନୁଜନ୍ ତାଙ୍କ ଗଣିତ ଖାତା ଖୋଲି ବିଭିନ୍ନ ନୂଆ ଓ ଜଟିଳ ଉପପାଦ୍ୟ ବିଷୟରେ ମତେ ବୁଝାଇଚାଲନ୍ତି। ସେ ଭାବିପାରନ୍ତିନାହିଁ ଯେ ତାଙ୍କ ଗଣିତ ମୋ ଜ୍ଞାନ ବା ବୁଝିବାର ଦକ୍ଷତାର ବହୁ ଉପରେ।" ଏଭଳି ପରିସ୍ଥିତି ଯେ ଆସୁଥିବ ତାହା ତାଙ୍କ ମନକୁ ଆସେନାହିଁ। ଗଣିତ ଭିତରେ ପଶିଗଲା ପରେ ତାଙ୍କ ସାଙ୍ଗରେ କେହି ଥିବା କଥା ସେ ଭୁଲିଯା'ନ୍ତି।

ତଥାପି ସାମାଜିକ ଜୀବନରେ ତାଙ୍କର ଏହି ଦୁର୍ବଳତା ତାଙ୍କର ଏକ ବିଶେଷ ଗୁଣ ଭାବରେ ଦେଖାଯାଉଥିଲା। କାରଣ ଏହା ଯେ ତାଙ୍କର ସରଳତା ଓ ଅକପଟ ଗୁଣର ପ୍ରତିଫଳନ ତାହା ତାଙ୍କୁ ଚିହ୍ନିଥିବା ଲୋକମାନେ ବୁଝୁଥିଲେ।

ତାଙ୍କର ଜଣେ ସ୍କୁଲ ସାଙ୍ଗ ଏନ୍. ରଘୁନାଥନ୍, ଯିଏ ନିଜେ ଜଣେ ଗଣିତ ଅଧ୍ୟାପକ ହୋଇଥିଲେ, ମନେପକାଇ କହନ୍ତି ଯେ ରାମାନୁଜନ୍ ଏତେ ସରଳ ଥିଲେ ଯେ କେହି ବି ତାଙ୍କ ଉପରେ ରାଗି ପାରିବନାହିଁ। ତାଙ୍କର ମଜାକଥାଗୁଡ଼ିକ ସିଧାସଳଖ ଧରଣର ଥିଲା ଏବଂ ଭାଷାଚାତୁର୍ଯ୍ୟ ସମ୍ପର୍କିତ ମଜାକଥାରେ ବିଶେଷ ଗଭୀରତା ନ ଥିଲା। ମନୋରଞ୍ଜନ ପାଇଁ ସେ କଣ୍ଢେଇ ନାଚ ବା ମେଳା ସମୟରେ ସାରାରାତି ଚାଲୁଥିବା ଗାଉଁଲି ଯାତ୍ରା ଦେଖିବାକୁ ପସନ୍ଦ କରୁଥିଲେ। ଏସବୁ ଦେଖିବା ପାଇଁ ସେ ସାଙ୍ଗମାନଙ୍କ ଦଳରେ ଯାଉଥିଲେ ଓ ବାଟ ସାରା ଗପ କହି ଓ ମଜାକଥା ଶୁଣାଇ ଚାଲୁଥିଲେ। ରାମାନୁଜନ୍ ତାଙ୍କ ମନକଥା ସବୁ ଲୁଚାଇ ରଖିପାରୁ ନ ଥିଲେ। ତାଙ୍କର ବ୍ୟବହାର ଏତେ ସିଧାସଳଖ ଓ ଅକପଟ ଥିଲା ଯେ କେହି ତାଙ୍କୁ ଅବିଶ୍ୱାସ କରିପାରୁ ନ ଥିଲେ। ସମସ୍ତେ ତାଙ୍କୁ ଭଲ ପାଇବାକୁ ଚାହୁଁଥିଲେ ଓ ସାହାଯ୍ୟ କରିବାକୁ ବ୍ୟଗ୍ର ଥିଲେ।

କିଛି ବର୍ଷ ପୂର୍ବେ କୁମ୍ଭକୋଣମ୍ ଠାରେ ଜଣେ ବୟସ୍କା ମହିଳା ରାମାନୁଜନ୍‌ଙ୍କ କଥା ବୁଝୁଥିଲେ ଓ ଅନେକ ସମୟରେ ଜଳଖିଆ ଖାଇବା ପାଇଁ ତାଙ୍କୁ ଘରକୁ ଡାକୁଥିଲେ। ସେ ମହିଳା ଗଣିତ ବିଷୟରେ କିଛି ବି ଜାଣି ନ ଥିଲେ, କିନ୍ତୁ ରାମାନୁଜନ୍‌ଙ୍କ ଆଖିର ଝଲକକୁ ଓ କୌଣସି ବିଷୟରେ ନିଜକୁ ପୂରା ହଜାଇଦେବା ଗୁଣକୁ ଦେଖି ତାଙ୍କ ପ୍ରତି ଆକର୍ଷିତ ହୋଇଥିଲେ। ଆହୁରି ଅନେକ ଲୋକଙ୍କୁ ମଧ୍ୟ ଏହା ଆକର୍ଷିତ କରୁଥିଲା। ସେମାନେ ରାମାନୁଜନ୍‌ଙ୍କ ଗଣିତ ବୁଝୁ ନ ଥିଲେ, ଅନେକେ ତାଙ୍କୁ ଆଡ଼ବାୟା ମଧ୍ୟ ମନେ କରୁଥିଲେ। ଲୋକମାନେ ଜାଣୁଥିଲେ ଯେ ସେମାନେ ରାମାନୁଜନ୍‌ଙ୍କୁ ସାହାଯ୍ୟ କରିପାରିବେନାହିଁ। ତଥାପି ସମସ୍ତେ ଭଲନପାଇ ରହିପାରୁ ନ ଥିଲେ।

1910 ମସିହାର ଶେଷ ଆଡ଼କୁ ରାମାନୁଜନ୍ ଫରାସୀ ଉପନିବେଶ ପଣ୍ଡିଚେରି ପାଖରେ ଥିବା ଭିଲୁପୁରମ୍ ଗଲେ। ସେଠାରୁ ସେ ଆଉ ଗୋଟିଏ ରେଳଗାଡ଼ି ଧରି ତିରୁକୋଇଲୁର ସହରରେ ପହଞ୍ଚିଲେ। ପ୍ରାୟ 9000 ଲୋକସଂଖ୍ୟାର ସେହି ଛୋଟ ସହରଟି ଜିଲ୍ଲାର ସଦର ମହକୁମା ଥିଲା। ସେଠାରେ ଡେପୁଟି କଲେକ୍ଟର ଭି. ରାମସ୍ୱାମୀ ଆୟାରଙ୍କୁ ସେ ସାକ୍ଷାତ କଲେ। ରାମସ୍ୱାମୀଙ୍କ ପାଖକୁ ଯିବାର ଗୋଟିଏ ବିଶେଷ କାରଣ ଥିଲା। ସେ ନିଜେ ଜଣେ ଗଣିତଜ୍ଞ ଥିଲେ ଓ କିଛିଦିନ ତଳେ 'ଭାରତୀୟ ଗଣିତ ସମାଜ' (ଇଣ୍ଡିଆନ୍ ମାଥେମାଟିକାଲ୍ ସୋସାଇଟି) ପ୍ରତିଷ୍ଠା କରିଥିଲେ।

ସେ କୌଣସି ଶିକ୍ଷାନୁଷ୍ଠାନ ସହିତ ଯୋଡ଼ା ନ ଥିଲେ ମଧ୍ୟ ସମସ୍ତେ ତାଙ୍କୁ ଅଧ୍ୟାପକ ଡାକୁଥିଲେ। ପ୍ରେସିଡେନ୍‌ସି କଲେଜରେ ପଢୁଥିଲା ବେଳେ ସେ ଇଂଲଣ୍ଡର ଏଜୁକେସନାଲ୍ ଟାଇମ୍‌ସ୍ ପତ୍ରିକା ପାଇଁ ଗଣିତ ବିଷୟରେ ଲେଖା ପଠାଉଥିଲେ। ସେହି ପତ୍ରିକାର ସମ୍ପାଦକମାନେ ତାଙ୍କୁ ଜଣେ କଲେଜ ଶିକ୍ଷକ ଭାବି ଅଧ୍ୟାପକ ଭାବରେ ସମ୍ବୋଧନ କଲେ ଏବଂ ତାଙ୍କର ସେହି ନାଁ ରହିଗଲା।

ରାମାନୁଜନ୍ ସାଙ୍ଗରେ ତାଙ୍କ ଗଣିତ ଖାତା ସବୁ ନେଇଥିଲେ ଓ ରାମସ୍ୱାମୀଙ୍କୁ ତାହା ଦେଖାଇଲେ। ରାମସ୍ୱାମୀଙ୍କ ବିଷୟ କିନ୍ତୁ ଜ୍ୟାମିତି ଥିଲା, ରାମାନୁଜନ୍‌ଙ୍କ ଗଣିତର କ୍ଷେତ୍ର ସେ ବେଶି ଜାଣି ନ ଥିଲେ। ତଥାପି ତାଙ୍କ ନିଜ କହିବା ଅନୁସାରେ, "ସେଥିରେ ଥିବା ଅସାଧାରଣ ଗାଣିତିକ ଫଳାଫଳ ଦେଖି ମୁଁ ବିସ୍ମିତ ହୋଇଗଲି।" କିନ୍ତୁ ରାମାନୁଜନ୍‌ଙ୍କୁ ସେ କ'ଣ ତାଲୁକ ଅଫିସରେ ଚାକିରି ଖଣ୍ଡେ ଦେବେ? ନା, ରାମସ୍ୱାମୀଙ୍କ କହିବା କଥା ଥିଲା, "ରାଜସ୍ୱ ବିଭାଗରେ ଗୋଟିଏ ତଳିଆ ଚାକିରି ଦେଇ ତାଙ୍କର ପ୍ରତିଭାକୁ ମୁଁ ମାରିଦେବାକୁ ଚାହୁଁ ନ ଥିଲି...।" ତେଣୁ ସେ ମାନ୍ଦ୍ରାଜରେ ଥିବା ଗଣିତଜ୍ଞ ସାଙ୍ଗମାନଙ୍କ ପାଖକୁ ସୁପାରିଶ ପତ୍ର ଲେଖି ରାମାନୁଜନ୍‌ଙ୍କୁ ସେଠାକୁ ପଠାଇଦେଲେ।

ରାମସ୍ୱାମୀଙ୍କ ସାଙ୍ଗମାନଙ୍କ ଭିତରୁ ଜଣେ ଥିଲେ ପି. ଭି. ଶେଷୁ ଆୟାର ଯିଏ ସରକାରୀ କଲେଜରେ ରାମାନୁଜନ୍‌ଙ୍କ ଗଣିତ ଅଧ୍ୟାପକ ଥିଲେ। ପ୍ରାୟ 1906 ମସିହା ପରେ ସେମାନଙ୍କର ଦେଖାହୋଇ ନ ଥିଲା। ଏହି ଚାରି ବର୍ଷ ଭିତରେ ଶେଷୁ ଆୟାର ମାନ୍ଦ୍ରାଜରେ ପ୍ରେସିଡେନ୍‌ସି କଲେଜକୁ ଚାଲିଆସିଥିଲେ। ରାମାନୁଜନ୍ ତାଙ୍କୁ ସେଠାରେ ଭେଟିଲେ, ଏଥର କିନ୍ତୁ ତାଙ୍କ ହାତରେ ଗଣିତ ଖାତା ସହିତ ରାମସ୍ୱାମୀଙ୍କ ସୁପାରିଶ ପତ୍ର ଥିଲା। ଚାକିରିର କିଛି ସମ୍ଭାବନା ଓ ଆଉ ଏକ ସୁପାରିଶ ପତ୍ର ଧରି ରାମାନୁଜନ୍ ଆଉ କେତେ ଜଣଙ୍କୁ ଭେଟିବାକୁ ଗଲେ।

ରାମାନୁଜନ୍ ତାଙ୍କୁ ଭେଟିବା ବେଳେ ଏସ୍. ବାଲକ୍ରିଷ୍ଣା ଆୟାର ମାନ୍ଦ୍ରାଜ ଉପକଣ୍ଠ ସାଇଦାପେଟ୍‌ଠାରେ ଥିବା ଟିଚର୍ସ କଲେଜରେ ଗଣିତ ଅଧ୍ୟାପନା ଆରମ୍ଭ କରିଥା'ନ୍ତି। ରାମାନୁଜନ୍‌ଙ୍କୁ ଗୋଟିଏ କିରାଣି ଚାକିରି ଦେବାକୁ ବାଲକ୍ରିଷ୍ଣା ତାଙ୍କ ଉପରିସ୍ଥ ଅଧିକାରୀ ଡଡ୍‌ୱେଲ୍‌ଙ୍କୁ କହିପାରିବେ କି? ଯାହା ଦରମା ମିଳିଲେ ବି ଚଳିବ। ବାଲକ୍ରିଷ୍ଣା ରାମାନୁଜନ୍‌ଙ୍କ ସତ୍କାର କଲେ, ତାଙ୍କ ଖାତା ସବୁ ଦେଖିଲେ - ଯଦିଓ ସେ କିଛି ବୁଝିପାରିଲେନାହିଁ - ଏବଂ ଡଡ୍‌ୱେଲ୍‌ଙ୍କୁ ଭେଟିଲେ। ତିନି ଚାରି ଥର ଭେଟିବା ପରେ ମଧ୍ୟ ଡଡ୍‌ୱେଲ୍ ରାମାନୁଜନ୍‌ଙ୍କ ବିଷୟରେ କିଛି କଲେନାହିଁ। ମନ ଦୁଃଖରେ ବାଲକ୍ରିଷ୍ଣା ରାମାନୁଜନ୍‌ଙ୍କୁ କହିଲେ, "ଏଠାରେ ମୁଁ ଅତି ଛୋଟ, ପ୍ରଭାବ ପକାଇବା ପାଇଁ ମୋର କିଛି ଗୁରୁତ୍ୱ ନାହିଁ।"

ଡିସେମ୍ବର ମାସରେ ରାମାନୁଜନ୍ ଅଧିକ ଗୁରୁତ୍ୱପୂର୍ଣ୍ଣ ପଦବୀରେ ଥିବା ଆର୍. ରାମଚନ୍ଦ୍ର ରାଓଙ୍କୁ ଭେଟିବାକୁ ଗଲେ। ରାମଚନ୍ଦ୍ର ରାଓ ପ୍ରେସିଡେନ୍‌ସି କଲେଜରେ ପଢ଼ା ଶେଷକରି 1890 ମସିହାରେ ଉଣେଇଶ ବର୍ଷ ବୟସରେ ରାଜ୍ୟ ପ୍ରଶାସନିକ ସେବାରେ ଯୋଗ ଦେଲେ। ଏବେ ସେ ଉପରକୁ ଉଠି ଉଠି ନେଲୋର ଜିଲ୍ଲାର ଜିଲ୍ଲାପାଳ ହେଲେଣି। ମାନ୍ଦ୍ରାଜରୁ ପ୍ରାୟ ଶହେ ମାଇଲ ଦୂର ଏହି ସହରଟି ବେଶ୍ ବଡ଼, ଲୋକସଂଖ୍ୟା ପ୍ରାୟ 35,000। ସେହି ବର୍ଷ ତାଙ୍କୁ ଦେୱାନ ବାହାଦୁର ପଦବୀରେ ଭୂଷିତ କରାଯାଇଥାଏ। ଏସବୁ ସହିତ ସେ ଜଣେ ଗଣିତଜ୍ଞ ଥିଲେ ଏବଂ ଚାରି ବର୍ଷ ତଳେ ରାମସ୍ୱାମୀ ଆୟାର ପ୍ରତିଷ୍ଠା କରିଥିବା ଭାରତୀୟ ଗଣିତ ସମାଜର ସଚିବ ଦାୟିତ୍ୱ

ତୁଲାଉଥିଲେ। ଗଣିତ ସମାଜର ପତ୍ରିକାରେ ବାହାରୁ ଥିବା କିଛି ଗାଣିତିକ ସମସ୍ୟାର ସମାଧାନ ମଧ୍ୟ ସେ କରୁଥିଲେ। ବୁଦ୍ଧିମାନ, ଧନୀ ଓ ବେଶ୍ ଜଣାଶୁଣା ରାମଚନ୍ଦ୍ର ରାଓଙ୍କ ଭଳି ଜଣେ ଲୋକଙ୍କ ପୃଷ୍ଠପୋଷକତା ପାଇଲେ ସବୁ କାମ ସହଜରେ ହୋଇପାରିବ।

ରାମାନୁଜନ୍‌ଙ୍କୁ ତାଙ୍କ ସହିତ ସାକ୍ଷାତ କରିବାର ସୁଯୋଗ କିପରି ମିଳିଲା ତା'ର ସଠିକ୍ ବିବରଣୀ ଜଣା ନାହିଁ। ତେବେ ତାଙ୍କ ପୁତୁରା ଆର୍. କ୍ରିଷ୍ଣା ରାଓ ଏଥିରେ ମଧ୍ୟସ୍ଥି ହୋଇଥିଲେ ବୋଲି ଜଣାଯାଏ। ରାମାନୁଜନ୍‌ଙ୍କ ସାଙ୍ଗ ରାଧାକ୍ରିଷ୍ଣା ଆୟାର, ଯାହାଙ୍କୁ ରାମାନୁଜନ୍ ତାଙ୍କ ଗଣିତ ଖାତା ଦେଇଯାଇଥିଲେ, କହନ୍ତି ଯେ ଏହି ସାକ୍ଷାତ ବ୍ୟବସ୍ଥା କରିବା ପାଇଁ ନେଲୋର୍‌ଠାରେ ଇଞ୍ଜିନିଅର ଥିବା ତାଙ୍କ ଶଶୁରଙ୍କ ପାଖକୁ ସେ ଚିଠି ଲେଖିଥିଲେ। ପରେ ଶେଷୁ ଆୟାର କହିଲେ ଯେ ସେହି ସାକ୍ଷାତ ପାଇଁ ସେ ବାଟ ଖୋଲିଥିଲେ। ରାମାନୁଜନ୍‌ଙ୍କର ଇଂରେଜ ସାଙ୍ଗ ନେଭିଲ୍ ଅନୁମାନ କରନ୍ତି ଯେ ରାମଚନ୍ଦ୍ର ରାଓଙ୍କ ସହିତ ଚିହ୍ନା କରିବା ପାଇଁ ଶେଷୁ ଆୟାର ରାମାନୁଜନ୍‌ଙ୍କ ହାତରେ ଗୋଟିଏ ଚିଠି ଦେଇଥିଲେ, କିନ୍ତୁ ତାକୁ କାମରେ ଲଗାଇବା ପାଇଁ ରାମାନୁଜନ୍ ସାହସ କଲେନାହିଁ। ସେହି ପ୍ରତିପତ୍ତିଶାଳୀ ବ୍ୟକ୍ତିଙ୍କୁ ଭେଟିବା ପାଇଁ ରାମାନୁଜନ୍‌ଙ୍କ ଉପରେ ଆଉ କିଛି ଚାପ ଦରକାର ଥିଲା। ତାହା ଆସିଲା ସି. ଭି. ରାଜଗୋପାଳଚାରୀଙ୍କଠାରୁ।

ରାଜଗୋପାଳଚାରୀ ରାମାନୁଜନ୍‌ଙ୍କଠାରୁ ଅଳ୍ପ କେତେ ମାସ ବଡ଼ ଥିଲେ। ଦୁହେଁ କୁମ୍ଭକୋଣମ୍‌ରେ ବଢ଼ିଥିଲେ, ଏକା ମନ୍ଦିର ଓ ସ୍କୁଲକୁ ଯାଉଥିଲେ। 1902 ମସିହାରେ ଦିନେ ଖେଳଛୁଟିରେ ଉପର ଶ୍ରେଣୀର ସବୁଠାରୁ ଭଲ ପଢୁଥିବା ପିଲାଟି ରାମାନୁଜନ୍‌ଙ୍କୁ ପରୀକ୍ଷା କରିବା ପାଇଁ ଗଣିତ ସମସ୍ୟାଟିଏ ଧରାଇଦେଲା। ତାହା ଥିଲା

$$\sqrt{x} + y = 7$$
$$\sqrt{y} + x = 11$$

ପ୍ରଥମ ଦେଖାରେ ଏହା ଦୁଇଟି ଅଜଣା ଚଳର ଦୁଇଟି ସହସମୀକରଣ ଭଳି ମନେ ହେଉଥିଲା। କିନ୍ତୁ ତାହା ଘାତ 4ର ଏକ ସମୀକରଣ ଥିଲା ଯାହାର ସମାଧାନ ପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ଉପପାଦ୍ୟର ପ୍ରୟୋଗ ଦରକାର ଥିଲା। କୌଣସି ବୁଦ୍ଧିମାନ ଚଉଦ ବର୍ଷିଆ ପିଲା ପାଇଁ ଏହା ଏକ ଅତି କଷ୍ଟ ସମସ୍ୟା। କିନ୍ତୁ ରାଜଗୋପାଳଚାରୀ ମନେପକାନ୍ତି ଯେ ରାମାନୁଜନ୍ ଅଧ ମିନିଟ ଭିତରେ ମାତ୍ର ଦୁଇଟି ପାଦରେ ଏହାର ସମାଧାନ କରିଦେଲେ।

ରାମାନୁଜନ୍ ବୋଧହୁଏ କିଛି ସମାଧାନ କରି ନ ଥିଲେ। ସମସ୍ୟାଟି ଦେଖି ସେ ହୁଏତ ଅନୁମାନ କରିନେଲେ ଯେ ଚଳ ଦୁଇଟି ଗୋଟିଏ ଗୋଟିଏ ବର୍ଗ ଅଙ୍କ ହେବେ ଏବଂ କେତୋଟି ସଂଖ୍ୟା ନେଇ ମନେ ମନେ ହିସାବ କରି ଦେଖିଲେ ଯେ $x = 9$ ଓ $y = 4$ ପାଇଁ ସମୀକରଣ ଦୁଇଟି ଠିକ୍ ହେଉଛି। କହିବାକୁ ଗଲେ ତାଙ୍କ ସମାଧାନରେ କିଛି ବଡ଼ ଗଣିତ ନ ଥିଲା, ବରଂ ସୂକ୍ଷ୍ମ ଅନୁମାନ ଓ କ୍ଷିପ୍ର ମାନସାଙ୍କ ବଳରେ ସେ ସମାଧାନ ପାଇଲେ। ତଥାପି ରାଜଗୋପାଳଚାରୀଙ୍କୁ ଏହା ଖୁବ୍ ପ୍ରଭାବିତ କଲା, ରାମାନୁଜନ୍‌ଙ୍କର ସେ ବଡ଼ ସାଙ୍ଗ ହୋଇଗଲେ।

ସମୟକ୍ରମେ ରାଜଗୋପାଳଚାରୀ ପାଠପଢ଼ାର ନିୟମିତ ଧାରାରେ ଆଗେଇଲେ ଓ ଓକିଲାତି

ବୃତ୍ତି ଆଦରି ନେଲେ। ରାମାନୁଜନ୍‌ଙ୍କ ପାଠପଢ଼ାର ଅସ୍ଥିରତା ଭିତରେ ଦୁହିଁଙ୍କ ଭିତରେ ଯୋଗାଯୋଗ ରହିଲାନାହିଁ। ଏବେ ପ୍ରାୟ ଦଶବର୍ଷ ପରେ 1910 ମସିହାରେ ମାନ୍ଦ୍ରାଜଠାରେ ଆକସ୍ମିକ ଭାବରେ ଦୁହିଁଙ୍କର ଭେଟ ହୋଇଗଲା। ଦୁଃଖରେ ମ୍ରିୟମାଣ ରାମାନୁଜନ୍ ତାଙ୍କର ବିଫଳତା ବିଷୟରେ ରାଜଗୋପାଳଚାରୀଙ୍କୁ କହିଲେ। ରାମାନୁଜନ୍‌ଙ୍କ ମନରେ ଧାରଣା ଜନ୍ମୁଥିଲା ଯେ ତାଙ୍କର ଭବିଷ୍ୟତ କିଛି ନାହିଁ ଏବଂ କେହି ତାଙ୍କ କାମକୁ ପସନ୍ଦ କରୁନାହାନ୍ତି। ନିଜ କାମର ନମୁନା ସହିତ ବମ୍ବେର ବିଖ୍ୟାତ ଗଣିତଜ୍ଞ ଅଧ୍ୟାପକ ସାଲ୍‌ଧାନାଙ୍କୁ ଚିଠି ଲେଖିଥିଲେ, ଭାରତୀୟ ଗଣିତ ସମାଜକୁ ଚିଠି ଲେଖିଥିଲେ, କେଉଁଠାରୁ କିଛି ମିଳିଲା ନାହିଁ। ଜଣେ ସାଙ୍ଗ ତାଙ୍କୁ ରେଳଗାଡ଼ି ଖର୍ଚ୍ଚ ଦେଇଥିବାରୁ ସେ ସେଦିନ ରାତିରେ ହିଁ କୁମ୍ଭକୋଣମ୍ ଫେରି ଯାଉଛନ୍ତି।

ରାଜଗୋପାଳଚାରୀ ରାମାନୁଜନ୍‌ଙ୍କୁ ଅଟକାଇ ରଖିଲେ ଓ ମାନ୍ଦ୍ରାଜରେ ରହିବାର ଖର୍ଚ୍ଚର ଦାୟିତ୍ୱ ନେଲେ। ରାମାନୁଜନ୍ ହୁଏତ ତାଙ୍କୁ କହିଥିବେ ଯେ ରାମଚନ୍ଦ୍ର ରାଓଙ୍କୁ ଭେଟିବା ପାଇଁ ତାଙ୍କ ପାଖରେ ଖଣ୍ଡେ ସୁପାରିଶ ପତ୍ର ଅଛି, କିନ୍ତୁ ସେ ଦିଗରେ ସେ ଆଗେଇ ପାରିନାହାନ୍ତି। ସେ କହିଥା'ନ୍ତୁ କି କହିନଥା'ନ୍ତୁ, ରାଜଗୋପାଳଚାରୀ ତାଙ୍କୁ ନେଇ ରାମଚନ୍ଦ୍ର ରାଓଙ୍କ ସହିତ ଭେଟ କରାଇଥିଲେ।

ଦୁହିଁଙ୍କର ସାକ୍ଷାତ ବିଷୟରେ ଅନେକ ଦିନ ପରେ ରାମଚନ୍ଦ୍ର ରାଓ ଲେଖିଥିଲେ -

> କେତେ ବର୍ଷ ତଳେ ଗଣିତ ବିଷୟରେ ପୂରା ଅଜ୍ଞ ମୋର ଜଣେ ପୁତୁରା ମତେ କହିଲେ, "ମୋର ଜଣେ ସାଙ୍ଗ ଗଣିତ ବିଷୟରେ ଅନେକ କଥା କହୁଛି, ସେଥିରୁ ମୁଁ କିଛି ବୁଝୁନାହିଁ। ଆପଣ ଦୟାକରି ଦେଖିବେ କି ତା'ର କଥାର କିଛି ମୂଲ୍ୟ ଅଛି କି ନାହିଁ?" ମୁଁ ମୋର ଗାଣିତିକ ବୁଦ୍ଧିମତ୍ତାର ପରିଚୟ ଦେଇ ରାମାନୁଜନ୍‌ଙ୍କୁ ମୋ ସାମନାକୁ ଆସିବାର ଅନୁମତି ଦେଲି। ଗେଡ଼ା, ଅମାର୍ଜିତ, ଖିଅର ହୋଇ ନ ଥିବା, ଅତି ସଫାସୁତର ଦେଖାଯାଉ ନ ଥିବା ଲୋକ ଜଣେ କାଖରେ ଛିଣ୍ଡି ଆସୁଥିବା ଖାତାଟିଏ ଜାକି ଭିତରକୁ ଆସିଲେ। ତାଙ୍କଠାରେ ଗୋଟିଏ କଥା ସ୍ପଷ୍ଟ ବାରି ହେଉଥିଲା - ଝଲସୁଥିବା ଆଖି।

ରାଜଗୋପାଳଚାରୀଙ୍କ କହିବା ଅନୁସାରେ ରାମାନୁଜନ୍ ସେହି ବିଶିଷ୍ଟ ବ୍ୟକ୍ତିଙ୍କୁ ତିନି ଥର ଭେଟିଲେ। ପ୍ରଥମ ଭେଟ ପରେ  ରାମଚନ୍ଦ୍ର ରାଓ ରାମାନୁଜନ୍‌ଙ୍କ ଖାତାଟି କିଛି ଦିନ ପାଇଁ ରଖିବାକୁ ଚାହିଁଲେ। ଦ୍ୱିତୀୟ ସାକ୍ଷାତ ସମୟରେ ରାମଚନ୍ଦ୍ର ରାଓ କହିଲେ ଯେ ରାମାନୁଜନ୍‌ଙ୍କ ଗଣିତ ଭଳି କିଛି ବି ସେ ଆଗରୁ ଦେଖିନାହାନ୍ତି, କିନ୍ତୁ ସେଥିରୁ ସେ କିଛି ବୁଝିପାରି ନାହାନ୍ତି। ତେଣୁ ରାମାନୁଜନ୍‌ଙ୍କ ବିଷୟରେ ସେ କିଛି କରିପାରିବେନାହିଁ। ତଥାପି ରାଜଗୋପାଳାଚାରୀ ଓ ରାମାନୁଜନ୍ ତାଙ୍କୁ ଆଉଥରେ ଦେଖା କଲେ। ଏଥର ରାମଚନ୍ଦ୍ର ରାଓ ତାଙ୍କୁ ସ୍ପଷ୍ଟ ଭାବରେ କହିଲେ ଯେ ରାମାନୁଜନ୍‌ଙ୍କ ସଚ୍ଚୋଟତାକୁ ସେ ମାନୁଛନ୍ତି, ନୈତିକ ଦୃଷ୍ଟିରୁ ରାମାନୁଜନ୍ ହୁଏତ ପ୍ରତାରଣା କରୁନାହାନ୍ତି, କିନ୍ତୁ ବୌଦ୍ଧିକ ଦୃଷ୍ଟିରୁ ସେ ଜଣେ ପ୍ରତାରକ। ଅର୍ଥାତ, ରାମାନୁଜନ୍ ଯାହା କହୁଛନ୍ତି ତାହା ବିଷୟରେ ସେ କିଛି ଜାଣନ୍ତିନାହିଁ।

ଦୁଇ ବନ୍ଧୁ ଫେରିଲା ବେଳେ ରାମାନୁଜନ୍ କହିଲେ ଯେ ଅଧ୍ୟାପକ ସାଲ୍‌ଧାନା ତାଙ୍କ ଚିଠିର ଉତ୍ତରରେ ଜଣାଇଛନ୍ତି ଯେ ସେ ମଧ୍ୟ କିଛି ସାହାଯ୍ୟ କରିପାରିବେନାହିଁ। କିନ୍ତୁ ରାମାନୁଜନ୍ ତାଙ୍କ ପାଖକୁ ପଠାଇଥିବା ଗଣିତ ନମୁନା ବିଷୟରେ ସେ ଲେଖିଛନ୍ତି ଯେ ଉପପାଦ୍ୟଗୁଡ଼ିକ ଖୁବ୍ ଆଗ୍ରହଜନକ। ତଥାପି ତାଙ୍କୁ ଜଣା ନ ଥିବା ଗଣିତ କ୍ଷେତ୍ରରେ କାମ କରୁଥିବା ଓ ତାଙ୍କ ପାଇଁ ପୂରା

ଅପରିଚିତ ଥିବା ଜଣେ ଲୋକ ପଛରେ ସେ ତାଙ୍କର ପ୍ରତିଷ୍ଠାକୁ ବାଜି ଲଗାଇ ପାରିବେନାହିଁ।

ରାମାନୁଜନ୍‌ଙ୍କ କାମ ପାଇଁ ଏହା ଯେ ଅନୁମୋଦନ ଥିଲା ତାହା କୁହାଯାଇ ପାରିବନାହିଁ। ଚାକିରି ଖୋଜିବାର ପ୍ରଥମ କେତେ ବର୍ଷ ଧରି ଯେଉଁ କଥା ସେ ଅନେକ ଥର ଶୁଣୁଥିଲେ ତାହା ଥିଲା ଏହିପରି - ତାଙ୍କ କାମକୁ ଠିକ୍ ଭାବରେ ବୁଝିହେଉ ନ ଥିବାରୁ ତାହା ପାଗଳର ପ୍ରଳାପ କି ବିଚକ୍ଷଣ ବ୍ୟକ୍ତିର ଅବଦାନ ତାହା କହିବା ସମ୍ଭବ ହେଉନାହିଁ। ତେଣୁ ଭବିଷ୍ୟତରେ ଭୁଲ ପ୍ରମାଣିତ ହେବାର ଭୟରେ ସେମାନେ ରାମାନୁଜନ୍‌ଙ୍କୁ ସମର୍ଥନ ଜଣାଇବାକୁ ଚାହୁଁ ନ ଥିଲେ। ରାମଚନ୍ଦ୍ର ରାଓ ତାଙ୍କ କାମକୁ ସନ୍ଦେହଜନକ ବୋଲି କହିଥିଲେ, ସାଲ୍‌ଧାନା ଅନ୍ତତଃ ଜଣାଇଥିଲେ ଯେ ସେ ରାମାନୁଜନ୍‌ଙ୍କୁ ଆଡ଼ବାୟା ଭାବୁନାହାନ୍ତି।

ନଛୋଡ଼ବନ୍ଧା ରାଜଗୋପାଳଚାରୀଙ୍କ ପାଇଁ ତାହା ଯଥେଷ୍ଟ ଥିଲା। ସାଲ୍‌ଧାନାଙ୍କର ମତ ସାହାଯ୍ୟରେ ରାମଚନ୍ଦ୍ର ରାଓଙ୍କ ସନ୍ଦେହକୁ ଦୂର କରିହେବ ବୋଲି ସେ ଭାବୁଥିଲେ। ତାଛଡ଼ା ନ ଗଲେ ବି ନ ଚଳେ, କାରଣ ରାମାନୁଜନ୍‌ଙ୍କ ଭାଗ୍ୟ ସୂତାଖିଅରେ ଝୁଲିଲା ପରି ଅବସ୍ଥା। ତେଣୁ ସେ ଦୁହେଁ ଚତୁର୍ଥ ଥର ପାଇଁ ରାମଚନ୍ଦ୍ର ରାଓଙ୍କ ପାଖକୁ ଗଲେ। ସେମାନଙ୍କୁ ଦେଖି ରାମଚନ୍ଦ୍ର ରାଓ ପ୍ରଥମେ ରାଗିଲେ, କିନ୍ତୁ ସାଲ୍‌ଧାନାଙ୍କ ଚିଠି ଦେଖିଲା ପରେ ନରମିଲେ। ଏଥର ରାମାନୁଜନ୍ ତାଙ୍କ ଗଣିତରୁ ସହଜରେ ବୁଝି ହେଉଥିବା କିଛି ଅଂଶ ଦେଖାଇଲେ। ରାମଚନ୍ଦ୍ର ରାଓଙ୍କ ଭାଷାରେ, "ଏସବୁ ସାଧାରଣ ଗଣିତ ବହିର ଅନେକ ଉପରେ ଥିଲା। ମୁଁ ଏଥର ବୁଝିଲି ଯେ ସେ ଜଣେ ଅସାଧାରଣ ବ୍ୟକ୍ତି ଥିଲେ। ପାଦ ପାଦ କରି ମତେ ସେ ତାଙ୍କ ଉପବୃତ୍ତୀୟ ସମାକଳ ଓ ଅତିଜ୍ୟାମିତିକ ଶ୍ରେଣୀ ବିଷୟରେ ବୁଝାଇଲେ। ଶେଷରେ ତାଙ୍କର ଅପସାରୀ ଶ୍ରେଣୀର ତତ୍ତ୍ୱ, ଯାହା ସେଯାଏଁ ପ୍ରକାଶିତ ହୋଇ ନ ଥିଲା, ମୋ ମନରେ ବିଶ୍ୱାସ ଆଣିଦେଲା। କ'ଣ ସେ ଚାହୁଁଛନ୍ତି ସେକଥା ମୁଁ ପଚାରିଲି।"

ରାମାନୁଜନ୍ ଚାହୁଁଥିଲେ ଅଳ୍ପ କିଛି ଦରମା ଯେଉଁଥିରେ ସେ ଚଳିପାରିବେ ଓ କାମ କରିବାକୁ ସମର୍ଥ ହେବେ। ରାମଚନ୍ଦ୍ର ରାଓ ପରେ ଲେଖିଥିଲେ, "ସେ ଚାହୁଁଥିଲେ ଅବସର, ଅର୍ଥାତ, ଅତ୍ୟଧିକ ପରିଶ୍ରମ ନ କରି ସେ ଯେପରି ସରଳ ଖାଦ୍ୟପେୟ ପାଇପାରିବେ ଏବଂ ନିଜର ସ୍ୱପ୍ନ ଦେଖିବାରେ ଯେପରି କେହି ବାଧା ନ ଦେବେ।"

### 3. ମାନ୍ଦ୍ରାଜରେ ଅବସର

ରାମଚନ୍ଦ୍ର ରାଓଙ୍କ ଲେଖିବାର ସମୟ ତୁଳନାରେ ଅବସର ଶବ୍ଦର ଅର୍ଥ ବହୁତ ବଦଳି ଗଲାଣି। ଏବେ ଅବସର କହିଲେ ମନୋରଞ୍ଜନ ବା ଖେଳ ଭଳି କଥାକୁ ବୁଝାଉଛି। କିନ୍ତୁ ରାମାନୁଜନ୍‌ଙ୍କ କ୍ଷେତ୍ରରେ ରାମଚନ୍ଦ୍ର ରାଓ ତାକୁ ସ୍ୱାଧୀନତା ଓ ସୁଯୋଗ ଅର୍ଥରେ ବ୍ୟବହାର କରୁଥିଲେ। ରାମାନୁଜନ୍ ମଧ୍ୟ ତାକୁ ସେହି ଅର୍ଥରେ ବୁଝୁଥିଲେ। ଆରାମ କରିବା ପାଇଁ ସେ ଅବସର ଖୋଜୁ ନ ଥିଲେ, ନିଜର ପ୍ରତିଭାର ବିକାଶ ପାଇଁ ସେ ଚାପରୁ ମୁକ୍ତି ଚାହୁଁଥିଲେ। ଏକମନା ହୋଇ ସେ ଯାହା ଆଜିଯାଏ ଖୋଜୁଥିଲେ ଏବେ ସେ ତାହା ପାଇଲେ।

ଗରିବ ଥିଲେ ବି ସେ ଥିଲେ ଜଣେ ବ୍ରାହ୍ମଣ। ଏହା ମଧ୍ୟ ତାଙ୍କୁ ସାହାଯ୍ୟ କରିଥିଲା। କାରଣ ସହାୟତା ମାଗିବା ପାଇଁ ସେ ଭେଟିଥିବା ପ୍ରାୟ ସମସ୍ତେ ବ୍ରାହ୍ମଣ ଥିଲେ। ରାମସ୍ୱାମୀ ଆୟାର,

ଶେଷୁ ଆୟାର, ରାମଚନ୍ଦ୍ର ରାଓ...। ରାମାନୁଜନ୍ ଯଦି ଅନ୍ୟ କେଉଁ ଜାତିର ହୋଇଥା'ନ୍ତେ ତେବେ ଫଳାଫଳ ହୁଏତ ଅଲଗା ହୋଇଥା'ନ୍ତା। ତାଙ୍କ ଜାତିର କେଉଁ ଲୋକ ପାଖରୁ ସେ ହୁଏତ ସାହାଯ୍ୟ ପାଇଥା'ନ୍ତେ, କିନ୍ତୁ ଦକ୍ଷିଣ ଭାରତରେ ବ୍ରାହ୍ମଣମାନଙ୍କ ଭଳି ଅନ୍ୟ କେଉଁ ଗୋଷ୍ଠୀ ଏତେ ପ୍ରଭାବଶାଳୀ ନ ଥିଲେ ବା ବୌଦ୍ଧିକ ମାନସିକତାର ନ ଥିଲେ।

ଜଣେ ବ୍ରାହ୍ମଣ ହୋଇଥିବାରୁ ଏଭଳି ଅବସର ଖୋଜିବାରେ ରାମାନୁଜନ୍ କିଛି ଦ୍ୱିଧା ଅନୁଭବ କରି ନ ଥିବେ, ବରଂ ସେ ହୁଏତ ଭାବିଥିବେ ଯେ ଜଣେ ବ୍ରାହ୍ମଣ ଭାବରେ ଏହା ତାଙ୍କର ପ୍ରାପ୍ୟ। ପାରମ୍ପରିକ ଭାବରେ ବ୍ରାହ୍ମଣମାନେ ଭିକ୍ଷା ଓ ମନ୍ଦିରରେ ଭୋଗ ଦକ୍ଷିଣା ଆଦି ପାଉଥିଲେ, ତେଣୁ କାମକରି ଉପାର୍ଜନ କରିବା ସେମାନଙ୍କ ପାଇଁ ଏତେ ଜରୁରୀ ନ ଥିଲା। କେହି ନିନ୍ଦୁକ କହିପାରେ ଯେ ରାମାନୁଜନ୍ ଏସବୁରେ ଆତ୍ମବଡ଼ିମା ଦେଖାଉଥିଲେ - ସେ ଯାହା ଚାହୁଁଥିଲେ କେବଳ ସେହି ପାଠ ହିଁ ପଢୁଥିଲେ, ଗଣିତ ସାଧନା ଛଡ଼ା ଅନ୍ୟ କିଛି ପାଇଁ ସେ ଉପାର୍ଜନ କରିବାକୁ ରାଜି ନ ଥିଲେ। ସେହି ମତ କିନ୍ତୁ ରାମାନୁଜନ୍‌ଙ୍କ ପାଇଁ ଅନ୍ୟାୟ ହେବ। ସନ୍ତୁଳିତ ଓ ଉଦାର ମତ ହେବ ଯେ ରାମାନୁଜନ୍ ଜଣେ ଧର୍ମନିରପେକ୍ଷ ସନ୍ୟାସୀ ଥିଲେ।

ନେଲୋର ଭଳି ଦୂରନ୍ତ ଅଞ୍ଚଳରେ ସଢ଼ିବା ରାମାନୁଜନ୍‌ଙ୍କ ପାଇଁ ଠିକ୍ ହେବନାହିଁ କହି ରାମଚନ୍ଦ୍ର ରାଓ ତାଙ୍କୁ ଶେଷୁ ଆୟାରଙ୍କ ପାଖକୁ ଫେରାଇଦେଲେ। ତାଲୁକ ଅଫିସରେ ଚାକିରି କରିବା ପାଇଁ ନୁହେଁ, ମାଡ୍ରାଜରେ ରହି ତାଙ୍କର ଗଣିତ କାମ ଚାଲୁ ରଖିବା ପାଇଁ। ରାମଚନ୍ଦ୍ର ରାଓ ତାଙ୍କ ପାଇଁ କିଛି ଉପଯୁକ୍ତ ଆର୍ଥିକ ସାହାଯ୍ୟର ବ୍ୟବସ୍ଥା କରିବେ ଏବଂ ତାହା ଆସିବା ପର୍ଯ୍ୟନ୍ତ ସେ ରାମାନୁଜନ୍‌ଙ୍କ ଖର୍ଚ୍ଚ କଥା ନିଜେ ବୁଝିବେ।

ଏହା ପରେ ରାମାନୁଜନ୍ ପ୍ରତି ମାସରେ ପଚିଶ ଟଙ୍କାର ମନିଅର୍ଡର ପାଇବାକୁ ଲାଗିଲେ। ବହୁତ ଟଙ୍କା ନ ହେଲେ ବି ତାହା ତାଙ୍କୁ ଆର୍ଥିକ ଚିନ୍ତାରୁ ମୁକ୍ତ ରଖିଲା। ଏବେ ତାଙ୍କ ଜୀବନରେ ଏକ ନୂଆ ଦିଗ ଖୋଲିଗଲା। ତାଙ୍କ ମନରେ ଦୃଢ଼ତା ମଧ୍ୟ ଆସିଲା। ପିଲାଦିନର ଘର କୁମ୍ଭକୋଣମ୍ ଛାଡ଼ି 1911 ମସିହା ଆରମ୍ଭରୁ ସେ ମାଡ୍ରାଜରେ ରହିଲେ। ଏହା ପର ତିନି ବର୍ଷ ପାଇଁ ସେହି ମହାନଗର ତାଙ୍କୁ ଏକ ବୃହତ୍ତର ପରିସର ଯୋଗାଇଲା।

ଇଂରେଜ ସାମ୍ରାଜ୍ୟ ଭିତରେ ମାଡ୍ରାଜ ଥିଲା ପଞ୍ଚମ ବୃହତ୍ତମ ସହର। କଲିକତା ଓ ବମ୍ବେ ପରେ ଭାରତ ଉପମହାଦେଶରେ ତାହା ଥିଲା ତୃତୀୟ। କେହି କେହି କୁହନ୍ତି ଯେ ସହରର ନାଁ ଆସିଛି ମାଦାରସେନ ନାମକ ଏକ ମତ୍ସ୍ୟଜୀବୀର କିଂବଦନ୍ତିରୁ। ଆଉ କେହି କୁହନ୍ତି ଏହା ମନ୍ଦରାଜ୍ୟ - ନିର୍ବୋଧଙ୍କ ରାଜ୍ୟ - ଶବ୍ଦର ଅପଭ୍ରଷ୍ଟ ରୂପ। ପର୍ତ୍ତୁଗିଜ୍ ଶବ୍ଦ ମାଡ୍ରେ ଦେ ଡିଓସ୍ - ଈଶ୍ୱରଙ୍କ ମାତା - ଏହି ନାଁର ଉତ୍ସ ବୋଲି ଆଉ କେହି କହନ୍ତି। ବ୍ରିଟିଶ୍ ଇଷ୍ଟ ଇଣ୍ଡିଆ କମ୍ପାନି କୁମ୍ ନଦୀର ମୁହାଣରେ କିଛି ଜାଗା କିଣି ସେଣ୍ଟ ଜର୍ଜ ଦୁର୍ଗ ବସାଇଥିଲେ ଏବଂ ତାହା ଦକ୍ଷିଣ ଭାରତରେ ଇଂରେଜ ପ୍ରଶାସନର କେନ୍ଦ୍ର ପାଲଟିଲା। ଧୀରେ ଧୀରେ ଏହାର ଚାରିପଟେ ମାଡ୍ରାଜ ସହର ଗଢ଼ିଉଠିଲା।

ମାଡ୍ରାଜ ସହର ବେଶ୍ ବିକ୍ଷିପ୍ତ ଭାବରେ ବଢ଼ି ଉଠିଥିଲା। 1910 ମସିହାରେ ଏହାର ଲୋକସଂଖ୍ୟା 5,55,000 ଥିଲା। ସହରଟି ବଙ୍ଗୋପସାଗର କୂଳରେ ମାଇଲ ମାଇଲ ଧରି ମାଡ଼ି ରହିଥିଲା କିନ୍ତୁ ତା'ର ଜନବସତିଗୁଡ଼ିକ ଲାଗି ଲାଗି ରହି ନ ଥିଲେ। ଜର୍ଜଟାଉନ, ଟ୍ରିପ୍ଲିକେନ୍,

ମାଇଲାପୁର, ଚିପକ୍ ଓ ଆହ୍ମୁରି କେତେ ଅଞ୍ଚଳ ଛୋଟ ଛୋଟ ଦ୍ୱୀପ ଭଳି ନିଜ ନିଜଠୁ ଅଲଗା ହୋଇ ରହିଥିଲେ। କିଛି ଜନବସତି ଶହ ଶହ ବର୍ଷ ତଳୁ ରହିଥିଲେ। ସହରର କେନ୍ଦ୍ରଠାରୁ ସାଢ଼େ ତିନି ମାଇଲ ଦୂରରେ ଥିବା ମାଇଲାପୁର ଅଞ୍ଚଳରେ ବିଖ୍ୟାତ କାପାଳେଶ୍ୱର ମନ୍ଦିର ରହିଥିଲା। ଯିଶୁଖ୍ରୀଷ୍ଟଙ୍କର ପଟ୍ଟଶିଷ୍ୟ ସେଣ୍ଟ ଟମାସ୍ ପ୍ରଥମ ଶତାବ୍ଦୀରେ ଏଠାରେ ବସତି ସ୍ଥାପନ କରିଥିଲେ। କିନ୍ତୁ ତା'ର ବହୁ ପୂର୍ବରୁ ଏକ ବନ୍ଦର ଭାବରେ ତାହା ପ୍ରାଚୀନ ଗ୍ରୀସ୍ ଓ ରୋମ୍ ଦେଶର ବାସିନ୍ଦାମାନଙ୍କୁ ଜଣାଥିଲା।

ମାନ୍ଦ୍ରାଜ ସହର ଏକ ସମତଳ ଅଞ୍ଚଳରେ ରହିଥିଲା, କେବଳ କେଉଁ ପୁରୁଣା ମନ୍ଦିରର ଉଚ୍ଚ ଗୋପୁରମ୍ ଉପରକୁ ମୁଣ୍ଡ ଟେକିଥିଲା। ତା'ର ସବୁ ଅଞ୍ଚଳ ସମୁଦ୍ର ପତନଠାରୁ ପଚାଶ ଫୁଟରୁ କମ୍ ଉଚ୍ଚତାରେ ରହିଥିଲେ। ଖୁନ୍ଦାଖୁନ୍ଦି ହୋଇ ରହିଥିବା ଅଧିକାଂଶ ଘର ମାଟି କାଛ ଓ ତାଳ ଛପର ଯୁକ୍ତ ଥିଲା। ଟାଇଲ ଛାତ ଥିବା ଭଲ ଘରଗୁଡ଼ିକ ମଧ୍ୟ ବେଶି ଉଚ୍ଚତାର ନ ଥିଲା। ମୋଟ ଉପରେ ଦେଖିଲେ ସହରଟି ଜନଗହଳି ଓ ବ୍ୟସ୍ତତା ଭରା ବମ୍ବେ ବା ନିୟୁୟର୍କ ଭଳି ନ ହୋଇ ଧୀର ଓ ଶାନ୍ତ ଜୀବନର ଅଞ୍ଚଳ ଥିଲା।

ସହର ଭିତରେ ଧାନ ବିଲ, ତାଳଗଛ, ଗାଈ ମଇଁଷି, ଧୋବାତୁଠ ଓ ନୋଳିଆ ବସ୍ତି ସହିତ ସ୍ୱାଭାବିକ ଭାବରେ ଅନେକ ଗାଁ ମଧ୍ୟ ରହିଥିଲା। ସେଠାରେ ଆଜିର ସହରି ଗହଳି ନ ଥିଲା, ଗାଁଗହଳିର ସୁସ୍ଥିଭରା ପରିବେଶ ଖେଳୁଥିଲା। ବନ୍ଦର ପାଖର ବତୀଘର ଉପରୁ ସହର ଦୃଶ୍ୟକୁ ଜଣେ ଇଂରେଜ ପର୍ଯ୍ୟଟକ ଏଭଳି ବର୍ଣ୍ଣନା କରିଛନ୍ତି:

> ଏହାର ଉତ୍ତରକୁ ଥିବା କୌଣସି ସହର ତୁଳନାରେ ମାନ୍ଦ୍ରାଜ ବେଶି ସବୁଜ। ବତୀଘର ପାଖରେ ଥିବା ବ୍ଲାକ୍ ଟାଉନର ଲାଲ୍ ଟାଇଲ ଛାତ ସବୁ ମିଶି ଛୋଟ ଦାଗଟିଏ ଭଳି ଦେଖାଯାଏ। ଗୋଟିଏ ପଟେ ରହିଛି ନୀଳ ସମୁଦ୍ରର ବକ୍ଷ, ସେଥିରେ ଧଳା ଟୋପି ପିନ୍ଧା ଢେଉର ଗାର, ହଳଦିଆ ବାଲିର ବିସ୍ତୀର୍ଣ୍ଣ ନିର୍ଜନ ବେଳାଭୂମି। ଆର ପଟରେ ରହିଛି ୟୁରୋପୀୟଙ୍କ ମାନ୍ଦ୍ରାଜ ସହର ଯାହା ଘଞ୍ଚ ସବୁଜିମାରେ ବୁଡ଼ି ରହିଛି। ତାହା ଦକ୍ଷିଣର ଭୂଭାଗ ଦିଗରେ ମାଡ଼ିଚାଲି ଦୂରରେ ଥିବା ଫିକା ଶାଗୁଆ କ୍ଷେତ ସହିତ ମିଶିଯାଇଛି।

କେବଳ ୟୁରୋପୀୟଙ୍କ ପାଇଁ ମାନ୍ଦ୍ରାଜ ସହର ଏପରି ନ ଥିଲା। ଭାରତୀୟମାନେ ମଧ୍ୟ ବମ୍ବେ କଲିକତା ତୁଳନାରେ ତାକୁ ଏକ ଅଧିକ ଧୀର, ସୁଖକର, ସବୁଜ ଓ ପ୍ରଶସ୍ତ ସହର ଭାବରେ ବିଚାର କରୁଥିଲେ। ଗରିବମାନଙ୍କ ଜୀବନ ସବୁଠାରେ କଷ୍ଟକର, କିନ୍ତୁ ମାନ୍ଦ୍ରାଜରେ ତାହା ତୁଳନାତ୍ମକ ଭାବରେ ସହଜ ଥିଲା। ଏଠାରେ ଶୀତର ପ୍ରକୋପ ନ ଥିଲା। ଉତ୍ତର ଭାରତରୁ ବେଶ୍ ଦୂରରେ ଥିବାରୁ ଦକ୍ଷିଣ ଭାରତର ରାଜଧାନୀ ହେଲେ ମଧ୍ୟ ତାହା ତା'ର ଦାକ୍ଷିଣାତ୍ୟ ଗୁଣ ହରାଇ ନ ଥିଲା। ବିଭିନ୍ନ ଗାଁ ଓ ଛୋଟ ସହରରୁ ଏଠାକୁ ଆସିଥିବା ସବୁ ବର୍ଗର ହଜାର ହଜାର ଦକ୍ଷିଣ ଭାରତୀୟଙ୍କ ପାଇଁ ତାହା ନିଜର ଭଳି ଆରାମଦାୟକ ମନେହେଉଥିଲା।

X X X

1911 ମସିହା ମେ ମାସରେ ରାମାନୁଜନ୍ ତାଙ୍କ ରହିବା ଜାଗା ବଦଳାଇ ଟ୍ରିପ୍ଲିକେନ୍ ଅଞ୍ଚଳର ସ୍ୱାମୀ ପିଲାଇ ରାସ୍ତାର 'ସମର ହାଉସ'କୁ ଆସିଲେ। ସେଠାରେ ଆଉ ପ୍ରାୟ ବାର ଜଣ

ଛାତ୍ର ରହୁଥିଲେ ଓ ପାଖରେ ଥିବା ଗୋଟିଏ ବ୍ରାହ୍ମଣ ଭୋଜନାଳୟରେ ଖିଆପିଆ କରୁଥିଲେ। ରାମାନୁଜନ୍ ଏଠାରେ 1912 ମସିହାର ପ୍ରାୟ ଶେଷଯାଏଁ ରହିଥିଲେ।

ଟ୍ରିପ୍ଲିକେନ୍‌ର ମୁଖ୍ୟ ରାସ୍ତା ଥିଲା ପାଇକ୍ରଫ୍ଟ୍ ରୋଡ୍। ସେହି ରାସ୍ତାରେ ଅଳ୍ପ ବାଟ ଗଲେ ପ୍ରେସିଡେନ୍‌ସି କଲେଜ ପାଖରେ ସମୁଦ୍ର କୂଳରେ ପହଞ୍ଚି ହୁଏ। ସେ ସମୟରେ ମଧ୍ୟ ଏହା ଏକ ଜଣାଶୁଣା ପର୍ଯ୍ୟଟନସ୍ଥଳୀ ଥିଲା। ସାଧାରଣ ବେଳାଭୂମିଠାରୁ ଏହା ବେଶ୍ ଅଲଗା ଥିଲା, ପ୍ରକୃତିର ଗୋଟିଏ ବିଶେଷ ସୃଷ୍ଟି ଥିଲା କହିଲେ ଭୁଲ ହେବନାହିଁ। ଯୁଗ ଯୁଗ ଧରି ଲହଡ଼ି ଭାଙ୍ଗିବା ଫଳରେ ସେଠାରେ ପ୍ରକାଣ୍ଡ ବାଲି ଗଦାଟିଏ ସୃଷ୍ଟି ହୋଇଥିଲା। 1880 ଦଶକରେ ମାନ୍ଦ୍ରାଜର ରାଜ୍ୟପାଳ ମାଉଣ୍ଟଷ୍ଟୁଆର୍ଟ ଜର୍ଜ ଗ୍ରାଣ୍ଟ-ଡଫ୍ ସେହି ବାଲି ଗଦାକୁ ସମତଳ କରି ଏକ ବିସ୍ତୀର୍ଣ୍ଣ ବେଳାଭୂମି ରୂପେ ବିକଶିତ କରିଥିଲେ। ସମୁଦ୍ର ପାଣିଠାରୁ ତାହା ଏତେ ଦୂର ଯାଏଁ ମାଡ଼ି ରହିଥିଲା ଯେ ମଝିରେ ଛିଡ଼ାହେଲେ ତାହା ଏକ ମରୁଭୂମି ଭଳି ମନେ ହେଉଥିଲା।

ଏହି ବେଳାଭୂମିରେ ଚାଲି ଚାଲି ରାମାନୁଜନ୍ ତାଙ୍କ ଗଣିତ ସମସ୍ୟାର ସମାଧାନ ଖୋଜୁଥିଲେ। କିମ୍ବା ସନ୍ଧ୍ୟା ବେଳେ ଥଣ୍ଡା ସମୟରେ ସାଙ୍ଗମାନଙ୍କ ସହିତ ବାଲିରେ ଗଡ଼ି ଅନ୍ଧାରରେ ଆଧିଭୌତିକ କାହାଣୀମାନ ଶୁଣାଉଥିଲେ। ସହରର ଗରମ ଓ ଧୂଳିଭରା ରାସ୍ତାକୁ ପଛରେ ପକାଇ ଜଣେ ଏଠାରେ ମୁକ୍ତ ଓ ଶୀତଳ ବାତାବରଣର ଆନନ୍ଦ ପାଇପାରୁଥିଲା। ସେଠାରୁ ସହର ଆଡ଼କୁ ଚାହିଁଲେ ପ୍ରେସିଡେନ୍‌ସି କଲେଜର ଉଚ୍ଚ ଘଣ୍ଟାଘର ଦେଖାଯାଏ, ସୂର୍ଯ୍ୟାସ୍ତ ସମୟରେ ଯାହା ସୁନେଲି ଆଲୁଅରେ ଝଲସେ। ସମୁଦ୍ରରେ ଛୋଟ ବଡ଼ ଜାହାଜମାନ କୂଳରୁ ବିଭିନ୍ନ ଦୂରତାରେ ଦିଶୁଥା'ନ୍ତି।

ରାମଚନ୍ଦ୍ର ରାଓଙ୍କ ଉଦାରତା ରାମାନୁଜନ୍‌ଙ୍କ ମୁଣ୍ଡରୁ ବଡ଼ ବୋଝ ଉତାରି ଦେଇଥିଲା। ବାହାଘର ପରେ ଦୁଇବର୍ଷ ଧରି ସେ ଅନେକ ଉତ୍କଣ୍ଠା ଭିତରେ ବାଟ ଅଣ୍ଡାଳୁଥିଲେ। ଏବେ କିନ୍ତୁ ସେ ସେଥିରୁ ମୁକ୍ତ ହୋଇ ସାଙ୍ଗ ମେଳରେ ତାଙ୍କର ମନପସନ୍ଦର କାମ କରିପାରୁଥିଲେ। ମନ ଭିତରେ ସେ ହାଲୁକା ଓ ଖୁସି ଅନୁଭବ କରୁଥିଲେ। ପାଶ୍ୟାପ୍ପା କଲେଜ ଦିନର ଜଣେ ସାଙ୍ଗ ସି. ଆର୍. କ୍ରିଷ୍ଣାସ୍ୱାମୀ ଆୟାର ମଧ୍ୟ ସମର୍ ହାଉସ୍‌ରେ ରାମାନୁଜନ୍‌ଙ୍କ ସାଙ୍ଗରେ ରହୁଥିଲେ। ସେ ମନେପକାନ୍ତି କିପରି ଥରେ ରାମାନୁଜନ୍ ଡେରି ରାତି ଯାଏଁ ଗ୍ରହ ତାରା ଆଦି ବିଷୟରେ ଉଦ୍ଦୀପିତ ହୋଇ ବଡ଼ ପାଟିରେ ଗପି ଚାଲିଥିଲେ। ରାମାନୁଜନ୍‌ଙ୍କ ପାଟିରେ କ୍ରିଷ୍ଣାସ୍ୱାମୀଙ୍କ ଭାଇ ଶୋଇପାରିଲେନାହିଁ। ରାମାନୁଜନ୍‌ଙ୍କ 'ମୁଣ୍ଡ ଥଣ୍ଡା' କରିବା ପାଇଁ ସେ ତାଙ୍କ ଉପରେ ପାଣି ଢାଳିଦେଲେ। ରାମାନୁଜନ୍ ବିରକ୍ତ ହେଲେନାହିଁ, ବରଂ ଶୀତଳ 'ଗଙ୍ଗାସ୍ନାନ' ପାଇଁ ତାଙ୍କୁ ଧନ୍ୟବାଦ ଦେଲେ - କହିଲେ, "ଆଉଥରେ ମିଳନ୍ତା କି?"

1911 ମସିହା ଅନେକ ଦିଗରୁ ଏକ ଭଲ ଓ ଆଶାପୂର୍ଣ୍ଣ ବର୍ଷ ଥିଲା। ଏହି ବର୍ଷ ଅନେକ ଆନନ୍ଦ ଉତ୍ସବ ଭିତରେ ଭାରତର ରାଜଧାନୀ କଲିକତାରୁ ଦିଲ୍ଲୀ ଉଠିଲା; ମାନ୍ଦ୍ରାଜରେ ଭୂତଳ ମଳନିଷ୍କାସନ ପ୍ରଣାଳୀ ତିଆରି ଆରମ୍ଭ ହେଲା; ମାନ୍ଦ୍ରାଜ ରାସ୍ତାର ତେଲବତୀ ଜାଗାରେ ବିଜୁଳି ଆଲୁଅ ଲାଗିଲା। ଏବଂ ସେହି 1911 ମସିହାରେ ରାମାନୁଜନ୍‌ଙ୍କ ପ୍ରଥମ ନିବନ୍ଧ ଭାରତୀୟ ଗଣିତ ସମାଜର ପତ୍ରିକା - ଜର୍ଣ୍ଣାଲ୍ ଅଫ୍ ଦି ଇଣ୍ଡିଆନ୍ ମାଥେମାଟିକାଲ୍ ସୋସାଇଟି - ରେ ପ୍ରକାଶିତ ହେଲା। ଏହା ଥିଲା ଭାରତୀୟ ତଥା ବିଶ୍ୱ ଗାଣିତିକ କ୍ଷେତ୍ରରେ ରାମାନୁଜନ୍‌ଙ୍କର ପ୍ରବେଶ।

### 4. ଜାକବ୍ ବର୍ଣ୍ଣୁଲି ଓ ତାଙ୍କ ସଂଖ୍ୟାରାଜି

ଏହାର ପାଞ୍ଚ ବର୍ଷ ଆଗରୁ, 1906 ମସିହାର ଶେଷ ଆଡ଼କୁ, ମାନ୍ଦ୍ରାଜ, ମହୀଶୂର, କୋଏମ୍ବାଟୁର ଏବଂ ଦକ୍ଷିଣ ଭାରତର ଅନ୍ୟ କେତେ ଜାଗାର କଲେଜ ଅଧ୍ୟାପକମାନେ ରାମସ୍ୱାମୀ ଆୟାରଙ୍କଠାରୁ ଗୋଟିଏ ଚିଠି ପାଇଥିଲେ। ଗୋଟିଏ ଗଣିତ ସମାଜ ପ୍ରତିଷ୍ଠା କରିବା ପାଇଁ ସେଥିରେ ସେ ପ୍ରସ୍ତାବ ଦେଇଥିଲେ। ଏହି ପ୍ରସ୍ତାବ ପଛରେ ଗୋଟିଏ ସରଳ ଆବଶ୍ୟକତା ରହିଥିଲା। ତାହା ଥିଲା ୟୁରୋପ ଓ ଆମେରିକାରେ ପ୍ରକାଶ ପାଉଥିବା ଗଣିତ ବହି ଓ ଗବେଷଣା ପତ୍ରିକା ଭାରତରେ ମିଳୁ ନ ଥିଲା। ତେଣୁ ରାମାନୁଜନ୍‌ଙ୍କ ଭଳି ଅନ୍ୟ ଗଣିତ ସାଧକମାନେ ସାଧାରଣ ପୁରୁଣା ବହି ଉପରେ ନିର୍ଭର କରୁଥିଲେ। ରାମସ୍ୱାମୀଙ୍କ ପ୍ରସ୍ତାବିତ ଗଣିତ ସମାଜ ନୂଆ ବହି ଓ ପତ୍ରିକାସବୁ କିଣିବ ଏବଂ ସଦସ୍ୟମାନଙ୍କ ପାଇଁ ଉପଲବ୍ଧ କରାଇବ। ବର୍ଷକୁ ପଚିଶ ଟଙ୍କା ଲେଖା ଦେଇ ମାତ୍ର ଛଅ ଜଣ ସଦସ୍ୟ ହେଲେ ବି ସମାଜଟି ଆରମ୍ଭ ହୋଇପାରିବ।

ଗାଣିତିକ ସାହଚର୍ଯ୍ୟ ପାଇଁ ବ୍ୟାକୁଳ ଥିବା କୋଡ଼ିଏ ଜଣ ଗଣିତଜ୍ଞ ରାମସ୍ୱାମୀଙ୍କ ପ୍ରସ୍ତାବରେ ଆଗ୍ରହୀ ହେଲେ ଏବଂ ସେହି କୋଡ଼ିଏ ପ୍ରତିଷ୍ଠାତା ସଦସ୍ୟଙ୍କୁ ନେଇ ଭାରତୀୟ ଗଣିତ ସମାଜ ଜନ୍ମ ହେଲା। ଅବଶ୍ୟ ପ୍ରଥମେ ଏହାର ନାଁ ରହିଥିଲା ଆନାଲିଟିକାଲ୍ କ୍ଲବ ବା ବିଶ୍ଳେଷଣାତ୍ମକ ଗୋଷ୍ଠୀ। ଅଳ୍ପ ଦିନ ଭିତରେ ସମାଜ ତରଫରୁ ଏକ ଗବେଷଣା ପତ୍ରିକା ପ୍ରକାଶ ପାଇଲା। ପ୍ରାୟ ବାର ବର୍ଷ ପରେ ବମ୍ବେଠାରେ ଏହାର ଦ୍ୱିତୀୟ ସମ୍ମିଳନୀ ବସିଲା ବେଳକୁ ସଦସ୍ୟ ସଂଖ୍ୟା ଥିଲା 197 ଏବଂ ସେମାନଙ୍କ ପାଇଁ 35ଟି ୟୁରୋପୀୟ ଓ ଆମେରିକୀୟ ପତ୍ରିକା ଉପଲବ୍ଧ ହେଉଥିଲା।

ଏହି ଘଟଣା ଆଧୁନିକ ସମୟର ଥିଲା। ଇଂରେଜମାନେ ଭାରତ ଆସିବାର ହଜାରେ ବର୍ଷ ଆଗରୁ ମଧ୍ୟ ଏଠାରେ ଗଣିତ ଚର୍ଚ୍ଚା ହେଉଥିଲା। ସପ୍ତମ ଶତାବ୍ଦୀ ପୂର୍ବରୁ ୟୁରୋପରେ ଅଖାଡୁଆ ରୋମୀୟ ସଂଖ୍ୟାଲିଖନ ପଦ୍ଧତି ଚଳୁଥିଲା। ଭାରତରେ ସେତେବେଳକୁ ଆଜିର ସଂଖ୍ୟା ପ୍ରଣାଳୀ ବାହାରି ସାରିଥିଲା। 'ଶୂନ'ର ବ୍ୟବହାର ଏକ ବିଶେଷ କୃତି ଥିଲା। ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀ ବେଳକୁ ଶୂନ ଆବିଷ୍କୃତ ହୋଇଥିଲା ବୋଲି ବିଶ୍ୱାସ କରାଯାଏ। ତୃତୀୟ ଖ୍ରୀଷ୍ଟାବ୍ଦ ବେଳର ଏକ ଗ୍ରନ୍ଥରେ ଏହାର ବ୍ୟବହାର ଦେଖିବାକୁ ମିଳେ। ଗୋଆଲିଅର ପାଖରେ ନବମ ଶତାବ୍ଦୀର ଏକ ମନ୍ଦିରର କାନ୍ଥରେ ମଧ୍ୟ ଶୂନ ଲେଖା ରହିଛି - ମନ୍ଦିରର ଫୁଲ ବଗିଚାର ଲମ୍ବ 270 ଏକକ ଭାବରେ ସେଠାରେ ସୂଚନା ଦିଆଯାଇଛି।

ପ୍ରାଚୀନ ଭାରତରେ ଗଣିତର ବିକାଶ ପଛରେ ରହିଥିବା କାରଣ ହେଉଛି ବୈଦିକ ପୂଜାପାଠ ପାଇଁ ଜ୍ୟୋତିର୍ବିଜ୍ଞାନ ଆଧାରିତ କାଳ ନିର୍ଣ୍ଣୟର ଆବଶ୍ୟକତା। ଏହି ପ୍ରକ୍ରିୟାରେ ବୀଜଗଣିତ, ଜ୍ୟାମିତି ଓ ତ୍ରିକୋଣମିତି ଆଦି ଗଣିତର ବିଭିନ୍ନ ବିଭାଗ ଆଗେଇ ପାରିଥିଲେ। 476 ଖ୍ରୀଷ୍ଟାବ୍ଦରେ ଜନ୍ମିତ ଆର୍ଯ୍ୟଭଟ୍ଟ $\pi$ର ମୂଲ୍ୟ ନିରୂପଣ କରିବାରେ ପ୍ରଥମ ଗାଣିତିକଙ୍କ ଭିତରୁ ଜଣେ ଥିଲେ ଏବଂ ତାଙ୍କର ମୂଲ୍ୟ ସେସମୟରେ ସର୍ବୋତ୍କୃଷ୍ଟ ଥିଲା। ଆର୍ଯ୍ୟଭଟ୍ଟ ଓ ତାଙ୍କ ଜନ୍ମର 150 ବର୍ଷ ପରେ ଜନ୍ମ ହୋଇଥିବା ବ୍ରହ୍ମଗୁପ୍ତ ଉଚ୍ଚସ୍ତରର ଗଣିତଜ୍ଞ ଥିଲେ ଏବଂ ତାଙ୍କ ନାଁ ସହିତ ଯୋଡ଼ା ଉପପାଦ୍ୟମାନ ଏବେ ମଧ୍ୟ ରହିଛି।

ଭାରତୀୟ ଗଣିତର ଐତିହ୍ୟ ଉଚ୍ଚ ସ୍ତରର ଥିଲା, କିନ୍ତୁ ପାଶ୍ଚାତ୍ୟ ଗଣିତର ଏକୁଡ଼ିଶାଳ

ଗ୍ରୀସ୍‌ର ଗଣିତ ତୁଳନାରେ ବେଶ୍ ଅଲଗା ଥିଲା। ଗ୍ରୀସୀୟ ଗଣିତ ବିଧିବଦ୍ଧ ପ୍ରମାଣ ଉପରେ ଜୋର ଦେଉଥିଲା। ଇଉକ୍ଲିଡ୍ ପାଦ ପାଦ କରି ବିଭିନ୍ନ ଜ୍ୟାମିତିକ ଉପପାଦ୍ୟର ପ୍ରମାଣ କରୁଥିଲେ। ଭାରତୀୟ ଗଣିତଜ୍ଞମାନେ ଫଳାଫଳ ଉପରେ ଜୋର ଦେଉଥିଲେ, ତାହା ପାଇବାର ଧାରା ଉପରେ ନୁହେଁ। ପ୍ରମାଣର ଚାଲୁଣି ନ ଥିବା କାରଣରୁ ଭାରତୀୟ ଗଣିତରେ ଭଲ ଓ ଭେଲ ଉଭୟ ମିଶି ରହୁଥିଲା ଏବଂ ଅନେକ ଭୁଲ କଥା ମଧ୍ୟ ରହିଯାଉଥିଲା। ଜଣେ ମୁସଲମାନ ଲେଖକଙ୍କ ଭାଷାରେ ଭାରତୀୟ ଗଣିତ ଥିଲା "ମୋତି ଓ ଖଟା ଅଙ୍ଗୁରର... ମାଣିକ୍ୟ ଓ ଗୋଡ଼ିର''ର ଏକ ମିଶ୍ରଣ।

ବିଂଶ ଶତାବ୍ଦୀ ବେଳକୁ କିନ୍ତୁ ସେହି ମୋତି ମାଣିକ ସମୟର ଅଳିଆ ଗଦାରେ ପୋତିହୋଇ ସାରିଥିଲା। କେତେ ଶତାବ୍ଦୀ ଧରି ଗଣିତ କ୍ଷେତ୍ରରେ ଭାରତ ଆଗୁଆ ହୋଇ ରହିଥିଲା, କିନ୍ତୁ ଏବେ ତାହା ଅତି ପୁରୁଣା ଇତିହାସର କଥା। ନିକଟ ଅତୀତରେ ଭାରତର ଅବଦାନ କିଛି ନ ଥିଲା କହିଲେ ଚଳେ। ଦ୍ୱାଦଶ ଶତାବ୍ଦୀର ବିଖ୍ୟାତ ଗଣିତଜ୍ଞ ଭାସ୍କରଙ୍କ ପରେ କେବଳ କେରଳରୁ କିଛି ଉଲ୍ଲେଖନୀୟ କାମ ବାହାରିଥିଲା। ଭାରତୀୟ ଗଣିତ ସମାଜ ଏହି ଅବସ୍ଥାକୁ ଯେ ବଦଳାଇଦେବ ତାହା କେହି ବିଶ୍ୱାସ କରୁ ନ ଥିଲେ। ତଥାପି କେବଳ ପୁରୁଣା କୀର୍ତ୍ତି ବିଷୟରେ ଗାଇଚାଲିବା ବଦଳରେ ଆଧୁନିକ ସମୟର ଗଣିତ କ୍ଷେତ୍ରରେ କିଛି ଅବଦାନ ରଖିବାର ଆଶା ସେମାନେ ରଖିଥିଲେ।

ନୂଆ ପର୍ଯ୍ୟାୟର ସେହି ଗଣିତ ସାଧକମାନଙ୍କ ମେଳକୁ ରାମାନୁଜନ୍ 1911 ମସିହାରେ ପ୍ରବେଶ କଲେ। ଗଣିତ ସମାଜର ପତ୍ରିକାର ତୃତୀୟ ଭାଗରେ ରାମାନୁଜନ୍‌ଙ୍କର ଦୁଇଟି ସମସ୍ୟା ପ୍ରକାଶ ପାଇଲା। ସେଭିତରୁ ଗୋଟିଏ ଥିଲା ସମସ୍ୟା 289 ଯାହା ଥିଲା ତଳେ ଦିଆଯାଇଥିବା ରାଶିର ମୂଲ୍ୟ ବାହାର କରିବା:

$$\sqrt{1+2\sqrt{1+3\sqrt{1+\ldots}}}$$

ପ୍ରଥମ ଦେଖାରେ ଏହା ଏକ ସରଳ ଗଣିତ ଭଳି ମନେ ହେଉଥିଲା। ଜଟିଳ କରିବା ପାଇଁ x, y ଭଳି କିଛି ସଙ୍କେତ ସେଥିରେ ନ ଥିଲା। ତଥାପି ଛ ମାସ ଓ ପତ୍ରିକାର ତିନିଟି ସଂଖ୍ୟା ବାହାରିବା ପରେ ମଧ୍ୟ କେହି ଏହାର ଉତ୍ତର ପଠାଇ ନ ଥିଲେ। ଶେଷରେ ରାମାନୁଜନ୍ ନିଜେ ତା'ର ସମାଧାନ ଯୋଗାଇଲେ।

ସମସ୍ୟାଟିର ମଞ୍ଜି ରହିଥିଲା ଶେଷ ତିନିଟି ବିନ୍ଦୁରେ। ତାହା ସୂଚାଉଥିଲା ଯେ ସଂଖ୍ୟାଗୁଡ଼ିକର କ୍ରମ ଓ ବର୍ଗମୂଳର ବହୁକ୍ରମ ବା ନେଷ୍ଟିଙ୍ଗ କେବେ ସରିବନାହିଁ।

ଏକ ସାଧାରଣ ଉପପାଦ୍ୟର ଉଦାହରଣ ଭାବରେ ରାମାନୁଜନ୍ ଏହି ସମସ୍ୟା କେତେ ବର୍ଷ ତଳେ ସୃଷ୍ଟି କରିଥିଲେ। ତାଙ୍କ ପ୍ରଥମ ନୋଟ ଖାତାର 105 ପୃଷ୍ଠାରେ ଥିବା ଦ୍ୱାଦଶ ଅଧ୍ୟାୟର ଚତୁର୍ଥ ସମୀକରଣଟି ଥିଲା:

$$x+n+a=\sqrt{ax+(n+a)^2+x\sqrt{a(x+n)+(\mathrm{n+a})^2+(x+n)\sqrt{\mathrm{etc.}}}}$$

ତାହାର ଅର୍ଥ ଥିଲା ଏହିପରି - କୌଣସି ସଂଖ୍ୟାକୁ ତିନିଟି ଅଂଶରେ ଭାଙ୍ଗିଦିଅ। ଅଂଶଗୁଡ଼ିକ ଯଦି

x, n ଓ a ହୁଅନ୍ତି ତେବେ ଉପରର ସମୀକରଣର ଧାରାରେ ବର୍ଗମୂଳର ଅସୀମ ବହୁକ୍ରମ ରୂପରେ ପ୍ରକାଶ କରାଯାଇ ପାରିବ। ଉଦାହରଣ ସ୍ୱରୂପ, 3 କୁ x = 2, n = 1 ଓ x = 0 ଏହି ତିନି ଅଂଶରେ ଭାଗ କରି ସମୀକରଣରେ ବସାଇଲେ ରାମାନୁଜନ୍‌ଙ୍କ ସମସ୍ୟା 2୫9 ମିଳିବ। ତେଣୁ ସମୀକରଣର ମୂଲ୍ୟ ହେବ 3। ରାମାନୁଜନ୍‌ଙ୍କ ସମୀକରଣ ବିଷୟରେ ଜାଣି ନ ଥିବା ଲୋକଙ୍କ ପାଇଁ ଏହାର ସମାଧାନ କିନ୍ତୁ ସହଜ ନ ଥିଲା।

ଗଣିତର ଯେଉଁ ବିଭାଗ ରାମାନୁଜନ୍‌ଙ୍କ ପାଇଁ ଅତି ଆଗ୍ରହର ବିଷୟ ଥିଲା ଏହି ଛୋଟ ସମସ୍ୟାଟି ସେଥିରୁ ବାହାରିଥିଲା। ତାଙ୍କ ଗଣିତ ସାଧନାର ଆରମ୍ଭ ଦିନରୁ ସେ ଏହି କ୍ଷେତ୍ରରେ କାମ କରୁଥିଲେ। ଅନ୍ୟ କେହି ଗଣିତଜ୍ଞ ହୁଏତ ସମୀକରଣଟିରେ 10, 100 ବା 1000 ଯାଏଁ କ୍ରମିକ ସଂଖ୍ୟା ବସାଇ ତା'ର ମୂଲ୍ୟ ବାହାର କରି ସନ୍ତୁଷ୍ଟ ରହିଥା'ନ୍ତା। କିନ୍ତୁ ରାମାନୁଜନ୍ ସମସ୍ୟାକୁ ଅଲଗା ଦୃଷ୍ଟିରେ ଦେଖୁଥିଲେ। ତାଙ୍କ ପ୍ରଶ୍ନ ଥିଲା ଯଦି ବହୁକ୍ରମ ବର୍ଗମୂଳ ଅସୀମ ହୁଏ ତେବେ କ'ଣ ହେବ?

ଏହି ପ୍ରଶ୍ନରେ ଗୋଟିଏ ଦ୍ୱନ୍ଦ୍ୱ ରହିଥିଲା। କୌଣସି ସଂଖ୍ୟା ଅସୀମ ସହିତ ସମାନ ହେବ କିପରି? ଅସୀମ ହେଉଛି ଏକ ଅପହଞ୍ଚ ଅବଧାରଣା। ସଂଖ୍ୟାକ୍ରମର କୌଣସି ଶେଷ ବିନ୍ଦୁ ନାହିଁ ଯାହାକୁ ଅସୀମ କୁହାଯାଇ ପାରିବ। ତେବେ କୌଣସି ଗାଣିତିକ ରାଶିରେ ଚଳର ମୂଲ୍ୟ ଅସୀମ ହେଲେ ତାହା କିପରି କାମ କରିବ ସେକଥା ଜଣାଯିବ କିପରି? ଏହି କ୍ଷେତ୍ର ଏକ ରହସ୍ୟମୟ ଅମୂର୍ତ୍ତ ଅବସ୍ଥାରେ ରହିଥିଲା।

ରାମାନୁଜନ୍‌ଙ୍କ ତୁଳନାରେ ଆଉ କେହି ସେହି କ୍ଷେତ୍ରରେ ବେଶି କାମ କରି ନ ଥିଲେ ବା ତାକୁ ବେଶି ଭଲ କରି ଜାଣି ନ ଥିଲେ।

ଅନେକ ପ୍ରକାରର ଗାଣିତିକ ପ୍ରକ୍ରିୟାକୁ ଅସୀମ ଯାଏଁ ଆଗେଇ ନେଇ ହେବ। ଗଣିତ ସମାଜର ପତ୍ରିକାରେ ରାମାନୁଜନ୍ ଦେଇଥିବା ସମସ୍ୟାର ଆଧାର ଥିଲା 'ବହୁକ୍ରମ ରାଡିକାଲ୍' ବା ବର୍ଗମୂଳର ବର୍ଗମୂଳର ବର୍ଗମୂଳର ବର୍ଗମୂଳର...। ଆଗରୁ ଏହି ବିଷୟ ପ୍ରତି କେହି ବିଶେଷ ଧ୍ୟାନ ଦେଇ ନ ଥିଲେ। ରାମାନୁଜନ୍‌ଙ୍କର ଆଉ ଗୋଟିଏ ଆଗ୍ରହର ବିଷୟ ଥିଲା ପ୍ରସାରିତ ଭଗ୍ନାଂଶ ବା ଭଗ୍ନାଂଶର ଭଗ୍ନାଂଶର ଭଗ୍ନାଂଶର ଭଗ୍ନାଂଶ...। ସବୁଠାରୁ ବେଶି କାମ ସେ କରିଥିଲେ ଅସୀମ ଶ୍ରେଣୀ ଉପରେ। ତାଙ୍କ ନୋଟ୍ ଖାତାଗୁଡ଼ିକର ପ୍ରାୟ ପ୍ରତି ପୃଷ୍ଠାରେ ଏହା ଦେଖିବାକୁ ମିଳୁଥିଲା। 1911 ମସିହାରେ ପ୍ରକାଶିତ ହୋଇଥିବା ତାଙ୍କର ପ୍ରଥମ ଗୁରୁତ୍ୱପୂର୍ଣ୍ଣ ନିବନ୍ଧରେ ମଧ୍ୟ ଏହା ଭରିରହିଥିଲା। ଜଣେ କହିଥିଲେ ଯେ ଅସୀମ ଶ୍ରେଣୀ ରାମାନୁଜନ୍‌ଙ୍କର ପ୍ରଥମ ପ୍ରେମ ଥିଲା।

ଅସୀମ ଶ୍ରେଣୀକୁ ସୂଚାଉଥିବା ତିନିବିନ୍ଦୁର ସଙ୍କେତ ରାମାନୁଜନ୍‌ଙ୍କ ଗଣିତ ଖାତାର ପ୍ରାୟ ଆରମ୍ଭ ସମୟରୁ ଦେଖିବାକୁ ମିଳୁଥିଲା। କେବେ କେବେ ସେ ତିନିବିନ୍ଦୁ ଜାଗାରେ '&c' ବା ଇତ୍ୟାଦି ଲେଖୁଥିଲେ। ଅସୀମ ଶ୍ରେଣୀ କହିଲେ ବୁଝାଉଥିଲା ଯେ କୌଣସି ନିର୍ଦ୍ଦିଷ୍ଟ ଢାଞ୍ଚାର ବୀଜଗାଣିତିକ ପଦ ବା ସଂଖ୍ୟା ଗୋଟିଏ ପରେ ଗୋଟିଏ ଯୋଡ଼ା ହୋଇ ଚାଲିବ, କେବେ ବନ୍ଦ ହେବନାହିଁ। ଉଦାହରଣ ସ୍ୱରୂପ, 1+2+3+... ସୂଚାଉଛି ଯେ ଏହା ପରେ 4, 5 ଆଦି ଯୋଡ଼ାହୋଇ ଚାଲିବ।

ଏହି ଉଦାହରଣଟି କିଛି ବିଶେଷ କାମର ନୁହେଁ, କାରଣ ଅସୀମ ସଂଖ୍ୟାର ମିଶାଣଫଳ ଅସୀମ ହିଁ ହେବ। କିନ୍ତୁ ଅସୀମର ଶ୍ରେଣୀଗୁଡ଼ିକୁ ଆଗ୍ରହଜନକ ଓ ମୂଲ୍ୟବାନ କରୁଥିବା ବିଶେଷ

ଗୁଣ ରହିଛି। ତାହା ଦେଖିବାକୁ ମିଳେ ଯେତେବେଳେ ପଦକ୍ରମ ବଢ଼ିଚାଲିବା ଉପରେ କିଛି ସୀମା ରଖାଯାଏ, ଫଳରେ ସେଗୁଡ଼ିକ କିଛି ନିର୍ଦ୍ଦିଷ୍ଟ ମୂଲ୍ୟ ନିଅନ୍ତି। ଗଣିତର ଭାଷାରେ ସେହି ଶ୍ରେଣୀଗୁଡ଼ିକ ନିର୍ଦ୍ଦିଷ୍ଟ ମୂଲ୍ୟରେ ଅଭିସାରିତ ବା କନ୍‌ଭର୍ଜ ହୁଅନ୍ତି। ଉଦାହରଣ ସ୍ୱରୂପ,

$$1 + {}^{1}/_{2} + {}^{1}/_{4} + {}^{1}/_{8} + \ldots$$

ଏଠାରେ ପରବର୍ତ୍ତୀ ପଦଗୁଡ଼ିକ ହେବ ${}^{1}/_{16}$, ${}^{1}/_{32}$, ଇତ୍ୟାଦି। ଏଠାରେ ପର ସଂଖ୍ୟାଗୁଡ଼ିକ ଅତି ବେଗରେ ଛୋଟ ହୋଇଚାଲିବ, ତେଣୁ ମିଶାଣଫଳ ବିଶେଷ ବଢ଼ିବ ନାହିଁ, ମିଶାଣ ଫଳଟି କେବଳ 2ର ବେଶି ବେଶି ପାଖକୁ ଆସିବ ବା 2 ଦିଗରେ ଅଭିସାରିତ ହେବ। ଯେତେ ଅଧିକ ପଦ ଯୋଡ଼ାଯିବ ଏହାର ମୂଲ୍ୟ 2ର ସେତେ ପାଖକୁ ଆସିବ। ଏକଥା ଅନେକ ଦିନ ତଳୁ ଗ୍ରୀସ୍‌ର ଗଣିତଜ୍ଞମାନେ ମଧ୍ୟ ଲକ୍ଷ୍ୟ କରିଥିଲେ।

ପର ସଂଖ୍ୟାଗୁଡ଼ିକ କେବଳ ଛୋଟ ହୋଇ ଚାଲିଲେ ଯେ ଶ୍ରେଣୀଟି ଅଭିସାରୀ ହେବ ତାହା ନୁହେଁ। ଉଦାହରଣ ସ୍ୱରୂପ,

$$1 + {}^{1}/_{2} + {}^{1}/_{3} + {}^{1}/_{4} + \ldots$$

ରାଶିଟି ପ୍ରାୟ ଉପରର ରାଶି ଭଳି ଦେଖାଯାଉଛି, ତେଣୁ ମନେହେବ ଯେ ଏହା ମଧ୍ୟ କିଛି ନିର୍ଦ୍ଦିଷ୍ଟ ମୂଲ୍ୟ ଦିଗରେ ଅଭିସାରୀ ହେବ। କିନ୍ତୁ କିଛି ନୂଆ ପଦ ଯୋଡ଼ି ଦେଲେ ଅନୁମାନ କରାଯାଇଥିବା ମୂଲ୍ୟଠାରୁ ତାହା ବେଶି ହୋଇଯିବ। ଉପରର ଶ୍ରେଣୀ ଭଳି ଏହାର ମୂଲ୍ୟ 2 ହେବ ବୋଲି ଅନୁମାନ କରାଯାଉ। ହିସାବ କରି ଦେଖିଲେ ଜାଣିହେବ ଯେ ମାତ୍ର ଚାରିଟି ପଦର ଯୋଗଫଳ 2ରୁ ଅଧିକ ହେଲାଣି। ତେବେ ଏହାର ମିଶାଣଫଳ 3 ହୋଇପାରେ କି? ଏବେ ଟିକିଏ ଅଧିକ ହିସାବ କରିବାକୁ ହେବ, କିନ୍ତୁ 11ଟି ପଦ ଯୋଡ଼ିଲା ପରେ ମିଶାଣଫଳ 3 ଟପିଯିବ। ତେବେ ମିଶାଣଫଳ 10 ପାଇବାକୁ ହେଲେ କେତୋଟି ପଦ ଦରକାର ହେବ? ହିସାବରୁ ଦେଖାଯିବ ଯେ 12,390ଟି ପଦର ମିଶାଣଫଳ 10ରୁ ବେଶି ହେବ। ପ୍ରମାଣ କରାଯାଇ ପାରିବ ଯେ ଯେଉଁ ଶେଷଫଳ ଅନୁମାନ କଲେ ବି ଏହି ଶ୍ରେଣୀର ମିଶାଣଫଳ ତାକୁ ଟପିଯିବ। ଅର୍ଥାତ, ଏହି ଶ୍ରେଣୀ ଅଭିସାରୀ ନୁହେଁ ଏବଂ ତା'ର ମୂଲ୍ୟ ହେବ ଅସୀମ।

ଅଭିସାରୀ ଶ୍ରେଣୀଗୁଡ଼ିକ ଗଣିତଜ୍ଞଙ୍କ ପାଇଁ ଆଗ୍ରହର କ୍ଷେତ୍ର। ଏଥିରୁ କିଛି ଶ୍ରେଣୀ ସାଧାରଣ ଭାବରେ ଅଭିସାରୀ, ଆଉ କିଛି ବିଶେଷ ପରିସ୍ଥିତିରେ ଅଭିସାରୀ ହୁଅନ୍ତି। ଯେଉଁ ମୂଲ୍ୟ ପ୍ରତି ସେଗୁଡ଼ିକ ଅଭିସାରୀ ହୁଅନ୍ତି ତାହା ସେମାନଙ୍କ ବିଷୟରେ ଗଣିତଜ୍ଞଙ୍କର ଆଗ୍ରହର କାରଣ ହୁଏ।

ସ୍କୁଲରେ ପଢ଼ାଯାଉଥିବା ତ୍ରିକୋଣମିତିକ ଫଳନଗୁଡ଼ିକର ଆରମ୍ଭ ପ୍ରାୟ ହୁଏ ସମକୋଣୀ ତ୍ରିଭୁଜର ବାହୁମାନଙ୍କର ଅନୁପାତରୁ। ସାଇନ୍, କୋସାଇନ୍, ଟାଞ୍ଜେଣ୍ଟ ଆଦି ଫଳନଗୁଡ଼ିକର ମୂଲ୍ୟ ପାଇବା ପାଇଁ ସମକୋଣୀ ତ୍ରିଭୁଜର ଗୋଟିଏ ବାହୁର ଲମ୍ବକୁ ଅନ୍ୟ କେଉଁ ବାହୁର ଲମ୍ବ ଦ୍ୱାରା ଭାଗ କରିବାକୁ ହୁଏ। ତ୍ରିକୋଣମିତିକ ସାରଣିରେ ବିଭିନ୍ନ କୋଣ ପାଇଁ ଏହି ସବୁ ଫଳନର ମୂଲ୍ୟ ଦିଆଯାଇଥାଏ। ଦରକାର ପଡ଼ିଲେ ଏହି ସାରଣି ଦେଖାଯାଏ ଓ ଉପଯୁକ୍ତ ମୂଲ୍ୟ ସଂଗ୍ରହ କରାହୁଏ।

ଐତିହାସିକ ଦୃଷ୍ଟିରୁ ତ୍ରିକୋଣମିତିକ ଫଳନ ସବୁ ସମକୋଣୀ ତ୍ରିଭୁଜରୁ ଆସିଥିଲେ ମଧ୍ୟ ସେସବୁର ମୂଲ୍ୟ ପୂରା ଅଲଗା ଧାରାରେ ବାହାର କରାଯାଇପାରେ। ପୂରା ଅସମ୍ପର୍କିତ ମନେ ହେଉଥିବା ସେହି ଧାରା ବିଭିନ୍ନ ଅସୀମ ଶ୍ରେଣୀର ଯୋଗଫଳ ଉପରେ ଆଧାରିତ। ଯଦି କୌଣସି କୋଣ θ (ଗ୍ରୀକ୍ ଅକ୍ଷର ଥିଟା) ଡିଗ୍ରୀ ବଦଳରେ କୋଣର ଆଉ ଏକ ପ୍ରକାରର ମାପ ରେଡିଆନ୍‌ରେ ପ୍ରକାଶ କରାଯାଏ, ତେବେ:

$$\text{Sin}\,\theta = \theta - \frac{\theta^3}{3!} + \frac{\theta^5}{5!} - \frac{\theta^7}{7!} + \ldots$$

ଏଠାରେ 5!କୁ 5ର କ୍ରମଗୁଣିତ ବା ଫାକ୍ଟୋରିଆଲ୍ କୁହାଯାଏ, ଯାହାର ଅର୍ଥ ହେଉଛି 5 x 4 x 3 x 2 x 1 = 120।

କୌଣସି କୋଣର ସାଇନ୍ ମୂଲ୍ୟ ପାଇବାକୁ ହେଲେ ଏହି ସମୀକରଣରେ ଥିଟା ଜାଗାରେ ସେହି କୋଣର ରେଡିଆନ୍ ମୂଲ୍ୟ ବସାଇ ସମାଧାନ କରିବାକୁ ହେବ। 30 ଡିଗ୍ରୀର ଉଦାହରଣ ନେଲେ ତାହା ହେବ π/6 ବା 0.5236 ରେଡିଆନ୍ ଏବଂ ଥିଟା ଜାଗାରେ ତାହା ବସାଇ ଉପରର ତିନିଟି ପଦ ଯାଏଁ ହିସାବ କଲେ ସାଇନ୍ 30ର ମୂଲ୍ୟ ମିଳିବ 0.500002। ସାଇନ୍ ସାରଣିରୁ ମିଳୁଥିବା ମୂଲ୍ୟ 0.500000 ସହିତ ଏହା ପ୍ରାୟ ମେଳ ଖାଉଛି। ଅର୍ଥାତ, ଏହି ଶ୍ରେଣୀଟି ତୀବ୍ର ବେଗରେ ଅଭିସାରୀ ହେଉଛି ଏବଂ ବେଶି ପଦ ନେଇ ହିସାବ କଲେ ଦୁଇ ଧାରାରୁ ମିଳୁଥିବା ସାଇନ୍ 30ର ମୂଲ୍ୟ ମିଶିଯିବ।

ଏହି ଅସୀମ ଶ୍ରେଣୀର ମୂଲ୍ୟ ଯେ ସମକୋଣୀ ତ୍ରିଭୁଜର ଦୁଇଟି ବାହୁର ଅନୁପାତ ସହିତ ସମାନ ହେବ ତାହା ବେଶ୍ ରହସ୍ୟମୟ ମନେହୁଏ। କିନ୍ତୁ ଏହିଭଳି ଅପ୍ରତ୍ୟାଶିତ ଫଳାଫଳ ପ୍ରାୟ ସବୁବେଳେ ଏହି ଅସୀମ ଶ୍ରେଣୀର ଗଣିତରୁ ମିଳିଥାଏ ଏବଂ ତାହା ଯୋଗୁ ହିଁ ଗଣିତଜ୍ଞମାନେ ଏଥି ପ୍ରତି ବିଶେଷ ଭାବରେ ଆକର୍ଷିତ ହୁଅନ୍ତି। ସେହି ଗୁଣ ଯୋଗୁ ତାହା ମଧ୍ୟ ଥିଲା ରାମାନୁଜନ୍‌ଙ୍କର ପ୍ରଥମ ପ୍ରେମ। ତାଙ୍କ ପ୍ରଥମ ନିବନ୍ଧରେ ସେ ବର୍ଣ୍ଣୁଲି ସଂଖ୍ୟାର ବର୍ଣ୍ଣନା ଅସୀମ ଶ୍ରେଣୀ ଆଧାରରେ ଦେଇଥିଲେ। ନିବନ୍ଧର ପ୍ରତି ପୃଷ୍ଠାରେ ଅସୀମ ଶ୍ରେଣୀର ଆଲୋଚନା ରହିଥିଲା।

ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀରେ ଅନେକ ବିଶିଷ୍ଟ ଗଣିତଜ୍ଞ ଦେଖାଦେଇଥିଲେ ଯାହା ଭିତରୁ ଜଣେ ଥିଲେ ଜାକବ୍ ବର୍ଣ୍ଣୁଲି। ଆଣ୍ଟୱେର୍ପଠାରେ ବାଣିଜ୍ୟ ବ୍ୟବସାୟ କରୁଥିବା ଗୋଟିଏ ପରିବାରରେ ସେ ଜନ୍ମ ହୋଇଥିଲେ। ସେଠାରେ ପ୍ରୋଟେଷ୍ଟାଣ୍ଟ ବିରୋଧୀ ଗଣହତ୍ୟାରୁ ରକ୍ଷାପାଇବା ପାଇଁ ସେ ସ୍ୱିଜର୍‌ଲାଣ୍ଡ ପଳାଇଥିଲେ। ଜର୍ମାନି ଦେଶର ଗଟ୍‌ଫ୍ରିଡ୍ ଭନ୍ ଲିବ୍‌ନିଜ୍ ଏବଂ ଇଂଲଣ୍ଡର ସାର୍ ଆଇଜାକ୍ ନିଉଟନ୍ କାଲ୍‌କୁଲସ୍‌ର ବିକାଶ କରିଥିଲେ। ନିରବଚ୍ଛିନ୍ନ ଭାବରେ ବଦଳୁଥିବା ଚଳଗୁଡ଼ିକ ସହିତ କାମ କରିବା ପାଇଁ କାଲ୍‌କୁଲସ୍ ଶକ୍ତିଶାଳୀ ଅସ୍ତ୍ର ଥିଲା। ଲିବ୍‌ନିଜ୍ ଓ ନିଉଟନ୍‌ଙ୍କ କାମର ଦୁଇ ଦଶନ୍ଧି ପରେ ବର୍ଣ୍ଣୁଲି କାଲ୍‌କୁଲସ୍‌କୁ ଆହୁରି ବିକଶିତ କଲେ। ସେହି କାମ ଭିତରେ ସେ ସ୍ୱତନ୍ତ୍ର ଗୁଣଧର୍ମର କିଛି ସଂଖ୍ୟା ଚିହ୍ନଟ କଲେ ଯାହା ଏବେ ତାଙ୍କ ନାଁରେ ପରିଚିତ ହେଉଛି।

ବର୍ଣ୍ଣୁଲି ସଂଖ୍ୟାଗୁଡ଼ିକ e ନାମକ ସ୍ଥିରାଙ୍କ ସହିତ ଅତି ନିବିଡ଼ ଭାବରେ ଯୋଡ଼ା। $\pi$ ଭଳି ତା'ର ବିଶେଷ ଗୁଣଧର୍ମ ଯୋଗୁ e ମଧ୍ୟ ଗଣିତରେ ବ୍ୟାପକ ଭାବରେ ବ୍ୟବହୃତ ହୁଏ। ଏହାର ସଂଜ୍ଞା ହେଉଛି:

$$e = 1 + \frac{1}{1!} + \frac{1}{2!} + \frac{1}{3!} + \ldots$$

e ଆଧାରିତ କୌଣସି ନିର୍ଦ୍ଦିଷ୍ଟ ବୀଜଗାଣିତିକ ରାଶି ଅସୀମ ଶ୍ରେଣୀ ରୂପରେ ପ୍ରକାଶିତ ହେଲେ ପ୍ରତି ପଦର ଗୁଣାଙ୍କ ବା କୋଏଫିସିଏଣ୍ଟ କିଛି ବିଶେଷ ଗୁଣ ଦେଖାନ୍ତି। ଗୁଣାଙ୍କଗୁଡ଼ିକ ସାଧାରଣ ସଂଖ୍ୟା ଯାହା ସହିତ ବୀଜଗାଣିତିକ ଅଂଶଗୁଡ଼ିକର ଗୁଣନ କରାଯାଏ। ସମୀକରଣ $3x^2 + {}^1/_2\, x^2 = 12$ ରେ 3 ଓ $^1/_2$ ହେଉଛନ୍ତି ଗୁଣାଙ୍କ। ଏହି ଗୁଣାଙ୍କ ଦୁଇଟି ବର୍ଣ୍ଣୁଲି ସଂଖ୍ୟା ଥିଲେ, ଯାହା ତାଙ୍କ *ଆର୍ସ୍ କଞ୍ଜେକ୍ଟାଣ୍ଡି* ବହିରେ ଦିଆଯାଇଥିଲା। ସେହି ବହି 1713 ମସିହାରେ ବର୍ଣ୍ଣୁଲିଙ୍କ ମୃତ୍ୟୁ ପରେ ପ୍ରକାଶିତ ହୋଇଥିଲା। ବର୍ଣ୍ଣୁଲି ସଂଖ୍ୟା ପାଇଁ ବ୍ୟବହୃତ ସଙ୍କେତ ବିଷୟରେ କିଛି ବିଭ୍ରାନ୍ତି ରହିଛି। କିନ୍ତୁ ସାଧାରଣ ଭାବରେ ଏଗୁଡ଼ିକୁ $B_n$ ରୂପରେ ଲେଖାଯାଏ। ପ୍ରଥମ କେତୋଟି ବର୍ଣ୍ଣୁଲି ସଂଖ୍ୟା ହେଉଛନ୍ତି: $B_1 = -{}^1/_2$, $B_2 = {}^1/_6$, $B_4 = -{}^1/_{30}$, $B_6 = {}^1/_{42}$। ପ୍ରଥମଟିକୁ ଛାଡ଼ିଦେଲେ ତୃତୀୟ, ପଞ୍ଚମ, ସପ୍ତମ ଆଦି ଅଯୁଗ୍ମ କ୍ରମର ବର୍ଣ୍ଣୁଲି ସଂଖ୍ୟାଗୁଡ଼ିକର ମୂଲ୍ୟ ଶୂନ ହୁଏ।

ପ୍ରାୟ ଆଠ ବର୍ଷ ତଳେ ରାମାନୁଜନ୍ ବର୍ଣ୍ଣୁଲି ସଂଖ୍ୟାର ଅବଧାରଣା ସହ ପରିଚିତ ହୋଇଥିଲେ, ଯଦିଓ ସେ ଏହି ନାଁରେ ତାହା ଜାଣି ନ ଥିଲେ। କାର୍‌ଙ୍କ ସଂକ୍ଷିପ୍ତସାରର ଦ୍ୱିତୀୟ ଭାଗରେ ଏହା ବିଷୟରେ ଅଲଗା ନାଁରେ ଲେଖାଥିଲା, କିନ୍ତୁ 1904 ପର୍ଯ୍ୟନ୍ତ ତାହା ରାମାନୁଜନ୍‌ଙ୍କ ଦୃଷ୍ଟିକୁ ଆସି ନ ଥିବ। ସେତେବେଳେ ସେ ସରକାରୀ କଲେଜରେ ପଢୁଥିଲେ ଏବଂ ବର୍ଷେ ଆଗରୁ ସେହି ସଂଖ୍ୟା ଉପରେ କାମ କରୁଥିଲେ। ଥରେ ତାହା ବିଷୟରେ ଜାଣିବା ପରେ ସେ ତାକୁ ବାରମ୍ବାର କାମରେ ଲଗାଉଥିଲେ। ଅଏଲର-ମାକ୍‌ଲରିନ୍ ମିଶାଣ ସୂତ୍ର ମାଧ୍ୟମରେ କାଲ୍‌କୁଲସ୍‌ରେ ସୀମାଯୁକ୍ତ ସମାକଳ ବା ଡେଫିନାଇଟ୍ ଇଣ୍ଟେଗ୍ରାଲ୍ ସବୁର ମୂଲ୍ୟ ବାହାର କରିବା ପାଇଁ ରାମାନୁଜନ୍ ଏହା ବ୍ୟବହାର କରୁଥିଲେ। ତାଙ୍କ ପ୍ରଥମ ଖାତାର ପୃଷ୍ଠା 30 ଓ 31ରେ ସେ ଏହା ବିଷୟରେ ଲେଖିଛନ୍ତି। ଦ୍ୱିତୀୟ ଖାତାର ପଞ୍ଚମ ଅଧ୍ୟାୟର ଅଧିକାଂଶ ଭାଗରେ ମଧ୍ୟ ଏହା ରହିଛି।

ଏବେ ରାମାନୁଜନ୍ ସେହି ବର୍ଣ୍ଣୁଲି ସଂଖ୍ୟାକୁ ତାଙ୍କର ପ୍ରଥମ ବିଧିବଦ୍ଧ ଗାଣିତିକ ଗବେଷଣା ନିବନ୍ଧର ବିଷୟବସ୍ତୁ କଲେ। ବୌଦ୍ଧିକ କ୍ଷେତ୍ରରେ କାହାର ନାଁ ସହିତ କୌଣସି ତତ୍ତ୍ୱ ଯୋଡ଼ା ହେଲେ ତାହା ଅମରତ୍ୱ ପାଇଲା ଭଳି ମନେହୁଏ। ଯେପରି ପୋଲିଓ ପାଇଁ ଦିଆଯାଉଥିବା ସଲ୍‌କ୍ ଟିକା, ଶବ୍ଦର ବେଗ ମାପିବାର ଏକକ ମାକ୍। ସେହିଭଳି ଗଣିତ କ୍ଷେତ୍ରରେ ବ୍ୟାପକ ଭାବରେ ବ୍ୟବହାର କରାଯାଉଥିବା ସେହି ବିଶେଷ ଗୁଣର ସଂଖ୍ୟା ପରିବାରର ନାଁ ରଖାଯାଇଥିଲା ବର୍ଣ୍ଣୁଲି ସଂଖ୍ୟା। ରାମାନୁଜନ୍ ସେହି ସଂଖ୍ୟା ପରିବାରକୁ ଆଉ ଥରେ ଆବିଷ୍କାର କରିଥିଲେ କହିଲେ ଚଳେ।

ରାମାନୁଜନ୍‌ଙ୍କ ନିବନ୍ଧର ନାଁ ଥିଲା "ବର୍ଣ୍ଣୁଲି ସଂଖ୍ୟାର କିଛି ଗୁଣଧର୍ମ।" ଜଣେ ରସାୟନ

ବିଜ୍ଞାନୀ କୌଣସି ଧାତୁର ବିଶେଷ ଗୁଣ ସବୁକୁ ଖୋଜିଲା ଭଳି ରାମାନୁଜନ୍ ବର୍ଣ୍ଣୁଲି ସଂଖ୍ୟାଗୁଡ଼ିକର ଗାଣିତିକ ପ୍ରତିକ୍ରିୟା ବା ଗୁଣଧର୍ମ ଖୋଜୁଥିଲେ। ବର୍ଣ୍ଣୁଲି ସଂଖ୍ୟାଗୁଡ଼ିକ ଭଗ୍ନାଂଶ ଭାବରେ ପ୍ରକାଶିତ ହୁଅନ୍ତି। ଯଥା, $B_{32}$=7709321041217/510। ରାମାନୁଜନ୍ ଦେଖିଲେ ଯେ ସେହି ଭଗ୍ନାଂଶ ସବୁର ହର ବା ତଳ ସଂଖ୍ୟାଗୁଡ଼ିକ ସବୁବେଳେ 6 ଦ୍ୱାରା ବିଭାଜିତ ହୁଅନ୍ତି। ଆଗରୁ ଜଣାଥିବା ବର୍ଣ୍ଣୁଲି ସଂଖ୍ୟାକୁ ଆଧାର କରି ସେ ଅନ୍ୟ $B_n$ର ମୂଲ୍ୟ ହିସାବ କରିବାର ବିକଳ୍ପ ଧାରାମାନ ବାହାର କଲେ। ଏହି କ୍ରମରେ ସେ ଦେଇଥିବା 1୫ଟି ଧାରାର ଷଷ୍ଠ ଥିଲା:

6. ଦେଖାଯାଇପାରେ ଯେ n ଯଦି ଯୁଗ୍ମ ହୁଏ କିନ୍ତୁ ଶୂନ ନ ହୁଏ, ତେବେ,

(i) $B_n$ ଏକ ଭଗ୍ନାଂଶ ହେବ ଏବଂ ନିମ୍ନ ମୂଲ୍ୟର $B_n/n$ ପାଇଁ ଲବଗୁଡ଼ିକ ମୌଳିକ ସଂଖ୍ୟା ହେବେ।

(ii) $B_n$ର ହରର ଗୁଣିତକ ଭିତରେ 2 ଓ 3 ମାତ୍ର ଥରକ ପାଇଁ ରହିପାରିବେ।

(iii) $2n(2n -1)\ B_n/n$ ଏକ ପୂର୍ଣ୍ଣ ସଂଖ୍ୟା ହେବ, ତେଣୁ $2n(2n -1)\ Bn$ ଏକ ଅଯୁଗ୍ମ ପୂର୍ଣ୍ଣ ସଂଖ୍ୟା ହେବ।

ରାମାନୁଜନ୍‌ଙ୍କ ନିବନ୍ଧ ଏହି ଭାବରେ ପତ୍ରିକାର 17 ପୃଷ୍ଠା ଧରି ଲମ୍ବିଥିଲା। ସେଥିରେ ଆଠଟି ଉପପାଦ୍ୟ ରହିଥିଲା ଯେଉଁଥିରୁ ତିନିଟି ପାଇଁ କିଛି ମାତ୍ରାର ପ୍ରମାଣ ଦିଆଯାଇଥିଲା। ଆଉ ଦୁଇଟି ମୂଳ ଉପପାଦ୍ୟର ଉପଉପପାଦ୍ୟ ଭାବରେ ରହିଥିଲା ଏବଂ ବାକି ତିନିଟି କେବଳ ଅନୁମାନୋକ୍ତି ଅବସ୍ଥାରେ ଥିଲା।

ରାମାନୁଜନ୍‌ଙ୍କ ପାଣ୍ଡୁଲିପିକୁ ସୁଧାରିବା ପାଇଁ ପତ୍ରିକାର ସମ୍ପାଦକଙ୍କୁ ବହୁତ ପରିଶ୍ରମ କରିବାକୁ ପଡ଼ିଥିଲା। ବାଙ୍ଗାଲୋରର ସେଣ୍ଟ୍ରାଲ କଲେଜର ଗଣିତ ଅଧ୍ୟାପକ ଏମ୍. ଟି. ନାରାୟଣ ଆୟେଙ୍ଗାର ସେତେବେଳେ ପତ୍ରିକାର ସମ୍ପାଦକ ଥିଲେ। ସେ ରାମାନୁଜନ୍‌ଙ୍କର ବଡ଼ ପ୍ରଶଂସକ ଥିଲେ, ତଥାପି ସେ ପରେ ଲେଖିଥିଲେ, "ଶ୍ରୀ ରାମାନୁଜନ୍‌ଙ୍କ ଗଣିତର ଧାରା ଅତି ରୁକ୍ଷ ଓ ଅଭିନବ ଥିଲା ଏବଂ ତାଙ୍କ ଉପସ୍ଥାପନା ସ୍ୱଷ୍ଟ ନ ଥିଲା। ତେଣୁ ଗଭୀର ଗଣିତ ବିଷୟରେ ଅନଭିଜ୍ଞ ସାଧାରଣ ପାଠକ ପାଇଁ ଏହା ବୁଝିବା କଷ୍ଟକର ଥିଲା। ଫଳରେ ଏହି ନିବନ୍ଧ ଉପରେ ସମ୍ପାଦକଙ୍କର ଖଟଣି କିଛି କମ୍ ନ ଥିଲା।" ପାଣ୍ଡୁଲିପିଟି ସମ୍ପାଦକ ଓ ଲେଖକଙ୍କ ଭିତରେ ତିନି ଥର ଏପଟ ସେପଟ ହେବା ପରେ ପ୍ରକାଶନଯୋଗ୍ୟ ଅବସ୍ଥାକୁ ଆସିଲା।

ରାମାନୁଜନ୍‌ଙ୍କ ପ୍ରଥମ ଓ ପର ନିବନ୍ଧଗୁଡ଼ିକରେ ସେ ଅସମ୍ପର୍କିତ ମନେ ହେଉଥିବା ବିଷୟଗୁଡ଼ିକ ଭିତରେ ସମ୍ପର୍କ ଦେଖାଉଥିଲେ। କିନ୍ତୁ ସେହି ସମ୍ପର୍କ ସେ କିଭଳି ପାଇଲେ ତା'ର ପ୍ରମାଣ ସେ ଦେଉ ନ ଥିଲେ। ହୁଏତ ପ୍ରମାଣ ଦରକାର ବୋଲି ସେ ଭାବୁ ନ ଥିଲେ କିମ୍ବା ସେଥିରେ ସେ ସମୟ ନଷ୍ଟ କରିବାକୁ ଚାହୁଁ ନ ଥିଲେ। ଯେଉଁଠି ବି ସେ ପ୍ରମାଣ ଦେଉଥିଲେ ତାହା ଉପରଠାଉରିଆ ବା ଅସମ୍ପୂର୍ଣ୍ଣ ହେଉଥିଲା। ପରେ ଅନ୍ୟ ଗଣିତଜ୍ଞମାନେ ପ୍ରମାଣ କରି ଦେଖିଛନ୍ତି ଯେ ତାଙ୍କର ଅଧିକାଂଶ ଉପପାଦ୍ୟ ଠିକ୍ ଥିଲା।

ରାମାନୁଜନ୍‌ଙ୍କ କାମ ବିଷୟରେ ଅନୁଧ୍ୟାନ କରିଥିବା ଅଧିକାଂଶ ବ୍ୟକ୍ତି ଭାବନ୍ତି ଯେ ଏହା

ହେଉଛି ତାଙ୍କ ଉପରେ କାର୍‌ଙ୍କ ପ୍ରଭାବର ପ୍ରତିଫଳନ। କାର୍ ଗାଣିତିକ ଫଳାଫଳର ସାର କଥା ସଂକଳନ କଲାବେଳେ ସେସବୁର ପ୍ରମାଣ ଦେଉ ନ ଥିଲେ ବା ଅତି ସଂକ୍ଷିପ୍ତ ରୂପରେ ଦେଉଥିଲେ। କିନ୍ତୁ କାର୍ ମୌଳିକ ଗାଣିତିକ ତତ୍ତ୍ୱ ବାଢୁ ନ ଥିଲେ। ରାମାନୁଜନ୍ ନୂଆ ନୂଆ ତଥ୍ୟ ଓ ତତ୍ତ୍ୱ ଉପସ୍ଥାପିତ କରୁଥିଲେ ମଧ୍ୟ କାର୍‌ଙ୍କ ଧାରାକୁ ଛାଡ଼ି ନ ଥିଲେ। ଉଦାହରଣ ସ୍ୱରୂପ, ସେ କହିଥିଲେ ଯେ nତମ ବର୍ଣ୍ଣୁଲି ସଂଖ୍ୟାର ଲବକୁ nଦ୍ୱାରା ଭାଗକଲେ ଭାଗଫଳ ସବୁବେଳେ ମୌଳିକ ସଂଖ୍ୟା ହେବ। କିନ୍ତୁ ସେ ଏହାର ସାମାନ୍ୟତମ ପ୍ରମାଣ ଦେଇ ନ ଥିଲେ। ଅନ୍ୟ ଗଣିତଜ୍ଞଙ୍କ ମତରେ ରାମାନୁଜନ୍ ସାଂଖ୍ୟିକ ଫଳାଫଳକୁ ଯଥେଷ୍ଟ ମନେ କରୁଥିଲେ, ଅନ୍ୟ ପ୍ରମାଣର ଆବଶ୍ୟକତା କଥା ସେ ଚିନ୍ତା କରୁଥିବାର ସୂଚନା ମଧ୍ୟ ସେ କେଉଁଠି ଦେଇନାହାନ୍ତି। ଯଦିଓ ଏହି ମତ ବିଷୟରେ ନିଶ୍ଚିତ ହେବା କଷ୍ଟକର, ତଥାପି ଏହା ସତ ଯେ ଅତି ତର୍କଉଦ୍ରେକକାରୀ ଉପପାଦ୍ୟ ପାଇଁ ମଧ୍ୟ ସେ କାଣିଚାଏ ପ୍ରମାଣ ଦେଇନାହାନ୍ତି।

ଉପରର ଉଦାହରଣ କ୍ଷେତ୍ରରେ ରାମାନୁଜନ୍‌ଙ୍କ କଥା ଠିକ୍ ନ ଥିଲା। କାରଣ $B_{20}/20=174611$ ଏବଂ $17461=283\times617$। ଏହା କିନ୍ତୁ ଏକ ବ୍ୟତିକ୍ରମ ଥିଲା ବୋଲି କୁହାଯାଇପାରେ। ନିଜ ଉପରେ ରାମାନୁଜନ୍‌ଙ୍କର ଦୃଢ଼ ବିଶ୍ୱାସ ପ୍ରାୟ ସବୁବେଳେ ଯଥାର୍ଥ ପ୍ରମାଣିତ ହେଉଥିଲା। ବର୍ଣ୍ଣୁଲି ସଂଖ୍ୟା ବିଷୟରେ ତାଙ୍କ ନିବନ୍ଧରେ, ତାଙ୍କ ନୋଟ ଖାତାରେ, ଗଣିତ ସମ୍ପର୍କିତ ତାଙ୍କ ଚିଠିପତ୍ରରେ ସେ ଆଶ୍ଚର୍ଯ୍ୟଜନକ ଭାବରେ ସଠିକ ପ୍ରମାଣିତ ହୋଇଥିଲେ।

## 5. ପୋର୍ଟ ଟ୍ରଷ୍ଟ

ଭାରତୀୟ ଗଣିତ ସମାଜର ପତ୍ରିକାରେ ନିବନ୍ଧ ପ୍ରକାଶନ ପରେ ରାମାନୁଜନ୍ ପୃଥିବୀର ଗାଣିତିକ ମାନଚିତ୍ରରେ ସ୍ଥାନ ପାଇଲେ ବୋଲି କୁହାଯାଇପାରେ। ସେହି ମାନଚିତ୍ରର ଏକ ଅଜଣା କୋଣରେ ରହିଥିଲେ ବି ଅନ୍ୟମାନଙ୍କ ଦୃଷ୍ଟିକୁ ସେ ଆସିବା ଆରମ୍ଭ କଲେ।

ତା'ପର ବର୍ଷ ଆରମ୍ଭରେ କୁମ୍ଭକୋଣମ୍‌ର ଜଣେ ଚିହ୍ନା ପିଲା କେ. ଏସ୍. ଶ୍ରୀନିବାସନ୍ ତାଙ୍କୁ ଦେଖିବାକୁ ଆସିଲେ ଏବଂ କହିଲେ ଯେ ଲୋକମାନେ ରାମାନୁଜନ୍‌ଙ୍କୁ ପ୍ରଚଣ୍ଡ ପ୍ରତିଭାର ଅଧିକାରୀ ବୋଲି କହୁଛନ୍ତି।

"ତାହା ଅତିରଞ୍ଜନ", ରାମାନୁଜନ୍ କହିଲେ, "ମୋର କହୁଣିକୁ ଦେଖ। ସେଥିରୁ ସତ କଥା ଜାଣିହେବ।" ତାଙ୍କ କହୁଣି ରୁକ୍ଷ ଓ ମଇଳା ଥିଲା। ବଡ଼ ସିଲଟରେ ଗଣିତ କଷିବାରେ ମଜ୍ଜିଥିଲା ବେଳେ ସେ କହୁଣିରେ ଘଷି ଲିଭାଇବା କାମ କରୁଥିଲେ। କାମ ବନ୍ଦ କରି କନାରେ ଲିଭାଇବା ଅପେକ୍ଷା ଏହା ଚଞ୍ଚଳ ହେଉଥିଲା। ବହୁଦିନର ଅଭ୍ୟାସ ଫଳରେ ଏହା ତାଙ୍କ ପାଇଁ ସ୍ୱୟଂକ୍ରିୟ ଭାବରେ ଚାଲୁଥିଲା। "ମୋ କହୁଣି ମତେ ବିଚକ୍ଷଣ କରୁଛି", ସେ କହିଲେ।

ଶ୍ରୀନିବାସନ୍ ପଚାରିଲେ ଯେ ସେ କାଗଜ କାହିଁକି ବ୍ୟବହାର କରୁନାହାନ୍ତି। "କାଗଜ ଖର୍ଚ୍ଚ ତୁଲାଇ ପାରିବିନାହିଁ" ଥିଲା ରାମାନୁଜନ୍‌ଙ୍କ ଉତ୍ତର। ମାସକୁ ତାଙ୍କର ଚାରି ରିମ୍ ଖଣ୍ଡେ କାଗଜ ଦରକାର ହେବ, ଜରୁରୀ ଖର୍ଚ୍ଚ ଗଲା ପରେ ରାମଚନ୍ଦ୍ର ରାଓଙ୍କଠାରୁ ମିଳୁଥିବା ଟଙ୍କାରୁ ଏହା କିଣିହେବନାହିଁ।

ସମର୍ ହାଉସ୍‌ରେ ରହୁଥିବା ଆଉ ଜଣେ ପୁରୁଣା ସାଙ୍ଗ ଏନ୍. ରାମସ୍ୱାମୀ ଆୟାର ରାମାନୁଜନ୍‌ଙ୍କର କାଗଜ ଚାହିଦା କଥା କହନ୍ତି। ରାମାନୁଜନ୍ କିପରି ଖଣ୍ଡେ ମସିଣା ଉପରେ ଗଡ଼ୁଥିବା ଅବସ୍ଥାରେ କାମ କରୁଥିଲେ ତାହା ସେ ବର୍ଣ୍ଣନା କରନ୍ତି। ସେ ଚିରା ଜାମା ପିନ୍ଧି ଥା'ନ୍ତି, ଲମ୍ବା ଚୁଟି ଖଣ୍ଡେ ପତଳା ସୂତାରେ ବନ୍ଧା ହୋଇଥାଏ, ଚାରିପଟେ ଗଦା ଗଦା ଖାତା ଓ ଖୋଲା କାଗଜ ଖେଳାଇ ହୋଇ ପଡ଼ିଥାଏ, ଆଉ ରାମାନୁଜନ୍‌ଙ୍କ ହାତ ଅତି ବେଗରେ ଚାଲିଥାଏ...। ପାଶ୍ୟାପ୍ପା କଲେଜର ଆଉ ଜଣେ ସାଥୀ ଟି. ଶ୍ରୀନିବାସଚାର୍‌ୟା ମନେପକାନ୍ତି ଯେ ସାଦାକାଗଜ ନଥିଲେ ରାମାନୁଜନ୍ ଆଗରୁ ଲେଖାହୋଇଥିବା କାଗଜ ଉପରେ ଲାଲ୍ କାଳିରେ ଲେଖନ୍ତି।

ଏହି ସମୟରେ ରାମଚନ୍ଦ୍ର ରାଓ ରାମାନୁଜନ୍‌ଙ୍କ ନୋଟ ଖାତା ସବୁର ସୁରକ୍ଷା ବିଷୟରେ ଚିନ୍ତିତ ହୋଇ ପଡ଼ିଲେ। ଅଘଟଣର ବିପଦରୁ ବଞ୍ଚିବା ପାଇଁ ଖାତା ସବୁର ନକଲ କରିବା ପାଇଁ ସେ ରାମାନୁଜନ୍‌ଙ୍କୁ ବୁଝାଇଲେ। ରାମାନୁଜନ୍ ରାଜି ହେଲେ ଏବଂ ନକଲ କଲାବେଳେ ତାଙ୍କ ଲେଖାଗୁଡ଼ିକୁ ପରିମାର୍ଜିତ କରିବା ସହିତ ପରେ ଲେଖିଥିବା ଟୀକାଗୁଡ଼ିକୁ ଉପଯୁକ୍ତ ଜାଗାରେ ଯୋଡ଼ିଦେଲେ। ପରେ ଏହା ତାଙ୍କର 'ଦ୍ୱିତୀୟ ଖାତା' ଭାବରେ ପରିଚିତ ହେଲା।

ରାମାନୁଜନ୍‌ଙ୍କ ମୃତ୍ୟୁର ପଚାଶ ବର୍ଷ ପରେ ତାଙ୍କ ସ୍ମୃତିରେ ଅନେକ ସ୍ମରଣିକା ପ୍ରକାଶ ପାଇଥିଲା। ସେଥିରୁ ଗୋଟିକରେ ରାମାନୁଜନ୍‌ଙ୍କ ଜନ୍ମସ୍ଥାନ ଇରୋଡ୍‌ର ଜଣେ କାଗଜ ଉତ୍ପାଦକଙ୍କର ବିଜ୍ଞାପନରେ ଲେଖାଥିଲା, "କାଗଜ, ଅମରତ୍ୱ ପ୍ରଦାନର ମହାନ ଅସ୍ତ୍ର। ମଣିଷର ଗଭୀର ଚିନ୍ତନକୁ ବଞ୍ଚାଇ ରଖିବାରେ ଓ ତା'ର ପ୍ରସାର କରାଇବାରେ କାଗଜ ସହାୟକ ହୁଏ।" ରାମାନୁଜନ୍ ଓ ତାଙ୍କ ନୋଟ୍ ଖାତା ପାଇଁ ଏହା ଏକ ଉପଯୁକ୍ତ ସମ୍ମାନ।

ପ୍ରାୟ ବର୍ଷକ ପାଇଁ ରାମାନୁଜନ୍ ରାମଚନ୍ଦ୍ର ରାଓଙ୍କ ସାହାଯ୍ୟରେ ଚଳିଲେ। ଗଣିତ ଦୃଷ୍ଟିରୁ ଏହି ସମୟ ତାଙ୍କ ପାଇଁ ବେଶ୍ ଫଳପ୍ରଦ ଥିଲା। ଗଣିତ ସମାଜର ପତ୍ରିକାରେ ସେ ଗୋଟିକ ପରେ ଗୋଟିଏ କରି ଅନେକ ସମସ୍ୟା ଦେଉଥିଲେ ଏବଂ ତାଙ୍କର ଦ୍ୱିତୀୟ ନିବନ୍ଧ ମଧ୍ୟ ପୂରା କରିଥିଲେ। ତଥାପି ସେ ଉପାର୍ଜନକ୍ଷମ ନ ଥିଲେ ଏବଂ ଏହା ତାଙ୍କୁ ବିବ୍ରତ କରିବାକୁ ଲାଗିଲା। ଜଣେ ଶୁଭେଚ୍ଛୁଙ୍କ ସାହାଯ୍ୟରେ ସେ ଆକାଉଣ୍ଟାଣ୍ଟ ଜେନେରାଲ୍ ଅଫିସରେ ମାସକୁ କୋଡ଼ିଏ ଟଙ୍କା ଦରମାରେ ଗୋଟିଏ ଅସ୍ଥାୟୀ ଚାକିରି ପାଇଲେ। କିନ୍ତୁ ସେ ସେଥିରେ ମାତ୍ର କେତେ ସପ୍ତାହ ପାଇଁ ରହିଲେ। ରାମଚନ୍ଦ୍ର ରାଓଙ୍କ ସୁପାରିଶରେ ସେ ଆଉ ଗୋଟିଏ ଚାକିରି ପାଇଁ ଦରଖାସ୍ତ କଲେ।

ମହାଶୟ,

ଆପଣଙ୍କ ଅଫିସରେ ଗୋଟିଏ ଚାକିରି ଖାଲିଥିବା କଥା ମୁଁ ଜାଣିବାକୁ ପାଇଲି ଏବଂ ସେଥିପାଇଁ ମୁଁ ଦରଖାସ୍ତ କରିବାକୁ ଅନୁମତି ଭିକ୍ଷା କରୁଛି। ମୁଁ ମାଟ୍ରିକୁଲେସନ୍ ପାସ୍ କରିଛି ଏବଂ ଏଫ୍.ଏ. ପର୍ଯ୍ୟନ୍ତ ପଢ଼ିଛି। କିଛି ଅସୁବିଧାଜନକ ପରିସ୍ଥିତି ଯୋଗୁଁ ପାଠପଢ଼ାରେ ମୁଁ ଆଗେଇ ପାରିନାହିଁ। କିନ୍ତୁ ମୁଁ ଗଣିତ କାମରେ ମୋର ସବୁ ସମୟ କଟାଉଛି ଏବଂ ସେହି ବିଷୟର ବିକାଶ ଘଟାଉଛି। ମୁଁ କହିପାରେ ଯେ ନିଯୁକ୍ତି ପାଇଲେ ମୋର ଦାୟିତ୍ୱକୁ ମୁଁ ଠିକ୍ ଭାବରେ ତୁଲାଇ ପାରିବି ବୋଲି

ମୋର ଦୃଢ଼ ବିଶ୍ୱାସ ରହିଛି। ମୁଁ ତେଣୁ ବିନୀତ ପ୍ରାର୍ଥନା କରୁଛି ଯେ ଆପଣ ମହାନୁଭବତା ଦେଖାଇ ମତେ ଏହି ନିଯୁକ୍ତି ପ୍ରଦାନ କରିବେ।

ବିଦାୟ ନେବାର ଅନୁମତି ମୁଁ ଚାହୁଁଛି,
ମହାଶୟ,
ଆପଣଙ୍କର ଅତି ବିଶ୍ୱସ୍ତ ସେବକ,
ଏସ୍. ରାମାନୁଜନ୍

ରାମାନୁଜନ୍ଙ୍କ ଦରଖାସ୍ତ ସୁନ୍ଦର ପିଲାଳିଆ ହସ୍ତାକ୍ଷରରେ ଲେଖା ହୋଇଥିଲା। ସେହି ଇଂରାଜୀ ହସ୍ତାକ୍ଷରରେ କିଛି ବିଶେଷତା ନ ଥିଲା, କେବଳ ଛୋଟ t ର ଉପର ଗାର ତାକୁ ନ କାଟି ବେଶ୍ ଡାହାଣକୁ ରହୁଥିଲା। ପ୍ରେସିଡେନ୍ସି କଲେଜର ଗଣିତ ଅଧ୍ୟାପକ ଇ. ଡବ୍ଲିଉ. ମିଡଲ୍‌ମାଷ୍ଟ ଦେଇଥିବା ସୁପାରିଶ ପତ୍ରର ହାତଲେଖା ନକଲ ସେ ଦରଖାସ୍ତ ସହିତ ଯୋଡ଼ା ହୋଇଥିଲା। ସେଥିରେ ମିଡଲ୍‌ମାଷ୍ଟ ରାମାନୁଜନ୍‌ଙ୍କୁ "ଗଣିତ ବିଷୟରେ ଅତି ଅସାଧାରଣ ପ୍ରତିଭାସମ୍ପନ୍ନ ଯୁବକ" ଭାବରେ ବର୍ଣ୍ଣନା କରିଥିଲେ। ଏହି ଦରଖାସ୍ତ ଓ ସୁପାରିଶ ପତ୍ର ବୋଧହୁଏ ଔପଚାରିକ ଥିଲା, କାରଣ ରାମଚନ୍ଦ୍ର ରାଓଙ୍କ ପ୍ରଭାବରୁ ଚାକିରିଟି ତାଙ୍କ ପାଇଁ ନିର୍ଦ୍ଦିଷ୍ଟ ହୋଇସାରିଥିଲା।

୨ ଫେବୃଆରି 1912 ତାରିଖ ପଡ଼ିଥିବା ସେହି ଚିଠିରେ ରାମାନୁଜନ୍ଙ୍କ ଠିକଣା ଥିଲା 7, ସମର୍ ହାଉସ୍, ଟ୍ରିପ୍ଲିକେନ୍ ଏବଂ ତା'ର ପ୍ରାପକ ଥିଲେ ମାଡ୍ରାସ୍ ପୋର୍ଟ ଟ୍ରଷ୍ଟର ଚିଫ୍ ଆକାଉଣ୍ଟାଣ୍ଟ।

ଆରମ୍ଭରୁ ହିଁ ମାନ୍ଦ୍ରାଜ ଏକ ବାଣିଜ୍ୟକେନ୍ଦ୍ର ଓ ବନ୍ଦର ହୋଇଆସିଥିଲା। ସେହି ଉପକୂଳରେ କିନ୍ତୁ ସବୁବେଳେ ଶକ୍ତିଶାଳୀ ଲହଡ଼ି ଭାଙ୍ଗୁଥିଲା, ସାମୁଦ୍ରିକ ସ୍ରୋତ ବିପଦଜନକ ଥିଲା ଏବଂ ଅସ୍ୱାଭାବିକ ଭାବରେ ବାଲି ଗଦା ହେଉଥିଲା। ଏହି ସବୁ କାରଣରୁ ତାହା ପ୍ରାକୃତିକ ଭାବରେ ବନ୍ଦର ହେବାର ଉପଯୋଗୀ ନ ଥିଲା। ତେଣୁ ପଣ୍ୟବାହୀ ଜାହାଜଗୁଡ଼ିକ ତଟକୁ ଆସି ନ ପାରି କିଛି ଦୂରରେ ସମୁଦ୍ର ଭିତରେ ନଙ୍ଗର ପକାଉଥିଲେ। ସେଠାରେ ଚଟକା ତଳ ଥିବା ପଚିଶ ଫୁଟ ଲମ୍ବା ମାସୁଲା ଡଙ୍ଗାକୁ ଜିନିଷ ଓହ୍ଲାଯାଉଥିଲା ଏବଂ କୂଳକୁ ଅଣାଯାଉଥିଲା। ଏହା ବିପଦମୁକ୍ତ ନ ଥିଲା। କେବଳ ଅତି ଦକ୍ଷ ନୌଚାଳକମାନେ ଏହି କାମ କରୁଥିଲେ। ତଥାପି ଏଠାକୁ ଆସୁଥିବା ଜାହାଜମାନଙ୍କର କ୍ଷୟକ୍ଷତିର ଶତକଡ଼ା ନବେ ଭାଗ ସମୁଦ୍ରରୁ କୂଳ ଭିତରେ ଚଉଠ ମାଇଲର ବାଟରେ ହିଁ ଘଟୁଥିଲା।

ତଥାପି ସେଠାରେ ବନ୍ଦରଟି ଚାଲୁଥିଲା। 1796 ମସିହାରେ ସେଠାରେ ବସାଯାଇଥିବା ବତୀଘରଟିରେ ନଡ଼ିଆ ତେଲରେ ଆଲୁଅ ଜଳାଯାଉଥିଲା ଓ ତାହା ସମୁଦ୍ର ଭିତରକୁ ସତର ମାଇଲ ଯାଏଁ ଦେଖାଯାଉଥିଲା। 1861 ମସିହାରେ ସେଠାରେ ଏଗାର ଶହ ଫୁଟ ଲମ୍ବର ଏକ ତରଙ୍ଗ ନିରୋଧକ ବନ୍ଧ ସମୁଦ୍ର ଭିତରେ ତିଆରି କରାଗଲା ଏବଂ 1876 ମସିହାରେ ଏକ ଚାରିକୋଣିଆ କୃତ୍ରିମ ବନ୍ଦର ତିଆରି ଆରମ୍ଭ ହେଲା। ଏହାର ଲମ୍ବ ଥିଲା ବାରଶହ ଗଜ ଏବଂ ସେଥିରେ ଲାଗିଥିବା ସିମେଣ୍ଟ ଖଣ୍ଡଗୁଡ଼ିକର ମୋଟ ଓଜନ ଥିଲା ସତେଇଶି ଶହ ଟନ୍। ଏତେ ନୂଆ ବ୍ୟବସ୍ଥା ପରେ ମଧ୍ୟ ସେଠାର ପରିସ୍ଥିତି ବିଶେଷ ବଦଳିଲା ନାହିଁ। ଜିନିଷ ଓହ୍ଲାଇ କୂଳକୁ ଆଣିବାରେ ବିପଦ ଲାଗିରହିଲା ଏବଂ କ୍ଷୟକ୍ଷତିର ପରିମାଣ ବେଶ୍ ଅଧିକ ହେଉଥିଲା। ବନ୍ଦର ମୁହଁରେ ମଧ୍ୟ ଅତି ବେଗରେ ପଟୁ

ଜମିଚାଲିଲା, ଫଳରେ ଜାହାଜ ନଙ୍ଗର ପକାଉଥିବା ଜାଗା ପ୍ରତି ବର୍ଷ ପ୍ରାୟ ସତୁରି ଫୁଟ କରି କୂଳଠାରୁ ଦୂରେଇଯିବାକୁ ଲାଗିଲା।

ଇଂଲଣ୍ଡରୁ ମାନ୍ଦ୍ରାଜ ପ୍ରେସିଡେନ୍ସିକୁ ଆସୁଥିବା ଓ ସେଠାରୁ ଇଂଲଣ୍ଡ ଯାଉଥିବା ପଣ୍ୟଦ୍ରବ୍ୟର ଷାଠିଏ ଶତାଂଶରୁ ବେଶି ଏହି ବନ୍ଦର ବାଟରେ ନେବା ଆଣିବା କରାଯାଉଥିଲା। ପ୍ରତି ବର୍ଷ ଏଠାକୁ ପ୍ରାୟ ବାରଶହ ଜାହଜ ଆସୁଥିଲେ। ସେଥିରେ ଲୁହା, ରେଳ ଓ ଅନ୍ୟ ଯନ୍ତ୍ରପାତି ଆସୁଥିଲା ଏବଂ ଚମଡ଼ା, ନୀଳ ଓ ତୁଳା ଆଦି ଯାଉଥିଲା। କିନ୍ତୁ ସେଠାର ଅସୁବିଧା ସବୁ ଆଗ ଭଳି ରହିଥିଲା। ସମସ୍ୟା ସୁଧାରିବା ପାଇଁ 1904 ମସିହାରେ କିଛି ନୂଆ ଚେଷ୍ଟା ଆରମ୍ଭ କରାଗଲା ଓ ତା'ର ଦାୟିତ୍ୱରେ ସାର୍ ଫ୍ରାନ୍‌ସିସ୍ ସ୍ପ୍ରିଙ୍ଗ ରହିଲେ।

ସାର୍ ଫ୍ରାନ୍‌ସିସ୍ ଜଣେ ଚନ୍ଦା ମଣିଷ ଥିଲେ। ମୁହଁରେ ତାଙ୍କର ନିଦୁଆ ଆଖି, ଧଳା ନିଶ ଓ ଅଧା ଦାଢ଼ି ରହିଥିଲା। ଦକ୍ଷିଣ ଭାରତରେ ନିଜର ମଟର ଗାଡ଼ି ରଖିବାରେ ସେ ପ୍ରଥମ ଲୋକ ଥିଲେ। ଭାରତରେ ଏହା ତାଙ୍କ ପାଇଁ ଦ୍ୱିତୀୟ କାମ ଥିଲା। 1849 ମସିହାରେ ଆୟର୍ଲାଣ୍ଡରେ ସେ ଜନ୍ମ ହୋଇଥିଲେ ଏବଂ ଡବ୍‌ଲିନ୍‌ର ଟ୍ରିନିଟି କଲେଜରୁ ପଢ଼ା ଶେଷ କରି 1870 ମସିହାରେ ସେ ଭାରତ ସରକାରଙ୍କ ଇଞ୍ଜିନିଅରିଙ୍ଗ୍ ସେବାରେ ଯୋଗଦେଲେ। ଏହି ଦାୟିତ୍ୱରେ ରହି ସେ ତିରିଶ ବର୍ଷ ଭିତରେ ଦକ୍ଷିଣ ଭାରତୀୟ ରେଳପଥର ବିକାଶ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲେ। ତାଙ୍କର ବିଶେଷ କୃତି ଭିତରେ ଥିଲା ଗୋଦାବରୀ ନଦୀ ଉପରେ ଏକ ବିଶାଳ ରେଳ ସେତୁର ନିର୍ମାଣ। ସେଥିପାଇଁ ସେ 1911 ମସିହାରେ 'ନାଇଟ୍ କମାଣ୍ଡର ଅଫ୍ ଦି ଇଣ୍ଡିଆନ୍ ଏମ୍ପାୟାର୍' ବା ସାର୍ ଉପାଧି ପାଇଥିଲେ। 1904 ମସିହାରେ ସେ ପୋର୍ଟ ଟ୍ରଷ୍ଟକୁ ଆସିଥିଲେ ଓ ସାଥିରେ ସେ ଏସ୍. ନାରାୟଣ ଆୟାର୍‌ଙ୍କୁ ଆଣିଥିଲେ।

ନାରାୟଣ ଆୟାର ଇଞ୍ଜିନିଅରୀ ତାଲିମ ପାଇ ନ ଥିଲେ। ଇଂରେଜମାନେ ଭାରତୀୟମାନଙ୍କୁ ଭଲ କିରାଣି ହୋଇ ପ୍ରସାଶନିକ ବ୍ୟବସ୍ଥାକୁ ଚଳାଇବା ପାଇଁ ତାଲିମ ଦେଉଥିଲେ। କିନ୍ତୁ ସ୍ୱାଧୀନ ଭାବରେ କାମ କରିପାରିବା ଭଳି ବୈଷୟିକ ଶିକ୍ଷା ଦେଉ ନ ଥିଲେ। ନାରାୟଣ ଜଣେ ପଣ୍ଡିତଙ୍କ ପୁଅ ଥିଲେ ଏବଂ ତ୍ରିଚିନାପଲ୍ଲୀର ସେଣ୍ଟ ଜୋଷେଫ୍ କଲେଜରୁ ଏମ୍. ଏ. ପାସ୍ କଲାପରେ ସେଠାରେ ଜଣେ ଗଣିତ ଅଧ୍ୟାପକ ଭାବରେ ଯୋଗ ଦେଇଥିଲେ। ସେଠାରେ ସେ ସାର୍ ଫ୍ରାନ୍‌ସିସ୍‌ଙ୍କୁ ଭେଟିଥିଲେ। ପୋର୍ଟ ଟ୍ରଷ୍ଟରେ ସେ ପ୍ରଥମେ ଅଫିସ ପରିଚାଳକ ଓ ପରେ ମୁଖ୍ୟ ହିସାବରକ୍ଷକ ଭାବରେ ସବୁଠାରୁ ଉଚ୍ଚ ପଦବୀରେ ଥିବା ଭରତୀୟ ଥିଲେ। ସାର୍ ଫ୍ରାନ୍‌ସିସ୍ ତାଙ୍କ ଉପରେ ବିଶେଷ ଭାବରେ ନିର୍ଭର କରୁଥିଲେ।

ନାରାୟଣ ଆୟାର କେବେ ବି ପାଶ୍ଚାତ୍ୟ ପୋଷାକ ପିନ୍ଧୁ ନ ଥିଲେ। 1937 ମସିହାରେ ତାଙ୍କର ମୃତ୍ୟୁ ଯାଏଁ ସେ ଧୋତି ଓ ପଗଡ଼ି ପିନ୍ଧୁଥିଲେ, ଯାହା ତାଙ୍କ ବ୍ୟକ୍ତିତ୍ୱର ବଳ ରୂପେ ଦେଖାଯାଉଥିଲା। ଏହି ସମୟରେ କିନ୍ତୁ ପାଶ୍ଚାତ୍ୟ ଚଳଣିର ପ୍ରଭାବରେ ଭାରତୀୟଙ୍କ ପୋଷାକ ଆଦି ବଦଳି ଚାଲିଥିଲା। ପ୍ୟାଣ୍ଟ, କୋଟ୍, ଟାଇ ଓ ଜୋତା ପିନ୍ଧୁଥିବା ଭାରତୀୟଙ୍କୁ ଅନେକେ ଥଟ୍ଟା କରୁଥିଲେ। କିନ୍ତୁ ସାଧାରଣ ମତ ଏହା ସପକ୍ଷରେ ଢଳୁଥିଲା। 1890 ଦଶକରେ 'ହିନ୍ଦୁ' ଖବର କାଗଜର ଦିନକର ସମ୍ପାଦକୀୟରେ ଲେଖାଥିଲା, "ନିଃସନ୍ଦେହରେ ଏହା କୁହାଯାଇ ପାରିବ ଯେ

ୟୁରୋପୀୟଙ୍କ ପ୍ୟାଣ୍ଟ, କୋଟ ଓ ଜୋତା ପିନ୍ଧିଲେ ଜଣେ ଅଧିକ ବେଗରେ ଚାଲବୁଲ କରିପାରିବ। ପ୍ରାଚ୍ୟ ପୋଷାକ ଅବସର, ଆଳସ୍ୟ ଓ ଧୀର ଚାଲିର ଜୀବନ ପାଇଁ ଉପଯୋଗୀ। କିନ୍ତୁ ପାଶ୍ଚାତ୍ୟ ପୋଷାକ କ୍ରିୟାଶୀଳ ଓ ଆତ୍ମବିଶ୍ୱାସପୂର୍ଣ୍ଣ ଜୀବନର ପରିଚାୟକ।" 1910 ମସିହା ବେଳକୁ ଶିକ୍ଷିତ ଓ ଉପରକୁ ଉଠୁଥିବା ଭାରତୀୟମାନେ ଏହି ମତକୁ ଗ୍ରହଣ କରୁଥିଲେ। 1919 ମସିହାରେ ଭାରତୀୟ ଗଣିତ ସମାଜର ଅଧିବେଶନ ସମୟରେ ନିଆଯାଇଥିବା ଫଟୋରେ ରାମଚନ୍ଦ୍ର ରାଓ ଓ ଅଧାରୁ ବେଶି ଲୋକ ପାଶ୍ଚାତ୍ୟ ପୋଷାକ ପିନ୍ଧିଥିବାର ଦେଖାଯାଏ। ନାରାୟଣ ଆୟାର ମଧ୍ୟ ସେହି ଫଟୋରେ ଥିଲେ ଏବଂ ତାଙ୍କର ଧୋତି ପଗଡ଼ି ପିନ୍ଧି ସେ ତଳେ ପ୍ରଥମ ଧାଡ଼ିରେ ବସିଥିଲେ।

ନାରାୟଣ ଜଣେ ସଙ୍କୋଚ, ସଂଯତ, ମର୍ଯ୍ୟାଦାବାନ୍ ଓ କିଛି ମାତ୍ରାରେ କଠୋର ମଣିଷ ଥିଲେ ଯିଏ ଭାରତୀୟ ସ୍ୱାଧୀନତାକୁ ନୀରବରେ ସମର୍ଥନ କରୁଥିଲେ। ଦୁଇ ଡଜନ ଭାଇ, ଭଉଣୀ, ସମ୍ପର୍କୀୟ ଓ ଅନ୍ୟ ପରିଚିତ ଲୋକ ତାଙ୍କ ଉପରେ ନିର୍ଭର କରୁଥିଲେ। ସାହାଯ୍ୟ ପାଇଁ ଆସୁଥିବା ଲୋକଙ୍କୁ ସେ ନିରାଶ କରୁ ନ ଥିଲେ, ଯଦିଓ ସେ ବିଷୟରେ କାହାକୁ ଜଣାଇବା ସେ ପସନ୍ଦ କରୁ ନ ଥିଲେ। ଜଣେ ରକ୍ଷଣଶୀଳ ହିନ୍ଦୁ ବୋଲି ସେ ବାହାରୁ ମନେହେଉଥିଲେ, କିନ୍ତୁ ତାଙ୍କର ମନ ଉଦାର ଓ ସ୍ୱାଧୀନ ଥିଲା।

ଆସନ୍ତା କେଇ ବର୍ଷ ଧରି ଏହି ଦୁଇ ଜଣ - ସାର୍ ଫ୍ରାନ୍‌ସିସ୍ ସ୍ପ୍ରିଙ୍ଗ ଓ ନାରାୟଣ ଆୟାର - ରାମାନୁଜନ୍‌ଙ୍କ ଜୀବନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲେ। ଚାକିରି ପାଇଁ ଦରଖାସ୍ତ କରିବାର ତିନି ସପ୍ତାହ ପରେ, 1912 ମସିହା ମାର୍ଚ୍ଚ ମାସ ପହିଲାରେ, ରାମାନୁଜନ୍ ଜାଣିଲେ ଯେ ସେ ହେବେ ସେ ଦୁହିଁଙ୍କର ଜଣେ ଅଧସ୍ତନ କର୍ମଚାରୀ। ତାଙ୍କ ପଦବୀ ଥିଲା ତୃତୀୟ ଶ୍ରେଣୀର ଚତୁର୍ଥ ସ୍ତରର କିରାଣି ଯାହାଙ୍କର ମାସିକ ଦରମା ଥିଲା ତିରିଶ ଟଙ୍କା।

ଏହି ସବୁ ଘଟଣା ସମୟରେ ଜାନକୀ ତାଙ୍କ ସ୍ୱାମୀଙ୍କଠାରୁ ବହୁ ଦୂରରେ ଥିଲେ। ତାଙ୍କ ବାପଘର ରାଜେନ୍ଦ୍ରମ୍ ଓ ଶାଶୁଘର କୁମ୍ଭକୋଣମ୍ ଭିତରେ ସେ ଯିବା ଆସିବା କରି ଗୃହିଣୀ ହେବାର କଳା ଶିଖୁଥିଲେ। 1912 ମସିହା ଶେଷ ବେଳକୁ ସେ ଘରଯୋଗ୍ୟା ହୋଇସାରିଥିଲେ। ଏବେ ରାମାନୁଜନ୍ ସ୍ଥିର ଚାକିରିରେ ରହିବା ପରେ ସେମାନେ ପ୍ରକୃତ ଦମ୍ପତି ହେବାର ସୁଯୋଗ ପାଇଲେ।

ରାମାନୁଜନ୍‌ଙ୍କ ନୂଆ ପୋର୍ଟ ଟ୍ରଷ୍ଟ ଅଫିସ୍‌ଠାରୁ ଟ୍ରିପ୍ଲିକେନ୍‌ରେ ଥିବା ସମର୍ ହାଉସ୍ ପ୍ରାୟ ତିନି ମାଇଲ୍ ଥିଲା। ତେଣୁ ଚାକିରିରେ ଯୋଗଦେବାର କିଛିଦିନ ପରେ ସେ ପାଖରେ ଥିବା ଆଈଙ୍କ ଘରକୁ ଚାଲିଆସିଲେ। ଜର୍ଜ ଟାଉନର ବ୍ରଡ୍‌ୱେ ପାଖରେ ଥିବା ଶୈବ ମୁଥେୟା ମୁଦଲି ମାର୍ଗରେ ତାହା ଛୋଟିଆ ଘରଟିଏ ଥିଲା। ବାହାଘରର ତିନି ବର୍ଷ ପରେ ଏହି ଘରକୁ ଜାନକୀ ଓ ରାମାନୁଜନ୍‌ଙ୍କ ମା କୋମଲତାମ୍ମାଲ୍ ଆସିଲେ।

ଜର୍ଜ ଟାଉନର ମୂଳ ନାଁ ଥିଲା 'ବ୍ଲାକ୍ ଟାଉନ' ବା 'କଳାଙ୍କ ସହର'। ଏହା ଥିଲା ସ୍ଥାନୀୟ ଭାରତୀୟ ବା 'କଳା'ଙ୍କ ରହିବା ଅଞ୍ଚଳ। ଗଡ଼ ଭିତରେ ୟୁରୋପୀୟ ଲୋକଙ୍କ ରହିବା ଅଞ୍ଚଳ 'ହ୍ୱାଇଟ୍ ଟାଉନ' ବା ଗୋରା ସହର ନାଁରେ ଜଣାଥିଲା। ବ୍ଲାକ୍ ଟାଉନର କ୍ଷେତ୍ରଫଳ ସହରର ମୋଟ କ୍ଷେତ୍ରଫଳର ନଅ ଶତାଂଶ ଥିଲା, କିନ୍ତୁ ଏଠାରେ ମୋଟ ଲୋକସଂଖ୍ୟାର ପ୍ରାୟ ଏକତୃତୀୟାଂଶ

ରହୁଥିଲେ। ମଣିଷଙ୍କ ଗହଳି ସାଙ୍ଗକୁ ଏଠାର ରାସ୍ତାରେ ଗାଈଗୋରୁ ଆଦିଙ୍କ ବୁଲାଚଲା ଚାଲିଥାଏ। ବେପାରୀମାନେ ରାସ୍ତା ଉପରକୁ ମାଡ଼ି ଆସିଥା'ନ୍ତି। ଧୂଳିଭରା ରାସ୍ତାରେ ବଳଦ ଓ ମଣିଷ କାନ୍ଧରେ ଏବଂ ବଳଦ ବା ହାତଟଣା ଗାଡ଼ିରେ ଦୋକାନୀଙ୍କ ବୋଝ ବୁହା ଚାଲିଥାଏ। 1906 ମସିହାରେ ୱେଲ୍ସ୍ ରାଜକୁମାର, ଭବିଷ୍ୟତର ରାଜା ପଞ୍ଚମ ଜର୍ଜ, ମାନ୍ଦ୍ରାଜ ଆସିଥିଲେ। ତା'ର ସ୍ମାରକୀ ରୂପେ ବ୍ଲାକ୍ ଟାଉନ୍‌ର ନାଁ ବଦଳି ଜର୍ଜ ଟାଉନ୍ ରଖାଗଲା।

ମାସକୁ ତିନି ଟଙ୍କା ଭଡ଼ାର ଛୋଟିଆ ଘରଟିରେ ସେମାନେ ସମସ୍ତେ ଖୁନ୍ଦାଖୁନ୍ଦି ହୋଇ ରହୁଥିଲେ। ସେଠାରେ ତେଣୁ ରାମାନୁଜନ୍ ଓ ଜାନକୀ ଏକାହୋଇ ବେଶି ସମୟ କଟାଇବାର ସୁଯୋଗ ନ ଥିଲା।

ରାମଚନ୍ଦ୍ର ରାଓ କହୁଥିଲେ ଯେ ସେ ରାମାନୁଜନ୍‌ଙ୍କ ପାଇଁ ଅଳ୍ପ ପରିଶ୍ରମର ଏହି ସମ୍ମାନଜନକ ଚାକିରି ଖୋଜି ଦେଇଥିଲେ। ପ୍ରଥମରୁ ସେ ଏହା ଜାଣିଥିଲେ କି ନାହିଁ ତାହା ଅବଶ୍ୟ ସନ୍ଦେହର କଥା। ପରିଶ୍ରମ ବିଶେଷ ନ ଥିଲେ ବି ଅଫିସରେ ଏତେ ଘଣ୍ଟା ରହିବା ଯୋଗୁଁ ରାମାନୁଜନ୍‌ଙ୍କ ପାଇଁ ସମୟର ଅଭାବ ପଡ଼ିଲା। ତାଙ୍କର ସାଙ୍ଗମାନେ ଅନେକ ସମୟରେ ତାଙ୍କୁ ଦୌଡ଼ି ଦୌଡ଼ି ଅଫିସ୍ ଯାଉଥିବାର ଦେଖନ୍ତି। ସେତେବେଳେ ତାଙ୍କ ବେଶ ପୋଷାକ ଅସ୍ତବ୍ୟସ୍ତ ହୋଇଯାଇଥାଏ। ରାମାନୁଜନ୍‌ଙ୍କ ପାଖରେ ନଷ୍ଟ କରିବା ପାଇଁ ସମୟ ନ ଥାଏ, ସେ ସବୁବେଳେ ତରତର ଅବସ୍ଥାରେ ଥା'ନ୍ତି।

ଜାନକୀ କହନ୍ତି ଯେ ଅଫିସ୍ ଯିବା ଆଗରୁ ସେ ଗଣିତ କାମ କରୁଥା'ନ୍ତି, ଫେରିଲେ ପୁଣି ସେଥିରେ ବସିଯା'ନ୍ତି। ବେଳେ ବେଳେ ସେ ରାତିସାରା କାମରେ ଲାଗନ୍ତି, ସକାଳ ଛ'ଟାରେ ଶୋଇବାକୁ ଯାଆନ୍ତି ଓ ଦୁଇ ତିନିଘଣ୍ଟାରେ ଉଠି ଅଫିସ୍ ଦୌଡ଼ନ୍ତି। ଅଫିସରେ ହିସାବ ମିଳାଇବା ତାଙ୍କର କାମ ଥିଲା। ତାହା ବେଶି କଷ୍ଟକର ବା ସମୟସାପେକ୍ଷ ନ ଥିଲା। ଅଳ୍ପଦିନ ପରେ ସେ ଅଫିସରେ ଗଣିତ କାମ କରିବା ଆରମ୍ଭ କଲେ। ଉଭୟ ନାରାୟଣ ଆୟାର ଓ ସାର୍ ଫ୍ରାନ୍ସିସ୍ ଏହାର ବିରୋଧ କରୁ ନ ଥିଲେ, ହୁଏତ ଉତ୍ସାହିତ ବି କରୁଥିଲେ।

ଦିନେ ଅଫିସ ସମୟରେ ଜଣେ ସାଙ୍ଗ ତାଙ୍କୁ ବନ୍ଦର ଅଞ୍ଚଳରେ ବୁଲୁଥିବାର ଦେଖିଲେ। ଗଣିତ କରିବା ପାଇଁ ସେଠାରେ ସେ ଜିନିଷ ଗୁଡ଼ିଆ ହୋଇ ଆସିଥିବା କାଗଜ ଖୋଜୁଥିଲେ। ଆଉଥରେ ସାର୍ ଫ୍ରାନ୍ସିସ୍ ନାରାୟଣଙ୍କୁ ଡାକି ତାଗିଦ କଲେ କିପରି କିଛି ଗଣିତ ଲେଖା କାଗଜ ତାଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଫାଇଲରେ ପଶିଲା। ନାରାୟଣ କ'ଣ ଅଫିସରେ ଗଣିତ କାମରେ ଲାଗିଛନ୍ତି? ନାରାୟଣ ନିଜକୁ ନିର୍ଦୋଷ ବୋଲି କହିଲେ ଏବଂ ହସ୍ତାକ୍ଷର ତାଙ୍କର ହୋଇ ନ ଥିବାର ଜଣାଇଲେ। ହୁଏତ ରାମାନୁଜନ୍‌ଙ୍କର କିଛି କାଗଜ ସେଥିରେ ମିଶିଯାଇଛି। ଏଥର ସାର୍ ଫ୍ରାନ୍ସିସ୍ ହସିଲେ, ସେ ମୂଳରୁ ଜାଣିଥିଲେ ଯେ ତାହା ରାମାନୁଜନ୍‌ଙ୍କ କାଗଜ ହିଁ ଥିଲା।

ନାରାୟଣ ଗଣିତ ସମାଜର ଜଣେ ସଦସ୍ୟ ଓ କୋଷାଧ୍ୟକ୍ଷ ଥିଲେ। ତେଣୁ ସେ ରାମାନୁଜନ୍‌ଙ୍କ ଉପରିସ୍ଥ ଅଧିକାରୀ ହେବା ସହିତ ଗଣିତ କ୍ଷେତ୍ରରେ ତାଙ୍କର ସହକର୍ମୀ ମଧ୍ୟ ଥିଲେ। ସନ୍ଧ୍ୟାବେଳେ ସେମାନେ ନାରାୟଣଙ୍କ ଉପର ମହଲାର ଖୋଲା ବାରଣ୍ଡାରେ ବସି ସିଲଟରେ ବିଭିନ୍ନ ଗଣିତ ସମସ୍ୟାର ସମାଧାନ କରିବାରେ ଲାଗନ୍ତି। ବେଳେ ବେଳେ ରାତି ଅଧ ଯାଏଁ ସେମାନେ ଏହି

କାମରେ ଲାଗନ୍ତି ଓ ତାଙ୍କ ସିଲଟରେ ଖଡ଼ି ରମ୍ପା ଶବ୍ଦରେ ଅନ୍ୟମାନେ ଶୋଇପାରନ୍ତିନାହିଁ। ରାତିରେ ରାମାନୁଜନ୍ ବେଳେ ବେଳେ ନିଦରୁ ଉଠି ମିଞ୍ଜି ମିଞ୍ଜି ଲଣ୍ଠଣ ଆଲୁଅରେ କିଛି ଲେଖନ୍ତି। ପରେ ସେ ବୁଝାନ୍ତି ଯେ ସେ ତାହା ସ୍ୱପ୍ନରେ ଦେଖିବାକୁ ପାଇଲେ।

ନାରାୟଣ ଆୟାରଙ୍କର ଗଣିତ ଦକ୍ଷତା କିଛି କମ୍ ନ ଥିଲା। କିନ୍ତୁ ସମସ୍ୟା ସମାଧାନର ଅନେକଗୁଡ଼ିଏ ପାଦକୁ ରାମାନୁଜନ୍ ଯେତେବେଳେ ଗୋଟିକରେ ଦେଖାଇ ଦିଅନ୍ତି ତାହା ବୁଝିବା ତାଙ୍କ ପାଇଁ କଷ୍ଟକର ହୋଇପଡ଼େ। ନାରାୟଣ ରାମାନୁଜନ୍‌ଙ୍କୁ ବୁଝାନ୍ତି ଯେ ଏପରି କଲେ ଅନ୍ୟମାନେ ତାଙ୍କ କାମକୁ ବୁଝିପାରିବେନାହିଁ, ତେଣୁ ଗ୍ରହଣ କରିବେନାହିଁ। "ତମକୁ ମୋ ସ୍ତରକୁ ଓହ୍ଲାଇ ଆସିବାକୁ ହେବ ଏବଂ ସେହି ଦୁଇ ପାଦ ଭିତରେ ଆଉ ଦଶଟି ପାଦ ଲେଖିବାକୁ ହେବ", ନାରାୟଣ କହନ୍ତି। ରାମାନୁଜନ୍ ଓଲଟା ପଚାରନ୍ତି ଯେ ତାହା କ'ଣ ସତରେ ଦରକାର, ଧାରାଟା କ'ଣ ଆପେ ଆପେ ବୁଝାପଡୁନାହିଁ? ତାହା ଯେ ଆପେ ଆପେ ବୁଝାପଡୁନାହିଁ ସେକଥା ନାରାୟଣ ଧୈର୍ଯ୍ୟ ସହକାରେ ବୁଝାନ୍ତି। ଅନେକ କେଞ୍ଚିଲା ପରେ ରାମାନୁଜନ୍ କେବେ କେବେ ନିଜ ଚିନ୍ତାକୁ ଟିକିଏ ବିସ୍ତାରିତ କରିବେ, ଦରକାର ଥିବା ଅଧିକ ଦଶଟି ଜାଗାରେ ହୁଏତ ଚାରିଟି ପାଦ ଯୋଡ଼ିଦେବେ।

ଅଳ୍ପଦିନ ଭିତରେ ନାରାୟଣ ଆୟାର ରାମାନୁଜନ୍‌ଙ୍କ ଉପରିସ୍ଥ ଅଧିକାରୀ ଓ ସହକର୍ମୀ ହୋଇ ରହିଲେନାହିଁ। ଏବେ ସେ ରାମାନୁଜନ୍‌ଙ୍କ ଉପଦେଷ୍ଟା, ପଥପ୍ରଦର୍ଶକ ଓ ସାଥୀ ପାଲଟି ଗଲେ। ସେ କହୁଥିଲେ ଯେ କେହି କେହି ରାମାନୁଜନ୍‌ଙ୍କୁ ସାଧାରଣ କାଚ ଭଳି ଦେଖନ୍ତି, କିନ୍ତୁ ସେମାନେ ଦିନେ ଦେଖିବେ ଯେ ରାମାନୁଜନ୍ ହେଉଛନ୍ତି ଅସଲି ହୀରା। ନାରାୟଣ ତାଙ୍କର ଏହି ମତ ବିଷୟରେ ସାର୍ ଫ୍ରାନ୍‌ସିସ୍‌ଙ୍କର ବିଶ୍ୱାସ ଜନ୍ମାଇ ପାରିଲେ ଏବଂ ସାର୍ ଫ୍ରାନ୍‌ସିସ୍ ମଧ୍ୟ ରାମାନୁଜନ୍‌ଙ୍କର ଦୃଢ଼ ସମର୍ଥକ ପାଲଟି ଗଲେ।

1912 ମସିହାର ମଝିବେଳକୁ ସାର୍ ଫ୍ରାନ୍‌ସିସ୍‌ଙ୍କ ଦୃଷ୍ଟିକୁ ଆସିବା ଫଳରେ ରାମାନୁଜନ୍‌ଙ୍କୁ ଅନ୍ୟ ଇଂରେଜମାନେ ଜାଣିଲେ। ଏପର୍ଯ୍ୟନ୍ତ ସେ କେବଳ ଭାରତୀୟଙ୍କ ମେଳରେ ବଢ଼ି ଆସିଥିଲେ ଏବଂ ଇଂରେଜମାନଙ୍କ ସହିତ ତାଙ୍କର କିଛି ଯୋଗାଯୋଗ ନ ଥିଲା କହିଲେ ଚଳେ। ଏବେ ତାହା ବଦଳିବାର ସମୟ ଆସିଗଲା।

### 6. ଇଂରେଜ ଶାସନ

ମାନ୍ଦ୍ରାଜ ପ୍ରେସିଡେନ୍‌ସିର ପଶ୍ଚିମକୁ ନୀଳଗିରି ପର୍ବତମାଳାର ବେଶ୍ ଉଚ୍ଚ ଅଞ୍ଚଳରେ ଉତକାମଣ୍ଡ ବା ଉଟି ଅବସ୍ଥିତ। ଭାରତର ଗରମ ସହିବାରେ ଅଭ୍ୟସ୍ତ ନ ଥିବା ଇଂରେଜମାନେ ଖରାଦିନେ ଉଟିର ଥଣ୍ଡାରେ ଆଶ୍ରୟ ନେଉଥିଲେ। ନୀଳଗିରିର ଆରପଟେ ଥିଲା ମାଲାବାର ଉପକୂଳ ଯାହାର ଘଞ୍ଚ ଜଙ୍ଗଲ ଏବଂ ଗୋଲମରିଚ ଓ ଜାଇଫଳ ଭଳି ମସଲା ଉପରେ ଇଂରେଜମାନଙ୍କ ଆଖି ଆଗ ପଡ଼ିଥିଲା। ତା ପାଖରେ ଥିବା ମହୀଶୂର ରାଜ୍ୟ ଚନ୍ଦନ ଓ କଷି ଭଳି ମୂଲ୍ୟବାନ କାଠ ଏବଂ ଇଂରେଜମାନଙ୍କୁ କାହାଣୀ ଛଳରେ ବିମୋହିତ କରି ରଖିଥିବା ହାତୀ ବାଘ ଭଳି ଜନ୍ତୁମାନେ ମଧ୍ୟ ରହିଥିଲେ।

1600 ଖ୍ରୀଷ୍ଟାବ୍ଦରେ ଇଷ୍ଟ ଇଣ୍ଡିଆ କମ୍ପାନୀ ଗଢ଼ାହେବା ଦିନରୁ ଇଂରେଜମାନେ ଭାରତରେ ରହିଥିଲେ। ଭାରତ ଉପରେ ତାଙ୍କର ଅଖଣ୍ଡ ଅଧିକାର ଜାହିର କରିବା ପାଇଁ ଇଂରେଜମାନେ

ଦୁଇଶହ ବର୍ଷ ଧରି ଫ୍ରାନ୍ସ୍, ହଲାଣ୍ଡ ଓ ପର୍ତ୍ତୁଗାଲର ଲୋକମାନଙ୍କ ସହିତ ଏବଂ ଭାରତୀୟ ରାଜାମାନଙ୍କ ସହିତ ଲଢ଼େଇ କଲେ। ଇଂରେଜ ଶାସକମାନଙ୍କ ବିରୋଧରେ 1857 ମସିହାରେ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ, ଇଂରେଜମାନେ ଯାହାକୁ ସିପାହୀ ବିଦ୍ରୋହ କହୁଥିଲେ, ମୁଣ୍ଡ ଟେକିଥିଲା। ଏହାର ପଚାଶ ବର୍ଷରୁ ବେଶି ସମୟ ପରେ ଗତବର୍ଷ ରାଜା ଜର୍ଜ ବମ୍ବେଠାରେ ତାଙ୍କ ସମ୍ମାନରେ ଗଢ଼ାଯାଇଥିବା ଗେଟ୍‌ୱେ ଅଫ୍ ଇଣ୍ଡିଆ ବା ଭାରତର ପ୍ରବେଶ ତୋରଣ ବାଟେ ଆସି ଭାରତ ମାଟି ଛୁଇଁଥିଲେ। ସେଠାରୁ ସେ ନବନିର୍ମିତ ରାଜଧାନୀ ଦିଲ୍ଲୀ ଯାଇ ସିଂହାସନ ଆରୋହଣ କରିଥିଲେ। ଇଂରେଜଙ୍କ ବିନା ଭାରତର କଳ୍ପନା ଥିଲା ଭାଇସରାଏ ଲର୍ଡ କର୍ଜନଙ୍କ ଭାଷାରେ, "ଆମ ବିଶ୍ୱାସ ପ୍ରତି ବିଶ୍ୱାସଘାତକତା।" କେହି ଭାବୁ ନ ଥିଲେ ଯେ ସେସମୟର ଗୋରା ଶାସକମାନଙ୍କର ଦିନ ସରିଆସୁଛି ଏବଂ 1947 ମସିହାରେ ଭାରତ ସ୍ୱାଧୀନ ହୋଇଯିବ।

ଇଂରେଜ ଶାସନର ଚମତ୍କାରିତା ଥିଲା ଏହା ଯେ ଏହାକୁ ଖୁବ୍ କମ୍ ଲୋକ ଚଳାଉଥିଲେ। ଭାରତୀୟ ପ୍ରଶାସନିକ ସେବା, ଅତି ପ୍ରସିଦ୍ଧ ଆଇ.ସି.ଏସ୍., ମାତ୍ର ହଜାରେ ପାଖାପାଖି ଲୋକଙ୍କୁ ନେଇ ଚାଲୁଥିଲା। ପ୍ରଶାସନର ଏହି ସ୍ନାୟୁକେନ୍ଦ୍ର ଭାରତୀୟ କିରାଣି, ଇଂରେଜ ଇଞ୍ଜିନିଅର୍ ଓ ଡାକ୍ତର ଏବଂ ପୋଲିସ ଆଦି ବିଭାଗକୁ ଚଳାଉଥିଲା। ଭାଇସରାୟ ଓ ପ୍ରେସିଡେନ୍‌ସିଗୁଡ଼ିକର ଗଭର୍ନରମାନେ ଆଇ.ସି.ଏସ୍. ସଦସ୍ୟ ନ ଥିଲେ, କିନ୍ତୁ ଅନ୍ୟ ସବୁ କ୍ଷମତାଧାରୀ ଲୋକ ତାହା ଥିଲେ। ଆଇ.ସି.ଏସ୍. ଆରମ୍ଭ ହୋଇଥିଲା ଇଷ୍ଟ ଇଣ୍ଡିଆ କମ୍ପାନିର ବ୍ୟାବସାୟିକ ପ୍ରତିନିଧିଙ୍କ ଭିତରୁ। ପରୀକ୍ଷା ମାଧ୍ୟମରେ ପଶିବା ପାଇଁ 1853 ମସିହାରେ ଭାରତୀୟଙ୍କ ପାଇଁ ତା'ର ଦ୍ୱାର ଖୋଲିଲା। କିନ୍ତୁ କେବଳ କେଇ ଡଜନ ଭାରତୀୟ ଏଥିରେ ସ୍ଥାନ ପାଉଥିଲେ ଏବଂ ତାଙ୍କର ଦରମା ଇଂରେଜଙ୍କ ଦରମାର ଦୁଇତୃତୀୟାଂଶ ହେଉଥିଲା।

ବର୍ତ୍ତମାନର ପ୍ରଶାସନିକ ଅପାରଗତା ପାଇଁ ପ୍ରଶାସନିକ ସେବାକୁ ସାଧାରଣ ଭାବରେ ଦାୟୀ କରାଯାଏ। କିନ୍ତୁ ଆଗରୁ ଏହି ସେବାକୁ ଉଚ୍ଚ ବର୍ଗର ଓ ବୌଦ୍ଧିକ ମାନସିକତାର ସର୍ବୋତ୍କୃଷ୍ଟ ଇଂରେଜମାନେ ଆସୁଥିଲେ। ସେମାନେ ସବୁଠାରୁ ଭଲ ଅନୁଷ୍ଠାନମାନଙ୍କରେ ପାଠ ପଢ଼ିଥିଲେ ଏବଂ କଷ୍ଟକର ପରୀକ୍ଷା ମାଧ୍ୟମରେ ବଛା ହେଉଥିଲେ। ଅବସର ସମୟରେ ସେମାନେ ସଂସ୍କୃତ ବହିର ଅନୁବାଦ କରୁଥିଲେ, ମନ୍ଦିରର ଶିଳାଲେଖର ବ୍ୟାଖ୍ୟା କରୁଥିଲେ, ବ୍ୟାକରଣ ବହି ବା ଅଭିଧାନ ଲେଖୁଥିଲେ।

କୁହାଯାଏ ଯେ ସେମାନେ ନିଜ ନିଜକୁ ପ୍ଲାଟୋଙ୍କ ବର୍ଣ୍ଣିତ ଆଦର୍ଶ ଶାସକ ଭାବରେ ଦେଖିବାକୁ ଭଲ ପାଉଥିଲେ। କୁଳୀନ ମୂଲ୍ୟବୋଧ, ଦାୟିତ୍ୱବୋଧ, ବିଶ୍ୱସନୀୟତା ଆଦି ଗୁଣ ଭିତରେ ବଢ଼ିଥିବା ଏହି ପ୍ରଶାସକମାନେ ନିଷ୍ଠା ଓ ନିରପେକ୍ଷତା ପାଇଁ ଜଣାଥିଲେ। କିନ୍ତୁ ସେମାନଙ୍କ ଚରିତ୍ରର ଆଉ ଗୋଟିଏ ଦିଗ ମଧ୍ୟ ରହିଥିଲା। ତାହା ଥିଲା ସେମାନେ ଦେଖାଉଥିବା ଅତ୍ୟଧିକ ଆତ୍ମସନ୍ତୋଷ ଏବଂ ନୈତିକ ବଡ଼ପଣିଆ।

ଜିଲ୍ଲା ସ୍ତରରେ କଲେକ୍ଟର ଥିଲେ ସରକାରଙ୍କର ପ୍ରତିନିଧି। ତାଙ୍କର କ୍ଷମତା ଥିଲା ପ୍ରାୟ ଅସୀମ। କିନ୍ତୁ କଲେକ୍ଟର ଓ ତାଙ୍କ ଇଂରେଜ କର୍ମଚାରୀମାନେ ସ୍ଥାନୀୟ ଭାଷା ପ୍ରାୟ ଜାଣୁ ନ ଥିଲେ। ସ୍ଥାନୀୟ ଲୋକମାନେ ତାଙ୍କୁ ଡରୁଥିଲେ, ଆଦର କରୁ ନ ଥିଲେ। କେତେ ଦୃଷ୍ଟିରେ, ବିଶେଷ କରି

ସ୍ଥାନୀୟ ଲୋକଙ୍କ ଦୃଷ୍ଟିରେ, ସେମାନେ ଥିଲେ ଅବୋଧ, ଅପହଞ୍ଚ, ସ୍ୱାର୍ଥପର, ଉଦ୍ଧତ, ଅପ୍ରତିହତ...।

ଭାରତରେ ଇଂରେଜ ଶାସନର ମୂଳମନ୍ତ୍ର ଥିଲା 'ଦୂରତା'। ଏହାର ପ୍ରତିଫଳନ ଦେଖାଯାଏ ସେଣ୍ଟ ଜର୍ଜ ଗଡ଼ରେ ଥିବା କିଛି ଚିତ୍ରପଟରୁ। ଗୋଟିଏ ଚିତ୍ରରେ ରହିଛି ଭାରତୀୟମାନେ ତଳେ ଛିଡ଼ାହୋଇ ସାପଖେଳ ଦେଖୁଥିବାବେଳେ କିଛି ଇଂରେଜ ଲୋକ କୋଠା ଉପରେ ବାରଣ୍ଡାରେ ଆରାମରେ ବସି ତାହା ଦେଖୁଛନ୍ତି। ଅନ୍ୟ ଚିତ୍ରଗୁଡ଼ିକରେ ଭାରତୀୟମାନେ ଖରାରେ ଖଟୁଥିବା ବେଳେ ଇଂରେଜମାନେ ଆରାମରେ ତାହା ଦେଖୁଥିବାର ଦୃଶ୍ୟ ରହିଛି।

ମାତ୍ର କେତେ ଟଙ୍କା ଦରମାରେ ଇଂରେଜମାନେ ଏକାଧିକ ଭାରତୀୟ ସେବାକାରୀଙ୍କୁ ଖଟାଉଥିଲେ। ଦିନରାତି ସବୁବେଳେ ସେମାନେ ପାଖରେ ରହି ସବୁ ପ୍ରକାରର କାମ କରୁଥିଲେ। କୁହାଯାଏ ଯେ ଭାରତରେ କିଛିବର୍ଷ ରହିଗଲା ପରେ ଜଣେ ଇଂରେଜ ତା'ର ଲୁଗାପଟା ଭାଙ୍ଗିକରି ରଖିବା କାମ ବି ଭୁଲିଯାଏ। ଭାରତରେ ରହଣି ଶେଷରେ ଇଂଲଣ୍ଡ ଫେରିବା ବେଳେ ଜାହାଜରେ ଗୋରା ଲୋକମାନେ ଚା ଆଣିଦେବା ଓ ଅନ୍ୟ କାମ କରୁଥିବା ଦେଖି ସେ ଚମକି ପଡ଼େ। ଭାରତୀୟ ଓ ଇଂରେଜଙ୍କ ଭିତରେ ଦୂରତା ଯେ କେବେ ଉଭେଇ ଯିବନାହିଁ ସେ ବିଷୟରେ ସମସ୍ତେ ସଚେତନ ଥିଲେ। ଲେଖକ କିପ୍‌ଲିଙ୍ଗ୍ କହିଥିଲେ, "ପ୍ରାଚ୍ୟ ହେଉଛି ପ୍ରାଚ୍ୟ, ପାଶ୍ଚାତ୍ୟ ପାଶ୍ଚାତ୍ୟ; ଦୁହେଁ କେବେ ଭେଟିବେନାହିଁ।"

ଇଂରେଜଙ୍କ ସହ ମିଶିବାକୁ ଗଲାବେଳେ ରାମାନୁଜନ୍‌ଙ୍କ ଆଗରେ ଏହି ବିଶାଳ ଖାଇ ରହିଥିଲା। ତାଙ୍କର ପିଲାଦିନ କଟିଥିଲା ରାଣୀ ଭିକ୍ଟୋରିଆଙ୍କ ଅମଳରେ, ଏବେ ତାଙ୍କ ପକେଟରେ ଥିଲା 'ରାଜା ଓ ସମ୍ରାଟ' ସପ୍ତମ ଏଡ୍‌ୱାର୍ଡଙ୍କ ଛବି ଥିବା ମୁଦ୍ରା। ସ୍କୁଲରେ ସେ ପାଇଥିବା ପୁରସ୍କାର ସବୁ ଇଂରେଜ ଲେଖକମାନଙ୍କର ବହି ଥିଲା ଏବଂ କାହାର ବିଷୟବସ୍ତୁ ଭାରତୀୟ ନ ଥିଲା। କୁମ୍ଭକୋଣମ୍ କଲେଜର ନୂଆ ଛାତ୍ରାବାସ ପାଇଁ ପାଣ୍ଠି ସଂଗ୍ରହ ରାଣୀ ଭିକ୍ଟୋରିଆଙ୍କ ନାଁରେ କରାଯାଇଥିଲା, କୌଣସି ଜଣାଶୁଣା ଭାରତୀୟଙ୍କ ନାଁରେ ନୁହେଁ।

ଏସବୁ ସତ୍ତ୍ୱେ ରାମାନୁଜନ୍‌ଙ୍କ ମନରେ ଇଂଲଣ୍ଡ ବା ଇଂରେଜ ଲୋକଙ୍କ ବିଷୟରେ କିଛି ନିର୍ଦ୍ଦିଷ୍ଟ ଧାରଣା ନ ଥିଲା। ଏବେ କିନ୍ତୁ ସେ ପରିସ୍ଥିତି ବଦଳିବାକୁ ଲାଗିଲା। ନାରାୟଣ ତାଙ୍କୁ ଖ୍ରୀଷ୍ଟିଆନ୍ କଲେଜର ଇ. ବି. ରସ୍‌ଙ୍କ ସହିତ ଚିହ୍ନା କରାଇଥିଲେ। ରାମାନୁଜନ୍ ପ୍ରେସିଡେନ୍‌ସି କଲେଜର ଇ. ଡବ୍‌ଲିଉ. ମିଡଲ୍‌ମାଷ୍ଟଙ୍କୁ ଭେଟିଥିଲେ ଓ ତାଙ୍କଠାରୁ ସୁପାରିଶ ପତ୍ର ଆଣିଥିଲେ। ଅଫିସରେ ସାର୍ ଫ୍ରାନ୍‌ସିସ୍ ତାଙ୍କର ବେଶ୍ ପରିଚିତ। ଅଳ୍ପଦିନ ଭିତରେ ସେ ସ୍ପ୍ରିଙ୍ଗଙ୍କ ସାଙ୍ଗମାନଙ୍କୁ ଭେଟିବାକୁ ଯାଉଥିଲେ।

ଭାରତୀୟଙ୍କ ପ୍ରତି ଇଂରେଜଙ୍କ ମତ ଯେତେ ଅବିଚାରିତ ଥିଲେ ବି ରାମାନୁଜନ୍‌ଙ୍କ ମେଧା ବିଷୟରେ ସେମାନେ ପ୍ରଶ୍ନ କରୁ ନ ଥିଲେ। ଭାରତୀୟମାନଙ୍କ ବିଷୟରେ ଜଣେ ଇଂରେଜ ଲୋକଙ୍କର ମତ ଥିଲା, "ସେମାନେ ଅତି ଚାଲାକ ଥିଲେ ଓ ଯୁକ୍ତିତର୍କରେ ପଛାଇବା ଲୋକ ନ ଥିଲେ। ଉପଯୁକ୍ତ ଶିକ୍ଷା ପାଇଲେ ତାଙ୍କର ଧୀଶକ୍ତି ଆହୁରି ବିକଶିତ ହୋଇପାରିବ।... ଭାରତ ସରକାରଙ୍କ ଚାକିରି ପାଇଁ ଯଦି ଭାରତରେ ପରୀକ୍ଷା ମାଧ୍ୟମରେ ବଛାବଛି ହେଉଥା'ନ୍ତା, ତେବେ ବଙ୍ଗାଳୀ ବାବୁ ଓ ମରାଠା ବ୍ରାହ୍ମଣମାନେ ସେଗୁଡ଼ିକୁ ମାଡ଼ି ବସୁଥା'ନ୍ତେ।"

ଇଂରେଜମାନଙ୍କର ଏଭଳି ମତ କିନ୍ତୁ ଅକୁଣ୍ଠିତ ନ ଥିଲା। ଭାରତରେ ଅନେକ ବର୍ଷ ଧରି ବଗିଚା ଫସଲ ଉଠାଉଥିବା ହର୍ବର୍ଟ କମ୍ପଟନ୍ 1904 ମସିହାରେ ପ୍ରକାଶିତ ତାଙ୍କ ବହିରେ ଲେଖିଥିଲେ, "ବେଶ୍ ଉଚ୍ଚ ସ୍ତର ଯାଏଁ ହିନ୍ଦୁଙ୍କ ଧୀଶକ୍ତିର ବିକାଶ କରାଯାଇପାରେ, କିନ୍ତୁ ଉଚ୍ଚ ପଦବୀର ଉପଯୁକ୍ତ ହେବା ପାଇଁ ହିନ୍ଦୁଙ୍କ ଚରିତ୍ରରେ ନୈତିକତା ଓ ମଣିଷପଣିଆ ଭରିବା ସମ୍ଭବ ନୁହେଁ।" ମୋଟ ଉପରେ ଦେଖିଲେ ଇଂରେଜମାନେ ବୁଝିପାରୁ ନ ଥିଲେ ଭାରତୀୟମାନେ ପାଶ୍ଚାତ୍ୟ ଶିକ୍ଷା ପାଇଲା ପରେ ବି କିପରି  ତାଙ୍କର ପୁରୁଣା ଜୀବନ ଶୈଳୀକୁ ଛାଡ଼ିପାରୁନାହାନ୍ତି। ସେମାନଙ୍କ ପାଇଁ ଏହା ଥିଲା ଏକ 'କୁରୁଚିପୂର୍ଣ୍ଣ ବିରୋଧାଭାଷ'।

ଭାରତୀୟଙ୍କ ପ୍ରତି ଇଂରେଜମାନଙ୍କର ଏହିଭଳି ମିଶ୍ରିତ ଦୃଷ୍ଟିକୋଣ ରାମାନୁଜନ୍ ପାଇଁ ମଧ୍ୟ ପ୍ରଯୁଜ୍ୟ ହେଲା।

## 7. ଚିଠି

ରାମାନୁଜନ୍‌ଙ୍କ ଗଣିତ ପ୍ରତିଭା ନାରାୟଣ ଆୟାର, ରାମଚନ୍ଦ୍ର ରାଓ ଓ ପ୍ରେସିଡେନ୍‌ସି କଲେଜର ଗଣିତ ଅଧ୍ୟାପକ ମିଡଲ୍‌ମାଷ୍ଟଙ୍କ ସ୍ୱୀକୃତି ପାଇଲା ପରେ ସେ ଜଣେ ସ୍ୱତନ୍ତ୍ର ଗୁଣର ଲୋକ ଭାବରେ ପୋର୍ଟ ଟ୍ରଷ୍ଟ ଅଫିସରେ ଦେଖାଗଲେ। ସାର୍ ଫ୍ରାନ୍‌ସିସ୍ ଓ ଅନ୍ୟ ଇଂରେଜ ଅଧିକାରୀମାନେ ଭାବିବାକୁ ଲାଗିଲେ - କେତେ ସ୍ୱତନ୍ତ୍ର? କେଉଁ ଭାବରେ? ତାଙ୍କର ପ୍ରତିଭା ମାମୁଲି ନା ଗଭୀର? ସ୍ୱତନ୍ତ୍ରତା ଦୃଷ୍ଟିରୁ ତାଙ୍କ ପାଇଁ କ'ଣ କରାଯାଇପାରିବ?

ଏହିସବୁ ପ୍ରଶ୍ନ ଉପରେ କେହି ଦୃଢ଼ ମତ ଦେବାକୁ ଚାହୁଁ ନ ଥିଲେ। କିଛି ଲୋକ ଡରୁଥିଲେ କାଳେ ଭୁଲ ହୋଇଯିବ! କିନ୍ତୁ ଅଧିକାଂଶ ଲୋକ ସଠିକ ଭାବରେ କିଛି ଜାଣିବାର ଅବସ୍ଥାରେ ନ ଥିଲେ। ରାମାନୁଜନ୍‌ଙ୍କ ପ୍ରତିଭା ବିଷୟରେ ନାରାୟଣ କିନ୍ତୁ ନିଶ୍ଚିତ ଥିଲେ, କାରଣ ପ୍ରତିଦିନ ସେ ରାମାନୁଜନ୍‌ଙ୍କ ସହିତ କାମ କରୁଥିଲେ ଏବଂ ତାଙ୍କର ଦକ୍ଷତାକୁ ପ୍ରତ୍ୟକ୍ଷ ଭାବରେ ଦେଖୁଥିଲେ। ଆହୁରି ମଧ୍ୟ ସେ ନିଶ୍ଚିତ ଥିଲେ ଯେ ଇଂରେଜମାନଙ୍କର ଦୃଢ଼ ସମର୍ଥନ ବିନା ରାମାନୁଜନ୍‌ଙ୍କ ଦକ୍ଷତାର ସମ୍ପୂର୍ଣ୍ଣ ପରିପ୍ରକାଶ ସମ୍ଭବ ହେବନାହିଁ। ଏହି ସମର୍ଥନ ଯୋଗାଡ଼ କରିବା ପାଇଁ ସେ ସାର୍ ଫ୍ରାନ୍‌ସିସ୍‌ଙ୍କ ପଛରେ ଲାଗିପଡ଼ିଲେ।

ତାଙ୍କର ସମ୍ପର୍କ ବ୍ୟବହାର କରି ରାମଚନ୍ଦ୍ର ରାଓ ମଧ୍ୟ ସାର୍ ଫ୍ରାନ୍‌ସିସ୍‌ଙ୍କୁ ପ୍ରଭାବିତ କରିବାକୁ ଚେଷ୍ଟା କଲେ। ବୋଧହୁଏ ତାଙ୍କ ଅନୁରୋଧରେ ମାଡ୍ରାସ୍ ଇଞ୍ଜିନିଅରିଙ୍ଗ୍ କଲେଜର ଅଧ୍ୟାପକ ସି. ଏଲ୍. ଟି. ଗ୍ରିଫିଥ୍ ସାର୍ ଫ୍ରାନ୍‌ସିସ୍‌ଙ୍କ ପାଖକୁ ଖଣ୍ଡେ ଚିଠି ଲେଖିଲେ। 1912 ମସିହା ନଭେମ୍ବର 12 ତାରିଖରେ ଚାଳିଶ ବର୍ଷ ବୟସର ସିଭିଲ୍ ଇଞ୍ଜିନିଅରିଙ୍ଗ୍ ଅଧ୍ୟାପକ ଗ୍ରିଫିଥ୍ ଲେଖିଥିବା ଚିଠି ଥିଲା - "ପ୍ରିୟ ସାର୍ ଫ୍ରାନ୍‌ସିସ୍, ଆପଣଙ୍କ ଅଫିସରେ ଏସ୍. ରାମାନୁଜନ୍ ନାମକ ଜଣେ ଯୁବକ 25 ଟଙ୍କା ଦରମାରେ ଆକାଉଣ୍ଟାଣ୍ଟ ଚାକିରିରେ ଅଛନ୍ତି। ସେ ଜଣେ ଅତି ଉଚ୍ଚକୋଟୀର ଗଣିତଜ୍ଞ। ଆକାଉଣ୍ଟାଣ୍ଟ ଭାବରେ ସେ ହୁଏତ ଭଲ ହୋଇ ନ ଥିବେ, ତଥାପି ମୁଁ ଆଶା କରୁଛି ଯେ ଆପଣ ତାଙ୍କୁ ଚାକିରିରେ ରଖିବେ। ତାଙ୍କର ଅସାଧାରଣ ପ୍ରତିଭାର ଉପଯୁକ୍ତ ବ୍ୟବହାର ପାଇଁ ଅନ୍ୟ କିଛି ବ୍ୟବସ୍ଥା ନ ହେବା ଯାଏଁ ଆପଣ ତାଙ୍କୁ ଖୁସିରେ ରଖିବାର ଚେଷ୍ଟା କରିବେ।" ଅନ୍ୟମାନଙ୍କ ଭଳି

ଗ୍ରିଫିଥ୍ ମଧ୍ୟ ରାମାନୁଜନ୍‌ଙ୍କ କାମକୁ ବୁଝିପାରୁ ନ ଥିଲେ। ତେଣୁ ସେ ଲଣ୍ଡନର ଜଣେ ଗଣିତଜ୍ଞ ଏମ୍. ଜେ. ଏମ୍. ହିଲ୍‌ଙ୍କ ପାଖକୁ ରାମାନୁଜନ୍‌ଙ୍କର କାମ ବିଷୟରେ କାଗଜପତ୍ର ପଠାଇ ତାଙ୍କ ମତ ମାଗିଥିଲେ। ସେ ବିଷୟରେ ସେ ସାର୍ ଫ୍ରାନ୍‌ସିସ୍‌ଙ୍କୁ ଲେଖିଥିଲେ, "ସେ ଯଦି ପ୍ରକୃତରେ ପ୍ରତିଭାବାନ୍ ହୋଇଥା'ନ୍ତି ବହିପତ୍ର ଓ ଅବସର ପାଇଁ ତାଙ୍କୁ ଟଙ୍କା ଯୋଗାଇବାକୁ ହେବ। କିନ୍ତୁ ଲଣ୍ଡନରୁ ଉତ୍ତର ନ ଆସିବା ଯାଏଁ ତାଙ୍କ ପାଇଁ ବେଶି ସମୟ ବା ଟଙ୍କା ଖର୍ଚ୍ଚ କରିବା ଉଚିତ ହେବନାହିଁ ବୋଲି ମୁଁ ଭାବୁଛି।"

ସାର୍ ଫ୍ରାନ୍‌ସିସ୍‌ଙ୍କ ଅନୁରୋଧରେ ମାଦ୍ରାଜର ଶିକ୍ଷା ନିର୍ଦ୍ଦେଶକ ଏ. ଜି. ବୋର୍ଣ୍ଣ ସେଠାକାର ଦୁଇ ଜଣ ଗଣିତଜ୍ଞଙ୍କୁ ଭେଟିବା ପାଇଁ ରାମାନୁଜନ୍‌ଙ୍କୁ ଉପଦେଶ ଦେଲେ। ତାଙ୍କର ମତ ଥିଲା ଯେ, "ଯଦି ରାମାନୁଜନ୍‌ଙ୍କ ପ୍ରତିଭା ଏତେ ରହସ୍ୟମୟ ଯେ ତାକୁ ଯଥେଷ୍ଟ ସାଧାରଣ ଜ୍ଞାନର ଅଧିକାରୀ ଗଣିତଜ୍ଞମାନେ ଚିହ୍ନି ବା ବୁଝିପାରିବେନାହିଁ, ତେବେ ମୁଁ ସେହି ପ୍ରତିଭାର ଅସ୍ତିତ୍ୱକୁ ସନ୍ଦେହ କରିବି।"

ବୋର୍ଣ୍ଣଙ୍କ ପ୍ରସ୍ତାବ ଅନୁସାରେ ଦୁଇ ସପ୍ତାହ ପରେ ରାମାନୁଜନ୍ ମାଦ୍ରାଜର ଆକାଉଣ୍ଟାଣ୍ଟ ଜେନେରାଲ୍ ଡବ୍‌ଲିଉ. ଗ୍ରାହାମ୍‌ଙ୍କୁ ଭେଟିଲେ। ଭେଟିବା ପରେ ଗ୍ରାହାମ୍ ଲେଖିଲେ, "ମହାନ ଗଣିତଜ୍ଞ ହେବାର ମେଧା ରାମାନୁଜନ୍‌ଙ୍କଠାରେ ଅଛି କି ନାହିଁ ତାହା ମୁଁ କହିପାରିବିନାହିଁ। ତଥାପି ତାଙ୍କର ମସ୍ତିଷ୍କ ଉର୍ବର ଥିବାର ଧାରଣା ମୁଁ ପାଉଛି।" ଏଭଳି ଲେଖିକରି ସେ ମଧ୍ୟ ଅନ୍ୟମାନଙ୍କ ଭଳି ସୁରକ୍ଷିତ ରହିବାକୁ ଚାହୁଁଥିଲେ। କିଛି ନିର୍ଦ୍ଦିଷ୍ଟ ମତ ଦେଲେ କାଳେ ତାହା ପରେ ଭୁଲ ପ୍ରମାଣିତ ହେବ। ତାଙ୍କ ଚିଠିରେ ସେ ଆଉ ଗୋଟିଏ ଧାଡ଼ି ଯୋଡ଼ିଥିଲେ ଯାହା ତାଙ୍କ ମତକୁ ଆହୁରି ଗୋଳମାଳିଆ କରୁଥିଲା। ତାହା ଥିଲା - "ଏହା ସମ୍ଭବ ଯେ ପିଲାଟିର ମସ୍ତିଷ୍କ କେବଳ ହିସାବ କରିବା କାମରେ ଦକ୍ଷ।"

ଗ୍ରାହାମ୍ ସେଭଳି ଲୋକଙ୍କ କଥା କହୁଥିଲେ ଯେଉଁମାନେ ଅସ୍ୱାଭାବିକ ଭାବରେ ଜ୍ଞାନୀ ମନେହୁଅନ୍ତି ଏବଂ ଏବେ ଯାହାଙ୍କୁ 'ମୂର୍ଖ ପଣ୍ଡିତ' କୁହାଯାଉଛି। ଏହି ଲୋକମାନେ ଗଣିତ ବିଷୟରେ କିଛି ବି ନ ବୁଝି ଅତି ଅଳ୍ପ ସମୟରେ ବଡ଼ ବଡ଼ ହିସାବ କରିପାରନ୍ତି। ବଡ଼ ବଡ଼ ସଂଖ୍ୟାର ଗୁଣନହରଣ ବା ସେହିଭଳି ଅନ୍ୟ ସାଧାରଣ ହିସାବ ନିର୍ଭୁଲ ଭାବରେ କରିପାରନ୍ତି। ଏକଥା ସତ ଯେ ହିସାବ କରିବାର ଦକ୍ଷତାର ଗଣିତର ତତ୍ତ୍ୱଜ୍ଞାନ ସହିତ କିଛି ସମ୍ପର୍କ ନାହିଁ। ସେହି ଦକ୍ଷତା ଜଣେ ଗଣିତଜ୍ଞଙ୍କୁ ତାଙ୍କ କାମରେ ସାହାଯ୍ୟ କରିପାରେ, କିନ୍ତୁ ହିସାବ କରିବାର ଦକ୍ଷତାରୁ ଗଣିତ ଜ୍ଞାନର ପରିଚୟ ମିଳିବା ସମ୍ଭବ ନୁହେଁ।

ବିଭିନ୍ନ ପ୍ରକାରର ଗଣିତ ପ୍ରଶ୍ନର ସମାଧାନ କରିବାରେ ରାମାନୁଜନ୍ ଅସାଧାରଣ ଦକ୍ଷତା ଦେଖାଉଥିଲେ। ତେଣୁ ତାଙ୍କୁ କେବଳ 'ହିସାବଦକ୍ଷ' ଶ୍ରେଣୀରେ ରଖିବା ଯୁକ୍ତିଯୁକ୍ତ ନ ଥିଲା। ତଥାପି 1912 ମସିହାର ଶେଷ ଭାଗରେ ଏହି ସମ୍ଭାବନାକୁ ଏଡ଼ାଇଯିବା ମାଦ୍ରାଜର ଇଂରେଜମାନଙ୍କ ପକ୍ଷରେ ସମ୍ଭବ ନ ଥିଲା। ରାମାନୁଜନ୍‌ଙ୍କ ବିଷୟରେ କ'ଣ କରାଯାଇପାରିବ ସେ ପ୍ରଶ୍ନର ଉତ୍ତର କେହି ପାଉ ନ ଥିଲେ। ଲଣ୍ଡନରୁ ଅଧ୍ୟାପକ ହିଲ୍‌ଙ୍କ ଚିଠିର ଅପେକ୍ଷାରେ ସମସ୍ତେ ରହିଲେ।

ଲଣ୍ଡନର ୟୁନିଭର୍ସିଟି କଲେଜଠାରେ ଅଧ୍ୟାପକ ହିଲ୍ ଗ୍ରିଫିଥ୍‌ଙ୍କୁ ଏହି ଘଟଣାର କୋଡ଼ିଏ ବର୍ଷ ତଳେ ପାଠ ପଢ଼ାଇଥିଲେ। ଗଣିତ ଗବେଷକ ଅପେକ୍ଷା ହିଲ୍ ଜଣେ ଧୈର୍ଯ୍ୟବାନ ଓ ଯତ୍ନଶୀଳ

ଶିକ୍ଷକ ଭାବରେ ବେଶି ଜଣା ଥିଲେ। 1912 ମସିହା ଡିସେମ୍ବର ମଝିରେ ସେ ଗ୍ରିଫିଥ୍‌ଙ୍କ ଚିଠିର ଉତ୍ତର ଦେଲେ। ସେ ଦୁଃଖ ପ୍ରକାଶ କରି ଲେଖିଥିଲେ ଯେ ଗ୍ରିଫିଥ୍ ପଠାଇଥିବା ରାମାନୁଜନ୍‌ଙ୍କର ସବୁ କାଗଜ ସେ ଦେଖିପାରିନାହାନ୍ତି। କିନ୍ତୁ ସେସବୁକୁ ଓଲଟାଇବା ପରେ ସେ ଭାବୁଛନ୍ତି ଯେ ରାମାନୁଜନ୍ ଅନେକ ଗୁରୁତର ଭୁଲ କରିଛନ୍ତି, ଏପରିକି ତାଙ୍କର କିଛି ଫଳାଫଳ ଉଦ୍‌ଭଟ ମନେହେଉଛି। ତାଙ୍କର ଭୁଲ ସୁଧାରିବାକୁ ଚାହିଁଲେ ସେ ବ୍ରୋମୱିଚ୍‌ଙ୍କର ଅସୀମ ଶ୍ରେଣୀର ତତ୍ତ୍ୱ (*ଥିଓରି ଅଫ୍ ଇନ୍‌ଫାଇନାଇଟ୍ ସିରିଜ୍*) ବହି ପଢ଼ନ୍ତୁ। ତଥାପି ଯଦି ରାମାନୁଜନ୍ ତାଙ୍କର ଫଳାଫଳକୁ ପ୍ରକାଶ କରିବାକୁ ଚାହାନ୍ତି ତେବେ ସେ ଲଣ୍ଡନ ମାଥେମାଟିକାଲ ସୋସାଇଟିର ସଚିବଙ୍କ ପାଖକୁ ଚିଠି ଲେଖନ୍ତୁ। ହିଲ୍ ଚେତାବନୀ ଦେଇଥିଲେ, "ତାଙ୍କ ପାଣ୍ଡୁଲିପି ପରିଷ୍କାର ଭାବରେ ଲେଖାହେବା ଏବଂ ନିର୍ଭୁଲ ହେବା ଜରୁରୀ। ନିଜର ଅଲଗା ପ୍ରକାରର ସଙ୍କେତଗୁଡ଼ିକୁ ନ ବୁଝାଇ ସେସବୁକୁ ବ୍ୟବହାର କରିବା ଉଚିତ ହେବନାହିଁ।"

ଗ୍ରିଫିଥ୍ ଓ ମାନ୍ଦ୍ରାଜରେ ଅନ୍ୟମାନଙ୍କର ମୂଳ ପ୍ରଶ୍ନର ସିଧାସଳଖ ଉତ୍ତର ସେ ଦେଇ ନ ଥିଲେ। ସେ ପ୍ରଶ୍ନ ଥିଲା - ଗଣିତ କ୍ଷେତ୍ରରେ ରାମାନୁଜନ୍ କିଛି ଅସାଧାରଣ କାମ କରିପାରିବେ କି? ହିଲ୍ କେବଳ ଲେଖିଥିଲେ, "ତାଙ୍କର ବ୍ୟକ୍ତିଗତ ଜୀବନ ବିଷୟରେ ତମେ ଯାହା ଲେଖିଛ ତାହା ବେଶ୍ ଆଗ୍ରହର କଥା। ମୁଁ ଆଶା କରୁଛି ଯେ ଭବିଷ୍ୟତରେ ତାଙ୍କ କାମରୁ କିଛି ବାହାରି ପାରିବ।"

କିଛିଦିନ ପରେ ହିଲ୍ ଗ୍ରିଫିଥ୍‌ଙ୍କ ପାଖକୁ ଆଉ ଗୋଟିଏ ଚିଠି ଲେଖିଲେ ଯାହା ବିଚିତ୍ର ମନେ ହେଉଥିଲା। ସେଥିରେ କିଛି ନିର୍ଦ୍ଦିଷ୍ଟ ମତ ନ ଥିଲା, କିନ୍ତୁ ତାହା ଅଧିକ ଉତ୍ସାହଜନକ ଥିଲା। ବର୍ଣ୍ଣୁଲି ସଂଖ୍ୟା ଉପରେ ରାମାନୁଜନ୍‌ଙ୍କ ନିବନ୍ଧକୁ ସେ ତ୍ରୁଟିପୂର୍ଣ୍ଣ କହିଥିଲେ ଏବଂ ମତ ଦେଇଥିଲେ, "ଆଗରୁ ଜଣାଥିବା ବର୍ଣ୍ଣୁଲି ସଂଖ୍ୟାଗୁଡ଼ିକର କିଛି ଗୁଣଧର୍ମ ସେ ଲକ୍ଷ୍ୟ କରିଛନ୍ତି ଏବଂ କିଛି ପ୍ରମାଣ ନ ଦେଇ କହିଛନ୍ତି ଯେ ତାହା ସବୁ ବର୍ଣ୍ଣୁଲି ସଂଖ୍ୟା ପାଇଁ ପ୍ରଯୁଜ୍ୟ। ଏହିଭଳି କାରଣରୁ ମୁଁ ନିଶ୍ଚିତ ଯେ ଲଣ୍ଡନ ମାଥେମାଟିକାଲ ସୋସାଇଟି ସେହି ନିବନ୍ଧକୁ ଗ୍ରହଣ କରି ନ ଥା'ନ୍ତା।" ସେହି ଚିଠିର ପଛକୁ ସେ ପୁଣି ଲେଖିଛନ୍ତି ଯେ ରାମାନୁଜନ୍ ଗଣିତ ବିଷୟରେ ଆଗ୍ରହ ରଖିଥିବା ଓ କିଛି ଦକ୍ଷତା ଦେଖାଉଥିବା ଜଣେ ବ୍ୟକ୍ତି ଭଳି ମନେ ହେଉଛନ୍ତି। କିନ୍ତୁ ଉଚ୍ଚ ଶିକ୍ଷାର ଅଭାବ ତାଙ୍କୁ ଅସୁବିଧାରେ ପକାଉଛି। ରାମାନୁଜନ୍ ବ୍ରୋମୱିଚ୍‌ଙ୍କର ବହିଟି ପଢ଼ିବା ଜରୁରୀ ବୋଲି ସେ ଦୋହରାଇଛନ୍ତି ଏବଂ ତାଙ୍କର ଭୁଲ ଧାରଣାଗୁଡ଼ିକୁ ଦୂର କରିବା ପାଇଁ କେଉଁ କେଉଁ ଅଧ୍ୟାୟ ପଢ଼ିବା ଦରକାର ତାହା ନିର୍ଦ୍ଦିଷ୍ଟ କରିଛନ୍ତି।

ଶେଷରେ ରାମାନୁଜନ୍‌ଙ୍କ କାମର ଦୁର୍ବଳତା ବିଷୟରେ ସେ ଲେଖିଛନ୍ତି, "1876ରୁ 79 ଭିତରେ ମୁଁ ଯେବେ କେମ୍ବ୍ରିଜରେ ପଢୁଥିଲି, ଏହି ବିଷୟ ଠିକ୍ ଭାବରେ ବୁଝାପଡ଼ି ନ ଥିଲା। ମାତ୍ର ଅଳ୍ପଦିନ ତଳେ ଏହାର ଆଧୁନିକ ତତ୍ତ୍ୱ ଦୃଢ଼ ଭାବରେ ପ୍ରତିଷ୍ଠିତ ହୋଇଛି। ଅତୀତରେ ଅନେକ ବିଶିଷ୍ଟ ଗଣିତଜ୍ଞ ଏହିଭଳି ଅସୁବିଧାରେ ପଡ଼ିଛନ୍ତି। ତେଣୁ ଏକା ଏକା କାମ କରୁଥିବା ରାମାନୁଜନ୍ ଏଭଳି ଭୁଲ କରିବା କିଛି ଆଶ୍ଚର୍ଯ୍ୟର କଥା ନୁହେଁ। ମୁଁ ଆଶା କରୁଛି ଯେ ସେ ନିରୁତ୍ସାହିତ ହେବେନାହିଁ।"

ହିଲ୍‌ଙ୍କର କେମ୍ବ୍ରିଜ ସମୟ 1876–79 ଜର୍ଜ ସୁବ୍ରିଜ୍ କାର୍‌ଙ୍କ ସମୟ ସହିତ ମେଳ ଖାଉଥିଲା। କାର୍‌ଙ୍କ ବହି ଉପରେ ରାମାନୁଜନ୍ ବିଶେଷ ଭାବରେ ନିର୍ଭର କରିଥିଲେ। ତେଣୁ ତା'ପର ଚାଳିଶ

ବର୍ଷ ଭିତରେ ୟୁରୋପରେ ବାହାରିଥିବା ନୂଆ ଗାଣିତିକ ଫଳାଫଳ ବିଷୟରେ ସେ କିଛି ଜାଣି ନ ଥିଲେ। ଗଣିତର ବିକାଶ ଧାରାରୁ ବିଛିନ୍ନ ହୋଇ ରାମାନୁଜନ୍ ଦିଗହରା ହୋଇପଡ଼ିଥିଲେ।

ହିଲ୍ ତାଙ୍କ ପୁରୁଣା ଛାତ୍ର ଗ୍ରିଫିଥ୍‌ଙ୍କୁ ପ୍ରାୟ ଭୁଲି ଯାଇଥିଲେ। କିନ୍ତୁ ରାମାନୁଜନ୍‌ଙ୍କ କାମ ବିଷୟରେ କୌତୂହଳୀ ହୋଇ ସେ ଦୁଇଟି ଲମ୍ବା ଚିଠି ଲେଖିଥିଲେ। ରାମାନୁଜନ୍‌ଙ୍କୁ ସେ ଛାତ୍ର ଭାବରେ ଗ୍ରହଣ କରିବାର ବା ତାଙ୍କ ପାଇଁ ଅନ୍ୟ କିଛି କରିବାର ପ୍ରସ୍ତାବ ସେ ଦେଇ ନ ଥିଲେ। ବରଂ ରାମାନୁଜନ୍‌ଙ୍କ ପ୍ରଥମ ନିବନ୍ଧଟି ପ୍ରକାଶନ ପାଇଁ ଅଯୋଗ୍ୟ ବୋଲି ସେ ମତ ଦେଇଥିଲେ। ତଥାପି ତାଙ୍କର ମତାମତ ରାମାନୁଜନ୍‌ଙ୍କ ପାଇଁ ମୂଲ୍ୟବାନ ଥିଲା। ଏହା ଆଗରୁ କେହି ରାମାନୁଜନ୍‌ଙ୍କ କାମ ଉପରେ ଏପରି ଯୁକ୍ତିଯୁକ୍ତ ଓ ପେଶାଦାର ମନ୍ତବ୍ୟ ଦେଇ ନ ଥିଲେ। ମାନ୍ଦ୍ରାଜର ଇଂରେଜମାନଙ୍କ ମନରେ କିଛି ସନ୍ଦେହ ରହିଥିଲା ଯେ ରାମାନୁଜନ୍ ପ୍ରତିଭାବାନ୍ ନ ହୋଇ ଆଡ଼ବାୟା ହୋଇପାରନ୍ତି। ହିଲ୍‌ଙ୍କ ଚିଠି ତାହା ଦୂର କରିପାରିଲା।

ରାମାନୁଜନ୍‌ଙ୍କ ଶୁଭେଚ୍ଛୁମାନେ ବିଶ୍ୱାସ କରୁଥିଲେ ଯେ ଭାରତରେ କେହି ତାଙ୍କ କାମକୁ ଠିକ୍ ଭାବରେ ବୁଝିପାରିବେନାହିଁ, ତେଣୁ ତାଙ୍କୁ ସାହାଯ୍ୟ କରିବେନାହିଁ। ସେମାନଙ୍କର ଉପଦେଶ ଥିଲା ଯେ ରାମାନୁଜନ୍ କେମ୍ବ୍ରିଜ ବା ଅନ୍ୟ କେଉଁ ପାଶ୍ଚାତ୍ୟ ଅନୁଷ୍ଠାନ ସହିତ ଯୋଗାଯୋଗ କରନ୍ତୁ। ଏଭଳି ଉପଦେଶ ଦେଉଥିବା ଲୋକଙ୍କ ଭିତରେ ଥିଲେ ପାଶ୍ୟାପ୍ପା କଲେଜରେ ରାମାନୁଜନ୍‌ଙ୍କର ପୁରୁଣା ଅଧ୍ୟାପକ ସିଙ୍ଗାରାଭେଲୁ ମୁଦାଲିଅର ଯାହାଙ୍କ ସହିତ ରାମାନୁଜନ୍ ଅଳ୍ପଦିନ ଭିତରେ ବେଶ୍ ଘନିଷ୍ଠ ହୋଇପାରିଥିଲେ। କୁମ୍ଭକୋଣମ୍ କଲେଜର ଅଧ୍ୟାପକ ଭବାନୀସ୍ୱାମୀ ରାଓ, ଦୁଇବର୍ଷ ତଳେ ରାମାନୁଜନ୍‌ଙ୍କୁ ପାଖରେ ରଖିଥିବା ସାଙ୍ଗ ନରସିଂହ ଏବଂ ନାରାୟଣ ଆୟାର ମଧ୍ୟ ସେହି ଉପଦେଶ ଦେଉଥିଲେ। ଏବେ ହିଲ୍‌ଙ୍କ ଚିଠି ଦେଖିବା ପରେ ଏହି ଉପଦେଶ ଠିକ୍ ବୋଲି ରାମାନୁଜନ୍ ନିଜେ ମଧ୍ୟ ଭାବିଲେ। ପରିସ୍ଥିତିର ସବୁ ଦିଗରୁ ବିଚାରକରି ଦେଖିଲେ ମନେହେଲା ଯେ ଭାରତୀୟ ଗଣିତ କ୍ଷେତ୍ରରେ ସେ ଅକଳନୀୟ। ୟୁରୋପୀୟ ଗଣିତଜ୍ଞମାନେ ତାଙ୍କ କାମ ପ୍ରତି ଅଧିକ ବିଚାରବନ୍ତ ହେବେ ବୋଲି ରାମାନୁଜନ୍ ନିଶ୍ଚିତ ହେଲେ।

ଭାରତ ଓ ୟୁରୋପ ଭିତରେ ଦୂରତା କିଛି କମ୍ ନ ଥିଲା। ତଥାପି ବିମାନ ଡାକ ସେବା ଆରମ୍ଭ ହେବା ଆଗରୁ ମଧ୍ୟ ଚିଠିପତ୍ର ବେଶ୍ ଶୀଘ୍ର ଓ ନିର୍ଭରଯୋଗ୍ୟ ଭାବରେ ଦିଆନିଆ ହୋଇପାରୁଥିଲା। ଏଥିପାଇଁ ଅତ୍ୟଧିକ ଖର୍ଚ୍ଚ ମଧ୍ୟ ଲାଗୁ ନ ଥିଲା ଏବଂ ପ୍ରାୟ ଦୁଇ ସପ୍ତାହ ଭିତରେ ଭାରତରୁ ଡାକ ଯାଇ ଇଂଲଣ୍ଡରେ ପହଞ୍ଚି ଯାଉଥିଲା। ତେଣୁ 1912–13 ମସିହାରେ ରାମାନୁଜନ୍ ତାଙ୍କ ଚିଠି ଲେଖା ଆରମ୍ଭ କଲେ। ଚିଠି ଲେଖିବାରେ ତାଙ୍କୁ ନାରାୟଣ, ସାର୍ ଫ୍ରାନ୍‌ସିସ୍ ଏବଂ ବୋଧହୁଏ ଶେଷୁ ଆୟାର ସାହାଯ୍ୟ କରୁଥିଲେ। ନିଜ କାମର ନମୁନା ସହିତ ରାମାନୁଜନ୍ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ବିଶିଷ୍ଟ ଗଣିତଜ୍ଞଙ୍କ ପାଖକୁ ସେହି ଚିଠିଗୁଡ଼ିକ ପଠାଇବାକୁ ଲାଗିଲେ।

ତାଙ୍କର ପ୍ରଥମ ଚିଠି ଥିଲା ବହୁଭାବରେ ସମ୍ମାନିତ ଗଣିତଜ୍ଞ ଏଚ୍. ଏଫ୍. ବେକରଙ୍କ ପାଖକୁ। ସେ ରୟାଲ ସୋସାଇଟିର ଜଣେ ଫେଲୋ ଥିଲେ ଏବଂ ଦୁଇବର୍ଷ ତଳ ପର୍ଯ୍ୟନ୍ତ ଲଣ୍ଡନ ମାଥେମାଟିକାଲ ସୋସାଇଟିର ସଭାପତି ଥିଲେ। ସାହାଯ୍ୟ ଓ ଉପଦେଶ ପାଇଁ ରାମାନୁଜନ୍ ତାଙ୍କୁ ଅନୁରୋଧ କରିଥିଲେ। କିନ୍ତୁ ତାଙ୍କୁ ନିରାଶ ହେବାକୁ ପଡ଼ିଲା। ତାଙ୍କର ଦ୍ୱିତୀୟ ଅନୁରୋଧ ଯାଇଥିଲା

ଇ. ଡବ୍ଲିଉ. ହବ୍‌ସନ୍‌ଙ୍କ ପାଖକୁ। ସେ ମଧ୍ୟ ଜଣେ ଉଚ୍ଚ ପଦବୀଧାରୀ ଗଣିତଜ୍ଞ ଥିଲେ ଏବଂ ତାଙ୍କ ପାଖରେ ମଧ୍ୟ ରାମାନୁଜନ୍‌ଙ୍କୁ ନିରାଶ ହେବାକୁ ପଡ଼ିଲା।

1913 ମସିହା ଜାନୁଆରି 16 ଦିନ ରାମାନୁଜନ୍ ଆଉ ଜଣେ କେମ୍ବ୍ରିଜ ଗଣିତଜ୍ଞ ଜି. ଏଚ୍. ହାର୍ଡିଙ୍କ ପାଖକୁ ତାଙ୍କ କାମର ନମୁନା ପଠାଇଲେ। ହାର୍ଡିଙ୍କ ବୟସ ସେତେବେଳେ ଥିଲା ପଇଁତିରିଶ ବର୍ଷ। ଅର୍ଥାତ ସେ ଅନ୍ୟ ବିଶିଷ୍ଟ ଗଣିତଜ୍ଞଙ୍କ ତଳ ପିଢ଼ିର ଥିଲେ। କିନ୍ତୁ ସେ ବୟସରେ ମଧ୍ୟ ଇଂଲଣ୍ଡର ଗଣିତ ଦୁନିଆରେ ଚହଳ ପକାଇ ସାରିଥିଲେ।

'ହାର୍ଡି ତାଙ୍କ କଥା ବିଚାର କରିବେ କି?' ଥିଲା ରାମାନୁଜନ୍‌ଙ୍କ ପୁରୁଣା ଅନୁରୋଧ। ତେବେ ଉତ୍ତରଟି ତାଙ୍କ ପାଇଁ ନୂଆ ଥିଲା, 'ହଁ, ହାର୍ଡି ଚେଷ୍ଟା କରିବେ'।

# 4

# ହାର୍ଡି

## (ଜି. ଏଚ୍. ହାର୍ଡି, 1913 ଆଗର କଥା)

### 1. ଚିର ଯୌବନ

ହାର୍ଡିଙ୍କୁ ଦେଖିଲେ ମନେହେଉଥିଲା ଯେ ତାଙ୍କୁ ବାର୍ଦ୍ଧକ୍ୟ କେବେ ଛୁଇଁବନାହିଁ।

ଟ୍ରିନିଟି କଲେଜର ଫେଲୋ ଥିବାବେଳେ ହାର୍ଡିଙ୍କର ଜଣେ ସାଥୀ ଲିଟନ୍ ଷ୍ଟ୍ରାଚି ତାଙ୍କ ମା'ଙ୍କ ପାଖକୁ ଚିଠିରେ ଲେଖିଥିଲେ, "ଗଣିତରେ ସେ ପ୍ରଚଣ୍ଡ ପ୍ରତିଭାର ଅଧିକାରୀ, କିନ୍ତୁ ଦେଖିବାକୁ ସେ ତିନି ବର୍ଷର ଛୁଆଟିଏ ଭଳି।" ତିରିଶ ବର୍ଷ ବୟସ ଡେଇଁଲା ପରେ ବି ଲୋକେ ତାଙ୍କୁ କନିଷ୍ଠ କଲେଜ ଛାତ୍ର ଭାବୁଥିଲେ।

ଦୁଇଟି ଉଜ୍ଜ୍ୱଳ ଆଖି ସହିତ ତାଙ୍କ ମୁହଁର ଗଠନ ସୁଠାମ ଥିଲା। ଏତେ ସୁନ୍ଦର ଚେହେରାର ଅଧିକାରୀ ହାର୍ଡି କିନ୍ତୁ ନିଜକୁ ଖୁବ୍ ଅସୁନ୍ଦର ମନେ କରୁଥିଲେ। ଦର୍ପଣରେ ନିଜ ମୁହଁର ପ୍ରତିବିମ୍ବକୁ ସେ ସହିପାରୁ ନ ଥିଲେ, ତେଣୁ ତାଙ୍କ ଘରେ ସେ ଦର୍ପଣ ରଖୁ ନ ଥିଲେ। ବାହାରକୁ ଗଲେ ସେ ରହୁଥିବା ହୋଟେଲର ଦର୍ପଣକୁ ଢାଙ୍କି ପକାଉଥିଲେ। ଏପରିକି ଖିଅର ହେଲା ବେଳେ ମଧ୍ୟ ସେ ଦର୍ପଣ ବ୍ୟବହାର କରୁ ନ ଥିଲେ। ଏହାର କାରଣ ବୁଝିବା କଷ୍ଟ ଥିଲା। ତେବେ ସେ ଯାହା ଭାବନ୍ତୁ ନା କାହିଁକି ପଚାଶ ବର୍ଷ ବୟସ ପରେ ମଧ୍ୟ ତାଙ୍କର ଚେହେରା ଆକର୍ଷଣୀୟ ଥିଲା।

ଗଣିତ କ୍ଷେତ୍ରରେ ହାର୍ଡି ସବୁବେଳେ ଗଭୀର ବିଶ୍ଳେଷଣ କରୁଥିଲେ। ଗଣିତଜ୍ଞ ଓ ସେମାନଙ୍କର କାମର ବିଶ୍ଳେଷଣ, ସେମାନେ ଲେଖୁଥିବା ନିବନ୍ଧ ଓ ବହି ଆଦିର ବିଶ୍ଳେଷଣ ଓ ତୁଳନା। ବିଭିନ୍ନ ବିଷୟରେ ତାଙ୍କର ଦୃଢ଼ ମତ ରହିଥିଲା ଏବଂ ସେସବୁକୁ ସେ ଲୁଚାଇ ରଖୁ ନ ଥିଲେ। ସେ ସଦସ୍ୟ ଥିବା ଗୋଟିଏ କ୍ଲବ୍ ଥରେ ତା'ର ପରିଚାୟକର ରଙ୍ଗ ବଦଳାଇବାକୁ ଚାହିଁଲା, ହାର୍ଡି ଏହାର ବିରୋଧ କରି ଛଅ ପୃଷ୍ଠାର ପ୍ରତିବାଦ ପତ୍ର ଲେଖିଥିଲେ। ଅତି ପବିତ୍ର ମନେ କରାଯାଉଥିବା ଦୁଇ ଶହ ବର୍ଷ ପୁରୁଣା ଏକ ବୌଦ୍ଧିକ ପରମ୍ପରା ହାର୍ଡିଙ୍କର ପସନ୍ଦ ହେଲାନାହିଁ। ତେଣୁ ଛବିଶ ବର୍ଷରୁ ଅଧିକ ସମୟ ଧରି ସେ ଦୃଢ଼ ଭାବରେ ତା'ର ବିରୋଧ କରିଚାଲିଲେ। ସବୁ କ୍ଷେତ୍ରରେ ତାଙ୍କର ଉତ୍ସାହ, ବିରକ୍ତି ଓ ବିଲକ୍ଷଣତା ଏହିଭଳି ତୀବ୍ର ଓ ଗଭୀର ହେଉଥିଲା। ଯୁଦ୍ଧ, ରାଜନୈତିକ ଶ୍ରେଣୀ ଓ ଇଂରେଜ ଜଳବାୟୁ ତାଙ୍କର ଘୃଣାର ପାତ୍ର ଥିଲେ। ସେ ଖରା ଓ ବିଲେଇ ଭଲ ପାଉଥିଲେ, କୁକୁରଙ୍କୁ ପସନ୍ଦ କରୁ ନ ଥିଲେ। ହାତବନ୍ଧା ଘଣ୍ଟା ଓ ଝରକଲମ ତାଙ୍କର ପସନ୍ଦ ନ ଥିଲା, କିନ୍ତୁ ଟାଇମ୍ସ୍ ଅଫ୍ ଲଣ୍ଡନର ଶବ୍ଦଧନ୍ଦା ପ୍ରିୟ ଥିଲା।

ସେର୍ଲକ୍ ହୋମ୍ସ୍ ରହସ୍ୟ କାହାଣୀ ସବୁର ଲେଖକ ଥିଲେ ଆର୍ଥର କନାନ୍ ଡଏଲ୍। ତାଙ୍କ ମୃତ୍ୟୁର ପଚାଶ ବର୍ଷ ପରେ ଅନ୍ୟ ଜଣେ ଲେଖକ ରାଣ୍ଡାଲ୍ କଲିନ୍ସ୍ ସେହି ଢାଞ୍ଚାରେ ଗୋଟିଏ

ନୂଆ କାହାଣୀ ଲେଖିଥିଲେ ଯାହାର ନାଁ ଥିଲା 'ଦି କେଶ୍ ଅଫ୍ ଫିଲୋସଫର୍ସ୍ ରିଙ୍ଗ' ବା ଦାର୍ଶନିକଙ୍କ ମୁଦିର ରହସ୍ୟ। ଏହାର ମୁଖ୍ୟ ଚରିତ୍ର ଥିଲେ ରାମାନୁଜନ୍ ଓ ହାର୍ଡି। ହାର୍ଡି ଗୋଟିଏ ଧଳା ଠେକୁଆ ରୂପରେ ଟ୍ରିନିଟି କଲେଜର ଫେଲୋମାନଙ୍କର ଖେଳ ପଡ଼ିଆରେ ଡେଇଁ ବୁଲୁଛନ୍ତି। ଧଳା ଟୋପି ପିନ୍ଧି ଓ କ୍ରିକେଟ ବ୍ୟାଟ ଧରି ସେ ତାଙ୍କର ଗ୍ଲୋଭ୍ ଖୋଜି ଚାଲିଛନ୍ତି। ବଡ଼ ପାଟିରେ ସେ କହୁଛନ୍ତି, "ଖେଳ ଆରମ୍ଭ ବେଳ ହୋଇଗଲାଣି, ଗ୍ଲୋଭ୍ ମିଳୁନାହିଁ। ଡେରି ହେଲାଣି, ଡେରି ହେଲାଣି।" ମୁଖବନ୍ଧରେ ଲେଖକ କହିଛନ୍ତି ଯେ ତାଙ୍କ କାହାଣୀଟି କାଳ୍ପନିକ, କିନ୍ତୁ ପାଠକ ଦେଖିପାରିବ ଯେ ହାର୍ଡିଙ୍କ ବର୍ଣ୍ଣନା ବାସ୍ତବତା ସହିତ ବେଶ୍ ମେଳ ଖାଉଛି।

ହାର୍ଡି ଜଣେ ଅତି ମାତ୍ରାରେ କ୍ରିକେଟ-ପାଗଳ ବ୍ୟକ୍ତି ଥିଲେ। ସେ କ୍ରିକେଟ ଖେଳୁଥିଲେ, ଦେଖୁଥିଲେ, ଅଧ୍ୟୟନ କରୁଥିଲେ - କହିବାକୁ ଗଲେ ସେ କ୍ରିକେଟ ସହ ବଞ୍ଚୁଥିଲେ। କ୍ରିକେଟ କୌଶଳର ବିଶ୍ଳେଷଣ କରିବା ସହିତ ସେ ବିଭିନ୍ନ ଦଳର ତୁଳନା କରୁଥିଲେ। ତାଙ୍କ ଗଣିତ ନିବନ୍ଧରେ ସେ କ୍ରିକେଟ ଖେଳର ଉପମା ଯୋଡୁଥିଲେ। କୌଣସି ଗାଣିତିକ ପ୍ରମାଣର ଉତ୍କର୍ଷ ଦେଖାଇବା ପାଇଁ ସେ ତାକୁ ବିଖ୍ୟାତ କ୍ରିକେଟ ଖେଳାଳୀଙ୍କ ନାଁ ସହିତ ଯୋଡୁଥିଲେ। ଅବଶ୍ୟ ଏହି ଖେଳ ସହିତ ଅପରିଚିତ ଅନ୍ୟ ଦେଶର ଗଣିତଜ୍ଞଙ୍କ ପାଇଁ ତାହା ମୂଲ୍ୟହୀନ ଥିଲା। ଷାଠିଏ ବର୍ଷ ବୟସ ଟପିଲା ପରେ ମଧ୍ୟ ସେ କ୍ରିକେଟ ଖେଳୁଥିଲେ, ତାଙ୍କ ମୃତ୍ୟୁଶଯ୍ୟାରେ ତାଙ୍କ ଭଉଣୀ ତାଙ୍କୁ କ୍ରିକେଟ ଖବର ପଢ଼ି ଶୁଣାଉଥିଲେ।

ହାର୍ଡି ଭଗବାନଙ୍କ ଉପରେ ବିଚାର କରି ତାଙ୍କଠାରେ ଅନେକ ଦୋଷତ୍ରୁଟି ଦେଖୁଥିଲେ। ତେଣୁ ସେ କେବଳ ଜଣେ ନାସ୍ତିକ ନ ଥିଲେ, ଅତି ତୀବ୍ର ଭାବରେ ନାସ୍ତିକ ଥିଲେ। ପ୍ରାକ୍‌ସ୍ନାତକ ଶ୍ରେଣୀର ଛାତ୍ର ଥିବା ବେଳେ ଗୀର୍ଜା ଯିବା ତାଙ୍କ ପାଇଁ ବାଧ୍ୟତାମୂଳକ ଥିଲା। ସେଥିରୁ ଛାଡ଼ ପାଇବାକୁ ହେଲେ ବାପାମା'ଙ୍କୁ ସେକଥା ଜଣାଇବାକୁ ପଡୁଥିଲା। ତାଙ୍କର ବାପାମା ଅତି ଧର୍ମନିଷ୍ଠ ଥିଲେ, ତେଣୁ ହାର୍ଡିଙ୍କ ପାଇଁ ତାଙ୍କୁ ଜଣାଇବା ଅତି କଷ୍ଟ କାମ ଥିଲା। ଅନେକ ମନସ୍ତାପ ପରେ ସେ କିନ୍ତୁ ଜଣାଇଦେଲେ ଯେ ଗୀର୍ଜା ଯିବାକୁ ସେ ଚାହୁଁନାହାନ୍ତି। କୁହାଯାଏ ଯେ ଭଗବାନଙ୍କୁ ସେ ବ୍ୟକ୍ତିଗତ ଶତ୍ରୁ ଭାବରେ ଦେଖୁଥିଲେ। ତଥାପି ଅନେକ ଧାର୍ମିକ ବ୍ୟକ୍ତି ଓ ପାଦ୍ରୀ ତାଙ୍କର ସାଙ୍ଗ ଥିଲେ। ମନେହୁଏ ଯେ ଧର୍ମ ପ୍ରତି ତାଙ୍କର ବିରୋଧ ତାଙ୍କ ପାଇଁ ଏକ ପ୍ରକାରର ନିରୀହ ଖେଳ ଥିଲା। କେମ୍ବ୍ରିଜର ଫେନର୍ କ୍ରିକେଟ ପଡ଼ିଆରେ ଖେଳ ସରିଲା ବେଳକୁ ପ୍ରାୟ ସନ୍ଧ୍ୟା ଛଅ ହୁଏ। ଠିକ୍ ସେତିକି ବେଳେ ଗୀର୍ଜାର ଘଣ୍ଟି ବାଜେ। ଏଥିରେ ବିରକ୍ତ ହୋଇ ହାର୍ଡି କହୁଥିଲେ ଯେ ତାଙ୍କର ଏତେ ମଜା ବେଳରେ ଗୀର୍ଜାର ଘଣ୍ଟି ବାଜିବାକୁ ଥିଲା।

ହାର୍ଡି ବେଶ୍ ଲାଜକୁଳା ଓ ଆତ୍ମସଚେତନ ଥିଲେ। ଏଣୁତେଣୁ ଗପ ସେ ଭଲପାଉ ନ ଥିଲେ। ଅବଶ୍ୟ କ୍ରିକେଟ ତାଙ୍କ ପାଇଁ ଏଣୁତେଣୁ ଗପ ନ ଥିଲା। ପାରମ୍ପରିକ ଧାରାରେ ପରିଚୟ ପ୍ରଦାନକୁ ସେ ଘୃଣା କରୁଥିଲେ ଏବଂ କାହା ସହିତ ହାତ ମିଳାଉ ନ ଥିଲେ। ରାସ୍ତାରେ ସେ ମୁହଁ ପୋତି ଚାଲୁଥିଲେ ଏବଂ ଔପଚାରିକ ଭାବରେ ଭଲମନ୍ଦ ପଚାରୁଥିବା ଲୋକମାନଙ୍କୁ ଏଡ଼ାଇ ଯାଉଥିଲେ। କେମ୍ବ୍ରିଜଠାରେ ହାର୍ଡିଙ୍କୁ ଜାଣିଥିବା ସାହିତ୍ୟିକ ଲିଓନାର୍ଡ ଉଲ୍‌ଫ୍ କହୁଥିଲେ ଯେ ହାର୍ଡି ହେଉଛନ୍ତି ସବୁଠାରୁ ବଡ଼ ବିଚିତ୍ର ଓ ଆକର୍ଷଣୀୟ ବ୍ୟକ୍ତିଙ୍କ ଭିତରୁ ଜଣେ। ପର ସମୟରେ ଲିଓନାର୍ଡ ଭର୍ଜିନିଆ

ଷ୍ଟିଫେନ୍‌ଙ୍କୁ ବିବାହ କଲେ ଏବଂ ଷ୍ଟ୍ରାଚି ଆଦିଙ୍କ ସହିତ ମିଶି ବ୍ଲୁମ୍‌ସ୍‌ବରି ସାହିତ୍ୟ ଆନ୍ଦୋଳନ ଆରମ୍ଭ କରିଥିଲେ। ହାର୍ଡିଙ୍କର ବିଚିତ୍ର ଗୁଣ ସବୁ ବୟସ ବଢ଼ିବା ସହିତ ବଢ଼ି ଚାଲିବ ଏବଂ ଅତିରଞ୍ଜିତ ହୋଇ କିଂବଦନ୍ତିରେ ପରିଣତ ହେବ। କିନ୍ତୁ ଏବେ, ରାମାନୁଜନ୍‌ଙ୍କ ଚିଠି ପାଇଲା ବେଳେ, ତାଙ୍କ ବ୍ୟକ୍ତିତ୍ୱ, ଦୃଷ୍ଟିକୋଣ ଓ ମୂଲ୍ୟବୋଧ ନିର୍ଦ୍ଦିଷ୍ଟ ରୂପ ନେଇ ସାରିଥିଲା।

ରାମାନୁଜନ୍ ହାର୍ଡିଙ୍କୁ କେବଳ ଜଣେ ଗଣିତଜ୍ଞ ଭାବରେ ଜାଣିଥିଲେ, ତାଙ୍କର ବ୍ୟକ୍ତିଗତ ଦିଗ ବିଷୟରେ କିଛି ଜାଣି ନ ଥିଲେ। 1913 ମସିହାରେ ପଇଁତିରିଶ ବର୍ଷ ବୟସରେ ହାର୍ଡି ବେଶ୍ ବିଖ୍ୟାତ ହୋଇ ସାରିଥିଲେ। ଏହା ପୂର୍ବର ପନ୍ଦର ବର୍ଷ ଭିତରେ ସେ 100ରୁ ବେଶି ଗାଣିତିକ ନିବନ୍ଧ ଓ ତିନିଟି ବହି ପ୍ରକାଶ କରିଥିଲେ। ଟ୍ରିନିଟି କଲେଜ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ତଥା ଇଂଲଣ୍ଡରେ ଗଣିତଜ୍ଞମାନଙ୍କ ପାଇଁ ସ୍ୱର୍ଗ ଭାବରେ ଗଣା ହେଉଥିଲା ଏବଂ ହାର୍ଡି ସେହି ଟ୍ରିନିଟି କଲେଜର ମର୍ଯ୍ୟାଦାବନ୍ତ ଫେଲୋ ଶ୍ରେଣୀଭୁକ୍ତ ହୋଇ ସାରିଥିଲେ। ବିଜ୍ଞାନ କ୍ଷେତ୍ରରେ ଇଂଲଣ୍ଡର ସବୁଠାରୁ ବେଶି ସମ୍ମାନଜନକ ଅନୁଷ୍ଠାନ ରୟାଲ ସୋସାଇଟିର ସଦସ୍ୟତା ମଧ୍ୟ 1910 ମସିହାରେ ତାଙ୍କୁ ମିଳି ସାରିଥିଲା। ତାଙ୍କର ଧର୍ମବିରୋଧୀ କାର୍ଯ୍ୟକଳାପ, କ୍ରିକେଟପ୍ରେମ ଓ ମଜାଳିଆ ବାକ୍‌ଚାତୁରୀ ଆଦିର ପଛରେ ତାଙ୍କର ଗଭୀର ଗାଣିତିକ ଅନୁସନ୍ଧିତ୍ସା ଲୁଚିରହିଥିଲା। ସେ ନିଜେ ଜଣେ ବିଚକ୍ଷଣ ଗଣିତଜ୍ଞ ଥିଲେ ଏବଂ ଅନ୍ୟ ବରିଷ୍ଠ ଗଣିତଜ୍ଞମାନଙ୍କ ଉପରେ ତାଙ୍କର ପ୍ରଭାବ ଗଭୀର ଥିଲା। ତାଙ୍କ କାମକୁ କେନ୍ଦ୍ର କରି ଗଣିତର ଏକ ସ୍ୱତନ୍ତ୍ର ବିଭାଗ ଗଢ଼ି ଉଠୁଥିଲା। ଗଣିତଜ୍ଞମାନଙ୍କର ବିଭିନ୍ନ ଅନୁଷ୍ଠାନରେ ସେ ସକ୍ରିୟ ରହୁଥିଲେ ଏବଂ ସେସବୁରେ ଅନେକ ଦାୟିତ୍ୱ ତୁଲାଉଥିଲେ। ସେ କହୁଥିଲେ, "ଗଣିତ ପ୍ରତି ମୋର ଅନୁରକ୍ତି ଅତି ଗଭୀର ଓ ଉଗ୍ର। ମୁଁ ଗଣିତରେ ବିଶ୍ୱାସ କରେ ଓ ତାକୁ ଭଲପାଏ। ଗଣିତ ବିନା ମୋ ଜୀବନ ଦୁର୍ବିସହ ହୋଇପଡ଼ିବ।" ଗଣିତ କ୍ଷେତ୍ରରେ ତାଙ୍କ ଗବେଷଣା ବିଷୟରେ ସେ କହୁଥିଲେ ଯେ, "ତାହା ହେଉଛି ମୋ ଜୀବନର ବିରାଟ ଓ ଚିରସ୍ଥାୟୀ ଆନନ୍ଦ।"

ହାର୍ଡି ଜଣେ ସୁନ୍ଦର ବକ୍ତା ଥିଲେ। ବାକ୍‌ଚାତୁରୀଭରା ତାଙ୍କ ଭାଷଣ ଉଦ୍ଦୀପକ ହେଉଥିଲା ଏବଂ ସେଥିରେ ଆହ୍ୱାନ ଓ ଦୃଢ଼ ମତ ରହୁଥିଲା। ସେ ପୂର୍ଣ୍ଣ ମାତ୍ରାରେ ସଚ୍ଚୋଟ ଥିଲେ ଏବଂ ଅନ୍ୟର କୃତିତ୍ୱ ପ୍ରତି ସମ୍ମାନ ଜଣାଉଥିଲେ। ଥରେ ଗୋଟିଏ ବିତର୍କରେ ସେ ମାନିନେଲେ ଯେ ଧର୍ମକୁ ସମର୍ଥନ କରୁଥିବା ତାଙ୍କ ବିପକ୍ଷ ଦଳର ଯୁକ୍ତି ତାଙ୍କ ଯୁକ୍ତିଠାରୁ ଭଲ ଥିଲା। ତାଙ୍କ କଥା ସବୁବେଳେ ମଜାଳିଆ ହେଉଥିଲା, କିନ୍ତୁ ସେଥିରେ ରହସ୍ୟ ଭରି ରହୁଥିଲା। କେଉଁଟା ଥଟ୍ଟା ଓ କେଉଁଟା ତାଙ୍କର ପ୍ରକୃତ ମତ ତାହା ଠିକ୍ ଭାବରେ ଜାଣିବା ସହଜ ନ ଥିଲା। ତାଙ୍କ ପାଇଁ ଏହା ଗୋଟିଏ ଖେଳ ଥିଲା ଯାହା ସେ ଖେଳିବା ପାଇଁ ଭଲ ପାଉଥିଲେ।

ବିଶିଷ୍ଟ ବିଜ୍ଞାନୀ ଓ ଲେଖକ ସି. ପି. ସ୍ନୋ ଥରେ କହିଥିଲେ ଯେ "ଆଇନ୍‌ଷ୍ଟାଇନଙ୍କ ସହିତ ଜଣେ ଯେତେ ବେଶି ସମୟ କଟାଇବ, ସେ ସେତେ ବେଶି ଅସାଧାରଣ ମନେ ହେବେ। କିନ୍ତୁ ହାର୍ଡିଙ୍କ ସହିତ ଅଧିକ ସମୟ କଟାଇଲେ ସେ ବେଶି ପରିଚିତ ଓ ସାଧାରଣ ଲାଗିବେ, ଜାଣିହେବ ଯେ ତାଙ୍କର ବାହ୍ୟ ରୂପ ତଳେ ଗୋଟିଏ ସରଳ, ନରମ ଓ ଦରଦୀ ମଣିଷ ଲୁଚି ରହିଛି।"

ମଧ୍ୟବୟସ୍କ ହାର୍ଡିଙ୍କର ଗୋଟିଏ ଚିତ୍ରରେ ସେ ବଡ଼ ବିଚିତ୍ର ଭଙ୍ଗୀରେ ବସିଥିବା ଦେଖାଯାଏ। ତାଙ୍କ ମନ ଯେ ହାଲୁକା ନାହିଁ ତା'ର ଆଭାସ ସେ ଚିତ୍ରରେ ଦେଖାଯାଏ। ପ୍ରକୃତରେ କୌଣସି

ବି ଫଟୋରେ ତାଙ୍କ ମନ ହାଲୁକା ଥିବା ଭଳି ଜଣାଯାଏନାହିଁ। ତାଙ୍କ ଚାହାଣିରେ ଉଦାସତା ବା ଦୁଃଶ୍ଚିନ୍ତାର ଛାପ ଥାଏ। ଛାନିଆ ହୋଇଥିବା ହରିଣ ଛୁଆର ଚାହାଣି ଭଳି ତାହା ମନେହୁଏ ବୋଲି ତାଙ୍କର ଜଣେ ସାଥି କହିଥିଲେ। ଅନେକ ସମୟରେ ଭୃଲତାକୁ କୁଞ୍ଚିତ କରି, ଓଠକୁ ଚାପି ରଖି, ଚଷମାର ଉପର ଦେଇ ସେ ଦୂରକୁ ଚାହିଁରହି ଏକ ଦାମ୍ଭିକ ଓ କଠୋର ମୂର୍ତ୍ତି ଭଳି ବସିରହନ୍ତି। କୌଣସି ବ୍ୟୟବହୁଳ ସମ୍ଭ୍ରାନ୍ତ ସ୍କୁଲରେ ପଢ଼ିଥିବା ଲୋକ ହିଁ ଏଭଳି ବସିପାରିବ ବୋଲି କେହି କେହି କହୁଥିଲେ।

ହାର୍ଡି ଅବଶ୍ୟ ସେଭଳି ସ୍କୁଲରେ ପଢ଼ିଥିଲେ। ଇଂଲଣ୍ଡର ସବୁଠାରୁ ଭଲ ଘରୋଇ ସ୍କୁଲର ସେ ଛାତ୍ର ଥିଲେ। କିନ୍ତୁ କୌଣସି ଧନୀ ବା ସମ୍ଭ୍ରାନ୍ତ ପରିବାରରୁ ଆସିଥିବାରୁ ସେ ଏଭଳି ସ୍କୁଲକୁ ବଂଶ ପରମ୍ପରା କ୍ରମେ ଆସି ନ ଥିଲେ। ହାର୍ଡିଙ୍କର ପରିବାର ସାଧାରଣ ବର୍ଗର ଥିଲେ। କହିବାକୁ ଗଲେ ରାମାନୁଜନ୍ଙ୍କ ପରିବାର ତୁଳନାରେ ହାର୍ଡି ଆହୁରି ତଳେ ଥିଲେ। କାରଣ ରାମାନୁଜନ୍ ଅନ୍ତତଃ ଉଚ୍ଚ ବ୍ରାହ୍ମଣ ଜାତିର ଥିବାବେଳେ ହାର୍ଡି ସାଧାରଣ ସ୍କୁଲ ଶିକ୍ଷକ ଘରର ପିଲା ଥିଲେ। ଭାରତରେ ଜାତି ଭଳି ଇଂଲଣ୍ଡରେ ସାମାଜିକ ଶ୍ରେଣୀ ଉପରେ ବିଶେଷ ଗୁରୁତ୍ୱ ଦିଆଯାଏ। ଜୀବନରେ ପ୍ରତିଷ୍ଠିତ ହେବା ପରେ ହାର୍ଡିଙ୍କୁ ଏକ ଉଦାହରଣ ଭାବରେ ବର୍ଣ୍ଣନା କରାଗଲା - ଇଂରେଜ ଶିକ୍ଷା ପ୍ରଣାଳୀ କିପରି ଜଣେ ସାଧାରଣ ମଣିଷର ବ୍ୟକ୍ତିଗତ ପ୍ରତିଭାକୁ ବିକଶିତ କରିପାରେ ତାହାର ଉଦାହରଣ। ହାର୍ଡିଙ୍କର ମେଧା ପ୍ରଥମରୁ ହିଁ ଅତି ସ୍ୱଷ୍ଟ ଭାବରେ ଜଣାପଡୁଥିଲା। ତାହା ଆଗରେ ଇଂରେଜ ଶ୍ରେଣୀ ବିଭାଗ ନରମି ଯାଇଥିଲା ଏବଂ ଉଚ୍ଚ ବର୍ଗର ପିଲାଙ୍କ ପାଇଁ ରହିଥିବା ସୁବିଧା ସୁଯୋଗ ହାର୍ଡିଙ୍କୁ ମିଳି ପାରିଥିଲା।

## 2. ହର୍ସସୁ ଲେନ୍

ରଗ୍‌ବି ସ୍କୁଲର ଟମାସ୍ ଆର୍ଣ୍ଣଓଲ୍‌ଡ୍‌ଙ୍କ ସଂସ୍କାର କାର୍ଯ୍ୟକ୍ରମ ଫଳରେ ଉନବିଂଶ ଶତାବ୍ଦୀର ଆରମ୍ଭ ବେଳକୁ ଇଂଲଣ୍ଡରେ 'ପବ୍ଲିକ ସ୍କୁଲ' ଏକ ଶକ୍ତିଶାଳୀ ସାମାଜିକ ଅନୁଷ୍ଠାନର ରୂପ ନେଇଥିଲା। ହାର୍ଡିଙ୍କ ସ୍କୁଲ ଯିବା ସମୟକୁ ଉଚ୍ଚ ଶ୍ରେଣୀର ପିଲାଙ୍କ ଦେହ, ମନ, ଚରିତ୍ର ଓ ଚାଲିଚଳଣି ଆଦିକୁ ମାର୍ଜିତ କରିବା ପାଇଁ ପବ୍ଲିକ ସ୍କୁଲ ମୁଖ୍ୟ ମାଧ୍ୟମ ଭାବରେ ଗଣା ଯାଉଥିଲା।

କିନ୍ତୁ ସମୟର ସ୍ରୋତରେ ଇଂଲଣ୍ଡ ମଧ୍ୟ ବଦଳୁଥିଲା। ମହାରାଣୀ ଭିକ୍ଟୋରିଆଙ୍କ ଚଉଷଠି ବର୍ଷର ଲମ୍ବା ରାଜତ୍ୱ ଭିତରେ କୃଷକ ଓ ବ୍ୟବସାୟୀ ଗୋଷ୍ଠୀରେ ଅନେକ ଧନିକ ସୃଷ୍ଟି ହେଲେ। ସେମାନେ ତାଙ୍କ ପିଲାଙ୍କୁ ଇଟନ୍ ବା ହ୍ୟାରୋ ଭଳି ସମ୍ଭ୍ରାନ୍ତ ଓ ବ୍ୟୟବହୁଳ ପବ୍ଲିକ ସ୍କୁଲରେ ପଢ଼ାଇପାରୁ ନ ଥିଲେ, କିନ୍ତୁ ଘର ପାଖର ସାଧାରଣ ସ୍କୁଲରେ ମଧ୍ୟ ପଢ଼ାଇବାକୁ ଚାହୁଁ ନ ଥିଲେ। ଏହି ସମସ୍ୟାର ସମାଧାନ ପାଇଁ କ'ଣ କରାଯାଇ ପାରିବ ୧୮୫୦ ଓ ୧୮୬୦ ଦଶକରେ ସେ ବିଷୟରେ ଅନେକ ବିଚାର ଚାଲିଲା। ସେମାନଙ୍କ ପାଇଁ କିଛି ନୂଆ ସ୍କୁଲ ମଧ୍ୟ ଏହି ସମୟରେ ବସାଗଲା।

ସେହି ନୂଆ ସ୍କୁଲ ଭିତରୁ ଗୋଟିଏ ଥିଲା କ୍ରାନ୍‌ଲେ ସ୍କୁଲ। ଲଣ୍ଡନର ଦକ୍ଷିଣ-ପଶ୍ଚିମକୁ ଥିବା ସରି ତାଲୁକରେ ଏହା ରହିଥିଲା। ୧୮୬୩ ମସିହାରେ ପ୍ରତିଷ୍ଠିତ ଏହି ସ୍କୁଲର ତଥ୍ୟ ପୁସ୍ତିକାରେ କୁହାଯାଇଥିଲା, "ଉଚ୍ଚ ବର୍ଗର ପିଲାମାନେ ମହାନ ପବ୍ଲିକ ସ୍କୁଲର ସୁବିଧା ପାଉଛନ୍ତି। ତଳ ଶ୍ରେଣୀର

ଲୋକଙ୍କ ପାଇଁ ଶିକ୍ଷା ବ୍ୟବସ୍ଥାର ଉନ୍ନତି ପାଇଁ ଅନେକ କିଛି କରାଯାଇଛି ଓ ଆହୁରି ଅଧିକ ପାଇଁ ଯୋଜନା ଚାଲିଛି। କିନ୍ତୁ କୃଷକ ଓ ବ୍ୟବସାୟୀଙ୍କ ପିଲାଙ୍କ ପାଇଁ ଉପଯୁକ୍ତ ଶିକ୍ଷାର ବ୍ୟବସ୍ଥା ହୋଇପାରିନାହିଁ। ଏପରିକି ବେଳେ ବେଳେ ମାଲିକର ପୁଅ ତୁଳନାରେ ତା'ର ମୁଲିଆର ପୁଅ ଭଲ ଶିକ୍ଷା ପାଉଛି।'' ସେତେବେଳେ ସରି କାଉଣ୍ଟି ସ୍କୁଲ ନାଁରେ ଜଣାଥିବା ଏହି ଅନୁଷ୍ଠାନ ଶିକ୍ଷା କ୍ଷେତ୍ରରେ ସେହି ଅସୁବିଧାକୁ ଦୂର କରିବାର ଲକ୍ଷ୍ୟ ରଖିଥିଲା। 1880 ମସିହା ବେଳକୁ ସେଠାରେ ନାଁ ଲେଖାଇଥିବା 113 ଜଣ ପିଲାଙ୍କ ଭିତରୁ 55 ଜଣ ଥିଲେ ବ୍ୟବସାୟୀଙ୍କ ପିଲା, 20 ଜଣ କିରାଣିଙ୍କର ଓ 14 ଜଣ କୃଷକଙ୍କର।

1871 ମସିହାରେ ସେହି ସ୍କୁଲରେ ଅଣତିରିଶ ବର୍ଷ ବୟସ୍କ ଆଇଜାକ୍ ହାର୍ଡି ଜଣେ ଶିକ୍ଷକ ଭାବରେ ଯୋଗ ଦେଲେ ଏବଂ ଭୂଗୋଳ ଓ ଚିତ୍ରାଙ୍କନ ପଢ଼ାଇବାର ଦାୟିତ୍ୱ ନେଲେ। 1875 ମସିହା ଜାନୁଆରି ମାସରେ ସେ ପାଖରେ ଥିବା ଅନ୍ୟ ଏକ ଅନୁଷ୍ଠାନର ବରିଷ୍ଠ ଶିକ୍ଷୟିତ୍ରୀ ସୋଫିଆ ହଲ୍‌ଙ୍କୁ ବିବାହ କଲେ ଓ ସ୍କୁଲ ବାହାରେ ଘର ନେଇ ରହିଲେ। ସୋଫିଆ ଆଇଜାକ୍‌ଙ୍କଠାରୁ ତିନି ବର୍ଷ ସାନ ଥିଲେ। 1877 ମସିହା ଫେବୃଆରି 7 ତାରିଖରେ ତାଙ୍କର ପୁଅଟିଏ ଜନ୍ମ ହେଲା ଯାହାର ନାଁ ରହିଲା ଗଡ୍‌ଫ୍ରି ହାରଲ୍ଡ୍ ହାର୍ଡି। ଦୁଇ ବର୍ଷ ପରେ ଗଡ୍‌ଫ୍ରିଙ୍କର ଭଉଣୀ ଗେର୍‌ଟ୍ରୁଡ୍ ଏଡିଥ୍ ଜନ୍ମ ହେଲେ। ଦୁଇ ହଜାର ଜନସଂଖ୍ୟାର କ୍ରାନ୍‌ଲେ ଗାଁର ଶେଷ ମୁଣ୍ଡରେ ଆଇଜାକ୍‌ଙ୍କ ସ୍କୁଲର ଆଗରେ ଏହି ଦୁଇ ପିଲା ବଢ଼ିବାରେ ଲାଗିଲେ।

ସରିର ଦକ୍ଷିଣ ସୀମାରେ ଟେମ୍ସ୍ ନଦୀ ବହୁଥିଲା। ଆହୁରି ପୂର୍ବକୁ ଗଲା ପରେ ସେହି ନଈ ଲଣ୍ଡନ ସହର ଭିତରେ ଅଙ୍କାବଙ୍କା ହୋଇ ଆଗେଇଥିଲା। 1840 ଦଶକରେ ଲଣ୍ଡନରୁ ବିଭିନ୍ନ ଜାଗାକୁ ରେଳରାସ୍ତା ଖୋଲିଲା ଏବଂ ଆଖପାଖ ଅଞ୍ଚଳ ଅତି ବେଗରେ ବିକଶିତ ହେବାକୁ ଲାଗିଲା। ଏହାର ପ୍ରଭାବରେ ଚାଳିଶ ବର୍ଷରେ ସରି ତାଲୁକର ଜନସଂଖ୍ୟା ଦୁଇଗୁଣ ହୋଇ 3,42,000ଛୁଇଁଲା। ଏଭଳି ବୃଦ୍ଧି ସେଠାରେ ଆଗରୁ କେବେ ଦେଖାଯାଇ ନ ଥିଲା। 1865 ମସିହା ବେଳକୁ କ୍ରାନ୍‌ଲେ ଓ ଲଣ୍ଡନ ଭିତରେ ରେଳରାସ୍ତାରେ ମାତ୍ର ଚାଳିଶ ମାଇଲର ଦୂରତା ରହିଲା। ତଥାପି ତାଲୁକର ଶେଷ ମୁଣ୍ଡରେ ଥିବାରୁ କ୍ରାନ୍‌ଲେ ଦ୍ରୁତ ବିକାଶ ଓ ଜନସଂଖ୍ୟା ବୃଦ୍ଧିର ପ୍ରଭାବରୁ ପ୍ରାୟ ମୁକ୍ତ ରହିଥିଲା। ହାର୍ଡିଙ୍କ ପିଲାଦିନେ ସେଠାର ପରିବେଶ ପ୍ରାକୃତିକ ଅବସ୍ଥାରେ ରହିଥିଲା। ଆଖି ପାଉଥିଲା ଯାଏଁ ଚାରିଦିଗରେ ସବୁଜ ପଡ଼ିଆ ବ୍ୟାପିଥିଲା। ତା ଭିତରେ ସରୁ ମାଟି ରାସ୍ତା, ପୁରୁଣା ଜମିଦାରିଆ ଘର, ପବନ କଳ ଓ କିଛି ଛୋଟ ଚାଳଘର ଖେଳାଇ ହୋଇ ରହିଥିଲା। ମୋଟ ଉପରେ ଦେଖିଲେ ତାହା ଥିଲା ଏକ ଶାନ୍ତ ଗ୍ରାମ୍ୟ ପରିବେଶର ଚିତ୍ର।

ହାର୍ଡିଙ୍କ ବାପାମା ସରିର ମୂଳ ବାସିନ୍ଦା ନ ଥିଲେ। ତାଙ୍କର ଘର ଥିଲା 150 ମାଇଲ ଦୂରରେ। ଆର୍ଥିକ ଅସୁବିଧା ହେତୁ ସେମାନେ ବିଶ୍ୱବିଦ୍ୟାଳୟ ଶିକ୍ଷା ପାଇ ନ ଥିଲେ। ଆଇଜାକ୍ ହାର୍ଡିଙ୍କ ବାପା ଜଣେ ଶ୍ରମିକ ଥିଲେ। ସୋଫିଆଙ୍କ ବାପା ପ୍ରଥମେ କାରାଗାର ରକ୍ଷକ ଭାବରେ କାମ କରୁଥିଲେ, ପରେ ସେ ପାଉଁରୁଟି ତିଆରି ପେସା ଧରିଥିଲେ। ଆଇଜାକ୍ ଓ ସୋଫିଆ ଦୁହେଁ ମେଧାବୀ ଥିଲେ ଏବଂ ଜୀବନରେ ଅଧିକ ଆଗେଇବା ପାଇଁ ଆକାଂକ୍ଷା ରଖିଥିଲେ। ବୌଦ୍ଧିକ ବୃତ୍ତିର ତଳ ସ୍ତରରେ ହେଲେ ମଧ୍ୟ ସ୍କୁଲ ଶିକ୍ଷକ ହେବାରେ ଦୁହେଁ ସନ୍ତୋଷ ପାଉଥିଲେ।

ସି. ପି. ସ୍ନୋ ଲେଖିଥିଲେ ଯେ ଆଇଜାକ୍ ହାର୍ଡି ଜଣେ ନମ୍ର ଓ କୋମଳ ହୃଦୟର ମଣିଷ ଥିଲେ। କିଛି ମାତ୍ରାରେ ଅପାରଗ ଥିଲେ ମଧ୍ୟ ସେ ଅସମୟରେ ସାହାଯ୍ୟ କରିବା ପାଇଁ ଆଗେଇ ଆସୁଥିଲେ। ସେ ମାର୍ଜିତ ସୌନ୍ଦର୍ଯ୍ୟବୋଧର ଅଧିକାରୀ ଥିଲେ ଏବଂ ଜୀବନ ପ୍ରତି ତାଙ୍କର ମନୋଭାବ ଉତ୍ସାହପୂର୍ଣ୍ଣ ଥିଲା। ମୋଟ ଉପରେ ଦେଖିଲେ ସେ ଜଣେ ସୁଖୀ ମଣିଷ ଥିଲେ। ସେ ଜଣେ ଭଲ ଗାୟକ ଥିଲେ ଏବଂ କ୍ରାନ୍‌ଲେକୁ ଆସିବା ପରେ ସେ ସପ୍ତାହକୁ ଦୁଇଥର ଗୀତ ଶିଖାଇଲେ। ସ୍କୁଲ ପତ୍ରିକାର ସମ୍ପାଦନା କରିବା ସହିତ ସେ ଫୁଟ୍‌ବଲ ମଧ୍ୟ ଖେଳୁଥିଲେ ଏବଂ ବିଭିନ୍ନ ସାମାଜିକ ଅନୁଷ୍ଠାନରେ ସକ୍ରିୟ ଥିଲେ। ବୃତ୍ତିଗତ ଆଗ୍ରହରୁ ସେ ରୟାଲ ଜିଓଗ୍ରାଫିକ୍ ସୋସାଇଟିର ସଦସ୍ୟ ହୋଇଥିଲେ। ଅଣଷଠି ବର୍ଷ ବୟସରେ ତାଙ୍କର ଯେବେ ମୃତ୍ୟୁ ହେଲା ସେଠାରେ ଗଭୀର ଶୋକର ଛାୟା ଖେଳିଗଲା ଏବଂ ମୁଖ୍ୟ ରାସ୍ତାରେ ଦୋକାନବଜାର ବନ୍ଦ ହୋଇଗଲା। ସ୍କୁଲର ପ୍ରଧାନ ଶିକ୍ଷକଙ୍କ ଭାଷାରେ ସେ ଥିଲେ ଏପରି ଜଣେ ବିରଳ ମଣିଷ ଯିଏ କେବେ ବି କାହାକୁ କଟୁ କଥା କହିନାହିଁ, କାହାକୁ ଆଘାତ ଦେଇନାହିଁ, କାହା ସହିତ ଶତ୍ରୁତା କରିନାହିଁ। କେହି ହୁଏତ ଏହାକୁ ଭାବପ୍ରବଣ ଅତିରଞ୍ଜନ କହିପାରେ, କିନ୍ତୁ ହାରଲ୍‌ଡ୍ ସାନ ହୋଇଥିବା ବେଳେ ନିଆ ଯାଇଥିବା ଗୋଟିଏ ଫଟୋରେ ଆଇଜାକ୍‌ଙ୍କ ଚେହେରାରେ ଏହି ବର୍ଣ୍ଣନା ପୂର୍ଣ୍ଣ ମାତ୍ରାରେ ପ୍ରତିଫଳିତ ହେଉଥିଲା।

ସୋଫିଆଙ୍କର ଚିତ୍ର କିନ୍ତୁ ପ୍ରାୟ ବିପରୀତ ଥିଲା। ସେହି ସମୟର ଗୋଟିଏ ଫଟୋରେ ସୋଫିଆ ଏକ ଅଳଙ୍କୃତ ପୋଷାକ ପିନ୍ଧିଛନ୍ତି, ଖୋସା ମୁଣ୍ଡ ଉପକୁ ରହିଛି, ଓଠ ଚିପି ହୋଇଛି ଏବଂ ଆଖିରେ ଚମକି ପଡ଼ିଲା ଭଳି ଚାହାଣି ରହିଛି। ସେହି ଚାହାଣି ତାଙ୍କ ପୁଅଙ୍କଠାରେ ପରେ ଦେଖାଯାଇଥିଲା। ରାମାନୁଜନ୍‌ଙ୍କ ମା'ଙ୍କ ଭଳି ସେ ମଧ୍ୟ ବେଶ୍ ଧାର୍ମିକ ଥିଲେ ଏବଂ ରବିବାର ଦିନ ହାରଲ୍‌ଡ୍ ଓ ଗେର୍‌ଟ୍ରୁଡ୍‌ଙ୍କୁ ଦୁଇ ତିନି ଥର ଗୀର୍ଜାକୁ ଘୋଷାଡୁଥିଲେ। ସେ ଯେବେ ତାଙ୍କର ଶିକ୍ଷୟିତ୍ରୀ ଚାକିରି ଛାଡ଼ିଲେ ସ୍କୁଲ ତରଫରୁ ତାଙ୍କୁ ଉଚ୍ଚ ସ୍ତରର ଧାର୍ମିକ ଚଳଣି ପାଇଁ ସାଧୁବାଦ ଦିଆଗଲା, କାରଣ ଏହା ତାଙ୍କ ଛାତ୍ରମାନଙ୍କ ଉପରେ ଭଲ ପ୍ରଭାବ ପକାଇଥିଲା। ତାଙ୍କର ସଫଳ ଗଣିତ ଶିକ୍ଷା ପାଇଁ, ଛାତ୍ରମାନଙ୍କ ପ୍ରତି ବ୍ୟବହାରରେ କଠୋରତା ଓ ଦୟାର ସନ୍ତୁଳନ ପାଇଁ ଏବଂ ଶାନ୍ତ ଭାବରେ ଛାତ୍ରମାନଙ୍କ ଉପରେ କର୍ତ୍ତୃତ୍ୱ ଜାହିର କରୁଥିବା ପାଇଁ ସ୍କୁଲ ତାଙ୍କୁ ଧନ୍ୟବାଦ ଦେଇଥିଲା। ଏହି ସବୁ ଦିଗ ମିଳାଇ ଦେଖିଲେ ସୋଫିଆ ଜଣେ କଠୋର, ନୀତିବତୀ ଏବଂ ଦକ୍ଷ ମହିଳା ହୋଇଥିବାର ଧାରଣା ମିଳେ।

ସ୍ୱାମୀ ସ୍ତ୍ରୀ ଦୁହେଁ ସାଂସ୍କୃତିକ କାର୍ଯ୍ୟକଳାପରେ ଆଗ୍ରହୀ ଥିଲେ। ନିଜ ନିଜର ସାମାଜିକ ସ୍ତରରୁ ଉଠି ସେମାନେ ଶିକ୍ଷା ଓ ସଂସ୍କୃତିର ଦୁନିଆକୁ ଆଦରି ନେଇଥିଲେ। ଏବେ ସେମାନେ ତାଙ୍କ ପିଲାମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବା ପାଇଁ ଯୋଜନା ଆରମ୍ଭ କଲେ। ସେମାନେ ଚାହୁଁଥିଲେ ଯେ ଅନ୍ତତଃ ତାଙ୍କର ବୌଦ୍ଧିକ ସମ୍ବେଦନଶୀଳତା ପିଲାମାନଙ୍କ ମନରେ ବିକଶିତ ହେଉ।

1891 ମସିହା ମେ ମାସରେ ଗେର୍‌ଟ୍ରୁଡ୍ ପାଞ୍ଚ ମାଇଲ ଦୂରରେ ଥିବା ସେଣ୍ଟ କାଥେରିନ୍ ସ୍କୁଲରେ ପଢ଼ିଲେ। ସେ ଜଣେ ଭଲ ଛାତ୍ରୀ ଥିଲେ, ଚିତ୍ରାଙ୍କନ ଓ ଲାଟିନ ଭାଷାରେ ଦକ୍ଷତା ପାଇଁ ପୁରସ୍କାର

ପାଇଥିଲେ। ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ବି.ଏ. ପାସ କଲାପରେ 1903 ମସିହାରେ ସେ ତାଙ୍କ ପୁରୁଣା ସ୍କୁଲରେ ଜଣେ କଳା ଶିକ୍ଷୟିତ୍ରୀ ଭାବରେ ଯୋଗଦେଲେ। ସେହି ପଦବୀରେ ସେ ପ୍ରାୟ ତାଙ୍କ ଜୀବନର ଅଧିକାଂଶ ସମୟ କଟାଇଥିଲେ। 1926 ମସିହାରେ ସେ ସ୍କୁଲ ପତ୍ରିକାର ସମ୍ପାଦନା ଦାୟିତ୍ୱ ନେଲେ ଏବଂ ସେଥିରେ ଅତି ଉଚ୍ଚକୋଟୀର କବିତା, ଗଳ୍ପ ଓ ପ୍ରବନ୍ଧମାନ ପ୍ରକାଶ କରିବାରେ ଲାଗିଲେ। ତାଙ୍କର ସମ୍ପାଦକୀୟଗୁଡ଼ିକ ସୁନ୍ଦର ଥିଲା। ସାହିତ୍ୟିକ ଓ ବୌଦ୍ଧିକ ଉପମାଭରା ନିଜର କବିତା ସବୁରେ ଶିକ୍ଷାର ଦୁନିଆରେ ତାଙ୍କର ସ୍ୱାଚ୍ଛନ୍ଦ୍ୟ ଓ ଶିକ୍ଷା ପ୍ରତି ତାଙ୍କର ଆଗ୍ରହ ଅତି ମାତ୍ରାରେ ପ୍ରତିଫଳିତ ହେଉଥିଲା। ଭଲ ପଢୁ ନ ଥିବା କିଛି ପିଲାମାନଙ୍କର ବଡ଼ିମାକୁ ବ୍ୟଙ୍ଗ କରି ସେ କିଛି କବିତା ମଧ୍ୟ ଲେଖୁଥିଲେ।

ତାଙ୍କ ପିଲାଙ୍କୁ ବଢ଼ାଇବା ଦିଗରେ ହାର୍ଡି ଦମ୍ପତି ବିଶେଷ ଯତ୍ନବାନ ଥିଲେ ଏବଂ ଶିକ୍ଷା ଓ ଚଳଣି ବିଷୟରେ ତାଙ୍କର ନିର୍ଦ୍ଦିଷ୍ଟ ମତକୁ ଜାହିର କରି ଚାଲିଥିଲେ। ପିଲା ଦୁହିଁଙ୍କ ଦେଖାଶୁଣା କରିବାର ଦାୟିତ୍ୱ ସେମାନେ କେଉଁ ବାହାର ଲୋକ ଉପରେ ଛାଡ଼ି ନ ଥିଲେ, କେବଳ ଲେଖାପଢ଼ା ଶିଖାଇବା ପାଇଁ ଜଣେ ଶିକ୍ଷୟିତ୍ରୀ ରଖିଥିଲେ। ପିଲାଙ୍କୁ ସେମାନେ ବଛା ବଛା ଭଲ ବହି ଦେଉଥିଲେ। ହାରଲ୍ଡ୍ ଡନ୍ କିହୋଟେ ଓ ଗଲିଭର କାହାଣୀ ପଢ଼ି ଭଉଣୀକୁ ଶୁଣାଉଥିଲେ। ଭଙ୍ଗା ଖେଳନା ନେଇ ଖେଳିବା ପିଲାଙ୍କ ପାଇଁ ମନା ଥିଲା। ଏହିଭଳି ଅନେକ ଭଲମନ୍ଦର କଠୋର ବିଚାର ଭିତରେ ହାର୍ଡି ପିଲାମାନେ ବଢୁଥିଲେ।

ଦୁଇବର୍ଷ ବୟସରେ ହାରଲ୍ଡ୍ କୋଟିଏ ଯାଏଁ ସଂଖ୍ୟା ଲେଖିପାରୁଥିଲେ ଯାହା ଗଣିତ ଦକ୍ଷତାର ଏକ ମାପକ ଥିଲା। ଗୀର୍ଜାରେ ପ୍ରାର୍ଥନା ସମୟରେ ପ୍ରାର୍ଥନାର କ୍ରମସଂଖ୍ୟାରେ ଗଣିତ କରୁଥିଲେ। 84 ନମ୍ବର ପ୍ରାର୍ଥନା ତାଙ୍କ ପାଇଁ ଥିଲା 2x2x3x7। ସ୍କୁଲରେ ହାରଲ୍ଡ୍ ସାଧାରଣ ଗଣିତ ଶ୍ରେଣୀରେ ବସୁ ନ ଥିଲେ, ଗଣିତ ବିଭାଗର ମୁଖ୍ୟ ଇଉଷ୍ଟେସ୍ ଟମାସ କ୍ଲାର୍କ ତାଙ୍କୁ ଅଲଗା ପଢାଉଥିଲେ। କେମ୍ବ୍ରିଜର ସେଣ୍ଟ ଜନ୍ କଲେଜରୁ ଜଣେ ଉଚ୍ଚ ବର୍ଗର ଗଣିତ ଛାତ୍ର ଭାବରେ ପାସ୍ କଲା ପରେ କ୍ଲାର୍କ ଆସି କ୍ରାନ୍‌ଲେ ସ୍କୁଲରେ ଯୋଗ ଦେଇଥିଲେ। ଗଣିତ ଦକ୍ଷତା ସାଙ୍ଗକୁ କାମ ପାଇଁ ସେ ପ୍ରଚୁର ଶକ୍ତି ଓ ଉତ୍ସାହ ଦେଖାଉଥିଲେ ଏବଂ ତାଙ୍କର ଏହି ଗୁଣ ସେ ପିଲାଙ୍କ ମନରେ ଭରିବାକୁ ଚେଷ୍ଟା କରୁଥିଲେ।

ଗଣିତ ଭଳି ଅନ୍ୟ ସବୁ ବିଷୟରେ ହାର୍ଡି ବିଶେଷ ଦକ୍ଷତା ଦେଖାଉଥିଲେ। କିନ୍ତୁ ତାଙ୍କ ମନରେ ଥିବା ଅସ୍ଥିରତା ଓ ଡର ତାଙ୍କ ଦକ୍ଷତା ପ୍ରଦର୍ଶନରେ କିଛି ବାଧା ଦେଉଥିଲା। ସେ ଅତି ମାତ୍ରାରେ ଲାଜକୁଳା ଓ ଆତ୍ମସଚେତନ ଥିଲେ। ସଭାରେ ଆଗକୁ ଯାଇ ପୁରସ୍କାର ଆଣିବା ତାଙ୍କ ପାଇଁ କଷ୍ଟକର କଥା ଥିଲା। ଏହାକୁ ଏଡ଼ାଇବା ପାଇଁ ସେ ବେଳେ ବେଳେ ଭୁଲ ଉତ୍ତର ଦେଉଥିଲେ। ସାଥୀ ସ୍ନୋ କହୁଥିଲେ ଯେ ହାର୍ଡିଙ୍କର ମାନସିକତା ଅତ୍ୟଧିକ ଭାବରେ ନରମ ଥିଲା।

ତାଙ୍କ ଭଉଣୀ ମଧ୍ୟ ସେହିଭଳି ଥିଲେ। ତାଙ୍କର ଜଣେ ଛାତ୍ର କହିଥିଲେ ଯେ ଗେର୍‌ଟ୍ରୁଡ୍ ଲାଜକୁଳୀ ଓ କିଛି ମାତ୍ରାରେ ଭୟାଳୁ ଥିଲେ। ଗେର୍‌ଟ୍ରୁଡ୍ ନିଜେ ମନେପକାନ୍ତି ଯେ ସେଣ୍ଟ କାଥେରିନ୍ ସ୍କୁଲରେ ପଢ଼ିବାକୁ ଯିବାବେଳେ ସେ ଖୁବ୍ ଲାଜକୁଳୀ ଥିଲେ। ଯେଉଁ ପରିବେଶ ଭିତରେ ସେ ବଢ଼ିଥିଲେ ତାହା ସେ ବୟସର ଝିଅଙ୍କ ସ୍କୁଲରେ ପଢ଼ିବା ପାଇଁ ତାଙ୍କୁ ଉପଯୁକ୍ତ ପ୍ରସ୍ତୁତି ଦେଇ

ନ ଥିଲା। ସେହି ପରିବେଶ ଉଭୟ ପିଲାଙ୍କୁ ପ୍ରଭାବିତ କରିଥିଲା – ଦୁହେଁ ଆଜୀବନ ଅବିବାହିତ ରହିଥିଲେ, ଦୁହେଁ ଶିକ୍ଷା କ୍ଷେତ୍ରରେ ଜୀବନ ବିତାଇଥିଲେ। ଦୁହେଁ କୋମଳମନା ଥିଲେ ଏବଂ ବୌଦ୍ଧିକ ଉତ୍କର୍ଷ ଦୁହିଁଙ୍କ ପାଇଁ ଆକର୍ଷଣୀୟ ଥିଲା। ଆହୁରି ମଧ୍ୟ ଦୁହେଁ ଧର୍ମ ପ୍ରତି ବିମୁଖ ଥିଲେ - ଧର୍ମ ଉପରେ ମା'ଙ୍କର ଅତ୍ୟଧିକ ଜୋର ପ୍ରତି ଏହା ବୋଧହୁଏ ସେମାନଙ୍କର ପ୍ରତିକ୍ରିୟା ଥିଲା।

ପିଲାଦିନେ ମଧ୍ୟ ହାର୍ଡି ଜଣେ ନାସ୍ତିକ ଥିଲେ। ଥରେ କୁହୁଡ଼ିଆ ପାଗରେ ହାର୍ଡି ଜଣେ ପାଦ୍ରୀଙ୍କ ସାଙ୍ଗରେ ଚାଲିକରି ଯାଉଥିଲେ। ବାଟରେ ପିଲାଟିଏ ଖଣ୍ଡେ ବାଡ଼ି ଓ କିଛି ସୂତା ଧରି ଛିଡ଼ା ହୋଇଥିଲା। ପିଲାଟି ଗୁଡ଼ି ଉଡ଼ାଉଛି ଭାବି ପାଦ୍ରୀ ଜଣକ କହିଲେ ଯେ ଉଡୁଥିବା ଗୁଡ଼ିକୁ ଦେଖିହେଉନାହିଁ, କିନ୍ତୁ ସୂତାକୁ ଟାଣୁଥିବାରୁ ତା'ର ଉପସ୍ଥିତିକୁ ଜାଣିହେଉଛି। ଠିକ୍ ସେହିଭଳି ଦେଖିହେଉ ନ ଥିଲେ ବି ଭଗବାନଙ୍କ ଉପସ୍ଥିତି ସବୁଠାରେ ରହିଛି। ହାର୍ଡି କିନ୍ତୁ ମନେ ମନେ କହିଲେ ଯେ ଏବେ ପବନ ନାହିଁ ତେଣୁ ଗୁଡ଼ି ଉଡ଼ିପାରିବନାହିଁ। ଗେର୍‌ଟ୍ରୁଡ୍‌ଙ୍କ ମନୋଭାବ ମଧ୍ୟ ସେହିଭଳି ଥିଲା। ବୁଢ଼ୀ ବୟସରେ ସେବାଘରେ ପଡ଼ିଥିବା ବେଳେ ଗେର୍‌ଟ୍ରୁଡଙ୍କୁ ତାଙ୍କ ଧର୍ମ ବିଷୟରେ ପଚରା ଗଲା। ସେ ଉତ୍ତର ଦେଲେ ଯେ ସେ ମୁସଲମାନ ଏବଂ ପାଖରେ ମସ୍‌ଜିଦ ନାହିଁ ବୋଲି ଦୁଃଖ କଲେ। ତାଙ୍କ ଠକାମିକୁ ସତ ମନେ କରାଇବା ପାଇଁ ସେ ପ୍ରାର୍ଥନା ଗାଲିଚା ଖଣ୍ଡେ ମଧ୍ୟ ଖୋଜିବାରେ ଲାଗିଲେ।

1920 ମସିହାରେ ନିଆଯାଇଥିବା ସେଣ୍ଟ କାଥେରିନ୍ ସ୍କୁଲର ଶିକ୍ଷକ ଶିକ୍ଷୟିତ୍ରୀଙ୍କ ଏକ ଫଟୋରେ ଗେର୍‌ଟ୍ରୁଡ୍ ବା ଗେର୍ଟିଙ୍କର ଏକ ବିଶେଷତା ଦେଖାଯାଏ। ସେଥିରେ ସମସ୍ତେ ସିଧା ଆଗକୁ ଚାହିଁଥିବା ବେଳେ ଗେର୍ଟି ବାମକୁ ମୁହଁ ବୁଲାଇ ଥିଲେ। ତେଣୁ ତାଙ୍କର ଏହି କଡ଼ୁଆ ଫଟୋରେ ମୁହଁର କେବଳ ଡାହାଣ ପଟ ଦେଖାଯାଉଥିଲା ଓ ବାମ ପଟ ଲୁଚି ରହିଥିଲା। ପିଲାଦିନେ ଖେଳିଲା ବେଳେ ହାରଲ୍‌ଡ୍‌ଙ୍କ କ୍ରିକେଟ ବ୍ୟାଟ ଥରେ ଗେର୍ଟିଙ୍କ ମୁହଁରେ ପିଟି ହୋଇଥିଲା। ଏହା ଫଳରେ ତାଙ୍କ ବାମ ଆଖିଟି ନଷ୍ଟ ହୋଇ ଯାଇଥିଲା ଓ ଜୀବନ ସାରା ସେ ଗୋଟିଏ କାଚ ଆଖି ଲଗାଉଥିଲେ। ଏହି ଦୁର୍ଘଟଣା କିନ୍ତୁ ଭାଇ-ଭଉଣୀଙ୍କ ଅନ୍ତରଙ୍ଗତାରେ ବାଧା ଆଣି ନ ଥିଲା, ହୁଏତ ତାକୁ ବଢ଼ାଇଥିଲା। ଜୀବନ ସାରା ସେମାନେ ପରସ୍ପର ପ୍ରତି ଗଭୀର ଭାବରେ ଅନୁରକ୍ତ ଥିଲେ ଏବଂ ଯୋଗାଯୋଗ ରଖିଥିଲେ। ଅନେକ ବର୍ଷ ଧରି ଲଣ୍ଡନରେ ସେ ଦୁହେଁ ଏକାଠି ରହୁଥିଲେ।

1880 ମସିହାରେ ହାର୍ଡି ତିନି ବର୍ଷର ହୋଇଥିଲା ବେଳେ କ୍ରାନଲେ ସ୍କୁଲ ତା'ର ଚବିଶ ଜଣ ଅଳ୍ପ ବୟସର ଛାତ୍ରଙ୍କୁ ଆବାସିକ ପ୍ରାକ୍-ପ୍ରାଥମିକ ଶିକ୍ଷା ଦେବା ପାଇଁ ଠିକ୍ କଲା। ଏଥିପାଇଁ ଗୋଟିଏ ଅଲଗା ଘରର ବ୍ୟବସ୍ଥା କରାଗଲା ଓ ହାର୍ଡି ଦମ୍ପତି ଏହାର ଦାୟିତ୍ୱରେ ରହିଲେ। ମୂଳ ସ୍କୁଲର ସାମନାରେ ଗୋଜିଆ ଛାତ ଥିବା ଗୋଟିଏ ବଡ଼ ଘରେ ଏହା ଚାଲିଲା। ହାର୍ଡି ପରିବାର ତାହା ପାଖରେ ଗୋଟିଏ ଛୋଟ ଦୁଇ ମହଲା ଘର ନେଇ ରହିଲେ। ଘରଟିର ନାଁ 'ମାଉଣ୍ଟ ପ୍ଲେଜାଣ୍ଟ' ରଖାଗଲା। 1881 ମସିହାର ଜନଗଣନା ଦଲିଲରୁ ଜଣାଯାଏ ଯେ ସେତେବେଳେ ଏହି ଘରେ ହାର୍ଡି ପରିବାର ସହିତ ଆଉ କେତେ ଜଣ ରହୁଥିଲେ। ସେମାନେ ଥିଲେ - ଘର କାମରେ ସାହାଯ୍ୟ କରୁଥିବା ତିରିଶ ବର୍ଷ ବୟସ୍କା ଏଲିଜା ଡେଣ୍ଟନ୍; ବାଇଶ ବର୍ଷୀୟା କାଥେରିନ୍ ମେନାର୍ଡ ଯିଏ ବୋଧହୁଏ ପିଲାଙ୍କର ଦେଖାଶୁଣା କରୁଥିଲେ ଏବଂ ଦୁଇ ଜଣ ପରିଚାରିକା – ଅଠର ବର୍ଷିଆ

ଆଲିସ୍ ଲି ଓ ଅଠତିରିଶ ବର୍ଷ ବୟସ୍କା ବିଧବା ମହିଳା ଲରା ସାଣ୍ଡଲର୍। ଏହିଭଳି ଆଠ ଜଣ ଲୋକ ସେହି ଛୋଟ ଘରେ ଖୁନ୍ଦାଖୁନ୍ଦି ହୋଇ ରହୁଥିଲେ। ଏହା କିନ୍ତୁ ସେଠାରେ ସେ ସମୟରେ ସାଧାରଣ କଥା ଥଲା। ହାର୍ଡିଙ୍କ ପାଖର ଏକାଭଳି ଘରେ ଗୋଟିଏ ଦଶ ଜଣିଆ କୃଷକ ପରିବାର ରହୁଥିଲେ। ପରିବାରର ଉପାର୍ଜନ ବଢ଼ାଇବା ପାଇଁ ବୋଧହୁଏ ହାର୍ଡି ସେମାନଙ୍କୁ ରଖିଥିଲେ। ଦିନ ବେଳେ ସମସ୍ତେ ନିଜ ନିଜ କାମକୁ ଚାଲି ଯାଉଥିଲେ, ତେଣୁ ହାରଲ୍ଡ୍, ଗେରଟ୍ରୁଡ୍ ଓ କାଥେରିନ୍‌ଙ୍କ ପାଇଁ ପୂରା ଘରଟି ମିଳି ଯାଉଥିଲା।

ହାର୍ଡିଙ୍କ ଘର ପାଖରେ ରହୁଥିବା ଅଧିକାଂଶ ଲୋକ କୃଷକ ବା ଶ୍ରମିକ ଥିଲେ। ପାଞ୍ଚ ଛ' ପିଲା ଥିବା ଏହି ପରିବାରଗୁଡ଼ିକ ତୁଳନାରେ ହାର୍ଡି ଭଲରେ ଚଳୁଥିଲେ। କିନ୍ତୁ ସେ ଯେ ଅତି ଭଲରେ ଥିଲେ ତାହା କୁହାଯାଇପାରିବନାହିଁ। ତାଙ୍କ ସ୍କୁଲର ପ୍ରଧାନ ଶିକ୍ଷକ ବର୍ଷକୁ 1000 ପାଉଣ୍ଡ ଦରମା ପାଉଥିଲେ। ସେତେବେଳେ ଜଣେ ସାଧାରଣ ଶ୍ରମିକର ବାର୍ଷିକ ଆୟ ଥିଲା ଷାଠିଏ-ସତୁରି ପାଉଣ୍ଡ ଓ ଉଚ୍ଚ-ମଧ୍ୟବିତ୍ତ ବ୍ୟକ୍ତିର 300 ପାଉଣ୍ଡ। ବରିଷ୍ଠ ସ୍କୁଲ ଶିକ୍ଷକ ପାଉଥିଲେ ବର୍ଷକୁ 100 ପାଉଣ୍ଡ ଏବଂ ସହକାରୀ ଶିକ୍ଷକ ହାର୍ଡି ପାଉଥିଲେ ତା'ଠାରୁ ବି କମ୍।

ହାର୍ଡି ପିଲାମାନେ ବିଧିବଦ୍ଧ ଭିକ୍ଟୋରୀୟ ଧାରାରେ ବଢ଼ିଥିଲେ। ଛଅ ବର୍ଷ ବୟସର ହାରଲ୍ଡ୍‌ଙ୍କର ଗୋଟିଏ ଫଟୋରେ ସେ ଭିକ୍ଟୋରୀୟ ନାବିକ ପୋଷାକ ପିନ୍ଧି ବସିଥିବାର ଦେଖାଯାଏ। କିନ୍ତୁ ପଛୁଆ ଅଞ୍ଚଳର ସାଧାରଣ ସ୍କୁଲରେ ପଢୁଥିବା ପିଲା କେବଳ ସେହି ପୋଷାକ ବା ଚଳଣି ବଳରେ ନାମଜାଦା ପବ୍ଲିକ ସ୍କୁଲର ପିଲାଙ୍କ ସମକକ୍ଷ ହୋଇପାରିବନାହିଁ। ବାସ୍ତବରେ କ୍ରାନ୍‌ଲେ ସ୍କୁଲର ବାତାବରଣ ପବ୍ଲିକ ସ୍କୁଲ ତୁଳନାରେ ବହୁତ ଅଲଗା ଥିଲା। ଇଚ୍ଛା ଅନୁସାରେ ବୁଲିବାର ସ୍ୱାଧୀନତା କ୍ରାନ୍‌ଲେ ସ୍କୁଲର ପିଲାମାନେ ପାଉଥିଲେ। ସେଠାରେ 1884 ମସିହା ଯାଏଁ ଶିକ୍ଷକମାନେ ପିଲାଙ୍କ ସହିତ ମିଶି ଖେଳୁଥିଲେ। ପବ୍ଲିକ ସ୍କୁଲର କଠୋର ଶ୍ରେଣୀବିଭାଗ ଓ ନୀତିନିୟମ ଆଦି କ୍ରାନ୍‌ଲେ ସ୍କୁଲରେ ନ ଥିଲା।

ସ୍ନୋଙ୍କ ମତରେ ଏହି ଦୃଷ୍ଟିରୁ ହାରଲ୍ଡ୍ ଭାଗ୍ୟବାନ ଥିଲେ। ତାଙ୍କ ପିଲାଦିନ ଏକ ଶିକ୍ଷିତ, ସଂସ୍କୃତ ଓ ପ୍ରଗତିଶୀଳ ବାତାବରଣ ଭିତରେ କଟିଥିଲା। ସେ ଯେ ଅନ୍ୟମାନଙ୍କ ତୁଳନାରେ ଅଧିକ ସୁବିଧା ଭିତରେ ବଢୁଥିଲେ ତାହା ସେ ବୁଝୁଥିଲେ। ସମ୍ଭ୍ରାନ୍ତ ପରିବାରର ପିଲାମାନଙ୍କ ପରି ସେ ଏକ ବୌଦ୍ଧିକ ପରିବେଶରେ ତାଙ୍କର ପିଲାଦିନ କଟାଇଲେ। ସ୍କୁଲର ଶିକ୍ଷକମାନେ କିନ୍ତୁ ସାଧାରଣ ସ୍କୁଲ କଲେଜରେ ପଢ଼ା ଶେଷ କରି ଏଠାକୁ ଆସିଥିଲେ। ଏସବୁ ମିଶି କରି ହାରଲ୍ଡ୍‌ଙ୍କ ପାଇଁ ଏକ ବିରଳ ପରିବେଶ ସୃଷ୍ଟି କରିଥିଲା। ଘରେ ବୌଦ୍ଧିକ ଉତ୍କର୍ଷ ଉପରେ ଜୋର ଥିଲା ଏବଂ ସ୍କୁଲରେ ସାଧାରଣ ପିଲାଙ୍କ ଓ ଶିକ୍ଷକଙ୍କ ସହିତ ନିବିଡ଼ ଭାବରେ ମିଶିବା ଫଳରେ ଆର୍ଥିକ-ସାମାଜିକ ଦୃଷ୍ଟିରୁ ଦୁର୍ବଳ ଶ୍ରେଣୀ ପ୍ରତି ତାଙ୍କ ମନରେ ସମ୍ବେଦନଶୀଳତା ବିକଶିତ ହେଉଥିଲା।

1889 ମସିହା ଜୁଲାଇ ମାସରେ କେମ୍ବ୍ରିଜର ସେଣ୍ଟ ଜନ୍ କଲେଜର ଫେଲୋ ଜେ. ଟି. ୱାର୍ଡ କ୍ରାନ୍‌ଲେ ସ୍କୁଲର ଉପର 'ଫର୍ମ' ପିଲାଙ୍କର ପରୀକ୍ଷାଫଳ ଜଣାଇଲେ। କ୍ରାନ୍‌ଲେଠାରେ ପିଲାମାନେ ତାଙ୍କର ଦକ୍ଷତା ଅନୁସାରେ ଫର୍ମ ବା ଗ୍ରେଡ୍‌କୁ ଉଠୁଥିଲେ। ବୟସ ସହିତ ଏହାର କିଛି ସମ୍ପର୍କ ରହୁ ନ ଥିଲା, ଥରେ ଜଣେ କୋଡ଼ିଏ ବର୍ଷର ଛାତ୍ର ଷଷ୍ଠ ଫର୍ମରେ ପଢୁଥିଲା। ହାରଲ୍ଡ୍ ବାର ବର୍ଷ

ବୟସରେ ଷଷ୍ଠ ଫର୍ମକୁ ଆସିଲେ। ତାଙ୍କ ଫର୍ମର ଅନ୍ୟମାନେ ତାଙ୍କଠାରୁ ହାରାହାରି ପାଞ୍ଚ ବର୍ଷ ବଡ଼ ଥିଲେ। ତଥାପି ବୀଜଗଣିତ, ଜ୍ୟାମିତି ଓ ତ୍ରିକୋଣମିତିରେ ସେ ସମସ୍ତଙ୍କଠାରୁ ବହୁତ ଆଗୁଆ ଥିଲେ। ସେ ବର୍ଷ ଜଣେ ଅଧିକ ବୟସର ପିଲା ତାଙ୍କ ଫର୍ମରେ ପ୍ରଥମ ହୋଇଥିଲା, କିନ୍ତୁ ହାରଲ୍ଡ୍ ଦ୍ୱିତୀୟ ସ୍ଥାନରେ ରହିଥିଲେ। ତୃତୀୟ ହୋଇଥିବା ପିଲା ତାଙ୍କଠାରୁ ବହୁତ ପଛରେ ଥିଲା। ୱାର୍ଡ ତାଙ୍କ ରିପୋର୍ଟରେ ଲେଖିଥିଲେ ଯେ ଯଦିଓ ହାରଲ୍ଡ୍ ଶଙ୍କୁଖଣ୍ଡ ଓ ଯାନ୍ତ୍ରିକୀ ବିଷୟ ପଢ଼ିନାହାନ୍ତି, ତାଙ୍କ ବୟସ ତୁଳନାରେ ସେ ଖୁବ୍ ଆଗୁଆ ଅଛନ୍ତି। ଭବିଷ୍ୟତରେ ସେ ନିଶ୍ଚୟ ଖୁବ୍ ଆଗେଇବେ।

କ୍ରାନ୍‌ଲେ ହାରଲ୍ଡ୍‌ଙ୍କର ବେଶ୍ ଯତ୍ନ ନେଇଥିଲା, କିନ୍ତୁ ଏବେ ତାଙ୍କ ପାଇଁ କିଛି ଅଧିକ କରିବା ଅବସ୍ଥାରେ ତାହା ନ ଥିଲା। ତାଙ୍କର ବିସ୍ମୟକର ପ୍ରତିଭାର ଅଧିକାରୀ ପୁଅର ଭବିଷ୍ୟତ ପାଇଁ ବାପାମା' ଉଚ୍ଚତମ ଆକାଙ୍କ୍ଷା ରଖିଥିଲେ ଓ ତାଙ୍କ ପାଇଁ ଉପଯୁକ୍ତ ଛାତ୍ରବୃତ୍ତି ଖୋଜିବାରେ ଲାଗିଥିଲେ। ସେ ସମୟରେ ସବୁଠାରୁ ଅଧିକ ଚାହିଦା ଥିଲା ୱିଞ୍ଚେଷ୍ଟର ପବ୍ଲିକ ସ୍କୁଲର। ଏହି ସ୍କୁଲ ଇଂଲଣ୍ଡର ପବ୍ଲିକ ସ୍କୁଲମାନଙ୍କ ଭିତରେ ଉଚ୍ଚତମ ଭାବରେ ଗଣାଯାଉଥିଲା ଏବଂ ଗଣିତରେ ମେଧାବୀ ପିଲାଙ୍କୁ ପ୍ରତିଷ୍ଠିତ କରିବା ଦିଗରେ ଏହାର ଏକ ପରମ୍ପରା ରହିଥିଲା। କିନ୍ତୁ ୱିଞ୍ଚେଷ୍ଟର ବୃତ୍ତି ପାଇବା ଅତି କଷ୍ଟକର ଥିଲା। ସାଧାରଣତଃ କୌଣସି ଘରୋଇ ଶିକ୍ଷକଙ୍କ ପାଖରେ ବା ସ୍ୱତନ୍ତ୍ର ସ୍କୁଲରେ ପଢ଼ି ଏହି ବୃତ୍ତି ପରୀକ୍ଷା ପାଇଁ ପ୍ରସ୍ତୁତ ହେବାକୁ ପଡୁଥିଲା। କୌଣସି ଛାତ୍ର ପାଇଁ ଶିକ୍ଷା କ୍ଷେତ୍ରରେ ଏହା ଥିଲା ଚରମ ଉତ୍କର୍ଷର ସୂଚକ।

ହାରଲ୍ଡ୍ ଏହି ପରୀକ୍ଷା ପାଇଁ ନାଁ ଦାଖଲ କଲେ ଏବଂ 1890 ମସିହାର ପରୀକ୍ଷାରେ 102 ଜଣ ପିଲାଙ୍କ ଭିତରେ ପ୍ରଥମ ସ୍ଥାନ ଅଧିକାର କଲେ।

ଏହି ସମୟରେ କ୍ରାନ୍‌ଲେ ସ୍କୁଲର ପରିବେଶ ମଧ୍ୟ ବଦଳୁଥିଲା। ଆରମ୍ଭ ବେଳର ମୁକ୍ତ ବାତାବରଣ ସେଠାରେ ଆଉ ନ ଥିଲା। ହାର୍ଡିଙ୍କର ଆର୍ଥିକ ଅବସ୍ଥାରେ ମଧ୍ୟ ଉନ୍ନତି ଆସିଥିଲା। କିନ୍ତୁ ହାରଲ୍ଡ୍ ସେତେବେଳକୁ ଜି. ଏଚ୍. ହାର୍ଡି ଭାବରେ କ୍ରାନ୍‌ଲେ ଛାଡ଼ି ବୃହତ୍ତର ଦୁନିଆକୁ ଚାଲି ଯାଇଥିଲେ।

### 3. ପଥର ପାଚିରୀ

ସମୟକ୍ରମେ ନିମ୍ନ ବର୍ଗର ସମ୍ଭ୍ରାନ୍ତ ପରିବାରର ପିଲାଙ୍କ ପାଇଁ ୱିଞ୍ଚେଷ୍ଟର ଏକ ବିଶେଷ ଶିକ୍ଷାନୁଷ୍ଠାନର ସ୍ଥାନ ନେଇଥିଲା। ଅନ୍ୟ ପବ୍ଲିକ ସ୍କୁଲମାନଙ୍କ ଭଳି ଏହା ମାନ୍ୟତା ପାଉଥିଲା ଏବଂ କ୍ରାନ୍‌ଲେ ସ୍କୁଲର ପିଲାମାନେ କେବଳ ଏହିଠାରେ ପଢ଼ିପାରିବାର ଆଶା ରଖୁଥିଲେ। ଏହି ସ୍କୁଲରୁ ବାହାରୁଥିବା ପିଲାଙ୍କ ଭିତରେ ବେଶ୍ ସଂଖ୍ୟାର 'ଭଦ୍ର ବିପ୍ଲବୀ ଓ ବୌଦ୍ଧିକ ସଂସ୍କାରକ' ରହୁଥିଲେ। କୋଡ଼ିଏ ବର୍ଷ ପରେ ହାର୍ଡି ମଧ୍ୟ ଏହିମାନଙ୍କ ଭିତରୁ ଜଣେ ଭାବରେ ଗଣା ହେବେ। ୱିଞ୍ଚେଷ୍ଟର ଚେଷ୍ଟା କରି ଏଭଳି ପିଲା ତିଆରି କରୁ ନ ଥିଲା। ତା'ର ଅଧିକାଂଶ ଛାତ୍ର ସମ୍ଭ୍ରାନ୍ତ ଓ ରକ୍ଷଣଶୀଳ ନେତୃସ୍ଥାନୀୟ ବ୍ୟକ୍ତି ଭାବରେ ଗଣାଯାଉଥିଲେ। କିନ୍ତୁ ଯେଉଁମାନେ ବିଦ୍ରୋହ କରୁଥିଲେ, ସେମାନେ ବିଶିଷ୍ଟ ବିଦ୍ରୋହୀ ଭାବରେ ଗଣାଯାଉଥିଲେ।

ୱିଞ୍ଚେଷ୍ଟରରେ ପହଞ୍ଚୁ ପହଞ୍ଚୁ ତା'ର ଅନେକ କଥା ବିରୁଦ୍ଧରେ ହାର୍ଡିଙ୍କ ମନ ବିଦ୍ରୋହ କଲା।

ବାହାରୁ ଦେଖିଲେ ୱିଞ୍ଚେଷ୍ଟର ଗୋଟିଏ ଦୁର୍ଗ ଭଳି ମନେ ହେଉଥିଲା। ତା'ର ବାହାର ପାଚିରି ଟାଣ ପଥରରେ ଗଢ଼ା ହୋଇଥିଲା ଓ ସେଥିରେ ସରୁ ଝରକାମାନ ରହିଥିଲା। ଚତୁର୍ଦ୍ଦଶ ଶତାବ୍ଦୀରେ ଏହି ସ୍କୁଲ ଆରମ୍ଭ ହେବାର ଅଳ୍ପ କାଳ ଆଗରୁ ସେଠାରେ କୃଷକ ବିଦ୍ରୋହ ଘଟିଥିଲା ଏବଂ ଅକ୍ସଫୋର୍ଡଠାରେ ବିଶ୍ୱବିଦ୍ୟାଳୟ ଅଧିବାସୀ ଓ ସହରର ଲୋକମାନଙ୍କ ଭିତରେ ଗୁରୁତର ବିବାଦ ଲାଗିଥିଲା। ଏଥିରେ ଶିକ୍ଷାନୁଷ୍ଠାନଗୁଡ଼ିକ ଆକ୍ରମଣର ଶିକାର ହୋଇଥିଲେ। ତେଣୁ ଅନୁଷ୍ଠାନର ସୁରକ୍ଷା ପାଇଁ ୱିଞ୍ଚେଷ୍ଟରର ବାହାର ପାଚିରି ଏଭଳି ଗଢ଼ାଯାଇଥିଲା। ହାର୍ଡିଙ୍କ ଭଳି ବୃତ୍ତିଧାରୀ ଛାତ୍ରମାନେ ତାହା ଭିତରେ ଏକ ପ୍ରକାରର ବୌଦ୍ଧିକ ବସ୍ତିରେ ରହୁଥିଲେ। ତାଙ୍କର ରହିବା ଘରଗୁଡ଼ିକ ମଧ୍ୟ ମଧ୍ୟଯୁଗୀୟ ଦୁର୍ଗ ଭଳି ପଥରରେ ଗଢ଼ା ହୋଇଥିଲା। କ୍ରାନ୍‌ଲେର ଖୋଲା ଓ ସୂର୍ଯ୍ୟକିରଣ ଭରା ପରିବେଶଠାରୁ ଏହା ପୂରା ଏକ ଭିନ୍ନ ଦୁନିଆ ଥିଲା।

ୱିଞ୍ଚେଷ୍ଟର ସମ୍ପର୍କିତ ଅନେକ ଶବ୍ଦ ନୂଆ ପିଲାମାନଙ୍କୁ ଜାଣିବାକୁ ହେଉଥିଲା। କିଛି ଶବ୍ଦର ଲମ୍ବା ଇତିହାସ ରହିଥିଲା, ଆଉ କିଛି ସେଠାରେ ନିର୍ଦ୍ଦିଷ୍ଟ ଅର୍ଥରେ କେବଳ ସେଠାରେ ହିଁ ଚଳୁଥିଲା। ଏଭଳି କେତେ ହଜାର ଶବ୍ଦ ପାଇଁ ସ୍ୱତନ୍ତ୍ର ଅଭିଧାନ ମଧ୍ୟ ରହିଥିଲା। ନୋସନ୍ ନାଁରେ ଜଣା ଏହି ଶବ୍ଦାବଳୀକୁ ମନେରଖିବା ବାଧ୍ୟତାମୂଳକ ଥିଲା।

ପ୍ରିଫେକ୍ଟ ଭାବରେ ଜଣା କିଛି ବରିଷ୍ଠ ଛାତ୍ର ନିଶ୍ଚିତ କରୁଥିଲେ ଯେ ନୂଆ ପିଲାମାନେ ନୋସନ୍ ଜାଣିଛନ୍ତି ଏବଂ ସେଠାକାର ରୀତିନୀତି ମାନିକରି ଚଳୁଛନ୍ତି। ପ୍ରିଫେକ୍ଟମାନଙ୍କ ଅତ୍ୟାଚାରକୁ ନିୟନ୍ତ୍ରଣ କରିବା ପାଇଁ ମାଥିଉ ଆର୍ଣ୍ଣୋଲ୍ଡ୍ ସେହି ବ୍ୟବସ୍ଥାରେ ଅନେକ ସଂସ୍କାର ଆଣିଥିଲେ। ଏହା ଫଳରେ ବରିଷ୍ଠ ଛାତ୍ରମାନଙ୍କ ଦୌରାତ୍ମ୍ୟ କମିଥିଲେ ମଧ୍ୟ ୱିଞ୍ଚେଷ୍ଟରଠାରେ ସେମାନଙ୍କର ବେଶ୍ ଆଧିପତ୍ୟ ରହିଥିଲା। ସାନ ଓ ଦୁର୍ବଳ ଛାତ୍ରମାନେ ତାଙ୍କର ମୁଖ୍ୟ ଶିକାର ହେଉଥିଲେ। ନୃଶଂସତାରେ ୱିଞ୍ଚେଷ୍ଟର ଅନ୍ୟମାନଙ୍କୁ ବଳିଯାଉଥିଲା। ମାଡ଼ ଦେବାଟା ଏଠାରେ ନିୟମ ଥିଲା, ବ୍ୟତିକ୍ରମ ନୁହେଁ। ଏଥିପାଇଁ ସ୍କୁଲ କର୍ତ୍ତୃପକ୍ଷ ପ୍ରିଫେକ୍ଟମାନଙ୍କୁ ଯଥେଷ୍ଟ କ୍ଷମତା ଓ ସ୍ୱାଧୀନତା ଦେଉଥିଲେ। କହିବାକୁ ଗଲେ ସେହି ସ୍କୁଲ କ୍ଷମତା, ସୁବିଧା ଓ ବଳ ଦ୍ୱାରା ପରିଚାଳିତ ଏକ ଆଦିମ ସମାଜ ଭଳି ଥିଲା।

ହାର୍ଡିଙ୍କ ବେଳର ପ୍ରଧାନ ଶିକ୍ଷକ ଡବ୍ଲିଉ. ଏ. ଫିରନ୍ ପରମ୍ପରା ଉପରେ ଖୁବ୍ ଜୋର ଦେଉଥିଲେ। ବର୍ଷକୁ ଦୁଇଥର ସ୍କୁଲର ସମସ୍ତଙ୍କୁ ସେଣ୍ଟ କାଥେରିନ୍ ପାହାଡ଼ ଚଢ଼ିବାର ପ୍ରଥା ସେ ଆରମ୍ଭ କରିଥିଲେ। ପାହାଡ଼ ଉପରେ ପ୍ରାର୍ଥନା କରାଯାଉଥିଲା ଓ ଉପସ୍ଥାନ ନିଆଯାଉଥିଲା। କ୍ରାନ୍‌ଲେର ମୁକ୍ତ ଚଳଣିରୁ ଆସିବା ପରେ ଏହିଭଳି ବିଭିନ୍ନ ପ୍ରଥାର ବୋଝ ଖୁବ୍ କଷ୍ଟକର ଥିଲା। ହାର୍ଡିଙ୍କର ଗଣିତ ଶିକ୍ଷକଙ୍କର ସ୍ତ୍ରୀ ସାରା ରିଚାର୍ଡସନ୍ ଖୁବ୍ ମେଳାପୀ ଥିଲେ। ସମସ୍ତେ ତାଙ୍କୁ 'ଶ୍ରୀମତୀ ଡିକ୍' ନାଁରେ ଜାଣୁଥିଲେ। ରବିବାର ଦିନ ତାଙ୍କ ଘର ସମସ୍ତଙ୍କ ପାଇଁ ଖୋଲା ରହୁଥିଲା। ଯଥେଷ୍ଟ କେକ୍ ଓ ସଚିତ୍ର ଲଣ୍ଡନ ନିଉଜ୍‌ର ପୁରୁଣା ସଂଖ୍ୟା ସବୁ ସେ ଯୋଗାଉଥିଲେ। ଏହା ମଧ୍ୟ ସେଠାର ଅନାକର୍ଷଣୀୟ ପରିବେଶରେ କିଛି ଉନ୍ନତି ଆଣୁ ନ ଥିଲା। ଲଣ୍ଡନକୁ ବୁଲିଯିବା ବା ଆଶ୍ଚର୍ଯ୍ୟଜନକ ଭାବରେ କ୍ରିକେଟ୍ ମଧ୍ୟ ହାର୍ଡିଙ୍କୁ ଖୁସି କରିପାରୁ ନ ଥିଲା।

ଆଠ ବର୍ଷ ବୟସରେ ଲେଖକ ହାର୍ଡି ଗୋଟିଏ ଖବର କାଗଜ ବାହାର କରୁଥିଲେ। ସେଥିରେ ସମ୍ପାଦକୀୟ, ବିଜ୍ଞାପନ, ପ୍ରଧାନ ମନ୍ତ୍ରୀଙ୍କ ଭାଷଣ ଓ କ୍ରିକେଟ୍ ଖେଳର ବିଶଦ୍ ବିବରଣୀ ରହୁଥିଲା।

ପିଲାଦିନରୁ ଆରମ୍ଭ କରି ହାର୍ଡିଙ୍କର ଜୀବନରେ କ୍ରିକେଟ ଖେଳର ଏକ ବିଶେଷ ସ୍ଥାନ ରହିଥିଲା। କାଉଣ୍ଟି କ୍ରିକେଟରେ ସରି ପାଇଁ ଏହି ସମୟଟି ଖୁବ୍ ଭଲ ବେଳ ଥିଲା। ଯୁବକ ହାର୍ଡି କ୍ରିକେଟ ଖେଳ ଦେଖିବା ପାଇଁ ଲଣ୍ଡନ ଯାଉଥିଲେ। ରିଚାର୍ଡସନ୍ ଓ ଆବେଲ୍ଙ୍କ ଭଳି ବିଶିଷ୍ଟ ଖେଳାଳି ସେତେବେଳେ ତାଙ୍କର ଶ୍ରେଷ୍ଠ ଅବସ୍ଥାରେ ଥିଲେ। ସ୍କୁଲରେ ମଧ୍ୟ କ୍ରିକେଟ ଖେଳ ଉପରେ ଗୁରୁତ୍ୱ ଦିଆଯାଉଥିଲା ଏବଂ ଅଭ୍ୟାସ କରିବା ପାଇଁ କିଛି ବାଧା ରହୁ ନ ଥିଲା। ସ୍କୁଲ ପତ୍ରିକାରେ ଖେଳର ବିସ୍ତୃତ ବିବରଣୀ ଦିଆଯାଉଥିଲା। ସ୍କୁଲ ଓ ପାଖ ଗାଁ ଭିତରେ ଗୋଟିଏ ଖେଳର ବିବରଣୀ ଥିଲା ଏହିପରି -

> ଜୁଲାଇ 21 ଦିନ କ୍ରାନ୍ଲେଠାରେ ଧୀମା ୱିକେଟରେ ଖେଳାଗଲା। ଗାଁ ଦଳ ପ୍ରଥମେ ବ୍ୟାଟ କଲେ। ରବିନସନ୍ ଖୁବ୍ ସୁନ୍ଦର ବଲ ପକାଉଥିଲେ। ଷ୍ଟ୍ରିଟ୍ଙ୍କ ଛଡ଼ା ଆଉ କେହି ତାଙ୍କୁ ଖେଳି ପାରିଲେ ନାହିଁ; 53 ରନ୍‌ରେ ତାଙ୍କ ପାଳି ଶେଷ ହେଲା। ସ୍କୁଲ ପାଳିରେ ଡଗ୍ଲାସ୍ ପ୍ରଥମ ଓଭରରେ ଆଉଟ ହେବା ପରେ ବିପର୍ଯ୍ୟୟ ଲାଗି ରହିଲା। ଆମର ମୋଟ ରନ୍ ଥିଲା 45, କେବଳ ୱାର୍ଣ୍ଣର୍ ଦୁଇ ଅଙ୍କ ଛୁଇଁ ଥିଲେ। ଦ୍ୱିତୀୟ ପାଳିରେ ଗାଁ ଦଳ ଯଥେଷ୍ଟ ଭଲ ଖେଳିଲେ ...

ହାର୍ଡିଙ୍କ ସମୟର ଛ'ଶହ ବର୍ଷ ଆଗରୁ କ୍ରିକେଟ ଖେଳ ଜନ୍ମ ହୋଇଥିଲା ଏବଂ ଦୁଇଶହ ବର୍ଷ ଧରି ଇଂଲଣ୍ଡରେ ତାହା ସଂଗଠିତ ଭାବରେ ଖେଳା ଯାଉଥିଲା। ସମୟକ୍ରମେ ସେହି ଖେଳ ପାଇଁ ନିର୍ଦ୍ଦିଷ୍ଟ ରୀତିନୀତି, ଭାଷା, ଆଚରଣ ସଂହିତା ଆଦି ବିକଶିତ ହେଲା। ଖେଳାଳିଙ୍କ ବ୍ୟକ୍ତିଗତ ଶୈଳୀ ଓ ଦକ୍ଷତା ଉପରେ ଏହା ଯେତିକି ନିର୍ଭର କରୁଥିଲା, ତାଙ୍କ ବ୍ୟକ୍ତିତ୍ୱ ଉପରେ ମଧ୍ୟ ସେତିକି ବା ଅଧିକ ଜୋର ଦେଉଥିଲା। ଇଂରେଜମାନେ କ୍ରିକେଟ ଖେଳର ବିଭିନ୍ନ ଦିଗ ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ।

ହାର୍ଡି ମଧ୍ୟ ଏଦିଗରେ ପଛୁଆ ନ ଥିଲେ। ତାଙ୍କ ପାଇଁ କ୍ରିକେଟର ସ୍ଥାନ ଗଣିତ ସହିତ ତୁଳନୀୟ ଥିଲା। କ୍ରିକେଟ ବିଷୟରେ ଟିକିନିକି ତଥ୍ୟ ଓ ଲଘୁକଥାର ଭଣ୍ଡାର ୱିସ୍‌ଡେନ୍‌କୁ ସେ ଗୁରୁତ୍ୱ ଦେଇ ପଢୁଥିଲେ। 1910 ମସିହାରେ କେମ୍ବ୍ରିଜର ଗୋଟିଏ କ୍ଲବ ହାର୍ଡିଙ୍କ ଦକ୍ଷତାର ତାଲିକାରେ ଲେଖିଥିଲା - ବିଶ୍ୱବିଦ୍ୟାଳୟ ସମ୍ବିଧାନ, ପ୍ରଚାର କରିବାର ଧାରା, କ୍ଲାରେଣ୍ଡନ ଅକ୍ଷର, ପେଷାଦାର କ୍ରିକେଟ। ଟ୍ରିନିଟି କଲେଜର ଫେଲୋ ଭାବରେ ଯୋଗ ଦେବା ପରେ ଯୁବକ ହାର୍ଡି ତାଙ୍କ କୋଠରୀ ଭିତରେ ଟେନିସ ବଲ ଓ ବାଡ଼ିରେ କ୍ରିକେଟ ଖେଳୁଥିଲେ। ବୟଷ ଷାଠିଏ ଛୁଇଁବା ପରେ ମଧ୍ୟ ସେ କ୍ରିକେଟ ଖେଳକୁ ହାଲୁକା ଭାବରେ ନେଉ ନ ଥିଲେ। ବ୍ୟାଟିଙ୍ଗ ଓ ବୋଲିଙ୍ଗର ତାତ୍ତ୍ୱିକ ଦିଗପ୍ରତି ସେ ବିଶେଷ ଧ୍ୟାନ ଦେଉଥିଲେ ଏବଂ ଖେଳାଳିମାନଙ୍କର କୌଶଳର ବିଶ୍ଳେଷଣ କରି ସେସବୁର ତାର୍କିକ ସଠିକତା ଖୋଜୁଥିଲେ।

କିନ୍ତୁ ୱିଞ୍ଚେଷ୍ଟରରେ ନାଁ ଲେଖାଇଲା ପରେ କ୍ରିକେଟ ମଧ୍ୟ ତାଙ୍କୁ ଖୁସି କରିପାରୁ ନ ଥିଲା। କ୍ରାନ୍ଲେ ଭଳି ୱିଞ୍ଚେଷ୍ଟର ମଧ୍ୟ କ୍ରିକେଟ-ପାଗଳ ଥିଲା। ୱିଞ୍ଚେଷ୍ଟର ପିଲାଙ୍କ ଉପରେ କ୍ରିକେଟର ପ୍ରଭାବ ଏତେ ଥିଲା ଯେ କିଛି ଲୋକ ଆତଙ୍କିତ ହୋଇପଡ଼ିଥିଲେ। ସ୍କୁଲ ଖବର କାଗଜ ଥରେ ଲେଖିଥିଲା, "ଏଠାରେ ଜୀବନଟା ଗୋଟାଏ ଲମ୍ବା କ୍ରିକେଟ ଖେଳ ଭଳି ମନେହେଉଛି।" ସ୍ୱାଭାବିକ ଭାବରେ କ୍ରୀଡ଼ାକୁଶଳୀ ଥିଲେ ମଧ୍ୟ ହାର୍ଡିଙ୍କର କ୍ରିକେଟ ଦକ୍ଷତା ଏଠାରେ ଖତରା ହେବାକୁ ଲାଗିଲା। ସେ ଅନ୍ୟ ଖେଳରେ ବେଶ୍ ଦକ୍ଷ ଥିଲେ। ତାଙ୍କ ବିଷୟରେ ଜଣେ ଲେଖିଥିଲେ, "ଛୋଟ, ସଳଖ ଓ

ପତଳା... ହାର୍ଡି ଜୋରରେ ଦଉଡ଼ି ପାରୁଥିଲେ... ବିପକ୍ଷ ଖେଳାଳିଙ୍କୁ କଟାଇ ଆଗେଇ ଯାଉଥିଲେ... ସେ ଚମତ୍କାର ଥିଲେ।'' କିନ୍ତୁ ସେ କେବେ ୱିଞ୍ଚେଷ୍ଟରର କ୍ରିକେଟ ଦଳରେ ଖେଳି ନ ଥିଲେ ଏବଂ ସେ ସ୍କୁଲ ଛାଡ଼ିବା ଯାଏଁ ସେଥିପାଇଁ ଅପମାନିତ ମନେ କରୁଥିଲେ। ସେ ଭାବୁଥିଲେ ଯେ ତାଙ୍କର କ୍ରିକେଟ ଦକ୍ଷତା ପାଇଁ ଉପଯୁକ୍ତ ପ୍ରଶିକ୍ଷଣ ତାଙ୍କୁ ଦିଆଗଲାନାହିଁ, ତେଣୁ ତାଙ୍କର ବ୍ୟାଟିଙ୍ଗ ଦୁର୍ବଳତା ଦୂର ହେଲାନାହିଁ। ଏହା ଫଳରେ ତାଙ୍କର ଅତି ଉଜ୍ଜ୍ୱଳ କ୍ରିକେଟ ଭବିଷ୍ୟତ ନଷ୍ଟ ହୋଇଗଲା ବୋଲି ସେ ବିଶ୍ୱାସ କରୁଥିଲେ।

ୱିଞ୍ଚେଷ୍ଟର ବିରୁଦ୍ଧରେ ଏହା ହାର୍ଡିଙ୍କର ଗୋଟିଏ ବଡ଼ କ୍ଷୋଭ ଥିଲା। ତାଙ୍କର ଗଭୀର କ୍ରିକେଟପ୍ରେମ ଦୃଷ୍ଟିରୁ ସବୁଦିନ ପାଇଁ ୱିଞ୍ଚେଷ୍ଟରକୁ ଘୃଣା କରିବା ପାଇଁ ଏତିକି ହିଁ ଯଥେଷ୍ଟ ଥିଲା। କିନ୍ତୁ ଘୃଣା କରିବା ପାଇଁ ତାଙ୍କ ପାଖରେ ଆହୁରି କେତେ କାରଣ ମଧ୍ୟ ରହିଥିଲା। ବାପାଙ୍କଠାରୁ ସେ ଯେଉଁ କଳାତ୍ମକ ଦକ୍ଷତା ପାଇଥିଲେ ଖରାପ ଶିକ୍ଷକଙ୍କ ଯୋଗୁଁ ତାହା ଏଠାରେ ମରିବାକୁ ଲାଗିଲା। ସେ ଲାଜକୁଳା ଓ ରୋଗିଣା ଥିଲେ - ୱିଞ୍ଚେଷ୍ଟରଠାରେ ଏଭଳି କୋମଳ ପିଲାଙ୍କ ପ୍ରତି ସହାନୁଭୂତି ନ ଥିଲା। ଶୀତଦିନରେ ଥରେ ସେ ଏତେ ଅସୁସ୍ଥ ହୋଇପଡ଼ିଲେ ଯେ ସେ ମୃତପ୍ରାୟ ହୋଇଗଲେ। ଏହା ଫଳରେ ଘରୁ ଯିବା ଆସିବା କରି ଖୁସିରେ ସ୍କୁଲରେ ପଢୁଥିବା ଜଣେ ସାଙ୍ଗ ପ୍ରତି ତାଙ୍କ ମନରେ ଗଭୀର ଈର୍ଷା ଦେଖାଦେଲା। ୱିଞ୍ଚେଷ୍ଟରଠାରେ ସପ୍ତାହରେ ପାଞ୍ଚ ଦିନ ମାଂସ ଖାଇବା ବାଧ୍ୟତାମୂଳକ ଥିଲା - ସେଠାରୁ ଗଲା ପରେ ହାର୍ଡି ମାଂସ ଖାଇପାରିଲେନାହିଁ। ୱିଞ୍ଚେଷ୍ଟର ଛାଡ଼ିବା ପରେ ସେ କେବେ ବି ସେଠାକୁ ବୁଲି ଆସି ନ ଥିଲେ ବା କୌଣସି ବନ୍ଧୁମିଳନରେ ଭାଗ ନେଇ ନ ଥିଲେ।

ସେ ସମୟରେ ୱିଞ୍ଚେଷ୍ଟରରେ ଗ୍ରିକ୍, ଲାଟିନ୍, ଫରାସି ଭଳି ପ୍ରାଚୀନ ଭାଷା ଉପରେ ଅଧିକ ଜୋର ଦିଆ ଯାଉଥିଲା। ସପ୍ତାହର ମୋଟ ଛବିଶଟି ପିରିଅଡ୍‌ରୁ ଏସବୁ ପାଇଁ ଥିଲା ତେରଟି, ଇତିହାସ ପାଇଁ ପାଞ୍ଚ, ଧର୍ମତତ୍ତ୍ୱ ପାଇଁ ଦୁଇ, ବିଜ୍ଞାନ ପାଇଁ ଦୁଇ ଏବଂ ଗଣିତ ପାଇଁ ବାକି ଚାରିଟି ପିରିଅଡ୍ ରହୁଥିଲା। ହାର୍ଡି କିନ୍ତୁ ଗଣିତ ଶ୍ରେଣୀରେ ବସୁ ନ ଥିଲେ, ଦ୍ୱିତୀୟ ଶିକ୍ଷକ ଜର୍ଜ (''ଡିକ୍'') ରିଚାର୍ଡସନ୍ ତାଙ୍କୁ ଅଲଗା ପଢ଼ାଉଥିଲେ। ରିଚାର୍ଡସନ୍ ୱିଞ୍ଚେଷ୍ଟର ପାଇଁ ଜଣେ ବ୍ୟତିକ୍ରମ ଥିଲେ। ସେ କେମ୍ବ୍ରିଜରେ ପଢ଼ିଥିଲେ ଓ ଗାଣିତିକ ମେଧାନିର୍ଦ୍ଧାରକ ଟ୍ରାଇପସ୍ ପରୀକ୍ଷାରେ ଉଚ୍ଚ ସ୍ଥାନ ପାଇଥିଲେ। କିନ୍ତୁ ସେ କୌଣସି ପବ୍ଲିକ ସ୍କୁଲରେ ପଢ଼ି ନ ଥିଲେ। ଆଦର୍ଶ ଶିକ୍ଷକ ଭାବରେ ସେ ଗଣା ଯାଉ ନ ଥିଲେ, ସେ କେବଳ ଭଲ ଛାତ୍ରମାନଙ୍କ ପ୍ରତି ଧ୍ୟାନ ଦେଉଥିଲେ। ତାଙ୍କର ବିଶେଷ ଯତ୍ନ ପାଉଥିବା ଛାତ୍ରଙ୍କ ଭିତରୁ ହାର୍ଡି ଜଣେ ଥିଲେ। ୧୮୯୩ ମସିହାରେ ହାର୍ଡି ତାଙ୍କ ସ୍କୁଲର ଡନ୍‌କାନ୍ ଗଣିତ ପୁରସ୍କାର ପାଇଥିଲେ।

ହାର୍ଡି କେବଳ ଗଣିତରେ ଆଗ୍ରହୀ ନ ଥିଲେ। ନିଜେ ନିଜେ ସେ ପଦାର୍ଥ ବିଜ୍ଞାନ ପଢୁଥିଲେ, ଦର୍ଶନ ଶାସ୍ତ୍ର, ସାହିତ୍ୟ ଓ ଇତିହାସରେ ମଧ୍ୟ ସେ ଆଗ୍ରହ ଦେଖାଉଥିଲେ। ୱିଞ୍ଚେଷ୍ଟରରେ ତାଙ୍କର ଛ ବର୍ଷର ପଢ଼ା ମଝି ବେଳକୁ ସେ ନିଜର ଭବିଷ୍ୟତ ପାଠ ବିଷୟରେ ନିଶ୍ଚିତ ନ ଥିଲେ।

ଭଲ ସାହିତ୍ୟ ପଢ଼ିବାରେ ହାର୍ଡିଙ୍କର ରୁଚି ଥିଲା, କିନ୍ତୁ ସାଧାରଣ ବହି ପଢ଼ିବା ପାଇଁ ସେ ପଛାଉ ନ ଥିଲେ। ଗୋଇନ୍ଦା ଉପନ୍ୟାସ ପାଇଁ ତାଙ୍କର କିଛି ଦୁର୍ବଳତା ଥିଲା। ଥରେ ଛୁଟି ସମୟରେ ସେ

ଲଣ୍ଡନରେ ବସି କେତେ ଡଜନ ଗୋଇନ୍ଦା ଉପନ୍ୟାସ ପଢ଼ି ପକାଇ ଥିଲେ। ପନ୍ଦର ବର୍ଷ ବୟସ ବେଳକୁ ହାର୍ଡି 'ଟ୍ରିନିଟିର ଫେଲୋ' ନାଁର ବହିଟିଏ ପାଇଲେ। ଶ୍ରୀମତୀ ଫ୍ରାନ୍ସେସ୍ ମାର୍ଶାଲ୍ ଏହାର ଲେଖିକା ଥିଲେ, କିନ୍ତୁ ବହିରେ ସେ ଆଲାନ୍ ସେଣ୍ଟ ଅବିନ୍ ଛଦ୍ମନାମ ବ୍ୟବହାର କରିଥିଲେ। ହୁଏତ ବହିଟିର ପ୍ରକୃତ ମୂଲ୍ୟ ବୁଝିକରି ସେ ନିଜର ଅସଲ ନାଁ ଲୁଚାଇ ଥିଲେ। ଟ୍ରିନିଟି କଲେଜରେ ଜୀବନ ବିଷୟରେ ଲେଖା ହୋଇଥିବା ଏହି ବହିଟି ଅତି ଖରାପ ଥିଲା। ସେଥିରେ ଚରିତ୍ରଗୁଡ଼ିକ ହାସ୍ୟାସ୍ପଦ ଥିଲେ, ଭାଷା ଦୁର୍ବଳ ଥିଲା। ତଥାପି କୌଣସି କାରଣରୁ ହାର୍ଡିଙ୍କ ମନରେ ତାହା ରେଖାପାତ କରିଥିଲା। ବହିର ଶେଷରେ ନିଷ୍ପାପର ନାୟକ ହର୍ବର୍ଟ ଫ୍ଲାୱାର୍ସ୍ ବୌଦ୍ଧିକ ବିଜୟରେ ଉଲ୍ଲସିତ ହେଉଥିବା ଚିତ୍ର ତାଙ୍କ ମନକୁ ବିଶେଷ ଭାବରେ ଛୁଇଁଥିଲା। ସେହି ବର୍ଣ୍ଣନା ଏହିପରି ଥିଲା -

> ହର୍ବର୍ଟ ପୁଣି ଟ୍ରିନିଟିକୁ ଆସିଲେ। ଏବେ ସେ ବି.ଏ. ଉପାଧିର ଲମ୍ବା ଗାଉନ ପିନ୍ଧିଥିଲେ। ସେଥିରେ ଲାଗିଥିବା ରିବନ୍‌କୁ ସେ ଲୁଚାଇବାକୁ ଚେଷ୍ଟା କରୁ ନ ଥିଲେ। ତାଙ୍କର ଧଳା କୋଟ୍ ଉପରେ ପଶୁଲୋମର ମଥା ଆବରଣ ଲାଗିଥିଲା। ଗୀର୍ଜାର ସ୍ନାତକ ଆସନରେ ଏବଂ ସଭାକକ୍ଷର ଫେଲୋଙ୍କ ଟେବୁଲରେ ସେ ମର୍ଯ୍ୟାଦାର ସହିତ ବସିଥିଲେ।
>
> ଏବେ ସେ ଟ୍ରିନିଟିର ଜଣେ ଫେଲୋ!
>
> ସେ ମୁଖ୍ୟ ଟେବୁଲରେ ବସିଲେ ଏବଂ ପ୍ରତିଷ୍ଠାତା ଓ ଅନ୍ୟ ବିଶିଷ୍ଟ ବ୍ୟକ୍ତିଙ୍କର ଗମ୍ଭୀର ପ୍ରତିଛବିଗୁଡ଼ିକ ତାଙ୍କୁ ଅନୁମୋଦନ ସୂଚକ ଦୃଷ୍ଟିରେ ଚାହୁଁଥିଲେ।
>
> ଏହି ଲକ୍ଷ୍ୟରେ ପହଞ୍ଚିବା ପାଇଁ ଦୌଡ଼ର ଖୁସି, ଦୁଃଖ ଓ ସଂଘର୍ଷ ଏବେ ତାଙ୍କ ପଛରେ। କେବଳ ରହିଲା ତାଙ୍କର ଉଜ୍ଜ୍ୱଳ କୃତି। ଟ୍ରିନିଟିର ଗୌରବମୟ ବୌଦ୍ଧିକ ଇତିହାସରେ ଏଭଳି ଭଦ୍ରୋଚିତ ସଫଳତା ଆଗରୁ କେହି ପାଇ ନ ଥିଲେ।
>
> ସମ୍ମାନକୁ ସେ ବିନମ୍ରତା ସହ ଗ୍ରହଣ କଲେ, ଠିକ୍ ଯେପରି ସେ ତାଙ୍କ ଦୁର୍ଭାଗ୍ୟକୁ ଆଗରୁ ସହିଥିଲେ। ଟେବୁଲ ଚାରିପଟେ ବସିଥିବା ପୁରୁଣା ଫେଲୋମାନେ ତାଙ୍କୁ ଆଦରଭରା ସ୍ୱାଗତ ଜଣାଇଲେ।
>
> ସେଠାରେ ଚୁପଚାପ ବସି ବାଦାମ ଓ ମଦିରାର ସ୍ୱାଦ ଭିତରେ ସେ ଭାବୁଥିଲେ। ବାଦାମ ଓ ମଦିରା ସେଠାରେ ପାଣ୍ଡିତ୍ୟ, ଦର୍ଶନ ଓ ସଂସ୍କୃତିର ପ୍ରତୀକ ଥିଲା। ସେଠାରେ ବସିବା ଆଗରୁ ସେ ପୂରା ମାତ୍ରାରେ ବିଶ୍ୱାସ କରିପାରୁ ନ ଥିଲେ ତାଙ୍କର ଏହି ସଫଳତା ପ୍ରକୃତରେ କେତେ ବିଶାଳ!

ହାର୍ଡିଙ୍କୁ ଏହା ମନ୍ତ୍ରମୁଗ୍ଧ କରିପକାଇଲା। ପରେ ହାର୍ଡି କହିଥିଲେ, "ଫ୍ଲାୱାର୍ସ ଜଣେ ଭଲଲୋକ ଥିଲେ, କିନ୍ତୁ ମୋର ଅପାକଳ ମନରେ ମଧ୍ୟ ତାଙ୍କୁ ମୁଁ ବୁଦ୍ଧିମାନ ଭାବରେ ଗ୍ରହଣ କରୁ ନ ଥିଲି। ସେ ଯଦି ଏଭଳି କାମ କରିପାରିଲେ, ମୁଁ କାହିଁକି ପାରିବିନାହିଁ?'' ହାର୍ଡି ସ୍ଥିର କଲେ ଯେ ସେ ଟ୍ରିନିଟିର ଫେଲୋ ହେବେ ଏବଂ ଗଣିତ ତାଙ୍କ ପାଇଁ ବାଟ ଖୋଲିଦେବ।

ସେତେବେଳେ ହାର୍ଡି ହୁଏତ ଟ୍ରିନିଟିର ଉଚ୍ଚ ମାନ୍ୟତା କଥା ଭାବି ନ ଥିଲେ। ତାହା ଥିଲା କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ମଉଡ଼ମଣି, ଉଭୟ କେମ୍ବ୍ରିଜ ଓ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟ ଭିତରେ ଗଣିତ ପାଇଁ ସର୍ବୋଚ୍ଚ ସ୍ଥାନ। ପାରମ୍ପରିକ ଭାବରେ ୱିଞ୍ଚେଷ୍ଟର ଛାତ୍ରମାନେ ଅକ୍ସଫୋର୍ଡର ନିଉ କଲେଜରେ ପଢୁଥିଲେ। ସେ ଦୁଇ ଅନୁଷ୍ଠାନର ପ୍ରତିଷ୍ଠାତା ଥିଲେ ୱିଞ୍ଚେଷ୍ଟରର ବିଶପ୍ ୱିଲିଅମ୍ ଅଫ୍ ୱାଇକେହାମ୍। ଦୁଇ ଅନୁଷ୍ଠାନକୁ ସେ ଗୋଟିଏ ଭାବରେ ଦେଖୁଥିଲେ ଯେଉଁଠି ଜଣେ ଛାତ୍ର ସ୍କୁଲରୁ

ଆରମ୍ଭ କରି ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ପଢ଼ିପାରିବ। 1896 ମସିହାରେ ଛୟାଳିଶ ଜଣ ୱିଞ୍ଚେଷ୍ଟର ଛାତ୍ର ଅକ୍ସଫୋର୍ଡର ବିଭିନ୍ନ କଲେଜରେ ଯୋଗ ଦେଲେ। ସେଥିରୁ ପନ୍ଦର ଜଣ ନିଉ କଲେଜକୁ ଯାଇଥିଲେ। ମାତ୍ର ଆଠ ଜଣ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ପଢ଼ିଲେ, ତାଙ୍କ ଭିତରୁ ଜଣେ ଥିଲେ ହାର୍ଡି।

ସ୍କୁଲ ଖବର କାଗଜ, ଦି ୱାକେହାମିଷ୍ଟ, ଲେଖିଥିଲା, "ତାଙ୍କର ଜାଜ୍ୱଲ୍ୟମାନ ସଫଳତା ପାଇଁ ସ୍ମାଇଥ୍ ଓ ହାର୍ଡିଙ୍କୁ ଆମର ଅଭିନନ୍ଦନ। ଚାରିଟି ଶ୍ରେଷ୍ଠ ଛାତ୍ରବୃତ୍ତି ଭିତରୁ ଦୁଇଟି ଏମାନେ ପାଇଛନ୍ତି। ୱିଞ୍ଚେଷ୍ଟର ଏଭଳି ସଫଳତା ଆଗରୁ କେବେ ପାଇ ନ ଥିଲା। ଆଉ କୌଣସି ସ୍କୁଲ ଏହା ଯେ କରିପାରିବ, ସେ ବିଷୟରେ ଆମର ସନ୍ଦେହ ରହିଛି।"

କ୍ରାନ୍‌ଲେଠାରେ ହାର୍ଡି ପରିବାର ପାଇଁ ଏହା ଥିଲା ଏକ ଖୁବ୍ ଭଲ ସମୟ। ପ୍ରଧାନ ଶିକ୍ଷକ ଦୁଇଟି କାରଣରୁ ତାଙ୍କ ବାର୍ଷିକ ବିବରଣୀରେ ଆଇଜାକ୍ ହାର୍ଡିଙ୍କୁ ବଧାଇ ଜଣାଇଥିଲେ - ପ୍ରଥମରେ ଆଇଜାକ୍‌ଙ୍କର ଛାତ୍ରମାନେ ଗୋଟିଏ ବଡ଼ କଳା ପରୀକ୍ଷାରେ ଏତେ ଭଲ କରିଥିଲେ ଯେ ପରୀକ୍ଷକ ସେମାନଙ୍କୁ ଦେଶର ଶ୍ରେଷ୍ଠ ଛାତ୍ରଙ୍କ ସହିତ ତୁଳନା କରିଥିଲେ। ଦ୍ୱିତୀୟଟି ଥିଲା ହାରଲ୍‌ଡ୍‌ଙ୍କର ଟ୍ରିନିଟି ବୃତ୍ତି ପାଇବା। ଏ ବିଷୟରେ ସ୍ଥାନୀୟ ଖବର କାଗଜ ଲେଖିଥିଲା, "ଏହା ଗୋଟିଏ ଅତି ବଡ଼ କଥା। ୱିଞ୍ଚେଷ୍ଟର ପାଇଁ ମଧ୍ୟ ଏହା ଆଶାତୀତ ଥିଲା।"

## 4. ଟ୍ରିନିଟିର ଫେଲୋ

ଇଂଲଣ୍ଡର ଜୀବନରେ କେମ୍ବ୍ରିଜ ଓ ଅକ୍ସଫୋର୍ଡର ପ୍ରଭାବକୁ ଅତିରଞ୍ଜିତ କରିବା ଅସମ୍ଭବ। 1904 ମସିହାରେ ହାଭେଲକ୍ ଏଲିସ୍ ପ୍ରାୟ ଏକ ହଜାର ବିଶିଷ୍ଟ ଇଂରେଜଙ୍କ ବିଷୟରେ ଅନୁଧ୍ୟାନ କରିଥିଲେ। ଏହାର ଫଳାଫଳକୁ ନେଇ ସେ ଲେଖିଥିବା 'ବିଚକ୍ଷଣ ଇଂରେଜ - ଏକ ଅଧ୍ୟୟନ' ସନ୍ଦର୍ଭରୁ ଜଣାଯାଏ ଯେ ଏମାନଙ୍କ ଭିତରୁ 74 ଶତାଂଶ ସେହି ଦୁଇ ବିଶ୍ୱବିଦ୍ୟାଳୟରେ ପଢ଼ିଥିଲେ।

କେମ୍ବ୍ରିଜ ଓ ଅକ୍ସଫୋର୍ଡ ଦୁଇଟି ମଧ୍ୟମ ଆକାରର ବାଣିଜ୍ୟ କେନ୍ଦ୍ରରୁ ବଢ଼ିଉଠିଥିଲେ। ତେରଶ ଶତାବ୍ଦୀରେ କିଛି ବିଦ୍ୱାନ ସେଠାରେ ଏକାଠି ହେଲେ ଓ ବିଭିନ୍ନ କଲେଜ ଆରମ୍ଭ କଲେ। ସମୟକ୍ରମେ ଏହି କଲେଜଗୁଡ଼ିକ ମିଶି ଗୋଟିଏ କେନ୍ଦ୍ରୀୟ ପରିଚାଳନା ବ୍ୟବସ୍ଥା ସୃଷ୍ଟି କଲେ ଯେଉଁଥିରେ କଲେଜଗୁଡ଼ିକର ହାତରେ ଯଥେଷ୍ଟ ଅଧିକାର ଓ କ୍ଷମତା ରହିଲା। ଛାତ୍ରମାନଙ୍କର ପ୍ରଥମ ପରିଚିତି ରହିଲା କଲେଜକୁ ନେଇ, ବିଶ୍ୱବିଦ୍ୟାଳୟ ସହିତ ତାଙ୍କର ସମ୍ପର୍କ ପଛକୁ ରହୁଥିଲା। 1720 ମସିହାରେ ସିନେଟ ହାଉସ୍ ତିଆରି ହେଲା, ଏହା ଆଗରୁ ବିଭିନ୍ନ କଲେଜର କର୍ମକର୍ତ୍ତାଙ୍କୁ ଏକାଠି କରିବା ପାଇଁ ବିଶ୍ୱବିଦ୍ୟାଳୟର କୌଣସି ନିଜସ୍ୱ ବ୍ୟବସ୍ଥା ମଧ୍ୟ ନ ଥିଲା।

ପ୍ରତି କଲେଜର ଇତିହାସ ଓ ସ୍ଥାପତ୍ୟ ଅଲଗା ଥିଲା। ପ୍ରତ୍ୟେକେ ନିଜର ପାଣ୍ଠି ବ୍ୟବସ୍ଥା କରୁଥିଲେ। ଶିକ୍ଷା କ୍ଷେତ୍ରରେ ପ୍ରତି କଲେଜର ସ୍ୱାତନ୍ତ୍ର୍ୟ ରହୁଥିଲା ଏବଂ ନିଜ ନିଜର ବଳ ଓ ଦୁର୍ବଳତା ଦେଖିବାକୁ ମିଳୁଥିଲା। ପ୍ରତି କଲେଜ ଅଲଗା ପ୍ରକାରର ପିଲାଙ୍କୁ ଆକର୍ଷିତ କରୁଥିଲା, ସେମାନଙ୍କ ପାଇଁ ସ୍ୱତନ୍ତ୍ର ପୋଷାକର ବ୍ୟବସ୍ଥା କରୁଥିଲା ଏବଂ ବିଶିଷ୍ଟ ପ୍ରାକ୍ତନ ଛାତ୍ରମାନଙ୍କର ନିଜସ୍ୱ ତାଲିକା ରଖୁଥିଲା। କେମ୍ବ୍ରିଜର ସବୁଠାରୁ ପୁରୁଣା କଲେଜ ଥିଲା 1282 ମସିହାରେ ପ୍ରତିଷ୍ଠିତ ପିଟରହାଉସ। ତା'ର ଅନ୍ୟ ବିଖ୍ୟାତ ଅନୁଷ୍ଠାନଗୁଡ଼ିକ ଭିତରେ ଥିଲେ କିଙ୍ଗ୍‌ସ୍ କଲେଜ,

ମଡ୍‌ଲିନ୍, ସେଣ୍ଟ ଜନ୍‌ସ୍, ଗନ୍‌ଭିଲ୍ ଆଣ୍ଡ କେଅସ୍, ପେମ୍ବ୍ରୁକ୍ ଆଦି କଲେଜ। ହାର୍ଡିଙ୍କ ସମୟକୁ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର କଲେଜ ସଂଖ୍ୟା ପ୍ରାୟ କୋଡ଼ିଏରେ ପହଞ୍ଚିଥିଲା। କେତେକରେ ମାତ୍ର ଶହେ ଦୁଇଶହ ପ୍ରାକ୍-ସ୍ନାତକ ଛାତ୍ରଛାତ୍ରୀ ଓ ଫେଲୋ ଥିଲେ; ଟ୍ରିନିଟି ଭଳି ଆଉ କିଛିରେ ଥିଲେ ପ୍ରାୟ ହଜାରେ।

ସ୍ଥାପତ୍ୟ ଦୃଷ୍ଟିରୁ କଲେଜଗୁଡ଼ିକ ଗୋଟିଏ ପ୍ରଭାବଶାଳୀ ପରିଯୋଜନାର ବିଭିନ୍ନ ରୂପ ଦେଖାଉଥିଲା। ପ୍ରତି କଲେଜର ସାମନାରେ ଦୁଇ ବା ତିନି ମହଲାର ଗୋଟିଏ ଇଟା ବା ପଥର ତିଆରି ଲମ୍ବା କୋଠା ପାଚେରୀ ଭଳି ରହୁଥିଲା। କଲେଜରେ ପଶିବା ପାଇଁ ଗୋଟିଏ ବଡ଼ ଖିଲାଣଯୁକ୍ତ ବାଟ ରହୁଥିଲା। ଏହାର ଗୋଟିଏ କଡ଼ରେ ଜଣେ ଦ୍ୱାରପାଳ ରହି କଲେଜର ନିତିଦିନିଆ କାରବାରକୁ ସମ୍ଭାଳୁଥିଲେ। ଆସୁଥିବା ଲୋକଙ୍କୁ ପ୍ରବେଶପତ୍ର ଦେବା, ସନ୍ଦେଶ ନେବା ଦେବା, ଚାବି ରଖିବା ଆଦି କାମ ତାଙ୍କ ଦାୟିତ୍ୱ ଭିତରେ ରହୁଥିଲା। ଦ୍ୱାରପାଳ ପ୍ରକୋଷ୍ଠର ପଛକୁ ରହୁଥିଲା କଲେଜର ଶାଗୁଆ ଘାସ ଭରା ଆବଦ୍ଧ ପ୍ରାଙ୍ଗଣ। ପ୍ରାଙ୍ଗଣର ଚାରିପଟେ କାନ୍ଥ ଭଳି ଘେରିକରି ବିଭିନ୍ନ ଅଟ୍ଟାଳିକା ରହୁଥିଲା। ସେହି ଅଟ୍ଟାଳିକାଗୁଡ଼ିକ ପାଠାଗାର, ପ୍ରାର୍ଥନାଳୟ, ଭୋଜନାଳୟ ଆଦିର କାମ କରୁଥିଲା। ଭୋଜନାଳୟ ସାଧାରଣତଃ ଗୋଟିଏ ବଡ଼ ଓ ଉଚ୍ଚ ସୁସଜ୍ଜିତ ଘର ହେଉଥିଲା ଯେଉଁଥିରେ କଲେଜ ସହିତ ଯୋଡ଼ା ବିଶିଷ୍ଟ ବ୍ୟକ୍ତିମାନଙ୍କର ବନ୍ଧେଇ ପ୍ରତିଛବି ଝୁଲୁଥିଲା।

ଛାତ୍ରମାନେ ଶ୍ରେଣୀରେ ବସିପାରନ୍ତି, କିନ୍ତୁ ଅଧିକାଂଶ ପାଠପଢ଼ା ହୁଏ ଜଣେ ଜଣେ ଟିଉଟରଙ୍କ ତତ୍ତ୍ୱାବଧାନରେ। ଥରକେ ଦୁଇ ତିନି ଜଣ ପିଲା ଟିଉଟରଙ୍କ ସହିତ ତାଙ୍କ କଲେଜ କୋଠରିରେ ଆଲୋଚନା ମାଧ୍ୟମରେ ପଢ଼ନ୍ତି। ପ୍ରତି ଛାତ୍ରର ନୈତିକ ବିକାଶ ଦେଖିବା ପାଇଁ ଜଣେ ଟିଉଟର ଏବଂ ତା'ର ପାଠପଢ଼ାର ଅଗ୍ରଗତି ଦେଖିବା ପାଇଁ ଜଣେ ଶିକ୍ଷା ନିର୍ଦ୍ଦେଶକ ରହିଥା'ନ୍ତି। ଛାତ୍ରମାନେ ପ୍ରାୟ ନିଜ ନିଜର କଲେଜରେ ହିଁ ରହନ୍ତି। ରହିବା ପାଇଁ ସ୍ୱତନ୍ତ୍ର କୋଠରିଗୁଡ଼ିକୁ ଯିବା ପାଇଁ ଅଟ୍ଟାଳିକାଗୁଡ଼ିକର ମଝିରେ ମଝିରେ ଅନେକ ସିଡ଼ି ରହିଥାଏ।

ଛାତ୍ରମାନଙ୍କର ରହିବା 'କୋଠରି' ଛୋଟିଆ ଫାଙ୍କା ବଖରା ହୋଇ ନ ଥାଏ। ସେଥିରୁ ଅନେକଗୁଡ଼ିଏ ଆସବାବପତ୍ର ସହିତ ସୁସଜ୍ଜିତ ସ୍ୱୟଂସମ୍ପୂର୍ଣ୍ଣ ଘର ହୋଇଥାଏ। ଅନ୍ତେବାସୀମାନଙ୍କର ବିଛଣା କରିବା, ଖାଦ୍ୟ ଆଣିବା ଓ ଅନ୍ୟ ସବୁ କାମ କରିବା ପାଇଁ ସ୍ୱତନ୍ତ୍ର ପରିଚାରକମାନେ ରହିଥା'ନ୍ତି। ସେସମୟରେ ପାଇପ ପାଣି ବ୍ୟବସ୍ଥା ଚଳି ନ ଥିଲା, ତେଣୁ ଗାଧୁଆ ଘରଗୁଡ଼ିକ ରହିବା କୋଠରିଠାରୁ କିଛି ଦୂରରେ ଏକାଠି ରହୁଥିଲା। ସକାଳୁ ଆସିଲେ ପରିଚାରକର ପ୍ରଥମ କାମ ଥିଲା ଧୁଆଧୋଇ ହେବା ପାଇଁ ଟିଣ ବାଲଟିରେ ପାଣି ଭରିବା।

କେମ୍ବ୍ରିଜର ପୁରୁଣା କଲେଜ ଭିତରୁ ଟ୍ରିନିଟି ଗୋଟିଏ ଥିଲା। ଏହା ସବୁଠାରୁ ବଡ଼ ଓ ବିଖ୍ୟାତ ଥିଲା। ଚଉଦଶ ଶତାବ୍ଦୀରେ ଆରମ୍ଭ ହୋଇଥିବା ଦୁଇଟି ଛୋଟ କଲେଜକୁ ମିଶାଇ ଟ୍ରିନିଟି ସୃଷ୍ଟି ହୋଇଥିଲା। ସମ୍ରାଟ ଅଷ୍ଟମ ହେନେରିଙ୍କ ଅମଳରେ ଟ୍ରିନିଟି ତା'ର ବର୍ତ୍ତମାନର ରୂପ ପାଇଥିଲା। ତେଣୁ ମୁଖ୍ୟ ପ୍ରାଙ୍ଗଣ ବା ଗ୍ରେଟ୍ କୋର୍ଟରେ ସମ୍ରାଟଙ୍କର ମୋଟାଳିଆ ପ୍ରତିମୂର୍ତ୍ତି ରଖାଯାଇଥିଲା। ଗ୍ରେଟ କୋର୍ଟ ଥିଲା ଟ୍ରିନିଟିର ପାଞ୍ଚଟି ପ୍ରାଙ୍ଗଣ ଭିତରେ ସବୁଠାରୁ ବଡ଼। ଏହା ଥିଲା ସାରା ୟୁରୋପର ବୃହତ୍ତମ ଆବଦ୍ଧ ପ୍ରାଙ୍ଗଣ। ତା'ର ମଝିରେ ଗମ୍ବୁଜ ତଳେ ଗୋଟିଏ ମନୋରମ ଫୁଆରା ରହିଥିଲା।

ଗ୍ରେଟ୍ କୋର୍ଟର ଆରପଟରେ ହ୍ୱେୱେଲ୍ କୋର୍ଟରେ ହାର୍ଡିଙ୍କର ରହିବା କୋଠରି ଥିଲା। ମାତ୍ର ତିରିଶ ବର୍ଷ ତଳେ ଏହା ତିଆରି ହୋଇଥିଲା ତେଣୁ କୋଠରିଗୁଡ଼ିକ ଅତି ବଡ଼ ହୋଇ ନ ଥିଲା। ଟିକିଏ ଅଲଗା ହୋଇ ରହିଥିବାରୁ ତାହା ବେଶ୍ ଚୁପଚାପ ଥିଲା। ଦ୍ୱିତୀୟ ମହଲାରେ ଥିବା ତାଙ୍କ କୋଠରିର ଝରକାରୁ ସେ ପାଖରେ ଥିବା ସିଡ୍‌ନି ସସେକ୍ସ କଲେଜର ପାଚେରି ଦେଖିପାରୁଥିଲେ, କିନ୍ତୁ ବାହାରର ଶବ୍ଦ ପ୍ରାଙ୍ଗଣର ଭିତର ଅଞ୍ଚଳକୁ ଭିତରକୁ ଆସୁ ନ ଥିଲା।

ସୌନ୍ଦର୍ଯ୍ୟବୋଧ ଦୃଷ୍ଟିରୁ ୱିଞ୍ଚେଷ୍ଟର ତୁଳନାରେ ଟ୍ରିନିଟି କିଛି ଆଗରେ ନ ଥିଲା। ଟ୍ରିନିଟି ଓ କେମ୍ବ୍ରିଜର ଅନ୍ୟ ସବୁ ଜାଗାଠାରୁ ୱିଞ୍ଚେଷ୍ଟର ବେଶି ପୁରୁଣା ଥିଲା। ୱିଞ୍ଚେଷ୍ଟରର ଗୀର୍ଜା ଓ ପ୍ରାଙ୍ଗଣ ଆଦି କେମ୍ବ୍ରିଜ ଭଳି ସୁଦୃଶ୍ୟ ଓ ଐତିହ୍ୟମୟ ଥିଲା। କିନ୍ତୁ 1896 ମସିହାରେ ଊଣେଇଶ ବର୍ଷର ହାର୍ଡିଙ୍କ ପାଇଁ କେମ୍ବ୍ରିଜ ଓ ଟ୍ରିନିଟିର ମୁଖ୍ୟ ଆକର୍ଷଣ ଥିଲା ସେଠାର ସର୍ବୋଚ୍ଚ ବୌଦ୍ଧିକ ପରମ୍ପରା।

ହାର୍ଡିଙ୍କ ପାଇଁ ଏକ ଅପ୍ରତ୍ୟାଶିତ ଧକ୍କା ଅପେକ୍ଷା କରିଥିଲା ଯାହାର ପ୍ରଭାବରେ ସେ ଗଣିତ ଛାଡ଼ିଦେବାକୁ ବସିଥିଲେ। ତାହା ଥିଲା କେମ୍ବ୍ରିଜର ଏକ ସମ୍ମାନାସ୍ପଦ ଅଙ୍ଗ - ଟ୍ରାଇପସ୍।

ତା'ର ମୂଳ ଅର୍ଥରେ ଟ୍ରାଇପସ୍ ଶବ୍ଦ ଏକ ତିନିଗୋଡ଼ିଆ ଷ୍ଟୁଲକୁ ବୁଝାଉଥିଲା। ତା ଉପରେ ବସିଥିବା ଜଣେ ଲୋକଙ୍କ କାମ ଥିଲା ଗଣିତ ପରୀକ୍ଷାର୍ଥୀମାନଙ୍କ ସହିତ ତର୍କ କରିବା। କେତେବେଳେ ମଜାଳିଆ ତର୍କ, ଆଉ କେତେବେଳେ ଆକ୍ରମଣାତ୍ମକ। ପରେ ଏହି ଶବ୍ଦ ଗଣିତ ଡିଗ୍ରୀ ପାଇଁ କରାଯାଉଥିବା ପରୀକ୍ଷାକୁ ବୁଝାଇଲା। ଆହୁରି ପରେ ଅନ୍ୟ ବିଷୟରେ ପରୀକ୍ଷା ଅର୍ଥରେ ଏହି ଶବ୍ଦର ବ୍ୟବହାର ଆସିଲା, ଯଥା, ପ୍ରାଚୀନଶାସ୍ତ୍ର ଟ୍ରାଇପସ୍, ପ୍ରାକୃତିକ ବିଜ୍ଞାନ ଟ୍ରାଇପସ୍ ଇତ୍ୟାଦି।

ଗଣିତ ଟ୍ରାଇପସ୍ ଅସମ୍ଭବ ଭାବରେ କଷ୍ଟକର ଥିଲା। ପରୀକ୍ଷାର ପ୍ରଥମ ଭାଗ ଚାରିଦିନ ଧରି ଚାଲେ, ବେଳେ ବେଳେ ତାହା ସରିଲା ବେଳକୁ ବେଶ୍ ରାତି ହୋଇଯାଏ। ସପ୍ତାହେ ଛାଡ଼ି ଆଉ ଚାରିଦିନ ଧରି ଦ୍ୱିତୀୟ ଭାଗ ପରୀକ୍ଷା ହୁଏ। ଦ୍ୱିତୀୟ ଭାଗ ପରୀକ୍ଷା ପ୍ରଥମ ଭାଗ ତୁଳନାରେ ଦୁଇଗୁଣ ଗୁରୁତ୍ୱ ପାଏ। ପ୍ରଥମ ଭାଗ ପରୀକ୍ଷା କେବଳ ପାଟିଗଣିତକୁ ନେଇ କରାଯାଏ ଏବଂ କେତେ ଶୀଘ୍ର ଜଣେ ସମସ୍ୟା ସମାଧାନ କରିପାରୁଛି ତାହା ଏଥିରେ ଦେଖାଯାଏ। ଏଥିରେ ସାଧାରଣ ଭାବରେ ଭଲ କରୁଥିବା ପିଲା ମଧ୍ୟ ଗଣିତ ଡିଗ୍ରୀ ପାଠ ପଢ଼ିବା ପାଇଁ ଉପଯୁକ୍ତ ମନେ କରାଯାଏ। ଦ୍ୱିତୀୟ ଭାଗରେ ଆଗୁଆ ବିଷୟ ସବୁର ପରୀକ୍ଷା କରାଯାଏ। ଏଥିରେ ସବୁଠାରୁ ଭଲ ଛାତ୍ରମାନେ ମଧ୍ୟ ଅସୁବିଧାରେ ପଡ଼ିଯା'ନ୍ତି। ଏହାକୁ ଏକ ଅତି ଯନ୍ତ୍ରଣାଦାୟକ ଅନୁଭୂତି ଭାବରେ ସମସ୍ତେ ବର୍ଣ୍ଣନା କରନ୍ତି। ଟ୍ରାଇପସ୍ ପରୀକ୍ଷା ଦେବାର ଅନେକ ବର୍ଷ ପରେ ଜଣେ ଇଂରେଜ ଗଣିତଜ୍ଞ ଲେଖିଥିଲେ, "ସାରା ପୃଥିବୀରେ ସବୁଠାରୁ କଷ୍ଟ ଗଣିତ ପରୀକ୍ଷା ହେଉଛି ଟ୍ରାଇପସ୍ ଯାହା ଭଳି କିଛି ଅନ୍ୟ କେଉଁ ବିଶ୍ୱବିଦ୍ୟାଳୟରେ ଦେଖାଯାଏନାହିଁ।"

ଟ୍ରାଇପସ୍ ପ୍ରକୃତରେ କେବଳ ଗୋଟିଏ ପରୀକ୍ଷା ନ ଥିଲା, ତାହା ଏକ ଅନୁଷ୍ଠାନ ପାଲଟି ଯାଇଥିଲା। ତା ପାଇଁ ନିର୍ଦ୍ଦିଷ୍ଟ ରୀତିନୀତି ବିକଶିତ ହୋଇଥିଲା, ତାକୁ ଚଳାଇବା ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ଗଢ଼ି ଉଠିଥିଲା, ଗଣିତର ଏକ ବିଶେଷ ଧାରାକୁ ତାହା ଉତ୍ସାହିତ କରୁଥିଲା। 1730 ମସିହାରେ ଜନ୍ମ ନେଇଥିବା ଟ୍ରାଇପସ୍ ପରୀକ୍ଷା ଆରମ୍ଭରୁ ହିଁ କଷ୍ଟକର ଥିଲା। ସମୟକ୍ରମେ ତାହା ଆହୁରି କଷ୍ଟକର

ଓ ଗୁରୁତ୍ୱପୂର୍ଣ୍ଣ ହୋଇଉଠିଲା। ଅନନ୍ୟ ଇଂରେଜ ଧାରାରେ ତାହା ପରମ୍ପରାର ଚମକ ପାଇଲା ଏବଂ ପରମ୍ପରାର ବୃଥା ବୋଝରେ ଭାରାକ୍ରାନ୍ତ ମଧ୍ୟ ହୋଇଗଲା।

ଟ୍ରାଇପସ୍ ପରୀକ୍ଷାର୍ଥୀମାନଙ୍କର ଏକ ମେଧା ତାଲିକା ତିଆରି କରାଯାଉଥିଲା ଯେଉଁଥିରେ ତିନିଟି ଶ୍ରେଣୀ ରହୁଥିଲା ଏବଂ ଏହାକୁ ପଢ଼ି ଶୁଣାଇବା ପାଇଁ ଏକ ବିଶେଷ ଉତ୍ସବ ସିନେଟ କକ୍ଷରେ ଆୟୋଜିତ ହେଉଥିଲା। ପ୍ରଥମ ଶ୍ରେଣୀରେ ରହୁଥିବା ପିଲାଙ୍କୁ 'ରାଙ୍ଗ୍‌ଲର୍' କୁହାଯାଉଥିଲା କାରଣ ଆଗ କାଳରେ ସେମାନେ ଲମ୍ବା ସମୟ ଧରି ଜୋରଦାରିଆ ତର୍କ କରୁଥିଲେ। ସବୁଠାରୁ ଉପରେ ଥିବା ପିଲାକୁ ବରିଷ୍ଠ ରାଙ୍ଗ୍‌ଲର୍ ଉପାଧି ମିଳୁଥିଲା ଏବଂ ତାକୁ ଦେଖିବା ପାଇଁ ସମସ୍ତେ ସିନେଟ୍ କକ୍ଷକୁ ଆସୁଥିଲେ। ମହିଳାମାନେ ସାଧାରଣତଃ କେମ୍ବ୍ରିଜର କାର୍ଯ୍ୟକ୍ରମ ସବୁର ବେଶ୍ ଦୂରରେ ରହନ୍ତି। କିନ୍ତୁ ଟ୍ରାଇପସ୍ ପରୀକ୍ଷାଫଳ ଘୋଷଣା ବେଳେ ସେମାନେ ଉପସ୍ଥିତ ରହନ୍ତି। 1751 ମସିହାରେ କେମ୍ବ୍ରିଜର କୁଳପତିଙ୍କୁ କୁହାଯାଇଥିଲା ଯେ ରାଙ୍ଗ୍‌ଲର୍‌ମାନେ ଆଶା କରନ୍ତି ଯେ ସେମାନେ ସମ୍ମାନିତ ହେବା ସମୟରେ ତାଙ୍କର ପରିଚିତ ଯୁବତୀମାନେ ତାଙ୍କୁ ବଧାଇ ଜଣାନ୍ତୁ।

ହାର୍ଡିଙ୍କ ସମୟକୁ ଏହି ସମ୍ମାନ ବହୁ ମାତ୍ରାରେ ବଢ଼ି ଯାଇଥିଲା। ଉଚ୍ଚକ୍ରମର ପିଲାମାନଙ୍କର ନାଁ ଡକା ହେଲାବେଳେ ତାଙ୍କର ସାଙ୍ଗମାନେ ତାଳିମାରି ଓ ପାଟିକରି ବଧାଇ ଜଣାଉଥିଲେ। ରାଙ୍ଗ୍‌ଲର୍‌ଙ୍କ ତଳକୁ ଦ୍ୱିତୀୟ ଶ୍ରେଣୀରେ ରହୁଥିଲେ ବରିଷ୍ଠ ଅପ୍ଟିମ୍ ଏବଂ ଶେଷରେ ରହୁଥିଲେ ତୃତୀୟ ଶ୍ରେଣୀ ବା କନିଷ୍ଠ ଅପ୍ଟିମ୍। କନିଷ୍ଠ ଅପ୍ଟିମ୍ ଭିତରେ ସବୁଠାରୁ ତଳେ ଥିବା ପିଲା ତା'ର ଫଳ ଆଣିବାକୁ ଗଲାବେଳେ ତା'ର ସାଙ୍ଗମାନେ ଗୋଟିଏ 'କାଠ ଚାମୁଚ ବା ଉଡେନ୍ ସ୍ପୁନ୍' ଗ୍ୟାଲେରି ଉପରୁ ତଳକୁ ଖସାଉଥିଲେ। ସେହି 'ଚାମୁଚ'ଟି ପ୍ରକୃତରେ ଗୋଟିଏ ବେଶ୍ ବଡ଼, ପ୍ରାୟ ସେ ପିଲା ଉଚ୍ଚତାର, ସୁସଜ୍ଜିତ ଚଟୁ। ପିଲାଟି ତାକୁ କାନ୍ଧରେ ପକାଇ ସଗର୍ବେ ତା'ର ସାଙ୍ଗମାନଙ୍କ ସହିତ କକ୍ଷରୁ ବାହାରିଯାଏ।

କାଠ ଚାମୁଚ କେବଳ ଏକ ମଜାଳିଆ ସାନ୍ତ୍ୱନାମୂଳକ ପୁରସ୍କାର। କିନ୍ତୁ ବରିଷ୍ଠ ରାଙ୍ଗ୍‌ଲର୍ ପାଉଥିବା ସମ୍ମାନ ଏକ ଜ୍ୟୋତି ଭଳି ଜୀବନ ସାରା ଝଲସେ। ଉପରେ ଥିବା ଦଶ ଜଣ ଖଣ୍ଡେ ରାଙ୍ଗ୍‌ଲର୍ ମଧ୍ୟ ଏହି ସମ୍ମାନର କିଛି ଅଂଶ ପା'ନ୍ତି ଏବଂ ତାଙ୍କ ଭବିଷ୍ୟତ ଜୀବନରେ ଏହା ବିଶେଷ ସାହାଯ୍ୟ କରେ। କେମ୍ବ୍ରିଜ ଫିଲୋସଫିକାଲ୍ ସୋସାଇଟିର ମତରେ, ''ବରିଷ୍ଠ ରାଙ୍ଗ୍‌ଲର୍ ସବୁବେଳେ ଉଚ୍ଚକୋଟୀର ଗଣିତଜ୍ଞ ହୋଇ ନ ଥାଏ କିନ୍ତୁ ଏହା ନିଶ୍ଚିତ ଯେ ଇଚ୍ଛାକଲେ ସେ ଖୁବ୍ ପ୍ରଭାବଶାଳୀ ହୋଇପାରେ।'' କେମ୍ବ୍ରିଜରେ ଓ କିଛି ମାତ୍ରାରେ ଇଂଲଣ୍ଡର ଅନ୍ୟ ସବୁ ଜାଗାରେ ବରିଷ୍ଠ ରାଙ୍ଗ୍‌ଲର୍ ଜଣେ ତାରକା ପାଲଟି ଯାଏ।

ଇଂରେଜ ସମାଜ ପାଇଁ ଏସବୁ ବେଶ୍ ଭଲ ଥିଲା। ଟ୍ରାଇପସ୍ ପରୀକ୍ଷାରେ ସଫଳତା ଯେ ଗଣିତ ଦକ୍ଷତାର ଏକ ପ୍ରତିଫଳନ ଥିଲା ସେ ବିଷୟରେ କାହାର ପ୍ରଶ୍ନ ନ ଥିଲା। ଯଦି କେହି ଭଲ ଗଣିତଜ୍ଞ ହେଉଥିଲା, ସେ ଥିଲା ରାଙ୍ଗ୍‌ଲର୍, କାଠ ଚାମୁଚ ନୁହେଁ। କିନ୍ତୁ ମେଧା ତାଲିକାରେ କ୍ରମର ସଠିକତା ଉପରେ କାହାରି ଭରସା ନ ଥିଲା। ଅନେକ ସମୟରେ ଦେଖାଯାଉଥିଲା ଯେ ବରିଷ୍ଠ ରାଙ୍ଗ୍‌ଲର୍‌ଙ୍କ ତୁଳନାରେ ଦ୍ୱିତୀୟ ରାଙ୍ଗ୍‌ଲର୍‌ମାନେ ଗଣିତଜ୍ଞ ଭାବରେ ଅଧିକ ସଫଳ ହେଉଥିଲେ। ବିଦ୍ୟୁତ ଓ ଚୁମ୍ବକତ୍ୱ ଭିତରେ ସମ୍ପର୍କ ଦେଖାଇଥିବା ବିଶିଷ୍ଟ ଗାଣିତିକ-ପଦାର୍ଥ ବିଜ୍ଞାନୀ ମାକ୍ସୱେଲ୍

ଜଣେ ଦ୍ୱିତୀୟ ରାଙ୍ଗ୍‌ଲର୍ ଥିଲେ। ଇଲେକ୍‌ଟ୍ରନ୍‌ର ଆବିଷ୍କର୍ତ୍ତା ଜେ. ଜେ. ଥମ୍‌ସନ୍ ମଧ୍ୟ ଦ୍ୱିତୀୟ ରାଙ୍ଗ୍‌ଲର୍ ଥିଲେ।

ସେମାନଙ୍କ ସହିତ ଥିଲେ ତାପଗତି ବିଜ୍ଞାନୀ ଲର୍ଡ କେଲ୍‌ଭିନ୍, ଯିଏ ସେତେବେଳେ ୱିଲିଅମ୍ ଥମ୍‌ସନ୍ ନାମରେ ଜଣାଥିଲେ ଏବଂ ତାଙ୍କ ସମୟର ଶ୍ରେଷ୍ଠ ଗଣିତଜ୍ଞର ମାନ୍ୟତା ପାଉଥିଲେ। ତାଙ୍କ ବିଷୟରେ କୁହାଯାଏ ଯେ ସେ ନିଜେ ଓ ଅନ୍ୟ ସମସ୍ତେ ନିଶ୍ଚିତ ଥିଲେ ଯେ ସେ ହିଁ ବରିଷ୍ଠ ରାଙ୍ଗ୍‌ଲର୍ ହେବେ। ପରୀକ୍ଷା ଫଳ ବାହାରିବା ଦିନ ଦ୍ୱିତୀୟ ରାଙ୍ଗ୍‌ଲର୍ କିଏ ହୋଇଛି ଦେଖିଆସିବା ପାଇଁ ସେ ତାଙ୍କ ସେବକକୁ ପଠାଇଲେ। ଫେରି ଆସି ସେବକ ଜଣକ କହିଲେ, 'ଆପଣ'। ସେ ବର୍ଷ ଆଉ ଜଣେ କିଏ ଟ୍ରାଇପସ୍ ପାଠ ଉପରେ ଅଧିକ ଦଖଲ ରଖିଥିଲା, କିନ୍ତୁ ଗଣିତଜ୍ଞ ହିସାବରେ ତାଙ୍କ ନାଁ ପରେ କେହି ମନେରଖି ନ ଥିଲେ।

ଏହି ପରୀକ୍ଷାକୁ ନେଇ ଗୋଟିଏ ବଡ଼ ସମସ୍ୟା ମୁଣ୍ଡ ଟେକୁଥିଲା। ଏହି ପରୀକ୍ଷାରେ କିଛି ନିର୍ଦ୍ଦିଷ୍ଟ ପ୍ରକାରର ଗଣିତ ପ୍ରାଧାନ୍ୟ ପାଉଥିଲା, କେହି କେହି ଏହାକୁ ଟ୍ରାଇପସ୍ ଗଣିତ କହୁଥିଲେ। ଗଣିତ ଗବେଷଣାର ସାମ୍ପ୍ରତିକ ବିଷୟ ସହିତ ଏହାର କିଛି ସମ୍ପର୍କ ରହୁ ନ ଥିଲା। ଆଗ ସମୟର ୟୁକ୍ଲିଡୀୟ ଓ ନିଉଟନୀୟ ଗଣିତ ବିଷୟରେ ବେଶି ପ୍ରଶ୍ନ ପଡୁଥିଲା। ଏହି ପରୀକ୍ଷା ଗାଣିତିକ ହିସାବରେ କ୍ଷିପ୍ରତା ଓ ସଠିକତା ଦେଖୁଥିଲା, କିନ୍ତୁ ଗଭୀର ଅନ୍ତର୍ଦୃଷ୍ଟିର ମାପକାଠି ନ ଥିଲା।

ଟ୍ରାଇପସ୍ ପରୀକ୍ଷାର ପ୍ରଶ୍ନଗୁଡ଼ିକ ଗୋଲକଧନ୍ଦା ଭଳି ହେଉଥିଲା। ଜଟିଳ ବା ଲମ୍ବା ପ୍ରମାଣ ମାଧ୍ୟମରେ ସମସ୍ୟାର ସମାଧାନ ପାଇଁ ଟ୍ରାଇପସ୍ ପରୀକ୍ଷାରେ ସମୟ ରହୁ ନ ଥିଲା। ବରଂ ପ୍ରଶ୍ନରେ ଲୁଚି ରହିଥିବା କୌଶଳକୁ ବୁଝିବା ଜରୁରୀ ହେଉଥିଲା। ସେ ବିଷୟରେ ଜେ. ଜେ. ଥମ୍‌ସନ୍ କହିଥିଲେ ଯେ ଟ୍ରାଇପସ୍ ପରୀକ୍ଷା ଓକିଲମାନଙ୍କ ପାଇଁ ଭଲ ତାଲିମ ହେବ।

ଟ୍ରାଇପସ୍ ପାଇଁ ପିଲାଙ୍କୁ ପ୍ରସ୍ତୁତ କରିବା ପାଇଁ ଏକ ବିକଳ୍ପ ଶିକ୍ଷା ବ୍ୟବସ୍ଥା ବିକଶିତ ହେବାରେ ଲାଗିଲା। ଊନବିଂଶ ଶତାବ୍ଦୀରେ ଅକ୍ସଫୋର୍ଡ ଓ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଅଧ୍ୟାପକମାନେ ନିଜର ଅଧ୍ୟୟନ ଦୁନିଆରେ ବୁଡ଼ି ରହୁଥିଲେ। ଛାତ୍ରମାନଙ୍କ ସହିତ ସେମାନଙ୍କର ସମ୍ପର୍କ ପ୍ରାୟ ରହୁ ନ ଥିଲା। କଲେଜର ଟିଉଟରମାନେ ଛାତ୍ରଙ୍କ ଶିକ୍ଷାର ଦାୟିତ୍ୱ ନେଉଥିଲେ। କିନ୍ତୁ ଟ୍ରାଇପସ୍ ପାଇଁ ପିଲାଙ୍କୁ ପ୍ରସ୍ତୁତ କରିବା ଦିଗରେ ସେମାନଙ୍କର ଦକ୍ଷତା ସୀମିତ ଥିଲା। ଏହି ଅଭାବ ପୂରଣ କରିବା ପାଇଁ ଘରୋଇ ଶିକ୍ଷକମାନେ ଏକ ତୃତୀୟ ଶିକ୍ଷକ ଗୋଷ୍ଠୀ ଭାବରେ ଦେଖାଦେଲେ।

ଗଣିତ ବିଷୟରେ ସର୍ବାଙ୍ଗୀନ ଦକ୍ଷତା ବଢ଼ାଇବା ଏହି ଶିକ୍ଷକମାନଙ୍କର ଲକ୍ଷ୍ୟ ନ ଥିଲା। ବରଂ ବେଶ୍ କିଛି ଟଙ୍କା ବଦଳରେ ସେମାନେ ଟ୍ରାଇପସ୍ ପରୀକ୍ଷାରେ ଭଲ କରିବା ପାଇ ତାଲିମ ଦେଉଥିଲେ। ଜଣେ ବରିଷ୍ଠ ରାଙ୍ଗ୍‌ଲର୍ କହିଥିଲେ ଯେ ଏହି ଘରୋଇ ଶିକ୍ଷକମାନେ ପିଲାଙ୍କୁ ଦୌଡ଼ରେ ଭାଗନେଉଥିବା ଘୋଡ଼ା ଭଳି ତାଲିମ ଦେଉଥିଲେ। ଚାରି ପାଞ୍ଚ ଜଣିଆ ଦଳରେ ବସାଇ ଶିକ୍ଷକ ଓ ପିଲାମାନେ ସମସ୍ୟା ସମାଧାନରେ ଲାଗୁଥିଲେ। ସପ୍ତାହକୁ ଦୁଇ ଚାରିଥର ସେ ହୁଏତ କିଛି ନିର୍ଦ୍ଦିଷ୍ଟ ବିଷୟରେ ପଢ଼ାଉଥିଲେ। ଅଧିକାଂଶ ସମୟରେ କିନ୍ତୁ ସେମାନେ ପୁରୁଣା ପ୍ରଶ୍ନକୁ ସେ ଘାଣ୍ଟି ଅଲଗା ଅଲଗା ଦଳରେ ସଜାଇ ରଖୁଥିଲେ ଏବଂ ସେସବୁର ସହଜ ସମାଧାନ ପାଇଁ ନିଜର ନୋଟ୍ ତିଆରି କରୁଥିଲେ। ଗଣିତ କ୍ଷେତ୍ରରେ କିଛି ମୌଳିକ ତତ୍ତ୍ୱ ଯୋଡ଼ିବା ଘରୋଇ ଶିକ୍ଷକଙ୍କ

ପାଇଁ ବିରଳ କାମ ଥିଲା। କିନ୍ତୁ ବରିଷ୍ଠ ରାଙ୍ଗ୍‌ଲର୍ ସୃଷ୍ଟି କରିବାରେ ଏମାନଙ୍କର ଦକ୍ଷତାକୁ ସମସ୍ତେ ମାନୁଥିଲେ। ଇ. ଜେ. ରୁଥ୍ ନାମକ ଜଣେ ଘରୋଇ ଟ୍ରାଇପସ୍ ପ୍ରଶିକ୍ଷକ ପ୍ରତିବର୍ଷ ହାରାହାରି ଜଣେ ହିସାବରେ ପ୍ରାୟ ଦୁଇ ଡଜନ ବରିଷ୍ଠ ରାଙ୍ଗ୍‌ଲର୍ ସୃଷ୍ଟି କରିଥିଲେ।

ପରୀକ୍ଷାର୍ଥୀଙ୍କ ପାଇଁ ଟ୍ରାଇପସ୍ ପଢ଼ାର ଚାପ ଅତ୍ୟଧିକ ହେଉଥିଲା। ବରିଷ୍ଠ ରାଙ୍ଗ୍‌ଲର୍ ହେବାକୁ ଆଶା ରଖିଥିବା ପିଲାକୁ ତା'ର ଦୁଇତୃତୀୟାଂଶ ସମୟ ଖଟାଇ ଅଳ୍ପ ସମୟରେ କଷ୍ଟ ସମସ୍ୟାର ସମାଧାନ ଅଭ୍ୟାସ କରିବାକୁ ହେଉଥିଲା। କଲେଜ ପାଠ ପଢ଼ିବାକୁ ସମୟ ହେଉ ନ ଥିଲା। 1870 ଦଶକର ଶେଷ ଭାଗରେ ତାଙ୍କ ଅଧ୍ୟାପକଙ୍କ ବିଷୟରେ ଏ. ଆର୍. ଫୋର୍‌ସାଇଥ୍ ଲେଖିଥିଲେ -

> ଆମକୁ ପଢ଼ାଇବାର ସୁଯୋଗ ଆମେ ସେମାନଙ୍କୁ ଦେଉ ନ ଥିଲୁ। ତାଙ୍କର କାମ ବିଷୟରେ ଆମେ ପଢୁ ନ ଥିଲୁ କାରଣ ଦୃଢ଼ ଭାବରେ ଏହା କୁହାଯାଉଥିଲା ଯେ ତାହା ଟ୍ରାଇପସ୍ ପରୀକ୍ଷାରେ କିଛି ବି ସାହାଯ୍ୟ କରିବନାହିଁ। କେତେ ଛାତ୍ର ତାଙ୍କ ଅଧ୍ୟାପକଙ୍କୁ ଚିହ୍ନୁ ବି ନ ଥିଲେ। ଗଣିତ ପାଇଁ ବିଖ୍ୟାତ ବିଶ୍ୱବିଦ୍ୟାଳୟର ଗଣିତ ଛାତ୍ରମାନଙ୍କ ପାଇଁ ଏଭଳି ବିଚିତ୍ର ପରିସ୍ଥିତି ସୃଷ୍ଟି କରିବା ପାଇଁ ମୁଖ୍ୟତଃ ଟ୍ରାଇପସ୍ ହିଁ ଦାୟୀ ଥିଲା। ଟ୍ରାଇପସ୍ ସମ୍ପର୍କିତ କାର୍ଯ୍ୟକଳାପର କିଛି ନିର୍ଦ୍ଦିଷ୍ଟ ରୂପରେଖ ନ ଥିଲା, କିନ୍ତୁ ତାହା ଏଭଳି ମାନ୍ୟତା ପାଉଥିଲା ଯେ ତାକୁ ସମାଲୋଚନା କରିବା ସମ୍ଭବ ନ ଥିଲା।

ହାର୍ଡିଙ୍କ ସମୟକୁ ମଧ୍ୟ ପରିସ୍ଥିତି କିଛି ବଦଳି ନ ଥିଲା। ଗଣିତର ଯେଉଁ ବିଭାଗ ଟ୍ରାଇପସ୍‌ରେ ସାହାଯ୍ୟ କରୁ ନ ଥିଲା ତାହା ଯେତେ ଆଗ୍ରହଜନକ ହେଲେ ମଧ୍ୟ ପିଲାମାନେ ତାକୁ ଏଡ଼ାଇ ଯାଉଥିଲେ। ଟ୍ରାଇପସ୍‌ରେ ସଫଳ ହେଉଥିବା ପିଲା ଭଲ କଲେଜରେ ପଢ଼ିବା ପାଇଁ ଛାତ୍ରବୃତ୍ତି ପାଉଥିଲା ଏବଂ ଭବିଷ୍ୟତରେ ନିଜ ପେଷାରେ ଆଗେଇବାରେ ଏହା ତାକୁ ସାହାଯ୍ୟ କରୁଥିଲା। କିନ୍ତୁ ଗବେଷଣା ପାଇଁ ଉପଯୁକ୍ତ ମନୋବୃତ୍ତି ଦେଖାଉଥିବା ପିଲାକୁ ଉତ୍ସାହିତ କରିବା ପାଇଁ ଏଭଳି କିଛି ମିଳୁ ନ ଥିଲା।

ହାର୍ଡି ମଧ୍ୟ ଟ୍ରାଇପସ୍ ଭଉଁରିରେ ପଡ଼ିଗଲେ। ସେ ସମୟରେ ସବୁଠାରୁ ବେଶି ବରିଷ୍ଠ ରାଙ୍ଗ୍‌ଲର୍ ସୃଷ୍ଟି କରୁଥିବା ଆର୍. ଆର୍. ୱେବ୍‌ଙ୍କ ଦାୟିତ୍ୱରେ ସେ ପ୍ରସ୍ତୁତି ଆରମ୍ଭ କଲେ। କେମ୍ବ୍ରିଜରେ ପାଠପଢ଼ା ବର୍ଷଟି ତିନିଟି ଟର୍ମରେ ଭାଗ ହୋଇଥାଏ ଏବଂ ପ୍ରତି ଟର୍ମରେ ସାତ-ଆଠ ସପ୍ତାହ ରହେ। ସାଧାରଣତଃ ଦଶ ସପ୍ତାହ ଧରି ଟ୍ରାଇପସ୍ ପ୍ରସ୍ତୁତି ଚାଲେ। ଶେଷରେ ଜାନୁଆରି ମାସରେ ଥଣ୍ଡା ସିନେଟ କକ୍ଷରେ ପରୀକ୍ଷାର୍ଥୀମାନେ ଟ୍ରାଇପସ୍ ଯନ୍ତ୍ରଣାର ସାମନା କରନ୍ତି। ଏହା କରିବା ହାର୍ଡିଙ୍କ ପାଇଁ ବାଧ୍ୟତାମୂଳକ ଥିଲା।

ହାର୍ଡି କିନ୍ତୁ ଟ୍ରାଇପସ୍‌କୁ ନିରର୍ଥକ ମନେ କରୁଥିଲେ। ଗଣିତରେ ମେଧାବୀ ପିଲାଙ୍କ ଭିତରେ କେବଳ ହାର୍ଡି ଯେ ଏଭଳି ବିଦ୍ରୋହ କରୁଥିଲେ ତା'ନୁହେଁ। ବିଶିଷ୍ଟ ଗଣିତଜ୍ଞ-ଦାର୍ଶନିକ ବର୍ଟ୍ରାଣ୍ଡ ରସେଲ୍ 1893 ମସିହାରେ ସପ୍ତମ ରାଙ୍ଗ୍‌ଲର୍ ହୋଇଥିଲେ। ପରେ ସେ ଲେଖିଥିଲେ, "ଟ୍ରାଇପସ୍ ପାଇଁ ପ୍ରସ୍ତୁତିକୁ ଦେଖି ମୋର ମନେହେଲା ଯେ ଗଣିତରେ କେବଳ ଚାତୁର୍ଯ୍ୟ ଓ କୌଶଳ ରହିଛି, ଠିକ୍ ଯେପରି ଶବ୍ଦଧନ୍ଧାରେ ରହିଥାଏ।" ଟ୍ରାଇପସ୍ ପରୀକ୍ଷା ପରେ ସେ ଘୋଷଣା କଲେ ଯେ ସେ ଆଉ କେବେ ବି ଗଣିତ ଛୁଇଁବେନାହିଁ ଏବଂ ଏକ ସମୟରେ ତାଙ୍କର ସବୁ ଗଣିତ ବହି ବିକିଦେଲେ।

କିନ୍ତୁ ରସେଲ୍‌ଙ୍କୁ ସେ ଯନ୍ତ୍ରଣା ସହିବାକୁ ହୋଇଥିଲା। ପ୍ରାୟ ଅନ୍ୟ ସମସ୍ତେ ତାକୁ ସହିବାକୁ ବାଧ୍ୟ ହେଉଥିଲେ। ହାର୍ଡିଙ୍କ ସହକର୍ମୀ ଲିଟଲ୍‌ଉଡ୍ ମାନିଥିଲେ ଯେ ସେ ମଧ୍ୟ ଟ୍ରାଇପସ୍ ଗଣିତକୁ ନିରର୍ଥକ ମନେ କରୁଥିଲେ, କିନ୍ତୁ ଦାନ୍ତ ଚିପି ତାହା ପାର ହୋଇଗଲେ। ହାର୍ଡିଙ୍କ ବର୍ଣ୍ଣନା ଅନୁସାରେ ଲିଟଲ୍‌ଉଡ୍ ଠିକ୍ କରିଥିଲେ ଯେ ସେ ତାଙ୍କର ଅସଲ ଗଣିତ ଶିକ୍ଷାକୁ ଦୁଇବର୍ଷ ପାଇଁ ବନ୍ଦ ରଖିବେ ଏବଂ ସେତିକି ସମୟରେ ସେ ସବୁ ଟ୍ରାଇପସ୍ କୌଶଳରେ ଦକ୍ଷତା ହାସଲ କରିବେ। ଦୁଇ ବର୍ଷ ପରେ ସେ ବରିଷ୍ଠ ରାଙ୍ଗ୍‌ଲର୍ ସମ୍ମାନକୁ ମୁଣ୍ଡରେ ବାନ୍ଧି ତାଙ୍କ ଗଣିତ ଅଧ୍ୟୟନ ଚଳାଇ ରଖିବେ। ଏହା ତାଙ୍କ ପ୍ରକୃତ ଗଣିତ ପେଷାରେ ବାଧା ଆଣିବନାହିଁ ବୋଲି ସେ ଆଶା କରୁଥିଲେ।

ଲିଟଲ୍‌ଉଡ୍ ଠିକ୍ ତାହା ହିଁ କଲେ। କିନ୍ତୁ ତରୁଣ ହାର୍ଡି କେମ୍ବ୍ରିଜରେ ନୂଆ ଥିଲେ ଏବଂ ଗଭୀର ମୋହଭଙ୍ଗ ଅବସ୍ଥାରେ ସେ ଭାବିଲେ ଯେ ଟ୍ରାଇପସ୍ ପ୍ରସ୍ତୁତି ସେ ଚଳାଇ ରଖିପାରିବେନାହିଁ। ସେଭଳି ମୂର୍ଖାମି କରିବା ଅପେକ୍ଷା ସେ ମୂଳରୁ ଗଣିତ ଛାଡ଼ିଦେବେ ବୋଲି ଭାବିବାକୁ ଲାଗିଲେ।

ଏହାର ପଚାଶ ବର୍ଷ ପରେ ହାର୍ଡି ଲେଖିଥିଲେ, "ଗଣିତଜ୍ଞ ହେବା ଛଡ଼ା ଆଉ କିଛି ହେବା କଥା ମୁଁ କେବେ ଭାବିଥିବା କଥା ମୋର ମନେନାହିଁ। ମୋର ନିର୍ଦ୍ଦିଷ୍ଟ ଦକ୍ଷତା ଯେ ସେହି ଦିଗରେ ଥିଲା ତାହା ମୂଳରୁ ସ୍ପଷ୍ଟ ଜଣାପଡୁଥିଲା। ବୟସ୍କମାନଙ୍କର ଏହି ମତକୁ କେବେ ପ୍ରଶ୍ନ କରିବା କଥା ମୁଁ ଭାବିପାରି ନ ଥିଲି।" ବିନମ୍ର ଭାବରେ ସେ କହୁଥିଲେ ଯେ କଳାରେ ତାଙ୍କର କିଛି ଦକ୍ଷତା ନ ଥିଲା, କିନ୍ତୁ ତାହା ଠିକ୍ ନ ଥିଲା। ଦାର୍ଶନିକ ଭାବରେ ସେ କିଛି ମୌଳିକତା ଦେଖାଇ ପାରିବେନାହିଁ ବୋଲି ଭାବୁଥିଲେ। ସେ ଜଣେ ସାମ୍ବାଦିକ ହୁଏତ ହୋଇପାରିଥା'ନ୍ତେ। କିନ୍ତୁ ଟ୍ରାଇପସ୍ ଯନ୍ତ୍ରଣାରୁ ମୁକ୍ତ ହେବା ପାଇଁ ସେ ଇତିହାସ ପଢ଼ିବା ବିଷୟରେ ଚିନ୍ତା ଆରମ୍ଭ କଲେ।

ଟ୍ରିନିଟିରେ ଯୋଗଦେବା ପରେ ହାର୍ଡି ଇତିହାସ ବିଷୟରେ ଏକ ପ୍ରବନ୍ଧ ଲେଖିଥିଲେ। ପରୀକ୍ଷକମାନଙ୍କୁ ତାହା ଖୁବ୍ ପ୍ରଭାବିତ କରିଥିଲା ଏବଂ ସେ ଚାହିଁଥିଲେ ଗଣିତ ବଦଳରେ ଇତିହାସ ପାଇଁ ଛାତ୍ରବୃତ୍ତି ପାଇ ପାରିଥା'ନ୍ତେ। ୱିଞ୍ଚେଷ୍ଟର୍‌ର ନିରସ ବୌଦ୍ଧିକ ପରିବେଶ ଭିତରେ ପ୍ରଧାନ ଶିକ୍ଷକ ଫିଅରନ୍ ପଢ଼ାଉଥିବା ଇତିହାସ ପାଠ ତାଙ୍କୁ ଖୁବ୍ ସରସ ମନେ ହେଉଥିଲା। ଏବେ ସେ ଇତିହାସ ପଢ଼ିବାର ଯୋଜନା ନେଇ ତାଙ୍କର ଶିକ୍ଷା ନିର୍ଦ୍ଦେଶକଙ୍କୁ ଭେଟିବାକୁ ଗଲେ। ହାର୍ଡିଙ୍କ ଗୋଳମାଳିଆ ଚିନ୍ତାକୁ ସଜାଡ଼ିବାରେ ସାହାଯ୍ୟ କରିବା ପାଇଁ ଶିକ୍ଷା ନିର୍ଦ୍ଦେଶକ ତାଙ୍କୁ ଅଗଷ୍ଟସ୍ ଏଡ୍‌ୱାର୍ଡ ହ୍ୟୁଗ୍ ଲଭ୍‌ଙ୍କୁ ଭେଟିବାକୁ ପଠାଇଲେ।

ତେତିଶ ବର୍ଷ ବୟସର ଲଭ୍ ମୁହଁରେ ହଳେ ଖୁବ୍ ମୋଟା ନିଶ ଓ ବେଶ୍ ଚଉଡ଼ା କଲି ରଖିଥିଲେ। ତାଙ୍କର ବଡ଼ ମୁଣ୍ଡ ଚନ୍ଦା ଥିଲା। କିଛିବର୍ଷ ଆଗରୁ ଲଭ୍ ଇଂଲଣ୍ଡର ସବୁଠାରୁ ବେଶି ସମ୍ମାନାସ୍ପଦ ବିଜ୍ଞାନ ଅନୁଷ୍ଠାନ ରୟାଲ ସୋସାଇଟିର ଫେଲୋ ହୋଇଥା'ନ୍ତି। 1893 ମସିହାରେ ସେ ତାଙ୍କର ଦୁଇ ଖଣ୍ଡର ଗ୍ରନ୍ଥ *ଟ୍ରିଟାଇଜ୍ ଅନ୍ ଦି ମାଥେମାଟିକାଲ୍ ଥିଓରି ଅଫ୍ ଇଲାଷ୍ଟିସିଟି* (ସ୍ଥିତିସ୍ଥାପକତାର ଗାଣିତିକ ତତ୍ତ୍ୱ ବିଷୟକ ଗ୍ରନ୍ଥ) ପୂରା କରିଥା'ନ୍ତି। ଚାପ ବା ଆଘାତ ପାଇଲେ ବା ମୋଡ଼ିହେଲେ ବସ୍ତୁ କିପରି ତା'ର ଆକୃତି ବଦଳାଏ ସେହି ଗ୍ରନ୍ଥରେ ସେ ତାହା ବର୍ଣ୍ଣନା କରିଥିଲେ। ଲଭ୍ କିନ୍ତୁ ହାର୍ଡିଙ୍କୁ ନିଜ ଆଗ୍ରହର ବିଷୟରେ କାମ କରିବାକୁ ଚାପ ଦେଲେନାହିଁ। ଯଦିଓ ସେ ନିଜେ

ଜଣେ ପ୍ରାୟୋଗିକ ଗଣିତଜ୍ଞ ଥିଲେ ଗଣିତର ମୌଳିକ ତତ୍ତ୍ୱ ପ୍ରତି ତାଙ୍କର ଆଗ୍ରହ ରହିଥିଲା। ହାର୍ଡିଙ୍କ ଆଗ୍ରହକୁ ବୁଝିକରି ସେ ଫରାସି ଗଣିତଜ୍ଞ କାମିଲ୍ ଜୋର୍ଡାନ ଲେଖିଥିବା କୋର୍ସ୍ ଡି'ଆନାଲାଇସେ ଡି ଏଲ୍'ଇକୋଲ୍ ପଲିଟେକ୍ନିକ୍ ବହି ତାଙ୍କୁ ପଢ଼ିବାକୁ କହିଲେ।

ହାର୍ଡିଙ୍କ ତରୁଣ ମନରେ ଜୋର୍ଡାନ୍‌ଙ୍କ ବହି ଗଭୀର ପ୍ରଭାବ ପକାଇଲା ଏବଂ ତାଙ୍କର ଗଣିତ ଛାଡ଼ିବା କଥା ନୋହିଲା। ଏହାର ପ୍ରାୟ ତିରିଶ ବର୍ଷ ପରେ ଜୋର୍ଡାନ୍‌ଙ୍କର ମୃତ୍ୟୁ ହେଲା ଏବଂ ସୋସାଇଟିର ବିବରଣୀରେ ତାଙ୍କ ମୃତ୍ୟୁ ସୂଚନା ଲେଖିବାର ସୁଯୋଗ ପାଇଥିଲେ ହାର୍ଡି। ସେଥିରେ ତାଙ୍କ ଜୀବନକୁ ବଦଳାଇ ଦେଇଥିବା ଜୋର୍ଡାନଙ୍କ ବହି ବିଷୟରେ ହାର୍ଡି ଲେଖିଥିଲେ, "ଏହାକୁ ପଢ଼ିବା ଓ ତା'ର ବିଷୟବସ୍ତୁକୁ ଆୟତ୍ତ କରିବାଟା ହିଁ ଏକ ଗଣିତ ଶିକ୍ଷା। ଟ୍ରାଇପସ୍ ଗଣିତର ବିଶାଳ ନିଷ୍ଫଳତା କବଳରୁ ଆସିଥିବା ମୋ ଭଳି ପିଲାଙ୍କର ଏହାର ପ୍ରଭାବକୁ ଅତିରଞ୍ଜିତ କରିବା କଷ୍ଟ। କାରଣ ଏହା ଆମକୁ ଗଣିତର ଅସଲ ରୂପ ଦେଖାଉଥିଲା।"

ଜୋର୍ଡାନ ଓ ୟୁରୋପର ଅନ୍ୟ ଗଣିତଜ୍ଞମାନେ ସାଧାରଣ ମନେହେଉଥିବା କିଛି ଗାଣିତିକ ଅବଧାରଣାକୁ ନେଇ ତାହା ଉପରେ ଗଭୀରତମ ବିଶ୍ଳେଷଣ ଚଳାଉଥିଲେ। କଣ୍ଟିନୁଅସ୍ ଫଙ୍କ୍‌ସନ୍ ବା ଅବିଚ୍ଛିନ୍ନ ଫଳନ ବିଭିନ୍ନ ଚଳ ଭିତରେ ସରଳ ସମ୍ପର୍କ ଦେଖାଏ ଯେଉଁଥିରେ କିଛି ବିଚିତ୍ର ବା ଅପ୍ରତ୍ୟାଶିତ ବ୍ୟବହାର ନ ଥାଏ। ସାଧାରଣ ଗଣିତଜ୍ଞମାନେ ଏହି ଅସ୍ୱଷ୍ଟ ସଂଜ୍ଞାରେ ସନ୍ତୁଷ୍ଟ ରହୁଥିଲେ। କିନ୍ତୁ ଜୋର୍ଡାନ୍‌ଙ୍କ ଭଳି ନୂଆ ଦଳର ଗଣିତଜ୍ଞମାନେ ପ୍ରଶ୍ନ କରିବାକୁ ଲାଗିଲେ - ଫଳନର ସଠିକ ସଂଜ୍ଞା କ'ଣ? ଅବିଚ୍ଛିନ୍ନ କହିଲେ ନିର୍ଦ୍ଦିଷ୍ଟ ଭାବରେ କ'ଣ ବୁଝାଏ? ଏହି ଗଣିତଜ୍ଞମାନେ 'ବିଶ୍ଳେଷକ' ଭାବରେ ପରିଚିତ ହେଲେ।

ଖଣ୍ଡେ କାଗଜ ଉପରେ ଗୋଟିଏ ବୃତ୍ତ ଆଙ୍କିଲେ ତାହା କାଗଜକୁ ଦୁଇ ଭାଗରେ ବିଭକ୍ତ କରିବ - ବୃତ୍ତ ଭିତରେ ଥିବା ଭାଗ ଓ ବୃତ୍ତର ବାହାରେ ଥିବା ଭାଗ। ବାହାର ଭାଗର କାଗଜରେ ଯଦି ଦୁଇଟି ବିନ୍ଦୁ ରହେ ତେବେ ସେ ଦୁଇଟିକୁ ଗୋଟିଏ ରେଖା ସାହାଯ୍ୟରେ ଯୋଡ଼ିହେବ ଯାହା ବୃତ୍ତକୁ କାଟିବନାହିଁ। ରେଖାଟି ସରଳ ହେବା ଜରୁରୀ ନୁହେଁ, ତାହା ବକ୍ର ହୋଇପାରେ। ସେହିଭଳି ଗୋଟିଏ ବିନ୍ଦୁ ଯଦି ବୃତ୍ତ ଭିତରେ ରହେ ଓ ଅନ୍ୟଟି ବୃତ୍ତର ବାହାରେ ରହେ ତେବେ ତାଙ୍କୁ ଯୋଡୁଥିବା ରେଖା ନିଶ୍ଚୟ ବୃତ୍ତକୁ କାଟିବ।

ସାଧାରଣ ଗଣିତଜ୍ଞମାନେ ଉପରର କଥା ବିଷୟରେ ନିଶ୍ଚିତ ରହୁଥିଲେ। ଏଭଳି ସୁସ୍ୱଷ୍ଟ ବିଷୟରେ ଆଉ କିଛି ଅଧିକ ଭାବିବାର ଅଛି ବୋଲି ସେମାନେ ସ୍ୱପ୍ନ ବି ଦେଖୁ ନ ଥିଲେ। କିନ୍ତୁ ବିଶ୍ଳେଷକମାନେ ପଚାରିବାକୁ ଲାଗିଲେ, 'ନିଶ୍ଚୟ?' ଜୋର୍ଡାନ ଏହି ସତ ମନେହେଉଥିବା କଥାକୁ ଉପପାଦ୍ୟ ହିସାବରେ ନେଇ ତା'ର ବିଧିବଦ୍ଧ ପ୍ରମାଣ ଖୋଜିବାରେ ଲାଗିଲେ। କିନ୍ତୁ ପ୍ରମାଣ କରିବାରେ ସେ ସଫଳ ହେଲେନାହିଁ; ଅନ୍ତତଃ ପୂରା ପ୍ରମାଣ ସେ ପାଇପାରିଲେନାହିଁ। ପରେ ଅବଶ୍ୟ ଦେଖାଗଲା ଯେ ତାଙ୍କ ପ୍ରମାଣରେ ଅନେକ ଭୁଲ ରହିଥିଲା ଯାହାକୁ ଅନ୍ୟମାନେ ସୁଧାରିଲେ। ଏହି ପ୍ରକ୍ରିୟାରେ ସେମାନେ ଅତି ସୂକ୍ଷ୍ମ ଓ ମାର୍ଜିତ ତର୍କ ବ୍ୟବହାର କରୁଥିଲେ ଯାହା କୋଡ଼ିଏ ବର୍ଷର ହାର୍ଡିଙ୍କୁ ରହସ୍ୟମୟ ମନେହେଉଥିଲା। ଜୋର୍ଡାନଙ୍କ ବହିର ଏକ ଉନ୍ନତ ଦ୍ୱିତୀୟ ସଂସ୍କରଣ 1896 ମସିହାରେ ପ୍ରକାଶିତ ହେଲା। ସେ ବହି ବିଷୟରେ ହାର୍ଡି ଲେଖିଥିଲେ, "ସେହି ଚମତ୍କାର ବହିକୁ

ପଢ଼ିବାର ବିସ୍ମୟକର ଅନୁଭୂତିକୁ ମୁଁ କେବେ ବି ଭୁଲିପାରିବନାହିଁ। ମୋ ପିଢ଼ିର ଅନେକ ଗଣିତଜ୍ଞଙ୍କ ପାଇଁ ଏହା ଏକ ପ୍ରେରଣା ଥିଲା। ଏହାକୁ ପଢ଼ିବା ବେଳେ ମୁଁ ବୁଝିଲି ଗଣିତର ପ୍ରକୃତ ଅର୍ଥ କ'ଣ।''

ଅବଶ୍ୟ ଟ୍ରାଇପସ୍ ସହିତ ଏସବୁର ଟିକିଏ ବି ସମ୍ପର୍କ ନ ଥିଲା। କିନ୍ତୁ ତାଙ୍କର ଗାଣିତିକ ଉତ୍ସାହ ଫେରି ପାଇଥିବା ହାର୍ଡିଙ୍କୁ ତାହା ନେବାକୁ ହଁ ହେବ ଏବଂ ସେଥିପାଇଁ ଜଣେ କୋଚ୍‌ଙ୍କ ସହିତ ମିଶି କସରତ କରିବାକୁ ପଡ଼ିବ। ପରେ ତାଙ୍କ ସାଥି ଲିଟଲ୍‌ଉଡ୍ କହୁଥିଲେ ଯେ ବିଦ୍ରୋହୀ ହାର୍ଡିଙ୍କୁ ବି ମୁଣ୍ଡ ନୁଆଇଁବାକୁ ହେଲା। ଏହା କିନ୍ତୁ ଏକ ପିତା ଔଷଧ ଭଳି ଥିଲା - ଅସଲ ଗଣିତ ଏବେ ଆଡ଼େଇ ହୋଇ ରହିଲା, ଟ୍ରାଇପସ୍ ଗଣିତକୁ ଆଦରିବାକୁ ପଡ଼ିଲା। ସେହି ଦୁଇ ବର୍ଷର ଆଖିବୁଜା ପଢ଼ା କଥା ମନେପକାଇ ସେ କହୁଥିଲେ, "ଆଦୌ ଦକ୍ଷତା ଓ ଉତ୍ସାହ ନ ଥିବା ଲୋକ ଛଡ଼ା କିଛି ନ ଶିଖିବା ପାଇଁ ଆଉ କେହି କିପରି ଏତେ କଷ୍ଟ କରିପାରେ ତାହା ମୁଁ ବିଶ୍ୱାସ କରିପାରୁନାହିଁ।''

ସାଧାରଣତଃ ତୃତୀୟ ବର୍ଷର ଶେଷରେ ସମସ୍ତେ ଟ୍ରାଇପସ୍ ପରୀକ୍ଷା ଦେଉଥିଲେ। ହାର୍ଡି କିନ୍ତୁ ତାଙ୍କର ଦ୍ୱିତୀୟ ବର୍ଷର ଶେଷରେ ଏହି ପରୀକ୍ଷା ଦେଇ ଗୋଟିଏ ବର୍ଷ ଆଗରୁ ମୁକ୍ତି ପାଇଗଲେ। କ୍ରମେ କ୍ରମେ ଅନ୍ୟମାନେ ଏପରି କରିବାକୁ ଲାଗିଲେ। ବର୍ଷେ ଆଗରୁ ପରୀକ୍ଷା ଦେଇଥିଲେ ମଧ୍ୟ ହାର୍ଡି ଚତୁର୍ଥ ସ୍ଥାନ ପାଇଲେ, ଯାହା ଖୁବ୍ ଭଲ ଫଳ ଥିଲା। ପରେ ଜଣେ ଐତିହାସିକ ହୋଇଥିବା ସାଥୀ ଜି. ଏମ୍. ଟ୍ରେଭେଲ୍ୟାନ୍ ହାର୍ଡିଙ୍କୁ ଅଭିନନ୍ଦନ ଜଣାଇ ଲେଖିଥିଲେ, "ଏହା ଏକ ବିଶାଳ ବିଜୟ, କେବଳ ତୁମ ନିଜ ପାଇଁ ନୁହେଁ, ଦ୍ୱିତୀୟ ବର୍ଷରେ ଟ୍ରାଇପସ୍ ନେବାର ଭଲ ପରମ୍ପରା ଆରମ୍ଭ କରିଥିବା ପାଇଁ।'' ଟ୍ରାଇପସ୍ ପ୍ରତି ଏତେ ଘୃଣା ସତ୍ତ୍ୱେ ବରିଷ୍ଠ ରାଙ୍ଗ୍‌ଲର୍ ହୋଇ ନ ପାରିବାରୁ ସେ କ୍ଷୁବ୍ଧ ହୋଇଥିଲେ ବୋଲି ହାର୍ଡି ସ୍ନୋ'ଙ୍କୁ କହିଥିଲେ। ଏବିଷୟରେ ସ୍ନୋ କୁହନ୍ତି ଯେ ହାର୍ଡି ପ୍ରକୃତିଗତ ଭାବରେ ଜଣେ ପ୍ରତିଯୋଗୀ ଥିଲେ, ତେଣୁ ପ୍ରତିଯୋଗିତାଟି ହାସ୍ୟାସ୍ପଦ ହୋଇଥିଲେ ମଧ୍ୟ ତାହା ଜିତିବା ଉଚିତ ଥିଲା ବୋଲି ସେ ଭାବୁଥିଲେ।

ଏହା ପରଠାରୁ ଇଂଲଣ୍ଡର ଗଣିତଜ୍ଞମାନଙ୍କ ଭିତରେ ହାର୍ଡିଙ୍କ ସମ୍ମାନ ବଢ଼ି ଚାଲିଲା। ୧୮୯୮ ମସିହାରେ ହାର୍ଡିଙ୍କୁ ଏକୋଇଶ ବର୍ଷ ବୟସ ବେଳେ ତାଙ୍କର ପ୍ରଥମ ଗାଣିତିକ ରଚନା ପ୍ରକାଶିତ ହେଲା। ରାମାନୁଜନ୍‌ଙ୍କର ପ୍ରଥମ ପ୍ରକାଶନ ଭଳି ଏହା ମଧ୍ୟ ଏକ ପ୍ରଶ୍ନ ରୂପରେ ଥିଲା ଏବଂ ତା'ର ଉତ୍ତର ପତ୍ରିକାର ତିନିଟି ସଂଖ୍ୟା ପରେ ବାହାରିଲା। ୧୮୯୯ ମସିହାରେ ହାର୍ଡି ତାଙ୍କର ସ୍ନାତକ ପାଠ ଶେଷ କଲେ ଏବଂ ତା ପର ବର୍ଷ ଟ୍ରାଇପସ୍‌ର ଦ୍ୱିତୀୟ ଭାଗ ପରୀକ୍ଷା ଦେଲେ। ଟ୍ରାଇପସ୍‌ର ପ୍ରଥମ ଭାଗ ପରୀକ୍ଷା ପାଇଁ କୋଚ୍‌ମାନେ ତାଙ୍କ ପିଲାଙ୍କୁ ପ୍ରସ୍ତୁତ କରାନ୍ତି ଏବଂ ଏହି ପରୀକ୍ଷା ରାଙ୍ଗ୍‌ଲର୍ କ୍ରମ ସ୍ଥିର କରେ। କିନ୍ତୁ ଦ୍ୱିତୀୟ ଭାଗଟି ଆହୁରି କଷ୍ଟକର ଏବଂ ମୁଣ୍ଡ ଖେଳାଇବା ପାଇଁ ସେଥିରେ ଯଥେଷ୍ଟ ସୁଯୋଗ ରହିଥାଏ। ଏଥିରେ ହାର୍ଡି ପ୍ରଥମ ସ୍ଥାନ ଅଧିକାର କଲେ ଏବଂ ସାଙ୍ଗେ ସାଙ୍ଗେ ଟ୍ରିନିଟିର ଫେଲୋ ଭାବରେ ଗୃହୀତ ହେଲେ।

## 5. "ଯାଦୁକରୀ ପବନ''

୧୯01 ମସିହା ମେ ମାସ ତେଇଶ ତାରିଖ ଦିନ କେମ୍ବ୍ରିଜ ସେକ୍ସପିଅର୍ ସୋସାଇଟି ତା'ର ଦୁଇଶହ ପଚାଶତମ ଅଧିବେଶନରେ ଟ୍ୱେଲ୍‌ଫ୍‌ଥ୍ ନାଇଟ୍‌ର ପ୍ରଥମ ତିନି ଦୃଶ୍ୟର ପଠନ ଅନୁଷ୍ଠିତ କଲା।

ହାର୍ଡି ସେଠାରେ ଉପସ୍ଥିତ ଥିଲେ, ସାଙ୍ଗମାନଙ୍କ କହିବା ଅନୁସାରେ ସମାଲୋଚକ ଭାବରେ। ହାର୍ଡିଙ୍କ ସହିତ ଥିଲେ ତାଙ୍କର ଅନ୍ତରଙ୍ଗ ବନ୍ଧୁ ପ୍ରାଚୀନ ଶାସ୍ତ୍ର ବିଶାରଦ ଆର୍. କେ. ଗେଲ୍ ଯିଏ ମାଲ୍‌ଭୋଲିଓ ଭୂମିକାରେ ଅଭିନୟ କରିଥିଲେ। ଉପସ୍ଥିତ ଅନ୍ୟ ପୁରୁଣା କଳାକାରଙ୍କ ଭିତରେ ଥିଲେ ମାରିଆ ଭୂମିକାରେ ବାହାରିଥିବା ଲିଟନ୍ ଷ୍ଟ୍ରାଚି, ଭାଲେଣ୍ଟିନ୍ ଓ କ୍ୟାପ୍ଟେନ୍ ଭୂମିକା ନେଇଥିବା ଲିଓନାର୍ଡ ଉଲ୍‌ଫ୍, ସାର୍ ଟୋବି ବେଲ୍‌ଚ୍ ଭୂମିକାରେ ଭର୍ଜିନିଆ ଉଲ୍‌ଫ୍‌ଙ୍କ ଭାଇ ଜେ. ଟି. ଷ୍ଟିଫେନ୍। ହାର୍ଡିଙ୍କ ସହପାଠୀ ଓ ପର ସମୟର ବିଶିଷ୍ଟ ପ୍ରାୟୋଗିକ ଗଣିତଜ୍ଞ ଜେମ୍‌ସ୍ ହପ୍‌ଉଡ୍ ଜିନ୍‌ସ୍ ଫଟୋ ଉଠାଉଥିଲେ - ଦୁଃଖର କଥା ସେ ଫଟୋଗୁଡ଼ିକ ନଷ୍ଟ ହୋଇଯାଇଛି। ସମସ୍ତେ ନିଜ ନିଜର ଭୂମିକା ପାଇଁ ଚମତ୍କାର ବେଶ ପୋଷାକ ପିନ୍ଧିଥିଲେ। ପୂରା କାର୍ଯ୍ୟକ୍ରମଟି ଭଲରେ ଓ ଖୁସିରେ ପୂରା ହୋଇଥିଲା। ହାର୍ଡିଙ୍କର ବିଶ୍ୱବିଦ୍ୟାଳୟ ଜୀବନ ଏହିଭଳି ଭବିଷ୍ୟତର ଅନେକ ବିଶିଷ୍ଟ ଲୋକଙ୍କ ଗହଣରେ କଟିଥିଲା।

ଏହି କାର୍ଯ୍ୟକ୍ରମର କେତେ ମାସ ଆଗରୁ ଜାନୁଆରି ବାଇଶ ତାରିଖରେ ମହାରାଣୀ ଭିକ୍ଟୋରିଆଙ୍କର ମୃତ୍ୟୁ ଘଟିଥିଲା। ତାଙ୍କ ସମୟର କଠୋର ନୈତିକତା ଓ ସାମାଜିକ ରୀତି ଶିଥିଳ ହୋଇ ଚାଲିଥିଲା ଏବଂ ସମ୍ରାଟ୍ ଏଡ୍‌ୱାର୍ଡଙ୍କ ରାଜତ୍ୱର ସହଜ ସମୟ ଏବେ ଅନୁଭୂତ ହେଉଥିଲା। ସେହି ବର୍ଷ ଅଗଷ୍ଟ ମାସ ଶେଷରେ ଅଣଷଠି ବର୍ଷ ବୟସରେ ଆଇଜାକ୍ ହାର୍ଡିଙ୍କର ମୃତ୍ୟୁ ହୋଇଥିଲା। ତାଙ୍କର ଅନ୍ତିମ ସଂସ୍କାର ପାଇଁ ହାର୍ଡି କ୍ରାନ୍‌ଲେ ଯାଇଥିଲେ ଏବଂ ମା ଓ ଭଉଣୀଙ୍କ ସହିତ ମିଶି ତାହା ସେ ଶେଷ କଲେ।

ଟ୍ରିନିଟିର ଗ୍ରେଟ୍ କୋର୍ଟରେ ତାଙ୍କ କୋଠରୀକୁ ଫେରିଆସି ହାର୍ଡି ତାଙ୍କ ପୁରୁଣା ଜୀବନରେ ଆଗେଇଲେ। ଏବେ ତାଙ୍କ ବୟସ ଚବିଶ ବର୍ଷ। ହାର୍ଡି ପ୍ରଥମେ ଲାଜକୁଳା ଓ ସମ୍ବେଦନଶୀଳ ଥିଲେ, କିନ୍ତୁ 1898 ମସିହାରେ ଟ୍ରାଇପସ୍ ପରୀକ୍ଷା ପରେ ସେ ସାମାଜିକ ସ୍ତରରେ ବେଶ୍ ସକ୍ରିୟ ହୋଇ ଉଠିଥିଲେ। ଏବେ ସେ ଏପରି ସାଥୀ ମେଳରେ ଚଳୁଥିଲେ ଯେଉଁଥିରେ ସାଧାରଣତଃ କେଉଁ ସ୍କୁଲ ଶିକ୍ଷକଙ୍କ ପିଲା ପଶିପାରନ୍ତିନାହିଁ। ସେମାନଙ୍କର ମୂଲ୍ୟବୋଧକୁ ହାର୍ଡିଙ୍କ ପରିବାର କଳ୍ପନା ମଧ୍ୟ କରିପାରି ନ ଥା'ନ୍ତେ। ସେ ସେକ୍‌ସ୍‌ପିଅର୍ ସୋସାଇଟିର ସଭାରେ ଭାଗ ନେଉଥିଲେ। କେମ୍ବ୍ରିଜର ଦୁଇଟି ତର୍କ ସମାଜ 'ଡିସେମ୍ବିରି' ଓ 'ମ୍ୟାଗ୍‌ପାଇ ଆଣ୍ଡ ଷ୍ଟମ୍ପ'ର ସେ ସଦସ୍ୟ ଥିଲେ। ସେ ଆଉ ଗୋଟିଏ ଦଳର ସଦସ୍ୟ ଥିଲେ ଯାହାର ଅସ୍ତିତ୍ୱ ପ୍ରଚାରିତ ହେଉ ନ ଥିଲା। ଏହି ଦଳ ଖୋଲାଖୋଲି ଭାବରେ ସଦସ୍ୟ ସଂଗ୍ରହ କରୁ ନ ଥିଲା ବା ତା'ର ସଭା ବିଷୟରେ କେହି ବାହାର ଲୋକ ଜାଣୁ ନ ଥିଲେ।

ଏହି ଗୁପ୍ତ ବୌଦ୍ଧିକ ଦଳର ନାଁ ଥିଲା 'ଆପୋଷ୍ଟୋଲ୍‌ସ୍'। ଉଲ୍‌ଫ୍, ଷ୍ଟ୍ରାଚି, ତ୍ୱେଲ୍‌ଫ୍‌ଥ୍ ନାଇଟ୍ ଅଭିନେତା ଦଳର ଆଉ ଦୁଇ ଜଣ ଏବଂ ହାର୍ଡି ଏହି ଦଳର ସଦସ୍ୟ ଥିଲେ। ବାର ଜଣ ସଦସ୍ୟଙ୍କୁ ନେଇ 1820 ମସିହାରେ ଏହି ଦଳ 'କନ୍‌ଭର୍ସେଜିଓନ୍ ସୋସାଇଟି' ନାଁରେ ଆରମ୍ଭ କରାଯାଇଥିଲା ଏବଂ ପରେ ତା'ର ନାଁ ବଦଳି 'ଆପୋଷ୍ଟୋଲ୍‌ସ୍' ରଖାଗଲା। କେମ୍ବ୍ରିଜରେ ଏଭଳି ଅନେକ ଦଳ ରହିଥିଲେ ଏବଂ ସଦସ୍ୟମାନଙ୍କୁ ବିତର୍କ ଓ ସାହଚର୍ଯ୍ୟ ପାଇଁ ସୁଯୋଗ ଯୋଗାଉଥିଲେ। ବିଭିନ୍ନ ସମୟରେ ଅତି ବିଶିଷ୍ଟ ଲୋକ 'ଆପୋଷ୍ଟୋଲ୍‌ସ୍'ର ସଦସ୍ୟ ରହିଥିଲେ। ସେମାନଙ୍କ ଭିତରେ ଥିଲେ

କବି ଟେନିସନ୍, ଦାର୍ଶନିକ ହ୍ୱାଇଟ୍‌ହେଡ୍, ପଦାର୍ଥ ବିଜ୍ଞାନୀ ଜେମ୍‌ସ୍ କ୍ଲର୍କ ମାକ୍‌ସ୍‌ୱେଲ୍, ଦାର୍ଶନିକ-ଗଣିତଜ୍ଞ ବର୍ଟ୍ରାଣ୍ଡ ରସେଲ୍ ଏବଂ ଆହୁରି ଅନେକ।

ଭଲ ବୈଜ୍ଞାନିକ ନ ହେଲେ ଏହି ଦଳରେ ପଶିବା ସମ୍ଭବ ନ ଥିଲା ଏବଂ ହାର୍ଡିଙ୍କୁ ସେମାନେ ଭଲ ବୋଲି ବିଚାର କରିଥିଲେ। ତାଙ୍କର ବୌଦ୍ଧିକ ଚାତୁର୍ଯ୍ୟ, ସୌନ୍ଦର୍ଯ୍ୟବୋଧ, ସୁଠାମ ଚେହେରା, ରୁଚିପୂର୍ଣ୍ଣ ବାର୍ତ୍ତାଳାପ ଆଦି ନିଶ୍ଚୟ ତାଙ୍କୁ ସାହାଯ୍ୟ କରିଥିବ। କୌତୂହଳର କଥା ଯେ କିଛି ଅଜଣା କାରଣରୁ ହାର୍ଡିଙ୍କ ସଦସ୍ୟତାକୁ ସେମାନେ ପ୍ରଥମେ ପ୍ରତ୍ୟାଖ୍ୟାନ କରିଥିଲେ। କିନ୍ତୁ ପରେ ଏକ ବଡ଼ ଧରଣର ସଭାରେ ୧୮୯୮ ମସିହା ଫେବୃଆରି ୧୨ ତାରିଖ ଦିନ ତାଙ୍କୁ ଗ୍ରହଣ କରାଯାଇଥିଲା।

'ଆପୋଷ୍ଟୋଲ୍‌ସ୍' ଦଳର ସଦସ୍ୟତା ପାଇଁ ପ୍ରସ୍ତାବ ଦେଉଥିବା ବ୍ୟକ୍ତିଙ୍କୁ 'ପିତା' କୁହାଯାଉଥିଲା ଏବଂ ହାର୍ଡିଙ୍କ ପିତା ଥିଲେ ଜି. ଇ. ମୁର୍। ଲିଓନାର୍ଡ ଉଲ୍‌ଫ୍‌ଙ୍କ ଭାଷାରେ 'ସତ୍ୟର ସନ୍ଧାନ କରିବାରେ ମୁର୍ ଥିଲେ ଡାହାଳ ଭଳି ଏକନିଷ୍ଠ ଓ ସନ୍ଥ ଭଳି ସଚ୍ଚୋଟ'। ୧୮୯୪ ମସିହାରୁ ସଦସ୍ୟ ଥିବା ମୁର୍ ଜଣେ ପ୍ରେରଣାଦାୟକ ଦାର୍ଶନିକ ଥିଲେ। ଚିନ୍ତା ବା ପରିପ୍ରକାଶରେ ସେ କୌଣସି ପ୍ରକାରର ଅସ୍ୱଚ୍ଛତାକୁ ସହ୍ୟ କରୁ ନ ଥିଲେ। 1903 ମସିହାରେ ପ୍ରକାଶିତ *ପ୍ରିନ୍‌ସିପିଆ ଏଥିକା* ଗ୍ରନ୍ଥରେ ସେ ତାଙ୍କ ଦର୍ଶନର ବର୍ଣ୍ଣନା କରିଥିଲେ। ଏହି ଦର୍ଶନ ଏବଂ 'ସତ୍ୟ, ସ୍ୱଚ୍ଛତା ଓ ସାଧାରଣ ବିଚାରବୋଧ ପାଇଁ ତାଙ୍କର ବିଚିତ୍ର ନିଶା' ମିଶିକରି ତାଙ୍କୁ ବିଶେଷ ଭାବରେ ପ୍ରଭାବଶାଳୀ କରିଥିଲେ। ସମସାମୟିକ କେମ୍ବ୍ରିଜର ବିଦ୍ୱାନମାନଙ୍କ ଉପରେ ଏବଂ ସାମଗ୍ରିକ ଭାବରେ ବ୍ଲୁମ୍‌ସ୍‌ବରିର ଲେଖକ-କଳାକାର-ଦାର୍ଶନିକ ଦଳ ଉପରେ ତାଙ୍କର ବିଶେଷ ପ୍ରଭାବ ଦେଖାଯାଇଥିଲା।

'ଆପୋଷ୍ଟୋଲ୍‌ସ୍' ପ୍ରତି ଶନିବାର ସନ୍ଧ୍ୟାରେ ଏକାଠି ହେଉଥିଲେ। କେହି ଜଣେ ଏକ ବୌଦ୍ଧିକ ନିବନ୍ଧ ପଢୁଥିଲା ଏବଂ ତାହା ଉପରେ ବିତର୍କ ପରେ ଭୋଟ ନିଆ ଯାଉଥିଲା। ନିବନ୍ଧର ବିଷୟବସ୍ତୁର କିଛି ଉଦାହରଣ ଥିଲା - 'କୌଣସି ଘଟଣାର ଆବଶ୍ୟକତା ଅଛି କି?', 'ନୈତିକ ଦର୍ଶନ କ'ଣ ଅସୁଖିପଣର ପ୍ରତିକାର କରିପାରିବ?', 'ଯୁବାବସ୍ଥା କ'ଣ ବୟସ୍କାବସ୍ଥାକୁ ଅନୁମୋଦନ କରେ?'। 'ଆପୋଷ୍ଟୋଲ୍‌ସ୍' ଦଳ ଦାମ୍ଭିକତା ଓ ମାତ୍ରାଧିକ୍ୟରେ କିଛି ଊଣା ନ ଥିଲେ। ଆପୋଷ୍ଟୋଲ୍‌ସ୍‌ର ସଦସ୍ୟମାନଙ୍କୁ ଓ ତାଙ୍କ ଦଳର କାର୍ଯ୍ୟକଳାପ ସବୁକୁ ସେମାନେ ରିଆଲିଟି ବା ବାସ୍ତବତା ନାମରେ ଚିହ୍ନଟ କରୁଥିଲେ। ସବୁ କିଛି ଅଣ-ଆପୋଷ୍ଟୋଲ୍‌ସ୍ ତାଙ୍କ ପାଇଁ ଥିଲା ଫେନୋମେନା। ଏହିଭଳି ତାଙ୍କର ନିର୍ଦ୍ଦିଷ୍ଟ ଶବ୍ଦାବଳୀ ଭିତରେ ଥିଲା - *ଏମ୍ବ୍ରିଓ* ବା ଭ୍ରୂଣ, ଯାହା ସଦସ୍ୟତା ପାଇଁ ଆବେଦନ କରିଥିବା ଲୋକଙ୍କୁ ବୁଝାଉଥିଲା ଏବଂ ବାର୍ଥ ବା ଜନ୍ମ, ଯାହା ନୂଆ ସଦସ୍ୟଙ୍କ ଦୀକ୍ଷାଗ୍ରହଣ ଉତ୍ସବକୁ ବୁଝାଉଥିଲା।

ହାର୍ଡିଙ୍କର ଛ' ବର୍ଷ ଆଗରୁ ସଦସ୍ୟ ହୋଇଥିବା ବର୍ଟ୍ରାଣ୍ଡ ରସେଲ୍ ଲେଖିଥିଲେ, "ଆପୋଷ୍ଟୋଲ୍‌ସ୍ ପାଇଁ ଚିନ୍ତା ଓ ମତ ପ୍ରକାଶ କ୍ଷେତ୍ରରେ କୌଣସି ବାରଣ, ସୀମା ବା ବାଧା ନ ଥିଲା। ଆମେ ସବୁ ପ୍ରକାରର ବିଷୟରେ ଆଲୋଚନା କରୁଥିଲୁ। ଆମର ଆଲୋଚନା ଅବଶ୍ୟ କିଛି ମାତ୍ରାରେ ଅପରିପକ୍ୱ ଥିଲା, କିନ୍ତୁ ସେଥିରେ ଯେଉଁ ନିର୍ଲିପ୍ତତା ଓ ଆଗ୍ରହ ରହିଥିଲା ତାହା ଆମ ଜୀବନର ପର ସମୟରେ ସମ୍ଭବ ହୋଇ ନ ଥା'ନ୍ତା।" ସଭା ରାତି ପ୍ରାୟ ଗୋଟାଏ ଯାଏଁ ଚାଲୁଥିଲା ଏବଂ ଏହା ପରେ ବାହାରେ ବୁଲି ଅଣଔପଚାରିକ ଆଲୋଚନା ଚାଲୁଥିଲା। ୧୮୯୫

ମସିହାରେ ଯୋଗ ଦେଇଥିବା ଗୋଲ୍ଡ୍‌ସ୍‌ୱର୍ଦ୍ଦି ଲୋଏସ୍ ଡିକିନ୍‌ସନ୍ ତାଙ୍କ ଅନୁଭୂତି ବିଷୟରେ ଲେଖିଥିଲେ, "ଯେଉଁ ଗଭୀରତମ କଥା ମୁଁ ଅନୁଭବ କଲି ତାହା ଅବର୍ଣ୍ଣନୀୟ। ଯୁବକମାନେ ଯେବେ ମନରେ ଓ ଆତ୍ମାରେ ବଢୁଥା'ନ୍ତି, ଚିନ୍ତା କରିବା ଯେବେ ନିଶା ହୋଇଥାଏ, ସୌହାର୍ଦ୍ଦ୍ୟର ପ୍ରଭାବରେ ଆଲୋଚନା ଯେବେ ଗଭୀର ହୋଇଥାଏ, ସେବେ ଏପରି କିଛି ଘଟିଥାଏ ଯାହା ସେହି ଯାଦୁକରୀ ପବନକୁ ନିଃଶ୍ୱାସରେ ନେଇଥିବା ଲୋକଙ୍କ ଛଡ଼ା ଅନ୍ୟ କେହି ବିଶ୍ୱାସ କରିପାରିବନାହିଁ।"

ଡିକିନ୍‌ସନ୍ ଜଣେ ଗେଡ଼ା ଓ ଅତି କ୍ରିୟାଶୀଳ ଲୋକ ଥିଲେ। ତାଙ୍କର ବ୍ୟକ୍ତିତ୍ୱ ଆକର୍ଷଣୀୟ ଥିଲା। କିଙ୍ଗ୍‌ସ୍ ଧାରାରେ ସେ ଜଣେ ପ୍ରାଚୀନ ଶାସ୍ତ୍ର ବିଶାରଦ ଥିଲେ, ଅଳ୍ପ ସମୟ ପାଇଁ ଭେଷଜ ବିଜ୍ଞାନ ପଢ଼ିଲେ ଏବଂ ପରେ ଜଣେ ଶାନ୍ତି କର୍ମୀ ଭାବରେ ବାହାରିଲେ। ସେ ଜଣେ ସମଲିଙ୍ଗୀ ମଧ୍ୟ ଥିଲେ। ଆପୋଷ୍ଟୋଲ୍‌ସ୍‌ର ସବୁ ବା ସଂଖ୍ୟାଧିକ ସଦସ୍ୟ ସମଲିଙ୍ଗୀ ନ ଥିଲେ, କିନ୍ତୁ ସେହି ଦଳ ଭିତରେ ସେଭଳି ଏକ ପ୍ରବାହ ଅନୁଭୂତ ହେଉଥିଲା। ହାର୍ଡି ଯୋଗଦେବାର ପର ସମୟରେ ଏହା ତୀବ୍ରତର ହୋଇଥିଲା। ଏ ପାସେଜ୍ ଟୁ ଇଣ୍ଡିଆ ବହିର ଲେଖକ ଇ. ଏମ୍. ଫଷ୍ଟର 1901 ମସିହାରେ, 1902 ମସିହାରେ ଲିଟନ୍ ଷ୍ଟ୍ରାଚି, 1903 ମସିହାରେ ଅର୍ଥନୀତି ବିଶାରଦ ଜନ୍ ମେ'ନାର୍ଡ କିନ୍‌ସ୍ ଏହି ଦଳରେ ମିଶିଥିଲେ। ଏମାନେ ସମସ୍ତେ ସମଲିଙ୍ଗୀ ଥିଲେ। (କିନ୍‌ସ୍ ଥରେ ହାର୍ଡିଙ୍କୁ କହିଥିଲେ ଯେ ସେ କ୍ରିକେଟ ପ୍ରତି ଯେତେ ଆଗ୍ରହ ଦେଖାଉଛନ୍ତି ତାହା ଯଦି ପୁଞ୍ଜି ବଜାରରେ ଦେଖାନ୍ତେ ତେବେ ସେ ଧନୀ ହୋଇପାରନ୍ତେ।)

ଏହା ଫଳରେ ଆପୋଷ୍ଟୋଲ୍‌ସ୍ ଭିତରେ ସମଲିଙ୍ଗୀ ମାନସିକତାକୁ ଏକ କଳାତ୍ମକ ଓ ସୌନ୍ଦର୍ଯ୍ୟାତ୍ମକ ତତ୍ତ୍ୱ ଭାବରେ ଦେଖାଗଲା। ଏହାକୁ ସେମାନେ ଉଚ୍ଚତର ସମଲିଙ୍ଗୀତ୍ୱ ନାଁ ଦେଲେ ଏବଂ ପୁରୁଷ-ସ୍ତ୍ରୀ ପ୍ରେମ ତୁଳନାରେ ପୁରୁଷ-ପୁରୁଷ ପ୍ରେମକୁ ଉଚ୍ଚତର ବୋଲି ଦାବି କଲେ। ଏହି ଭାବରେ ସେମାନେ ସମଲିଙ୍ଗୀ ସମ୍ପର୍କକୁ ଏକ ଆଧ୍ୟାତ୍ମିକ ସ୍ତରକୁ ନେଇଗଲେ। ସମୟକ୍ରମେ ଏହା ଏକ ସମ୍ମାନାସ୍ପଦ ପରିଚୟ ଭାବରେ ଦେଖାଗଲା, ଫଳରେ ଏହି ଦଳରେ ଥିବା ସାଧାରଣ ଲୋକମାନେ ମଧ୍ୟ ସମଲିଙ୍ଗୀ ହୋଇଥିବାର ଧାରଣା ଦେଲେ। ଷ୍ଟ୍ରାଚି ଓ କିନ୍‌ସ୍ ଯୋଗଦେବାର ଠିକ୍ ପୂର୍ବରୁ ହାର୍ଡି ଆପୋଷ୍ଟୋଲ୍‌ସ୍ ଦଳ ଛାଡ଼ିଥିଲେ। କିନ୍ତୁ ଛାଡ଼ିବାର ଅନେକ ବର୍ଷ ପର ଯାଏଁ ସେହି ଦଳର ସଦସ୍ୟମାନଙ୍କ ସହିତ ତାଙ୍କର ବନ୍ଧୁତ୍ୱ ଅତୁଟ ରହିଥିଲା। ସେହି ବନ୍ଧୁମାନଙ୍କ ଭିତରୁ ଅନେକ ଜଣ ସମଲିଙ୍ଗୀ ଥିଲେ।

ହାର୍ଡିଙ୍କର ଯେ ସମଲିଙ୍ଗୀ ମାନସିକତା ରହିଥିଲା ସେଥିରେ ସନ୍ଦେହ ନ ଥିଲା। ମା ଓ ଭଉଣୀଙ୍କ ଛଡ଼ା ତାଙ୍କ ଜୀବନରେ ଆଉ କୌଣସି ମହିଳାଙ୍କର ସାମାନ୍ୟତମ ଭୂମିକା ନ ଥିଲା। ବରଂ ତାଙ୍କର ଅନେକ ପୁରୁଷ ବନ୍ଧୁ ଥିଲେ ଯାହାଙ୍କ ପ୍ରତି ତାଙ୍କର ଗଭୀର ଆସକ୍ତି ରହିଥିଲା।

1903 ମସିହାରେ ଆର୍. କେ. ଗେ'ଙ୍କ ସହିତ ଟ୍ରିନିଟିର ଗୋଟିଏ ଘରେ ରହୁଥିଲେ। ଗେ ମଧ୍ୟ ଦୁଇବର୍ଷ ତଳର ସେ ଟ୍ୱେଲ୍‌ଫ୍‌ଥ୍ ନାଇଟ୍ ମଉଜରେ ଥିଲେ ଏବଂ ହାର୍ଡିଙ୍କ ସହିତ ଏକ ସମୟରେ ଟ୍ରିନିଟିକୁ ଆସିଥିଲେ। ସେ ଜଣେ ବିଚକ୍ଷଣ ପ୍ରାଚୀନ ଶାସ୍ତ୍ରବିଦ୍ ଭାବରେ ଜଣାଥିଲେ ଏବଂ ମାତ୍ର ପଚିଶ ବର୍ଷ ବୟସ ବେଳକୁ ଅନେକ ପୁରସ୍କାର ଓ ସମ୍ମାନ ପାଇ ସାରିଥିଲେ। ଅନେକ ଦିନ ପରେ ଗେ ଆତ୍ମହତ୍ୟା କରିଥିଲେ। କିନ୍ତୁ ଯୁବକ ବହୁସମ୍ମାନିତ ଗେ ଓ ହାର୍ଡି ଅବିଚ୍ଛିନ୍ନ ଥିଲେ। ସେ

ଦୁହେଁ ସବୁବେଳେ ଏକାଠି ରହୁଥିଲେ ଏବଂ କ୍ୱଚିତ୍ ଅନ୍ୟ କାହା ସାଙ୍ଗରେ କଥା ହେଉଥିଲେ। ସେ ଦୁହିଁଙ୍କ ଭିତରେ ଏକ ପ୍ରକାରର ଘରୋଇ ପ୍ରଶାନ୍ତି ଖେଳୁଥିଲା।

1920 ଦଶକରେ ହାର୍ଡିଙ୍କୁ ଜାଣିଥିବା ଜଣେ ଯୁବ ଗଣିତଜ୍ଞ କହୁଥିଲେ ଯେ ହାର୍ଡିଙ୍କର ଜଣେ ଯୁବକ ବନ୍ଧୁଙ୍କ ବିଷୟରେ କିଛି ଗୁଜବ ଶୁଣା ଯାଉଥିଲା। 1930 ଦଶକରେ ହାର୍ଡି ଆମେରିକା ଯାଇଥିଲା ବେଳେ ଗଣିତଜ୍ଞ ଆଲାନ୍ ଟିଉରିଙ୍ଗ୍‌ଙ୍କୁ ଭେଟିଥିଲେ। ଟିଉରିଙ୍ଗ୍ ନିଜେ ଜଣେ ସମଲିଙ୍ଗୀ ଥିଲେ ଏବଂ ହାର୍ଡି ଜଣେ 'ଇଂରେଜ ବୁଦ୍ଧିଜୀବୀ ସମଲିଙ୍ଗୀ ନାସ୍ତିକ' ହୋଇଥିବାର ଧାରଣା ସେ ପାଇଲେ। ଏହି ସମୟରେ ତାଙ୍କଠାରୁ ଅନେକ ସାନ ଜଣେ ଯୁବକଙ୍କୁ ହାର୍ଡି ଅକ୍ସଫୋର୍ଡଠାରେ ଭେଟୁଥିଲେ ଏବଂ ପରେ ସେ ତାଙ୍କ ନାଁରେ ଗୋଟିଏ ବହି ଉତ୍ସର୍ଗ କରିଥିଲେ। ଗୋଟିଏ ଜାଗାରେ ସେହି ଯୁବକଙ୍କୁ ହାର୍ଡିଙ୍କର 'ଅତି ପ୍ରିୟ ଜନ୍ ଲୋମାସ୍' ଭାବରେ ବର୍ଣ୍ଣନା କରାଯାଇଛି।

ଅକ୍ସ୍‌ଫୋର୍ଡ କିନ୍ତୁ ବେଶ୍ ପର ସମୟର କଥା। ଟ୍ରିନିଟିରେ ପ୍ରାକ୍-ସ୍ନାତକ ଛାତ୍ର ବା ଫେଲୋ ଥିବା ସମୟରେ ହାର୍ଡି ଯଦି ସମଲିଙ୍ଗୀ ବ୍ୟବହାର ଦେଖାଉଥିଲେ ତେବେ ତାହା ସେ ଅତି ଗୋପନୀୟ ଭାବରେ କରୁଥିଲେ। ତାଙ୍କୁ ଭଲଭାବରେ ଜାଣିଥିବା ଲୋକମାନେ କହୁଥିଲେ ଯେ ଯଦିଓ ହାର୍ଡି ସମଲିଙ୍ଗୀ ମାନସିକତା ଦେଖାଉଥିଲେ, ସେ ନିଜର ବେଶପୋଷାକରେ ବା କ୍ରିୟାକଳାପରେ ତାହା ଦେଖାଉ ନ ଥିଲେ। ତାଙ୍କ ସହିତ ଚାଳିଶ ବର୍ଷ ଧରି କାମ କରିଥିବା ଲିଟଲ୍‌ଉଡ୍ ହାର୍ଡିଙ୍କୁ ଜଣେ 'ନିଷ୍କ୍ରିୟ ସମଲିଙ୍ଗୀ' ଆଖ୍ୟା ଦେଇଥିଲେ। ମୋଟ ଉପରେ ହାର୍ଡିଙ୍କ ସମଲିଙ୍ଗୀ ବ୍ୟବହାର ବିଷୟରେ କୌଣସି ସ୍ପଷ୍ଟ ସାକ୍ଷ୍ୟ ନ ଥିଲା।

ଇଂରେଜ ପବ୍ଲିକ ସ୍କୁଲର ଆଶ୍ରମ ଭଳି କଠୋର ପରିବେଶ ପୁଅ ପିଲାଙ୍କ ଭିତରେ ସମଲିଙ୍ଗୀ ସମ୍ପର୍କ ଜନ୍ମାଉଥିଲା। ସମସ୍ତେ ଏହା ଜାଣିଥିଲେ ଏବଂ ଏହି ବିଷୟରେ କେହି ବିଶେଷ ଗୁରୁତ୍ୱ ଦେଉ ନ ଥିଲେ। କାରଣ ଅଧିକାଂଶ ପିଲାଙ୍କର ଏହି ଚପଳତା ବୟସ ବଢ଼ିବା ସହିତ ଚାଲି ଯାଉଥିଲା। ହାର୍ଡି ମଧ୍ୟ ଏହି ଶିକ୍ଷା ବ୍ୟବସ୍ଥାରେ ବଢ଼ିଥିଲେ। କିନ୍ତୁ ସେ ସ୍କୁଲରେ ଥିବାବେଳେ ଯଦି ବି ସମଲିଙ୍ଗୀ ସମ୍ପର୍କ ଗଢ଼ିଥିଲେ ସେବିଷୟରେ ପ୍ରଚାର କରୁ ନ ଥିଲେ। ମନସ୍ତତ୍ତ୍ୱବିତ୍‌ଙ୍କ ଭିତରେ ଗୋଟିଏ ବିଶ୍ୱାସ ଥିଲା ଯେ ସମଲିଙ୍ଗୀତ୍ୱ ମାନସିକ ଆବେଗରୁ ଜନ୍ମ ନିଏ। ତେଣୁ ହୁଏତ ଏଥିପ୍ରତି କିଛି ମାତ୍ରାରେ ସହନଶୀଳତା ଦେଖାଯାଉଥିଲା। କିନ୍ତୁ ଅଧିକାଶ କ୍ଷେତ୍ରରେ ସମଲିଙ୍ଗୀ ବ୍ୟବହାରକୁ ଅପରାଧ ଭାବରେ ଦେଖାଯାଉଥିଲା। ସମଲିଙ୍ଗୀ ବ୍ୟବହାର ପାଇଁ 1895 ମସିହାରେ ବିଖ୍ୟାତ ନାଟ୍ୟକାର ଅସ୍କାର ୱାଇଲ୍‌ଡ୍‌ଙ୍କୁ ଦୁଇବର୍ଷ ଜେଲ ଦଣ୍ଡ ଦିଆଯାଇଥିଲା। ତାଙ୍କର ସ୍ତ୍ରୀ ଓ ପିଲାମାନେ ସେମାନଙ୍କର ନାଁ ବଦଳାଇ ତାଙ୍କୁ ଛାଡ଼ି ଚାଲିଗଲେ। ତାଙ୍କର ନାଟକଗୁଡ଼ିକ ବନ୍ଦ କରି ଦିଆଗଲା। ଏହା ଥିଲା ସେ ସମୟର ମୂଲ୍ୟବୋଧ ଦୃଷ୍ଟିରେ ଠିକ୍।

ବିଂଶ ଶତାବ୍ଦୀର ଆରମ୍ଭରେ ପୂର୍ବର କଠୋର ଭିକ୍ଟୋରୀୟ ମୂଲ୍ୟବୋଧ ବେଶ୍ ବଦଳି ଯାଇଥିଲା। ତା'ର ସ୍ଥାନ ନେଇଥିବା ଏଡ୍‌ୱାର୍ଡୀୟ ମୂଲ୍ୟବୋଧ ଅଧିକ ମୁକ୍ତ ଥିଲା। ଏହି ସମୟରେ ହାର୍ଡି କିଶୋର ଅବସ୍ଥାରେ ପହଞ୍ଚିଥିଲେ, କିନ୍ତୁ ତାଙ୍କ ମନ ପୁରୁଣା ନୈତିକତା ଭିତରେ ବଢ଼ିଥିଲା। ତେଣୁ ସେ ସାଧାରଣ ଭାବରେ ଗୃହୀତ ହେଉ ନ ଥିବା ତାଙ୍କର ପ୍ରାକୃତିକ ମାନସିକତାକୁ ଚାପିରଖିବା ହିଁ ଉଚିତ ବୋଲି ମନେ କରୁଥିଲେ।

ସେହି ସମୟର କେମ୍ବ୍ରିଜରେ ମଧ୍ୟ କଠୋର ଭିକ୍ଟୋରୀୟ ଓ ଉଦାର ଏଡ୍‌ୱାର୍ଡୀୟ ମାନସିକତାର ଦ୍ୱନ୍ଦ୍ୱ ଲାଗିରହିଥିଲା। ଆପୋଷ୍ଟୋଲ୍‌ସ୍‌ଙ୍କ ଭିତରେ ସମଲିଙ୍ଗୀ ମାନସିକତାର ପ୍ରବାହ ସ୍ୱୀକୃତ ହୋଇଥିଲା ସତ, କିନ୍ତୁ ତାହା ସର୍ବସାଧାରଣ ସ୍ତରରେ ପହଞ୍ଚି ନ ଥିଲା। ତେଣୁ ହାର୍ଡିଙ୍କ ପକ୍ଷରେ 'ନିଷ୍କ୍ରିୟ ସମଲିଙ୍ଗୀ' ଆଚରଣ ସ୍ୱାଭାବିକ ଥିଲା। ଲିଟଲ୍‌ଉଡ୍ ନିଜେ ଏକ ଅବୈଧ ସନ୍ତାନର ପିତା ଥିଲେ, କିନ୍ତୁ ତାହା ସେ କେବେ ସ୍ୱୀକାର କରୁ ନ ଥିଲେ। ସମଲିଙ୍ଗୀ ବ୍ୟବହାର ଏହାଠାରୁ ଅଧିକ ଗର୍ହିତ ବୋଲି ମନେ କରାଯାଉଥିଲା। ତେଣୁ ହାର୍ଡିଙ୍କର 'ସକ୍ରିୟ ସମଲିଙ୍ଗୀ' କାମ ବିଷୟରେ ଲିଟଲ୍‌ଉଡ୍ ଯଦି ବି ଜାଣିଥିବେ ତେବେ ତାହା ସେ ପ୍ରକାଶ କରିବାକୁ ଚାହିଁ ନ ଥିବେ।

ଏକଥା ବି ସମ୍ଭବ ଯେ ଲିଟଲ୍‌ଉଡ୍ କିଛି ଜାଣି ବି ନ ଥିଲେ। କାରଣ ହାର୍ଡି ନିଜ ଜୀବନର ବିଭିନ୍ନ ଦିଗକୁ ପରସ୍ପରଠାରୁ ଅଲଗା କରି ରଖୁଥିଲେ। ଆପୋଷ୍ଟୋଲ୍‌ସ୍‌ର ସବୁ ସଦସ୍ୟଙ୍କୁ ହାର୍ଡି ଜାଣିଥିଲେ ଏବଂ ତାଙ୍କ ଭିତରୁ କେତେକଙ୍କ ଡାଏରି ବା ଅନ୍ୟ ଲେଖାରେ ତାଙ୍କ ନାଁ ଦେଖିବାକୁ ମିଳୁଥିଲା। କିନ୍ତୁ ତାଙ୍କ ବିଷୟରେ କେବଳ କିଛି ହାଲୁକା କଥା ଲେଖାଥିଲା। ହାର୍ଡି ସେମାନଙ୍କ ଜୀବନର କେନ୍ଦ୍ରରେ ନ ଥିଲେ, ବାହାର ଅଞ୍ଚଳରେ ଥିଲେ। ଶୁଦ୍ଧ ଗଣିତର ଛାତ୍ର ଭାବରେ ସେ ହୁଏତ ଅନ୍ୟମାନଙ୍କଠାରୁ ଆପେ ଆପେ ଅଲଗା ହୋଇ ଯାଉଥିଲେ। ସେକ୍‌ସ୍‌ପିଅର୍ ସୋସାଇଟି ଓ ଅନ୍ୟ ସେହିଭଳି ଦଳରେ ହାର୍ଡିଙ୍କୁ ସମସ୍ତେ ଗ୍ରହଣ କରୁଥିଲେ, ସମ୍ମାନ କରୁଥିଲେ ଏବଂ ତାଙ୍କର ଆକର୍ଷଣୀୟ ବ୍ୟକ୍ତିତ୍ୱ ଯୋଗୁଁ ଆଦର ମଧ୍ୟ କରୁଥିଲେ, କିନ୍ତୁ ହାର୍ଡିଙ୍କ ହୃଦୟ ଆଉ କେଉଁଠି ଥିବା ଭଳି ମନେ ହେଉଥିଲା।

ତାଙ୍କର ହୃଦୟ ଥିଲା କ'ଣ ଗଣିତରେ? ନିଶ୍ଚିତ ଭାବରେ। ସମଲିଙ୍ଗୀଙ୍କ ଗୁପ୍ତ ଦୁନିଆରେ? ହୁଏତ କିଛି ମାତ୍ରାରେ। ହାର୍ଡି ଯେ ତାଙ୍କର ପୂରା ଜୀବନ କେବଳ ପୁରୁଷଙ୍କ ମେଳରେ କଟାଇଥିଲେ ଓ କୌଣସି ମହିଳାଙ୍କ ସହିତ ମିଶୁ ନ ଥିଲେ, ତାହା ସେ ସମୟ ପାଇଁ ଅସାଧାରଣ ନ ଥିଲା। ହାଭେଲକ୍ ଏଲିସ୍ ପ୍ରାୟ ହଜାରେ ଜଣ ବିଚକ୍ଷଣ ଇଂରେଜଙ୍କର ଯେଉଁ ତାଲିକା କରିଥିଲେ ସେଥିରେ ଛବିଶ ଶତାଂଶ କେବେ ବିବାହ କରି ନ ଥିଲେ। ହାର୍ଡି ଯେଉଁ ବୌଦ୍ଧିକ ପରିବେଶର ଓ ବୁଦ୍ଧିଜୀବୀ ଦଳର ଅଂଶ ଥିଲେ, ସେଥିରେ କଠୋର ମୁନିତୁଲ୍ୟ ଜୀବନ ସାଧାରଣ କଥା ଥିଲା।

କ୍ରାନ୍‌ଲେ ସ୍କୁଲରେ ପ୍ରାୟ ସବୁ ଶିକ୍ଷକ ପୁରୁଷ ଓ ଅଧିକାଂଶ ଅବିବାହିତ ଥିଲେ, ହଷ୍ଟେଲ ଦାୟିତ୍ୱରେ କେବଳ ଅବିବାହିତମାନେ ହିଁ ରହୁଥିଲେ। ୱିଞ୍ଚେଷ୍ଟର ଏବଂ କେମ୍ବ୍ରିଜରେ ମଧ୍ୟ ସେହିଭଳି ଅବସ୍ଥା ଥିଲା। କେମ୍ବ୍ରିଜର କୋଡ଼ିଏଟି କଲେଜ ଭିତରୁ ମାତ୍ର ଦୁଇଟି କଲେଜ ଝିଅଙ୍କ ପାଇଁ ଥିଲା। ସେହି ଛାତ୍ରୀମାନେ ବିଶ୍ୱବିଦ୍ୟାଳୟର ଶ୍ରେଣୀରେ ବସିବାକୁ ଚାହିଁଲେ ତାଙ୍କୁ ସେ ଶ୍ରେଣୀର ଅଧ୍ୟାପକଙ୍କ ଅନୁମତି ନେବାକୁ ହେଉଥିଲା ଏବଂ ଛାତ୍ରୀଙ୍କ ସହିତ ଜଣେ ବରିଷ୍ଠ ମହିଳା ସହଚରୀ ରହିବା ବାଧ୍ୟତାମୂଳକ ଥିଲା। ଏଭଳି କଟକଣା ଓ ସାମାଜିକ ପୃଷ୍ଠଭୂମି ଯୋଗୁ ଛାତ୍ରୀମାନେ ନିଜ କଲେଜରୁ ପ୍ରାୟ ବାହାରୁ ନ ଥିଲେ। 1882 ମସିହା ଯାଏଁ କଲେଜର ଫେଲୋମାନେ ବିବାହ କରିବା ମନା ଥିଲା। ଏହି କଟକଣା ଉଠିବା ପରେ ମଧ୍ୟ ଅଧିକାଂଶ ଫେଲୋ ଅବିବାହିତ ରହୁଥିଲେ। ମହିଳାମାନଙ୍କୁ ଡିଗ୍ରୀ ଦେବା ପାଇଁ 1887 ମସିହାରେ ଗୋଟିଏ ପ୍ରସ୍ତାବ ଆସିଥିଲା, କିନ୍ତୁ ତାହା ବହୁମତରେ କାଟ ଖାଇଗଲା। ଦଶ ବର୍ଷ ପରେ ଯେତେବେଳେ ସେହି ପ୍ରସ୍ତାବ ପୁଣି ଆସିଲା, ତା ବିରୁଦ୍ଧରେ ପ୍ରବଳ ଆନ୍ଦୋଳନ ଦେଖାଦେଲା।

ବିଶ୍ୱବିଦ୍ୟାଳୟର ଶିକ୍ଷକମାନଙ୍କର ଏହି ପରିବେଶ ହାସ୍ୟାସ୍ପଦ ଭାବରେ କୃତ୍ରିମ ଥିଲା। ସେମାନେ ଗାର୍ହସ୍ଥ୍ୟ ଜୀବନ ବିଷୟରେ ପୂରା ଅଜ୍ଞ ରହୁଥିଲେ। ସେମାନଙ୍କୁ ନେଇ ଅନେକ ଥଟ୍ଟା କଥା ମଧ୍ୟ ଶୁଣାଯାଉଥିଲା। ଏହାର ଗୋଟିଏ ଉଦାହରଣ ଥିଲା ଏହିପରି -

ଜଣେ ବୟସ୍କ ଅବିବାହିତ ଫେଲୋ ଅଳ୍ପଦିନ ତଳେ ବାପା ହୋଇଥିବା ଜଣେ ଯୁବକଙ୍କୁ ବଧାଇ ଜଣାଇବା ଅବସରରେ ପଚାରିଲେ, "ପିଲାଟି କେତେ ବଡ ହେଲାଣି?"

ଯୁବକ ବାପା ଜଣକ ଉତ୍ତର ଦେଲେ, "ଛ ସପ୍ତାହ।"

ଫେଲୋ ଜଣକ କହିଲେ, "ଓଃ! ଏବେ ତ ସେ ଛୋଟ ଛୋଟ ବାକ୍ୟ କହିବଣି!"

ହାର୍ଡି ଏବଂ ଅନ୍ୟ ଫେଲୋମାନେ କେବଳ ଘର ସଫା କରୁଥିବା ଓ ବିଛଣା ସଜାଡୁଥିବା ମହିଳା କର୍ମଚାରୀଙ୍କ ଛଡ଼ା ଅନ୍ୟ କୌଣସି ସ୍ତ୍ରୀ ଲୋକଙ୍କ ସଂସ୍ପର୍ଶରେ ଆସୁ ନ ଥିଲେ। ଶୁଣାଯାଏ ଯେ ଏହି କର୍ମଚାରୀମାନଙ୍କୁ ବାଛିଲା ବେଳେ ଅନାକର୍ଷଣୀୟ ଚେହେରାର ଓ ବୟସ୍କ ମହିଳାଙ୍କୁ ପ୍ରାଧାନ୍ୟ ଦିଆଯାଉଥିଲା। ଏଭଳି ଏକ ପୁରୁଷ-କେବଳ ପରିବେଶରେ ଗଭୀର ବନ୍ଧୁତ୍ୱ ବିକଶିତ ହେବା ସ୍ୱାଭାବିକ ଥିଲା, କିନ୍ତୁ ନୈତିକତାର ଚାପ ଯୋଗୁଁ ପୁରୁଷ-ପୁରୁଷ ଦୈହିକ ସମ୍ପର୍କ ସାଧାରଣ ନ ଥିଲା।

ହାର୍ଡିଙ୍କୁ ଭଲ ଭାବରେ ଜାଣିଥିବା ସି. ପି. ସ୍ନୋ ଏହିଭଳି ଏକ ମାନସିକତା ତାଙ୍କଠାରେ ଦେଖୁଥିଲେ। ସେ ଲେଖିଥିଲେ ଯେ ହାର୍ଡି ତାଙ୍କ ସାଥୀମାନଙ୍କ ଭିତରୁ କାହା ସହିତ ନିବିଡ଼ ଓ ଆବେଗଭରା ସମ୍ପର୍କ ଯୋଡୁ ନ ଥିଲେ। ଜୀବନର ବିଭିନ୍ନ ସମୟରେ ହାର୍ଡି ଏଭଳି ଦୁଇ ତିନିଟି ସମ୍ପର୍କ ଗଢ଼ିଥିବା କଥା ସ୍ନୋ କହନ୍ତି। ସେଥିରେ ପ୍ରଗାଢ଼ ଅନୁରାଗ ରହୁଥିଲା କିନ୍ତୁ ତାହା ଦୈହିକ ନ ଥିଲା, ବରଂ ଉଚ୍ଚ ସ୍ତରର ଥିଲା। ଗୋଟିଏ ସମ୍ପର୍କ ଥିଲା ଏଭଳି ଜଣେ ଯୁବକ ସହିତ ଯାହାଙ୍କ ପ୍ରକୃତି ହାର୍ଡିଙ୍କ ଭଳି ନରମ ଥିଲା। ତାଙ୍କ ପିଢ଼ିର ଅନେକ ଲୋକଙ୍କ ପାଇଁ ଏଭଳି ସମ୍ପର୍କ ସନ୍ତୋଷଜନକ ବା ସମ୍ଭବ ମନେହେବନାହିଁ ବୋଲି ସ୍ନୋ ମତ ଦେଇଥିଲେ। କିନ୍ତୁ ସେଭଳି ସମ୍ପର୍କକୁ ସ୍ୱୀକାର ନ କଲେ ହାର୍ଡିଙ୍କ ଭଳି ଲୋକଙ୍କୁ ବା ସେ ସମୟର କେମ୍ବ୍ରିଜ-ସମାଜକୁ ବୁଝିହେବନାହିଁ।

କିଛି ପରୋକ୍ଷ ସୂଚନା ମିଳୁଥିଲେ ମଧ୍ୟ ଏହା କୁହାଯାଇ ପାରିବନାହିଁ ଯେ ହାର୍ଡି ଦୈହିକ ସମଲିଙ୍ଗୀ ସମ୍ପର୍କ ରଖୁଥିଲେ। ତଥାପି, ଗୋଟିଏ ଦୃଷ୍ଟିରୁ, ଏହି କଥା ପ୍ରଭାବଶୂନ୍ୟ ଥିଲା। ହୁଏତ ଯୌନ ସମ୍ପର୍କରେ ତାଙ୍କର କୌଣସି ଆଗ୍ରହ ନ ଥିଲା କିମ୍ବା ତାଙ୍କର ଯୌନଜୀବନକୁ ସେ ଏତେ ଗୁପ୍ତ ରଖୁଥିଲେ ଯେ କେହି ବି ତା'ର ସାମାନ୍ୟତମ ଆଭାସ ପାଉ ନ ଥିଲେ। ଏଥିପାଇଁ କିନ୍ତୁ ତାଙ୍କୁ ଅନେକ ଯୋଜନା କରିବାକୁ ପଡ଼ିଥିବ ଯାହା ତାଙ୍କୁ ସବୁବେଳେ ଚାପରେ ରଖୁଥିବ ଏବଂ ସେଥିପାଇଁ ମାନସିକ ସ୍ତରରେ ତାଙ୍କୁ ଅନେକ ମୂଲ୍ୟ ଦେବାକୁ ପଡ଼ିଥିବ।

ହୁଏତ ତାହା ଘଟିଥିଲା; ତାଙ୍କର ଉଦାସ ଚାହାଣିରେ ଏହା ପ୍ରତିଫଳିତ ହେଉଥିଲା। ଅକ୍ସଫୋର୍ଡର ଅର୍ଥନୀତିଜ୍ଞ ଲିଓନେଲ୍ ଚାର୍ଲସ୍ ରବିନ୍ସ୍ କହନ୍ତି, "ମୋର ସନ୍ଦେହ ହୁଏ, ବେଶ୍ ଅଳ୍ପ ବୟସରୁ ବାସ୍ତବ ଜୀବନର ଅନେକ ଅନୁଭୂତି ହାର୍ଡିଙ୍କ ପାଇଁ କଷ୍ଟକର ମନେ ହେଉଥିଲା। ସେସବୁ ପରିସ୍ଥିତିରୁ ଦୂରେଇ ରହିବା ପାଇଁ ସେ ଅନେକ ପ୍ରତିରକ୍ଷା ବ୍ୟବସ୍ଥା ନିଜ ମନରେ ସୃଷ୍ଟି କରିଥିଲେ। ଅତି ବନ୍ଧୁତ୍ୱପୂର୍ଣ୍ଣ ପରିବେଶରେ ତାଙ୍କର ମାନସିକ ଦୂରତା ଜଣାପଡୁଥିଲା।" ଦୁନିଆକୁ

ସେ ସବୁବେଳେ ନିଜଠାରୁ ଦୂରେଇ ରଖୁଥିଲେ। କ୍ରିକେଟ ନିଶା, ଉତ୍ସାହପୂର୍ଣ୍ଣ କଥାବାର୍ତ୍ତା, ସୁଚିନ୍ତିତ ଆଡ଼ବାୟାପଣ, ଗଣିତ ପ୍ରତି ପ୍ରଗାଢ଼ ଅନୁରକ୍ତି ଆଦି ମିଶିକରି ହାର୍ଡିଙ୍କୁ ଏକ ରହସ୍ୟମୟ ବ୍ୟକ୍ତିତ୍ୱ ଭାବରେ ଦେଖାଉଥିଲା, କିନ୍ତୁ ଅନ୍ତରଙ୍ଗ ସମ୍ପର୍କ ଯୋଡ଼ିବାରେ ଏସବୁ ସହାୟକ ହେଉ ନ ଥିଲା। କେମ୍ବ୍ରିଜର ଅନେକ ଲୋକଙ୍କ ସହିତ ତାଙ୍କର ବନ୍ଧୁତା ଥିଲା, କିନ୍ତୁ ପ୍ରାୟ କାହା ସାଙ୍ଗେ ସେ ଅନ୍ତରଙ୍ଗ ନ ଥିଲେ।

1913 ମସିହା ପରେ ହାର୍ଡି ଜଣେ ଗରିବ ଭାରତୀୟ କିରାଣିଙ୍କୁ ବନ୍ଧୁ ଭାବରେ ପାଇବେ, କିନ୍ତୁ ସେ ବନ୍ଧୁତ୍ୱ କେବେ ଅନ୍ତରଙ୍ଗ ହେବନାହିଁ।

## 6. ହାର୍ଡି-ଗଣିତ ଦଳ

1900 ମସିହାରେ ହାର୍ଡି ଟ୍ରିନିଟିର ଫେଲୋ ହେଲେ ଏବଂ 1901 ମସିହାରେ ସେ ଗୋଟିଏ ସ୍ମିଥ ପୁରସ୍କାର ପାଇଲେ। 1769 ମସିହାଠାରୁ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ଦେଉଥିବା ଦୁଇଟି ସ୍ମିଥ ପୁରସ୍କାର ଗଣିତ କ୍ଷେତ୍ରରେ ସର୍ବଶ୍ରେଷ୍ଠ ବୋଲି ବିଚାର କରାଯାଏ।

1903 ମସିହାରେ ସେ ଇଂରେଜ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡିଗ୍ରୀ ଏମ୍.ଏ. ପାଇଲେ- ଜର୍ମାନିରେ ଆରମ୍ଭ ହୋଇଥିବା ଡକ୍ଟରେଟ୍ ଡିଗ୍ରୀ ପ୍ରଥମ ବିଶ୍ୱଯୁଦ୍ଧର ପର ଯାଏଁ ଇଂଲଣ୍ଡରେ ପ୍ରଚଳିତ ହୋଇ ନ ଥିଲା।

1906 ମସିହାରେ ହାର୍ଡି ଟ୍ରିନିଟିର ଜଣେ ଲେକ୍‌ଚରର୍ ଭାବେ ନିଯୁକ୍ତ ହେଲେ। ସପ୍ତାହକୁ ଏଥିପାଇଁ ଛ ଘଣ୍ଟା ସମୟ ଦେଲେ ଏବଂ ଦୁଇଟି ପାଠ୍ୟକ୍ରମ ପଢ଼ାଇଲେ। ଏହି ପାଠ୍ୟକ୍ରମ ଦୁଇଟି ଥିଲା 'ମୌଳିକ ବିଶ୍ଳେଷଣ' (ଏଲିମେଣ୍ଟାରି ଆନାଲିସିସ୍) ଓ 'ଫଳନ ତତ୍ତ୍ୱ' (ଥିଓରି ଅଫ୍ ଫଙ୍କସନ୍‌ସ୍)। ଏହି ସମୟରେ ବେଳେ ବେଳେ ସେ ଅଣଔପଚାରିକ ଭାବରେ ଅନ୍ୟ କିଛି ପଢ଼ାଉଥିଲେ, କିନ୍ତୁ ବିଧିବଦ୍ଧ ଭାବରେ ସେ କଲେଜ ଟିଉଟର ହୋଇ ନ ଥିଲେ। ତାଙ୍କର ମୁଖ୍ୟ କାମ ଥିଲା ଗବେଷଣା।

ନିଜ ବିଷୟରେ ହାର୍ଡି ମତ ଦେଇ କହନ୍ତି ଯେ ତାଙ୍କର ବିକାଶ ବେଶ୍ ଧୀର ଥିଲା। ଏହା ସତ ମନେହୁଏ କାରଣ ତାଙ୍କର ଗୁରୁତ୍ୱପୂର୍ଣ୍ଣ କାମଗୁଡ଼ିକ ବେଶ୍ ପରେ ସେ କରିଥିଲେ। କିନ୍ତୁ ସେ ସମୟରେ, ବିଂଶ ଶତାବ୍ଦୀର ପ୍ରଥମ ଭାଗରେ, ମଧ୍ୟ ସେ ଅନେକ ନିବନ୍ଧ ପ୍ରକାଶ କରୁଥିଲେ। ମୁଖ୍ୟତଃ ସମାକଳ ଓ ଶ୍ରେଣୀ ବିଷୟରେ ବର୍ଷକୁ ସେ ଦଶ ବାରଟି ନିବନ୍ଧ ଚୂଡ଼ାନ୍ତ କରିପାରୁଥିଲେ। 'ଅପସାରି ଶ୍ରେଣୀ ଓ ଅପସାରି ସମାକଳ ତତ୍ତ୍ୱ ବିଷୟରେ ଗବେଷଣା' (*ରିସର୍ଚ୍ଚ ଇନ୍ ଦି ଥିଓରି ଅଫ୍ ଡାଇଭର୍ଜେଣ୍ଟ ସିରିଜ୍ ଆଣ୍ଡ ଡାଇଭର୍ଜେଣ୍ଟ ଇଣ୍ଟେଗ୍ରାଲ୍‌ସ୍*) ଓ 'କିଛି ବର୍ଗର ଟେଲର୍ ସମାକଳ ଶ୍ରେଣୀର ଶୂନ୍ୟ ଅଙ୍କ ବିଷୟରେ' (*ଅନ୍ ଦି ଜିରୋଜ୍ ଅଫ୍ ସର୍ଟେନ୍ କ୍ଲାସେସ୍ ଅଫ୍ ଇଣ୍ଟେଗ୍ରାଲ୍ ଟେଲର୍ ସିରିଜ୍*) ଆଦି ତାଙ୍କ ନିବନ୍ଧର କିଛି ଉଦାହରଣ ଥିଲା। ଏହି କାମରେ ସେ ତାଙ୍କୁ ଅନୁପ୍ରାଣିତ କରିଥିବା କାମିଲ୍ ଜୋର୍ଡାନ୍‌ଙ୍କ ବହିର ଅବଧାରଣାଗୁଡ଼ିକୁ ପରିମାର୍ଜିତ ଓ ପରିବର୍ଦ୍ଧିତ କରୁଥିଲେ।

ପରବର୍ତ୍ତୀ କାଳରେ ହାର୍ଡି ତାଙ୍କର ଆରମ୍ଭ ବେଳର କାମକୁ ଗୁରୁତ୍ୱପୂର୍ଣ୍ଣ ମନେ କରୁ ନ ଥିଲେ। ଲିଟଲ୍‌ଉଡ୍ ଓ ରାମାନୁଜନ୍‌ଙ୍କୁ ଭେଟିବାର ପୂର୍ବ ସମୟର କାମ ବିଷୟରେ ସେ କହୁଥିଲେ, "ସେତେବେଳେ ଦଶବର୍ଷ ଧରି ମୁଁ ବହୁତ କିଛି ଲେଖିଥିଲି, କିନ୍ତୁ ସେ ସବୁର ଗୁରୁତ୍ୱ କିଛି ନ ଥିଲା।

ସେତେବେଳର ନିବନ୍ଧ ଭିତରୁ ମାତ୍ର ଚାରି ପାଞ୍ଚଟି ସନ୍ତୋଷଜନକ ଥିଲା ବୋଲି ମୋର ମନେ ପଡୁଛି।'' ତଥାପି 1907 ମସିହା ସୁଦ୍ଧା ତାଙ୍କର ପ୍ରକାଶନର ସଂଖ୍ୟା ଓ ଗୁରୁତ୍ୱ ଉଲ୍ଲେଖନୀୟ ହୋଇଥିଲା, ଯାହା ଫଳରେ ସେହି ବର୍ଷ ଅକ୍ଟୋବର ମାସ 31 ତାରିଖରେ ରୟାଲ ସୋସାଇଟିର ସଦସ୍ୟତା ପାଇଁ ତାଙ୍କ ନାଁ ପ୍ରସ୍ତାବିତ ହୋଇଥିଲା।

କେମ୍ବ୍ରିଜର ଅନେକ ବରିଷ୍ଠ ଗଣିତଜ୍ଞ ହାର୍ଡି ସଦସ୍ୟତା ପ୍ରସ୍ତାବକୁ ସମର୍ଥନ କରୁଥିଲେ। ସେମାନଙ୍କ ଭିତରେ ଥିଲେ: ଅବସ୍ନାତକ ହାର୍ଡିଙ୍କୁ କାମିଲ୍ ଜୋର୍ଡାନ୍‌ଙ୍କ ବହି ସହିତ ପରିଚିତ କରାଇଥିବା ଏ. ଇ. ଏଚ୍. ଲଭ୍; ଇ. ଡବ୍ଲିଉ. ହବ୍‌ସନ୍ – ଯିଏ କିଛିବର୍ଷ ପରେ ରାମାନୁଜନ୍‌ଙ୍କଠାରୁ ଚିଠି ଖଣ୍ଡେ ପାଇଥିଲେ; ଟି. ଜେ. ଆଇ. ଏ. ବ୍ରୋମ୍‌ୱିଚ୍ – ଯାହାଙ୍କ ବହି ପଢ଼ିବା ପାଇଁ ରାମାନୁଜନ୍‌ଙ୍କୁ ଉପଦେଶ ଦିଆଯାଇଥିଲା। ରୟାଲ ସୋସାଇଟିର ଅଧିକାଂଶ ସଦସ୍ୟଙ୍କ ଭଳି ହାର୍ଡିଙ୍କ ସଦସ୍ୟତା ପ୍ରସ୍ତାବ ପ୍ରଥମ ଥର ଗୃହୀତ ହେଲାନାହିଁ। କିନ୍ତୁ 1910 ମସିହାରେ, ତେତିଶ ବର୍ଷ ବୟସରେ, ସେ ରୟାଲ ସୋସାଇଟିର ସଦସ୍ୟ ହେଲେ ଏବଂ ତାଙ୍କ ନାଁ ପଛରେ ବହୁସମ୍ମାନିତ ଏଫ୍.ଆର୍. ଏସ୍. ଉପାଧି ଯୋଡ଼ା ହେଲା। ସେହି ଅବସରରେ ଉଠାଯାଇଥିବା ତାଙ୍କ ଫଟୋରେ ସେ ତଥାପି ପିଲାଳିଆ ଦେଖା ଯାଉଥିଲେ।

ଏହି ସମୟରେ ଗୋଟିଏ ନୂଆ ଚିନ୍ତା ହାର୍ଡିଙ୍କ ମନକୁ ଆସିଲା। 1860 ଦଶକରେ ଅଷ୍ଟ୍ରିଆ ଦେଶର ଜଣେ ସନ୍ନ୍ୟାସୀ ଗ୍ରେଗର ମେଣ୍ଡେଲ୍ ଡେଙ୍ଗା ଓ ଗେଡ଼ା ମଟର ଗଛର ସଙ୍କରଣ ଉପରେ କିଛି ପରୀକ୍ଷା ଚଳାଇଥିଲେ। ସେ ଦେଖିଲେ ଯେ ପ୍ରତି ନୂଆ ପିଢ଼ିରେ ଡେଙ୍ଗା ଓ ଗେଡ଼ା ଗଛ ଏକ ନିର୍ଦ୍ଦିଷ୍ଟ ଅନୁପାତରେ ରହୁଛନ୍ତି ଏବଂ ଏହି ଅନୁପାତର ପୂର୍ବାନୁମାନ କରାଯାଇ ପାରୁଛି। ତାଙ୍କର ଏହି କାମ ଅନୁବଂଶ ବିଜ୍ଞାନର ମୂଳଦୁଆ ପକାଇଲା, କିନ୍ତୁ ସେ ସମୟରେ ଏହାକୁ କେହି ଗୁରୁତ୍ୱ ଦେଇ ନ ଥିଲେ। 1900 ମସିହାରେ ତାଙ୍କ ମୃତ୍ୟୁର ଷୋହଳ ବର୍ଷ ପରେ ଏହା ଉପରେ ନୂଆ ଚର୍ଚ୍ଚା ଆରମ୍ଭ ହେଲା ଏବଂ ଅନେକ ଲୋକ ମେଣ୍ଡେଲ୍‌ଙ୍କ ଫଳାଫଳର ବିଶ୍ଳେଷଣ କରିବାରେ ଲାଗିଲେ।

ମେଣ୍ଡେଲଙ୍କର କାମ ବିଷୟରେ ବିତର୍କର ଗୋଟିଏ ବିଷୟ ଥିଲା ଭବିଷ୍ୟତ ପିଢ଼ିଗୁଡ଼ିକରେ ପ୍ରଭାବୀ ଓ ଅପ୍ରଭାବୀ ଗୁଣର ଅବସ୍ଥା। ଯଦି କୌଣସି ଅପ୍ରଭାବୀ ଗୁଣ ଉଭୟ ବାପା ଓ ମା'ଙ୍କ ଦେହରେ ଦେଖାଯାଉଥାଏ ତେବେ ତାହା ପିଲାଙ୍କ ଦେହରେ ଦେଖାଯାଏ, ନଚେତ୍ ତାହା ପିଲାଙ୍କ ଦେହରେ ଅପ୍ରକାଶ୍ୟ ଅବସ୍ଥାରେ ରହେ। କିନ୍ତୁ କୌଣସି ପ୍ରଭାବୀ ଗୁଣ ବାପା ମା'ଙ୍କ ଭିତରୁ ଜଣଙ୍କ ପାଖରେ ଥିଲେ ବି ତାହା ପିଲାଙ୍କ ଦେହରେ ପ୍ରକାଶ୍ୟ ହୁଏ। ରୟାଲ ସୋସାଇଟି ଅଫ୍ ମେଡିସିନ୍‌ର ବିବରଣୀରେ ପ୍ରକାଶିତ ଏକ ନିବନ୍ଧରେ ଯୁକ୍ତି କରାଯାଇଥିଲା ଯେ ମେଣ୍ଡେଲ୍‌ଙ୍କ ଯୁକ୍ତି ଯଦି ସତ ହୋଇଥା'ନ୍ତା, ତେବେ *ବ୍ରାକିଡାକ୍ଟିଲିଜମ୍* - ଯେଉଁଥିରେ ଆଙ୍ଗୁଠି ଠିକ୍ ଭାବରେ ବଢ଼ିପାରେନାହିଁ - ବଢ଼ିଚାଲନ୍ତା। କିନ୍ତୁ ଏଭଳି ଘଟେନାହିଁ, ତେଣୁ ମେଣ୍ଡେଲ୍ ତତ୍ତ୍ୱ ଠିକ୍ ନୁହେଁ ବୋଲି ନିବନ୍ଧ ଲେଖକ ଯୁକ୍ତି କରିଥିଲେ।

ହାର୍ଡି ଆମେରିକାର ବିଜ୍ଞାନ ପତ୍ରିକା ସାଇନ୍ସକୁ ଲେଖିଥିବା ଏକ ଛୋଟ ଚିଠିରେ ସେହି ଯୁକ୍ତିକୁ ଖଣ୍ଡନ କରିଥିଲେ। ନିର୍ଦ୍ଦିଷ୍ଟ ଗୁଣ ପାଇଁ ବିଭିନ୍ନ ସଙ୍କେତ ବ୍ୟବହାର କରି ସାଧାରଣ ବୀଜଗଣିତ

ସାହାଯ୍ୟରେ ସେ ଦେଖାଇଥିଲେ ଯେ ବିଭିନ୍ନ ଗୁଣର ସମ୍ଭାବ୍ୟତା ସ୍ଥିର ରହିବ, ତେଣୁ ପିଢ଼ି ପିଢ଼ି ଧରି ପ୍ରକାଶ୍ୟ ଅପ୍ରକାଶ୍ୟ ଅନୁପାତ ମଧ୍ୟ ସ୍ଥିର ରହିବ। ଜର୍ମାନିର ଜଣେ ଡାକ୍ତର ୱିଲ୍‌ହେଲ୍‌ମ୍ ୱାଇନ୍‌ବର୍ଗ ମଧ୍ୟ ଏହିଭଳି ଏକ ପ୍ରମାଣ ଦେଇଥିଲେ ଏବଂ ସେହି ତତ୍ତ୍ୱଟି ହାର୍ଡି-ୱାଇନ୍‌ବର୍ଗ ନିୟମ ନାଁରେ ସ୍ୱୀକୃତ ହୋଇଥିଲା। ଜନସଂଖ୍ୟା ଅନୁବଂଶିକୀ ଅଧ୍ୟୟନ କ୍ଷେତ୍ରରେ ଏହି ନିୟମ ବିଶେଷ ଗୁରୁତ୍ୱପୂର୍ଣ୍ଣ ହେଲା ଏବଂ ରକ୍ତବର୍ଗ ଓ ବିରଳ ରୋଗର ପ୍ରସାରଣ ଆଦିକୁ ବୁଝିବାରେ ମୂଲ୍ୟବାନ ପ୍ରମାଣିତ ହେଲା। ଆଜି ମଧ୍ୟ ଏହା ବିଜ୍ଞାନ ଅଭିଧାନ ଓ ପାଠ୍ୟପୁସ୍ତକରେ ଦେଖିବାକୁ ମିଳେ।

ଏହି କାମ କିନ୍ତୁ ହାର୍ଡିଙ୍କ ବିଚାରରେ କିଛି ବଡ଼ କଥା ନ ଥିଲା। ସେ ସମୟର ଅନ୍ୟ ସବୁ କାମ ଭଳି ହାର୍ଡି ଏହାକୁ ଅତି ସାଧାରଣ ବୋଲି ବିଚାର କରୁଥିଲେ।

ହାଭେଲକ୍ ଏଲିସ୍ ଥରେ ଲେଖିଥିଲେ, "ଗଭୀର ମାନସିକ ଆଗ୍ରହ ନ ଥିବା କୌଣସି ବିଷୟରେ ମୁଁ କେବେ କାମ କରିପାରିନାହିଁ।" ତାଙ୍କର ଏଭଳି ଉକ୍ତିରେ ଇଂରେଜ ଚରିତ୍ର ପ୍ରତି ଏକ ଆକ୍ଷେପ ରହିଥିଲା। ତାଙ୍କ ମତରେ ଇଂରେଜମାନେ କେବଳ ଆବଶ୍ୟକତାକୁ ଚାହିଁ କାମ କରନ୍ତି। କିନ୍ତୁ ଏଲିସ୍ ଏବଂ ଅନ୍ୟ ସୌଖୀନ କର୍ମୀମାନେ କେବଳ ତାଙ୍କ ମନକୁ ଛୁଉଁଥିବା କାମରେ ହାତ ଦିଅନ୍ତି। ସତ୍ୟ ବା ସୌନ୍ଦର୍ଯ୍ୟର ସନ୍ଧାନ ପାଇଁ ସେମାନେ କାମ କରନ୍ତି, ଆବଶ୍ୟକତା ଦୃଷ୍ଟିରୁ ବାଧ୍ୟ ହୋଇ ନୁହେଁ। ଆପୋଷ୍ଟୋଲ୍‌ସ୍ ଦଳର ସଦସ୍ୟତା ପାଇଁ ହାର୍ଡିଙ୍କ 'ପିତା' ହୋଇଥିବା ଜି. ଇ. ମୁର୍ ଏହି ମାନସିକତାକୁ ଏକ ତର୍କ ଆଧାରିତ ଦର୍ଶନର ରୂପ ଦେଇଥିଲେ। ତାଙ୍କର ଗ୍ରନ୍ଥ ପ୍ରିନ୍ସିପିଆ ଏଥିକାକୁ 'ମୁକ୍ତିର ଇସ୍ତାହାର' ଭାବରେ ବର୍ଣ୍ଣନା କରାଯାଉଥିଲା। ତାଙ୍କର ଏହି ଦର୍ଶନ ପ୍ରେମ, ସୌନ୍ଦର୍ଯ୍ୟ ଓ ସତ୍ୟ ଉପରେ ଗୁରୁତ୍ୱ ଦେଉଥିଲା। ସେଥିରେ ଏହି ଗୁଣଗୁଡ଼ିକର ସଂଜ୍ଞା ମଧ୍ୟ ଏପରି ନିରୂପିତ ହୋଇଥିଲା ଯେ ସେ ସବୁରେ ଆବଶ୍ୟକତା ବା ନୈତିକତାର ସାମାନ୍ୟତମ ସୂଚନା ରହୁ ନ ଥିଲା। ବ୍ୟାବହାରିକ ଦୃଷ୍ଟିରୁ ମୂଲ୍ୟବାନ ଜ୍ଞାନ ଅପେକ୍ଷା 'ମୂଲ୍ୟହୀନ' ଜ୍ଞାନ ଏହି ଦର୍ଶନରେ ଉଚ୍ଚତର ଥିଲା। ଆହୁରି ମଧ୍ୟ ସ୍ଥୂଳ ସୌନ୍ଦର୍ଯ୍ୟ ମାନସିକ ଗୁଣ ତୁଳନାରେ ଏବଂ ତତ୍କାଳିକ ପ୍ରତ୍ୟକ୍ଷ ଫଳାଫଳ ଭବିଷ୍ୟତର ପରୋକ୍ଷ ଫଳ ତୁଳନାରେ ଅଧିକ ପସନ୍ଦଯୋଗ୍ୟ ଥିଲା।

ଗଣିତ କ୍ଷେତ୍ରରେ ହାର୍ଡିଙ୍କର କାମ ମୁର୍‌ଙ୍କ ଦର୍ଶନର ଏକ ପୂର୍ଣ୍ଣାଙ୍ଗ ପ୍ରତିଫଳନ ଥିଲା।

ହାର୍ଡିଙ୍କ ନିଜ କଥା ଥିଲା, "ମୁଁ କେବେ ବି କିଛି ବ୍ୟବହାରଯୋଗ୍ୟ କାମ କରିନାହିଁ। ଦୁନିଆର ସୁଖସ୍ୱାଚ୍ଛନ୍ଦ୍ୟ ପାଇଁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ମୋ କାମର କିଛି ଅବଦାନ ରହିନାହିଁ ବା ଭବିଷ୍ୟତରେ ରହିବାର ସମ୍ଭାବନା ନାହିଁ।" ଗଣିତକ୍ଷେତ୍ରରେ ମୁର୍‌ଙ୍କ ଦର୍ଶନର ଏଭଳି ପ୍ରୟୋଗକୁ କେହି ଜଣେ 'ହାର୍ଡିଜିମ୍' ବା ହାର୍ଡିତତ୍ତ୍ୱ ନାଁ ଦେଇଥିଲେ। ପଚାଶ ବର୍ଷ ପରେ ହାର୍ଡି ଲେଖିଥିବା ମାଥେମାଟିସିଆନ୍‌ସ୍ ଆପୋଲୋଜି ବହିର ପ୍ରତି ପୃଷ୍ଠାରେ ଏହି ଚିନ୍ତାଧାରାର ଛାପ ରହିଥିଲା।

ବ୍ୟାବହାରିକ ଦୃଷ୍ଟିରୁ ଉପଯୋଗୀ ଗଣିତ ବିଷୟରେ ତାଙ୍କର ମତ ଥିଲା -

> ଏହା ସତ ଯେ ସରଳ ଗଣିତର ଅଧିକାଂଶ ଭାଗ ପ୍ରାୟୋଗିକ ଦୃଷ୍ଟିରୁ ବେଶ୍ ମୂଲ୍ୟବାନ। କିନ୍ତୁ ଗଣିତର ଏହି ଅଂଶ ମୋଟାମୋଟି ଭାବରେ ଉଦ୍ଦୀପନାବିହୀନ। ସେଥିରେ କୌଣସି ସୌନ୍ଦର୍ଯ୍ୟବୋଧ ନ ଥାଏ। ଫର୍ମାଟ୍, ଅଏଲର୍, ଗସ୍, ଆବେଲ୍, ରିମାନ୍ ଏବଂ ଅନ୍ୟ 'ଅସଲ' ଗଣିତଜ୍ଞଙ୍କର 'ଅସଲ' ଗଣିତ ପ୍ରାୟତଃ 'ମୂଲ୍ୟହୀନ' ହୋଇଥାଏ।

ଗଣିତକୁ ହତିଆର କରି ବିଶ୍ୱକୁ ବୁଝିବାକୁ ଚେଷ୍ଟା କରୁଥିବା ଗାଣିତିକ ପଦାର୍ଥ ବିଜ୍ଞାନୀଙ୍କୁ ଲକ୍ଷ୍ୟକରି ସେମାନଙ୍କର ଜୀବନ ଦୟନୀୟ ବୋଲି ସେ କହୁଥିଲେ। ହାର୍ଡିଙ୍କ ମତ ଥିଲା -

> ଉପଯୋଗୀ ହେବାକୁ ଚାହିଁଲେ ତାଙ୍କୁ ନିରସ ଗତାନୁଗତିକ ଧାରାରେ କାମ କରିବାକୁ ହୁଏ। ଉଚ୍ଚ ସ୍ତରକୁ ଯିବା ପାଇଁ ଚାହୁଁଥିଲେ ମଧ୍ୟ ସେମାନେ ତାଙ୍କ କଳ୍ପନାକୁ ପୂରା ମାତ୍ରାରେ ରୂପ ଦେଇପାରନ୍ତିନାହିଁ। ଅର୍ଥହୀନ ଭାବରେ ଗଢ଼ା ହୋଇଥିବା ଏହି 'ବାସ୍ତବ' ବିଶ୍ୱ ତୁଳନାରେ 'କାଳ୍ପନିକ' ବିଶ୍ୱଗୁଡ଼ିକ ଅନେକ ଗୁଣ ଅଧିକ ସୁନ୍ଦର। ବାସ୍ତବ ତଥ୍ୟ ସହିତ ମେଳ ଖାଇବା ପ୍ରାୟୋଗିକ ଗଣିତ କ୍ଷେତ୍ରରେ ଏକ ନିଷ୍ଠୁର କିନ୍ତୁ ଜରୁରୀ ଆବଶ୍ୟକତା। ଏହା ନ ହେଲେ ପ୍ରାୟୋଗିକ ଗଣିତଜ୍ଞର ସବୁଠାରୁ ଭଲ ଫଳାଫଳ ବାହାରିବା ମାତ୍ରେ ପ୍ରତ୍ୟାଖ୍ୟାତ ହୋଇଯାଏ।

କିନ୍ତୁ ଅସଲ ଗଣିତରେ ଏପରି ଘଟେନାହିଁ। ଯଦି ବି ଏହାର ଉପଯୋଗିତା ବିଷୟରେ ଚିନ୍ତା କରିହୁଏ, ତେବେ ଏହାକୁ କଳା ଭଳି ବିବେଚନା କରିବାକୁ ହେବ।

ଏହି ଦୃଷ୍ଟିରୁ ବିଚାର କରି ସେ ଅନ୍ୟମାନଙ୍କୁ ମୂଲ୍ୟବାନ ମନେ ହେଉଥିବା ହାର୍ଡି-ୱାଇନ୍‌ବର୍ଗ ନିୟମକୁ 'ମୂଲ୍ୟହୀନ' ଭାବୁଥିଲେ। କାରଣ ସେଥିରେ ଗଣିତ ଦୃଷ୍ଟିରୁ ଟିକିଏ ବି ସୌନ୍ଦର୍ଯ୍ୟ ନ ଥିଲା।

ହାର୍ଡିଙ୍କର ଏହି ସୌନ୍ଦର୍ଯ୍ୟବୋଧଭିତ୍ତିକ ଚିନ୍ତାଧାରା 1913 ବେଳକୁ, ରାମାନୁଜନ୍‌ଙ୍କ ଚିଠି ପାଇବା ସମୟରେ, ପାକଳ ହୋଇ ନ ଥିଲା, କିନ୍ତୁ ତାହା ଏକ ନିର୍ଦ୍ଦିଷ୍ଟ ରୂପ ନେଇ ସାରିଥିଲା। ତାଙ୍କ ସହିତ କାମ କରୁଥିବା ଗଣିତଜ୍ଞମାନଙ୍କ ମାଧ୍ୟମରେ ତାହା ପ୍ରସ୍ଫୁଟିତ ହେବାକୁ ଲାଗିଲା। ଏହି ଗଣିତଜ୍ଞ ଦଳ ପାଇଁ କୌଣସି ପ୍ରୟୋଗାତ୍ମକ ବା ବ୍ୟାବହାରିକ କ୍ଷେତ୍ର ଆଗ୍ରହଜନକ ନ ଥିଲା। ତାହା ଅନୁବଂଶ ବିଜ୍ଞାନ ହେଉ ବା ଗାଣିତିକ ପଦାର୍ଥ ବିଜ୍ଞାନ ହେଉ। ୟୁରୋପରେ ବିକଶିତ ହୋଇଥିବା କାମିଲ୍ ଜୋର୍ଡାନ୍‌ଙ୍କ ଶୁଦ୍ଧ ଚିନ୍ତନକୁ ଆଦରି ନେଇ ହାର୍ଡି-ଗଣିତ ଦଳ ଆଗେଇବାରେ ଲାଗିଲା।

ୟୁରୋପ ମହାଦେଶରେ ଥିଲେ ମଧ୍ୟ ଇଂଲଣ୍ଡ ଦ୍ୱୀପ ମୁଖ୍ୟ ଭୂଖଣ୍ଡଠାରୁ ଅଲଗା ହୋଇ ରହିଥିଲା। ସାମାଜିକ ଦୃଷ୍ଟିରୁ ମଧ୍ୟ ସେମାନେ ନିଜକୁ ଅଲଗା ରଖୁଥିଲେ ଏବଂ ସବୁ ବିଦେଶୀ ମଣିଷ ଓ କଥା ପ୍ରତି ସନ୍ଦେହୀ ଓ ଅସହିଷ୍ଣୁ ହେଉଥିଲେ। ଊନବିଂଶ ଶତାବ୍ଦୀର ଶେଷ ଓ ବିଂଶ ଶତାବ୍ଦୀର ଆରମ୍ଭ ସମୟରେ ବିଶାଳ ସାମ୍ରାଜ୍ୟର ଅଧିକାରୀ ଭାବରେ ତାଙ୍କର ଅହଂକାର ଆହୁରି ବଢ଼ି ଯାଇଥିଲା। ନିଜ ସୁଖର ଦୁନିଆରେ ରହି ଇଂରେଜ ଜାତି ସୁନେଲି ସ୍ୱପ୍ନରେ ବୁଡ଼ି ରହିଥିଲା। କିନ୍ତୁ ତାଙ୍କର ସେହି ଦୁନିଆର ବାହାରେ ଅନେକ କିଛି ଘଟୁଥିଲା; ସେଠାରେ ହିଁ ବିଂଶ ଶତାବ୍ଦୀର ଦୁନିଆ ରୂପ ନେଉଥିଲା। ଅନ୍ୟ ସବୁକିଛିର ଦୁନିଆ ଭଳି ଗଣିତର ଦୁନିଆରେ ମଧ୍ୟ ସେହି ନୂତନତା ଆସୁଥିଲା।

ସତରଶ ଶତାବ୍ଦୀ ସମୟରୁ ଗଣିତ କ୍ଷେତ୍ରରେ ଇଂଲଣ୍ଡ ୟୁରୋପ ଆଡ଼େ ଚାହୁଁ ନ ଥିଲା। ସେତେବେଳେ ଆଇଜାକ୍ ନିଉଟନ୍ ଓ ଜର୍ମାନିର ଗଣିତଜ୍ଞ ଗଟ୍‌ଫ୍ରିଡ୍ ୱିଲ୍‌ହେଲ୍‌ମ୍ ଭନ୍ ଲିବ୍‌ନିଜ୍ ସ୍ୱାଧୀନ ଭାବରେ କାଲ୍‌କୁଲସ୍ ଆବିଷ୍କାର କରିଥିଲେ। ଆବିଷ୍କର୍ତ୍ତାର ଗୌରବ ପାଇବା ପାଇଁ ଏ ଦୁହିଁଙ୍କ ଭିତରୁ କିଏ ହକଦାର ସେ କଥା ନେଇ ସେମାନଙ୍କ ଜୀବନ କାଳ ଭିତରେ ହିଁ ବିବାଦ ଆରମ୍ଭ ହୋଇଗଲା। ସେ ଦୁହିଁଙ୍କ ମୃତ୍ୟୁ ପରେ ତାହା ଆହୁରି ବଢ଼ିଲା ଏବଂ ଗଣିତଜ୍ଞମାନେ ଭାଗ ଭାଗ ହୋଇ ସେଥିରେ ମାତିରହିଲେ। ନିଉଟନ୍ ତାଙ୍କ ଯୁଗର ସବୁଠାରୁ ବିଚକ୍ଷଣ ବ୍ୟକ୍ତି ଥିଲେ ଏବଂ

ସେକ୍ସପିଅର୍‌ଙ୍କୁ ଛାଡ଼ିଦେଲେ ବୋଧହୁଏ ତାଙ୍କ ଭଳି ଉର୍ବର ମସ୍ତିଷ୍କର ଲୋକ ଇଂଲଣ୍ଡ ମାଟିରେ ଜନ୍ମ ହୋଇ ନ ଥିଲେ। କିନ୍ତୁ ବିଡ଼ମ୍ବନାର କଥା, ପରେ ତାଙ୍କ ବିଷୟରେ କୁହାଯାଇଥିଲା ଯେ ତାଙ୍କର ଆବିର୍ଭାବ କେବଳ କେମ୍ବ୍ରିଜ ନୁହେଁ ସାରା ଇଂଲଣ୍ଡର ଗଣିତ ପାଇଁ ସବୁଠାରୁ ବଡ଼ ବିପର୍ଯ୍ୟୟ ଥିଲା। କାରଣ ତାଙ୍କର ସମ୍ମାନ ରକ୍ଷା କରିବା ପାଇଁ କେତେ ପିଢ଼ି ଧରି ଇଂରେଜ ଗଣିତଜ୍ଞମାନେ ୟୁରୋପ ସହିତ ସମ୍ପର୍କ କାଟିଦେଲେ। ସେମାନେ ନିଉଟନ୍‌ଙ୍କର ଅସୁବିଧାଜନକ ସାଙ୍କେତିକ ଧାରାକୁ ଜାବୁଡ଼ି ଧରିଲେ ଏବଂ ଅନ୍ୟ କେଉଁଠି ବିକଶିତ ହେଉଥିବା ଗଣିତର ନୂଆ ଚିନ୍ତାଧାରାକୁ ଉପେକ୍ଷା କରିଚାଲିଲେ। ୟୁରୋପର କୌଣସି ସଫଳତାକୁ ମାନିବା ପାଇଁ ସେମାନେ ପ୍ରସ୍ତୁତ ନ ଥିଲେ। ଜଣେ ଐତିହାସିକ ଏହାକୁ ଇଂରେଜ ଗଣିତଜ୍ଞଙ୍କର 'ମହା ରୁଷା' ଭାବରେ ବର୍ଣ୍ଣନା କରିଥିଲେ।

ଏହାର ପ୍ରଭାବ ବିଶେଷ ଭାବରେ କାଲ୍‌କୁଲସ୍ ଉପରେ, କିନ୍ତୁ ସାମଗ୍ରିକ ଭାବରେ ଗଣିତ ଉପରେ, ପଡ଼ିଲା ଏବଂ ବିଂଶ ଶତାବ୍ଦୀର ଆରମ୍ଭ ଯାଏଁ ତାହା ଲାଗିରହିଲା। ୟୁରୋପୀୟ ଗଣିତଜ୍ଞମାନେ ସେତେବେଳେ 'ପରିଶୁଦ୍ଧତା' (ରିଗର୍) ଉପରେ ଜୋର ଦେଉଥିଲେ, ଯାହା ସହିତ ହାର୍ଡିଙ୍କ ପରିଚିତି ଆସିଥିଲା ଜୋର୍ଡାନ୍‌ଙ୍କ ବହିରୁ। ଏହି ଧାରା 'ସତ୍ୟ ମନେହେଉଥିବା' ଗାଣିତିକ ଅବଧାରଣାଗୁଡ଼ିକୁ ବିନା ପ୍ରମାଣରେ ମାନିନେବାକୁ ପ୍ରସ୍ତୁତ ନ ଥିଲା। କାରଣ ସେଭଳି ଅନେକ ତତ୍ତ୍ୱରେ ଗୁରୁତର ତ୍ରୁଟି ଲୁଚି ରହିଥିବାର ଦେଖାଯାଉଥିଲା। ଇଂରେଜମାନେ କିନ୍ତୁ ଏହାକୁ ଜର୍ମାନମାନଙ୍କ ଜିରାରୁ ଶିରା କାଢ଼ିବା ଗୁଣ କହି ନାପସନ୍ଦ କରୁଥିଲେ। ବର୍ଟ୍ରାଣ୍ଡ ରସେଲ୍ ତାଙ୍କ ପ୍ରାକ୍‌ସ୍ନାତକ ସମୟକୁ ମନେ ପକାଇ କହୁଥିଲେ, "ଯେଉଁମାନେ ମତେ ଅତ୍ୟଣୁ (ଇନ୍‌ଫାଇନାଟେସିମାଲ୍) କାଲ୍‌କୁଲସ୍ ପଢ଼ାଉଥିଲେ ସେମାନେ ଏହି ବିଷୟର ମୌଳିକ ଉପପାଦ୍ୟଗୁଡ଼ିକର ପ୍ରମାଣ ଜାଣି ନ ଥିଲେ। ତେଣୁ ବିଶ୍ୱାସର ସହିତ ସେ ସବୁକୁ ଗ୍ରହଣ କରିନେବାକୁ ମତେ କହୁଥିଲେ। ମୁଁ ବୁଝୁଥିଲି ଯେ ପ୍ରାୟୋଗିକ ଦିଗରୁ କାଲ୍‌କୁଲସ୍ ସଠିକ ଫଳ ଦିଏ, କିନ୍ତୁ କାହିଁକି ଏଭଳି ଫଳ ମିଳୁଛି ତାହା ମୁଁ ବୁଝିପାରୁ ନ ଥିଲି।" କେମ୍ବ୍ରିଜର ଅନ୍ୟ ସବୁ ପ୍ରାକ୍‌ସ୍ନାତକ ଛାତ୍ରଙ୍କ ଅବସ୍ଥା ଯେ ଏହିଭଳି ଥିଲା ତାହା ନିଃସନ୍ଦେହରେ କୁହାଯାଇପାରେ।

କାଲ୍‌କୁଲସ୍‌ର ମୌଳିକ କୌଶଳ ହେଉଛି କୌଣସି ପରିମାଣକୁ ଛୋଟରୁ ଛୋଟ ଖଣ୍ଡରେ ଭାଗକରି ଚାଲିବା, ଯେପରି ସେହି ଖଣ୍ଡଗୁଡ଼ିକ ଶୂନର ନିକଟତର ହୋଇଚାଲିବେ କିନ୍ତୁ କେବେ ଶୂନ ହେବେନାହିଁ। ଏହି ପ୍ରକ୍ରିୟାକୁ ସୀମା ନିର୍ଦ୍ଧାରଣ କରିବା କୁହାଯାଏ ଏବଂ କାଲ୍‌କୁଲସ୍ ବୁଝିବାକୁ ହେଲେ ଏହି ଅବଧାରଣାକୁ ବୁଝିବା ଅପରିହାର୍ଯ୍ୟ। କିନ୍ତୁ ବୀଜଗଣିତ ଓ ଜ୍ୟାମିତିର ସ୍ଥୂଳ ପୃଷ୍ଠଭୂମିରେ ବଢ଼ିଥିବା ଗଣିତ ଶିକ୍ଷାର୍ଥୀଙ୍କ ପାଇଁ ଏଭଳି ସୂକ୍ଷ୍ମ କଥାର ଧାରଣା କରିବା ସହଜ ନ ଥିଲା। ତଥାପି ଏହି ବୌଦ୍ଧିକ ପ୍ରଶ୍ନକୁ ଏଡ଼ାଇ କେବଳ ବ୍ୟାବହାରିକ ଦିଗ ପ୍ରତି ଧ୍ୟାନ ଦେଇ କାଲ୍‌କୁଲସ୍ ବିଷୟକୁ ପାର ହୋଇଯିବା ସମ୍ଭବ ଥିଲା।

ଏବେ ମଧ୍ୟ କାଲ୍‌କୁଲସ୍‌ର ଏହି ଦ୍ୱନ୍ଦ୍ୱାତ୍ମକ ପରିଚୟର ଛାପ ପାଠ୍ୟପୁସ୍ତକରେ ଦେଖିବାକୁ ମିଳେ। ବହିର ପ୍ରଥମ ଭାଗରେ ପାରମ୍ପରିକ ଇଂରେଜ ଧାରାର ଚିତ୍ର ମିଳେ ଏବଂ ଶେଷ ଭାଗରେ ୟୁରୋପୀୟ ପରିଶୁଦ୍ଧତା ଆଧାରିତ ସୂକ୍ଷ୍ମ 'ବିଶ୍ଳେଷଣ' ସ୍ଥାନ ପାଏ। ସେହି ବିଶ୍ଳେଷଣ ଅଂଶରେ ଅତି ଛୋଟ ସଂଖ୍ୟାଗୁଡ଼ିକୁ ସୂଚାଉଥିବା ଗ୍ରିକ୍ ସଙ୍କେତ ସବୁ ଭରି ରହିଥାଏ। ତାହା ଏକ ଅଲଗା ଦୁନିଆ

ହୋଇଥାଏ ଯେଉଁଠି ଗଣିତ, ତର୍କ ଓ 'ଜିରାରୁ ଶିରା କଢ଼ା' ମିଶି ରହିଥାଏ।

ପ୍ରଥମେ ଗସ୍, ଆବେଲ୍ ଓ କୋଶି ଏବଂ ପରେ ୱିଅର୍‌ଷ୍ଟ୍ରାସ୍ ଓ ଡେଡେକିଣ୍ଡ ଗଣିତର ଏହି ସୂକ୍ଷ୍ମ ଧାରାକୁ ଆଗେଇ ନେଲେ। ଏମାନେ କେହି ଇଂରେଜ ନ ଥିଲେ ଏବଂ ଇଂରେଜ ଗଣିତଜ୍ଞମାନେ ଏହି ନୂଆ ଗଣିତକୁ ଉପେକ୍ଷା କରିଚାଲିଲେ। ଅନେକ ପ୍ରତିଭାର ଅଧିକାରୀ ଫରାସୀ ଗଣିତଜ୍ଞ କୋଶିଙ୍କୁ କେମ୍ବ୍ରିଜରେ କର୍କି ନାଁ ଦେଇ ବ୍ୟଙ୍ଗ କରୁଥିଲେ।

ନିଉଟନ୍‌ଙ୍କ ସମୟରୁ ଇଂରେଜ ଗଣିତ ପ୍ରୟୋଗାତ୍ମକ ଦିଗକୁ ଅଧିକ ଢଳିଥିଲା। ଗାଣିତିକ ପଦାର୍ଥ ବିଜ୍ଞାନ କ୍ଷେତ୍ରରେ ଇଂରେଜମାନଙ୍କର ପ୍ରାଧାନ୍ୟ ରହିଥିଲା। କେଲ୍‌ଭିନ୍, ମାକ୍ସୱେଲ୍, ରାଲେ ଓ ଜେ. ଜେ. ଥମ୍‌ସନ୍‌ଙ୍କ ଭଳି ବିଶିଷ୍ଟ ବିଜ୍ଞାନୀଙ୍କର ଏହି କ୍ଷେତ୍ରରେ ଅନେକ ମୌଳିକ ଅବଦାନ ରହିଥିଲା। କିନ୍ତୁ ଶୁଦ୍ଧ ଗଣିତ ମୃତପ୍ରାୟ ହୋଇ ରହିଥିଲା ଏବଂ ଊନବିଂଶ ଶତାବ୍ଦୀରେ କୌଣସି ଇଂରେଜ ଗଣିତଜ୍ଞ ପ୍ରସିଦ୍ଧି ଲାଭ କରି ନ ଥିଲେ। ତର୍କର ପରିଶୁଦ୍ଧତା ଇଂରେଜ ଗଣିତଜ୍ଞମାନଙ୍କ ପାଇଁ ଘୃଣାର ବିଷୟ ଥିଲା। ସେମାନଙ୍କର ମତ ଥିଲା ନିଉଟନ୍ ସବୁ ସମସ୍ୟାର ସମାଧାନ କରିସାରିଛନ୍ତି, ଛୋଟ ଛୋଟ କଥାରେ ତେଣୁ ଅଧିକ ତର୍କ କରିବାରେ ଲାଭ କ'ଣ? ନିଉଟନ୍‌ଙ୍କ କାମରୁ କାଲ୍‌କୁଲସ୍ ଓ ଗାଣିତିକ ପଦାର୍ଥ ବିଜ୍ଞାନର ଭିତ୍ତି ବାହାରିଛି ଏବଂ ସେଥିରୁ ସଠିକ ଫଳାଫଳ ମିଳୁଛି। ଅର୍ଥାତ ଇଂରେଜ ଧାରାର ଗଣିତରେ କିଛି ଭୁଲ ନାହିଁ।

ଏହି ଆତ୍ମସନ୍ତୋଷରେ ବିଭୋର ଇଂଲଣ୍ଡ ତା'ର ଟ୍ରାଇପସ୍ ବ୍ୟବସ୍ଥାର କୋଳରେ ଶୋଇ ରହିଲା। ଏହି ବ୍ୟବସ୍ଥାରେ ନିଉଟନ୍ ଥିଲେ ଭଗବାନ, ଆଉ ତାଙ୍କ ଗ୍ରନ୍ଥ ପ୍ରିନ୍ସିପିଆ ମାଥେମାଟିକା ଥିଲା ବାଇବେଲ। ଟ୍ରାଇପସ୍ ପରୀକ୍ଷା ପାଇଁ ସେହି ବିଖ୍ୟାତ ଗ୍ରନ୍ଥର ପ୍ରମେୟିକାଗୁଡ଼ିକୁ ଶ୍ଲୋକ ଭଳି ଗ୍ରହଣ କରି କ୍ରମସଂଖ୍ୟା ଅନୁସାରେ ଜାଣିବା ଦରକାର ଥିଲା। ଆତ୍ମସନ୍ତୁଷ୍ଟ ଓ ଆତ୍ମନିର୍ଭରଶୀଳ କେମ୍ବ୍ରିଜ ନିଜ ଜ୍ଞାନର ସୀମା ଭିତରେ ବନ୍ଦୀ ହୋଇ ବାହାର ଦୁନିଆରୁ ଅଲଗା ହୋଇଗଲା।

ଏଭଳି ସ୍ଥାଣୁ ଅବସ୍ଥାରେ ପ୍ରଥମ ପରିବର୍ତ୍ତନ ଦେଖାଦେଲା 1893 ମସିହାରେ। ଫଳନ ତତ୍ତ୍ୱ ବହିର ଲେଖକ ଆଣ୍ଡ୍ରିଉ ରସେଲ୍ ଫୋରସାଇଥ୍ ୟୁରୋପର କିଛି ନୂଆ ଚିନ୍ତାଧାରା ସେହି ବହିରେ ଦେଇଥିଲେ। ଅବଶ୍ୟ ଇଂଲଣ୍ଡ ପାଇଁ ନୂଆ ଥିବା ସେହି ସବୁ ଚିନ୍ତା ୟୁରୋପରେ ବେଶ୍ ପୁରୁଣା ହୋଇ ସାରିଥିଲା। ବହିଟିର ରଚନା ଶୈଳୀ ନ୍ୟାୟାଳୟର ରାୟ ଦେବା ଭଳି ଥିଲା ଏବଂ ସତ୍ୟର ଉଦ୍ଭାସନ ଭଳି ତାହା କେମ୍ବ୍ରିଜକୁ ଝଲସାଇ ଦେଲା। ଜଣେ ମତ ଦେଇଥିଲେ ଯେ ଇଂରେଜ ଗଣିତ ଉପରେ ଏହି ବହିର ପ୍ରଭାବ ନିଉଟନ୍‌ଙ୍କ ପ୍ରିନ୍ସିପିଆର ପ୍ରଭାବ ଭଳି ଥିଲା। ବାସ୍ତବରେ କିନ୍ତୁ ବହିଟି ସେତେ ଭଲ ନ ଥିଲା ଏବଂ ୟୁରୋପରେ ତାହା କିଛି ଗୁରୁତ୍ୱ ପାଇଲାନାହିଁ। କିନ୍ତୁ ଇଂରେଜ ଗଣିତର ଦିଗ ବଦଳାଇବାରେ ଏହାର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ ହୋଇଥିଲା।

ଭବିଷ୍ୟତ ପାଇଁ ଏହା ରାସ୍ତା ଖୋଲିଦେଲା, କିନ୍ତୁ ସେ ରାସ୍ତାରେ ଇଂରେଜ ଗଣିତକୁ ଆଗେଇ ନେବାର କାମ ରହିଲା ହାର୍ଡିଙ୍କ ପାଇଁ।

ଗଣିତରେ ପରିଶୁଦ୍ଧତାର ପ୍ରବକ୍ତା ଭାବରେ ହାର୍ଡି ଖୁବ୍ ପ୍ରଭାବଶାଳୀ ଥିଲେ। ତାଙ୍କ ବକ୍ତବ୍ୟରେ ବିଷୟବସ୍ତୁର ପ୍ରଭାବ ଯେତିକି ଥିଲା, ତାଙ୍କ ବ୍ୟକ୍ତିତ୍ୱର ଏବଂ ରଚନା ଓ ଭାଷଣ ଶୈଳୀର ପ୍ରଭାବ

ମଧ୍ୟ ସେତିକି ରହୁଥିଲା। ଭାଷଣ ଦେଲା ବେଳେ ତାଙ୍କ କଥାରେ, ମୁହଁରେ ଉତ୍ସାହ ଓ ଉଲ୍ଲାସ ଉଛୁଳି ପଡୁଥିଲା।

ତାଙ୍କର ଜଣେ ଛାତ୍ର ଇ. ସି. ଟିଚ୍‌ମାର୍ଶ କହିଥିଲେ, "ମନେ ହେଉଥିଲା ଏହି ପ୍ରମେୟଗୁଡ଼ିକର ପ୍ରମାଣ ଛଡ଼ା ଦୁନିଆରେ ଆଉ କିଛି ବି ଗୁରୁତ୍ୱପୂର୍ଣ୍ଣ ନ ଥିଲା।" ଆମେରିକାର ଗାଣିତିକ ବାଳପ୍ରତିଭା ନର୍ବର୍ଟ ୱିନର, ପରେ ଯିଏ ସାଇବର୍ନେଟିକ୍‌ସ୍ ବିଜ୍ଞାନ ସୃଷ୍ଟି କରିଥିଲେ, ହାର୍ଡିଙ୍କ ଭାଷଣ ବିଷୟରେ କୁହନ୍ତି, "ସାରା ଜୀବନରେ ମୁଁ ଯେତେ ଗାଣିତିକ ଭାଷଣ ଶୁଣିଛି, ସେ ଭିତରେ ସ୍ୱଚ୍ଛତା, ଆଗ୍ରହ ଓ ବୌଦ୍ଧିକ ଶକ୍ତି ଦୃଷ୍ଟିରୁ ହାର୍ଡିଙ୍କ ଭାଷଣ ଭଳି କିଛି ନ ଥିଲା।" ହାର୍ଡିଙ୍କର ବ୍ୟକ୍ତିଗତ ଆକର୍ଷଣ ଓ ଉତ୍ସାହ ଏତେ ଅଧିକ ଥିଲା ଯେ ବେଳେ ବେଳେ ଗଣିତ ପାଇଁ ଉପଯୁକ୍ତ ଦକ୍ଷତା ଓ ମାନସିକତା ନ ଥିବା ପିଲାଙ୍କୁ ସେ ଏହି ବିଷୟକୁ ଟାଣି ଆଣୁଥିଲେ ବୋଲି କୁହାଯାଏ।

ହାର୍ଡିଙ୍କର ଭାଷଣଗୁଡ଼ିକ ଅତି ସୁବୋଧ ଥିଲା, କିନ୍ତୁ ତାଙ୍କ ଲେଖା ବୋଧହୁଏ ଆହୁରି ବେଶି ପ୍ରଭାବଶାଳୀ ହେଉଥିଲା। ଏକ ବିକଳ୍ପ ପେଷା ବିଷୟରେ ଥରେ ହାର୍ଡି କହିଥିଲେ ଯେ ଗଣିତ ବାହାରେ ସେ ସାମ୍ବାଦିକତାରେ ସଫଳ ହେବାର ସମ୍ଭାବନା ଭଲ ଥିଲା। ଲେଖିବାର ଦକ୍ଷତା ଉପରେ ନିର୍ଭର କରୁଥିବା ଯେ କୌଣସି କ୍ଷେତ୍ରରେ ସେ ସଫଳ ହୋଇଥା'ନ୍ତେ ବୋଲି କୁହାଯାଇପାରେ। ସି. ପି. ସ୍ନୋ କହୁଥିଲେ ଯେ ନିଜର ସ୍ୱଚ୍ଛ ଓ ଅଳଙ୍କାରବିହୀନ ଶୈଳୀରେ ସଠିକ ଇଂରାଜୀ ଲେଖୁଥିଲେ। ରାମାନୁଜନ୍‌ଙ୍କୁ ଇତିହାସରେ ପ୍ରତିଷ୍ଠିତ କରାଇବା ପାଇଁ ତାଙ୍କର ବ୍ୟକ୍ତିଗତ ବନ୍ଧୁତା ଯେତିକି ଦାୟୀ ଥିଲା, ରାମାନୁଜନ୍‌ଙ୍କ ବିଷୟରେ ତାଙ୍କର ବିଭିନ୍ନ ଲେଖାର ସରସତା ସେତିକି ଗୁରୁତ୍ୱପୂର୍ଣ୍ଣ ଥିଲା।

ହାର୍ଡି କିନ୍ତୁ କହୁଥିଲେ ଯେ ତାଙ୍କର ପ୍ରଥମ ଅବସ୍ଥାର ଲେଖାଗୁଡ଼ିକ ଅତି ଖରାପ ଥିଲା। ତେବେ ହାର୍ଡିଙ୍କୁ ନିଜ ସୁନ୍ଦର ଚେହେରା ମଧ୍ୟ ପସନ୍ଦ ଲାଗୁ ନ ଥିଲା। ସ୍ନୋ କିନ୍ତୁ କହନ୍ତି ଯେ ହାର୍ଡିଙ୍କର ସବୁ କାମରେ ଲାଳିତ୍ୟ, ଶୃଙ୍ଖଳା ଓ ସୌନ୍ଦର୍ଯ୍ୟବୋଧ ରହୁଥିଲା। ତାଙ୍କର ଲେଖା ପାଇଁ ମଧ୍ୟ ଏହା ସତ ଥିଲା। କେମ୍ବ୍ରିଜ ରିଭିୟୁ ପତ୍ରିକା ପାଇଁ ସେ ବର୍ଟ୍ରାଣ୍ଡ ରସେଲ୍‌ଙ୍କ ଦର୍ଶନ ବିଷୟରେ ଲେଖୁଥିଲେ। ସେ ଲେଖୁଥିବା ବିଖ୍ୟାତ ଗଣିତଜ୍ଞମାନଙ୍କର ମୃତ୍ୟୁସୂଚନା ସନ୍ତୁଳିତ, ରୁଚିକର ଓ ଗଭୀର ହେଉଥିଲା। ସାଧାରଣ ଲୋକଙ୍କ ପାଇଁ ମଧ୍ୟ ସେ ଗଣିତର ବିଭିନ୍ନ ବିଷୟରେ ଲେଖିପାରୁଥିଲେ। ତାଙ୍କର ମାଥେମାଟିସିଆନ୍‌ସ୍ ଆପୋଲୋଜି ଏକ ଅତି ଉତ୍କୃଷ୍ଟ ବହି ଭାବରେ ଆଦୃତ ହୋଇଥିଲା ଏବଂ ତା'ର ଭାଷାର ଚମତ୍କାରିତାରେ ପାଠକ ବିମୋହିତ ହେଉଥିଲା।

ଅତି ଗଭୀର ଗଣିତ ବିଷୟରେ ମଧ୍ୟ ସେ ତାଙ୍କ ରଚନା ଶୈଳୀକୁ କାମରେ ଲଗାଉଥିଲେ। ସହଯୋଗୀଙ୍କ ସହିତ କରିଥିବା କାମର ଫଳାଫଳ ଲେଖିବା ଓ ପ୍ରକାଶ କରାଇବାର ଦାୟିତ୍ୱ ପ୍ରାୟ ସବୁବେଳେ ସେ ହିଁ ନେଉଥିଲେ। ଫଳାଫଳର ସଠିକ ଉପସ୍ଥାପନାରେ ଲିଟଲ୍‌ଉଡ୍ ସନ୍ତୁଷ୍ଟ ରହୁଥିଲେ, କିନ୍ତୁ ହାର୍ଡି ତାଙ୍କ ରଚନାରେ ଯଥେଷ୍ଟ ଅଳଙ୍କାର ଦେବାକୁ ଚାହୁଁଥିଲେ ଯେପରି ତାହା ପାଠକର ମନକୁ ଉଦ୍ଦୀପିତ କରିବ। ତାଙ୍କ ବହିର ଜଣେ ସମୀକ୍ଷକ କହିଥିଲେ ଯେ ଆଗ୍ରହଜନକ ହେବାର ଯେଉଁ ଦକ୍ଷତା ହାର୍ଡିଙ୍କଠାରେ ଦେଖିବାକୁ ମିଳେ ତାହାର ସମକକ୍ଷ ହେବା ଭଳି ଆଉ କିଛି ମୁଁ ଦେଖିନାହିଁ।

ହାର୍ଡି କହୁଥିଲେ ଯେ ଶବ୍ଦ ବିନା ତାଙ୍କ ପାଇଁ ଚିନ୍ତନ ଅସମ୍ଭବ। ପଢ଼ାଇବା ପାଇଁ ନୋଟ ଓ ଗାଣିତିକ ନିବନ୍ଧ ଲେଖିବାରେ ସେ ଖୁବ୍ ଆନନ୍ଦ ପାଉଥିଲେ ଏବଂ ସୌନ୍ଦର୍ଯ୍ୟବୋଧ ଓ ବୌଦ୍ଧିକ ଦୃଷ୍ଟିରୁ ତାହା ତାଙ୍କୁ ସନ୍ତୋଷ ଦେଉଥିଲା। ତାଙ୍କର ହାତଲେଖା ପାଣ୍ଡୁଲିପିର ପୃଷ୍ଠାଗୁଡ଼ିକ କୌଣସି କଳାକାରର ସୃଷ୍ଟି ଭଳି ମନେ ହେଉଥିଲା। ଖୁନ୍ଦାଖୁନ୍ଦି ଲେଖା ତାଙ୍କର ପସନ୍ଦ ନ ଥିଲା। ଶୃଙ୍ଖଳିତ ଗଣିତ ତାଙ୍କ ହାତର ଛଟା ଲେଖାରେ ସଙ୍ଗୀତର ସ୍ୱରଲିପି ଭଳି ଦେଖାଯାଉଥିଲା।

ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ହାର୍ଡି ତାଙ୍କ ଲେଖା ମାଧ୍ୟମରେ ଇଂଲଣ୍ଡର ନୂଆ ପିଢ଼ିର ଗଣିତଜ୍ଞମାନଙ୍କୁ ୟୁରୋପୀୟ ପରିଶୁଦ୍ଧତା ପ୍ରତି ଗୁରୁତ୍ୱ ଦେବାକୁ ପ୍ରବର୍ତ୍ତାଇଲେ। 1903 ମସିହାରେ ସେ ଟାଇମ୍ସ୍ ଲିଟେରାରି ସପ୍ଲିମେଣ୍ଟରେ ବର୍ଟ୍ରାଣ୍ଡ ରସେଲ୍‌ଙ୍କ *ପ୍ରିନ୍‌ସିପଲ୍‌ସ୍ ଅଫ୍ ମାଥେମାଟିକ୍ସ୍* ବହିର ସମୀକ୍ଷା କରିଥିଲେ। ଇଂରେଜ ଗଣିତଜ୍ଞମାନେ ୟୁରୋପର ଘଟଣା ପ୍ରତି ପ୍ରାୟ ଆଖି ବୁଜି ଦେଉଥିଲେ, କିନ୍ତୁ ହାର୍ଡି ବିଦେଶରେ ବାହାରୁଥିବା ନୂଆ ବହି ସବୁର ସମୀକ୍ଷା ମାଥେମାଟିକାଲ୍ ଗେଜେଟ୍‌ରେ ପ୍ରକାଶ କରୁଥିଲେ। ଇଂଲଣ୍ଡ ଓ ଆମେରିକାରେ ପ୍ରକାଶ ପାଉଥିବା ବହିଗୁଡ଼ିକର ଦୋଷ ଦୁର୍ବଳତା ଦେଖାଇ ସେ ସବୁର ମାର୍ଜନା ପାଇଁ ବାଟ ଦେଖାଉଥିଲେ।

ଅନେକ ବହିର ଦୁର୍ବଳତା ଦେଖିଲା ପରେ ସେ ନିଜେ ଗୋଟିଏ ପାଠ୍ୟପୁସ୍ତକ ଲେଖିବାକୁ ଠିକ୍ କଲେ। 1908 ମସିହା ସେପ୍ଟେମ୍ବର ମାସରେ ସେ ତାଙ୍କର *ଏ କୋର୍ଷ ଇନ୍ ପିଓର୍ ମାଥେମାଟିକ୍ସ୍* ବହିଟି ପୂରା କଲେ। ଏହା ଥିଲା ଇଂରାଜୀ ଭାଷାରେ ପ୍ରଥମ ବହି ଯେଉଁଥିରେ ଗାଣିତିକ ଅବଧାରଣାଗୁଡ଼ିକର ଅବତାରଣା କଡ଼ାକଡ଼ି ଭାବରେ କରାଯାଇଥିଲା। ବହିର ମୁଖବନ୍ଧରେ ହାର୍ଡି କହିଥିଲେ ଯେ ଏଭଳି ଖଣ୍ଡିଏ ବହିର ବହୁତ ଆବଶ୍ୟକତା ଥିଲା, କାରଣ, "ମୁଁ ଅତି କମ୍ ଛାତ୍ରଙ୍କୁ ଦେଖିଛି ଯେଉଁମାନେ ସାମାନ୍ୟ ଆତ୍ମବିଶ୍ୱାସର ସହିତ ଅସୀମ, ସୀମା ବା ଅବିଚ୍ଛିନ୍ନତା ଭଳି ଅବଧାରଣା ସମ୍ପର୍କିତ ସରଳ ସମସ୍ୟାର ସାମନା କରିପାରିବେ।"

ହାର୍ଡିଙ୍କର ଅନ୍ୟ ସବୁ ଲେଖା ଭଳି ଏହି ବହିଟି ସାବଲୀଳ ଥିଲା। ସେଥିରେ ପୃଷ୍ଠା ପୃଷ୍ଠା ଧରି କେବଳ ବିଭିନ୍ନ ସମୀକରଣ ଖୁନ୍ଦା ହୋଇ ନ ଥିଲା, ବରଂ କଷ୍ଟ ବିଷୟଗୁଡ଼ିକ ସରଳ ଭାଷାରେ ପ୍ରାଞ୍ଜଳ ଭାବରେ ବୁଝାଇ ଦିଆଯାଇଥିଲା। ଅନ୍ୟ କାହା ହାତରେ ଯେଉଁ ଗୁରୁତ୍ୱପୂର୍ଣ୍ଣ କଥା ଜଟିଳ ଗଣିତ ଭିତରେ ବୁଡ଼ିଯାଇଥା'ନ୍ତା, ହାର୍ଡିଙ୍କ ଲେଖାରେ ତାହା ଆପେ ଆପେ ଆଗକୁ ଆସି ଯାଉଥିଲା। ବେଳେ ବେଳେ ତାହା ରହସ୍ୟର ରୋମାଞ୍ଚକର ଉନ୍ମୋଚନ ଭଳି ମନେ ହେଉଥିଲା।

ହାର୍ଡିଙ୍କର ପ୍ରଥମ ଅବସ୍ଥାର କାମ ଭିତରୁ ଗୋଟିଏ ଥିଲା ପରିମେୟ ସଂଖ୍ୟା ବିଷୟରେ। 6, $^1/_4$, 19, $^{112}/_{3890}$ ଭଳି ସାଧାରଣ ସଂଖ୍ୟା ବା ଭଗ୍ନାଂଶଗୁଡ଼ିକୁ ପରିମେୟ ବା ରାସନାଲ ସଂଖ୍ୟା କୁହାଯାଏ। ହାର୍ଡି ଦେଖାଇଲେ ଯେ କୌଣସି ରେଖାଖଣ୍ଡ ଉପରେ ଦୁଇଟି ସଂଖ୍ୟାକୁ ସୂଚାଉଥିବା ଦୁଇଟି ବିନ୍ଦୁ ଭିତରେ ଆହୁରି ଅଧିକ ପରିମେୟ ସଂଖ୍ୟା ସୂଚକ ବିନ୍ଦୁ ରଖିହେବ। ଯେପରି $^1/_4$ ଓ $^2/_3$ ଭିତରେ $^3/_5$ ରହିପାରିବ ଏବଂ $^3/_5$ ଓ $^2/_3$ ଭିତରେ $^5/_8$ ରହିପାରିବ। ଏହିଭଳି କରିଚାଲିଲେ ଦୁଇ ବିନ୍ଦୁ ଭିତରେ ଅସୀମ ବିନ୍ଦୁ ରହିପାରିବ। ଆହୁରି ମଧ୍ୟ ସେ କହିଥିଲେ -

> ଏହି ବିଚାରରୁ ପାଠକ ଭାବିପାରନ୍ତି ଯେ ଏହି ପରିମେୟ ବିନ୍ଦୁଗୁଡ଼ିକ ହିଁ ରେଖାଖଣ୍ଡର ସମସ୍ତ ବିନ୍ଦୁ, ଅର୍ଥାତ୍ ରେଖାଖଣ୍ଡର ସବୁ ବିନ୍ଦୁ ଗୋଟିଏ ଗୋଟିଏ ପରିମେୟ ବିନ୍ଦୁ ହେବେ। ଏହା ସତ ହେବ ଯଦି

> ଆମେ ଧରିନେବା ଯେ ରେଖାଟିରେ କେବଳ ପରିମେୟ ବିନ୍ଦୁ ରହିଛି ଏବଂ ଯଦି ଅନ୍ୟ କୌଣସି ପ୍ରକାରର ବିନ୍ଦୁ ସମ୍ଭବ ହୋଇପାରେ ସେଗୁଡ଼ିକୁ ବାଦ ଦିଆଯାଇଛି। ଏପରି ହେଲେ ତାହା ଏକ ସାଧାରଣ ରେଖା ଭଳି ବ୍ୟବହାର କରିବ।

ହାର୍ଡିଙ୍କର ଏହି ଉପକ୍ରମ ପଢ଼ିଲେ ସନ୍ଦେହ ହେବ ଯେ ସେ କିଛି ଗୋଟିଏ ଅଲଗା କଥା କହିବାକୁ ଯାଉଛନ୍ତି। ପ୍ରକୃତରେ ସେ ତାହା ହିଁ କରୁଥିଲେ। ସେ ଦେଖାଇଲେ ଯେ ସେହି ରେଖାଖଣ୍ଡ ଭିତରେ ଆହୁରି ଅସୀମ ସଂଖ୍ୟାର ଅନ୍ୟ ପ୍ରକାରର ସଂଖ୍ୟା ରଖାଯାଇପାରିବ। ସେଗୁଡ଼ିକ ହେଉଛନ୍ତି ଅପରିମେୟ ସଂଖ୍ୟା ଯାହା ଭଗ୍ନାଂଶ ରୂପରେ ପ୍ରକାଶିତ ହୋଇପାରିବନାହିଁ। ଏବେ ସେ ସେହି ସଂଖ୍ୟା ଶ୍ରେଣୀର ଗୁଣଧର୍ମକୁ ବୁଝିବାକୁ ଚେଷ୍ଟା କଲେ।

ମୌଳିକ ତଥ୍ୟ ପ୍ରତି ଏଭଳି ଯତ୍ନ ଓ ଧ୍ୟାନ ବିଶେଷ ଭାବରେ ଆଦର ପାଇଲା। ଜଣେ ସମୀକ୍ଷକ ଲେଖିଥିଲେ, "ଯେତେବେଳେ ଶ୍ରୀଯୁକ୍ତ ହାର୍ଡି କିଛି ପ୍ରମାଣ କରିବାକୁ ଚାହାନ୍ତି, ସେ ତାହା ନିଶ୍ଚିତ ଭାବରେ କରନ୍ତି... ସାଧାରଣତଃ ସ୍କୁଲରେ ଅନେକ କଷ୍ଟକରି ପଢ଼ିଥିବା ବିଭିନ୍ନ 'ପ୍ରମାଣ' ଯେ ମୂଲ୍ୟହୀନ ତାହା ବିଶ୍ୱବିଦ୍ୟାଳୟ ଛାତ୍ରମାନଙ୍କୁ ବୁଝାଇବା ପାଇଁ ଅନେକ ସମୟ ଖର୍ଚ୍ଚ ହୋଇଥାଏ। ଏହି ବହିଟି ଯଦି ବ୍ୟାପକ ଭାବରେ ପଢ଼ାଯାଏ ତେବେ ସେହି ସମୟତକ ବଞ୍ଚିଯାଇପାରିବ।"

ହାର୍ଡିଙ୍କ ବହିଟି ବ୍ୟାପକ ଭାବରେ ପଢ଼ାଯାଇଥିଲା ଏବଂ ପଞ୍ଚସ୍ତରୀ ବର୍ଷ ଭିତରେ ତାହାର ଦଶଟି ସଂସ୍କରଣ ଓ ଅସଂଖ୍ୟ ପୁନର୍ମୁଦ୍ରଣ ବାହାରିଥିଲା। ଇଂଲଣ୍ଡରେ ବିଶ୍ୱବିଦ୍ୟାଳୟ ସ୍ତରର ଗଣିତ ଶିକ୍ଷା ଉପରେ ଏହା ସବୁଠାରୁ ବଡ଼ ପ୍ରଭାବ ଥିଲା ବୋଲି ସମସ୍ତେ ମାନନ୍ତି। ଏହି ବହି ମାଧ୍ୟମରେ, ତାଙ୍କ ଭାଷଣ ଜରିଆରେ, ବିଭିନ୍ନ ନିବନ୍ଧ ଓ ସମୀକ୍ଷା ଏବଂ ଅନ୍ୟ ଗଣିତଜ୍ଞଙ୍କ ସହିତ ତାଙ୍କର ସମ୍ପର୍କ ସାହାଯ୍ୟରେ ହାର୍ଡି ଗାଣିତିକ ପରିଶୁଦ୍ଧତାକୁ ସମସ୍ତଙ୍କ ପାଇଁ ଗ୍ରହଣୀୟ କରାଇପାରିଲେ।

x x x

ଇଂଲଣ୍ଡ ଗଣିତ କ୍ଷେତ୍ରରେ ପଛୁଆ ହେବାର ମୁଖ୍ୟ କାରଣ ଯେ ଟ୍ରାଇପସ୍ ବ୍ୟବସ୍ଥା ହାର୍ଡି ସେ ବିଷୟରେ ନିଶ୍ଚିତ ଥିଲେ। ଗଣିତରେ ଡିଗ୍ରୀ ପାଇବା ପାଇଁ କିଏ କେତେ ଉପଯୁକ୍ତ ତାହା ଜାଣିବା ପାଇଁ ଟ୍ରାଇପସ୍ ପରୀକ୍ଷା ଆରମ୍ଭ କରାଯାଇଥିଲା। କିନ୍ତୁ ସମୟ ସହିତ ତାହାର ଗୁରୁତ୍ୱ ଅତି ମାତ୍ରାରେ ବଢ଼ି ଯାଇଥିଲା ଏବଂ ଇଂଲଣ୍ଡର ଗଣିତ ଶିକ୍ଷାକୁ ତାହା ଦୁର୍ବଳ କରିଚାଲିଥିଲା।

1907 ମସିହା ବେଳକୁ ଟ୍ରାଇପସ୍ ପରୀକ୍ଷା ବ୍ୟବସ୍ଥାରେ ସଂସ୍କାର ଆଣିବା ପାଇଁ ଗଢ଼ାଯାଇଥିବା ଦଳର ସେ ସଚିବ ହୋଇଥିଲେ। ସେ ଚାହୁଁଥିଲେ ଯେ ସେହି ପରୀକ୍ଷା ପୂରା ଉଠାଇ ଦିଆଯାଉ। କିନ୍ତୁ ଏଭଳି ବୈପ୍ଳବିକ ପରିବର୍ତ୍ତନ ଯେ ସେତେବେଳେ ସମ୍ଭବ ହେବନାହିଁ, ତାହା ସେ ବୁଝିପାରିଲେ। ତେଣୁ ତା'ର ମୂଳୋତ୍ପାଟନ ଦିଗରେ ପ୍ରଥମ ପାଦ ଭାବରେ ସେ ସଂସ୍କାର କାର୍ଯ୍ୟକ୍ରମରେ ଭାଗନେବାକୁ ରାଜି ହୋଇଥିଲେ। ମାଥେମାଟିକାଲ ଆସୋସିଏସନ୍‌ର ଗୋଟିଏ ସଭାରେ ସେ କହିଥିଲେ, "ମୁଁ ବିଶ୍ୱାସ କରେ ଯେ ନୀତିଗତ ଭାବରେ ଏହି ବ୍ୟବସ୍ଥା ଅତି ମାରାତ୍ମକ ଏବଂ ଅବସ୍ଥା ଏତେ ଗୁରୁତର ଯେ ସଂସ୍କାର କାମ କରିବନାହିଁ। ମୁଁ ଟ୍ରାଇପସ୍‌ରେ ସଂସ୍କାର ଆଣିବାକୁ ଚାହେଁନାହିଁ, ବରଂ ତାକୁ ଧ୍ୱଂସ କରିବାକୁ ଚାହେଁ।"

ହାର୍ଡି ସବୁ ପରୀକ୍ଷାର ବିରୋଧ କରୁ ନ ଥିଲେ। କିନ୍ତୁ ପରୀକ୍ଷାର ଭୂମିକା ଅତି ସୀମିତ ରଖିବାକୁ ସେ ଚାହୁଁଥିଲେ। ସେ କହୁଥିଲେ ଯେ ପରୀକ୍ଷା ଯଦି ଅତି ଗୁରୁତ୍ୱପୂର୍ଣ୍ଣ ନ ହୁଏ ତେବେ ତାହା ବିଶେଷ କ୍ଷତି କରିପାରିବନାହିଁ। କିନ୍ତୁ ଟ୍ରାଇପସ୍‌ର ଗୁରୁତ୍ୱ ଖୁବ୍ ବେଶି ଥିଲା। ପ୍ରାକ୍‌ସ୍ନାତକ ଛାତ୍ର ଓ ତାଙ୍କର ଟିଉଟରମାନେ ସେଥିପାଇଁ ଅତ୍ୟଧିକ ପରିଶ୍ରମ କରୁଥିଲେ। ଏହା ହିଁ ତାଙ୍କ ମତରେ ସବୁଠାରୁ ବଡ଼ ସମସ୍ୟା ଥିଲା - ଟ୍ରାଇପସ୍ ଉଭୟ ପଢ଼ିବା ଓ ପଢ଼ାଇବାକୁ ବିକୃତ କରିଦେଉଥିଲା, ଫଳରେ ଇଂରେଜ ଗଣିତ କ୍ଷତିରେ ପଡୁଥିଲା।

ଅନ୍ୟ ଯୁବ ଅଧ୍ୟାପକମାନେ ହାର୍ଡିଙ୍କୁ ସମର୍ଥନ କରୁଥିଲେ, ତେଣୁ ଅନିଚ୍ଛା ସତ୍ତ୍ୱେ ବିଶ୍ୱବିଦ୍ୟାଳୟ ସିନେଟ୍ ଅନେକ ପରିବର୍ତ୍ତନ ଆଣିବାକୁ ବାଧ୍ୟ ହେଲା। ପ୍ରଥମ ପରିବର୍ତ୍ତନ ଥିଲା ଟ୍ରାଇପସ୍ ଫଳାଫଳରେ ମେଧାକ୍ରମର ଉଚ୍ଛେଦ। 1910 ମସିହାରୁ ପରୀକ୍ଷାର୍ଥୀମାନେ କେବଳ ତିନିଟି ଶ୍ରେଣୀରେ ରଖାଗଲେ - ରାଙ୍ଗ୍‌ଲର୍, ବରିଷ୍ଠ ଅପ୍ଟିମ୍ ଓ କନିଷ୍ଠ ଅପ୍ଟିମ୍। ସିନିଅର୍ ରାଙ୍ଗ୍‌ଲର୍ ଉପାଧି ଉଠାଇ ଦିଆଗଲା, ଫଳରେ ସେଥିପାଇଁ ଚାଲୁଥିବା ତୀବ୍ର ପ୍ରତିଯୋଗିତା ଓ ଅନୁଭୂତ ହେଉଥିବା ଅତ୍ୟଧିକ ଚାପ ମଧ୍ୟ ଉଭେଇଗଲା। କୋଚ୍‌ମାନଙ୍କର ଗୁରୁତ୍ୱ ମଧ୍ୟ କମିଗଲା। ମୋଟ ଉପରେ ଦେଖିଲେ ଟ୍ରାଇପସ୍ ବ୍ୟବସ୍ଥାର ସବୁଠାରୁ ଖରାପ ଅଂଶତକ କାଟ ଖାଇଗଲା।

ହାର୍ଡିଙ୍କର ଟ୍ରାଇପସ୍ ବିରୋଧୀ ଅଭିଯାନ କିନ୍ତୁ ଅଧା ରହିଗଲା। ପରିବର୍ତ୍ତିତ ଅବସ୍ଥାରେ ଟ୍ରାଇପସ୍ ଏବେ ବି ରହିଛି, କାରଣ ଅନେକ ଲୋକ ତା'ର ଦୋଷ ଦୁର୍ବଳତା ଦେଖାଉଥିଲେ ମଧ୍ୟ ଆଉ କେହି ହାର୍ଡିଙ୍କ ଭଳି ଏତେ ତୀବ୍ର ପ୍ରତିକ୍ରିୟା ଦେଖାଉ ନ ଥିଲେ। ଜଣେ ମତ ଦେଇଥିଲେ, "ଇଂରେଜମାନଙ୍କୁ ବୈପ୍ଳବିକ ପରିବର୍ତ୍ତନର ପ୍ରସ୍ତାବ ଦେବାରେ କିଛି ଲାଭ ନାହିଁ। ଦୋଷ ଦୁର୍ବଳତା ସତ୍ତ୍ୱେ ପ୍ରତିଷ୍ଠିତ ଅନୁଷ୍ଠାନ ସବୁର ଅନେକ ଭଲ ଗୁଣ ରହିଛି ଯାହାର ଭିତ୍ତି ଅତି ଗଭୀର। ଇଂରେଜମାନଙ୍କର କାମର ଧାରା ହେଉଛି ତ୍ରୁଟିଗୁଡ଼ିକୁ ଅଳ୍ପ ଅଳ୍ପ କରି ସୁଧାରିବା। ଏହା ଫଳରେ ତାହା ଆମର ଆଶାର ନିକଟତର ହୋଇଚାଲିବ।" ହାର୍ଡିଙ୍କର ସାଥୀ ଲିଟଲ୍‌ଉଡ୍ ଟ୍ରାଇପସ୍‌ର ସମର୍ଥକ ନ ଥିଲେ, କିନ୍ତୁ ତାହା ବିରୁଦ୍ଧରେ ସେ ଅତି ଉତ୍ତେଜିତ ମଧ୍ୟ ହେଉ ନ ଥିଲେ। ସେ କହିଥିଲେ, "ସେଥିପାଇଁ ଅତ୍ୟଧିକ କଷ୍ଟ ଓ ହତାଶା ଭିତରେ ଯାଇଥିଲି ବୋଲି ମୁଁ କହିବିନାହିଁ। ଯାହା ଆଗକୁ ଆସୁଥିଲା ମୁଁ ତା'ର ମୁକାବିଲା କରୁଥିଲି। ଏହି ଖେଳ ମୋ ପାଇଁ ସହଜ ଥିଲା, ବରଂ ସେଥିରେ ସଫଳତା ପାଇବାଟା ମୋ ପାଇଁ ଖୁସିର କଥା ଥିଲା।"

ଏହି ପୃଷ୍ଠଭୂମିରେ ଦେଖିଲେ ହାର୍ଡିଙ୍କ ପ୍ରତିକ୍ରିୟା ଅଯୌକ୍ତିକ ମନେହୁଏ। ତାଙ୍କର ତିକ୍ତ ଅନୁଭୂତି ଯୋଗୁଁ ସେ ଏଭଳି ବ୍ୟବହାର କରୁଥିବା ଭଳି ଲାଗୁଥିଲା। 1896 ମସିହାରେ ଦୁଇବର୍ଷର ଟ୍ରାଇପସ୍ ଅତ୍ୟାଚାରର ସମ୍ଭାବନା ତାଙ୍କୁ ଗଣିତଠାରୁ ଦୂରେଇ ନେବାକୁ ବସିଥିଲା। ତଥାପି ସେ ଆତ୍ମସମର୍ପଣ କରି, କୋଚ୍‌ଙ୍କ ସାହାଯ୍ୟ ନେଇ, ଟ୍ରାଇପସ୍ ପଢ଼ାରେ ଲାଗିଲେ ଓ ଦୁଇବର୍ଷ ପାଇଁ ଅସଲ ଗଣିତକୁ ଏଡ଼ାଇ ଗଲେ। ଟ୍ରାଇପସ୍ ପରୀକ୍ଷାରେ ସେ ବିଫଳ ହୋଇଥିଲେ ବୋଲି ମନେକଲେ। କାରଣ ତାଙ୍କ ଭଳି ତୀବ୍ର ପ୍ରତିଦ୍ୱନ୍ଦ୍ୱୀ ମନୋଭାବର ମଣିଷ ପାଇଁ ଚତୁର୍ଥ ରାଙ୍ଗ୍‌ଲର୍ ହେବା ଗ୍ରହଣଯୋଗ୍ୟ ନ ଥିଲା। ତାଙ୍କ ମନରେ ଟ୍ରାଇପସ୍ ତାଙ୍କୁ ହରାଇ ଦେଇଥିଲା।

ହାର୍ଡିଙ୍କର ଉଗ୍ରତା ସୂଚାଏ ଯେ ତାଙ୍କ ବ୍ୟକ୍ତିତ୍ୱ ଅସ୍ୱାଭାବିକ ଭାବରେ ଦ୍ୱିଖଣ୍ଡିତ ଥିଲା। ସେ

ଜଣେ ଖେଳାଳି ଭଳି ମନେ ହେଉଥିଲେ ଯିଏ ସବୁବେଳେ ଆଉ ଗୋଟିଏ କଡ଼ା ପ୍ରତିଯୋଗିତା ପାଇଁ ପ୍ରସ୍ତୁତ ହେଉଛି; ଯିଏ ଟିକିଏ କଥାରେ ଲଢ଼େଇ ପାଇଁ ପ୍ରସ୍ତୁତ। ପ୍ରତିଦ୍ୱନ୍ଦ୍ୱିତାମୂଳକ ଖେଳ ହାର୍ଡିଙ୍କର ପସନ୍ଦ ଥିଲା, ନୂଆ କରି ଭେଟୁଥିବା ଲୋକଙ୍କର ଜ୍ଞାନ ପରଖିବା ପାଇଁ ସେ ଭଲ ପାଉଥିଲେ, କେବଳ ଉଚ୍ଚତମ ସ୍ତରର ଗଣିତ କାମ ସେ ଚାହୁଁଥିଲେ। ତଥାପି ସେ ଟ୍ରାଇପସ୍ ବ୍ୟବସ୍ଥାର ଘୋର ବିରୋଧୀ ଥିଲେ, ଯେଉଁ ଟ୍ରାଇପସ୍‌କୁ ଅନ୍ୟମାନେ ଉଚ୍ଚତମ ପରୀକ୍ଷା ଭାବରେ ଦେଖୁଥିଲେ।

ହାର୍ଡିଙ୍କ ଚରିତ୍ରରେ ଦୁଇଟି ଦିଗ ରହିଥିଲା - ଗୋଟିଏ ଥିଲା କଠୋର ଦିଗ, ଅନ୍ୟଟି ସହନଶୀଳ ଉଦାର ମାନସିକତା; ଏକ କଠୋର ଭୀତିପ୍ରଦ ବାହ୍ୟରୂପ ଭିତରେ କୋମଳ ଓ ଭଙ୍ଗୁର ଅଭ୍ୟନ୍ତର। ଦୁର୍ବଳ ଛାତ୍ରମାନଙ୍କ ପ୍ରତି ତାଙ୍କର କୌଣସି ଆଗ୍ରହ ନ ଥାଏ ବୋଲି ସେ କହନ୍ତି, କିନ୍ତୁ ତାହା ଆସ୍ଫାଳନ ବୋଲି ମନେହୁଏ - ସେ କେବେ କାହାକୁ ଫେଲ କରନ୍ତିନାହିଁ। ତାଙ୍କର ଜଣେ ଗବେଷିକା ଛାତ୍ରୀ ମ୍ୟାରି କାର୍ଟରାଇଟ୍ କହନ୍ତି, "ସେ ସେଭଳି ଭାବୁଥିବା ଆଦୌ ସମ୍ଭବ ନୁହେଁ, କାରଣ ଦୁର୍ବଳ ଛାତ୍ରମାନଙ୍କ ପ୍ରତି ସେ ବେଶ୍ ଦୟାଶୀଳ ଥିଲେ।"

ସାମାଜିକ ଶିଷ୍ଟାଚାର ପ୍ରତି ତାଙ୍କର ଘୃଣା ଥିଲା, ଅନ୍ୟମାନଙ୍କଠାରୁ ଦୂରତା ରଖୁଥିଲେ ଏବଂ ଉଦ୍ଧତ ଭାବରେ ଭଗବାନଙ୍କ ଅସ୍ତିତ୍ୱ ଅସ୍ୱୀକାର କରୁଥିଲେ। କିନ୍ତୁ ସେ ବେଶ୍ ଦୟାଳୁ ଓ ଅତି ମାତ୍ରାରେ ସାହାଯ୍ୟ ପରାୟଣ ଥିଲେ। ମୃତ୍ୟୁ ସୂଚନା ଲେଖିବା ବେଳେ ସେ ଖୁବ୍ ଉଦାରତା ଦେଖାଉଥିଲେ - ସବୁ ଗଣିତଜ୍ଞ ଚାହୁଁଥିଲେ ଯେ ହାର୍ଡି ସେମାନଙ୍କ ବିଷୟରେ ସେଭଳି କଥା ଲେଖନ୍ତୁ।

ଏଭଳି ଦୁଇ ପ୍ରକାରର ଚାରିତ୍ରିକ ବିଶେଷତା - କଠୋର, ଅନୁରାଗବିହୀନ, ନିର୍ଲିପ୍ତ ଏବଂ ଉଦାର, ଦୟାଳୁ, ଦରଦୀ - ହାର୍ଡିଙ୍କଠାରେ ରହିଥିଲା। ଏହାର ଉତ୍ସ ବିଷୟରେ ଅନୁମାନ କରିବା କଷ୍ଟ ନ ଥିଲା। କାରଣ ଏହି ଦୁଇ ପ୍ରବାହ ତାଙ୍କ ବାପା ଓ ମା'ଙ୍କ ଚରିତ୍ରର ପ୍ରତିଫଳନ ଭଳି ମନେ ହେଉଥିଲା। ତେବେ ଏହି ଦ୍ୱିଧାରାର ମୂଳ ଯେଉଁଠି ବି ଥାଉ, ତାହା ହାର୍ଡିଙ୍କ ଜୀବନ ସାରା ଦେଖିବାକୁ ମିଳୁଥିଲା। ଏହା ପର ସାତ ବର୍ଷ ଧରି ରାମାନୁଜନ୍‌ଙ୍କ ସହିତ ତାଙ୍କ ସମ୍ପର୍କରେ ମଧ୍ୟ ଏହାର ଛାପ ରହିଥିଲା।

x x x

1913 ମସିହା ଶୀତ ଋତୁରେ ୟୁରୋପରେ ଯୁଦ୍ଧର ବାତାବରଣ ଖେଳିଗଲା। ବିଭିନ୍ନ ପରିବର୍ତ୍ତନ ଭିତରେ ପୃଥିବୀ ଅସ୍ଥିର ହୋଇ ଉଠୁଥିଲା। କଳା କ୍ଷେତ୍ରରେ ପିକାସୋ ଓ ରୁଷୀୟ ବ୍ୟାଲେ ଆଦିର ଆବିର୍ଭାବ ଘଟିଥିଲା। 1910 ମସିହାରେ ସମ୍ରାଟ ଏଡ୍‌ୱାର୍ଡଙ୍କର ଆକସ୍ମିକ ମୃତ୍ୟୁ ପରେ ଇଂଲଣ୍ଡରେ ପଞ୍ଚମ ଜର୍ଜଙ୍କ ରାଜତ୍ୱ ଆରମ୍ଭ ହୋଇଥାଏ। 1911 ମସିହାରେ ସଂସଦ ଆଇନ୍ ବଳରେ ହାଉସ୍ ଅଫ୍ କମନ୍ସ୍ ଉପରେ ହାଉସ୍ ଅଫ୍ ଲର୍ଡସ୍‌ର ଭିଟୋ କ୍ଷମତା କାଟ ଖାଇଯାଇଥାଏ। ଇଂଲଣ୍ଡ ସାରା ଶ୍ରମିକମାନେ ଓ ସାର୍ବଜନୀନ ମତଦାନ ଅଧିକାରର ସମର୍ଥକମାନେ ଧର୍ମଘଟ ଚଳାଇଥା'ନ୍ତି। ଆୟାର୍ଲାଣ୍ଡ କୁହୁଳୁଥାଏ।

କେମ୍ବ୍ରିଜରେ କିନ୍ତୁ ସବୁକିଛି ସାଧାରଣ ସମୟ ଭଳି ଚାଲିଥାଏ। ହାର୍ଡିଙ୍କ ବୟସ ଛତିଶ ଛୁଉଁଥାଏ, କିନ୍ତୁ ତାଙ୍କ ମୁହଁରେ ଏହାର ଟିକିଏ ବି ଛାପ ପଡ଼ି ନ ଥାଏ। ନେଭିଲ୍ କୋର୍ଟରେ ସେ

ବର୍ଟ୍ରାଣ୍ଡ ରସେଲ୍‌ଙ୍କୁ ଭେଟି ଗଣିତ ଓ ଦର୍ଶନ ଚର୍ଚ୍ଚା ଚଳାଇଥା'ନ୍ତି। ସେଠାରେ ଥରେ ନର୍ବର୍ଟ ୱାଇନର୍ ଓ ତାଙ୍କ ପୁଅ ହାର୍ଡିଙ୍କୁ ଭେଟିଲେ ଓ ଭାବିଲେ ଯେ ସେ ଜଣେ ପ୍ରାକ୍‌ସ୍ନାତକ ଛାତ୍ର। 1912 ମସିହାରେ ହାର୍ଡି ଆଉ ନ'ଟି ନିବନ୍ଧ ପ୍ରକାଶ କଲେ। ଲିଟଲ୍‌ଉଡ୍‌ଙ୍କ ସହଯୋଗିତାରେ ତାଙ୍କର ପ୍ରଥମ ନିବନ୍ଧ ଏହା ଭିତରୁ ଗୋଟିଏ ଥିଲା। ଫୁରିଅର୍ ଶ୍ରେଣୀ ବିଷୟରେ ତାଙ୍କର ପ୍ରଥମ ଗୁରୁତ୍ୱପୂର୍ଣ୍ଣ ନିବନ୍ଧ 1913 ମସିହାରେ ବାହାରିଥିଲା ଏବଂ ତାଙ୍କର ଲୋକପ୍ରିୟ ପାଠ୍ୟ ପୁସ୍ତକର ପରିମାର୍ଜିତ ସଂସ୍କରଣ ତା ପର ବର୍ଷ ବାହାରିଲା। ହାର୍ଡିଙ୍କ ଆପୋଷ୍ଟୋଲ୍‌ସ୍ ସାଥୀ ଲିଓନାର୍ଡ ଉଲ୍‌ଫ୍ ଅଳ୍ପଦିନ ତଳେ ଶ୍ରୀଲଙ୍କାରୁ ଫେରିଥିଲେ ଏବଂ କେମ୍ବ୍ରିଜ ଠିକ୍ ଆଗ ଭଳି ଥିବାର ଦେଖିଲେ। ରେଳଗାଡ଼ିରେ ଲଣ୍ଡନକୁ ଫେରିବା ବେଳେ ସେ ଲେଖିଥିଲେ, "କେମ୍ବ୍ରିଜର ଉଷ୍ମତା ମୋର ଆତ୍ମବିଶ୍ୱାସ ଫେରାଇ ଆଣିଲା। ଲିଟନ୍ ଓ ବର୍ଟି ରସେଲ୍, ଗୋଲ୍ଡି, ସୋସାଇଟି, ଟ୍ରିନିଟିର ଗ୍ରେଟ୍ କୋର୍ଟ, ହାର୍ଡି - ମୋ ଯୁବାବସ୍ଥାର ସବୁ ଚିରନ୍ତନ ସତ୍ୟ ଓ ମୂଲ୍ୟବୋଧ - କେମ୍ବ୍ରିଜରେ ସବୁ କିଛି ଠିକ୍ ଆଗଭଳି ରହିଥିଲା; ସାତ ବର୍ଷ ତଳେ ମୁଁ ଯେପରି ଛାଡ଼ିକରି ଯାଇଥିଲି।"

ହାର୍ଡିଙ୍କର ନିତିଦିନିଆ ଜୀବନ ବେଶ୍ ଶୃଙ୍ଖଳାବଦ୍ଧ ହୋଇଯାଇଥିଲା। ସକାଳ ଜଳଖିଆ ଖାଇଲାବେଳେ ସେ ଲଣ୍ଡନ ଟାଇମ୍‌ସ୍ ପଢୁଥିଲେ ଓ କ୍ରିକେଟ ଖବର ପ୍ରତି ବିଶେଷ ଧ୍ୟାନ ଦେଉଥିଲେ। ପୂର୍ବାହ୍ନରେ ସେ ପ୍ରାୟ ଚାରି ଘଣ୍ଟା କାମ କରୁଥିଲେ, ବିଶ୍ୱବିଦ୍ୟାଳୟ ଭୋଜନ କକ୍ଷରେ ହାଲୁକା ମଧ୍ୟାହ୍ନ ଭୋଜନ ଖାଉଥିଲେ, ଅପରାହ୍ନରେ ବେଳେ ବେଳେ ସେ ଅଳ୍ପ ସମୟ ପାଇଁ ଟେନିସ୍ ଖେଳୁଥିଲେ। ତାଙ୍କର ବୃତ୍ତିଗତ ଜୀବନ ନିର୍ଦ୍ଦିଷ୍ଟ ରୂପ ନେଇ ସାରିଥିଲା, ଜୀବନ ଆରାମଦାୟକ ଏବଂ ଭବିଷ୍ୟତ ସୁରକ୍ଷିତ ଥିଲା।

ଏହି ଅବସ୍ଥାରେ ଭାରତରୁ ଚିଠି ଖଣ୍ଡେ ଆସି ପହଞ୍ଚିଲା।

# 5

# "ପରିଚୟ ଦେବା ପାଇଁ ମୁଁ ଅନୁମତି ମାଗୁଛି ..."

(1913–1914)

## 1. ଚିଠି

ଭାରତୀୟ ଡାକ ଟିକଟ ଲାଗିଥିବା ବଡ଼ ଲଫାପାରେ ଚିଠିଟି ଆସିଥିଲା। ମାନ୍ଦ୍ରାଜରୁ ଆସିଥିବା ସେହି ଚିଠିର ତାରିଖ ଥିଲା 16 ଜାନୁଆରି 1913। ତା'ର ଆରମ୍ଭ ଥିଲା -

> ପ୍ରିୟ ମହାଶୟ,
> ଆପଣଙ୍କ ଅନୁମତି ସହ ମୁଁ ମୋର ପରିଚୟ ଦେବାକୁ ଚାହୁଁଛି। ମାନ୍ଦ୍ରାଜର ପୋର୍ଟ ଟ୍ରଷ୍ଟ ଅଫିସର ହିସାବ ରକ୍ଷା ବିଭାଗରେ ମୁଁ ବର୍ଷକୁ କୋଡ଼ିଏ ପାଉଣ୍ଡ ଦରମାର ଜଣେ କିରାଣି ଅଛି। ମୋର ବୟସ ଏବେ ତେଇଶି ବର୍ଷ। ମୁଁ ବିଶ୍ୱବିଦ୍ୟାଳୟ ଶିକ୍ଷା ପାଇନାହିଁ କିନ୍ତୁ ସାଧାରଣ ସ୍କୁଲ ଶିକ୍ଷା ପୂରା କରିଛି। ସ୍କୁଲ ଛାଡ଼ିଲା ପରେ ମୁଁ ମୋର ଅବସର ସମୟରେ ଗଣିତ ବିଷୟରେ କାମ କରୁଛି। ମୁଁ ବିଶ୍ୱବିଦ୍ୟାଳୟର ପାରମ୍ପରିକ ନିୟମିତ ପାଠ୍ୟକ୍ରମ ଭିତର ଦେଇ ଯାଇନାହିଁ, ବରଂ ନିଜ ପାଇଁ ଏକ ନୂଆ ବାଟ ବାହାର କରୁଛି। ଅପସାରୀ ଶ୍ରେଣୀ ବିଷୟରେ ମୁଁ ଏକ ବିଶେଷ ଅନୁଧ୍ୟାନ କରିଛି ଏବଂ ସେଥିରୁ ପାଇଥିବା ଫଳାଫଳକୁ ସ୍ଥାନୀୟ ଗଣିତଜ୍ଞମାନେ 'ଚମକପ୍ରଦ' ବୋଲି କହୁଛନ୍ତି।...

ପାଞ୍ଚ ହଜାର ମାଇଲ ଦୂରରେ ଥିବା କେଉଁ ପଛୁଆ ଅଫିସର ଜଣେ ତୁଚ୍ଛ କିରାଣି ଦୟା ଓ ବିସ୍ମୟ ସୃଷ୍ଟି କରିବା ପାଇଁ ଚେଷ୍ଟା କରୁଥିବା ଭଳି ମନେ ହେଉଥିଲା। ଚିଠିରୁ ଲେଖକର ଦାମ୍ଭିକତାର ସୂଚନା ମିଳୁଥିଲା: *ମୁଁ ପାରମ୍ପରିକ ନିୟମିତ ପାଠ୍ୟକ୍ରମ ଭିତର ଦେଇ ଯାଇନାହିଁ*। ଚିଠିର ଦ୍ୱିତୀୟ ଅନୁଚ୍ଛେଦରେ ସେ ଦାବି କରୁଥିଲେ ଯେ ଗାମା ଫଳନର ଋଣାତ୍ମକ ମୂଲ୍ୟର ଅର୍ଥ ସେ ବୁଝାଇ ପାରିବେ। ତୃତୀୟ ଅନୁଚ୍ଛେଦରେ ସେ ତିନିବର୍ଷ ତଳେ ହାର୍ଡି ପ୍ରକାଶ କରିଥିବା ଏକ ଦାବି ଉପରେ ପ୍ରଶ୍ନ ଉଠାଇଥିଲେ।

ହାର୍ଡିଙ୍କର ସେହି ଲେଖାର ନାଁ ଥିଲା *ଅର୍ଡର୍ସ ଅଫ୍ ଇନ୍‌ଫିନିଟି: ଦି 'ଇନ୍‌ଫାଇନାଇଟାର୍କାଲ୍‌କୁଲ୍' ଅଫ୍ ପଲ୍ ଡୁ ବଏସ୍ ରେମଣ୍ଡ*। ବିଭିନ୍ନ ଗାଣିତିକ ଫଳନ କିପରି ଅସୀମ ଦିଗରେ ଧୀରେ ବା ଜୋରରେ ବଢ଼ିଚାଲିବେ ତାହା ହାର୍ଡି ସେଥିରେ ଦେଖାଇଥିଲେ। ଉଦାହରଣ ସ୍ୱରୂପ, ଫଳନ $f(x) = x^3$ ଫଳନ $g(x) = 3x$ ତୁଳନାରେ ଅଧିକ ବେଗରେ ଅସୀମର ନିକଟତର ହୁଏ। $x$ ର ମୂଲ୍ୟ ବଢ଼ିବା ସହିତ ଫଳନ ଦୁଇଟିର ମୂଲ୍ୟ ସୀମାହୀନ ଭାବରେ ବଢ଼ିଚାଲେ। ସାଧାରଣ ଭାବରେ

କହିଲେ ସେ ଦୁଇ ମୂଲ୍ୟ ଅସୀମ ହୋଇଯାଏ, କିନ୍ତୁ ପ୍ରଥମଟି ପାଇଁ ତାହା ଶୀଘ୍ର ହୁଏ। $x$ ର ମୂଲ୍ୟ 100 ହେଲା ବେଳକୁ ପ୍ରଥମ ଫଳନର ମୂଲ୍ୟ 1,000,000 ହୁଏ କିନ୍ତୁ ଦ୍ୱିତୀୟଟି ମାତ୍ର 300 ରେ ପହଞ୍ଚି ଥାଏ। ଗୋଟିଏ ଜାଗାରେ ହାର୍ଡି ମୌଳିକ ସଂଖ୍ୟା ସମ୍ପର୍କିତ ଏକ ଜଣାଶୁଣା ଗାଣିତିକ ରାଶିମାଳା ବିଷୟରେ ଲେଖିଥିଲେ। ତାହାର ପ୍ରଥମ ପଦଟି ଲଗାରିଦମିକ ଆଧାରିତ ଥିଲା ଏବଂ ଦ୍ୱିତୀୟଟି ଏକ ପ୍ରମାଦ ପଦ $\rho(x)$ ଥିଲା ଯାହା ଦେଖାଉଥିଲା ପ୍ରଥମ ପଦରେ ପ୍ରମାଦର ପରିମାଣ କେତେ। ହାର୍ଡି ଲେଖିଥିଲେ ଯେ ସେହି ପ୍ରମାଦ ପଦର ସଠିକ ବର୍ଗ ନିର୍ଦ୍ଧାରିତ ହୋଇନାହିଁ।

ରାମାନୁଜନ୍ କିନ୍ତୁ ଲେଖିଥିଲେ ଯେ ସେହି ବର୍ଗ ନିର୍ଦ୍ଧାରିତ ହୋଇଛି - ସେ ହିଁ ତାହା କରିଛନ୍ତି। "ମୌଳିକ ସଂଖ୍ୟା ପାଇଁ ମୁଁ ଏକ ରାଶିମାଳା ବାହାର କରିଛି ଯାହା ପ୍ରାୟ ଠିକ୍ ଉତ୍ତର ଦେଉଛି ଏବଂ ଯେଉଁଥିରେ ପ୍ରମାଦ ପ୍ରାୟ ଶୂନ ହେଉଛି।" ଲେଜାନ୍ଦ୍ରେ ପ୍ରଥମେ ଦେଇଥିବା ଓ ଗସ୍ ପରିମାର୍ଜିତ କରିଥିବା ମୌଳିକ ସଂଖ୍ୟା ପ୍ରମେୟ ଅସମ୍ପୂର୍ଣ୍ଣ ଓ ଅଭାବଯୁକ୍ତ ଏବଂ ସିଏ, ଜଣେ ଅଜଣା ଭାରତୀୟ କିରାଣି, ଏବେ ତାଠାରୁ କିଛି ବେଶି ଭଲ ଧାରା ବାହାର କରିଛନ୍ତି।

ହାର୍ଡିଙ୍କ ଧ୍ୟାନ ଆକର୍ଷଣ କରିବା ପାଇଁ ଏହା ଥିଲା ରାମାନୁଜନ୍‌ଙ୍କର ଥୋପ। ଚିଠିର ଶେଷରେ ସେ ଲେଖିଥିଲେ:

> ଏହା ସହିତ ପଠାଉଥିବା ଲେଖାଗୁଡ଼ିକୁ ପଢ଼ିବା ପାଇଁ ମୋର ଅନୁରୋଧ। ମୁଁ ଗରିବ, କିନ୍ତୁ ଯଦି ଆପଣ ଭାବନ୍ତି ଯେ ମୋର ପ୍ରମେୟରେ କିଛି ମୂଲ୍ୟ ଅଛି ତେବେ ମୁଁ ଚାହିଁବି ଯେ ସେଗୁଡ଼ିକ ପ୍ରକାଶିତ ହେଉ। ମୋର ଗବେଷଣାର ସବୁ ପାଦ ଓ ମୁଁ ପାଇଥିବା ରାଶିମାଳାଗୁଡ଼ିକ ପଠାଇନାହିଁ, କିନ୍ତୁ କେଉଁ ଧାରାରେ ମୁଁ ଆଗେଇଛି ତାହା ମୁଁ ସୂଚିତ କରିଛି। ମୁଁ ଅନଭିଜ୍ଞ, ତେଣୁ ଆପଣ ଯାହା ବି ଉପଦେଶ ଦେବେ ତାକୁ ମୁଁ ମୂଲ୍ୟବାନ ମନେ କରିବି।
>
> ଆପଣଙ୍କୁ କଷ୍ଟ ଦେଇଥିବାରୁ କ୍ଷମା କରିବା ପାଇଁ ଅନୁରୋଧ।
>
> ଇତି
>
> ପ୍ରିୟ ମହାଶୟ,<br>ଆପଣଙ୍କର ବିଶ୍ୱସ୍ତ,<br>ଏସ୍. ରାମାନୁଜନ୍

ଏହା ଥିଲା ଆରମ୍ଭ ମାତ୍ର। ରାମାନୁଜନ୍ ପଠାଇଥିବା ଲେଖାଗୁଡ଼ିକ ନ' ପୃଷ୍ଠାର ଥିଲା। ବର୍ଣ୍ଣୁଲି ସଂଖ୍ୟା ବିଷୟରେ ତାଙ୍କର ନିବନ୍ଧର ନକଲ ମଧ୍ୟ ସେ ବୋଧହୁଏ ପଠାଇଥିଲେ। ଆରମ୍ଭରୁ ହିଁ ତାଙ୍କ ଲେଖା କୌଣସି ଉଦ୍ଭାବକର ଦାମ୍ଭିକତା ଭରା ପେଟେଣ୍ଟ ଦାବି ଭଳି ମନେ ହେଉଥିଲା। ଯେପରି:

> ମୁଁ ଗୋଟିଏ ଫଳନ ବାହାର କରିଛି ଯାହା କୌଣସି ନିର୍ଦ୍ଦିଷ୍ଟ ସଂଖ୍ୟା $x$ ର ତଳକୁ ଥିବା ମୌଳିକ ସଂଖ୍ୟାମାନଙ୍କର ସଠିକ ସଂଖ୍ୟା ଜଣାଇପାରିବ। 'ସଠିକ'ର ଅର୍ଥ ଏହା ଯେ $x$ ଅସୀମ ହେଲେ ମଧ୍ୟ ଫଳନରୁ ମିଳୁଥିବା ମୌଳିକମାନଙ୍କର ସଂଖ୍ୟା ଏବଂ ପ୍ରକୃତରେ ଥିବା ମୌଳିକମାନଙ୍କର ସଂଖ୍ୟା ଭିତରେ ପ୍ରଭେଦ ଶୂନ ବା ଅତି ଛୋଟ ସଂଖ୍ୟା ହୁଏ। ଫଳନଟି ଅସୀମ ଶ୍ରେଣୀ ରୂପରେ ମୁଁ ପାଇଛି ଏବଂ ତାକୁ ଦୁଇ ପ୍ରକାରରେ ପ୍ରକାଶ କରିଛି।
>
> ...

An+B ରୂପରେ ପ୍ରକାଶ କରିହେଉଥିବା ଏବଂ କୌଣସି ନିର୍ଦ୍ଦିଷ୍ଟ ସଂଖ୍ୟାଠାରୁ ଛୋଟ ସବୁ ମୌଳିକ ସଂଖ୍ୟା ପାଇବା ପାଇଁ ମଧ୍ୟ ମୁଁ କିଛି ରାଶିମାଳା ବାହାର କରିଛି। ନିର୍ଦ୍ଦିଷ୍ଟ ସଂଖ୍ୟାଟି ଯେତେ ବଡ଼ ହେଲେ ବି ଏହି ଧାରା କାମ କରେ।

...

ମୁଁ କିଛି ରାଶିମାଳା ବାହାର କରିଛି ଯାହା ସାହାଯ୍ୟରେ ଅନିୟମିତ ଭାବରେ ବଢୁଥିବା ଫଳନ ଏବଂ ବଢୁ ନ ଥିବା ଅନିୟମିତ ଫଳନ (ଉଦାହରଣ ସ୍ୱରୂପ, ପ୍ରାକୃତିକ ସଂଖ୍ୟାମାନଙ୍କର ଭାଜକଗୁଡ଼ିକ) ମିଳିପାରିବ। କେବଳ ସେସବୁର କ୍ରମ ନୁହେଁ, ବରଂ ସଠିକ ରୂପ ମିଳିବ। ମୋର ପ୍ରମେୟଗୁଡ଼ିକର କିଛି ଉଦାହରଣ ମୁଁ ତଳେ ଦେଉଛି ...

ଏହା ପରେ ଚିଠିରୁ ସାଧାରଣ ଇଂରାଜୀ ଭାଷା ପ୍ରାୟ ଉଭେଇ ଯାଇଥିଲା ଏବଂ ବୀଜଗଣିତ, ତ୍ରିକୋଣମିତି ଓ କାଲ୍‌କୁଲସ୍‌ର ଭାଷାରେ ତାହା ଭରିଥିଲା। ସଂଖ୍ୟାତତ୍ତ୍ୱ, ନିର୍ଦ୍ଦିଷ୍ଟ ସମାକଳର ମୂଲ୍ୟାୟନ, ଅସୀମ ଶ୍ରେଣୀର ସମଷ୍ଟି ନିର୍ଣ୍ଣୟ, ଶ୍ରେଣୀ ଓ ସମାକଳର ରୂପାନ୍ତର, ଶ୍ରେଣୀ ଓ ସମାକଳର କୌତୂହଳପୂର୍ଣ୍ଣ ଆସନ୍ନ ରାଶି ନିର୍ଣ୍ଣୟ ଆଦି ବିଷୟରେ ପ୍ରାୟ ପଚାଶଟି ପ୍ରମେୟ ସେଥିରେ ରହିଥିଲା।

ପୂରା ଚିଠିଟି ବଡ଼ ଓ ଗୋଲ ହସ୍ତାକ୍ଷରରେ ପରିଷ୍କାର ଭାବରେ ଲେଖା ଯାଇଥିଲା। କେବଳ t ର ଉପର ଗାରଟି ସିଧା ଗାରକୁ କାଟୁ ନ ଥିଲା। ରାମାନୁଜନ୍‌ଙ୍କ ହସ୍ତାକ୍ଷର ସବୁବେଳେ ପରିଷ୍କାର ଥିଲା; ଏଠାରେ ସେ ଆହୁରି ପରିଷ୍କାର କରି ଲେଖିଥିଲେ। ହାର୍ଡି ଯେ ତାଙ୍କ ଚିଠିକୁ ସନ୍ଦେହୀ ଦୃଷ୍ଟିରେ ଦେଖିବେ ତାହା ସେ ବୁଝୁଥିଲେ ଏବଂ ଗାରେଇଲା ଭଳି ଲେଖି ସେହି ସନ୍ଦେହକୁ ସେ ବଢ଼ାଇବାକୁ ଚାହୁଁ ନ ଥିଲେ। ଏହା ଏକ ଉଚିତ ପଦକ୍ଷେପ ଥିଲା, କାରଣ ସନ୍ଦେହ ବେଶ୍ ଗଭୀର ଥିଲା।

ହାର୍ଡିଙ୍କ ଆଖିରେ ରାମାନୁଜନ୍‌ଙ୍କ ପ୍ରମେୟ ଭରା ପୃଷ୍ଠାଗୁଡ଼ିକ ଏକ ଅଜଣା ପ୍ରକାରର ଜଙ୍ଗଲ ଭଳି ମନେହେଲା। ସେ ଜଙ୍ଗଲର ଗଛଗୁଡ଼ିକ ଚିହ୍ନା ଚିହ୍ନା ଲାଗୁଥିଲେ, କିନ୍ତୁ ଏତେ ବିଚିତ୍ର ଥିଲେ ଯେ ଆଉ କେଉଁ ଦୁନିଆରୁ ଆସିଥିବା ଭଳି ମନେ ହେଉଥିଲେ। ରାମାନୁଜନ୍‌ଙ୍କ ପ୍ରମେୟ ସବୁର ବିଚିତ୍ରତା ପ୍ରଥମେ ହାର୍ଡିଙ୍କ ଧ୍ୟାନକୁ ଆସିଲା, ସେସବୁର ଚମତ୍କାର ଗୁଣ ନୁହେଁ। ସେ ଭାବିଲେ ଯେ ଏହି ଭାରତୀୟ ଜଣକ ହେଉଛନ୍ତି ଆଉ ଜଣେ ଆଡ଼ବାୟା। କାରଣ ସେ ଅନେକ ଉଦ୍ଭଟ ପାଣ୍ଡୁଲିପି ପାଉଥିଲେ ଯେଉଁଥିରେ ବିଭିନ୍ନ ଅଦ୍ଭୁତ ପ୍ରମାଣର ଦାବି ରହୁଥିଲା। କିଏ ବିଶାଳ ପିରାମିଡ୍‌ରେ ଥିବା ଜ୍ଞାନର ପ୍ରମାଣ ଦେଉଥିଲା ତ ଆଉ କିଏ ଜାୟନ୍ ମହାପୁରୁଷଙ୍କ ବାଣୀର ବ୍ୟାଖ୍ୟା କରୁଥିଲା। ପୁଣି ଆଉ କିଏ ହୁଏତ କହୁଥିଲା ଯେ ସେକ୍ସପିଅର୍‌ଙ୍କ ନାଟକରେ ବେକନ୍ ଯୋଡ଼ିଥିବା ଗୁପ୍ତଲେଖର ରହସ୍ୟ ସେ ବୁଝାଉଛି।

ତେଣୁ ଚିଠି ଓ କାଗଜଗୁଡ଼ିକୁ ଓଲଟାଇସାରି ସେ କଡ଼କୁ ରଖିଦେଲେ ଏବଂ ଖବର କାଗଜ ପଢ଼ିବାରେ ମନ ଦେଲେ। ସକାଳ ନ'ଟା ବେଳକୁ ସେ ତାଙ୍କର ନିତିଦିନିଆ କାମରେ ଲାଗିଲେ। ଅପରାହ୍ଣର ଖେଳ ପରେ ସେ ସାଧାରଣତଃ ବେଶ୍ ଫୁର୍ତ୍ତି ଅନୁଭବ କରନ୍ତି। ଆଜି କିନ୍ତୁ କିଛି ଠିକ୍ ନ ଥିଲା। ଭାରତରୁ ଆସିଥିବା ବିଚିତ୍ର ପ୍ରମେୟଭରା କାଗଜ ତାଙ୍କ ମନକୁ ଅସ୍ଥିର କରୁଥିଲା। ସେଭଳି ପ୍ରମେୟ ସେ କେବେ ଦେଖି ନ ଥିଲେ ବା କଳ୍ପନା ମଧ୍ୟ କରି ନ ଥିଲେ।

ସେଗୁଡ଼ିକ କାହିଁକି ଏଭଳି ବିଚିତ୍ର ଓ ଅଚିନ୍ତନୀୟ ମନେହେଉଥିଲା ତାହା ସେ ଭାବି ପାରୁ ନ ଥିଲେ। ସେଗୁଡ଼ିକ କ'ଣ ଅର୍ଥହୀନ ବା ମାମୁଲି ବା ସିଧାସଳଖ ଭୁଲ? କିମ୍ବା ସେହି ପ୍ରମେୟଗୁଡ଼ିକ କେଉଁ ବିଚକ୍ଷଣ ବ୍ୟକ୍ତିର ବିରଳ କୃତି? ସେଗୁଡ଼ିକ କ'ଣ କେଉଁ ଜଣାଶୁଣା ପ୍ରମେୟ ଯାହାକୁ ସେହି ଭାରତୀୟ କୌଣସି ବହିରୁ ପାଇଛି ଏବଂ ସେ ସବୁର ରୂପ ବଦଳାଇ ନୂଆ ମନେ କରାଉଛି? ତାଙ୍କର କେହି ସାଥୀ ଥଟ୍ଟା ଖେଳୁନାହିଁ ତ? ସେ ସମୟରେ ଏହା ଅତି ସାଧାରଣ କଥା ଥିଲା। ଭାରତରେ ଅନେକ ଇଂରେଜ ପ୍ରଶାସକ ଥିଲେ ଯେଉଁମାନେ ଟ୍ରାଇପସ୍‌ରେ ବେଶ୍ ଉଚ୍ଚ ସ୍ଥାନ ପାଇଥିଲେ ବା ଅନ୍ୟ ବାଟରେ ଯଥେଷ୍ଟ ଗଣିତ ଜ୍ଞାନର ଅଧିକାରୀ ଥିଲେ। ସେମାନଙ୍କ ଭିତରୁ କିଏ ଏଭଳି ଖେଳ ଲଗାଇନାହିଁ ତ? ପୁରୁଣା କେମ୍ବ୍ରିଜ ସାଥୀ ହାର୍ଡିଙ୍କୁ ଭୁଆଁ ବୁଲାଇବା ପାଇଁ ଏହାଠାରୁ ଆଉ ଭଲ ବାଟ ମିଳିବନାହିଁ। କିନ୍ତୁ ଏଭଳି ଦକ୍ଷତାର କିଏ ସେ ଭାରତରେ ଥାଇ ଏପରି କରିପାରିବ ? ହୁଏତ ୟୁରୋପରେ ହିଁ ଏହି ଥଟ୍ଟାର ଆରମ୍ଭ ହୋଇଛି, କିନ୍ତୁ ମାନ୍ଦ୍ରାଜର ଡାକ ମୋହର ବସାଇବାର କଷ୍ଟ କରିବ କିଏ...?

ଏଭଳି କେତେ ଚିନ୍ତା ହାର୍ଡିଙ୍କ ମନକୁ ଆସିଲା। ଟେନିସ୍ ପଡ଼ିଆରୁ ତାଙ୍କ କୋଠରୀକୁ ଫେରିବା ବାଟରେ ସେ ଏହି କଥା ଭାବି ଭାବି ଆସିଲେ। ଚିଠି ଓ କାଗଜ ସବୁ ଧରି ସେ ପୁଣି ମୁଣ୍ଡ ଖେଳାଇଲେ।

ଅନେକ ବର୍ଷ ପରେ ରାମାନୁଜନ୍‌ଙ୍କ ଚିଠିରେ ଥିବା ଅଧିକାଂଶ ସୂତ୍ର ବିଭିନ୍ନ ନିବନ୍ଧ ରୂପରେ *ଜର୍ଣ୍ଣାଲ ଅଫ୍ ଲଣ୍ଡନ ମାଥେମାଟିକାଲ ସୋସାଇଟି* ଓ ଅନ୍ୟ କେତେ ପତ୍ରିକାରେ ପ୍ରକାଶ ପାଇବ। ସେ ସବୁରେ ହାର୍ଡି ଓ ଅନ୍ୟ ଲେଖକମାନେ ଦୁଇ, ପାଞ୍ଚ ବା ଦଶ ପୃଷ୍ଠାର ଗଣିତ ମାଧ୍ୟମରେ ପ୍ରମେୟଗୁଡ଼ିକୁ ବିଧିବଦ୍ଧ ଭାବରେ ପ୍ରମାଣ କରିବେ। କିନ୍ତୁ ତାହା ଦୂର ଭବିଷ୍ୟତର କଥା। ଏବେ ହାର୍ଡିଙ୍କ ଚିନ୍ତାର ବିଷୟ ଥିଲା ସେଗୁଡ଼ିକର କିଛି ମୂଲ୍ୟ ଅଛି କି ନାହିଁ। ତାହା ମଧ୍ୟ ଏତେ ସହଜ ନ ଥିଲା, କାରଣ ସେଥିରେ କୌଣସି ଚଳ ବା ସ୍ଥିରାଙ୍କର ନିର୍ଦ୍ଦିଷ୍ଟ ପ୍ରକାରର ପ୍ରୟୋଗ ସୂତ୍ରଗୁଡ଼ିକର ଅର୍ଥକୁ ବୁଝିବା କଷ୍ଟକର କରି ଦେଉଥିଲା। ସହଜରେ ବୁଝିହେଲା ଭଳି କହିଲେ 'ହାତୀ ଗଳିଯାଏ, ପିମ୍ପୁଡ଼ି ନ ଗଳେ' ଜାଗାରେ ରାମାନୁଜନ୍ ଲେଖୁଥିଲେ 'ଦୁଇ ହାତୀ ଗଳନ୍ତି, ତିନି ପିମ୍ପୁଡ଼ି ଅଟକନ୍ତି'। ଏହାକୁ ବୁଝିବା ପାଇଁ ପାଠକ ଟିକିଏ ଅଡୁଆରେ ପଡ଼ିଯାଏ। ରାମାନୁଜନ୍‌ଙ୍କ ଗାଣିତିକ ବର୍ଣ୍ଣନା ଅନ୍ତତଃ ହାର୍ଡିଙ୍କ ମୁଣ୍ଡ ଗୋଳମାଳ କରିଦେଉଥିଲା।

ବାହାରେ ଅନ୍ଧାର ଆସିଲା, ରାତି ବଢ଼ି ଖାଇବା ସମୟ ଗଡ଼ିଲା, ତଥାପି ହାର୍ଡିଙ୍କୁ ଆଲୁଅ ମିଳିଲାନାହିଁ। ବିଚକ୍ଷଣ ନା ଠକ? କାଗଜକୁ ଯେତେ ଓଲଟ ପାଲଟ କଲେ ବି ଏ ପ୍ରଶ୍ନର ସମାଧାନ ଦେଖାଯାଉ ନ ଥିଲା। ଶେଷରେ ହାର୍ଡି ଠିକ୍ କଲେ ଯେ ଲିଟଲ୍‌ଉଡ୍ ମଧ୍ୟ ଏହାକୁ ଦେଖନ୍ତୁ।

ଜନ୍ ଏଡେନ୍‌ସର୍ ଲିଟଲ୍‌ଉଡ୍ ରାମାନୁଜନ୍‌ଙ୍କଠାରୁ ମାତ୍ର ଦୁଇ ବର୍ଷ ବଡ଼ ଥିଲେ। କିନ୍ତୁ ରାମାନୁଜନ୍ ଭାରତରେ ଏଣେ ତେଣେ ହେଉଥିଲା ବେଳେ ସେ ଇଂଲଣ୍ଡରେ ସବୁଠାରୁ ଭଲ ପରିବେଶରେ ଗଣିତ ଶିକ୍ଷା ପାଇଥିଲେ।

ଅନେକ ପିଢ଼ି ଆଗରୁ ଲିଟଲ୍‌ଉଡ୍‌ଙ୍କ ବଂଶ କୃଷକ ଓ ସୈନିକ ଥିଲେ। କିନ୍ତୁ ନିକଟ ଅତୀତରେ

ସେମାନେ ମଧ୍ୟବିତ୍ତ ଶ୍ରେଣୀର ବୃତ୍ତିଧାରୀ ଭାବରେ ଜଣାଥିଲେ। ସେମାନେ ଧର୍ମାଧୀଶ, ଶିକ୍ଷକ, ଡାକ୍ତର, ପ୍ରକାଶକ ଆଦି ପେଷାରେ ସକ୍ରିୟ ଥିଲେ। ଲିଟଲ୍‌ଉଡ୍‌ଙ୍କ ବାପା ଓ ଜେଜେବାପା ଉଭୟେ କେମ୍ବ୍ରିଜରେ ଗଣିତ ପଢ଼ିଥିଲେ। ଜେଜେବାପା ଧର୍ମଶାସ୍ତ୍ରବିତ୍ ହୋଇଥିଲେ ଏବଂ ବାପା ଦକ୍ଷିଣ ଆଫ୍ରିକାରେ ଗୋଟିଏ ସ୍କୁଲର ପ୍ରଧାନ ଶିକ୍ଷକ ହୋଇଥିଲେ। ଆଠ ବର୍ଷ ଧରି ଜନ୍ ଲିଟଲ୍‌ଉଡ୍ ସେଠାରେ ରହୁଥିଲେ ଏବଂ ଚଉଦ ବର୍ଷ ବୟସରେ ଇଂଲଣ୍ଡ ଫେରି ସେଣ୍ଟ ପଲ୍ ସ୍କୁଲରେ ପଢ଼ିଲେ। ସେଠାରେ ହିଁ ସେ ଗଣିତର ପ୍ରେମରେ ପଡ଼ିଗଲେ।

ତାଙ୍କର ଆତ୍ମସ୍ମୃତି ଏ ମାଥେମାଟିସିଆନ୍‌ସ୍ ମିସେଲେନିରେ ସେ ଅକୃତ୍ରିମ ଭାବରେ ଲେଖିଥିଲେ ଯେ ସେ ଜଣେ ବାଳ ପ୍ରତିଭା ଥିଲେ। ତାହା ସତ ହେଉ ବା ନ ହେଉ, ଉଚ୍ଚକୋଟୀର ଶିକ୍ଷାରୁ ସେ ବିଶେଷ ଲାଭ ପାଇଲେ। ରାମାନୁଜନ୍‌ଙ୍କ କଥା କିନ୍ତୁ ଏହାର ଓଲଟା ଥିଲା। ସେ ଦୁହେଁ ଏକା ସମୟରେ ଏସ୍. ଏଲ୍. ଲୋନିଙ୍କ ତ୍ରିଗୋନୋମେଟ୍ରି ବହି ପଢୁଥିଲେ। ରାମାନୁଜନ୍‌ଙ୍କ ପାଇଁ ତାହା ଥିଲା ବିଧିବଦ୍ଧ ଗଣିତ ଶିକ୍ଷାର ଶେଷ, କିନ୍ତୁ ଲିଟଲ୍‌ଉଡ୍‌ଙ୍କ ପାଇଁ ତାହା ଥିଲା ଆରମ୍ଭ ମାତ୍ର। ଏହା ପରେ ତିନି ବର୍ଷ ଧରି ଲିଟଲ୍‌ଉଡ୍ ଗଣିତର ବିଭିନ୍ନ ବିଷୟରେ ସମସାମୟିକ ପାଠ୍ୟପୁସ୍ତକ ସବୁ ପଢ଼ିବାକୁ ପାଇଥିଲେ। 1902 ମସିହାରେ ଟ୍ରିନିଟି କଲେଜର ବୃତ୍ତି ପରୀକ୍ଷା ଦେବା ଆଗରୁ ସେ ଏଭଳି ଆଗେଇ ପାରିଥିଲେ। ରାମାନୁଜନ୍ କିନ୍ତୁ ସେତେବେଳକୁ କାର୍‌ଙ୍କ ବହି ମଧ୍ୟ ଦେଖି ନ ଥିଲେ।

ଦୁଇ ବର୍ଷ ପରେ, 1905 ମସିହାରେ, ଲିଟଲ୍‌ଉଡ୍ ବରିଷ୍ଠ ରାଙ୍ଗ୍‌ଲର୍ ହେଲେ, କିନ୍ତୁ କୌଣସି ରହସ୍ୟମୟ କାରଣରୁ ଏହା ସହିତ ମିଳୁଥିବା ଛାତ୍ରବୃତ୍ତି ତାଙ୍କୁ ନ ମିଳି ଅନ୍ୟ ଜଣଙ୍କୁ ଦିଆଗଲା। ତିନିବର୍ଷ ଧରି ସେ ମାଞ୍ଚେଷ୍ଟର ବିଶ୍ୱବିଦ୍ୟାଳୟରେ ଲେକ୍‌ଚରର୍ ଭାବରେ କାମ କଲେ। ସେଠାରେ ପାଠ ପଢ଼ାଇବା, ସମ୍ମିଳନୀରେ ଯୋଗଦେବା ଓ ଅଫିସ କାମ ଦେଖିବା ଆଦିର ପ୍ରବଳ ଚାପ ତାଙ୍କ ଉପରେ ପଡ଼ିଲା। ରାଜ୍ୟ ବିଶ୍ୱବିଦ୍ୟାଳୟ ସବୁରେ ଶିକ୍ଷକମାନଙ୍କ ଅବସ୍ଥା ଏହିଭଳି ଥିଲା। 1910 ମସିହାରେ ସେ ଟ୍ରିନିଟି ଫେରି ଆସିଲେ ଓ ସେଠାରେ ସ୍ଥାୟୀ ଭାବରେ ରହିଲେ।

ତାଙ୍କର ଜୀବନୀକାରମାନେ କୁହନ୍ତି ଯେ ସେ କିଛି ମାତ୍ରାରେ ରୁକ୍ଷ ଚେହେରାର ଜଣେ ବଳିଷ୍ଠ ଓ କର୍ମଠ ମଣିଷ ଥିଲେ। ତାଙ୍କର ଚଳଣି ସାଧାସିଧା ଥିଲେ ବି ତାଙ୍କ ବ୍ୟକ୍ତିତ୍ୱର ଏକ ସ୍ୱତନ୍ତ୍ର ଆକର୍ଷଣ ରହିଥିଲା। ସ୍କୁଲରେ ସେ ବ୍ୟାୟାମ ବିଦ୍ୟାରେ ବଡ଼ ଦକ୍ଷତା ଦେଖାଇଥିଲେ, କ୍ରିକେଟ ଖେଳୁଥିଲେ, ପାହାଡ଼ ଚଢ଼ା ଓ ସ୍କିଇଙ୍ଗ୍‌ରେ ମଧ୍ୟ ବେଶ୍ ଆଗୁଆ ଥିଲେ। ଅଶି ବର୍ଷରୁ ଅଧିକ ବୟସରେ ମଧ୍ୟ ସେ କେମ୍ବ୍ରିଜ ପାଖର ଗ୍ରାମାଞ୍ଚଳକୁ ଲମ୍ବା ପଦଭ୍ରମଣରେ ଯାଉଥିଲେ। ଲିଟଲ୍‌ଉଡ୍ ଅତି ଡେଙ୍ଗା ନ ଥିଲେ, କିନ୍ତୁ ଫଟୋରୁ ଜଣାପଡ଼େ ଯେ ତାଙ୍କ ଦେହଟି ବିଶାଳ ଓ ପୌରୁଷଭରା ଥିଲା। ହାର୍ଡିଙ୍କ ସହିତ ତାଙ୍କର ଗୋଟିଏ ଫଟୋରେ ଲିଟଲ୍‌ଉଡ୍‌ଙ୍କ ପ୍ରାଧାନ୍ୟ ଦେଖାଯାଉଥିଲା, ତାଙ୍କ ପାଖରେ ହାର୍ଡି ନ ଥିଲା ଭଳି ଲାଗୁଥିଲେ।

ହାର୍ଡିଙ୍କ ଭଳି ଲିଟଲ୍‌ଉଡ୍ କେବେ ବିବାହ କରି ନ ଥିଲେ। କିନ୍ତୁ ହାର୍ଡିଙ୍କ ଭଳି ସେ ମହିଳାମାନଙ୍କଠାରୁ ଦୂରେଇ ରହୁ ନ ଥିଲେ, ବରଂ ସେମାନଙ୍କ ଗହଣରେ ସେ ଖୁସି ହେଉଥିଲେ। ମାଞ୍ଚେଷ୍ଟରରେ ସେ ତାଙ୍କ ଦଳରେ ସବୁଠାରୁ ଭଲ ନାଚୁଥିଲେ। ଲିଟଲ୍‌ଉଡ୍ ଜଣେ ବିବାହିତା ମହିଳାଙ୍କ ସହିତ ଦୀର୍ଘ ଦିନ ଧରି ସମ୍ପର୍କ ରଖିଥିଲେ ଏବଂ ତାଙ୍କ ଔରଷରୁ ଗୋଟିଏ ଝିଅ ପାଇଥିଲେ।

ଗଣିତଜ୍ଞ ହିସାବରେ ସେ ଖୁବ୍ ଦକ୍ଷ ଥିଲେ। ହାର୍ଡିଙ୍କ ଭାଷାରେ ଲିଟଲ୍‌ଉଡ୍ ଥିଲେ, "କୌଣସି ଗଭୀର ଓ କଷ୍ଟ ସମସ୍ୟାକୁ ଧୂଳିସାତ୍ କରିବା ପାଇଁ ଯୋଗ୍ୟତମ ବ୍ୟକ୍ତି। ତାଙ୍କ ଭଳି ଅନ୍ତର୍ଦୃଷ୍ଟି, କୌଶଳ ଓ ବଳର ଏଭଳି ମିଶ୍ରଣ ଆଉ କାହାଠାରେ ନ ଥିଲା।" 1906 ମସିହାରେ ହାର୍ଡି ଲିଟଲ୍‌ଉଡ୍‌ଙ୍କ ବିଷୟରେ ବୌଦ୍ଧିକ ସ୍ତରରେ ଜାଣିଲେ। ସେତେବେଳେ ଲିଟଲ୍‌ଉଡ୍ ଲଣ୍ଡନ ମାଥେମାଟିକାଲ୍ ସୋସାଇଟିକୁ ଏକ ନିବନ୍ଧ ପଠାଇଥିଲେ ଯାହାର ମୂଲ୍ୟ ବିଷୟରେ ମତଭେଦ ଦେଖାଦେଲା। ଶେଷରେ ହାର୍ଡିଙ୍କୁ ତା'ର ମୂଲ୍ୟାୟନ କରିବାର ଦାୟିତ୍ୱ ଦିଆଗଲା। 1910 ମସିହାରେ ଟ୍ରିନିଟିକୁ ଫେରିଲା ପରେ ସେ ହାର୍ଡିଙ୍କ ସହିତ ମିଶିକରି କାମ କଲେ। ହାର୍ଡି ତାଙ୍କ ବହି ଅର୍ଡର୍ସ୍ ଅଫ୍ ଇନ୍‌ଫିନିଟିର ମୁଖବନ୍ଧରେ ଲିଟଲ୍‌ଉଡ୍‌ଙ୍କ ଅବଦାନକୁ ସ୍ୱୀକାର କରିଥିଲେ। ସେହି ବହିକୁ ରାମାନୁଜନ୍ ଭାରତରେ ଦେଖିଥିଲେ।

ସେ ଦୁହିଁଙ୍କର କାମରେ ସହଯୋଗର ଆରମ୍ଭ ଶୁଭ ହୋଇ ନ ଥିଲା। 1911 ମସିହା ଜୁନ ମାସରେ ସେମାନେ ଲଣ୍ଡନ ମାଥେମାଟିକାଲ ସୋସାଇଟିକୁ ପଠାଇଥିବା ଗୋଟିଏ ପ୍ରମାଣ ଭୁଲ ଥିବା କଥା ଜଣାପଡ଼ିଲା। 1912 ମସିହାରେ ତାଙ୍କର ପ୍ରଥମ ମିଳିତ ନିବନ୍ଧ ପ୍ରକାଶ ପାଇଲା - ତାହା ଥିଲା ସେ ଦୁହିଁଙ୍କର ଶହେରୁ ବେଶି ମିଳିତ ନିବନ୍ଧର ପ୍ରଥମ। ତାହା ପରେ ସେମାନେ ଗଣିତ ଦୃଷ୍ଟିରୁ ଅବିଭାଜ୍ୟ ହୋଇ ରହିଲେ। ସେ ସମୟରେ ଜଣେ କହିଥିଲେ ଯେ ଏବେ ମାତ୍ର ତିନିଜଣ ଅତି ଭଲ ଇଂରେଜ ଗଣିତଜ୍ଞ ଅଛନ୍ତି - ହାର୍ଡି, ଲିଟଲ୍‌ଉଡ୍ ଏବଂ ହାର୍ଡି-ଲିଟଲ୍‌ଉଡ୍। ଲିଟଲ୍‌ଉଡ୍ ଚକଚକିଆ ସମ୍ମିଳନୀର ଗହଳିକୁ ପସନ୍ଦ କରୁ ନ ଥିଲେ ଏବଂ ପ୍ରାୟ ସେସବୁକୁ ଯାଉ ନ ଥିଲେ। ତେଣୁ କିଛି ଲୋକ ଅନ୍ତତଃ ଥଟ୍ଟାରେ କହୁଥିଲେ ଯେ ହୁଏତ ଲିଟଲ୍‌ଉଡ୍ ବୋଲି କେହି ମଣିଷ ସତରେ ନାହାନ୍ତି। କିନ୍ତୁ ତାଙ୍କର ଅସ୍ତିତ୍ୱ ଥିଲା ଏବଂ 1913 ମସିହାରେ ରାମାନୁଜନ୍‌ଙ୍କ ଚିଠି ପାଇଲା ପରେ ତାଙ୍କୁ ତାହା ଦେଖାଇବା କଥା ହାର୍ଡିଙ୍କ ମନକୁ ଆସିଲା।

ଅଳ୍ପଦିନ ହେବ ଲିଟଲ୍‌ଉଡ୍ ନେଭିଲ୍ କୋର୍ଟରେ ରହୁଥା'ନ୍ତି। ଏଠାର ପରିବେଶ ତାଙ୍କୁ ଏତେ ଭଲ ଲାଗୁଥିଲା ଯେ 1977 ମସିହାରେ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ପଞ୍ଚଷଠି ବର୍ଷ ଧରି ସେ ଏଠାରେ ରହିଥିଲେ। ହାର୍ଡିଙ୍କ କୋଠରୀରୁ ଊଣେଇଶିଟି ପାହାଚ ଓହ୍ଲାଇ, ଚାଳିଶ ପାହୁଣ୍ଡ ଚାଲି, କଣରେ ବୁଲିଗଲେ ଲିଟଲ୍‌ଉଡ୍‌ଙ୍କ କୋଠରୀ ପଡୁଥିଲା। କିନ୍ତୁ ଏତେ ପାଖରେ ଥିଲେ ବି ଦରକାର ପଡ଼ିଲେ କେହି କାହା ପାଖକୁ ଦୌଡ଼ି ଯାଉ ନ ଥିଲେ। ବରଂ ଯୋଗାଯୋଗ ପାଇଁ ସେ ଦୁହେଁ ଡାକ ବା ବିଶ୍ୱବିଦ୍ୟାଳୟର ବାର୍ତ୍ତାବହଙ୍କ ଉପରେ ନିର୍ଭର କରୁଥିଲେ।

1913 ମସିହାର ସେହି ଶୀତ ସନ୍ଧ୍ୟାରେ ହାର୍ଡି ବାର୍ତ୍ତାବହ ହାତରେ ଖବର ପଠାଇଲେ ଯେ ଲିଟଲ୍‌ଉଡ୍‌ଙ୍କୁ ସେ ରାତି ଖାଇବା ପରେ ଭେଟିବାକୁ ଚାହୁଁଛନ୍ତି।

ଅନେକ ଦିନ ପରେ ସ୍ନୋ ସେହି ଭେଟ ଓ ଆଲୋଚନାର ବିବରଣୀ ଏକାଠି କରିବାକୁ ଚେଷ୍ଟା କରିଥିଲେ। ସେ ଅନୁସାରେ ରାତି ନ'ଟା ପାଖାପାଖି, ବୋଧହୁଏ ଲିଟଲ୍‌ଉଡ୍‌ଙ୍କ କୋଠରୀରେ, ସେ ଦୁହେଁ ଏକାଠି ହେଲେ ଏବଂ ରାମାନୁଜନ୍‌ଙ୍କ କାଗଜ ସବୁ ଖେଳାଇ ଚାଲିଲେ। ସେଥିରେ ଥିବା କିଛି ସୂତ୍ର ପରିଚିତ ଲାଗୁଥିଲା, କିନ୍ତୁ ଆଉ କିଛିକୁ ବିଶ୍ୱାସ କରିବା ଅସମ୍ଭବ ମନେ ହେଉଥିଲା

ବୋଲି ହାର୍ଡି ଲେଖିଥିଲେ। କୋଡ଼ିଏ ବର୍ଷ ପରେ ହାର୍ଭାର୍ଡ ବିଶ୍ୱବିଦ୍ୟାଳୟରେ ହାର୍ଡି ସେହି ଦିନର ଅନୁଭୂତି ବିଷୟରେ ଭାଷଣ ଦେଇଥିଲେ। ତାଙ୍କ ମତରେ ସେହି ଦିନଟି ତାଙ୍କ ଜୀବନକୁ ଖୁବ୍ ସମୃଦ୍ଧ କରିଥିଲା। ଶ୍ରୋତାମାନଙ୍କୁ ସେହି ଦିନର ଘଟଣାବଳୀ ଭିତରେ ନିଜେ ରହିଥିବାର କଳ୍ପନା କରିବାକୁ ସେ କହିଥିଲେ ଏବଂ ଆରମ୍ଭ କଲେ, "କେହି ଅଜଣା ହିନ୍ଦୁ କିରାଣିଙ୍କଠାରୁ ଏଭଳି ଏକ ଚିଠି ପାଇଥିବା ଜଣେ ସାଧାରଣ ଗଣିତଜ୍ଞଙ୍କର ତତ୍କାଳିକ ପ୍ରତିକ୍ରିୟାର ଏକ ବର୍ଣ୍ଣନା ଦେବା ପାଇଁ ମୁଁ ଚେଷ୍ଟା କରିବି।" ହାର୍ଡିଙ୍କ ଶ୍ରୋତାମାନେ ଗଣିତଜ୍ଞ ଥିଲେ, ତେଣୁ ରାମାନୁଜନ୍‌ଙ୍କର କିଛି ସମୀକରଣ ସେ ସେମାନଙ୍କୁ ଦେଖାଇଥିଲେ। ତୃତୀୟ ପୃଷ୍ଠାର ଶେଷରେ ଥିବା ସମୀକରଣଟି ଥିଲା:

$$\int_0^\infty \frac{1+\left(\frac{x}{b+1}\right)^2}{1+\left(\frac{x}{a}\right)^2} \bullet \frac{1+\left(\frac{x}{b+2}\right)^2}{1+\left(\frac{x}{a+1}\right)^2} \ldots dx = \tfrac{1}{2}\pi^{\frac{1}{2}} \frac{\Gamma\left(a+\frac{1}{2}\right)\Gamma\left(b+1\right)\Gamma\left(b-a+\frac{1}{2}\right)}{\Gamma\left(a\right)\Gamma\left(b+\frac{1}{2}\right)\Gamma\left(b-a+1\right)}$$

ଆରମ୍ଭରେ ଥିବା ଡେଙ୍ଗା ଇଂରାଜୀ ଏସ୍ ଅକ୍ଷର ଭଳି ସଙ୍କେତଟି ସମାକଳର ସୂଚକ ଥିଲା ଯାହା ନିଉଟନ୍‌ଙ୍କ ପ୍ରତିଦ୍ୱନ୍ଦୀ ଲିବ୍‌ନିଜ୍ ପ୍ରଚଳିତ କରାଇଥିଲେ। ସମାକଳର ଧାରଣା ଗ୍ରୀକ୍‌ମାନଙ୍କ ବେଳରୁ ଜଣାଥିଲା ଏବଂ ମୋଟାମୋଟି ଭାବରେ କହିଲେ ତାହା ଏକ ବିଶେଷ ପ୍ରକାରର ମିଶାଣ ପ୍ରକ୍ରିୟା।

ଗୋଟିଏ କାକୁଡ଼ିକୁ ଗୋଲ ଗୋଲ ଚକିରେ କାଟିବା କଥା କଳ୍ପନା କରାଯାଉ। ଆମେ ଅଧ ସେଣ୍ଟିମିଟର ମୋଟା ଖଣ୍ଡରେ କାଟିଲେ ହୁଏତ କୋଡ଼ିଏ ଖଣ୍ଡ ପାଇବା, କିନ୍ତୁ କାଗଜ ଭଳି ପତଳା କରି କାଟିଲେ କେତେ ହଜାର ଖଣ୍ଡ ପାଇପାରିବା। ତେବେ ଯେତେ ପତଳା କାଟିଲେ ବି ସେଗୁଡ଼ିକୁ ଆମେ ଯୋଡ଼ିକରି ମୂଳ କାକୁଡ଼ି ଭଳି ଆକୃତିକୁ ଫେରାଇ ଆଣିପାରିବା। ସମାକଳ କାଲ୍‌କୁଲସ୍ ହେଉଛି ଗଣିତର ଏକ ବିଭାଗ ଯାହା ଅସୀମ ସଂଖ୍ୟାର ଅତି ଛୋଟ ଅଂଶ ପାଇଁ ଗାଣିତିକ ରାଶିମାଳା ସୃଷ୍ଟି କରେ ଏବଂ ତା ସାହାଯ୍ୟରେ ଅଂଶଗୁଡ଼ିକୁ ଏକାଠି କରେ। ଏହି ଶକ୍ତିଶାଳୀ କୌଶଳ ସାହାଯ୍ୟରେ ବିଭିନ୍ନ ଛୋଟ ଛୋଟ ପ୍ରକ୍ରିୟାର ସାମଗ୍ରିକ ଫଳାଫଳ ବିଷୟରେ ଧାରଣା କରାଯାଇପାରେ।

ସାଧାରଣ ଆୟତାକାର କ୍ଷେତ୍ରର କ୍ଷେତ୍ରଫଳ ବାହାର କରିବା ପାଇଁ ଆମକୁ କିଛି ଜଟିଳ କୌଶଳ ବ୍ୟବହାର କରିବାକୁ ପଡ଼େ ନାହିଁ। କିନ୍ତୁ ଅନିୟମିତ ଆକାରର କିଛି ଜାଗା ବା ଜିନିଷର କ୍ଷେତ୍ରଫଳ ପାଇବାକୁ ହେଲେ ତା'ର ଛୋଟ ଛୋଟ ଅଂଶର କ୍ଷେତ୍ରଫଳ ବାହାର କରି ମିଶାଇବାକୁ ପଡ଼େ। ସହଜରେ ଏହା କରିବା ପାଇଁ କ୍ଷେତ୍ରଫଳ ପାଇଁ ଏକ ନିର୍ଦ୍ଦିଷ୍ଟ ଫଳନ ସୃଷ୍ଟି କରିବାକୁ ହୁଏ ଏବଂ ତା'ର ସମାକଳନ କରି କ୍ଷେତ୍ରଫଳ ବାହାର କରାଯାଇପାରେ।

କାଲ୍‌କୁଲସ୍ ବହିରେ ସମାକଳନ ପାଇଁ ଅନେକ ଧାରା ଦିଆଯାଇଥାଏ। କିନ୍ତୁ ଅନେକ ଫଳନର ସମାକଳନ ସହଜ ବା ସମ୍ଭବ ହୁଏନାହିଁ। କିନ୍ତୁ ରାମାନୁଜନ୍ ତାଙ୍କ ଚିଠିରେ ଦେଇଥିବା ସୀମାଯୁକ୍ତ ସମାକଳଗୁଡ଼ିକର ସମାଧାନ କିଛି ନିର୍ଦ୍ଦିଷ୍ଟ ଧାରାରେ କରାଯାଇପାରେ। ଏହି ସୀମାଯୁକ୍ତ ସମାକଳଗୁଡ଼ିକର ମୂଲ୍ୟ କିଛି ନିର୍ଦ୍ଦିଷ୍ଟ ସଂଖ୍ୟା ଭିତରେ କରିବାକୁ ହୁଏ। ସମାକଳ ସଙ୍କେତର ତଳେ

ଓ ଉପରେ ଥିବା ସଂଖ୍ୟା ଦୁଇଟି ତା'ର ସୀମାକୁ ଚିହ୍ନଟ କରିଥାଏ। ଏହି ସୀମା ଭିତରେ ସମାକଳର ସମାଧାନ କଲେ ସାଂଖ୍ୟିକ ମୂଲ୍ୟ ମିଳିଯାଏ। ଅନେକ ସମୟରେ ନିର୍ଦ୍ଦିଷ୍ଟ ଗାଣିତିକ ଧାରା ବ୍ୟବହାର କରି ଫଳନର ସମାକଳନ ବିନା ଫଳାଫଳ ମିଳିପାରେ।

ତାଙ୍କର '4. ସମାକଳ ବିଷୟକ ପ୍ରମେୟ' ବିଭାଗରେ ରାମାନୁଜନ୍ ମୋଟାମୋଟି ଭାବରେ ଏହା ହିଁ କରୁଥିଲେ। ଉପରେ ଦେଖାଯାଇଥିବା ସମାକଳ ବିଷୟରେ ସେ କହୁଥିଲେ ଯେ ତାହା ଗାମା ଫଳନ ସାହାଯ୍ୟରେ ପ୍ରକାଶ କରାଯାଇ ପାରିବ। ଗାମା ଫଳନ କ୍ରମଗୁଣିତ ଭଳି କାମ କରେ କିନ୍ତୁ କ୍ରମଗୁଣିତ କେବଳ ପୂର୍ଣ୍ଣ ସଂଖ୍ୟା ଉପରେ କାମ କରୁଥିଲା ବେଳେ ଗାମା ଫଳନ ଅନ୍ୟ ପ୍ରକାରର ସଂଖ୍ୟା ପାଇଁ ମଧ୍ୟ ପ୍ରଯୁଜ୍ୟ ହୁଏ। ହାର୍ଡି ବେଶ୍ କଷ୍ଟରେ ଏହାର ସମାଧାନ କଲେ। ପ୍ରକୃତରେ ରାମାନୁଜନ୍ ପଠାଇଥିବା ସବୁ ସମସ୍ୟା ବେଶ୍ କଷ୍ଟକର ଥିଲା। ତଥାପି ହାର୍ଡି ଏଗୁଡ଼ିକୁ ରାମାନୁଜନ୍‌ଙ୍କର ସମସ୍ୟାଗୁଡ଼ିକ ଭିତରେ ସବୁଠାରୁ ତଳେ ରଖିଲେ।

ଅସୀମ ଶ୍ରେଣୀ ସମ୍ପର୍କିତ ସମସ୍ୟାଗୁଡ଼ିକ କିଛି ଅଧିକ ଆଗ୍ରହଜନକ ଥିଲା। ଏଥିରୁ ଦୁଇଟି ଥିଲା:

$$1-5\left(\tfrac{1}{2}\right)^3+9\left(\tfrac{1\cdot 3}{2\cdot 4}\right)^3-13\left(\tfrac{1\cdot 3\cdot 5}{2\cdot 4\cdot 6}\right)^3+\cdots=\frac{2}{\pi}$$

ଏବଂ

$$1+9\left(\frac{1}{4}\right)^4+17\left(\frac{1\cdot 5}{4\cdot 8}\right)^4+25\left(\frac{1\cdot 5\cdot 9}{4\cdot 8\cdot 12}\right)^4+\cdots=\frac{2^{1/2}}{\pi^{1/2}\{\Gamma\left(\frac{3}{4}\right)\}^2}$$

ପ୍ରଥମଟି ବିଷୟରେ ହାର୍ଡି ଜାଣିଥିଲେ, କିନ୍ତୁ ଦ୍ୱିତୀୟଟି ଟିକିଏ ଅଲଗା ପ୍ରକାରର ଥିଲା। ଏହା ଓ ତା'ଭଳି ଅନ୍ୟ ସମସ୍ୟାଗୁଡ଼ିକ ଏତେ ଭୀତିପ୍ରଦ ମନେହେଉ ନ ଥିଲେ, କାରଣ ସେ ସବୁରେ ମୁଖ୍ୟତଃ ସାଧାରଣ ସଂଖ୍ୟା ରହିଥିଲା। କିନ୍ତୁ ହାର୍ଡି ଓ ଅନ୍ୟମାନେ ପରେ ଦେଖାଇଥିଲେ ଯେ ସେହି ଫଳନଗୁଡ଼ିକ ଅଏଲର୍ ଓ ଗସ୍ ଆରମ୍ଭ କରିଥିବା ଅତିଜ୍ୟାମିତିକ ବା ହାପର୍‌ଜୋମେଟ୍ରିକ୍ ଶ୍ରେଣୀରୁ ବାହାରିଛି। ଏହାର ବୀଜଗାଣିତିକ ସମାଧାନ କିନ୍ତୁ ସହଜ ନ ଥିଲା।

1910 ମସିହାର କିଛି ପୂର୍ବରୁ ରାମାନୁଜନ୍ ଏକ ସାଧାରଣ ସୂତ୍ର ବାହାର କରିଥିଲେ ଯାହା ପରେ ଡୁଗାଲ୍-ରାମାନୁଜନ୍ ଅଭେଦ ନାମରେ ଜଣାଗଲା। ଉପଯୁକ୍ତ ସର୍ତ୍ତ ପୂରଣ କରି ସେହି ଅଭେଦ ସାହାଯ୍ୟରେ ଅନେକ ଅସୀମ ଶ୍ରେଣୀ ଉତ୍ପନ୍ନ କରି ହେଉଥିଲା। ଅତି ସରଳ ମନେ ହେଉଥିବା ରାମାନୁଜନ୍‌ଙ୍କ ସୂତ୍ରଗୁଡ଼ିକ ପ୍ରକୃତରେ ଅତି ଗଭୀର ଗଣିତ କାମର ଫଳ ଥିଲା, କିନ୍ତୁ ହାର୍ଡି ଏହା ପରେ ବୁଝିଲେ। ଚିଠି ପାଇବା ଦିନ ସେ କେବଳ ବୁଝୁଥିଲେ ଯେ ସେହି ସୂତ୍ରଗୁଡ଼ିକ ଦେଖାଯାଉଥିବା ଭଳି ସରଳ ନୁହନ୍ତି। ସମାକଳ ସମସ୍ୟାଗୁଡ଼ିକ ତୁଳନାରେ ଶ୍ରେଣୀ ସମ୍ପର୍କିତ ସମସ୍ୟା ସବୁ ହାର୍ଡିଙ୍କୁ ଅଧିକ ରହସ୍ୟମୟ ମନେହେଲା। ଅନୁଧ୍ୟାନ ପରେ ଏହା ସ୍ପଷ୍ଟ ଭାବରେ ଜଣାଗଲା ଯେ ରାମାନୁଜନ୍‌ଙ୍କ ପାଖରେ ନିଶ୍ଚୟ ଆହୁରି ବହୁତ କିଛି ରହିଛି ଯାହା ସେ ପଠାଇ ନାହାନ୍ତି।

କେତେକ ପ୍ରମେୟ ଅବଶ୍ୟ ବେଶ୍ ପରିଚିତ ଥିଲା। ଏହାର ଗୋଟିଏ ଉଦାହରଣ ଥିଲା: $\alpha\beta = \pi^2$ ହେଲେ

$$\alpha^{-1/4}\left(1+4\alpha\int_0^\infty \frac{xe^{-\alpha x^2}}{e^{2\pi x}-1}dx\right) = \beta^{-1/4}\left(1+4\beta\int_0^\infty \frac{xe^{-\beta x^2}}{e^{2\pi x}-1}dx\right)$$

ହାର୍ଡି ଏଭଳି କିଛି ପ୍ରମେୟ ଆଗରୁ ପ୍ରମାଣ କରିଥିଲେ। ଚଉଦ ବର୍ଷ ତଳେ ସେ ଏଭଳି ଗୋଟିଏ ପ୍ରଶ୍ନ ଏଜୁକେସନ୍ ଟାଇମ୍ସ୍ ପତ୍ରିକାରେ ପ୍ରକାଶ କରିଥିଲେ। ରାମାନୁଜନ୍ ପଠାଇଥିବା କିଛି ପ୍ରମେୟ ପ୍ରାୟ ଶହେ ବର୍ଷ ତଳୁ, ଲାପ୍ଲାସ୍ ଓ ଜାକୋବିଙ୍କ ସମୟରୁ, ଜଣାଥିଲା। କିନ୍ତୁ ଜଣେ ଭାରତୀୟ ଯେ ସେସବୁକୁ ପୁଣି ଥରେ ଆବିଷ୍କାର କରିଛି, ତାହା ଉଲ୍ଲେଖନୀୟ ମନେ ହେଉଥିଲା।

ହାର୍ଡିଙ୍କ ବିସ୍ମୟ ଏତିକିରେ ସରି ନ ଥିଲା। ରାମାନୁଜନ୍‌ଙ୍କ ଚିଠିର ଶେଷ ପୃଷ୍ଠାରେ ଥିବା ସମୀକରଣ ଥିଲା: ଯଦି

$$u = \frac{x}{1+}\frac{x^5}{1+}\frac{x^{10}}{1+}\frac{x^{15}}{1+\cdots}, \quad v = \frac{x^{1/3}}{1+}\frac{x}{1+}\frac{x^2}{1+}\frac{x^3}{1+\cdots}$$

ତେବେ,

$$v^5 = u\frac{1-2u+4u^2-3u^3+u^4}{1+3u+4u^2+2u^3+u^4}$$

ଏହା ଥିଲା ପ୍ରସାରିତ ଭଗ୍ନାଂଶ ଭିତରେ ଏକ ସମ୍ପର୍କ। ସେଥିରେ u ର ମୂଲ୍ୟ ହେଉଛି:

$$u = \cfrac{x}{1+\cfrac{x^5}{1+\cfrac{x^{10}}{1+\cfrac{x^{15}}{1+\cdots}}}}$$

କେତେ ବର୍ଷ ପରେ ଯେବେ ଏହି ଫଳ ପ୍ରକାଶିତ ହେଲା, ଇଂରେଜ ଗଣିତଜ୍ଞମାନେ ତାହା ଉପରେ ଅନେକ କାମ କରିବାକୁ ଲାଗିଲେ। 1921 ମସିହାରେ ରଜର୍ସ୍ ଦଶ ପୃଷ୍ଠା ଲମ୍ବା ଏକ ପ୍ରମାଣ ଏହା ସପକ୍ଷରେ ଦେଇଥିଲେ। ଡାର୍ଲିଙ୍ଗ ମଧ୍ୟ ଏହା ଉପରେ କାମ କରିଥିଲେ। 1929 ମସିହାରେ ୱାଟ୍ସନ୍ ଗୋଟିଏ ଅଲଗା ଦିଗରୁ ଏହାର ଅନୁଧ୍ୟାନ କଲେ। କିନ୍ତୁ 1913 ମସିହାରେ ହାର୍ଡି ଏହାକୁ

ଟିକିଏ ବି ବୁଝିପାରିଲେନାହିଁ। ଏହିଭଳି ସମସ୍ୟାଗୁଡ଼ିକୁ ସେ ଗୋଟିଏ ଦଳରେ ରଖି ତାହା ବିଷୟରେ ଲେଖିଥିଲେ, "ଏଗୁଡ଼ିକ ମତେ ସମ୍ପୂର୍ଣ୍ଣ ରୂପେ ପରାସ୍ତ କରିଥିଲେ। ଏହି ସମସ୍ୟା ସହିତ ସାମାନ୍ୟ ସମ୍ପର୍କ ଥିବା କିଛି ବି ମୁଁ ଆଗରୁ ଦେଖି ନ ଥିଲି। ଏଗୁଡ଼ିକୁ ଦେଖିଲା ମାତ୍ରେ ଜଣେ କହିପାରିବ ଯେ କେବଳ କେହି ଉଚ୍ଚକୋଟୀର ଗଣିତଜ୍ଞ ହିଁ ଏହାକୁ ଲେଖିପାରିବ।" ଏହାପରେ ତାଙ୍କର ନିଜସ୍ୱ ଶୈଳୀରେ ହାର୍ଡି ଯୋଡ଼ିଥିଲେ, "ସେଗୁଡ଼ିକ ନିଶ୍ଚୟ ସତ ହୋଇଥିବ। ସତ ନ ହୋଇଥିଲେ ତାହାର ଉଦ୍ଭାବନ ପାଇଁ କାହାର କଳ୍ପନାଶକ୍ତି ନ ଥିବ।"

ହାର୍ଡି ଓ ଲିଟଲ୍‌ଉଡ୍ ପ୍ରମେୟଗୁଡ଼ିକୁ ଓଲଟପାଲଟ କରି ପରୀକ୍ଷା କରିବାରେ ଲାଗିଲେ, ସେ ସବୁର ବକ୍ତବ୍ୟକୁ ବୁଝିବାକୁ ଚେଷ୍ଟା କଲେ, ଗଣିତର କେଉଁ ବିଭାଗରେ କିଏ ଖାପ ଖାଉଛି ଏବଂ କାହାର ପ୍ରମାଣ କିପରି ମିଳିବ ସେ ବିଷୟରେ ଚିନ୍ତା କଲେ। ଏଭଳି ମାନସିକ କସରତ ଭିତରେ ସେମାନେ କିଛି ନିଷ୍ପତ୍ତିରେ ପହଞ୍ଚିବାକୁ ଲାଗିଲେ। ସେ ଭାରତୀୟଙ୍କ ଗଣିତ ଯେ ବିଚିତ୍ର ଓ ଅନନ୍ୟ ସେ ବିଷୟରେ ସେମାନେ ପ୍ରାୟ ଆରମ୍ଭରୁ ନିଶ୍ଚିତ ଥିଲେ। ଏବେ କିନ୍ତୁ ସେମାନେ ଧାରଣା ପାଇଲେ ଯେ ସେଥିରେ ଆହୁରି କିଛି ଅଧିକ ରହିଛି। ଏହା ସେପରି ଅନନ୍ୟ ନ ଥିଲା, ଯାହା କେହି ବିଦ୍ରୋହୀ କିଶୋର କରିଥାଏ - ନିଜର ସାଧାରଣ ବ୍ୟବହାରକୁ ବିଚିତ୍ର ବେଶପୋଷାକ ଓ ଶରୀରଚର୍ଯ୍ୟା ଭିତରେ ଅନନ୍ୟ ଭାବରେ ଦେଖାଇବାକୁ ଚେଷ୍ଟା କରେ। ବିଚିତ୍ର ସଙ୍କେତ ଓ ଲେଖା ଶୈଳୀରେ ବୁଡ଼ିଥିବା ରାମାନୁଜନ୍‌ଙ୍କ ଗଣିତ ବେଶ୍ କିଛି ଅଧିକ ଥିଲା। ହାର୍ଡି କହିଥିଲେ, "ଆଖିକୁ ଦେଖା ଯାଉଥିବା ଅର୍ଥଠାରୁ ରାମାନୁଜନ୍‌ଙ୍କ ସୂତ୍ରରେ ବହୁତ କିଛି ଲୁଚି ରହିଥାଏ। ସହଜ ଦେଖାଯାଉଥିବା ସୂତ୍ରର ସମାଧାନରେ ହାତ ଦେଉଥିବା ଲୋକ ଏକଥା ଅଳ୍ପ ସମୟରେ ବୁଝିଯାଏ। କେତେ ସୂତ୍ରରେ ଆଗ୍ରହର କଥା ଅତି ଗଭୀରରେ ଥାଏ, ଆଉ କେତେକରେ ତାହା ପ୍ରାୟ ଉପରେ। କିନ୍ତୁ ଏପରି କୌଣସି ସୂତ୍ର ନାହିଁ, ଯାହା କୌତୂହଳପୂର୍ଣ୍ଣ ଓ ମଜାଦାର ନୁହେଁ।"

ଯେତେ ବେଶି ସେମାନେ ଦେଖିଲେ ସେତେ ବେଶି ମୁଗ୍ଧ ହେବାରେ ଲାଗିଲେ। ଇ. ଏଚ୍. ନେଭିଲ୍ ଲେଖିଥିଲେ, "ଏହି ଅଜଣା ଅଶୁଣା କିରାଣି ପଠାଇଥିବା ପ୍ରମାଣବିହୀନ ପ୍ରମେୟଗୁଡ଼ିକରୁ ଗୋଟିଏ ବି ପୃଥିବୀର ଉଚ୍ଚତମ ପରୀକ୍ଷାରେ ପ୍ରଶ୍ନ ରୂପରେ ଦିଆଯାଇପାରି ନ ଥା'ନ୍ତା।" ହାର୍ଡିଙ୍କ କଥା ଥିଲା, "ମୁଁ ପାଇଥିବା ସବୁ ଚିଠି ଭିତରେ ଏହା ନିଶ୍ଚିତ ଭାବରେ ସବୁଠାରୁ ବେଶି ଉଲ୍ଲେଖନୀୟ ଥିଲା। ପତ୍ର ଲେଖକ ନିଶ୍ଚୟ ଉଚ୍ଚତମ ସ୍ତରର ଗଣିତଜ୍ଞ ଥିଲେ ଏବଂ ତାଙ୍କର ମୌଳିକତା ଓ ଶକ୍ତି ଅତୁଳନୀୟ ଥିଲା।"

ଏହି ଭାବରେ ରାତିଅଧ ବେଳକୁ ହାର୍ଡି ଓ ଲିଟଲ୍‌ଉଡ୍ ବୁଝିଲେ ଯେ ଗଲା ତିନି ଘଣ୍ଟା ଧରି ସେମାନେ ଜଣେ ପ୍ରଚଣ୍ଡ ପ୍ରତିଭାବାନ୍ ଗଣିତଜ୍ଞଙ୍କର କାଗଜପତ୍ର ଖେଳାଉଛନ୍ତି।

ଗଣିତ ପେଷାରେ ପ୍ରତିଷ୍ଠିତ ହେବା ପାଇଁ ସାହାଯ୍ୟ କରିବାରେ ଏହା ପ୍ରଥମ ଚିଠି ନ ଥିଲା। ଗଣିତଜ୍ଞ ଲୁଇସ୍ ଜେ. ମୋର୍ଡେଲ୍ କହିଥିଲେ ଯେ ଭଲ ଗଣିତ କାମ କରିଥିବା ଲୋକ ପାଇଁ ଗାଣିତିକ ଦୁନିଆର ଦୃଷ୍ଟିକୁ ଆସିବା ପାଇଁ ଏହା ସବୁଠାରୁ ସହଜ ବାଟ। ଯେତେ ଅଜଣା ଲୋକ ହୋଇଥିଲେ ବି, ଯେତେ ଛୋଟ ପଦବୀରେ ଥିଲେ ବି ସେ ନିଜ କାମର ବର୍ଣ୍ଣନା ଦେଇ କୌଣସି ବିଶିଷ୍ଟ ଲୋକଙ୍କ

ପାଖକୁ ଚିଠି ପଠାଇ ପାରିବ। ପରେ ଜଣେ ବିଖ୍ୟାତ ଗଣିତଜ୍ଞ ଭାବେ ପରିଚିତ ହୋଇଥିବା ଯୁବକ ଜାକୋବି ପ୍ରତିଷ୍ଠିତ ଲେଜାନ୍ଡ୍ରେଙ୍କ ପାଖକୁ ଏଭଳି ଚିଠି ଲେଖି ଲାଭ ପାଇଥିଲେ। ହର୍ମାଇଟ୍ ସଂଖ୍ୟାତତ୍ତ୍ୱ ଉପରେ ତାଙ୍କ କାମ ସହିତ ଜାକୋବିଙ୍କ ପାଖକୁ ଲେଖି ସାହାଯ୍ୟ ପାଇଥିଲେ।

ତଥାପି, ମୋର୍ଡେଲ୍‌ଙ୍କ କଥା ଯଦି ଠିକ୍ ଥିଲା ଏବଂ ଏହା ଯଦି ସତରେ ସେଭଳି ସହଜ କଥା ଥିଲା, ତେବେ ଗସ୍ କାହିଁକି ଆବେଲ୍‌ଙ୍କୁ ଉତ୍ସାହିତ କରି ନ ଥିଲେ। କାର୍ଲ ଫ୍ରେଡେରିକ୍ ଗସ୍ ତାଙ୍କ ସମୟର ସବୁଠାରୁ ବଡ଼ ଗଣିତଜ୍ଞ ଥିଲେ। କେହି କେହି ତାଙ୍କୁ ସର୍ବକାଳୀନ ଶ୍ରେଷ୍ଠତାର ମାନ୍ୟତା ମଧ୍ୟ ଦେଉଥିଲେ। ନରୱେର 22 ବର୍ଷୀୟ ଗଣିତଜ୍ଞ ନିଲ୍ ହେନ୍‌ରିକ୍ ଆବେଲ୍, ଗସ୍‌ଙ୍କ ପାଖକୁ ତାଙ୍କ କାମ ବିଷୟରେ ଖଣ୍ଡିଏ ଚିଠି ଲେଖିଥିଲେ। ସେଥିରେ ସେ ଲେଖିଥିଲେ ଯେ ଘାତ ପାଞ୍ଚର କିଛି ସମୀକରଣର ସମାଧାନ ବୀଜଗଣିତ ସାହାଯ୍ୟରେ କରାଯାଇ ପାରିବନାହିଁ ବୋଲି ସେ ପ୍ରମାଣ କରି ଦେଖାଇଛନ୍ତି। ସେଭଳି ସମୀକରଣର ଗୋଟିଏ ଉଦାହରଣ ହେଉଛି: $x^5+3x^4+\ldots=0$। ଏହା ଏକ ଅତି ଗୁରୁତ୍ୱପୂର୍ଣ୍ଣ କାମ ଥିଲା, କାରଣ ସେସମୟର ବଡ଼ ବଡ଼ ଗଣିତଜ୍ଞମାନେ ଏହା ପାଇଁ ଏକ ସାଧାରଣ ସମାଧାନ ଖୋଜିବାରେ ଲାଗିଥିଲେ। କିନ୍ତୁ ଏବେ ଆବେଲ୍ ଦେଖାଉଥିଲେ ଯେ ତାହା ସମ୍ଭବ ନୁହେଁ। କିନ୍ତୁ 'ଗଣିତର ରାଜକୁମାର' ଭାବେ ପରିଚିତ ଗସ୍ ସେ ଚିଠିକୁ ଫୋପାଡ଼ି ଦେଇ କହିଥିଲେ ଯେ ପୁଣି ଆଉ ଜଣେ ପାଗଳ ତା'ର ଉଦ୍ଭଟ ଦାବି ପଠାଇଛି।

ଚିଠି ମାଧ୍ୟମରେ ସହଜରେ ଧ୍ୟାନ ଆକର୍ଷଣ କରିବା ଚେଷ୍ଟା ରାମାନୁଜନ୍‌ଙ୍କ କ୍ଷେତ୍ରରେ ମଧ୍ୟ ଆଗରୁ କାମ କରି ନ ଥିଲା। ଆଉ ଦୁଇ ଜଣ କେମ୍ବ୍ରିଜ ଗଣିତଜ୍ଞ ବେକର୍ ଓ ହବ୍‌ସନ୍‌ଙ୍କ ପାଖକୁ ମଧ୍ୟ ରାମାନୁଜନ୍ ସେଭଳି ଚିଠି ଲେଖିଥିଲେ। ତାହା କିନ୍ତୁ ଏହି ବିଶିଷ୍ଟ ଗଣିତଜ୍ଞମାନଙ୍କ ଉପରେ କିଛି ପ୍ରଭାବ ପକାଇ ପାରିଲାନାହିଁ।

ରାମାନୁଜନ୍‌ଙ୍କ ଚିଠି ପାଇଲା ବେଳକୁ ହେନେରି ଫ୍ରେଡେରିକ୍ ବେକର୍‌ଙ୍କୁ ଅଠଚାଳିଶ ବର୍ଷ ହୋଇଥିଲା ଏବଂ ଆଗ ଧାଡ଼ିର ଜଣେ ଗଣିତଜ୍ଞ ଭାବରେ ସେ ମାନ୍ୟତା ପାଉଥିଲେ। 1898 ମସିହାରେ, ବତିଶ ବର୍ଷ ବୟସରେ, ସେ ରୟାଲ ସୋସାଇଟିର ଫେଲୋ ହୋଇଥିଲେ ଏବଂ 1909 ଯାଏଁ ସେ ଲଣ୍ଡନ ମାଥେମାଟିକାଲ୍ ସୋସାଇଟିର ସଭାପତି ଥିଲେ। ଅନେକ ସମ୍ମାନର ଅଧିକାରୀ ବେକର ଜଣେ ନୂଆ ଗଣିତଜ୍ଞଙ୍କୁ ସାହାଯ୍ୟ କରିବା ପାଇଁ ସବୁ ଦିଗରୁ ଯୋଗ୍ୟ ଥିଲେ।

ତାଙ୍କର ମୃତ୍ୟୁ ପରେ ଜଣେ ଜୀବନୀକାର ଲେଖିଥିଲେ ଯେ କେମ୍ବ୍ରିଜ ଗଣିତଜ୍ଞଙ୍କ ଭିତରେ ହାର୍ଡି ଯେଉଁ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲେ ତାହା ବେକର୍‌ଙ୍କୁ ବିଚଳିତ କରିଥିଲା। ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ସେହି ପରିବର୍ତ୍ତନର ପବନ ବହୁଥିଲା ବେଳେ ବେକର୍ ପୁରୁଣା ପିଢ଼ିର ଗଣିତଜ୍ଞଙ୍କର ନେତାଙ୍କ ଭିତରେ ଗଣାହେଉଥିଲେ ଏବଂ ନୂଆ ଚିନ୍ତାଧାରାକୁ ଗ୍ରହଣ କରିବାରେ ତାଙ୍କଠାରେ କିଛି ଦ୍ୱିଧା ରହୁଥିଲା। କୁହାଯାଏ ଯେ ପୁରୁଣା ଗଣିତଜ୍ଞଙ୍କ କାମକୁ ବେକର ଏତେ ସମ୍ମାନ ଦେଖାଉଥିଲେ ଯେ ଏହା ତାଙ୍କର ମୌଳିକତାର ପ୍ରକାଶକୁ ବାଧା ଦେଇଥିଲା। 1913 ମସିହାରେ ତାଙ୍କର ଦ୍ୱିତୀୟ ବିବାହ ହେବାକୁ ଯାଉଥିଲା। ଏହା ମଧ୍ୟ ତାଙ୍କୁ କିଛି ଅନିଶ୍ଚିତ ପଦକ୍ଷେପ ନେବାରୁ ଅଟକାଇ ଥାଇପାରେ। ଜଣେ ଅଜଣା ଭାରତୀୟ କିରାଣିଙ୍କ ଅଣପାରମ୍ପରିକ ଗଣିତ ବିଷୟରେ ନିଷ୍ପତ୍ତି ନେବାଟା ତାଙ୍କୁ ନିଶ୍ଚୟ ଅନିଶ୍ଚିତ ମନେ ହୋଇଥିବ।

ରାମାନୁଜନ୍‌ଙ୍କ ଚିଠି ପାଇଥିବା ଅନ୍ୟ ଜଣେ କେମ୍ବ୍ରିଜ ଗଣିତଜ୍ଞ ଥିଲେ ଇ. ଡବ୍ଲିଉ. ହବ୍‌ସନ୍। ଯୁବାବସ୍ଥାରେ ବରିଷ୍ଠ ରାଙ୍ଗ୍‌ଲର୍ ହୋଇଥିବା ହବ୍‌ସନ୍‌ଙ୍କ ବୟସ ସେତେବେଳକୁ ଷାଠିଏ ପାଖାପାଖି। ବେକର୍‌ଙ୍କ ତୁଳନାରେ ତାଙ୍କୁ ଅଧିକ ମାନ୍ୟତା ମିଳୁଥିଲା। ପ୍ରଶସ୍ତ ଲଲାଟ, ବହଳ ନିଶ ଓ ପ୍ରଭାବଶାଳୀ ଆଖି କେମ୍ବ୍ରିଜରେ ତାଙ୍କୁ ଜଣେ ପ୍ରଖ୍ୟାତ ଓ ଧ୍ୟାନ ଆକର୍ଷଣକାରୀ ବ୍ୟକ୍ତି କରିଥିଲା ବୋଲି ହାର୍ଡି କହୁଥିଲେ।

ସେ କିନ୍ତୁ ଜଣେ ମାନ୍ଦା ଶିକ୍ଷକ ଭାବରେ ଜଣାଥିଲେ ଏବଂ ସେ ଲେଖିଥିବା ବହିଗୁଡ଼ିକରେ କିଛି ଉଦ୍ଦୀପକ ଧାରଣା ନ ଥିଲା। କିଛି ବର୍ଷ ପାଇଁ ସେ ଜଣେ ଟ୍ରାଇପସ୍ କୋଚ ଭାବରେ କାମ କରୁଥିଲେ ଏବଂ ଗବେଷଣାକୁ ଏଡ଼ାଇ ଯାଉଥିଲେ। ତାଙ୍କ ଟ୍ରାଇପସ୍ ଛାତ୍ରଙ୍କ ଭିତରୁ ଜନ୍ ମେ'ନାର୍ଡ କିନ୍‌ସ୍ ଜଣେ ଥିଲେ। ଯୁଦ୍ଧ ବିଷୟରେ ତାଙ୍କର ମତ ଥିଲା ପାରମ୍ପରିକ ଏବଂ ମହିଳାମାନଙ୍କୁ ଡିଗ୍ରୀ ଦେବାର ସେ ଘୋର ବିରୋଧୀ ଥିଲେ। ଏଭଳି ଗୁଣର ଲୋକ ହିସାବରେ ଅଜଣା ଉତ୍ସରୁ ଆସିଥିବା ଅପରିଚିତ ପ୍ରମେୟ ପ୍ରତି ତାଙ୍କର ଆଗ୍ରହ ନ ରହିବାଟା ସ୍ୱାଭାବିକ କଥା।

ରାମାନୁଜନ୍‌ଙ୍କ ଭାଗ୍ୟ ସବୁବେଳେ ସୂତା ଖିଅରେ ଝୁଲୁଥିଲା ଏବଂ ପ୍ରାୟ ତାଙ୍କ ବିପକ୍ଷରେ ଯାଉଥିଲା। କେବଳ ରାଜଗୋପାଳଚାରୀଙ୍କର ଜିଦି ଯୋଗୁ ସେ ରାମଚନ୍ଦ୍ର ରାଓଙ୍କ ସହାନୁଭୂତି ପାଇବାରେ ସଫଳ ହୋଇଥିଲେ। ରାମାନୁଜନ୍‌ଙ୍କ ଚିଠି ପ୍ରତି ହାର୍ଡିଙ୍କର ପ୍ରଥମ ପ୍ରତିକ୍ରିୟା ମଧ୍ୟ ଭଲ ନ ଥିଲା। ମୌଳିକତା ଦେଖାଉଥିବା ଲୋକ ସାଧାରଣତଃ ସହଜରେ ସମର୍ଥନ ପାଏନାହିଁ। ତେଣୁ ହବ୍‌ସନ୍ ଓ ବେକର୍‌ଙ୍କର ପ୍ରତ୍ୟାଖ୍ୟାନକୁ ଅତି ଅସ୍ୱାଭାବିକ ବୋଲି କୁହାଯାଇ ପାରିବନାହିଁ।

ଭାରତରେ କେହି ଯେ ରାମାନୁଜନ୍‌ଙ୍କ କାମର କିଛି ବୁଝିପାରିଲେନାହିଁ ତାହା ଆଶ୍ଚର୍ଯ୍ୟର କଥା ନ ଥିଲା। ହାର୍ଡି ଇଂଲଣ୍ଡର ଶ୍ରେଷ୍ଠ ଗଣିତଜ୍ଞଙ୍କ ଭିତରୁ ଜଣେ ଥିଲେ। ତାଙ୍କର ଶିକ୍ଷା ଉଚ୍ଚ ସ୍ତରର ଥିଲା ଏବଂ ଗଣିତର ସଦ୍ୟତମ ବିକାଶ ସହିତ ସେ ପରିଚିତ ଥିଲେ। ଆହୁରି ବଡ଼ କଥା ଥିଲା ଯେ ରାମାନୁଜନ୍ ଯେଉଁ ପ୍ରକାରର ଗଣିତରେ କାମ କରୁଥିଲେ, ସେଥିରୁ ଅନେକରେ ହାର୍ଡି ଜଣେ ବିଶାରଦ ଥିଲେ। ଏହା ସତ୍ତ୍ୱେ ରାମାନୁଜନ୍‌ଙ୍କ ଚିଠିକୁ ଦିନଟିଏ ଧରି ଘାଣ୍ଟିଲା ପରେ ସେ ହତଭମ୍ବ ହୋଇ ଯାଇଥିଲେ। ଆଗରୁ ମୁଁ ଏଭଳି କିଛି ବି କେବେ ଦେଖି ନ ଥିଲି - ଏହା ଥିଲା ତାଙ୍କ ସ୍ୱୀକାରୋକ୍ତି। ଭାରତୀୟ ଗଣିତଜ୍ଞମାନଙ୍କ ଭଳି ହାର୍ଡି ମଧ୍ୟ ରାମାନୁଜନ୍‌ଙ୍କ କାମର ପ୍ରକୃତ ମୂଲ୍ୟ ବୁଝିପାରୁ ନ ଥିଲେ। ଭାରତୀୟଙ୍କ ଭଳି ସେ ମଧ୍ୟ ନିଜର ମତ ବିଷୟରେ ନିଶ୍ଚିତ ନ ଥିଲେ। ତେବେ ହାର୍ଡି ଯେ ରାମାନୁଜନ୍‌ଙ୍କ କାମରେ ବିଚକ୍ଷଣତାର ଛାପ ଦେଖିଲେ ତାହା ତାଙ୍କ ବିଜ୍ଞତାର ପରିଚୟ ଦିଏ। କିନ୍ତୁ ସେ ଯେ ନିଜର ସନ୍ଦେହୀ ମନର ଊର୍ଦ୍ଧ୍ୱକୁ ଯାଇ ରାମାନୁଜନ୍‌ଙ୍କ କାମକୁ ମୂଲ୍ୟବାନ ବୋଲି ଗ୍ରହଣ କଲେ ତାହା ତାଙ୍କର ମହାନତାକୁ ସୂଚାଏ।

ରାମାନୁଜନ୍‌ଙ୍କ ଭାରତୀୟତା ତାଙ୍କୁ ହାର୍ଡିଙ୍କ ଆଖିରେ ନ୍ୟୂନ କରି ନ ଥିଲା। ଅଧିକାଂଶ ଇଂରେଜଙ୍କ ଭଳି ହାର୍ଡି ମଧ୍ୟ ଭାରତୀୟଙ୍କ ବିଷୟରେ ଅନେକ ବିଚିତ୍ର କଥା ଶୁଣିଥିଲେ। ତାଙ୍କୁ ଦଶବର୍ଷ ହୋଇଥିଲା ବେଳେ କ୍ରାନ୍‌ଲେ ସ୍କୁଲ ପତ୍ରିକାରେ 'ଭାରତୀୟ ବଜାରରେ ଦିନଟିଏ' ନାଁରେ ଗୋଟିଏ ଲେଖା ବାହାରିଥିଲା। ସେହି ବଜାରରେ ଦଳ ଦଳ ଅଳଙ୍କାରଭରା ମହିଳା, ଛୁରିଧରା ଗୋର୍ଖା ଓ ଇଂରେଜମାନଙ୍କୁ ଗାଳି ଦେଉଥିବା ଅପରିଷ୍କାର ଫକୀରଙ୍କ କଥା ଲେଖା ଯାଇଥିଲା।

କିନ୍ତୁ 1913 ମସିହା ବେଳକୁ ହାର୍ଡି କିଛି ଭାରତୀୟ ଗଣିତଜ୍ଞଙ୍କ ସଂସ୍ପର୍ଶରେ ଆସି ସାରିଥିଲେ। 1899 ମସିହାରେ ଆଲାହାବାଦର ଗଣିତ ଅଧ୍ୟାପକ ଉମେଶ ଚନ୍ଦ୍ର ଘୋଷ ଏଜୁକେସନାଲ ଟାଇମ୍ସ୍‌ରେ ବାହାରିଥିବା ହାର୍ଡିଙ୍କର ପ୍ରଥମ ପର୍ଯ୍ୟାୟର ପ୍ରଶ୍ନର ସମାଧାନ କରିଥିଲେ। 1908 ମସିହାରେ ଅସୀମ ଶ୍ରେଣୀ ବିଷୟରେ ହାର୍ଡିଙ୍କର ପ୍ରଶ୍ନର ଉତ୍ତର ଆସିଥିଲା ଭି. ରାମସ୍ୱାମୀ ଆୟାରଙ୍କଠାରୁ। ଏହାର ଦୁଇବର୍ଷ ଆଗରୁ ଆୟାର ଭାରତୀୟ ଗଣିତ ସମାଜ ପ୍ରତିଷ୍ଠା କରିଥିଲେ ଏବଂ ଦୁଇବର୍ଷ ପରେ ରାମାନୁଜନ୍‌ଙ୍କ ସାଙ୍ଗ ହୋଇଥିଲେ। ଏହି ସମୟରେ ମହାନ ଭାରତୀୟ କ୍ରିକେଟ ଖେଳାଳି ରଣଜିତ୍ ସିଂହଜୀ ତାଙ୍କର ଶ୍ରେଷ୍ଠ ଖେଳ ଦେଖାଉଥିଲେ ଏବଂ ପ୍ରାକ୍‌ସ୍ନାତକ କ୍ରିକେଟ ପାଗଳ ହାର୍ଡିଙ୍କ ଧ୍ୟାନକୁ ସେ ନିଶ୍ଚୟ ଆସିଥିଲେ। ଏହି ସବୁର ପ୍ରଭାବରେ ଭାରତୀୟଙ୍କ ବିଷୟରେ ତାଙ୍କ ମନ ଖୋଲା ଥିଲା।

ହର୍ଷ ସ୍ତୁ ଲେନ୍‌ରେ ବଢ଼ିଥିବାରୁ ଓ କ୍ରାନ୍‌ଲେ ସ୍କୁଲରେ ପାଠ ପଢ଼ିଥିବାରୁ ହାର୍ଡିଙ୍କ ମନରେ ସାଧାରଣ ବର୍ଗର ଲୋକଙ୍କ ପ୍ରତି ସମ୍ବେଦନଶୀଳତା ରହିଥିଲା। ତେଣୁ କେମ୍ବ୍ରିଜର ଅନ୍ୟ ଅଭିଜାତ ପରିବାରରୁ ଆସିଥିବା ଅଧ୍ୟାପକଙ୍କ ତୁଳନାରେ ବିଚିତ୍ର ଆବରଣ ଭିତରେ ଲୁଚିଥିବା ପ୍ରତିଭାକୁ ଗ୍ରହଣ କରିବା ପାଇଁ ସେ ଅଧିକ ପ୍ରସ୍ତୁତ ଥିଲେ। ସମାଜର ତଳ ସ୍ତରରୁ ଆସୁଥିବା ଲୋକଙ୍କ ପାଇଁ ତାଙ୍କର ଅଧିକ ସହାନୁଭୂତି ରହୁଥିଲା। 'ରାମାନୁଜନ୍ ସମୟ' ପରେ ହାର୍ଡିଙ୍କୁ ଭେଟିଥିବା ମ୍ୟାରି କାର୍ଟରାଇଟ୍ କହୁଥିଲେ ଯେ ଜଣେ ମହିଳା ଗଣିତଜ୍ଞ ଭାବରେ ସେ 'ଦଳିତ ବର୍ଗ'ର ଥିଲେ, ତେଣୁ ହାର୍ଡି ତାଙ୍କୁ ବିଶେଷ ଭାବରେ ସାହାଯ୍ୟ କରୁଥିଲେ। ଉଚ୍ଚ ବର୍ଗର ଲୋକଙ୍କ ତୁଳନାରେ ଦଳିତଙ୍କୁ ସେ ବେଶି ପସନ୍ଦ କରୁଥିଲେ। ଉଚ୍ଚ ବର୍ଗର ଲୋକଙ୍କ ଭିତରେ ସେ ଧର୍ମଯାଜକ, ପ୍ରଧାନ ଶିକ୍ଷକ, ବିଚାରପତି ଓ ... ରାଜନେତା ଆଦିଙ୍କୁ ଗଣୁଥିଲେ ଏବଂ ସେମାନଙ୍କୁ 'ବିଶାଳ ନିତମ୍ବ' ନାଁ ଦେଇଥିଲେ। ହାର୍ଡିଙ୍କ ପାଇଁ ଏମାନେ ଥିଲେ 'ପ୍ରତ୍ୟୟ ସମ୍ପନ୍ନ, ସମୃଦ୍ଧ ଓ ବସ୍ତୁବାଦୀ ଇଂରେଜ'। ଦୁଇ ଅଜଣା କ୍ରିକେଟ ଦଳ ଭିତରେ ଖେଳ ଦେଖୁଥିଲେ ହାର୍ଡି ପଛୁଆ ଜାଗାରୁ ଆସିଥିବା ବା ଦୁର୍ବଳ ମନେ ହେଉଥିବା ଦଳକୁ ସମର୍ଥନ କରୁଥିଲେ। ସେହିଭଳି ସୁବିଧା ସୁଯୋଗ ପାଉ ନ ଥିବା ଅଜଣା ସ୍କୁଲର ଛାତ୍ର, ଭାରତୀୟ, ଦୁର୍ଭାଗା ମନେ ହେଉଥିବା ଓ କମ୍ ଆତ୍ମବିଶ୍ୱାସ ଥିବା ମଣିଷଙ୍କ ସପକ୍ଷରେ ସେ ଆପେ ଆପେ ବାହାରୁଥିଲେ।

ରାମାନୁଜନ୍‌ଙ୍କୁ ସାହାଯ୍ୟ କରିଥିବା ଆଉ ଗୋଟିଏ କଥା ଥିଲା ଅନିଶ୍ଚିତ ଓ ଅଜଣା ରାସ୍ତାରେ ଆଗେଇଯିବା ପାଇଁ ହାର୍ଡିଙ୍କର ସାହସ। ବୟସ୍କ ହବ୍‌ସନ୍ ଓ ବେକର୍ ଜୀବନର ଏପରି ଅବସ୍ଥାରେ ପହଞ୍ଚିଥିଲେ ଯେତେବେଳେ କିଛି ନୂଆ କଥାରେ ହାତ ଦେବା ପାଇଁ ତାଙ୍କର ବ୍ୟଗ୍ରତା ନ ଥିଲା। କିନ୍ତୁ ତାଙ୍କ ତଳ ପିଢ଼ିର ହାର୍ଡି ଅଣପାରମ୍ପରିକ ଓ ଅପ୍ରତ୍ୟାଶିତ କାମରେ ହାତ ଦେଉଥିବା ଲୋକ ଭାବରେ ଜଣାଶୁଣା ଥିଲେ। ଅତି ପରିଚିତ କ୍ରାନ୍‌ଲେ ଛାଡ଼ି ସେ ୱିଞ୍ଚେଷ୍ଟର ଆସିଥିଲେ, ଜଣେ ଅତି ତଳ ସ୍ତରର ଔପନ୍ୟାସିକଙ୍କ ବହିର ପ୍ରଭାବରେ ଟ୍ରିନିଟି ଆସିଲେ। ଏକ ସମୟରେ ସେ ଗଣିତ ଛାଡ଼ିଦେବାକୁ ବସିଥିଲେ, କିନ୍ତୁ ଅଧ୍ୟାପକ ଲଭ୍‌ଙ୍କ ଉପଦେଶ ମାନି କାମିଲ୍ ଜୋର୍ଡାନଙ୍କ ବହି ପଢ଼ି ଗଣିତର ନୂଆ ବାଟରେ ମାଡ଼ି ଚାଲିଲେ। ଆପୋଷ୍ଟୋଲ୍‌ସ୍ ଦଳରେ ସେ ମିଶିଥିଲେ, ତିନିବର୍ଷ ବଦଳରେ ଦୁଇବର୍ଷ ପରେ ଟ୍ରାଇପସ୍ ପରୀକ୍ଷା ଦେଇ ସେ ନୂଆ ପରମ୍ପରା ସୃଷ୍ଟି କରିଥିଲେ।

ହାର୍ଡି ଯେବେ ବି କିଛି ନୂଆ କାମରେ ହାତ ଦେଇଥିଲେ ପ୍ରତି ଥର ସେ ଲାଭବାନ ହୋଇଥିଲେ। ଏବେ ଆଉ ଗୋଟିଏ ବିଚିତ୍ର ନୂଆ କଥା ଆସି ତାଙ୍କ ପାଖରେ ପହଞ୍ଚିଛି - କେଉଁ ଅଜଣା ଭାରତୀୟଙ୍କ ଗଣିତରେ ଖୁନ୍ଦା ହୋଇଥିବା ଚିଠି। ଖୋଲା ମନ ଓ ହୃଦୟରେ ସେ ଚିଠିର ବିଷୟବସ୍ତୁରେ ମଜି ଯାଇଛନ୍ତି। ପୁଣି ଥରେ ସେ ଲାଭବାନ ହେବେ।

## 2. "ଆପଣଙ୍କୁ ମୁଁ ଜଣେ ନୂଆ ସାଥୀ ଭାବରେ ପାଇଲି ..."

ଇ. ଏଚ୍. ନେଭିଲ୍ ଲେଖିଥିଲେ ଯେ ରାମାନୁଜନ୍‌ଙ୍କ ଚିଠି ଯେଉଁ ରୋମାଞ୍ଚ ସୃଷ୍ଟି କରିଥିଲା ତାହା କେମ୍ବ୍ରିଜରେ ଗଣିତ ସହିତ ଯୋଡ଼ା ଥିବା କୌଣସି ଲୋକ ଭୁଲି ପାରିବନାହିଁ। ହାର୍ଡି ତାହା ସମସ୍ତଙ୍କୁ ଦେଖାଇଲେ। ବିଭିନ୍ନ କ୍ଷେତ୍ରରେ ବିଶେଷଜ୍ଞମାନଙ୍କ ପାଖକୁ ତା'ର କିଛି କିଛି ଅଂଶ ପଠାଇଲେ। ଏଭଳି ଉତ୍ସାହ ଉଦ୍ଦୀପନା ଭିତରେ ରାମାନୁଜନ୍‌ଙ୍କର ମୂଳ ଚିଠି ଓ ସୂତ୍ରଗୁଡ଼ିକର ଗୋଟିଏ ପୃଷ୍ଠା କୁଆଡ଼େ ହଜିଗଲା। ହାର୍ଡି କିନ୍ତୁ ଅନ୍ୟ କାମରେ ଲାଗି ଯାଇଥିଲେ। ଲଣ୍ଡନରେ ଥିବା ଇଣ୍ଡିଆ ଅଫିସ୍ ସହିତ ଯୋଗାଯୋଗ କରି ସେ ରାମାନୁଜନ୍‌ଙ୍କ ବିଷୟରେ ତାଙ୍କ ଆଗ୍ରହ ଜଣାଇଲେ ଏବଂ ତାଙ୍କୁ କେମ୍ବ୍ରିଜ ଅଣାଇବାର ବ୍ୟବସ୍ଥା କରିବାକୁ ଅନୁରୋଧ କଲେ।

ସେ ଦିନଟି ଥିଲା ଶନିବାର, ଫେବୃଆରି ଆଠ ତାରିଖ, ହାର୍ଡିଙ୍କ ଜନ୍ମଦିନର ପର ଦିନ। ରାମାନୁଜନ୍‌ଙ୍କ ଚିଠିର ଉତ୍ତର ଲେଖିବା ପାଇଁ ହାର୍ଡି ବସିଲେ। ଟ୍ରିନିଟି କଲେଜ, କେମ୍ବ୍ରିଜ ଓ ତାରିଖ ପରେ ସେ ଆରମ୍ଭ କଲେ, "ପ୍ରିୟ ମହାଶୟ, ଆପଣଙ୍କ ଚିଠି ଓ ପ୍ରମେୟଗୁଡ଼ିକ ମୋ ପାଇଁ ଅତ୍ୟନ୍ତ ଆଗ୍ରହଜନକ ହୋଇଛି ..." ଏଭଳି ଆରମ୍ଭ ଦେଖିଲେ ରାମାନୁଜନ୍ ନିଶ୍ଚୟ ଚିଠିଟିକୁ ପଢ଼ି ଚାଲିବେ। କିନ୍ତୁ ତା ପର ବାକ୍ୟରେ ସେ ତାଙ୍କ ପ୍ରଥମ ଚେତାବନୀ ଶୁଣାଇ ଦେଇଥିଲେ - "କିନ୍ତୁ ଆପଣ ବୁଝିପାରିବେ ଯେ ଆପଣଙ୍କ କାମର ଉପଯୁକ୍ତ ମୂଲ୍ୟାୟନ କରିବାକୁ ହେଲେ ସେସବୁର କିଛି ପ୍ରମାଣ ମତେ ଦେଖିବାକୁ ହେବ।"

ରାମାନୁଜନ୍‌ଙ୍କ ଗାଣିତିକ ଜୀବନରେ ପ୍ରମାଣ ବିଷୟରେ ଏହା ପ୍ରଥମ ଚିନ୍ତା ନ ଥିଲା। କିନ୍ତୁ ଏବେ ଏହାର ଗୁରୁତ୍ୱ ଖୁବ୍ ବେଶି ଥିଲା। ନିଜର ଗାଣିତିକ ଫଳାଫଳର ଉପସ୍ଥାପନା ପାଇଁ ରାମାନୁଜନ୍ କାର୍‌ଙ୍କ ବହିକୁ ଆଦର୍ଶ ଭାବରେ ଗ୍ରହଣ କରିଥିଲେ। ସେ ବହିରେ କିନ୍ତୁ ପ୍ରମାଣ ବୋଲି ପ୍ରାୟ କିଛି ନ ଥିଲା। କାର୍‌ଙ୍କ ପାଇଁ ଯଦି ତାହା ଯଥେଷ୍ଟ ଥିଲା ରାମାନୁଜନ୍‌ଙ୍କ ପାଇଁ ମଧ୍ୟ ତାହା ଗ୍ରହଣୀୟ ଥିଲା। କିନ୍ତୁ ହାର୍ଡି ଏବେ କହୁଛନ୍ତି ଯେ ତାହା କିଛି ନୁହେଁ। ଯେତେ ସତ ମନେ ହେଉଥିଲେ ମଧ୍ୟ କେବଳ ଶେଷ ଫଳ ଲେଖି ଦେବାଟା ହାର୍ଡିଙ୍କ ପାଇଁ ଯଥେଷ୍ଟ ହେବନାହିଁ। ସାରା ଚିଠିରେ ହାର୍ଡିଙ୍କର ଏହି ଦାବି ଦୋହରା ଯାଇଥିଲା:

> ନିର୍ଦ୍ଦିଷ୍ଟ ଭାବରେ ଏହି ସୂତ୍ର ପାଇଁ ମୁଁ ଆପଣଙ୍କ ଦାବିର ପ୍ରମାଣ ଦେଖିବାକୁ ଚାହେଁ। ଆପଣ ବୁଝୁଥିବେ ଯେ ଏହି ତତ୍ତ୍ୱ କ୍ଷେତ୍ରରେ କଠୋର ପ୍ରମାଣ ଉପରେ ସବୁ କିଛି ନିର୍ଭର କରେ।

ଆହୁରି ଅନ୍ୟ ଜାଗାରେ:

> ମୁଁ ଧରି ନେଉଛି ଯେ ଆପଣଙ୍କ ପ୍ରମାଣ ବଳିଷ୍ଠ ...

ପୁଣି:

ଅବଶ୍ୟ ଏହି ପ୍ରଶ୍ନଗୁଡ଼ିକରେ ସବୁ କିଛି ପରିଶୁଦ୍ଧତା ଉପରେ ହିଁ ନିର୍ଭର କରେ।

ମୋଟାମୋଟି ଭାବରେ ଦେଖିଲେ ହାର୍ଡିଙ୍କ ଚିଠିରେ ରାମାନୁଜନ୍‌ଙ୍କୁ ଉତ୍ସାହିତ କରିବା ପାଇଁ ଅନେକ କିଛି ରହିଥିଲା। ଏ କଥା ସତ ଥିଲା ଯେ ରାମାନୁଜନ୍‌ଙ୍କର କିଛି ପ୍ରମେୟ ଆଗରୁ ଜଣାଥିଲା ବା ପୁରୁଣା ପ୍ରମେୟରୁ ବାହାରିଥିଲା। ତଥାପି ହାର୍ଡିଙ୍କ ଆଖିରେ ତାହା ମଧ୍ୟ ରାମାନୁଜନ୍‌ଙ୍କ କୃତିତ୍ୱ ଭାବରେ ଗଣାଯାଇ ପାରିବ। କାରଣ, ହାର୍ଡି କହିଥିଲେ, "ଆପଣଙ୍କ ଆନୁଷ୍ଠାନିକ ଗଣିତ ଶିକ୍ଷାର ଅଭାବ ଯଦି ସତ ହୋଇଥାଏ, ତେବେ ଏଭଳି ଆଗ୍ରହଜନକ ଫଳାଫଳକୁ ପୁନଃଆବିଷ୍କାର କରିଥିବାଟା ଆପଣଙ୍କ ପାଇଁ ଗୋଟିଏ ବଡ଼ କୃତି।"

ରାମାନୁଜନ୍‌ଙ୍କର କିଛି ଫଳ ସେତେ ଉଲ୍ଲେଖନୀୟ ମନେହେଉ ନ ଥିଲା। କିନ୍ତୁ ହାର୍ଡି ଅନୁମାନ କରୁଥିଲେ ଯେ ସେଗୁଡ଼ିକ କିଛି ସାଧାରଣ ଧାରାର ଉଦାହରଣ ଥିଲା ଏବଂ ସେହି ଦୃଷ୍ଟିରୁ ସେ ସବୁର ଗୁରୁତ୍ୱ ବେଶ୍ ଅଧିକ ହେବା କଥା। କିନ୍ତୁ ରାମାନୁଜନ୍‌ଙ୍କ ଫଳଗୁଡ଼ିକ ନିର୍ଦ୍ଦିଷ୍ଟ ଉଦାହରଣ ରୂପରେ ଥିବାରୁ ସେ ବିଷୟରେ ହାର୍ଡି ନିଶ୍ଚିତ ହୋଇ ପାରୁ ନ ଥିଲେ।

ରାମାନୁଜନ୍‌ଙ୍କ କାମ ଲିଟଲ୍‌ଉଡ୍‌ଙ୍କ ମନରେ ମଧ୍ୟ କୌତୂହଳ ସୃଷ୍ଟି କରୁଥିଲା। ହାର୍ଡିଙ୍କ ଚିଠିରେ ଏକ ପରିଶିଷ୍ଟ ଭଳି ଯୋଡ଼ା ହୋଇଥିବା ଅଂଶଟି ଥିଲା - 'ଶ୍ରୀ ଲିଟଲ୍‌ଉଡ୍‌ଙ୍କ ତରଫରୁ କିଛି ପ୍ରସ୍ତାବ'। ଏହି ପ୍ରସ୍ତାବଗୁଡ଼ିକ ମୁଖ୍ୟତଃ ମୌଳିକ ସଂଖ୍ୟା ସମ୍ପର୍କିତ ଥିଲା। ମୌଳିକ ସଂଖ୍ୟା ବିଷୟରେ ଲିଟଲ୍‌ଉଡ୍ କିଛି ଅତି ଚମତ୍କାର କାମ କରିଥିଲେ, କିନ୍ତୁ ତାହା ସେବେ ପ୍ରକାଶିତ ହୋଇ ନ ଥିଲା। ତେଣୁ ହାର୍ଡିଙ୍କ ଜରିଆରେ ଲିଟଲ୍‌ଉଡ୍‌ଙ୍କ ଅତି ବ୍ୟଗ୍ର ଅନୁରୋଧ ଥିଲା, "ମୌଳିକଗୁଡ଼ିକର ସଂଖ୍ୟା ନିର୍ଣ୍ଣୟର ସୂତ୍ର ଅତି ଶୀଘ୍ର ପଠାନ୍ତୁ... ଯେତେ ସମ୍ଭବ ପ୍ରମାଣ ସହିତ।"

ହାର୍ଡିଙ୍କର ପୂରା ଚିଠିରେ ବ୍ୟଗ୍ରତା ଓ ଲୁକ୍କାୟିତ ଉତ୍ସାହ ଭରିରହିଥିଲା ଯାହା ରାମାନୁଜନ୍ ସହଜରେ ଜାଣି ପାରିଥିବେ। ପୃଷ୍ଠା ଛ'ର ଶେଷରେ ଏହାର ଗୋଟିଏ ଉଦାହରଣ ଥିଲା ଏହିପରି - "ମୁଁ ବିଶେଷ ଆଶା ରଖିଛି ଯେ ଆପଣ ଯେତେ ଶୀଘ୍ର ସମ୍ଭବ କେତୋଟି ପ୍ରମାଣ ପଠାଇବେ ଏବଂ ସମୟ ସୁବିଧା ଦେଖି ମୌଳିକ ସଂଖ୍ୟା ଓ ଅପସାରୀ ଶ୍ରେଣୀ ବିଷୟରେ ଆପଣଙ୍କର କାମର ବିଶଦ୍ ବିବରଣୀ ପଠାଇବାର ବ୍ୟବସ୍ଥା କରିବେ।" ତାଙ୍କର ଏହି ଲେଖାର ଗୁରୁତ୍ୱକୁ ଦେଖାଇବା ପାଇଁ ସେ ତାହା ତଳେ ଗାର ପକାଇଥିଲେ।

ହାର୍ଡି ଆହୁରି ଲେଖିଥିଲେ, "ଜଣାଯାଉଛି ଯେ ଆପଣ ବହୁତ କାମ କରିଛନ୍ତି ଯାହା ପ୍ରକାଶନଯୋଗ୍ୟ ଅଟେ। ତାହା ସପକ୍ଷରେ ଯଦି ଆପଣ ଗ୍ରହଣଯୋଗ୍ୟ ପ୍ରମାଣ ଯୋଗାଇବେ ତେବେ ପ୍ରକାଶନ ପାଇଁ ମୁଁ ବ୍ୟବସ୍ଥା କରିବି।"

ହାର୍ଡିଙ୍କ ଚିଠି ମାନ୍ଦ୍ରାଜରେ ପହଞ୍ଚିଲା ବେଳକୁ ପ୍ରାୟ ଫେବୃଆରି ତୃତୀୟ ସପ୍ତାହ ହୋଇଥିଲା। କିନ୍ତୁ ରାମାନୁଜନ୍‌ଙ୍କ କାମ ଯେ ହାର୍ଡିଙ୍କ ସ୍ୱୀକୃତି ପାଇଛି ସେ ଖବର ଆହୁରି ଆଗରୁ ସେଠି ପହଞ୍ଚି ସାରିଥିଲା। ଚିଠି ଲେଖିବାର ସପ୍ତାହେ ଆଗରୁ ହାର୍ଡି ଇଣ୍ଡିଆ ଅଫିସ୍ ସହିତ ଯୋଗାଯୋଗ କରିଥିଲେ

ଏବଂ ଫେବୃଆରି ତିନି ତାରିଖ ବେଳକୁ ସେଠାରୁ ଶ୍ରୀ ମାଲେଟ୍ ମାନ୍ଦ୍ରାଜରେ ଥିବା ଭାରତୀୟ ଛାତ୍ରଙ୍କ ଉପଦେଷ୍ଟା କମିଟିର ସଚିବ ଆର୍ଥର୍ ଡେଭିସ୍‌ଙ୍କ ପାଖକୁ ସେହି ଖବର ପଠାଇ ଦେଇଥିଲେ। ଡେଭିସ୍ ରାମାନୁଜନ୍‌ଙ୍କୁ ଭେଟି ତାଙ୍କୁ କେମ୍ବ୍ରିଜ ନେବା ପାଇଁ ହାର୍ଡିଙ୍କ ଆଗ୍ରହ ବିଷୟରେ ଜଣାଇଲେ। ସାର୍ ଫ୍ରାନ୍‌ସିସ୍‌ଙ୍କ କହିବା ଫଳରେ ଡେଭିସ୍ ନାରାୟଣ ଆୟାରଙ୍କୁ ମଧ୍ୟ ସେହି ଆଲୋଚନାରେ ବସାଇଥିଲେ।

ହାର୍ଡି କିନ୍ତୁ ଖବର ପାଇଲେ ଯେ ରାମାନୁଜନ୍ ଆସୁନାହାନ୍ତି। ଧାର୍ମିକ ଓ ସାଂସ୍କୃତିକ ବିଚାରରେ ବ୍ରାହ୍ମଣ ଓ ଅନ୍ୟ ନୈଷ୍ଠିକ ହିନ୍ଦୁଙ୍କ ପାଇଁ ସମୁଦ୍ର ପାରି ହେବା ମନା ଥିଲା। ଏହା ରାମାନୁଜନ୍‌ଙ୍କ ବିଲାତ ଯାତ୍ରାକୁ ବାଧା ଦେଉଥିଲା।

ଏହା ଭିତରେ ମାନ୍ଦ୍ରାଜରେ ରାମାନୁଜନ୍‌ଙ୍କ ସପକ୍ଷରେ କିଛି ଘଟୁଥିଲା। 1910 ମସିହାରେ ରାମାନୁଜନ୍‌ଙ୍କୁ ଭେଟିବା ଦିନରୁ ରାମଚନ୍ଦ୍ର ରାଓ ଅନିଶ୍ଚିତତା ଭିତରେ ରହୁଥିଲେ। ରାମାନୁଜନ୍‌ଙ୍କ କାମ ସପକ୍ଷରେ କେହି ପ୍ରତିଷ୍ଠିତ ଗଣିତଜ୍ଞ ନିର୍ଦ୍ଦିଷ୍ଟ ମତ ଦେବା ପାଇଁ ସେ ଅପେକ୍ଷା କରୁଥିଲେ। ହାର୍ଡି ଏବେ ତାହା ଯୋଗାଇଦେଲେ।

ଗିଲ୍‌ବର୍ଟ ୱାକର୍ ଜଣେ ବରିଷ୍ଠ ରାଙ୍ଗ୍‌ଲର୍ ଥିଲେ ଏବଂ କିଛି ସମୟ ପାଇଁ ଟ୍ରିନିଟିରେ ଗଣିତ ଲେକ୍‌ଚରର୍ ଭାବରେ କାମ କରିଥିଲେ। ଏବେ ପଇଁଚାଳିଶ ବର୍ଷ ବୟସରେ ସେ ଭାରତୀୟ ପାଣିପାଗ ବିଭାଗର ମୁଖ୍ୟ ଭାବରେ ସିମ୍‌ଲାରେ ଅବସ୍ଥାପିତ ହୋଇଥିଲେ। ନିଯୁକ୍ତି ପାଇଲା ବେଳେ ପାଣିପାଗ ବିଜ୍ଞାନ ବିଷୟରେ ତାଙ୍କର ବିଶେଷ ଜ୍ଞାନ ନ ଥିଲା। କିନ୍ତୁ ମୌସୁମୀ ବର୍ଷାର ସମୟ ଓ ପରିମାଣ ଆଦିର ସଠିକ ପୂର୍ବାନୁମାନ ଭାରତ ପାଇଁ ଅତି ଗୁରୁତ୍ୱପୂର୍ଣ୍ଣ ଥିଲା ଏବଂ କେତେ ବର୍ଷର ଭୁଲ ଅନୁମାନ ବିଷୟରେ ଖବର କାଗଜରେ ଅତି କଟୁ ମନ୍ତବ୍ୟ ବାହାରିଥିଲା। ଏହି ପରିସ୍ଥିତିକୁ ସମ୍ଭାଳିବା ପାଇଁ ଜଣେ ସମ୍ମାନିତ ପେଷାଦାର ଗଣିତଜ୍ଞଙ୍କୁ ସେହି ଦାୟିତ୍ୱ ଦେବା ପାଇଁ ସ୍ଥିର କରାଯାଇଥିଲା। ୱାକର୍ ଠିକ୍ ସେତିକିବେଳେ ରୟାଲ ସୋସାଇଟିର ଫେଲୋ ଭାବରେ ନିର୍ବାଚିତ ହୋଇଥା'ନ୍ତି, ତେଣୁ ତାଙ୍କୁ ଭାରତୀୟ ପାଣିପାଗ ବିଭାଗର ମୁଖ୍ୟ ଭାବରେ ନିଯୁକ୍ତି ଦିଆଗଲା।

ହାର୍ଡିଙ୍କ ଚିଠି ଆସିଲା ବେଳକୁ ୱାକର୍ ମାନ୍ଦ୍ରାଜ ଦେଇ ଯାଉଥା'ନ୍ତି। ରାମାନୁଜନ୍‌ଙ୍କ ନୋଟ ଖାତା ସବୁ ଦେଖିବା ପାଇଁ ସାର୍ ଫ୍ରାନ୍‌ସିସ୍ ତାଙ୍କୁ ପ୍ରବର୍ତ୍ତାଇଲେ। ଫେବୃଆରି ମାସ ପଚିଶ ତାରିଖରେ ୱାକର୍ ତାହା ଦେଖିଲେ। ରାମାନୁଜନ୍‌ଙ୍କୁ ଏକ ଗବେଷଣା ବୃତ୍ତି ଦେବା ପାଇଁ ତା ପର ଦିନ ୱାକର୍ ମାଡ୍ରାସ୍ ବିଶ୍ୱବିଦ୍ୟାଳୟକୁ ଚିଠି ଲେଖିଲେ। କୁଳସଚିବଙ୍କ ପାଖକୁ ପଠାଇଥିବା ଚିଠିରେ ସେ ଲେଖିଥିଲେ:

> ମୁଁ ଦେଖିଥିବା କାମ ଖୁବ୍ ପ୍ରଭାବଶାଳୀ ଥିଲା ଏବଂ ମୌଳିକତାରେ କେମ୍ବ୍ରିଜ କଲେଜର ଜଣେ ଫେଲୋଙ୍କ କାମ ସହ ତାହା ତୁଳନୀୟ ବୋଲି ମୋର ମନେହେଲା। ଏହି କାମରେ କିଛି ଅପୂର୍ଣ୍ଣତା ରହିଛି, ପରିସ୍ଥିତି ଦୃଷ୍ଟିରୁ ଯାହା ସ୍ୱାଭାବିକ ମନେହୁଏ ଏବଂ ସାର୍ବତ୍ରିକ ଗ୍ରହଣୀୟତା ପାଇଁ ଏସବୁର ମାର୍ଜନା ଆବଶ୍ୟକ ହେବ। ସେ କାମ କରିଥିବା ଗାଣିତିକ ବିଭାଗ ଉପରେ ମୋର ବିଶେଷଜ୍ଞସୁଲଭ ଜ୍ଞାନ ନାହିଁ, ତେଣୁ ତାଙ୍କ ଦକ୍ଷତାର ନିର୍ଭରଯୋଗ୍ୟ ଆକଳନ ମୁଁ କରିପାରୁନାହିଁ। ତେବେ ତାଙ୍କ ଦକ୍ଷତା ୟୁରୋପୀୟ ମାନ ସହ ତୁଳନୀୟ ହେବ ବୋଲି ମୁଁ ଅନୁମାନ କରୁଛି। କିନ୍ତୁ ଏହା ସ୍ପଷ୍ଟ

ଯେ ଏସ୍. ରାମାନୁଜନ୍‌ଙ୍କୁ କିଛି ବର୍ଷ ପାଇଁ, ଜୀବିକା ନିର୍ବାହ ଦିଗରେ ଚିନ୍ତାମୁକ୍ତ ହୋଇ, ତାଙ୍କର ପୂରା ସମୟ ଖଟାଇ କାମ କରିବାର ସୁବିଧା ଯୋଗାଇବା ବିଶ୍ୱବିଦ୍ୟାଳୟ ପାଇଁ ଏକ ଯୁକ୍ତିଯୁକ୍ତ ପଦକ୍ଷେପ ହେବ।

ରାମାନୁଜନ୍‌ଙ୍କ କାମ ୱାକର୍‌ଙ୍କ ପାଇଁ ମଧ୍ୟ ରହସ୍ୟମୟ ଥିଲା। ଆଗରୁ ତାଙ୍କର ପରିଚିତି ପ୍ରାୟୋଗିକ ଗଣିତ ସହିତ ଥିଲା। ଏବେ ସେ ସେଭଳି ଗଣିତଠାରୁ ମଧ୍ୟ ଦୂରେଇ ଯାଇଥିଲେ। ତାଙ୍କର ସଦ୍ୟ ପ୍ରକାଶିତ ନିବନ୍ଧର ଶୀର୍ଷକ ଥିଲା ‘ଉତ୍ତର ଭାରତରେ ଶୀତଦିନିଆ ଝଡ଼’। ଏହି ସବୁ ଦୃଷ୍ଟିରୁ ୱାକର୍ ରାମାନୁଜନ୍‌ଙ୍କ ଗଣିତଠାରୁ ବହୁ ଦୂରରେ ଥିଲେ।

ତଥାପି ବୃତ୍ତି ପାଇଁ ରାମାନୁଜନ୍‌ଙ୍କ ସପକ୍ଷରେ ଜୋରଦେଇ ଲେଖିବାରୁ ସେ ଅଟକି ନ ଥିଲେ। ଏହାର ଆଉ ଗୋଟିଏ କାରଣ ବୋଧହୁଏ ରହିଥିଲା। ହାର୍ଡିଙ୍କ ସ୍ୱୀକୃତି ପରେ ରାମାନୁଜନ୍‌ଙ୍କ କାମକୁ କେହି ସନ୍ଦେହ କରିବା ଅବସ୍ଥାରେ ନ ଥିଲେ। ହାର୍ଡିଙ୍କ ଚିଠିର ଲାଭ ରାମାନୁଜନ୍ ମଧ୍ୟ ପ୍ରତ୍ୟକ୍ଷ ଭାବରେ ପାଇଲେ। ବିଶ୍ୱବିଦ୍ୟାଳୟର ବୃତ୍ତି ପାଇଁ ପ୍ରସ୍ତାବ ଏଥିରୁ ଗୋଟିଏ ଥିଲା।

ଫେବୃଆରି ମାସ 27 ତାରିଖରେ ସେ ହାର୍ଡିଙ୍କ ପାଖକୁ ତାଙ୍କ ଦ୍ୱିତୀୟ ଚିଠି ଲେଖିଲେ। ଏଥିରେ ମଧ୍ୟ ପ୍ରମେୟମାନ ଖୁନ୍ଦା ହୋଇ ରହିଥିଲା। ସେ ଲେଖିଥିଲେ, “ଆପଣଙ୍କର 8 ଫେବୃଆରି 1913ର ଚିଠି ପଢ଼ିକରି ମୁଁ ଅତ୍ୟନ୍ତ କୃତଜ୍ଞ। ଆପଣଙ୍କ ରୂପରେ ମୁଁ ଜଣେ ସାଙ୍ଗ ପାଇଲି ଯିଏ ମୋର ଶ୍ରମକୁ ସହାନୁଭୂତିର ସହିତ ଦେଖୁଛି।''

କେବଳ ଯେ ୱାକର୍, ସ୍ପ୍ରିଙ୍ଗ ଏବଂ ମାନ୍ଦ୍ରାଜର ଅନ୍ୟ ଗଣିତଜ୍ଞମାନେ ହାର୍ଡିଙ୍କ ଚିଠି ଦ୍ୱାରା ପ୍ରଭାବିତ ହୋଇଥିଲେ ତାହା ନୁହେଁ। ରାମାନୁଜନ୍‌ଙ୍କ ନିଜ ପାଇଁ ମଧ୍ୟ ଏହା ଅତି ମୂଲ୍ୟବାନ ଥିଲା। ନିଜର ଗଣିତ ଉପରେ ରାମାନୁଜନ୍‌ଙ୍କର ଯଥେଷ୍ଟ ବିଶ୍ୱାସ ରହିଥିଲା, ତଥାପି ତାଙ୍କ ପାଇଁ ବାହ୍ୟ ଅନୁମୋଦନ ମଧ୍ୟ ଆବଶ୍ୟକ ଥିଲା। ଏବେ ସେ ତାହା ପାଇଲେ; ହାର୍ଡି ତାଙ୍କୁ ଗୁରୁତ୍ୱ ଦେଇଥିଲେ। ସେହି ହାର୍ଡି ଯିଏ ରୟାଲ ସୋସାଇଟିର ଫେଲୋ ଥିଲେ, ଯିଏ ଇଂଲଣ୍ଡର ଶ୍ରେଷ୍ଠ ଶୁଦ୍ଧ ଗଣିତଜ୍ଞର ମାନ୍ୟତା ପାଉଥିଲେ। ତାଙ୍କ ଚିଠି କିଛି ଔପଚାରିକ, ଫମ୍ପା ପ୍ରଶଂସାଭରା ଚିଠି ନ ଥିଲା, ଯାହାକୁ ରାମାନୁଜନ୍ କେଉଁ ଦୁର୍ବଳ ମୁହୂର୍ତ୍ତରେ ପ୍ରତ୍ୟାଖ୍ୟାନ କରିଦେବେ। ତାହା ଥିଲା ନଅ ପୃଷ୍ଠାର ନିର୍ଦ୍ଦିଷ୍ଟ ଓ ବିସ୍ତୃତ ମତାମତରେ ଭରିଥିବା ସମୀକ୍ଷା ଭଳି।

ହାର୍ଡି ପରେ କହିଥିଲେ ଯେ ରାମାନୁଜନ୍‌ଙ୍କ ମୌଳିକତା ଥିଲା ଅଦମନୀୟ। କିନ୍ତୁ ତା'ର ଅର୍ଥ ନ ଥିଲା ଯେ ରାମାନୁଜନ୍ ତାଙ୍କ ବିଷୟରେ ଅନ୍ୟମାନଙ୍କ ମତକୁ ଗୁରୁତ୍ୱ ଦେଉ ନ ଥିଲେ। ରାମାନୁଜନ୍‌ଙ୍କ କାମର ବିଶ୍ଳେଷଣ ପରେ ହାର୍ଡି ତାଙ୍କର ଫଳାଫଳକୁ ତିନିଟି ଶ୍ରେଣୀରେ ଭାଗ କରିଥିଲେ। ପ୍ରଥମ ଥିଲା ଆଗରୁ ଜଣାଥିବା ବା ପୁରୁଣା କାମରୁ ସହଜରେ ବାହାରି ପାରୁଥିବା କଥା। ଦ୍ୱିତୀୟ ଶ୍ରେଣୀରେ ଥିଲା ବିଚିତ୍ର ବା କଷ୍ଟକର ସମସ୍ୟା କିନ୍ତୁ ଯାହା ବିଶେଷ ଗୁରୁତ୍ୱପୂର୍ଣ୍ଣ ନ ଥିଲା। ତୃତୀୟ ଶ୍ରେଣୀରେ ଥିଲା ଯାହା, ଯଦି ପ୍ରମାଣିତ ହୁଏ, ବାସ୍ତବିକ୍ ଗୁରୁତ୍ୱପୂର୍ଣ୍ଣ ହେବାର ସମ୍ଭାବନା ଦେଖାଉଥିଲା। ହାର୍ଡିଙ୍କ ପାଇଁ ତୃତୀୟ ଶ୍ରେଣୀର ସମସ୍ୟାଗୁଡ଼ିକ ସବୁଠାରୁ ମୂଲ୍ୟବାନ ଥିଲା।

କିନ୍ତୁ ରାମାନୁଜନ୍‌ଙ୍କ ପସନ୍ଦ ଅଲଗା ଥିଲା।

ରାମାନୁଜନ୍ ହାର୍ଡିଙ୍କ ପାଖକୁ ଚିଠିରେ ଲେଖିଥିଲେ, “ଏବେ ମୁଁ ଚାହୁଁଛି ଯେ ଆପଣଙ୍କ ଭଳି

ବିଶିଷ୍ଟ ଅଧ୍ୟାପକମାନେ ମୋର କିଛି ମୂଲ୍ୟ ଅଛି ବୋଲି ବିଶ୍ୱାସ କରନ୍ତୁ।'' ସେ ଚାହୁଁଥିଲେ ଯେ ତାଙ୍କର ମୂଲ୍ୟକୁ କେବଳ ଅଭିନବ ଓ ଗୁରୁତ୍ୱପୂର୍ଣ୍ଣ ମନେ ହେଉଥିବା ପ୍ରମେୟଗୁଡ଼ିକୁ ନେଇ ବୁଝା ନ ଯାଉ, ବରଂ ହାର୍ଡିଙ୍କ ପ୍ରଥମ ଶ୍ରେଣୀରେ ରହିଥିବା ସମସ୍ୟାଗୁଡ଼ିକର ଭୂମିକା ମଧ୍ୟ ସେଥିରେ ରହୁ। ତାଙ୍କର କାରଣ ଥିଲା, ''ଏହିଗୁଡ଼ିକ ହିଁ ଆଗେଇଯିବା ପାଇଁ ମତେ ଉତ୍ସାହିତ କରିଥିଲେ। ବିସ୍ତୃତ ପ୍ରମାଣ ନ ଲେଖି ମୁଁ ଏହିଗୁଡ଼ିକ ଉପସ୍ଥାପିତ କରିଛି, କିନ୍ତୁ ସେଗୁଡ଼ିକର ସଠିକତା ମୋର ଧାରାକୁ ଠିକ୍ ବୋଲି ଜଣାଉଛି।'' ରାମାନୁଜନ୍‌ଙ୍କ ପାଇଁ ଅନ୍ୟମାନଙ୍କର ମତାମତର ମୂଲ୍ୟ ବହୁତ ଥିଲା। ଏବେ ସେ ଚାହୁଁଥିଲେ ଯେ ସମସ୍ତେ ତାଙ୍କୁ ମିଳିଥିବା ସ୍ୱୀକୃତି ବିଷୟରେ ଜାଣନ୍ତୁ ଓ ବୁଝନ୍ତୁ ଯେ ବାରମ୍ବାର ଫେଲ୍ ହୋଇଥିବା ପିଲାର ଅସଲ ମୂଲ୍ୟ କ'ଣ।

ରାମାନୁଜନ୍‌ଙ୍କ ଦ୍ୱିତୀୟ ଚିଠି ବେଶ୍ ଲମ୍ବା ଥିଲା। ବେଶ୍ ଉତ୍ସାହର ସହିତ ରାମାନୁଜନ୍ ତାହା ଲେଖିଥିଲା ଭଳି ଜଣାପଡୁଥିଲା। ଏକ ପ୍ରକାରର ଦାମ୍ଭିକତା ମଧ୍ୟ ସେଥିରେ ସେ ଦେଖାଉଥିଲେ। ହାର୍ଡିଙ୍କର ପ୍ରମାଣ ଦରକାର? ତେବେ ଶୁଣନ୍ତୁ:

> ମୁଁ ଯଦି ମୋର ପ୍ରମାଣର ଧାରା ଦେଇଥା'ନ୍ତି, ତେବେ ଆପଣ ନିଶ୍ଚୟ ଅଧ୍ୟାପକ ହିଲ୍‌ଙ୍କ ବାଟରେ ଯାଇଥା'ନ୍ତେ। ତାଙ୍କ ପାଖକୁ ମୁଁ ମୋର ପ୍ରମାଣ ପଠାଇ ନ ଥିଲି, କିନ୍ତୁ ମୋ ତତ୍ତ୍ୱରୁ ମିଳିଥିବା କିଛି ଫଳ ପଠାଇଥିଲି। ମୁଁ ତାଙ୍କୁ ଜଣାଇଥିଲି ଯେ ଏହାର ପ୍ରୟୋଗରୁ ଅସୀମ ସଂଖ୍ୟାର ପଦ ଥିବା ଶ୍ରେଣୀର ଫଳ ହେବ: $1+2+3+4+...=-{}^{1}/_{12}$। ଆପଣଙ୍କୁ ଏହା କହିଲେ ଆପଣ ମତେ ପାଗଳ ଗାରଦକୁ ପଠାଇଦେବେ। ମୁଁ ଏଭଳି ଲେଖିବାର କାରଣ ହେଉଛି ଏହା ଯେ ଖଣ୍ଡେ ଚିଠିରେ ମୁଁ ଏହାର ପ୍ରମାଣ ଲେଖିଲେ ଆପଣ ବୁଝିପାରିବେନାହିଁ। ଆପଣ ପଚାରି ପାରନ୍ତି ଯେ ଭୁଲ ଭିତ୍ତି ଆଧାରିତ ଫଳାଫଳ କିପରି ଗ୍ରହଣୀୟ ହେବ? ତା'ର ଉତ୍ତରରେ ମୁଁ କହିବି – ଆଧୁନିକ ଗଣିତଜ୍ଞମାନେ ବ୍ୟବହାର କରୁଥିବା ନିତିଦିନିଆ ଧାରାରେ ଏହି ସମସ୍ୟାର ସମାଧାନ କରନ୍ତୁ ଏବଂ ଦେଖନ୍ତୁ ଆପଣଙ୍କ ଫଳ ମୁଁ ଦେଇଥିବା ଫଳ ସହିତ ମେଳ ଖାଉଛି କି ନାହିଁ। ଯଦି ଦୁଇ ଧାରାର ଫଳ ଏକ ହୁଏ ତେବେ ଆପଣ ମାନିବା ଉଚିତ ଯେ ମୋର ମୌଳିକ ଭିତ୍ତିରେ କିଛି ସତ୍ୟତା ରହିଥିବ।

*'ଆଧୁନିକ ଗଣିତଜ୍ଞ ... ଗତାନୁଗତିକ ଧାରା'*! - ଏଭଳି ଲେଖା ହିଁ ତାଙ୍କ ଦାମ୍ଭିକତାର ସୂଚନା ଦିଏ। ଚାରି ବର୍ଷ ଧରି ସେ ତାଙ୍କ ଗଣିତ ଫଳାଫଳକୁ ନେଇ ଅନେକ ଲୋକଙ୍କୁ ଦେଖାଉଥିଲେ। ସେହି ଗଣିତର ମୂଲ୍ୟ ବୁଝାଇ ସାହାଯ୍ୟ ମାଗିବାରେ ସେ ପ୍ରଥମେ ଅତି ମାତ୍ରାରେ ସମ୍ବେଦନଶୀଳ ଥିଲେ ଏବଂ ପରେ କିଛି ମାତ୍ରାରେ ହତାଶା ଦେଖାଉଥିଲେ। ଏବେ କିନ୍ତୁ ସେ ଲାଜ କରିବାକୁ ବା ନିଜକୁ ନ୍ୟୂନ କରିବାକୁ ପ୍ରସ୍ତୁତ ନ ଥିଲେ। ଚିଠିରେ ସେ ଲେଖିଥିଲେ, ''ଏବେ ମୁଁ ଅଧା-ଭୋକିଲା ଅବସ୍ଥାରେ ରହିଛି। ମସ୍ତିଷ୍କ ଚଳାଇବା ପାଇଁ ମୋର ଖାଦ୍ୟ ଦରକାର ଏବଂ ଏବେ ତାହା ହେଉଛି ମୋର ପ୍ରଥମ ଚିନ୍ତା। ଆପଣଙ୍କଠାରୁ କିଛି ସମର୍ଥନ ସୂଚକ ଚିଠି ପାଇଲେ ମୁଁ ବିଶ୍ୱବିଦ୍ୟାଳୟ ବା ସରକାରଙ୍କଠାରୁ କିଛି ବୃତ୍ତି ପାଇ ପାରିବି।''

ଏହି ଧାରାରେ ରାମାନୁଜନ୍ ଦୁଇଟି ଚିଠିର ପୃଷ୍ଠା ଭରିଦେଲେ। ତା'ପରେ ସେ ଆହୁରି କେତେ ପ୍ରମେୟ ଯୋଗାଇଲେ। ମୌଳିକ ସଂଖ୍ୟା ବିଷୟରେ ହାର୍ଡି ଯେଉଁ ପ୍ରଶ୍ନ ଉଠାଇଥିଲେ ସେବିଷୟରେ

ସେ ବିସ୍ତୃତ କରି ଲେଖିଲେ ଏବଂ ତାଙ୍କର ନୂଆ କାମ ବିଷୟରେ କିଛି ସୂଚନା ଦେଲେ। ଏହିଭଳି ମୋଟ ନ' ପୃଷ୍ଠାର ଗଣିତ ରାମାନୁଜନ୍ ସେ ଚିଠିରେ ଯୋଡ଼ିଲେ। ଶେଷରେ ସେ ଲେଖିଲେ, "ମୋ ପାଖରେ ଆହୁରି ଅନେକ ପ୍ରମେୟ ରହିଛି ଯେଉଁଥିରୁ ଅତି ଚମତ୍କାର ଫଳାଫଳ ମିଳୁଛି।"

ରାମାନୁଜନ୍‌ଙ୍କ ନମ୍ର ପ୍ରକୃତି ବିଷୟରେ କାହାରି ସନ୍ଦେହ ନ ଥିଲା। ଏବେ କିନ୍ତୁ ସେ ନିଜ ପାଇଁ ଗଣିତର ଇତିହାସରେ ଏକ ସ୍ଥାନ ପାଇବା ପାଇଁ ସ୍ୱପ୍ନ ଦେଖୁଥିଲା ଭଳି ମନେ ହେଉଥିଲା। ହାର୍ଡିଙ୍କ ପାଖକୁ ସେ ଲେଖିଥିଲେ, "ପ୍ରମାଣର ଧାରା ବିଷୟରେ ମୋର ନିରବତାରୁ ଆପଣ ଭୁଲ ଧାରଣା ପାଇପାରନ୍ତି। କିନ୍ତୁ ସେ ସବୁର ବିସ୍ତୃତ ବିବରଣୀ ଯୋଗାଇବା ପାଇଁ ଚିଠିରେ ସ୍ଥାନ ଯଥେଷ୍ଟ ହେବନାହିଁ। ସେହି ସବୁ ଧାରା ଯେ ମୋର ମୃତ୍ୟୁ ସହିତ ଲୋପ ପାଇଯିବ ତା ମୁଁ ଚାହେଁନାହିଁ।"

ରାମାନଜନ୍‌ଙ୍କୁ ବର୍ଣ୍ଣନା କରି ନେଭିଲ୍ ଲେଖିଥିଲେ, "ଆଚାର ବ୍ୟବହାରରେ ସେ ଥିଲେ ସରଳ ଓ ଆଦର୍ଶ, ସମସ୍ୟା ଭାରରେ ହତାଶ ଓ ଯଶରେ ଅବିଚଳିତ, କୃତଜ୍ଞତା ଦେଖାଇବାରେ ଅକୁଣ୍ଠ ଏବଂ ବନ୍ଧୁତ୍ୱରେ ଅନୁରକ୍ତ।" କିନ୍ତୁ କେଉଁଠାରେ ସେ ଲେଖି ନ ଥିଲେ ଯେ ରାମାନୁଜନ୍ ବିନମ୍ର ବା ସୂଚନା ଦେଇ ନ ଥିଲେ ଯେ ନିଜ କାମର ବା ଦକ୍ଷତାର ମୂଲ୍ୟାୟନରେ ସେ ଲଜ୍ଜ୍ୟାଶୀଳ।" ରାମାନୁଜନ୍‌ଙ୍କ କଥାକୁ ମନେ ପକାଇ ଜାନକୀ କହିଥିଲେ ଯେ ତାଙ୍କ ନାଁ ଶହେ ବର୍ଷ ଧରି ବଞ୍ଚିରହିବ, ଯାହା ଅତ୍ୟଧିକ ନମ୍ରତାର ପରିଚାୟକ ନ ଥିଲା। ରାମାନୁଜନ୍‌ଙ୍କ ଚରିତ୍ରରେ ଏକ ଅନମନୀୟ ଓ ଆତ୍ମବିଶ୍ୱାସଭରା ଦିଗ ମଧ୍ୟ ରହିଥିଲା। ତା ନ ହୋଇଥିଲେ ଏତେ ବର୍ଷ ଧରି ବିନା ସ୍ୱୀକୃତିରେ ଏକାକୀ ହୋଇ କେବଳ ନିଜର ଖୁସିର ବଳରେ କାମ କରିବା ତାଙ୍କ ପକ୍ଷରେ ସମ୍ଭବ ହୋଇ ନ ଥା'ନ୍ତା। ରାମାନୁଜନ୍‌ଙ୍କର ଏହି ଗୁଣ ହାର୍ଡିଙ୍କ ପାଖକୁ ତାଙ୍କ ଦ୍ୱିତୀୟ ଚିଠିରେ ସ୍ପଷ୍ଟ ଭାବରେ ଜଣା ପଡୁଥିଲା।

ରାମାନୁଜନ୍‌ଙ୍କ ଦାମ୍ଭିକତା କିନ୍ତୁ ହାର୍ଡିଙ୍କ ମନରେ ନକାରାତ୍ମକ ପ୍ରତିକ୍ରିୟା ଆଣି ନ ଥିଲା। ସେ ଥରେ ଲେଖିଥିଲେ, "ଭଲ କାମ 'ବିନମ୍ର' ମଣିଷଙ୍କ ଦ୍ୱାରା ହୁଏନାହିଁ।"

ୱାକର୍‌ଙ୍କ ଚିଠିର ପ୍ରଭାବରେ ଇଞ୍ଜିନିଅରିଙ୍ଗ କଲେଜର ଗଣିତ ଅଧ୍ୟାପକ ବି. ହନୁମନ୍ତ ରାଓ ମାର୍ଚ୍ଚ ତେର ତାରିଖ ଦିନ ରାମାନୁଜନ୍‌ଙ୍କ ପାଇଁ କ'ଣ କରାଯାଇ ପାରିବ ସେ ବିଷୟରେ ଆଲୋଚନା କରିବାକୁ ନାରାୟଣ ଆୟାରଙ୍କୁ ଡାକିଲେ। ତାଙ୍କ ମତରେ ନାରାୟଣ ଆୟାର ରାମାନୁଜନ୍‌ଙ୍କ ଗଣିତ ସହିତ ପରିଚିତ ଥିଲେ ଏବଂ ରାମାନୁଜନ୍‌ଙ୍କ ତୁଳନାରେ ସେ ତାହା ଭଲ ବୁଝାଇ ପାରିବେ। ଊଣେଇଶ ତାରିଖରେ ଗଣିତ ବିଭାଗ ବିଶ୍ୱବିଦ୍ୟାଳୟ ସିଣ୍ଡିକେଟ୍‌କୁ ପ୍ରସ୍ତାବ ଦେଲା ଯେ ରାମାନୁଜନ୍‌ଙ୍କୁ ଏକ ଗବେଷଣା ବୃତ୍ତି ଦିଆଯାଉ। ଏହି ବୃତ୍ତି ମାସିକ ପଞ୍ଚସ୍ତରି ଟଙ୍କା, ରାମାନୁଜନ୍‌ଙ୍କ ପୋର୍ଟ ଟ୍ରଷ୍ଟ ଦରମାର ଦୁଇଗୁଣ, ହିସାବରେ ଦୁଇ ବର୍ଷ ପାଇଁ ଦିଆଯିବାର ପ୍ରସ୍ତାବ ଥିଲା।

କିନ୍ତୁ ଏପ୍ରିଲ ସାତ ତାରିଖ ଦିନର ସିଣ୍ଡିକେଟ ସଭାରେ ଏହି ପ୍ରସ୍ତାବ ବାଧା ପାଇଲା। ଏହାର ବିରୋଧ କରୁଥିବା ଲୋକଙ୍କ ଯୁକ୍ତି ଥିଲା ଯେ ଗବେଷଣା ବୃତ୍ତି କେବଳ ସ୍ନାତକୋତ୍ତର ଡିଗ୍ରୀଧାରୀ ପିଲାଙ୍କୁ ଦିଆଯିବା କଥା। ରାମାନୁଜନଙ୍କର କିନ୍ତୁ ପ୍ରାକ୍‌ସ୍ନାତକ ଡିଗ୍ରୀ ମଧ୍ୟ ନାହିଁ। ଖାଲି ସେତିକି ନୁହେଁ, ସେ ସବୁ କଲେଜରୁ ଫେଲ ହୋଇ ବାହାରିଛନ୍ତି। ସଭାରେ ଥିବା ଜଣେ ଭାରତୀୟଙ୍କ କହିବା

ଅନୁସାରେ ଇଂରେଜମାନେ ହିଁ ରାମାନୁଜନ୍‌ଙ୍କୁ ବିରୋଧ କରୁଥିଲେ ଏବଂ ସେଥିରେ ତାଙ୍କର ନେତା ଥିଲେ ପ୍ରେସିଡେନ୍‌ସି କଲେଜର ଅକ୍ସଫୋର୍ଡ-ଶିକ୍ଷିତ ଗଣିତ ଅଧ୍ୟାପକ ରିଚାର୍ଡ ଲିଟଲ୍‌ହେଲ୍‌ସ୍। ସେମାନେ ଡିଗ୍ରୀ ବିଷୟରେ ଆପତ୍ତି ଉଠାଇ କଠୋର ଭାଷଣମାନ ଦେଲେ ଏବଂ ରାମାନୁଜନ୍‌ଙ୍କୁ ବୃତ୍ତି ଦେବା ପ୍ରସ୍ତାବର ବିରୋଧ କଲେ। ପରେ ଅବଶ୍ୟ ଲିଟଲ୍‌ହେଲ୍‌ସ୍ ରାମାନୁଜନ୍‌ଙ୍କ ସମର୍ଥକ ପାଲଟିଥିଲେ। ଶେଷରେ ମାନ୍ଦ୍ରାଜ ହାଇକୋର୍ଟର ମୁଖ୍ୟ ବିଚାରପତି ଓ କୁଳପତି ପି. ଆର୍. ସୁନ୍ଦରମ୍ ଉଠିଲେ ଏବଂ ପଚାରିଲେ ଯେ ସମ୍ବିଧାନ ଅନୁସାରେ ଗବେଷଣାକୁ ଉତ୍ସାହିତ କରିବା ବିଶ୍ୱବିଦ୍ୟାଳୟର ଲକ୍ଷ୍ୟ ନୁହେଁ କି? ଏବଂ ରାମାନୁଜନ୍‌ଙ୍କର ସବୁ ଅଭାବ ଅସୁବିଧା ସତ୍ତ୍ୱେ ସେ ଜଣେ ଦକ୍ଷ ଗଣିତ ଗବେଷକ ଭାବରେ ନିଜକୁ ପ୍ରମାଣିତ କରିନାହାନ୍ତି କି?

କୁଳପତିଙ୍କ ଯୁକ୍ତିକୁ ସମସ୍ତେ ମାନିଲେ ଏବଂ ରାମାନୁଜନ୍‌ଙ୍କ ବୃତ୍ତି ପାଇବା ପ୍ରସ୍ତାବ ଗୃହୀତ ହେଲା। ଏହାକୁ କାର୍ଯ୍ୟକାରୀ କରିବା ଦାୟିତ୍ୱରେ ଥିବା କୁଳସଚିବ ଲେଖିଥିଲେ ଯେ, "ବିଶ୍ୱବିଦ୍ୟାଳୟର ନିୟମରେ ଏଭଳି ସ୍ୱତନ୍ତ୍ର ବୃତ୍ତି ଦେବାର ବ୍ୟବସ୍ଥା ଏବେ ରହିନାହିଁ। କିନ୍ତୁ ସିଣ୍ଡିକେଟ୍ ଗ୍ରହଣ କରୁଛି ଯେ ଭାରତୀୟ ବିଶ୍ୱବିଦ୍ୟାଳୟ ଆଇନ ଅନୁସାରେ ଗଭର୍ଣ୍ଣରଙ୍କ ସମ୍ମତି ସହିତ ଏହା କରାଯାଇ ପାରିବ।" ଏଥିରୁ ଜଣାପଡ଼େ ହାର୍ଡିଙ୍କ ଚିଠି ମିଳିବାର ଛଅ ସପ୍ତାହ ଭିତରେ ରାମାନୁଜନ୍‌ଙ୍କ ସପକ୍ଷରେ ସମସ୍ତେ କିଭଳି ବାହାରୁଥିଲେ। ଏପରିକି ଆଇନ୍‌କୁ ଟଣାଟଣି କରି ତାଙ୍କ ପାଇଁ ସୁବିଧା କରାଯାଉଥିଲା।

ଏପ୍ରିଲ ମାସ ବାର ତାରିଖ ବେଳକୁ ରାମାନୁଜନ୍‌ଙ୍କ ବୃତ୍ତି ବ୍ୟବସ୍ଥା ଚୂଡ଼ାନ୍ତ ହୋଇଗଲା। ବୃତ୍ତି ରାମାନୁଜନ୍‌ଙ୍କୁ ମୁକ୍ତି ଆଣିଦେଲା କହିଲେ ଚଳେ। ଏବେ ସେ କେବଳ ଗଣିତ କରିବେ, ବିଶ୍ୱବିଦ୍ୟାଳୟର ଶ୍ରେଣୀରେ ବସି ପାରିବେ, ପୁସ୍ତକାଳୟ ବ୍ୟବହାର କରି ପାରିବେ। ଏହା ବିଷୟରେ ନେଭିଲ୍ ଲେଖିଥିଲେ, "ନ' ବର୍ଷ ତଳେ କୁମ୍ଭକୋଣମ୍‌ରେ ଯେଉଁ ଗଣିତ ତାଙ୍କର ଦୋଷ ଭାବରେ ଦେଖା ଯାଉଥିଲା, ଏବେ ପ୍ରେସିଡେନ୍‌ସି କଲେଜରେ ତାହା ବିଶେଷ ଗୁଣ ଭାବରେ ଦେଖାଗଲା।"

### 3. "ରାମାନୁଜନ୍ ପୋଲାଣ୍ଡ ଦେଶର ଭାଷା ଜାଣନ୍ତି କି?"

ବିରାଟ ଅଞ୍ଚଳରେ ସେ ପୋଖରୀଟି ରହିଥିଲା। ଇଟାଲି ଦେଶରେ ଦେଖାଯାଉଥିବା ପିଆଜା ବା ଛକ ଭଳି ବିଭିନ୍ନ ଆଡୁ ରାସ୍ତା ଆସି ସେହି ପୋଖରୀ ପାଖରେ ମିଶିଥିଲେ। ପ୍ରାୟ ବର୍ଗାକାର ସେହି ବିଶାଳ ପୋଖରୀର ଚାରିପଟେ ପଥର ପାହାଚ ଘେରି ରହିଥିଲା। ମଝିରେ ତା'ର ଥିଲା ଗୋଟିଏ ସୁନ୍ଦର କାରୁକାର୍ଯ୍ୟଭରା ଦୀପଦଣ୍ଡି।

ପାର୍ଥସାରଥୀ ମନ୍ଦିର ପାଖରେ ଥିବା ପୋଖରୀଟି ଖୁବ୍ ଆକର୍ଷଣୀୟ ଥିଲା। ତା'ର ପୁରୁଣା ନାଁ ଥିଲା ତିରୁ ଆଲ୍ଲି କେନି ବା ପବିତ୍ର କଇଁ ପୋଖରୀ। ସେହି ନାଁର ଅପଭ୍ରଂଶ ରୂପ ହେଉଛି ଟ୍ରିପ୍ଲିକେନ, ଯେଉଁ ନାଁରେ ସେ ପୂରା ଜିଲ୍ଲାଟି ଏବେ ପରିଚିତ। 782 ଖ୍ରୀଷ୍ଟାବ୍ଦରେ ପଲ୍ଲଭ ରାଜବଂଶ ମନ୍ଦିର ପାଇଁ ଜାଗା ଦାନ କରିଥିବା କଥା ସେଠାରେ ଲେଖାଅଛି। ସେହି ବୈଷ୍ଣବ ମନ୍ଦିରରେ କୃଷ୍ଣ ସାରଥୀ ରୂପରେ ପୂଜା ପାଉଛନ୍ତି। ଭକ୍ତମାନେ ପୂଜା ଆଗରୁ କଇଁ ପୋଖରୀରେ ବୁଡ଼ ପକାନ୍ତି। କେବେ କେବେ ହଜାର ହଜାର ଭକ୍ତ ଏକ ସମୟରେ ସେଠାରେ ଏକାଠି ହୁଅନ୍ତି।

ପାଖରେ ଥିବା ହନୁମନ୍ତରାୟନ୍ କୋଏଲ୍ ସରଣୀରେ, ପ୍ରେସିଡେନ୍‌ସି କଲେଜ ଠାରୁ ପ୍ରାୟ ଦେଢ଼ ମାଇଲ ଦୂରରେ, ରାମାନୁଜନ୍ ଓ ତାଙ୍କ ପରିବାର ଏବେ ରହୁଥିଲେ। ବିଶ୍ୱବିଦ୍ୟାଳୟର ବୃତ୍ତି ପାଇବା ପରେ ସେମାନେ ଜର୍ଜ ଟାଉନର ଗହଳି ଛାଡ଼ି ଏଠାକୁ ଆସିଲେ। ଗଣିତରେ ସମୟ କଟାଇବା ଏବଂ ପ୍ରତି ତିନି ମାସରେ ଏକ ରିପୋର୍ଟ ଦେବା ଏବେ ରାମାନୁଜନ୍‌ଙ୍କର ଏକମାତ୍ର କାମ ଥିଲା।

ତାଙ୍କ ନୂଆ କାମରେ ସେ ମାସକୁ ପଞ୍ଚସ୍ତରି ଟଙ୍କା ବୃତ୍ତି ପାଉଥିଲେ। ଆଗରୁ ପିଲାଙ୍କୁ ଘରେ ରଖି ସେମାନେ ପାଉଥିବା ପାଞ୍ଚ ଦଶ ଟଙ୍କା ତାଙ୍କ ପାଇଁ ବଡ଼ କଥା ଥିଲା। ପୋର୍ଟ ଟ୍ରଷ୍ଟରେ ମଧ୍ୟ ରାମାନୁଜନ୍ ପଚିଶ ଟଙ୍କାରୁ ଆରମ୍ଭ କରି ଶେଷ ବେଳକୁ ପ୍ରାୟ ପଚାଶ ଟଙ୍କା ପାଉଥିଲେ। କିନ୍ତୁ ନିଜ ସହିତ ଜାନକୀ, କୋମଳତାମ୍ମାଲ୍ ଓ କୋମଳତାମ୍ମାଲ୍‌ଙ୍କ ମା'ଙ୍କ ଖର୍ଚ୍ଚ ତୁଲାଇବା ପାଇଁ ତାହା ଯଥେଷ୍ଟ ହେଉ ନ ଥିଲା। ତେଣୁ ତାଙ୍କୁ କିଛି କଲେଜ ପିଲାଙ୍କୁ ପଢ଼ାଇ ନିଅଣ୍ଟ ଭରଣା କରିବାକୁ ହେଉଥିଲା। ଏବେ ତାଙ୍କର ଆର୍ଥିକ ଅସୁବିଧା ରହିଲାନାହିଁ। ଏହା ସହିତ ଉଚ୍ଚ ପଦବୀରେ ଥିବା ଅନେକ ଲୋକଙ୍କ ସହିତ ତାଙ୍କର ଏବେ ବନ୍ଧୁତା ଥିଲା, ବିଭିନ୍ନ ଗଣିତ ପତ୍ରିକାରେ ତାଙ୍କ ଗବେଷଣାର ନିବନ୍ଧ ପ୍ରକାଶିତ ହେଉଥିଲା ଏବଂ ଶ୍ରେଷ୍ଠ ପାଶ୍ଚାତ୍ୟ ଗଣିତଜ୍ଞଙ୍କ ସହିତ ସେ ଏବେ ଚିଠି ଦିଆନିଆ କରୁଥିଲେ।

ନାରାୟଣ ଆୟାର ଏବେ ତାଙ୍କ ଉପରିସ୍ଥ ଅଧିକାରୀ ନୁହନ୍ତି, କେବଳ ବନ୍ଧୁ। ଦୁହେଁ ସକାଳେ ଓ ସନ୍ଧ୍ୟାରେ ଏକାଠ ବସି ଗଣିତ ଚର୍ଚ୍ଚା କରୁଥିଲେ। ପାଖରେ ରହୁଥିବା ଜଣେ ପରିସଂଖ୍ୟାନବିତ୍ କେ. ବି. ମାଧବଙ୍କଠାରୁ ରାମାନୁଜନ୍ କେବେ କେବେ କିଛି ବହି ମାଗିଆଣିବେ। ଅନେକ ସମୟରେ ସେ କୋନେମାରା ଲାଇବ୍ରେରି ଯାଇ ସେଠାରେ ଥିବା ବିଶ୍ୱବିଦ୍ୟାଳୟ ବିଭାଗରେ ନିଜକୁ ହଜାଇ ଦେବେ। ମାଡ୍ରାଜର ଜଣେ ପୂର୍ବତନ ଗଭର୍ଣ୍ଣରଙ୍କ ନାମରେ ନାମିତ ସେହି ଲାଇବ୍ରେରି ସୁନ୍ଦର ଗୀର୍ଜା ଭଳି ଖମ୍ବ ଓ ଖିଲାଣ ଥିବା ଏକ ଅଟ୍ଟାଳିକାରେ ଚାଲୁଥିଲା। କାଠ ଓ ପଲସ୍ତରାରେ ଖୋଦେଇ ହୋଇଥିବା କାରୁକାର୍ଯ୍ୟରେ ଭରା ସେହି ଅଟ୍ଟାଳିକାଟି ଏକ ଭାରତୀୟ-ସାରାସେନୀୟ ଜ୍ଞାନମନ୍ଦିର ଥିଲା। ବିନା ଚିନ୍ତାରେ ଏଠାରେ ସମୟ କଟାଇବା ପାଇଁ ସେହି ବୃତ୍ତି ବାଟ ଖୋଲି ଦେଇଥିଲା।

ଗୋଟିଏ ଦୃଷ୍ଟିରୁ ଏହା ତାଙ୍କ ପାଇଁ ବିବାହ ପୂର୍ବର ସମୟ ଭଳି ଥିଲା। ନିତିଦିନିଆ କାମ ସବୁ ସେ ଅନ୍ୟମାନଙ୍କ ଉପରେ ଛାଡ଼ିଦେଇ ଏବେ ସେ ଗଣିତରେ ବୁଡ଼ି ରହିପାରୁଥିଲେ। ବେଳେ ବେଳେ ତାଙ୍କୁ ରାତି ଅଧରେ ଉଠାଇ ଦେବା ପାଇଁ ସେ ମା ବା ଆଈଙ୍କୁ କହୁଥିଲେ ଏବଂ ରାତିର ଥଣ୍ଡା ଓ ନିରବ ସମୟରେ ସେ କାମରେ ଲାଗୁଥିଲେ। ଆଉ କେବେ ଖାଇବା ବିଷୟରେ ତାଙ୍କୁ ମନେ ପକାଇବାକୁ ହେଉଥିଲା। ତାଙ୍କ ଚିନ୍ତାର ଖିଅ ନ ଛିଣ୍ଡାଇବା ପାଇଁ କେବେ ତାଙ୍କ ହାତରେ ଭାତ ଗୁଣ୍ଡା ଦେବାକୁ ମଧ୍ୟ ହେଉଥିଲା। ରାମାନୁଜନ୍‌ଙ୍କର ଏକ ପ୍ରିୟ ଖାଦ୍ୟ ଥିଲା ତେନ୍ତୁଳି ମସଲାରେ ବତୁରା ହୋଇଥିବା କଞ୍ଚା ବାଇଗଣ। ଛୋଟ ବାଇଗଣ ଆଠ ଖଣ୍ଡରେ ଏପରି ଚିରା ହେଉଥିଲା ଯେପରି ଚିରୁଡ଼ାଗୁଡ଼ିକ ମୁଣ୍ଡି ପାଖରେ ଲାଗି ରହୁଥିଲା ଏବଂ ତାହା ମସଲାରେ ବତୁରା ଯାଉଥିଲା। ଜାନକୀ ବା କୋମଳତାମ୍ମାଲ୍ ଏହାକୁ ତାଙ୍କ ପାଇଁ ବିଶେଷ ଯତ୍ନରେ ତିଆରି କରୁଥିଲେ।

ରାମାନୁଜନ୍‌ଙ୍କ ନୂଆ ଘରେ ଉପର ମହଲାରେ ତାଙ୍କର ଅଲଗା ପଢ଼ାଘର ଥିଲା। ତାଙ୍କର ଓ ଜାନକୀଙ୍କର ଶୋଇବା ସମୟ ଅଲଗା ହେଉଥିଲା, କିନ୍ତୁ ଜାନକୀ କହନ୍ତି ଯେ ଯେବେ ବି ତାଙ୍କ ନିଦ ଭାଙ୍ଗୁଥିଲା ସେ ରାମାନୁଜନ୍‌ଙ୍କୁ କାମ କରୁଥିବାର ଦେଖୁଥିଲେ। ସିଲଟରେ ତାଙ୍କର ଖଡ଼ିଘଷା

ଶବ୍ଦ ଘର ସାରା ଶୁଣା ଯାଉଥିଲା। ହଠାତ୍ ଦିନେ ସେ ଖଣ୍ଡେ ରବର ନଳୀ ଓ ଢାଳେ ପାଣି ନେଇ ସାଇଫନ୍‌ରେ କିପରି ପାଣି ବାହାରେ ତାହା ବୁଝାଇଥିଲେ। ଏଭଳି ଘଟଣା କିନ୍ତୁ ଅତି ବିରଳ ଥିଲା ଏବଂ ସେ ଦୁହିଁଙ୍କ ଭିତରେ ପ୍ରାୟ କୌଣସି ବୌଦ୍ଧିକ ସମ୍ପର୍କ ନ ଥିଲା। ଶୁଦ୍ଧ ଗଣିତର ଉଚ୍ଚ ସ୍ତରରେ ସେ ମାତିଥିଲା ବେଳେ ଅଳ୍ପ ତାମିଲ ଛଡ଼ା ଜାନକୀ ଆଉ କିଛି ଶିକ୍ଷା ପାଇ ନ ଥିଲେ। ଅଧିକ ପଢ଼ିବା ପାଇଁ ଜାନକୀ ଆଗ୍ରହ ଦେଖାଇ ନ ଥିଲେ, ରାମାନୁଜନ୍ ମଧ୍ୟ ନିଜ ଆଡ଼ୁ ସେ ପ୍ରସ୍ତାବ ଦେଇ ନ ଥିଲେ ବା ତାଙ୍କୁ ବାଧ୍ୟ କରି ନ ଥିଲେ।

ଏହି ଭିତରେ ରାମାନୁଜନ୍ ଓ ହାର୍ଡିଙ୍କ ଭିତରେ ଆଲୋଚନା ଅନିଶ୍ଚିତ ଭାବରେ ଚାଲିଥିଲା। ଇଂଲଣ୍ଡରେ ସେ ଆଣିଥିବା ଗାଣିତିକ ବିପ୍ଳବର ସପକ୍ଷରେ ହାର୍ଡି ଯୁକ୍ତି ଜାରି ରଖିଥିଲେ ଏବଂ ସେହି ଧାରାରେ ରାମାନୁଜନ୍‌ଙ୍କ କାମର କଠୋର ପ୍ରମାଣ ଦାବି କରୁଥିଲେ। ରାମାନୁଜନ୍ କିନ୍ତୁ ବିଭିନ୍ନ ଯୁକ୍ତି ଦେଖାଇ ପ୍ରମାଣ ଦେଉ ନ ଥିଲେ। ମନେ ହେଉଥିଲା ଯେ ସେ ହୁଏତ ଏହା ଦେବାକୁ ଚାହୁଁ ନ ଥିଲେ। ମାର୍ଚ୍ଚ ମାସ ମଝି ବେଳକୁ ଦୁହିଁଙ୍କ ଭିତରେ ଏହା ଏକ ବଡ଼ ବିବାଦ ଅବସ୍ଥାରେ ପହଞ୍ଚିଲା। ଲିଟଲ୍‌ଉଡ୍ ତାଙ୍କ ପ୍ରତିକ୍ରିୟାରେ ହାର୍ଡିଙ୍କୁ ଜଣାଇଲେ, "ଏଭଳି ପରିସ୍ଥିତିରେ ତାଙ୍କ ଚିଠି ପଢ଼ିଲେ ରାଗ ଲାଗୁଛି। ସେ ବୋଧହୁଏ ସନ୍ଦେହ କରୁଛନ୍ତି ଯେ ତମେ ତାଙ୍କ କାମ ଚୋରାଇ ନେବ।" ଏହି ବିଚାରରେ ହାର୍ଡି ପର ଚିଠିରେ ରାମାନୁଜନ୍‌ଙ୍କ ମନରେ ବିଶ୍ୱାସ ଆଣିବାର ଚେଷ୍ଟାରେ ଲେଖିଲେ:

> କଥାଟା ମୁଁ ଅତି ସ୍ପଷ୍ଟ ଭାବରେ କହିଦେବାକୁ ଚାହୁଁଛି। ଏ ଭିତରେ ଆପଣ ମୋଠାରୁ ତିନିଟି ଲମ୍ବା ଚିଠି ପାଇଲେଣି (ରାମାନୁଜନ୍ କିନ୍ତୁ ଦୁଇଟି ପାଇଥିଲେ) ଯେଉଁଥିରେ ଆପଣ ପ୍ରମାଣ କରିଥିବା ବା ପ୍ରମାଣ କରିପାରିବାର ଦାବି କରୁଥିବା ଗଣିତ ବିଷୟରେ ମୋର ମତ ପରିଷ୍କାର ଭାବରେ ଲେଖିଛି। ଆପଣଙ୍କ ଚିଠିଗୁଡ଼ିକ ମୁଁ ଶ୍ରୀ ଲିଟଲ୍‌ଉଡ୍, ଡ. ବାର୍ଣ୍ଣସ୍, ଶ୍ରୀ ବେରି ଓ ଅନ୍ୟ ଗଣିତଜ୍ଞମାନଙ୍କୁ ଦେଖାଇଛି। ତେଣୁ ମୁଁ ଯଦି କେବେ ଆପଣଙ୍କ ଫଳାଫଳର ଦୁରୁପଯୋଗ କରେ ଆପଣ ମତେ ବେଶ୍ ସହଜରେ ଧରାପକାଇ ପାରିବେ। ଏଭଳି ରୁକ୍ଷ ଭାବରେ ଲେଖୁଥିବାରୁ ଆପଣ ମତେ କ୍ଷମା କରିବେ। ଆପଣଙ୍କ ଗଣିତ ପ୍ରତିଭାର ସର୍ବଶ୍ରେଷ୍ଠ ବ୍ୟବହାର କରିବା ପାଇଁ ଆପଣଙ୍କୁ ଅଧିକ ସୁଯୋଗ ଦେବା ପାଇଁ ଆଗ୍ରହୀ ନ ଥିଲେ ମୁଁ ଏଭଳି ଲେଖୁ ନ ଥା'ନ୍ତି।

ରାମାନୁଜନ୍ ପ୍ରକୃତରେ ତାଙ୍କର ଫଳାଫଳକୁ କିଏ ନେଇଯିବ ବୋଲି ଡରୁଥିଲେ ନା ହାର୍ଡି ଓ ଲିଟଲ୍‌ଉଡ୍ ତାଙ୍କୁ ଭୁଲ ବୁଝିଥିଲେ ତାହା କହିବା କଷ୍ଟ। ସେ ଚିଠିର ଉତ୍ତରରେ ରାମାନୁଜନ୍ ଜଣାଇଲେ ଯେ ସେଭଳି ଆଶଙ୍କା ତାଙ୍କ ମନରେ କେବେ ନ ଥିଲା, ତେଣୁ ହାର୍ଡିଙ୍କର ଏଭଳି ଲେଖିବା ଫଳରେ ସେ ଆଘାତ ପାଇଛନ୍ତି। ଏପ୍ରିଲ ମାସ ମଝି ବେଳକୁ ସେ ଲେଖିଥିଲେ:

> ଲିଟଲ୍‌ଉଡ୍‌ଙ୍କ ମତ ବିଷୟରେ ଆପଣ ଯାହା ଲେଖିଛନ୍ତି ତାହା ମତେ ବିଶେଷ କଷ୍ଟ ଦେଇଛି। ମୋର ଫଳାଫଳକୁ ଅନ୍ୟମାନେ ବ୍ୟବହାର କରିବା ବିଷୟରେ ମୋ ମନରେ କୌଣସି ଆଶଙ୍କା ନାହିଁ। ଏହି ଫଳ ଓ ଧାରା ସବୁ ଗତ ଆଠ ବର୍ଷ ଧରି ମୁଁ ବାହାର କରିଚାଲିଛି, କିନ୍ତୁ ଆଜି ଯାଏଁ କେହି ସେ ସବୁର ମୂଲ୍ୟ ବୁଝି ନ ଥିଲେ। ପୂର୍ବ ଚିଠିରେ ସେଥିପାଇଁ ଲେଖିଥିଲି ଯେ ଆପଣଙ୍କୁ ହିଁ ମୁଁ ଜଣେ ସହାନୁଭୂତିଶୀଳ ବନ୍ଧୁ ଭାବରେ ପାଇଲି। ମୋ ପାଖରେ ଯାହା ଟିକିଏ ବି ରହିଛି ସେ ସବୁ ମୁଁ ବିନା ଦ୍ୱିଧାରେ ଆପଣଙ୍କୁ ଦେଇଦେବି।

ମାନ୍ଦ୍ରାଜରେ ରାମାନୁଜନ୍‌ଙ୍କ ବିଷୟରେ ସମସ୍ତେ ଜାଣିଗଲେ ଓ ତାଙ୍କ ବିଷୟରେ ଚର୍ଚ୍ଚା କରିବାକୁ ଲାଗିଲେ। ସ୍ୱତନ୍ତ୍ର ଗବେଷଣା ବୃତ୍ତିଧାରୀ ରାମାନୁଜନ୍, କେମ୍ବ୍ରିଜର ବନ୍ଧୁ ରାମାନୁଜନ୍। ଅନେକ ଲୋକ ତାଙ୍କୁ ସମ୍ମାନ ଦେଖାଇବାକୁ ଘରକୁ ଆସିବାରେ ଲାଗିଲେ। ଅଗଷ୍ଟ ମାସରେ ଅଧ୍ୟାପକ ଓ ଛାତ୍ରମାନଙ୍କର ଏକ ବନ୍ଧୁମିଳନରେ ତାଙ୍କ ବିଷୟରେ ଆଲୋଚନା ଚାଲିଲା। ରାମାନୁଜନ୍ କିପରି "ବିନା ବହି ଓ ଶିକ୍ଷକଙ୍କର ସାହାଯ୍ୟରେ" କିପରି ଏଭଳି ବୌଦ୍ଧିକ ଦକ୍ଷତା ହାସଲ କରିଛନ୍ତି ସେ ବିଷୟରେ ସମସ୍ତେ ଚମତ୍କୃତ ହେଉଥିଲେ।

ସେପ୍ଟେମ୍ବର ମାସରେ ନାରାୟଣ ଆୟାର ଜର୍ଣ୍ଣାଲ ଅଫ୍ ଇଣ୍ଡିଆନ୍ ମାଥେମାଟିକାଲ୍ ସୋସାଇଟିକୁ ପ୍ରକାଶନ ପାଇଁ କିଛି ପ୍ରମେୟ ପଠାଇଥିଲେ। ସେଥିରୁ ଗୋଟିକରେ ସେ ଲେଖିଥିଲେ, "ଏହା ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ସ୍ୱତନ୍ତ୍ର ଗବେଷଣା ଛାତ୍ର ଏସ୍. ରାମାନୁଜନ୍‌ଙ୍କ କାମର ଫଳ।"

ଅକ୍ଟୋବର ମାସ 26 ତାରିଖରେ ନାରାୟଣ ଆୟାର ରାମାନୁଜନ୍‌ଙ୍କୁ ନେଇ ରିଚାର୍ଡ୍ ଲିଟଲ୍‌ହେଲ୍‌ସ୍‌ଙ୍କୁ ଭେଟିବାକୁ ଗଲେ। ଲିଟଲ୍‌ହେଲ୍‌ସ୍ ସିଣ୍ଡିକେଟ୍‌ରେ ରାମାନୁଜନ୍‌ଙ୍କୁ ବୃତ୍ତି ଦେବା ପ୍ରସ୍ତାବର ବିରୋଧ କରିଥିଲେ। ରାମାନୁଜନ୍‌ଙ୍କ ସପକ୍ଷରେ ତାଙ୍କୁ ଆଣିବା ପାଇଁ ହୁଏତ ନାରାୟଣ ଆୟାର ଚାହୁଁଥିଲେ। ଲିଟଲ୍‌ହେଲ୍‌ସ୍ ପ୍ରେସିଡେନ୍‌ସି କଲେଜରେ ଅଧ୍ୟାପକ ଥିଲେ ଏବଂ ଅଳ୍ପ ଦିନ ଭିତରେ ମାନ୍ଦ୍ରାଜର ଶିକ୍ଷା ନିର୍ଦ୍ଦେଶକ ହେବାକୁ ଯାଉଥିଲେ। ରାମାନୁଜନ୍ ନିଜର କାମ ବିଷୟରେ ଅନ୍ୟମାନଙ୍କୁ ବୁଝାଇବାରେ ବିଶେଷ ଦକ୍ଷ ନ ଥିଲେ। ତେଣୁ ନାରାୟଣ ଆୟାର ବେଶି କଥାବର୍ତ୍ତା ଚଳାଇଲେ। ଲିଟଲ୍‌ହେଲ୍‌ସ୍ ତାଙ୍କୁ କଥା ଦେଲେ ଯେ ଡିସେମ୍ବର ମାସରେ ସେ ରାମାନୁଜନ୍‌ଙ୍କ କାମ ବିଷୟରେ ପଢାପଢ଼ି କରିବେ।

ନଭେମ୍ବର ମାସରେ ଦିନେ ମାଡ୍ରାସ ଖ୍ରୀଷ୍ଟିଆନ କଲେଜର ଗଣିତ ଅଧ୍ୟାପକ ଇ. ବି. ରସ୍ ବେଶ୍ ଉଦ୍ଦୀପିତ ହୋଇ ତାଙ୍କର ଛାତ୍ରମାନଙ୍କୁ ପଚାରିଲେ, "ରାମାନୁଜନ୍ କ'ଣ ପୋଲାଣ୍ଡ ଦେଶର ଭାଷା ଜାଣନ୍ତି?" ରାମାନୁଜନ୍ ରସ୍‌ଙ୍କୁ କିଛିବର୍ଷ ତଳେ ଭେଟିଥିଲେ। ପୋଲାଣ୍ଡର ଜଣେ ଗଣିତଜ୍ଞଙ୍କର ନିବନ୍ଧ ରସ୍‌ଙ୍କ ପାଖରେ ସେହି ଦିନର ଡାକରେ ପହଞ୍ଚି ଥାଏ। ସେହି ନିବନ୍ଧରେ ଥିବା କିଛି ଫଳ ରାମାନୁଜନ୍‌ଙ୍କ ତ୍ରୈମାସିକ ରିପୋର୍ଟରେ ଆଗରୁ ରସ୍ ଦେଖିଥିଲେ। ରାମାନୁଜନ୍ କିନ୍ତୁ ପୋଲାଣ୍ଡର ଭାଷା ଜାଣି ନ ଥିଲେ।

ସ୍ୱତନ୍ତ୍ର ଗବେଷଣା ବୃତ୍ତିର ସର୍ତ୍ତ ଅନୁସାରେ ରାମାନୁଜନ୍‌ଙ୍କୁ ପ୍ରତି ତିନି ମାସରେ ଗୋଟିଏ ଗୋଟିଏ ରିପୋର୍ଟ ଦାଖଲ କରିବାକୁ ହେଉଥିଲା। 1913 ମସିହାର ଶେଷ ଭାଗ ଓ 1914 ମସିହାର ଆରମ୍ଭ ଭିତରେ ସେ ଠିକ୍ ସମୟରେ ତିନିଟି ରିପୋର୍ଟ ଦେଇଥିଲେ। ଏଗୁଡ଼ିକ ତାଙ୍କର ନୋଟ୍ ଖାତାର କିଛି ସମସ୍ୟା ଉପରେ ଆଧାରିତ ହୋଇଥିଲା ଏବଂ ମୁଖ୍ୟତଃ ସୀମାଯୁକ୍ତ ସମାକଳ ବିଷୟରେ ଥିଲା।

ତାଙ୍କର ପ୍ରଥମ ରିପୋର୍ଟ ତାରିଖ ଥିଲା ଅଗଷ୍ଟ 5, 1913। ସେଥିରେ ସେ ଲେଖିଥିଲେ, "ଏପରି ଅନେକ ସୀମାଯୁକ୍ତ ସମାକଳ ଅଛି ଯାହାର ନିର୍ଦ୍ଦିଷ୍ଟ ମୂଲ୍ୟ ଥିବା କଥା ଜଣାଅଛି। କିନ୍ତୁ ବର୍ତ୍ତମାନ ଜଣାଥିବା ଧାରାଗୁଡ଼ିକର ସାହାଯ୍ୟରେ ସେ ସବୁର ମୂଲ୍ୟ ବାହାର କରିବା ସମ୍ଭବ ନୁହେଁ।" ସେଭଳି ଅନେକର ସମାଧାନ ପାଇଁ ସେ ଏକ ପ୍ରମେୟ ଦେଇଥିଲେ, ପରେ ଯାହା

'ରାମାନୁଜନ୍ସ୍ ମାଷ୍ଟର ଥିଓରେମ୍' ଭାବରେ ପରିଚିତ ହେଲା। ସେହି ପ୍ରଥମ ରିପୋର୍ଟରେ ସେ ଲେଖିଥିଲେ ଯେ ସେଥିରେ ଦିଆଯାଇଥିବା ଫଳଗୁଡ଼ିକ ତାଙ୍କ ପ୍ରମେୟ ସାହାଯ୍ୟରେ ମିଳିଥିବା ଫଳାଫଳର ପ୍ରଥମ କିସ୍ତି ଭାବରେ ଧରାଯାଇପାରେ। ଦ୍ୱିତୀୟ ଓ ତୃତୀୟ ରିପୋର୍ଟରେ ସେ ଅନ୍ୟ ଫଳଗୁଡ଼ିକ ଦେଇଥିଲେ।

ସାଧାରଣ ଗାଣିତିକ କୌଶଳକୁ ପରାଜିତ କରୁଥିବା ସୀମାଯୁକ୍ତ ସମାକଳଗୁଡ଼ିକର ସମାଧାନ ପାଇଁ ରାମାନୁଜନ୍ ନୂଆ କୌଶଳମାନ ବାହାର କରିବାରେ ଲାଗିଥିଲେ। ଏହି କାମ ପାଇଁ ଆଗରୁ ଜଣାଥିବା ଗୋଟିଏ କୌଶଳ ଥିଲା ଫ୍ରୁଲ୍ଲାନି ସମାକଳ ପ୍ରମେୟ। 1896 ମସିହାରେ ରାମାନୁଜନ୍ ଏହାକୁ ଏକ କାଲ୍‌କୁଲସ୍ ବହିରେ ଦେଖିଥିଲେ। ସେହି ସୀମିତ ଦକ୍ଷତାର କୌଶଳକୁ ସେ ଏକ ସାର୍ବତ୍ରିକ ରୂପ ଦେଇ କରି ତା'ର ଉପଯୋଗିତାର ପରିସର ବ୍ୟାପକତର କରିପାରିଥିଲେ। 1902 ମସିହାରେ ଫ୍ରୁଲ୍ଲାନି ପ୍ରମେୟ ଉପରେ ହାର୍ଡି ଏକ ନିବନ୍ଧ ଲେଖିଥିଲେ, କିନ୍ତୁ ଏବେ ରାମାନୁଜନ୍ ତାହାର ଯେଉଁ ଗୁଣକୁ ବୁଝି କାମରେ ଲଗାଇ ପାରିଲେ ହାର୍ଡି ତାହା ଧରିପାରି ନ ଥିଲେ।

ଏହି ଚିଠି ସହିତ ରାମାନୁଜନ୍ ଅନେକ ପ୍ରମାଣ ପଠାଇଲେ, କିନ୍ତୁ ବିଶ୍ଳେଷକ ଗଣିତଜ୍ଞମାନେ ସେଥିରେ ଅନେକ ପ୍ରମାଦ ଦେଖିଲେ। କିନ୍ତୁ ରାମାନୁଜନ୍ ଯେଉଁ ସବୁ ଫଳାଫଳକୁ ସଠିକ ବୋଲି କହୁଥିଲେ ସେସବୁ ପ୍ରକୃତରେ ଠିକ୍ ବୋଲି ସେମାନେ ପରୀକ୍ଷା କରି ଦେଖିଲେ। ରାମାନୁଜନ୍‌ଙ୍କ ଗଣିତ ଉପରେ ଗବେଷଣା କରୁଥିବା ଜଣେ ଆମେରିକୀୟ ଗଣିତଜ୍ଞ ବ୍ରୁସ୍ ବର୍ଣ୍ଡ଼ ପ୍ରମାଣ ଓ ଫଳ ଭିତରେ ଥିବା ଏହି ଦ୍ୱନ୍ଦ୍ୱ ବିଷୟରେ ସାମ୍ପ୍ରତିକ ଗଣିତଜ୍ଞମାନଙ୍କୁ ଉପଦେଶ ଦିଅନ୍ତି, "କେବେ କେବେ ଆମେ ଆମର ଚିନ୍ତାଧାରାକୁ କଠୋରତାର ବନ୍ଧନରୁ ମୁକ୍ତ କରିଦେବା ଉଚିତ, ତା ହେଲେ ସେହି ସ୍ୱାଧୀନ ଚିନ୍ତା ବନସ୍ତ ଭିତରେ ନୂଆ ବାଟ ଖୋଜି ପାଇବା।"

## 4. ନାମାକ୍କାଲ୍‌ର ସ୍ୱପ୍ନ

ଏବେ ରାମାନୁଜନ୍‌ଙ୍କ ଜୀବନ ବେଶ୍ ସୁଖପ୍ରଦ ଥିଲା, କିନ୍ତୁ ଦୂରଦେଶର ବନ୍ଧୁ ହାର୍ଡିଙ୍କ ସହିତ ତାଙ୍କର ଚିଠିପତ୍ରରେ କିଛିଟା ତିକ୍ତତା ଆସିଯାଇଥିଲା ଏବଂ ଚିଠି ଦିଆନିଆ ପ୍ରାୟ ବନ୍ଦ ହୋଇଯାଇଥିଲା। ହାର୍ଡିଙ୍କ ପକ୍ଷରୁ ଏହାର କାରଣ ହୁଏତ ଥିଲା ରାମାନୁଜନ୍‌ଙ୍କର ଇଂଲଣ୍ଡ ନ ଆସିବାର ହତାଶା ବା ଭୌତିକ ଓ ସାଂସ୍କୃତିକ ଦୂରତାକୁ ଡେଇଁ ଭାବର ଆଦାନପ୍ରଦାନ କରିବାରେ କଷ୍ଟ। ଅନ୍ୟ କାମର ଚାପ ଯୋଗୁ ମଧ୍ୟ ହାର୍ଡିଙ୍କ ଶିଥିଳତା ଆସିଥାଇପାରେ। ଏହି ସମୟ ଭିତରେ ରାମାନୁଜନ୍ ଅନ୍ତତଃ ଗୋଟିଏ ଚିଠି ହାର୍ଡିଙ୍କ ପାଖକୁ ଲେଖିଥିଲେ, କିନ୍ତୁ କେତେ ମାସ ଧରି କିଛି ଉତ୍ତର ପାଇ ନ ଥିଲେ।

ଅନେକ ଦିନର ଅପେକ୍ଷା ପରେ ଜାନୁଆରି ମାସ ଆରମ୍ଭରେ ରାମାନୁଜନ୍ ହାର୍ଡିଙ୍କ ପାଖରୁ ଖଣ୍ଡେ ଲମ୍ବା ଚିଠି ପାଇଲେ। ଆଗରୁ ସେ ପଠାଇଥିବା ଗୋଟିଏ ପ୍ରମାଣର ଦୋଷ ଦୁର୍ବଳତା ସବୁ ହାର୍ଡି ସେଥିରେ ଦେଖାଇଥିଲେ। ହାର୍ଡି ଲେଖିଥିଲେ, "ଆପଣ ଦେଖିପାରିବେ ଯେ ପ୍ରମାଣରେ ଥିବା ଅସୁବିଧା ଯୋଗୁ ପ୍ରମେୟଟିରୁ ଭୁଲ ଫଳ ମିଳୁଛି। ଆଶା କରୁଛି, ମୋର ସମାଲୋଚନାରେ ଆପଣ ହତୋତ୍ସାହିତ ହେବେନାହିଁ। ଆପଣଙ୍କ ତର୍କ ଅତି ବିଚକ୍ଷଣ। ଆପଣଙ୍କ ଦାବିକୁ ପ୍ରମାଣିତ କରିପାରିଥିଲେ ଗଣିତର ଇତିହାସରେ ତାହା ସବୁଠାରୁ ଉଲ୍ଲେଖନୀୟ କୃତିତ୍ୱ ହୋଇଥା'ନ୍ତା।"

ସମ୍ବେଦନଶୀଳ ବିଷୟରେ ଅଭିମାନୀ ରାମାନୁଜନ୍‌ଙ୍କୁ ବୁଝାଇବାର ଚେଷ୍ଟାରେ ହାର୍ଡିଙ୍କର କୋମଳତା ଏଥିରୁ ଜାଣିହୁଏ।

ହାଲୁକା ମନେହେଉଥିବା ଭଳି ହାର୍ଡି ଚିଠିରେ ଆଉ ଗୋଟିଏ କଥା ଲେଖିଥଲେ, "ମୋର ଜଣେ ସହକର୍ମୀ ଇ. ଏଚ୍. ନେଭିଲ୍ ଏବେ ମାଡ୍ରାଜରେ କିଛି ଭାଷଣ ଦେବାକୁ ଯାଉଛନ୍ତି। ତାଙ୍କୁ ଭେଟିବାକୁ ଚେଷ୍ଟା କରନ୍ତୁ, ଅଧିକ ପଢ଼ିବା ଦିଗରେ ତାଙ୍କର ଉପଦେଶ ଅତି ମୂଲ୍ୟବାନ ହେବ।" ଏହା କିଛି ମିଛକଥା ନ ଥିଲା, କିନ୍ତୁ ପୂରା ସତ ମଧ୍ୟ ନ ଥିଲା। ରାମାନୁଜନ୍ ଯେ କିଛି ଉପଯୁକ୍ତ ବହି ପଢ଼ନ୍ତୁ ହାର୍ଡି କେବଳ ସେତିକି ଚାହୁଁ ନ ଥିଲେ। ତାଙ୍କର ଲକ୍ଷ୍ୟ ଏହାଠାରୁ ବେଶ୍ ଅଧିକ ଥିଲା ଏବଂ ସେଥିରେ ସେ ନେଭିଲ୍‌ଙ୍କୁ ତାଙ୍କର ହତିଆର କରିଥିଲେ। ରାମାନୁଜନ୍‌ଙ୍କୁ ଇଂଲଣ୍ଡ ନେବାର ଦାୟିତ୍ୱ ସେ ନେଭିଲ୍‌ଙ୍କୁ ଦେଇଥିଲେ।

ମୂଳରୁ ଏହା ହିଁ ହାର୍ଡିଙ୍କର ଲକ୍ଷ୍ୟ ଥିଲା। ସ୍ନୋ କହିଥିଲେ ଯେ ହାର୍ଡି ସେ ବିଷୟରେ ମନ ସ୍ଥିର କଲା ପରେ କେହି ବି ରାମାନୁଜନ୍‌ଙ୍କ ଇଂଲଣ୍ଡ ଆସିବା ବନ୍ଦ କରିପାରି ନ ଥା'ନ୍ତା। ରାମାନୁଜନ୍‌ଙ୍କୁ ଚିଠି ଦେବା ଆଗରୁ ସେ ଇଣ୍ଡିଆ ଅଫିସ୍ ସହିତ ଏହି ବିଷୟରେ ଯୋଗାଯୋଗ କରିସାରିଥିଲେ। କିନ୍ତୁ ମାଡ୍ରାଜରୁ ଉତ୍ତର ଆସିଥିଲା ଯେ ଧାର୍ମିକ କାରଣରୁ ରାମାନୁଜନ୍ ଇଂଲଣ୍ଡ ଯିବେନାହିଁ।

ଏହାର ପ୍ରାୟ ବର୍ଷେ ପରେ ରାମାନୁଜନ୍ ହାର୍ଡିଙ୍କ ପାଖକୁ ଗୋଟିଏ ଚିଠିରେ ସେହି ଘଟଣା ବିଷୟରେ ଲେଖିଥିଲେ। ଚିଠିରେ ରାମାନୁଜନ୍ ଲେଖିଥିଲେ ଯେ 1913 ମସିହା ଫେବୃଆରି ମାସରେ ସେ ଆର୍ଥର୍ ଡେଭିସ୍‌ଙ୍କୁ ଭେଟିବା ପାଇଁ ଖବର ପାଇଥିଲେ। ସାର୍ ଫ୍ରାନ୍‌ସିସ୍‌ଙ୍କ କହିବା ଅନୁସାରେ ରାମାନୁଜନ୍‌ଙ୍କ ଉପରିସ୍ଥ ଅଧିକାରୀ, ନାରାୟଣ ଆୟାର, ତାଙ୍କ ସାଙ୍ଗରେ ଯାଇଥିଲେ। ସେଠାରେ ଡେଭିସ୍ ପଚାରିଲେ ରାମାନୁଜନ୍ ଇଂଲଣ୍ଡ ଯିବାକୁ ପ୍ରସ୍ତୁତ କି?

ରାମାନୁଜନ୍ ସେହି ପ୍ରସ୍ତାବ ବିଷୟରେ ଭାବିବାକୁ ଲାଗିଲେ। ଇଂଲଣ୍ଡ ଯାଇ କ'ଣ ସେ ଗଣିତ ପଢ଼ିବେ? ସେଠାରେ ତ ପରୀକ୍ଷା ଦେବାକୁ ହେବ... ଯଦି ପୁଣି ଫେଲ୍ ହେବେ? କିନ୍ତୁ ସେ କିଛି କହିବା ଆଗରୁ ନାରାୟଣ ଆୟାର, ଯିଏ ଜଣେ ପୁରୁଣାକାଳିଆ ନୈଷ୍ଠିକ ବ୍ରାହ୍ମଣ ଭାବରେ ବିଦେଶ ଯାତ୍ରାର ବିରୋଧୀ ଥିଲେ, କହିଦେଲେ ଯେ ନା, ତାହା ସମ୍ଭବ ହେବନାହିଁ। ଏହା ପରେ ସେ ବିଷୟରେ ଆଉ କୌଣସି କଥା ଉଠି ନ ଥିଲା।

ବିଶ୍ୱାସ କରାଯାଏ ଯେ ଏହି କଥାଟି ରାମାନୁଜନ୍ ପରେ ତାଙ୍କ ମନରୁ ଗଢ଼ି ଲେଖିଥିଲେ। ଇଂଲଣ୍ଡ ନ ଯିବାର ନିଷ୍ପତ୍ତି ଧର୍ମଗତ କାରଣରୁ ଆସିଥିଲା, କିନ୍ତୁ ତାହା ଆସିଥିଲା ରାମାନୁଜନ୍‌ଙ୍କ ପରିବାର, ବନ୍ଧୁବର୍ଗ ଓ ସ୍ୱୟଂ ରାମାନୁଜନ୍‌ଙ୍କଠାରୁ।

ରକ୍ଷଣଶୀଳ ହିନ୍ଦୁଙ୍କ ପାଇଁ ସମୁଦ୍ର ପାରି ହୋଇ ଇଂଲଣ୍ଡ ବା ଆମେରିକା ଯିବାଟା ଏକ ପ୍ରକାରର ପ୍ରଦୂଷଣ ଭାବରେ ଦେଖାଯାଉଥିଲା। ଅତୀତରେ ଏହା କରିଥିବା ଲୋକ ବିଦେଶରେ ଯେତେ ସମ୍ମାନିତ ହୋଇଥିଲେ ବି ଦେଶ ଭିତରେ ତାଙ୍କୁ ମୃତ ଭାବରେ ଗଣା ଯାଉଥିଲା। ଜାତି ହରାଇଥିବାରୁ ତାଙ୍କ ସହିତ କେହି ବି କିଛି ସମ୍ପର୍କ ରଖୁ ନ ଥିଲେ। ରାମାନୁଜନ୍‌ଙ୍କ ବିଦେଶ ଯାତ୍ରା ପ୍ରସ୍ତାବ ଆସିବାର ପ୍ରାୟ ପଚିଶ ବର୍ଷ ପୂର୍ବରୁ ମୋହନ ଦାସ କରମଚାନ୍ଦ ଗାନ୍ଧି ସେହି ଅସୁବିଧାରେ ପଡ଼ିଥିଲେ। ପଢ଼ିବା ପାଇଁ ବିଲାତ ଯିବାକୁ ବାହାରିବାରୁ ତାଙ୍କ ଜାତିର ମୁଖିଆ ଗାନ୍ଧିଙ୍କୁ ପଚାରିଥିଲେ,

"ତମେ କ'ଣ ଜାତିର ଆଦେଶ ମାନିବ ନାହିଁ?'' ସେ ଆଦେଶ ନ ମାନି ଗାନ୍ଧି ବିଦେଶ ଗଲେ ଓ ତାଙ୍କୁ ଜାତିରୁ ବାହାର କରିଦିଆଗଲା। ରାମାନୁଜନ୍‌ଙ୍କ ବେଳକୁ କଟକଣା କିଛି କମିଥିଲା ତଥାପି ଅଧିକାଂଶ ଲୋକ ଏହାକୁ ବର୍ଜନୀୟ ବୋଲି ଭାବୁଥିଲେ। ପାରମ୍ପରିକ ମାନ୍ଦ୍ରାଜରେ କେହି ଏହି ସାମାଜିକ ପ୍ରଥାର ବିରୋଧ କରିବା କଥା ଚିନ୍ତା ବି କରୁ ନ ଥିଲେ। ପିଲା ଦିନରୁ ସାମାଜିକ ପରମ୍ପରାକୁ ସମ୍ମାନ ଦେବାକୁ ଶିଖିଆସିଥିବା ରାମାନୁଜନ୍ ତାହା ବିରୁଦ୍ଧରେ ଏବେ ବିଦ୍ରୋହ କରିବା କଥା କେବେ ବୋଧହୁଏ ଭାବି ନ ଥିଲେ। ତାଙ୍କୁ ଇଂଲଣ୍ଡ ନେବାକୁ ହେଲେ କୌଣସି ବାହ୍ୟ ଶକ୍ତିର ହସ୍ତକ୍ଷେପ ଦରକାର ହେବ।

1914 ମସିହା ଆରମ୍ଭ ହେଉ ହେଉ ହାର୍ଡିଙ୍କ ପ୍ରତିନିଧି ଏରିକ୍ ହାରଲ୍ଡ଼୍ ନେଭିଲ୍ ମାନ୍ଦ୍ରାଜରେ ପହଞ୍ଚିଲେ। ନେଭିଲ୍ ଜଣେ ଦକ୍ଷ ଗଣିତଜ୍ଞ ଥିଲେ, କିନ୍ତୁ ହାର୍ଡିଙ୍କ କହିବା ଅନୁସାରେ ଚହଳ ପକାଇଲା ଭଳି କିଛି କାମ ସେ କରିନାହାନ୍ତି। ସାଧାରଣତଃ ତାଙ୍କ କାମ ଭଲ ହୋଇଥିବ ବୋଲି ସମସ୍ତେ ବିଶ୍ୱାସ କରନ୍ତି। କିନ୍ତୁ ତାହା ଲିଟଲ୍‌ଉଡ୍‌ଙ୍କ କାମ ଭଳି ହୋଇ ନ ଥାଏ। ଲିଟଲ୍‌ଉଡ୍‌ଙ୍କ କ୍ଷେତ୍ରରେ ସମସ୍ତେ ନିଶ୍ଚିତ ଥା'ନ୍ତି ଯେ କାମଟି ଭଲ ହୋଇଥିବ। ହାର୍ଡିଙ୍କ ମତ ଯାହା ହେଉ ନା କାହିଁକି, ପଚିଶ ବର୍ଷ ବୟସ୍କ ନେଭିଲ୍ ସେତେବେଳକୁ ଜଣେ ଗୁରୁତ୍ୱପୂର୍ଣ୍ଣ ଗଣିତଜ୍ଞ ଭାବରେ ମାନ୍ୟତା ପାଉଥିଲେ। ସେ ପୁରୁଣା ଢାଞ୍ଚାର ଟ୍ରାଇପସ୍ ପରୀକ୍ଷା ଦେବାକୁ ଚାହୁଁଥିଲେ, ତେଣୁ ବର୍ଷେ ଆଗରୁ ପରୀକ୍ଷାରେ ବସିଲେ। ତାହା ପରବର୍ଷଠାରୁ ହାର୍ଡିଙ୍କ ସଂସ୍କାର ଲାଗୁ ହୋଇ ବରିଷ୍ଠ ରାଙ୍ଗ୍‌ଲର୍ ପଦବୀ ଉଠିଯିବାର ଥିଲା। ନେଭିଲ୍ ସେହି ପଦବୀ ପାଇଁ ଚେଷ୍ଟା କରିବାକୁ ଚାହୁଁଥିଲେ। କିନ୍ତୁ ସେ ଦ୍ୱିତୀୟ ସ୍ଥାନରେ ରହିଲେ। 1911 ମସିହାରେ ସେ ସ୍ମିଥ୍ ପୁରସ୍କାର ପାଇଲେ ଏବଂ ତା ପର ବର୍ଷ ଟ୍ରିନିଟି କଲେଜର ଫେଲୋ ହେଲେ। ଏବେ 1913 ମସିହାରେ ସେ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟରେ ଅବକଳ ଜ୍ୟାମିତି ବିଷୟ ପଢ଼ାଇବା ପାଇଁ ଆସୁଛନ୍ତି।

ତାଙ୍କର କିନ୍ତୁ ଆଉ ଗୋଟିଏ ଅଘୋଷିତ ଦାୟିତ୍ୱ ମଧ୍ୟ ଥିଲା - ଇଂଲଣ୍ଡ ଆସିବା ପାଇଁ ରାମାନୁଜନ୍‌ଙ୍କୁ ପ୍ରବର୍ତ୍ତାଇବା।

ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ସିନେଟ କକ୍ଷ ବେଶ୍ ବଡ଼ ଓ ଭାସ୍କର୍ଯ୍ୟପୂର୍ଣ୍ଣ ଥିଲା। ବିଭିନ୍ନ ବିଦେଶୀ ଓ ଭାରତୀୟ ଶୈଳୀର ମିଶ୍ରଣରେ ଗଢ଼ା ସେହି ବିଶାଳ କକ୍ଷର ଉଚ୍ଚତା ଥିଲା ଚଉବନ ଫୁଟ। ରଙ୍ଗୀନ କାଚର ଝରକା ଭିତର ପଟରୁ ତା'ର ଆକର୍ଷଣକୁ ବଢ଼ାଉଥିଲା। ସିନେଟ କକ୍ଷରେ 1600 ଲୋକ ବସିବାର ବ୍ୟବସ୍ଥା ଥିଲା। ଆସନ୍ତା ଏକ ମାସ ଧରି ସେଠାରେ ନେଭିଲ୍ ଏକୋଇଶିଟି ଭାଷଣ ଦେବେ ଏବଂ ଦକ୍ଷିଣ ଭାରତର ବିଭିନ୍ନ ଅନୁଷ୍ଠାନର ଗଣିତଜ୍ଞମାନେ ତାହା ଶୁଣିବେ। ସେହିଠାରେ ହିଁ ସେ ରାମାନୁଜନ୍‌ଙ୍କୁ ଭେଟିଲେ।

ପ୍ରଥମ କେତୋଟି ଭାଷଣ ପରେ ରାମାନୁଜନ୍‌ଙ୍କୁ ନେଭିଲ୍‌ଙ୍କ ସହିତ ପରିଚିତ କରାଇ ଦିଆଗଲା। ନେଭିଲ୍‌ଙ୍କ ଭାଷାରେ, "ରାମଚନ୍ଦ୍ର ରାଓଙ୍କ ବର୍ଣ୍ଣନା ଅନୁସାରେ ରାମାନୁଜନ୍‌ଙ୍କ ଚେହେରା ଓ ବେଶଭୂଷା ଅବାଗିଆ ହୋଇଥିବ ବୋଲି ମୁଁ ଆଶା କରୁଥିଲି। କିନ୍ତୁ ତାହା ସେଭଳି ନ ଥିଲା। ମୁଁ ଜଣଙ୍କୁ ଭେଟୁଥିଲି ଯିଏ ଏକ ସମୟରେ କିଛି ମାତ୍ରାରେ ଭୟାଳୁ ଓ ବ୍ୟଗ୍ର ଥିଲେ। ଇଂରାଜୀ

ଭାଷାରେ ସେ ଦୁର୍ବଳ ଥିବାରୁ ତାଙ୍କ ସ୍କୁଲ ପଢ଼ାରେ ବାଧା ଆସିଥିବା କଥା ମୁଁ ଶୁଣିଥିଲି। କିନ୍ତୁ ତା'ର ଦଶବର୍ଷ ପରେ ଆଜି ତାହା ଖୁବ୍ ବିକଶିତ। ଏବେ ସେ ସାବଲୀଳ ଭାବରେ ଇଂରାଜୀ କହୁଛନ୍ତି ଏବଂ ତାଙ୍କ ଭଳି ବ୍ୟାପକ ଓ ଗଭୀର ଶବ୍ଦଜ୍ଞାନ ଥିବା ଖୁବ୍ କମ୍ ଲୋକଙ୍କୁ ମୁଁ ଭେଟିଛି।''

ରାମାନୁଜନ୍‌ଙ୍କ ନୋଟ୍ ଖାତା ଧରି ଅନ୍ତତଃ ତିନି ଥର ସେ ଦୁହେଁ ବସିଲେ। ତୃତୀୟ ଥର କଥାବାର୍ତ୍ତା କଲା ପରେ ରାମାନୁଜନ୍ ପଚାରିଲେ ନେଭିଲ୍ ତାଙ୍କ ଖାତା ଘରକୁ ନେଇ ଅବସର ସମୟରେ ଭଲକରି ଦେଖିବାକୁ ଚାହୁଁଛନ୍ତି କି? ଏହା ନେଭିଲ୍‌ଙ୍କୁ ଅତି ବିସ୍ମିତ କଲା। ଏହାକୁ ସେ ତାଙ୍କ ଜୀବନର ସବୁଠାରୁ ବଡ଼ ଓ ଅପ୍ରତ୍ୟାଶିତ ପ୍ରଶଂସା ବୋଲି ମନେକଲେ। ନେଭିଲ୍ ଭାବୁଥିଲେ ଯେ ରାମାନୁଜନ୍‌ଙ୍କର ସେହି ଅମୂଲ୍ୟ ଖାତା କେବେ ବୋଧହୁଏ ତାଙ୍କର ପାଖ ଛାଡ଼ିନାହିଁ। କୌଣସି ଭାରତୀୟ ତାକୁ ବୁଝିପାରୁ ନ ଥିଲେ, କେହି ଇଂରେଜ ଏହା ପାଇବାକୁ ବିଶ୍ୱାସଯୋଗ୍ୟ ନ ଥିଲେ।

ନେଭିଲ୍ ଭାବିଲେ ଯେ ମାନ୍ଦ୍ରାଜରେ ଥିବା ଇଂରେଜମାନଙ୍କୁ ରାମାନୁଜନ୍ ବିଶ୍ୱାସ କରୁ ନ ଥିଲେ। ହାର୍ଡିଙ୍କୁ ବି ହୁଏତ ସେ ବିଶ୍ୱାସ କରୁ ନ ଥିଲେ, କାରଣ ଆଉ ଗୋଟିଏ ମହାଦେଶରେ ଥିବା ସେହି ମଣିଷଙ୍କ ସହିତ ତାଙ୍କର ପରିଚିତି କେବଳ ପତ୍ର ମାଧ୍ୟମରେ ଥିଲା। ନେଭିଲ୍ କିନ୍ତୁ ଥିଲେ ସଦ୍ୟ ପରିଚିତ, ସେ ଆସିଥିଲେ ଦୂର ଦେଶରୁ କିନ୍ତୁ ଏବେ ରାମାନୁଜନ୍‌ଙ୍କ ପାଖରେ। ସେ ଦୁହିଁଙ୍କର ବୟସ ପ୍ରାୟ ସମାନ, ଶୁଦ୍ଧ ଗଣିତଜ୍ଞ ଭାବରେ ନେଭିଲ୍ ରାମାନୁଜନ୍‌ଙ୍କ କାମକୁ ବୁଝିବା ପାଇଁ ବେଶ୍ ସମର୍ଥ ଓ ତାହା ପ୍ରତି ସହାନୁଭୂତିଶୀଳ। ତିନି ଦିନ ଧରି ସେ ରାମାନୁଜନ୍‌ଙ୍କ ସାରା ଜୀବନର କାମର ଫଳାଫଳକୁ ଘାଣ୍ଟୁଛନ୍ତି, ଏବେ ନେଭିଲ୍ ତାଙ୍କର ବିଶ୍ୱାସଭାଜନ।

ନେଭିଲ୍ ମନେକଲେ ଯେ ଏବେ ହିଁ ସମୟ ଆସିଛି - ସେ ପଚାରିଲେ ରାମାନୁଜନ୍ କେମ୍ବ୍ରିଜ ଆସିବେ କି? ନାସ୍ତିବାଚକ ଉତ୍ତର ପାଇଁ ନେଭିଲ୍ ପ୍ରସ୍ତୁତ ଥିଲେ ଏବଂ ତା'ର ସାମନା କରିବା ପାଇଁ ଅନେକ ଯୁକ୍ତି ପ୍ରସ୍ତୁତ କରି ରଖିଥିଲେ। କିନ୍ତୁ ସେ ସବୁ କିଛି କାମରେ ଲାଗିଲାନାହିଁ। ନେଭିଲ୍‌ଙ୍କୁ ବିସ୍ମିତ କରି ରାମାନୁଜନ୍ କହିଲେ ଯେ ଏବେ ସେ ପ୍ରସ୍ତୁତ, ତାଙ୍କ ପରିବାରର ବିରୋଧ ମଧ୍ୟ ଏବେ ଦୂର ହୋଇଯାଇଛି।

x x x

କେଉଁ ଅଲୌକିକ ଶକ୍ତି ଏହି ପରିବର୍ତ୍ତନ ଆଣି ପାରିଛି?

ଗୋଟିଏ ମତରେ ଏହା ଥିଲା ରାମାନୁଜନ୍‌ଙ୍କ ପରିବାରର ବନ୍ଧୁ କେ. ନରସିଂହ ଆୟେଙ୍ଗାରଙ୍କ ପ୍ରଭାବ। 1911 ମସିହାରେ ରାମାନୁଜନ୍ ମାନ୍ଦ୍ରାଜରେ ତାଙ୍କ ଘରେ ରହୁଥିଲେ ଏବଂ ପରେ ମଧ୍ୟ ତାଙ୍କ ସହିତ ନିୟମିତ ଯୋଗାଯୋଗ ରଖିଥିଲେ। ସେ ହିଁ ରାମାନୁଜନ୍‌ଙ୍କ ମା'ଙ୍କର ମନ ବଦଳାଇ ପାରିଥିଲେ। ଏହା ଅତି ଗୁରୁତ୍ୱପୂର୍ଣ୍ଣ ଥିଲା କାରଣ କୋମଲତାମ୍ମାଲଙ୍କ ବିରୋଧ ଖୁବ୍ ବଡ଼ ବାଧା ଥିଲା। ଶେଷୁ ଆୟାର ମଧ୍ୟ ମା'ଙ୍କ ଉପରେ ବେଶ୍ ପ୍ରଭାବ ପକାଇଥିଲେ ଏବଂ ରାମସ୍ୱାମୀ ଆୟାର ଓ ରାମଚନ୍ଦ୍ର ରାଓ ରାମାନୁଜନ୍‌ଙ୍କ ମାନସିକ ଦ୍ୱିଧାକୁ ଦୂର କରିପାରିଥିଲେ। ରାମାନୁଜନ୍‌ଙ୍କୁ ରାଜି କରାଇବାରେ ବଡ଼ ଭୂମିକା ତୁଲାଇଥିବା ଆଉ ଜଣେ ଥିଲେ ବାଙ୍ଗାଲୋରର ଗଣିତଜ୍ଞ ଓ ଭାରତୀୟ ଗଣିତ ସମାଜ ପତ୍ରିକାର ସମ୍ପାଦକ ଏମ୍. ଟି. ନାରାୟଣ ଆୟେଙ୍ଗାର। ତିନିବର୍ଷ ତଳେ ରାମାନୁଜନ୍‌ଙ୍କ

ପ୍ରଥମ ନିବନ୍ଧର ପ୍ରକାଶନ ପାଇଁ ବିଶେଷ କାମ କରିଥିଲେ। ନାରାୟଣ ଆୟେଙ୍ଗାର ନିଜେ ଜଣେ ନୈଷ୍ଠିକ ବ୍ରାହ୍ମଣ ଥିଲେ, ତେଣୁ ରାମାନୁଜନ୍‌ଙ୍କ ଇଂଲଣ୍ଡ ଯିବା ସପକ୍ଷରେ ତାଙ୍କର ଯୁକ୍ତି ବିଶେଷ ଫଳପ୍ରଦ ହୋଇଥିଲା।

ରାମାନୁଜନ୍ ଓ ମା'ଙ୍କ ମନ ବଦଳାଇବାରେ ଏହି ସବୁ ଚେଷ୍ଟା ସଫଳ ହୋଇଥିଲେ ମଧ୍ୟ ସମାଜ ପାଇଁ ତାହା ଗ୍ରହଣୀୟ ହେବା ପାଇଁ ଆଉ କିଛି ଦରକାର ଥିଲା। ତାହା ଆସିଲା, ନେଭିଲ୍‌ଙ୍କ ବର୍ଣ୍ଣନାରେ, "ମା'ଙ୍କ ସ୍ୱପ୍ନରେ, ସେ ଦେଖିଲେ ଯେ ରାମାନୁଜନ୍ ୟୁରୋପୀୟଙ୍କ ମେଳରେ ଛିଡ଼ା ହୋଇଛନ୍ତି ଏବଂ ରାମାନୁଜନ୍‌ଙ୍କୁ ତାଙ୍କ ଜୀବନର ଲକ୍ଷ୍ୟ ପୂରଣ କରିବା ଦିଗରେ ଆଉ ବାଧା ନ ଦେବା ପାଇଁ ଦେବୀ ନାମଗିରି ତାଙ୍କୁ ଆଦେଶ ଦେଉଛନ୍ତି।" ବିଭିନ୍ନ ମୁହଁରେ ଏହି କଥା ବିଭିନ୍ନ ପ୍ରକାରରେ ପ୍ରଚାରିତ ହେଲା, କିନ୍ତୁ ରାମାନୁଜନ୍‌ଙ୍କ ବିଦେଶ ଯାତ୍ରା ପ୍ରସ୍ତାବ ଯେ ନାମାକ୍କାଲ୍‌ର ଦେବୀ ନାମଗିରି ନିଜେ ଅନୁମୋଦନ କରିଛନ୍ତି ତାହା ସମସ୍ତେ ମାନିନେଲେ।

କୁମ୍ଭକୋଣମ୍‌ର ଅଶୀ ମାଇଲ ପଶ୍ଚିମକୁ ନାମାକ୍କାଲ୍ ପାହାଡ଼ ଚାରିପାଖର ସମତଳ ଭୂମିରୁ ହଠାତ ମୁଣ୍ଡ ଟେକିଛି। ଏହି ଅଞ୍ଚଳରେ ତାଳ ଓ କଦଳୀ ବଗିଚା ଓ ଧାନ ଖେତମାନ ଦେଖାଯାଏ, କିନ୍ତୁ କାବେରୀ ପାଖ ଅଞ୍ଚଳ ତୁଳନାରେ ବେଶ୍ କମ୍। ମାଟି ବଦଳରେ ଏଠାର ଘରଗୁଡ଼ିକ ପାଖ ପଡ଼ିଆ ଓ ପାହାଡ଼ରୁ ମିଳୁଥିବା ପଥରରେ ତିଆରି। ଏହିଠାରେ ରହିଛି ନାମାକ୍କାଲ୍ ସହର। ପ୍ରାୟ ସାତ ହଜାର ଜନସଂଖ୍ୟାର ଏହି ସହର କାରୁର୍ ରେଳ ଷ୍ଟେସନ୍‌ଠାରୁ କୋଡ଼ିଏ ମାଇଲ୍ ଦୂର। କାରୁର୍ ପାଖରେ ରାମାନୁଜନ୍‌ଙ୍କ ମା'ଙ୍କ ମୂଳ ଘର ଥିଲା।

ସହରଟି ଗୋଟିଏ ବିରାଟ ପଥର ଖଣ୍ଡର ପାଦଦେଶରେ ଗଢ଼ି ଉଠିଛି। ଧଳା ପଥର ଖଣ୍ଡକ ପ୍ରାୟ ଦୁଇଶହ ଫୁଟ ସିଧା ହୋଇ ଉଠିଛି। ତାର ପରିଧି ପ୍ରାୟ ଅଧ ମାଇଲ। ଯୁଗ ଯୁଗ ଧରି ବର୍ଷା ଓ ଚେରର କାମରୁ ତା'ର ପୃଷ୍ଠରେ ଅନେକ ଫାଟ ଓ ଛୋଟ ଗୁମ୍ଫା ସୃଷ୍ଟି ହୋଇଛି। ଏହାର ଉପରକୁ ଯିବା ପାଇଁ ଦକ୍ଷିଣ-ପଶ୍ଚିମ ପଟରେ ପଥର କଟା ହୋଇ ସରୁଆ ପାହାଚମାନ ରହିଛି। ଉପରେ ରହିଛି ଗୋଟିଏ ପୁରୁଣା ଦୁର୍ଗ ଯାହାକୁ ତିନିଫୁଟ ମୋଟେଇର ଇଟା ପାଚିରି ସୁରକ୍ଷିତ କରିଛି। ଦୂରରୁ ଦେଖୁଥିବା କେଉଁ ଲୋକକୁ ଖମ୍ବ ଭଳି ଏହି ସଳଖ ଧଳା ପଥର କପାଳର ତିଳକ ଗାର - ନାମାମ୍ - ଭଳି ଦେଖାଗଲା। ସେଥିରୁ ଆସିଲା ତା'ର ନାଁ - ନାମାକ୍କାଲ୍।

1913 ମସିହା ଡିସେମ୍ବର ମାସରେ ରାମାନୁଜନ୍, ତାଙ୍କ ମା କୋମଳତାମ୍ମାଲ୍, ନାରାୟଣ ଆୟାର ଓ ନାରାୟଣଙ୍କ ପୁଅ ନାମାକ୍କାଲ୍ ଆସିବାକୁ ବାହାରିଲେ। ଜାନକୀ ମଧ୍ୟ ଆସିବାକୁ ଚାହୁଁଥିଲେ, କିନ୍ତୁ ସେ ବେଶ୍ ସାନ ବୋଲି କହି ରାମାନୁଜନ୍ ତାଙ୍କୁ ସାଙ୍ଗରେ ଆଣିଲେନାହିଁ। ସାଲେମ୍‌ଠାରେ ସେମାନେ ରେଳଗାଡ଼ିରୁ ଓହ୍ଲାଇଲେ ଏବଂ ରାମସ୍ୱାମୀ ଆୟାରଙ୍କ ଘରେ ରହିଲେ। ଭାରତୀୟ ଗଣିତ ସମାଜର ପ୍ରତିଷ୍ଠାତା ରାମସ୍ୱାମୀ ଆୟାର ଏବେ ସେଠାରେ ଡେପୁଟି କଲେକ୍ଟର ଥିଲେ। ସେଠାରୁ କେବଳ ରାମାନୁଜନ୍ ଓ ରାମସ୍ୱାମୀ ଆୟାର ତିରିଶ ମାଇଲ ଦୂରରେ ଥିବା ନାମାକ୍କାଲକୁ ଯାଇଥିଲେ। ତାଙ୍କର ଏହି ଶେଷ ପର୍ଯ୍ୟାୟର ଯାତ୍ରା ପାଇଁ ସେମାନେ ବୋଧହୁଏ ବଳଦଗାଡ଼ି ବ୍ୟବହାର କରିଥିଲେ।

ନାମାକ୍କାଲ୍ ସହର ଭିତର ଦେଇ ସେମାନେ ନରସିଂହ ମନ୍ଦିରର ବିଶାଳ ମୁଖ୍ୟଦ୍ୱାର ପାଖରେ ପହଞ୍ଚିଲେ। ସେହି ମନ୍ଦିର ପାଖରେ ଆଉ ଗୋଟିଏ ଛୋଟ ମନ୍ଦିରରେ ନରସିଂହଙ୍କ ସହଧର୍ମିଣୀ ଦେବୀ ନାମାକ୍କାଲ ପୂଜା ପାଉଥିଲେ।

ରାମାନୁଜନ୍‌ଙ୍କ ପରିବାର ଭଳି ଆହୁରି ଅନେକ ପରିବାର ଦେବୀଙ୍କ ଉପରେ ଅଟଳ ବିଶ୍ୱାସ ରଖୁଥିଲେ। ସପ୍ତାହର ନିର୍ଦ୍ଦିଷ୍ଟ ଦିନରେ ଅନେକ ଉନ୍ମାଦ ସ୍ତ୍ରୀଲୋକ ତାଙ୍କ ଦେହରୁ ପ୍ରେତାତ୍ମା ଛଡ଼ାଇବା ପାଇଁ ସେଠାରେ ପହଞ୍ଚନ୍ତି। ସେମାନଙ୍କର ଉନ୍ମାଦନାରେ ମନ୍ଦିର କମ୍ପୁଥାଏ, କିନ୍ତୁ ପୂଜକଙ୍କର ମନ୍ତ୍ର ପାଣି ଛିଞ୍ଚା ପରେ ସମସ୍ତେ ଶାନ୍ତ ହୋଇଯା'ନ୍ତି। ଧୂପର ଧୂଆଁରେ ମନ୍ଦିର ଭରିଥାଏ, କାନ୍ଥ କଳା ପଡ଼ିଥାଏ। ସେଠାରେ ତିନି ରାତି ଧରି ରାମାନୁଜନ୍ ଓ ନାରାୟଣ ଆୟାର ଅଧିଆ ପଡ଼ିଲେ। ପ୍ରଥମ ଦୁଇ ରାତି ନିଷ୍ଫଳ ଗଲା। ତୃତୀୟ ରାତିରେ ରାମାନୁଜନ୍ ନିଦରୁ ଉଠି ନାରାୟଣ ଆୟାରଙ୍କୁ ଉଠାଇଲେ ଏବଂ କହିଲେ ଯେ ଏକ ଉଜ୍ଜ୍ୱଳ ଆଲୋକର ଝଲକ ଦେଖିଲେ। ତାହା ସହିତ ବିଦେଶ ଯିବାର କଟକଣାରୁ ମୁକ୍ତ ହେବାର ଆଦେଶ ମଧ୍ୟ ସେ ପାଇଲେ।

ନାରାୟଣ ଆୟାରଙ୍କ ପରିବାର ବିଶ୍ୱାସ କରୁଥିଲେ ଯେ ଏଭଳି କିଛି ନିଶ୍ଚୟ ଘଟିବ। କାରଣ ସେମାନେ ରାମାନୁଜନ୍‌ଙ୍କ ମନୋଭାବକୁ ଭଲ କରି ବୁଝିଥିଲେ। ତାଙ୍କ ମନରେ ଥିବା ଦ୍ୱନ୍ଦ୍ୱ - ଇଂଲଣ୍ଡ ଯିବା ପାଇଁ ପ୍ରବଳ ଆଗ୍ରହ ଏବଂ ଦେବୀ ନାମଗିରିଙ୍କ ପ୍ରତି ପ୍ରଗାଢ଼ ଭକ୍ତି - ବିଷୟରେ ସେମାନେ ଜାଣିଥିଲେ। ତେଣୁ ଦେବୀଙ୍କ ପାଖରେ ରାମାନୁଜନ୍‌ଙ୍କ ସହିତ ରହି ନାରାୟଣ ଆୟାର ସ୍ୱପ୍ନର ଏହିଭଳି ଅର୍ଥ ବାହାର କରିବାରେ ସହାୟକ ହୋଇଥିଲେ।

ରାମାନୁଜନ୍ ତାଙ୍କର ନିଷ୍ପତ୍ତିକୁ ଦୈବୀ ପ୍ରେରଣା ଭାବରେ ସବୁବେଳେ ବର୍ଣ୍ଣନା କରୁଥିଲେ। ଅସଲ ଘଟଣା କ୍ରମ ଥିଲା ଏହିପରି: 1913 ମସିହା ଫେବୃଆରି ମାସରେ ରାମାନୁଜନ୍ ଇଂଲଣ୍ଡ ଯିବାକୁ ମନା କରିଥିଲେ, ସେହି ବର୍ଷ ଡିସେମ୍ବର ମାସରେ ସେ ନାମାକ୍କାଲ ଗଲେ, ଏହାର ଅଳ୍ପ ଦିନ ପରେ ସେ ନେଭିଲ୍‌ଙ୍କୁ ଭେଟିଲେ ଏବଂ ଇଂଲଣ୍ଡ ଯିବା ପାଇଁ ସମ୍ମତି ଜଣାଇଲେ। ଶେଷରେ 1914 ମସିହା ଜାନୁଆରି ମାସ ବାଇଶ ତାରିଖରେ ସେ ହାର୍ଡିଙ୍କ ପାଖକୁ ଚିଠି ଲେଖିଲେ ଯେ ସେ ଓ ଲିଟଲ୍‌ଉଡ୍ ଦୟାକରି ତାଙ୍କୁ କିଛି ମାସ ଭିତରେ ଇଂଲଣ୍ଡ ନେବାର ବନ୍ଦୋବସ୍ତ କରନ୍ତୁ।

କେମ୍ବ୍ରିଜରେ ସମସ୍ତେ ବୁଝିଥିଲେ ଯେ ଗଲା ଏକ ବର୍ଷ ଧରି ରାମାନୁଜନ୍ ନିଜେ ହିଁ ଇଂଲଣ୍ଡ ଆସିବା ପ୍ରସ୍ତାବର ବିରୋଧ କରୁଥିଲେ। କିନ୍ତୁ ରାମାନୁଜନ୍ ଏବେ ସେହି ମତଠାରୁ ନିଜକୁ ଦୂରେଇ ନେବାକୁ ଚେଷ୍ଟା କଲେ। ଇଂଲଣ୍ଡ ଯିବାର ପ୍ରସ୍ତାବ ପ୍ରଥମ ଥର ପାଇଁ ଶୁଣୁଥିବା ଭଳି ସେ ହାର୍ଡିଙ୍କ ପାଖକୁ ଲେଖିଲେ, "ଆପଣଙ୍କ ଚିଠିରୁ ଓ ନେଭିଲ୍‌ଙ୍କ କଥାରୁ ଏବେ ମୁଁ ବୁଝୁଛି ଯେ ମତେ କେମ୍ବ୍ରିଜ ନେବା ପାଇଁ ଆପଣ ବ୍ୟଗ୍ର। ଆଗରୁ ମୋ ପାଖକୁ ଏହି କଥା ଲେଖିଥିଲେ ମୁଁ ମୋର ମତାମତ ସ୍ପଷ୍ଟ ଭାବରେ ଆପଣଙ୍କୁ ଜଣାଇଥା'ନ୍ତି।" ପୂର୍ବ ବର୍ଷର ଫେବୃଆରି ମାସରେ ଡେଭିସ୍‌ଙ୍କ ସହିତ ଆଲୋଚନାର ଫଳାଫଳ ପାଇଁ ସେ 'ତାଙ୍କ ଉପରିସ୍ଥ ଅଧିକାରୀ'ଙ୍କୁ ଦାୟୀ କରିଥିଲେ। ଆଗର ଚିଠିଗୁଡ଼ିକର ଭାଷା ମଧ୍ୟ ଉପରିସ୍ଥ ଅଧିକାରୀଙ୍କର ଥିଲା ବୋଲି ସେ ଇଙ୍ଗିତ କରିଥିଲେ। ତାଙ୍କର ନିଜର ଓ ତାଙ୍କ ପରିବାରର ଧାର୍ମିକ ବିଶ୍ୱାସ ଏବଂ ନାମାକ୍କାଲ୍ ଯାତ୍ରା ବିଷୟରେ କିନ୍ତୁ ସେ କିଛି ବି କହି ନ ଥିଲେ।

ଏହି ପୂରା ଯୋଜନାଟି ନାରାୟଣ ଆୟାରଙ୍କର ହୋଇ ଥାଇପାରେ। ଏଥିପାଇଁ ଅନ୍ତତଃ ତାଙ୍କର ସହମତି ଯେ ଥିଲା ତାହା ନିଶ୍ଚିତ। ଅବଶ୍ୟ ଏହା ଏକମାତ୍ର ଘଟଣା ନ ଥିଲା ଯେଉଁଠି ଲଜ୍ଜାକର ପରିସ୍ଥିତିରୁ ମୁକୁଳିବା ପାଇଁ ରାମାନୁଜନ୍ ସତକୁ ବଙ୍କାଇ ଦେଇଥିଲେ। 1914 ମସିହାର ଆରମ୍ଭରେ, ଇଂଲଣ୍ଡ ଯିବାର ଠିକ୍ ଆଗରୁ, ସେ କୁମ୍ଭକୋଣମ୍ ଯାଇଥିଲେ। ସେଠାରେ ବନ୍ଧୁ ଅନନ୍ତରମଣ ଓ ସୁବ୍ରମନ୍ୟନ୍‌ଙ୍କ ପରିବାରଠାରୁ ବିଦାୟ ମାଗିଲା ବେଳେ କହିଥିଲେ ଯେ ସେ କଲିକତା ଯାଉଛନ୍ତି। ଏଭଳି ମିଛ କହିବା ପରିସ୍ଥିତି ଦୃଷ୍ଟିରୁ ବିଜ୍ଞ କଥା ଥିଲା। କାରଣ ସତ କଥା ଜାଣିଲା ପରେ ସେହି ବନ୍ଧୁମାନଙ୍କ ବାପାଙ୍କର ଡର ହେଲା ଯେ ତାଙ୍କ ପିଲାମାନେ ମଧ୍ୟ ରାମାନୁଜନ୍‌ଙ୍କୁ ଅନୁସରଣ କରିବେ, ତେଣୁ ମାନ୍ଦ୍ରାଜ ଯାଇ ଇଂଲଣ୍ଡ ନ ଯିବା ପାଇଁ ରାମାନୁଜନ୍‌ଙ୍କୁ ବୁଝାଇବାକୁ ଚେଷ୍ଟା କଲେ।

ରାମାନୁଜନ୍‌ଙ୍କ ଇଂଲଣ୍ଡ ଯିବା ବାଟରୁ ମୁଖ୍ୟ ବାଧା ହଟିଯିବା ପରେ ନେଭିଲ୍ ଅନ୍ୟ ବିଷୟ ପ୍ରତି ଧ୍ୟାନ ଦେଲେ। ଇଂଲଣ୍ଡ ଯିବାର ଓ ସେଠାରେ ଚଳିବାର ଖର୍ଚ୍ଚ? ସେ ବିଷୟରେ ସବୁ ବ୍ୟବସ୍ଥା କରାଯିବ ବୋଲି ନେଭିଲ୍ କହିଲେ। ତାଙ୍କର ଇଂରାଜୀ ଏତେ ଭଲ ନୁହେଁ ବୋଲି ରାମାନୁଜନ୍‌ଙ୍କର ଆଶଙ୍କା ଥିଲା। ତାହା ଯଥେଷ୍ଟ ଭଲ ବୋଲି ନେଭିଲ୍ ତାଙ୍କୁ ଆଶ୍ୱାସନା ଦେଲେ। ଶାକାହାରୀ ଖାଦ୍ୟ ଅଭ୍ୟାସ? ତାହା ପାଇଁ ଉପଯୁକ୍ତ ବ୍ୟବସ୍ଥା କରାଯିବ। ଶେଷରେ ଉଠିଲା ରାମାନୁଜନ୍‌ଙ୍କର ସବୁଠାରୁ ବଡ଼ ଭୟର କଥା - ୟୁରୋପ ଯାଉଥିବା ସବୁ ଭାରତୀୟ ଛାତ୍ରଙ୍କ ଭଳି ତାଙ୍କୁ ପରୀକ୍ଷା ଦେବାକୁ ହେବ କି? କଲେଜରେ ପ୍ରାୟ ସବୁ ପରୀକ୍ଷାରେ ଫେଲ୍ ହୋଇଥିବା ରାମାନୁଜନ୍‌ଙ୍କ ମନରେ ପରୀକ୍ଷା ପ୍ରତି ଭୟ ରହିଥିଲା, ତେଣୁ ଏ ବିଷୟରେ ସେ ନିଶ୍ଚିତ ହେବାକୁ ଚାହୁଁଥିଲେ। ନା, ନେଭିଲ୍ ନିର୍ଭର ପ୍ରତିଶୃତି ଦେଲେ, ତାଙ୍କୁ କୌଣସି ପରୀକ୍ଷା ଦେବାକୁ ପଡ଼ିବନାହିଁ।

ଇଂଲଣ୍ଡ ଯିବା ପାଇଁ ରାଜି ହେବା ପରେ ମଧ୍ୟ ରାମାନୁଜନ୍ ଅନେକ ବିରୋଧର ସମ୍ମୁଖୀନ ହେଲେ। ତାଙ୍କ ଶଶୁର ପ୍ରଶ୍ନ ଉଠାଇଲେ ଯେ ସେ ଭାରତରେ କାହିଁକି ଗଣିତ କାମ କରିପାରିବେନାହିଁ। ତାଙ୍କ ମା'ଙ୍କ ମନରେ ଅନେକ ଆଶଙ୍କା ଆସିଲା - ଇଂଲଣ୍ଡର ଥଣ୍ଡା ପାଗ ରାମାନୁଜନ୍‌ଙ୍କ ଦୁର୍ବଳ ସ୍ୱାସ୍ଥ୍ୟ ପ୍ରତି ବିପଦ ଆଣିବ; ଭଲ ଭାରତୀୟ ଖାଦ୍ୟ ସେଠାରେ ମିଳିବନାହିଁ, ତେଣୁ ଶାକାହାରୀ ରହିବା କଷ୍ଟକର ହେବ; ରାମାନୁଜନ୍ ସ୍ଥାନୀୟ ଲୋକଙ୍କର ବିଦ୍ୱେଷର ଶିକାର ହେବେ; ଇଂରେଜ ଝିଅମାନେ ତାଙ୍କୁ ବଶୀଭୂତ କରିନେବେ। (ମାନ୍ଦ୍ରାଜ ଛାଡ଼ିବା ଆଗରୁ କିଛି ଇଂରେଜ ମହିଳା ବିଚକ୍ଷଣ କଳାମଣିଷ ରାମାନୁଜନ୍‌ଙ୍କୁ ଭେଟିବାକୁ ଆସିଥିଲେ ଏବଂ ତାଙ୍କ ସହିତ ହାତ ମିଳାଇଥିଲେ। ଏହା ତାଙ୍କ ମା'ଙ୍କୁ ବିବ୍ରତ କରିଥିଲା।)

ରାମାନୁଜନ୍‌ଙ୍କର କିଛି ସାଥୀ ଅନ୍ୟ କାରଣରୁ ତାଙ୍କ ଇଂଲଣ୍ଡ ଯିବାକୁ ବିରୋଧ କରୁଥିଲେ। ସେମାନେ ଭାବୁଥିଲେ ଯେ ରାମାନୁଜନ୍‌ଙ୍କ କୃତିର ଯେଉଁ ସମ୍ମାନ ମାନ୍ଦ୍ରାଜ ପାଇବା କଥା ତାକୁ ଏବେ କେଉଁ ଇଂରେଜ ବିଶ୍ୱବିଦ୍ୟାଳୟ ନେଇଯିବାକୁ ଚେଷ୍ଟା କରୁଛି। ନେଭିଲ୍ ସେମାନଙ୍କୁ ଉପେକ୍ଷା କରିବାକୁ ଚାହୁଁ ନ ଥିଲେ, କାଳେ ସେମାନେ ପରେ ରାମାନୁଜନ୍‌ଙ୍କୁ ବାଧା ଦେବେ। ତେଣୁ ସେ ସେହି ବିରୋଧୀ ସାଥୀମାନଙ୍କୁ ଭେଟି ବୁଝାଇଲେ ଯେ ରାମାନୁଜନ୍‌ଙ୍କ ନିଜର ଭଲ ପାଇଁ ସେ ଇଂଲଣ୍ଡ ଯିବା ଦରକାର। କେବଳ ସେଠାରେ ହିଁ ରାମାନୁଜନ୍ ଶୀର୍ଷ ସ୍ଥାନରେ ପହଞ୍ଚି ପାରିବେ।

ଭାରତ ପଟର କାମ ଶେଷ କରି ନେଭିଲ୍ ଅର୍ଥ ବ୍ୟବସ୍ଥା କରିବା ପାଇଁ ହାର୍ଡିଙ୍କ ପାଖକୁ ଲେଖିଲେ। ମାନ୍ଦ୍ରାଜରେ କିଛି ଟଙ୍କା ଯୋଗାଡ଼ କରିବାକୁ ନେଭିଲ୍ ଚେଷ୍ଟା କରିବେ, କିନ୍ତୁ ସେଥିରେ ସେ ସଫଳ ନ ହେଲେ କୌଣସି ଉପାୟରେ ତାହା ଇଂଲଣ୍ଡରେ ଯୋଗାଡ଼ କରିବାକୁ ହେବ। "ଟଙ୍କାର ଅସୁବିଧା ଏହି କାମରେ ଯେପରି ବ୍ୟାଘାତ ସୃଷ୍ଟି ନ କରେ।"

ହାର୍ଡି ନେଭିଲ୍‌ଙ୍କ ଚିଠି ଇଣ୍ଡିଆ ଅଫିସକୁ ପଠାଇ ଦେଲେ ଏବଂ ସେଠାରୁ ଭାରତୀୟ ଛାତ୍ରଙ୍କ ଦାୟିତ୍ୱରେ ଥିବା ସଚିବ ସି. ମାଲେଟ୍ ବ୍ୟସ୍ତ ହୋଇ ଉତ୍ତର ଦେଲେ, "ଶ୍ରୀ ନେଭିଲ୍‌ଙ୍କ ପ୍ରସ୍ତାବ ଶୁଣି ମୋର ଭୟ ଆସୁଛି ଯେ ରାମାନୁଜନ୍‌ଙ୍କର ଚଳିବା ପାଇଁ କୌଣସି ଆର୍ଥିକ ବ୍ୟବସ୍ଥା ନ କରି ସେ ତାଙ୍କୁ ଆସିବା ପାଇଁ ଉତ୍ସାହିତ କରୁଛନ୍ତି।" ମାଲେଟ୍‌ଙ୍କ ଭୟ ଅମୂଳକ ନ ଥିଲା, ଅନେକ ସମୟରେ ଯଥେଷ୍ଟ ଟଙ୍କା ନ ଥିବାରୁ ଭାରତୀୟ ଛାତ୍ରମାନେ କିପରି ଅସୁବିଧାରେ ପଡ଼ନ୍ତି ତାହା ସେ ଦେଖିଛନ୍ତି।

ମାଲେଟ୍ ରୋକ୍‌ଠୋକ୍ ଭାବରେ ହାର୍ଡିଙ୍କୁ ଜଣାଇଦେଲେ ଯେ ରାମାନୁଜନ୍‌ଙ୍କୁ ଇଂଲଣ୍ଡ ଆଣିବା ପାଇଁ ଇଣ୍ଡିଆ ଅଫିସରୁ କିଛି ବି ଟଙ୍କା ମିଳିପାରିବନାହିଁ। ଆହୁରି ବି ସେ ସନ୍ଦେହ କରୁଥିଲେ ଯେ ଟ୍ରିନିଟି ବା କେମ୍ବ୍ରିଜ ଏଥିପାଇଁ ଟଙ୍କା ଯୋଗାଇ ପାରିବେନାହିଁ। ମାନ୍ଦ୍ରାଜରୁ ଟଙ୍କା ମିଳିବା ବିଷୟରେ ମଧ୍ୟ ତାଙ୍କର ସନ୍ଦେହ ରହିଥିଲା। ଏହି ବିଷୟରେ ମାଲେଟ୍ ଆଦୌ ଆଶାବାଦୀ ନ ଥିଲେ ଏବଂ ତାଙ୍କର ନୈରାଶ୍ୟ ହାର୍ଡିଙ୍କୁ ମଧ୍ୟ ଆକ୍ରାନ୍ତ କଲା। ଛାନିଆ ହୋଇ ସେ ନେଭିଲ୍‌ଙ୍କ ପାଖକୁ ଲେଖିଲେ, "ଡାକ ଧରିବା ପାଇଁ ମୁଁ ତରତର ହୋଇ ଲେଖୁଛି। ସାବଧାନ ହେବା ପାଇଁ ମଧ୍ୟ ମୁଁ ଚେତାଇ ଦେବାକୁ ଚାହୁଁଛି।" ଟଙ୍କା ଯୋଗାଡ଼ କରିବାକୁ ହେବ, ନ ହେଲେ ରାମାନୁଜନ୍ ଆସିପାରିବେନାହିଁ। ଲିଟଲ୍‌ଉଡ୍ ଓ ହାର୍ଡି ମିଶି ବର୍ଷକୁ ପଚାଶ ପାଉଣ୍ଡ ଦେବା ପାଇଁ ଠିକ୍ କରିଥିଲେ, କିନ୍ତୁ ତାହା ରାମାନୁଜନ୍‌ଙ୍କର ଦୁଇ ବର୍ଷର ପ୍ରସ୍ତାବିତ ରହଣିର ମାତ୍ର ଏକପଞ୍ଚମାଂଶ ଖର୍ଚ୍ଚ ତୁଲାଇ ପାରିବ। ସେମାନେ ବ୍ୟକ୍ତିଗତ ଭାବରେ ଟଙ୍କା ଦେବା କଥା ରାମାନୁଜନ୍‌ଙ୍କୁ ନ କହିବା ପାଇଁ ହାର୍ଡି ନେଭିଲ୍‌ଙ୍କୁ ସାବଧାନ କରିଦେଇଥିଲେ।

ହାର୍ଡିଙ୍କ ଚିଠିରେ ଥିବା ଉଦ୍‌ବେଗର କାରଣ ଆର୍ଥିକ ତୁଳନାରେ ବେଶି ବୌଦ୍ଧିକ ଥିଲା ବୋଲି ନେଭିଲ୍ ମନେକଲେ। ଇଣ୍ଡିଆ ଅଫିସର ଚିଠି ଦ୍ୱାରା ହୁଏତ ହାର୍ଡି ପ୍ରଭାବିତ ହୋଇଥିଲେ ଏବଂ ରାମାନୁଜନ୍‌ଙ୍କ ପ୍ରକୃତ ପ୍ରତିଭା ବିଷୟରେ ତାଙ୍କର ସନ୍ଦେହ ଆସୁଥିଲା। ଇଣ୍ଡିଆ ଅଫିସର ମୂଳ ଚିଠି ଏବେ ହଜିଯାଇଛି, କିନ୍ତୁ ନେଭିଲ୍ ତା'ର ସାରାଂଶ ଭାବରେ ଲେଖିଥିଲେ, "ଏଭଳି ଅଜଣା ପ୍ରତିଭା ବିଷୟରେ ଆମେ ଆଗରୁ ଶୁଣିଛୁ। ଭାରତରେ ତାଙ୍କର ସାଙ୍ଗମାନଙ୍କୁ ସେମାନେ ବିସ୍ମିତ କରିପକାନ୍ତି, କିନ୍ତୁ ଇଂଲଣ୍ଡ ଆସିଲା ପରେ ତାଙ୍କର ଅସଲ ସ୍କୁଲପିଲା ରୂପ ଜଣାପଡ଼େ। କିଛି ସପ୍ତାହ ପରେ ସେମାନେ ମଉଳି ଯାଆନ୍ତି ଏବଂ ଆମର ଉଦାରତାର ଫଳ ଭଲ ବଦଳରେ ବେଶି ଖରାପ ହୁଏ।" ଏଭଳି ଭୀରୁତା ଦେଖାଉଥିବା ଇଣ୍ଡିଆ ଅଫିସର କଥା ଏବଂ ତାକୁ ସମର୍ଥନ କରୁଥିବାରୁ ହାର୍ଡିଙ୍କ କଥା ଶୁଣି ନେଭିଲ୍‌ଙ୍କୁ ହସ ଲାଗିଲା। ସେ ଲେଖିଥିଲେ, "ମୁଁ ଅବଶ୍ୟ ରାମାନୁଜନ୍‌ଙ୍କ ସହିତ କଥା ହୋଇଛି ଏବଂ ତାଙ୍କ ଖାତା ଦେଖିଛି, କିନ୍ତୁ ହାର୍ଡି ସେ ସୁଯୋଗ ପାଇନାହାନ୍ତି।"

ସେ ଯାହା ହେଉନା କାହିଁକି, ହାର୍ଡିଙ୍କ ଚିଠି ପାଇଲା ବେଳକୁ ନେଭିଲ୍ ଟଙ୍କା ଯୋଗାଡ଼ରେ ବେଶ୍ ସଫଳତା ପାଇସାରିଥିଲେ। ଲିଟଲ୍‌ହେଲ୍ସ୍ ବିଶ୍ୱବିଦ୍ୟାଳୟ ଓ ସରକାର ସ୍ତରରେ ସବୁ

ପ୍ରଭାବଶାଳୀ ଲୋକଙ୍କ ସହିତ ନେଭିଲ୍‌ଙ୍କୁ ପରିଚିତ କରାଇ ଦେଇଥିଲେ ଏବଂ ସେମାନଙ୍କ ଆଗରେ ରାମାନୁଜନ୍‌ଙ୍କୁ ବହୁତ ପ୍ରଶଂସା କରୁଥିଲେ। ଜାନୁଆରି ମାସ 28 ତାରିଖରେ ସେ ବିଶ୍ୱବିଦ୍ୟାଳୟର କୂଳସଚିବ ଫ୍ରାନ୍‌ସିସ୍ ଡିଉଜ୍‌ବରିଙ୍କ ପାଖକୁ ନେଭିଲ୍ ଲେଖିଥିଲେ, "ଗଣିତ କ୍ଷେତ୍ରରେ ମାନ୍ଦ୍ରାଜର ରାମାନୁଜନ୍‌ଙ୍କ ପ୍ରତିଭାର ଆବିଷ୍କାର ଆମ ସମୟ ପାଇଁ ବୋଧହୁଏ ସବୁଠାରୁ ବଡ଼ ଆଗ୍ରହଜନକ ଘଟଣା ହେବ।" ତାଙ୍କର ଏଭଳି ଚିଠି ସବୁର ଗୋଟିଏ ମାତ୍ର ଲକ୍ଷ୍ୟ ଥିଲା - ଇଂଲଣ୍ଡରେ ରାମାନୁଜନ୍‌ଙ୍କ ରହିବା ପାଇଁ ଟଙ୍କା ଯୋଗାଡ଼ କରିବା। ଚିଠିର ଶେଷରେ ସେ ଲେଖିଥିଲେ:

> ଉଚ୍ଚତମ ସ୍ତରର ପାଶ୍ଚାତ୍ୟ ଗଣିତଜ୍ଞଙ୍କ ସାହଚର୍ଯ୍ୟ ପାଇଲେ ରାମାନୁଜନ୍ ଯେ ଆହୁରି ବିକଶିତ ହେବେ ସେଥିରେ ସନ୍ଦେହ କରିବାର କୌଣସି କାରଣ ମୁଁ ଦେଖୁନାହିଁ। ସେହି ପରିସ୍ଥିତିରେ ଗଣିତର ଇତିହାସରେ ଉଚ୍ଚତମ ଶ୍ରେଣୀରେ ରହିବେ ଏବଂ ମାନ୍ଦ୍ରାଜ ନଗର ଓ ବିଶ୍ୱବିଦ୍ୟାଳୟ ଗର୍ବିତ ହେବେ ଯେ ସେମାନେ ରାମାନୁଜନ୍‌ଙ୍କୁ ଅଜ୍ଞାତ ଅବସ୍ଥାରୁ ଯାଇ ବିଖ୍ୟାତ ହେବାରେ ସାହାଯ୍ୟ କରିଛନ୍ତି।

ତା'ପର ଦିନ ଲିଟଲ୍‌ହେଲ୍‌ସ୍ ନିଜେ ଏହି କାମରେ ଲାଗିଗଲେ ଏବଂ ଡିଉଜ୍‌ବରିଙ୍କୁ ଆନୁଷ୍ଠାନିକ ଭାବରେ ଏକ ପ୍ରସ୍ତାବ ଦେଲେ ଯେ ରାମାନୁଜନ୍‌ଙ୍କୁ ବାର୍ଷିକ 250 ପାଉଣ୍ଡର ଏକ ବୃତ୍ତି ଦିଆଯାଉ ଏବଂ ପାଶ୍ଚାତ୍ୟ ପୋଷାକ ପାଇଁ ଓ ବାଟ ଖର୍ଚ୍ଚ ପାଇଁ ଶହେ ପାଉଣ୍ଡ ଅନୁଦାନ ଦିଆଯାଉ। ପ୍ରସ୍ତାବରେ ସେ ଲେଖିଥିଲେ, "ରାମାନୁଜନ୍‌ଙ୍କ ଗାଣିତିକ ଦକ୍ଷତା ଅତି ଉଲ୍ଲେଖନୀୟ। କିନ୍ତୁ ସେହି ବିଚକ୍ଷଣ ଗଣିତଜ୍ଞ ଏବେ ମାନ୍ଦ୍ରାଜର କେଉଁ ଅନ୍ଧାରିଆ କୋଣରେ ଲୁଚି ରହିଛନ୍ତି।" ଲିଟଲ୍‌ହେଲ୍‌ସ୍ ଓ ଅନ୍ୟମାନେ ଏହିଭଳି ଚିଠିମାନ ସବୁ ପଦସ୍ଥ ଅଧିକାରୀଙ୍କ ପାଖକୁ ଲେଖି ଚାଲିଲେ।

ପର ସପ୍ତାହରେ ମାନ୍ଦ୍ରାଜର ଗଭର୍ଣ୍ଣର ଲର୍ଡ ପେଣ୍ଟଲାଣ୍ଡଙ୍କ ପାଖକୁ ରାମାନୁଜନ୍‌ଙ୍କ ବିଷୟରେ ଚିଠି ଲେଖାଗଲା। ସାର୍ ଫ୍ରାନ୍‌ସିସ୍ ଗଭର୍ଣ୍ଣରଙ୍କ ବ୍ୟକ୍ତିଗତ ସଚିବ ସି. ବି. କୋଟେରେଲ୍‌ଙ୍କ ପାଖକୁ ଲେଖିଲେ:

> ଅଳ୍ପଦିନ ଭିତରେ ଗଭର୍ଣ୍ଣରଙ୍କ ପାଖକୁ ଆସିବାକୁ ଥିବା ଗୋଟିଏ ବିଷୟରେ ତାଙ୍କୁ ଅବଗତ କରାଇବା ପାଇଁ ମୁଁ ବିଶେଷ ଭାବରେ ଆଗ୍ରହୀ। ବର୍ତ୍ତମାନର ପରିସ୍ଥିତିରେ ବିଷୟଟି ଅତି ଜରୁରୀ ବୋଲି ମୋର ବିଶ୍ୱାସ। ଏହା ହେଉଛି ମୋ ଅଫିସର ଜଣେ କିରାଣି ଏସ୍. ରାମାନୁଜନ୍‌ଙ୍କର ଗାଣିତିକ ପ୍ରତିଭା ବିଷୟରେ। ମହାମହିମଙ୍କୁ ମୁଁ ଆଗରୁ ଜଣାଇଥିଲି ଯେ ତାଙ୍କର ବିଚକ୍ଷଣତା ଅତି ଅଭିନବ ଓ ଉଚ୍ଚତମ ସ୍ତରର ବୋଲି ଗଣିତ କ୍ଷେତ୍ରରେ ପ୍ରତିଷ୍ଠିତ ବ୍ୟକ୍ତିମାନେ ମତ ଦେଇଛନ୍ତି।

ସାର୍ ଫ୍ରାନ୍‌ସିସ୍ ଶୁଣିଥିଲେ ଯେ ବିଶ୍ୱବିଦ୍ୟାଳୟ ଦଶ ହଜାର ଟଙ୍କା ବା ଛ'ଶହ ପାଉଣ୍ଡରୁ କିଛି ଅଧିକ ଏଥିପାଇଁ ଦେବାକୁ ପ୍ରସ୍ତୁତ। ଇଂଲଣ୍ଡ ଯାଇ ସେଠାରେ ଦୁଇ ବର୍ଷ ରହିବା ପାଇଁ ଯଥେଷ୍ଟ। କିନ୍ତୁ ଉଚ୍ଚ କର୍ତ୍ତୃପକ୍ଷ ଏହାକୁ ଅନୁମୋଦନ କରିବା ଦରକାର। ସାର୍ ଫ୍ରାନ୍‌ସିସ୍ ଲେଖିଥିଲେ, "ଏବଂ ଏହିଠାରେ ମହାମହିମ ଗଭର୍ଣ୍ଣର ତାଙ୍କର ପ୍ରଭାବ ପକାଇ ପାରିବେ।"

ଲର୍ଡ ପେଣ୍ଟଲାଣ୍ଡଙ୍କ ବିଷୟରେ ଥରେ କୁହାଯାଇଥିଲା ଯେ ସେ ଥିଲେ "ଭାରତକୁ ଆମେ ପଠାଇଥିବା ଲୋକଙ୍କ ଭିତରେ ଶ୍ରେଷ୍ଠ ଭଦ୍ରଲୋକ ଏବଂ ବେଶ୍ ବୁଦ୍ଧିମାନ"। ଲର୍ଡ ଉପାଧି ପାଇବା ଆଗରୁ ସେ ଥିଲେ ଜନ୍ ସିନ୍‌କ୍ଲେଆର୍। ତାଙ୍କର ଦେହ ଥିଲା ପତଳା ଓ ଛୋଟ ଏବଂ ନିଶ ବିଶାଳ। ସାଣ୍ଡହର୍ଷ୍ଟ ସାମରିକ ପ୍ରତିଷ୍ଠାନରୁ ଉତ୍ତୀର୍ଣ୍ଣ ହେଲା ପରେ ଆଠ ବର୍ଷ ଧରି ସେ ରୟାଲ୍ ଆଇରିଶ୍

ଲାନ୍‌ସର୍‌ସ୍ ବାହିନୀରେ କାମ କରିଥିଲେ। ତା'ପରେ ସେ ରାଜନୀତିକୁ ଆସିଲେ ଏବଂ ପ୍ରଧାନମନ୍ତ୍ରୀ ଡେଭିଡ୍ ଲଏଡ୍ ଜର୍ଜଙ୍କ ଅଧୀନରେ ସ୍କଟ୍‌ଲାଣ୍ଡ ସଚିବ ଭାବରେ କାମ କରିଥିଲେ। ପୂର୍ବ ବର୍ଷ ଅକ୍ଟୋବର ମାସରେ ସେ ମାନ୍ଦ୍ରାଜର ଗଭର୍ଣ୍ଣର ପଦବୀରେ ଯୋଗ ଦେଇଥିଲେ। ଏଠାରେ ସେ ପ୍ରାୟ ଚାରିକୋଟି ଲୋକଙ୍କର ଦାୟିତ୍ୱରେ ରହିଲେ। ତାଙ୍କ ମତରେ ରାଷ୍ଟ୍ରର ଦାୟିତ୍ୱ ହେଉଛି, "ବ୍ୟକ୍ତିତ୍ୱର ପୂର୍ଣ୍ଣ ବିକାଶ ପାଇଁ ମିଳିପାରୁଥିବା ଶ୍ରେଷ୍ଠ ପରିବେଶ ସବୁ ପ୍ରଜାଙ୍କୁ ଯୋଗାଇଦେବା।" ଏବେ ରାମାନୁଜନ୍‌ଙ୍କ କ୍ଷେତ୍ରରେ ତାଙ୍କ କଥାକୁ କାମରେ ପରିଣତ କରିବାର ସୁଯୋଗ ତାଙ୍କୁ ମିଳିଲା।

ରାମାନୁଜନ୍‌ଙ୍କ ସପକ୍ଷରେ ଆଗରୁ ଥରେ ସେ ନିଷ୍ପତ୍ତି ନେଇ ସାରିଥିଲେ। ତାହା ଥିଲା ରାମାନୁଜନ୍‌ଙ୍କ ପାଇଁ ବିଶ୍ୱବିଦ୍ୟାଳୟର ସ୍ୱତନ୍ତ୍ର ଗବେଷଣା ବୃତ୍ତିର ଅନୁମୋଦନ। ବର୍ତ୍ତମାନ ସେ ପୁଣି ସେପରି କରିବା ପାଇଁ ପ୍ରସ୍ତୁତ ଥିଲେ। ଗଭର୍ଣ୍ଣରଙ୍କ ସଚିବ ସାର୍ ଫ୍ରାନ୍‌ସିସ୍‌ଙ୍କ ଚିଠିର ଉତ୍ତରରେ ଲେଖିଲେ, "କେମ୍ବ୍ରିଜରେ ତାଙ୍କ ଗବେଷଣା ଚଳାଇବା ପାଇଁ ରାମାନୁଜନ୍‌ଙ୍କୁ ବିଶ୍ୱବିଦ୍ୟାଳୟର ସାହାଯ୍ୟ ମିଳିବା ବିଷୟରେ ମହାମହିମ ଗଭର୍ଣ୍ଣରଙ୍କର ସହାନୁଭୂତି ରହିଛି। ଏ ବିଷୟରେ ଯାହା ସମ୍ଭବ ତାହା ସେ ଖୁସିରେ କରିବେ।"

ବୃତ୍ତି ପ୍ରସ୍ତାବ ଅନୁମୋଦିତ ହେଲା ଏବଂ ଶେଷ ବାଧା ଦୂର ହୋଇଗଲା। ରାମାନୁଜନ୍ ଏବେ ଇଂଲଣ୍ଡ ଯାତ୍ରା କରିବେ।

## 5. ବନ୍ଦରରେ

ଫେବୃଆରି 26 ତାରିଖରେ ବିନ୍ନି ଆଣ୍ଡ କୋ ରାମାନୁଜନ୍‌ଙ୍କର ଦ୍ୱିତୀୟ ଶ୍ରେଣୀ ଜାହାଜ ଟିକଟ ପଠାଇଦେଲେ।

ରାମାନୁଜନ୍ ଜାହାଜରେ ଯେପରି ଶାକାହାରୀ ଖାଦ୍ୟ ପାଇବେ ତା'ର ବ୍ୟବସ୍ଥା କରିବା ପାଇଁ ମାର୍ଚ୍ଚ 11 ଦିନ ସାର୍ ଫ୍ରାନ୍‌ସିସ୍ ଜାହାଜ ପରିଚାଳକଙ୍କୁ ଚିଠି ଲେଖିଲେ।

ମାର୍ଚ୍ଚ 14 ତାରିଖରେ ରାମାନୁଜନ୍ ତାଙ୍କ ସ୍ତ୍ରୀ ଓ ମା'ଙ୍କୁ ନେଇ ମାନ୍ଦ୍ରାଜର ଏଗ୍‌ମୋର ଷ୍ଟେସନରେ ରେଳଗାଡ଼ିକୁ ଅପେକ୍ଷା କଲେ। ଦଶବର୍ଷ ତଳେ ସେ ପାଶ୍ୟାପ୍ପା କଲେଜରେ ପଢ଼ିବାକୁ ଆସିଲା ବେଳେ ଏହି ଷ୍ଟେସନରେ ଓହ୍ଲାଇ ଥିଲେ। ଏବେ ସେ ତାଙ୍କ ପରିବାରକୁ କୁମ୍ଭକୋଣମ୍ ପଠାଇ ଦେଉଛନ୍ତି। ୟୁରୋପୀୟ ଢାଞ୍ଚାରେ ନିଜର ରୂପଭେକ ବଦଳାଇବା ସେମାନଙ୍କୁ କଷ୍ଟ ଦେଇଥା'ନ୍ତା। ସେ ଦୁଃଖରେ ଭାଙ୍ଗିପଡ଼ିଲେ ଓ କାନ୍ଦିବାରେ ଲାଗିଲେ।

ଦିନେ କୋମଲତାମ୍ମାଲ୍ ମନ୍ଦିର ଯାଇଥିବା ବେଳେ ତାଙ୍କୁ ଇଂଲଣ୍ଡ ନେବା ପାଇଁ ଜାନକୀ ରାମାନୁଜନ୍‌ଙ୍କୁ କହିଲେ। କିନ୍ତୁ ରାମଚନ୍ଦ୍ର ରାଓ ଓ ଅନ୍ୟମାନଙ୍କ କଥା ମାନି ସେ ଜାନକୀଙ୍କ ଇଂଲଣ୍ଡ ଯିବା ବିଷୟରେ ମନା କଲେ। ସେ ବୁଝାଇଲେ ଯେ ଇଂଲଣ୍ଡରେ ଜାନକୀଙ୍କ କଥା ବୁଝିଲା ବେଳକୁ ସେ ଗଣିତ ପ୍ରତି ପୂରା ଧ୍ୟାନ ଦେଇପାରିବେନାହିଁ। ସେ ଆହୁରି ବୁଝାଇଦେଲେ ଯେ ରାମାନୁଜନ୍‌ଙ୍କ ଅନୁପସ୍ଥିତିରେ କମ୍ ବୟସର ସୁନ୍ଦରୀ ଜାନକୀଙ୍କ ପଛରେ ଇଂରେଜମାନେ ଲାଗିଯିବେ।

ମାନ୍ଦ୍ରାଜରେ ସେହି ଶେଷ ଦିନଗୁଡ଼ିକରେ ରାମାନୁଜନ୍‌ଙ୍କୁ କେହି ଅତି ଖୁସୀ ବା ଉଦ୍‌ଗ୍ରୀବ ଥିବାର ଦେଖି ନ ଥିଲେ। ରାମଚନ୍ଦ୍ର ରାଓ କହିଥିଲେ ଯେ ଇଂଲଣ୍ଡ ଯାଉଥିବା ବିଷୟରେ ସେ

ଉଲ୍ଲସିତ ମନେହେଉ ନ ଥିଲେ। ଜଣା ପଡୁଥିଲା ଯେପରି ସେ କେବଳ କେଉଁ ଅଦୃଶ୍ୟ ଆଦେଶ ମାନି ଚାଲୁଛନ୍ତି।

ରାମାନୁଜନ୍‌ଙ୍କ ସାଙ୍ଗମାନେ ପାଶ୍ଚାତ୍ୟ ଚଳଣି ବିଷୟରେ ତାଙ୍କୁ ଶିଖାଇବାକୁ ଲାଗିଲେ। ରାମଚନ୍ଦ୍ର ରାଓ ଏବେ ମଧ୍ୟ ନିଜକୁ ରାମାନୁଜନ୍‌ଙ୍କ ପୃଷ୍ଠପୋଷକ ଭାବରେ ଦେଖୁଥିଲେ। ସେ ମତ ଦେଲେ ଯେ ରାମାନୁଜନ୍ ଗଣ୍ଠି ପକାଇ ରଖୁଥିବା ଲମ୍ବା ଚୁଟିକୁ କାଟିଦିଆଯିବା ଉଚିତ। ତାହା କରାଗଲା। ତାଙ୍କ ପାଇଁ ପାଶ୍ଚାତ୍ୟ ପୋଷାକ ବରାଦ କରାଗଲା। ଏଥିରେ ତାଙ୍କର ସହାୟକ ହେଲେ ରିଚାର୍ଡ ଲିଟଲ୍‌ହେଲ୍‌ସ୍। ତାଙ୍କ ମଟର ସାଇକେଲର କଡ଼ ସିଟରେ ବସି ରାମାନୁଜନ୍ କୋଟ୍, ଟାଇ, ଜୋତା ଆଦି କିଣିବାକୁ ବୁଲିଲେ।

ରାମଚନ୍ଦ୍ର ରାଓଙ୍କର ଜଣେ ବନ୍ଧୁ ପାଶ୍ଚାତ୍ୟ ଢାଞ୍ଚାରେ ଚଳୁଥିଲେ। ସେହି ସାଙ୍ଗଙ୍କର ସହର ବାହାରେ ଥିବା ବଙ୍ଗଳାରେ ରାମାନୁଜନ୍ କିଛିଦିନ କଟାଇ ଛୁରି ଓ କଣ୍ଟା ଚାମୁଚାରେ ଖାଇବା ଅଭ୍ୟାସ କଲେ। ଯଦିଓ ସେ ଶାକାହାରୀ ଖାଦ୍ୟ ଖାଉଥିଲେ, ଅପରିଚିତ ପରିଚାରକମାନେ ଖାଦ୍ୟ ପରଷୁଥିବାରୁ ରାମାନୁଜନ୍ ଖୁସି ନ ଥିଲେ।

ଇଂଲଣ୍ଡରେ ସେ କିପରି ନିରାମିଷାଶୀ ରହିବେ ସେ ଚିନ୍ତା ରାମାନୁଜନ୍‌ଙ୍କୁ ବ୍ୟସ୍ତ କରୁଥିଲା। ପାଶ୍ଚାତ୍ୟ ଶୈଳୀର ବାଳକଟା ତାଙ୍କୁ ଭଲଲାଗୁ ନ ଥିଲା। ପାଶ୍ଚାତ୍ୟ ପୋଷାକ ତାଙ୍କୁ ବ୍ୟତିବ୍ୟସ୍ତ କରୁଥିଲା। ଭାରତ ଛାଡ଼ିବାର ଆଗଦିନ ସେ ଗୋଟିଏ ବଡ଼ ସୁଟ୍‌କେସ ଧରି ପ୍ରେସିଡେନ୍‌ସି କଲେଜର ଅଧ୍ୟାପକ ବିଶ୍ରାମ କକ୍ଷରେ ପହଞ୍ଚିଲେ। ସେଠାରେ ସୁଟ୍‌କେସ ଖୋଲି ତାଙ୍କର ପାଶ୍ଚାତ୍ୟ ପୋଷାକ ସବୁ ଟେବୁଲ ଉପରେ ଖେଳାଇ ଦେଇ ପଚାରିଲେ, "ଏସବୁକୁ ମୁଁ ପିନ୍ଧିବି କିପରି?" ଟାଇ ଭିଡ଼ିବାରେ ତାଙ୍କର ଅସୁବିଧା ସମସ୍ତଙ୍କୁ ମଜା ଲାଗିଲା। ଏ ବିଷୟରେ ରାମାନୁଜନ୍ ଥଟ୍ଟା କରିବାକୁ ଚେଷ୍ଟା କରୁଥିଲେ, କିନ୍ତୁ ସେ ଯେ ପ୍ରକୃତରେ ଅସ୍ୱସ୍ତି ଅନୁଭବ କରୁଛନ୍ତି ତାହା ଜଣାପଡୁଥିଲା। ଇଂଲଣ୍ଡରୁ ସେ ଇଂରେଜ ପୋଷାକ ପିନ୍ଧିଥିବା ଅବସ୍ଥାରେ ତାଙ୍କର ଗୋଟିଏ ଫଟୋ ପଠାଇଥିଲେ, ତାଙ୍କ ମା ତାଙ୍କୁ ଚିହ୍ନିପାରିଲେନାହିଁ।

ଯାତ୍ରା ପୂର୍ବର ରାତିରେ କେ. ନରସିଂହ ଆୟେଙ୍ଗାର ଓ ତାଙ୍କ ଭାଇ ରାମାନୁଜନ୍‌ଙ୍କୁ ତାଙ୍କ ଘରକୁ ନେଇଗଲେ। ବାଟ ସାରା ସେ ଚାରିପାଖର ଅତି ପରିଚିତ ଦୃଶ୍ୟ ସବୁ ଦେଖି ଅଜଣା ଇଂଲଣ୍ଡ ବିଷୟରେ ଶଙ୍କାଗ୍ରସ୍ତ ହୋଇପଡ଼ିଲେ। ତେଣୁ ରାତି ସାରା ତାଙ୍କର ସାଙ୍ଗମାନେ ରାମାନୁଜନ୍‌ଙ୍କ ଅନିଶ୍ଚିତତାକୁ ଶାନ୍ତ କରିବାକୁ ଚେଷ୍ଟା କଲେ ଏବଂ ଆସୁଥିବା ଚମକପ୍ରଦ ଅନୁଭୂତି ପାଇଁ ତାଙ୍କୁ ପ୍ରସ୍ତୁତ କଲେ।

ମାନ୍ଦ୍ରାଜ ବନ୍ଦର ପାଇଁ ସମୁଦ୍ରରୁ ଗୋଟିଏ ନୂଆ ବାଟ ସାର୍ ଫ୍ରାନ୍‌ସିସ୍‌ଙ୍କ ସମୟରେ ତିଆରି କରାଯାଇଥିଲା। ଅଧିକାଂଶ ଜାହାଜ ଢେଉରୋଧକ ପ୍ରାଚୀର ଭିତରେ ସୁରକ୍ଷିତ ଅବସ୍ଥାରେ ଲଙ୍ଗର ପକାଉଥିଲେ ଏବଂ ଛୋଟ ଡଙ୍ଗା ସାହାଯ୍ୟରେ ଜିନିଷପତ୍ର କୂଳକୁ ପଠାଉଥିଲେ। ବନ୍ଦରର ଦକ୍ଷିଣ ସୀମାରେ ମଣିଷ ଓ ଜୀବଜନ୍ତୁଙ୍କ ପାଇଁ କାଠର ଚଟାଣ ଥିବା ଗୋଟିଏ ସ୍ୱତନ୍ତ୍ର ଘାଟ ତିଆରି କରାଯାଇଥିଲା। ମାର୍ଚ୍ଚ ମାସ ପନ୍ଦର ତାରିଖରେ ବ୍ରିଟିଶ୍ ଇଣ୍ଡିଆ ଲାଇନ୍‌ସ୍‌ର ଜାହାଜ ନେଭାସା ଏହି ଘାଟରେ ଲାଗିଲା।

ନେଭାସା ଗୋଟିଏ ନୂଆ ଜାହାଜ ଥିଲା ଯାହା ଭାରତ ଯିବା ଆସିବା କରିବା ପାଇଁ ସ୍ୱତନ୍ତ୍ର ଭାବରେ ଗଢ଼ାଯାଇଥିଲା। ତା'ର କଳା ରଙ୍ଗର ଦେହରେ ଆଗରୁ ପଛ ଯାଏଁ ଗୋଟିଏ ଧଳା ପଟି ରହିଥିଲା ଓ ଠାଏ ଠାଏ ନାଲି ରଙ୍ଗ ଲାଗିଥିଲା। ଜାହାଜଟି ଦେଖିବାକୁ ବେଶ୍ ସୁନ୍ଦର ଥିଲା।

ଯାତ୍ରାର ସକାଳେ ଆଡ୍‌ଭୋକେଟ ଜେନେରାଲ୍ ଶ୍ରୀନିବାସ ଆୟେଙ୍ଗାରଙ୍କ ଦ୍ୱାରା ରାମାନୁଜନ୍‌ଙ୍କ ପାଇଁ ଏକ ସରକାରୀ ବିଦାୟ ସମ୍ବର୍ଦ୍ଧନା ଆୟୋଜିତ ହୋଇଥିଲା। ଅଧ୍ୟାପକ ମିଡଲ୍‌ମାଷ୍ଟ, ସାର୍ ଫ୍ରାନ୍‌ସିସ୍ ସ୍ପ୍ରିଙ୍ଗ, ଅନେକ ବିଶିଷ୍ଟ ବିଚାରପତି, ହିନ୍ଦୁ ଖବର କାଗଜର ପ୍ରକାଶକ କସ୍ତୁରୀରଙ୍ଗାର୍ ଆୟେଙ୍ଗାର ଆଦି ସେଠାରେ ଉପସ୍ଥିତ ଥିଲେ। ରାମାନୁଜନ୍‌ଙ୍କ ସହିତ ଘନିଷ୍ଠ ଭାବରେ କାମ କରିଥିବା ଏବଂ ସିଲଟ-ଖଡ଼ିରେ ଅଙ୍କ କଷିଚାଲିଥିବା ନାରାୟଣ ଆୟାର ମଧ୍ୟ ସେଠାରେ ଥିଲେ। ଅନେକ ବର୍ଷ ପରେ ତାଙ୍କ ପୁଅ ଏନ୍. ସୁବନାରାୟଣନ୍ ସେଦିନର ସଭା ବିଷୟରେ କହିଥିଲେ, “ବାପା ସେଠାରେ ଏକ ବିଚିତ୍ର ଅନୁରୋଧ କରିଥିଲେ। ଏକ ସ୍ମାରକୀ ଭାବରେ ସେ ନିଜର ସିଲଟକୁ ରାମାନୁଜନ୍‌ଙ୍କ ସିଲଟ ସହିତ ବଦଳ କରିବାକୁ ଚାହିଁଥିଲେ। ତାହା ଅବଶ୍ୟ ସମସ୍ତଙ୍କ ପାଇଁ ଗ୍ରହଣୀୟ ଥିଲା। ବାପା ବୋଧହୁଏ ଭାବୁଥିଲେ ଯେ ରାମାନୁଜନ୍‌ଙ୍କ ଅନୁପସ୍ଥିତିରେ ଗଣିତ ପାଇଁ ପ୍ରେରଣା ସେହି ସିଲଟରୁ ହୁଏତ ମିଳିପାରିବ।”

ସଭାସଦ୍‌ମାନଙ୍କ ସହିତ ରାମାନୁଜନ୍‌ଙ୍କୁ ପରିଚିତ କରାଇ ଦିଆଗଲା। ମାନ୍ଦ୍ରାଜର ଶିକ୍ଷା ନିର୍ଦ୍ଦେଶକ ଜେ. ଏଚ୍. ଷ୍ଟୋନ୍ ଆଶାପ୍ରକାଶ କଲେ ଯେ ରାମାନୁଜନ୍ ସଫଳ ହେବେ। ସେ ଆହୁରି ମଧ୍ୟ କହିଲେ ଯେ ଇଂଲଣ୍ଡରେ ଥିବା ତାଙ୍କ ସାଙ୍ଗମାନଙ୍କ ପାଖକୁ ସେ ରାମାନୁଜନ୍‌ଙ୍କୁ ସାହାଯ୍ୟ କରିବା ପାଇଁ ଲେଖିଛନ୍ତି। ଜାହାଜରେ ରାମାନୁଜନ୍ ଭେଟିଥିବା ଲୋକଙ୍କ ଭିତରେ ଥିଲେ ସାଉଥ୍‌ହାମ୍ପଟନ୍ ଯାଉଥିବା ସାଲ୍‌ଭେସନ୍ ଆର୍ମିର ଜଣେ କର୍ମୀ ଏବଂ ଯକ୍ଷ୍ମା ରୋଗ ବିଶାରଦ ଡ. ମୁଥୁ। ଜାହାଜର କାପ୍‌ଟେନ୍‌ଙ୍କୁ ମଧ୍ୟ ରାମାନୁଜନ୍ ଭେଟିଲେ ଏବଂ କାପ୍‌ଟେନ୍ ମଜାରେ ତାଙ୍କୁ କହିଲେ ଯେ ସେମାନଙ୍କ ଭିତରେ ସମ୍ପର୍କ ଭଲ ରହିବ ଯେବେ ଯାଏଁ ରାମାନୁଜନ୍ ତାଙ୍କୁ ଗଣିତ ଭିତରକୁ ଟାଣିବେନାହିଁ।

ବିଦାୟର ବେଳଟି ଜାହାଜର ପ୍ରାୟ ସବୁ ଯାତ୍ରୀ ହସଖୁସିରେ କଟାଉଥିଲେ। କିନ୍ତୁ ରାମାନୁଜନ୍ ବେଶ୍ ଅସୁଖୀ ଥିଲେ ଓ ଲୁହ ଗଡ଼ାଉଥିଲେ। ଶେଷରେ ସାଙ୍ଗସାଥୀଙ୍କୁ ତଳେ ଛାଡ଼ି, ରାମାନୁଜନ୍‌ଙ୍କୁ ଧରି, ଜାହାଜଟି ବନ୍ଦର ଛାଡ଼ିଲା। ତାହା ଥିଲା 1914 ମସିହା ମାର୍ଚ୍ଚ ମାସ ସତର ତାରିଖ ସକାଳ ପ୍ରାୟ ଦଶଟା ସମୟର କଥା।

# 6

# ବସନ୍ତ ଋତୁ

(1914–1916)

## 1. ଭାରତ ବାହାରେ

ନେଭାସା! ମାତ୍ର ଏକ ବର୍ଷ ତଳେ ଏହି ଜାହାଜ କମ୍ପାନି ହାତକୁ ଆସିଥିଲା ଏବଂ ପ୍ରାଚ୍ୟକୁ ଏହା ଥିଲା ତା'ର ପ୍ରଥମ ଯାତ୍ରା। ନଅ ଟନ୍ ଓଜନର ଏହି ଜାହାଜ ସେହି କମ୍ପାନିର ବୃହତ୍ତମ ଜାହାଜ ଥିଲା। ଚାରିଟି ପ୍ରଶସ୍ତ ଓ ଖୋଲା ପଟାତନ ଥିବା ନେଭାସା ବିଷୁବ ମଣ୍ଡଳରେ ଚଳାଚଳ କରିବା ପାଇଁ ବିଶେଷ ଭାବରେ ଗଢ଼ା ଯାଇଥିଲା। କିନ୍ତୁ ବେଶ୍ ଆରାମଦାୟକ ଜାହାଜଟି ରାମାନୁଜନ୍‌ଙ୍କୁ ଆରାମ ଦେଇପାରିଲାନାହିଁ। ସମୁଦ୍ରର ଢେଉରେ ଜାହାଜଟି ଦୋହଲିବା ଫଳରେ ସେ ବାନ୍ତି କରିବାରେ ଲାଗିଲେ ଏବଂ କିଛି ଖାଇପାରିଲେନାହିଁ।

ଜାହାଜର ପ୍ରଥମ ରହଣି ଥିଲା କଲମ୍ବୋ ବନ୍ଦର ଏବଂ ସେଠାରେ ପହଞ୍ଚିଲାରୁ ରାମାନୁଜନ୍ ଆଶ୍ୱସ୍ତ ହେଲେ। ମାର୍ଚ୍ଚ 19 ଦିନ ସେମାନେ କଲମ୍ବୋ ଛାଡ଼ି କନ୍ୟାକୁମାରୀ ଡେଇଁ ଏଡେନ୍ ମୁହାଁ ହେଲେ। ଆରବ ସାଗର ଭିତରେ ତାଙ୍କୁ ଏବେ ଏକ ସପ୍ତାହ କଟାଇବାକୁ ହେବ। ରାମାନୁଜନ୍‌ଙ୍କ ଜଳଯାତ୍ରା ଅସୁସ୍ଥତା ଏବେ ଦୂର ହୋଇଯାଇଥିଲା ଏବଂ ଯାତ୍ରା ସୁଖପ୍ରଦ ମନେ ହେଉଥିଲା। ଜାହାଜର ଖୋଲା ଗଠନକୁ ସେ ଏବେ ଉପଭୋଗ କରୁଥିଲେ ଏବଂ ତାଙ୍କର ସ୍ୱତନ୍ତ୍ର ଶାକାହାରୀ ଖାଦ୍ୟ ଖାଇପାରୁଥିଲେ। ତାଙ୍କର ପ୍ରାୟ ଦୁଇ ଶହ ସହଯାତ୍ରୀମାନଙ୍କ ଭିତରୁ ଏବେ ସେ ଅନେକଙ୍କ ସହିତ ପରିଚିତ ହୋଇ ଯାଇଥିଲେ। ବେଳେ ବେଳେ ସେ ତାଙ୍କ କୋଠରୀରେ ବସି ଜାହାଜର ଭାଗମାପ ବା ଯାତ୍ରୀଙ୍କ ସଂଖ୍ୟାକୁ ନେଇ ଗଣିତ କରୁଥିବା କଥା ଶୁଣାଯାଏ।

ରାମାନୁଜନ୍ ଅନ୍ତର୍ନିରୀକ୍ଷଣରେ ବିଶେଷ ଆଗ୍ରହୀ ନ ଥିଲେ। ହାର୍ଡି କହିବା ଅନୁସାରେ ନିଜର ଇତିହାସ ବା ମନସ୍ତତ୍ତ୍ୱ ବିଷୟରେ ସେ ଧ୍ୟାନ ଦେଉ ନ ଥିଲେ। ଏବେ କିନ୍ତୁ ତାଙ୍କ ହାତରେ ପ୍ରଚୁର ଖାଲି ସମୟ ଥିଲା। ତାଙ୍କର ପୋଷାକ ଆରାମଦାୟକ ନ ଥିଲା, କିନ୍ତୁ ବେଶ୍ ଜୋରରେ ଆଗଉଥିବା ଜାହାଜ ଉପରେ ଖୋଲା ପବନରେ ବସି ସେ ମାନସ ମନ୍ଥନ କରିବାକୁ ବାଧ୍ୟ ହେଉଥିଲେ। ଅବଚେତନ ମନରେ ଛପି ଥିବା ଅନେକ ସ୍ମୃତି ଏବେ ଆପେ ଆପେ ଉପରକୁ ଆସୁଥିଲା।

ପାଞ୍ଚବର୍ଷ ତଳର ଚିତ୍ରଟିଏ ସେ ଦେଖୁଥିଲେ। କୁମ୍ଭକୋଣମ୍ ଘର ବାରଣ୍ଡାରେ ସେ ଏକା

ବସିଥିବାର ଚିତ୍ର। ସେତେବେଳେ ସେ ଅଜଣା, ଅବିବାହିତ, ପିଲାଟିଏ। ଅଳ୍ପଦିନ ତଳେ ମାନ୍ଦ୍ରାଜର ସମ୍ଭ୍ରାନ୍ତ ବ୍ୟକ୍ତିମାନେ ତାଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ଏକାଠି ହୋଇଥିଲେ। କିଛିବର୍ଷ ତଳେ ସେ କୁମ୍ଭକୋଣମ୍ ସରକାରୀ କଲେଜରୁ ଅଧାପାଠରେ ବାହାରି ଆସିଥିଲେ, ଏବେ ସେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଟ୍ରିନିଟି କଲେଜକୁ ଯାଉଛନ୍ତି।

ସେତେବେଳେ ମାନ୍ଦ୍ରାଜ ଯିବାକୁ ଦରକାର ହେଉଥିବା ତିନି ଟଙ୍କାର ରେଳଭଡ଼ା ଯୋଗାଡ଼ କରିବା ତାଙ୍କ ପାଇଁ ଖୁବ୍ ବଡ଼ କଥା ଥିଲା। ଏବେ ଇଂଲଣ୍ଡ ଯିବାକୁ ଚାରିଶହ ଟଙ୍କାର ଜାହାଜ ଭଡ଼ା ପାଇଁ ତାଙ୍କୁ ମୁଣ୍ଡ ଖେଳାଇବାକୁ ପଡ଼ିନାହିଁ।

ଧର୍ମ ବିଶ୍ୱାସ ଭାଙ୍ଗି ବିଦେଶ ଯିବା କଥା ସେ ଆଗରୁ ଭାବିପାରି ନ ଥାନ୍ତେ, କିନ୍ତୁ ଏବେ ପ୍ରଭାବଶାଳୀ ଓ ପାରମ୍ପରିକ ବ୍ରାହ୍ମଣମାନେ ତାହା ଭାଙ୍ଗିବା ପାଇଁ ତାଙ୍କୁ ପ୍ରବର୍ତ୍ତାଇ ଥିଲେ।

ଏତେ ଗଭୀର ପରିବର୍ତ୍ତନ ସବୁ ଆସିଲା କିପରି? ସେ ଯେ ରାତାରାତି ଗଣିତଜ୍ଞ ହୋଇଗଲେ ତାହା ନୁହେଁ। ସେ ବୋଧହୁଏ ନିଜକୁ ହିଁ ବଦଳାଇଥିଲେ - ନିଜକୁ ସେ ଦୁନିଆ ଭିତରକୁ ଟାଣି ନେଇଥିଲେ। ଅଳ୍ପ ବୟସର ଲାଜକୁଳା ଗାଣିତିକ ପ୍ରତିଭା ଭାବରେ ସେ ସାଧାରଣ ସମାଜଠାରୁ ଦୂରେଇ ରହି ଏକା ଏକା ଗଣିତର ଦୁନିଆରେ ବୁଡ଼ି ରହିବାରେ ସନ୍ତୁଷ୍ଟ ଥିଲେ। କିନ୍ତୁ ମା'ଙ୍କ ନିର୍ଦ୍ଦେଶରେ ସେ ବିବାହ କଲାପରେ ଦ୍ୱାର ଦ୍ୱାର ବୁଲି ଗଣିତଜ୍ଞ ଓ ଅନ୍ୟମାନଙ୍କୁ ଭେଟି ଜୀବିକା ନିର୍ବାହର ବାଟ ଖୋଜିବାରେ ଲାଗିଲେ - ନିଜର ଦକ୍ଷତାକୁ ସେ ବିକିବାକୁ ଚେଷ୍ଟା କରୁଥିଲେ। ଏହି ଚେଷ୍ଟାରେ ଦୃଢ଼ ଭାବରେ ଲାଗିରହିବା ଫଳରେ ଏବଂ କିଛି ମାତ୍ରାରେ ସୌଭାଗ୍ୟ ବଳରେ ତାଙ୍କ ପାଇଁ ଗୋଟିଏ ପରେ ଗୋଟିଏ ବାଟ ଖୋଲି ଚାଲିଲା।

ଭବିଷ୍ୟତ ବିଷୟରେ କ'ଣ ସେ କେବେ ଭାବି ନ ଥିଲେ? ଆଗକୁ କ'ଣ ହେବ ସେ ବିଷୟରେ ଆଗରୁ ହୁଏତ ତାଙ୍କ ମନରେ କିଛି ଅସ୍ପଷ୍ଟ ଆଶଙ୍କା ରହିଥିଲା। ଏବେ କିନ୍ତୁ ତାହା ସ୍ଥୂଳ ରୂପ ନେବାକୁ ଲାଗିଲା। ଆଗରୁ କେବେ ସେ ଦକ୍ଷିଣ ଭାରତ ବାହାରକୁ ଯାଇ ନ ଥିଲେ। ହଠାତ୍ ଘର ଛାଡ଼ି ପଳାଇଲା ବେଳେ ବି ସେ ବିଶାଖାପାଟଣା ଟପି ନ ଥିଲେ। ଭାରତରେ ଗୋରାଲୋକଙ୍କ ଅନୁପାତ ଅତି କମ୍ ଥିଲା, ହୁଏତ ହଜାରରେ ଜଣେ। ଇଂଲଣ୍ଡରେ କିନ୍ତୁ ଅବସ୍ଥା ଠିକ୍ ଓଲଟା। ତାଙ୍କର ମୁହଁ, ତାଙ୍କର ଉଚ୍ଚାରଣ ସବୁ କିଛି ବାରି ହୋଇଯିବ। ନେଭିଲ୍, ହାର୍ଡି, ଲିଟଲ୍‌ଉଡ୍, କେମ୍ବ୍ରିଜ ଏବଂ ଟ୍ରିନିଟି - ଏହିମାନଙ୍କୁ ନେଇ ସେ ଭବିଷ୍ୟତର କଳ୍ପନା କରୁଥିଲେ। ଏସବୁ ଭିତରୁ କେବଳ ନେଭିଲ୍‌ଙ୍କୁ ସେ ମଣିଷ ଭାବରେ ଜାଣନ୍ତି। ହାର୍ଡିଙ୍କ ସମ୍ପର୍କ କେତୋଟି ଚିଠିର, ବାକି ସମସ୍ତେ ଅଜଣା, ଅମୂର୍ତ୍ତ, ରହସ୍ୟମୟ।

ସପ୍ତାହେ କାଳ ନିୟମିତ ବେଗରେ ଚାଲିଲା ପରେ ନେଭାସା କଲମ୍ବୋଠାରୁ ଦୁଇ ହଜାର ମାଇଲ ଦୂରରେ ଥିବା ଏଡେନ୍ ବନ୍ଦର ଛୁଇଁଲା। ଆଗକୁ ଯେଉଁ ଯାତ୍ରା ରହିଲା ତାକୁ ସବୁ ଇଂରେଜ ଲୋକ ଭୟ କରୁଥିଲେ। ତାହା ଥିଲା ଲୋହିତ ସାଗର ଭିତରେ ଚଉଦଶହ ମାଇଲର ବାଟ। ଦିନଯାକ ସେଠାରେ ମରୁଭୂମିର ଖରା, ତାପମାତ୍ରା ପ୍ରାୟ ଶହେ ଡିଗ୍ରୀ ଫାରେନ୍‌ହାଇଟ୍। ନିୟମିତ ଯାତ୍ରୀମାନେ ଜାଣି ଯାଇଥିଲେ ଭାରତ ଗଲାବେଳେ ଜାହାଜର କେଉଁପଟ ବେଶି ଖରା ପାଇବ ଏବଂ ଫେରିଲା ବେଳେ କେଉଁ ପଟ। ସେହି ଅନୁସାରେ ପୁରୁଖା ଯାତ୍ରୀମାନେ ଓ ବିଶିଷ୍ଟ ବ୍ୟକ୍ତିମାନେ

ଥଣ୍ଡା ପଟର କୋଠରୀ ମାଗି ନେଉଥିଲେ। ଭଲ କୋଠରୀ ଖୋଜିବା ପାଇଁ ଏଥିରୁ ସୃଷ୍ଟି ହୋଇଥିଲା କଥନିକା - 'ଭାରତକୁ ବାମ, ଘରକୁ ଡାହାଣ'।

ଲମ୍ବା ଯାତ୍ରାର ବିରକ୍ତିରୁ ହେଉ ବା ଅଳ୍ପଦିନ ଭିତରେ ଶୀତଳ ଭୂମଧ୍ୟ ସାଗର ଛୁଇଁବାର ଖୁସିରୁ ହେଉ, ରାମାନୁଜନ୍‌ଙ୍କ ବ୍ୟବହାର ବେଶ୍ ହାଲୁକା ଓ ମେଳାପୀ ହୋଇଗଲା। ସୁଏଜ କେନାଲରେ ପଶିବା ପରଠାରୁ ପୋର୍ଟ ସଏଦ୍‌ରେ ବାହାରିବା ଭିତରେ, ମାନ୍ଦ୍ରାଜ ଛାଡ଼ିବାର ଠିକ୍ ଦୁଇ ସପ୍ତାହ ପରେ, ସେ ଅନ୍ତତଃ ଚାରିଟି ଚିଠି ଭାରତକୁ ପଠାଇଥିଲେ। ସେଥିରୁ ଗୋଟିଏ ଚିଠି ଥିଲା ବିଶ୍ୱନାଥ ଶାସ୍ତ୍ରୀଙ୍କ ପାଖକୁ ଯେଉଁଥିରେ ମିଶର ଦେଶର ଡାକ ଟିକଟ ଲାଗିଥିଲା। ଆଉ ଗୋଟିଏ ଥିଲା ରାମଚନ୍ଦ୍ର ରାଓଙ୍କ ପୁତୁରା କ୍ରିଷ୍ଣା ରାଓଙ୍କ ପାଖକୁ। ଦ୍ୱିତୀୟ ଚିଠିରେ ସେ ଜାହାଜ ଯାତ୍ରା ବିଷୟରେ ଲେଖିଲା ପରେ ଯୋଡ଼ିଥିଲେ, "ମୁଁ ସିଧା କେମ୍ବ୍ରିଜ ଯିବି କି ଲଣ୍ଡନରେ ରହିକରି ଯିବି ତା ମୁଁ ଜାଣେନାହିଁ। ଇଂଲଣ୍ଡରେ ପହଞ୍ଚି ଥୟ ହେଲା ପରେ ମୁଁ ସବୁ କିଛି ଲେଖିବି। ତୁମ ଭାଇଙ୍କୁ ମୋର ଶୁଭେଚ୍ଛା ଏବଂ ଦାଦାଙ୍କୁ ମୋର ସମ୍ମାନ ଓ ଗଭୀର କୃତଜ୍ଞତା ଜଣାଇବ।" ଏପ୍ରିଲ ସାତ ତାରିଖ ଦିନ ଜାହାଜ ଜେନୋଆଠାରେ ଅଟକିଥିଲାବେଳେ ରାମାନୁଜନ୍ ଆଉ ଗୋଟିଏ ଚିଠି ପଠାଇଥିଲେ।

ମାର୍ସାଇଲ୍, ଜିବ୍ରାଲିଟର ପ୍ରଣାଳୀ, ବିସ୍କେ ଉପସାଗର ଦେଇ ନେଭାସା ଶେଷରେ ଇଂଲଣ୍ଡରେ ପହଞ୍ଚିଲା। ପ୍ରଥମେ ପ୍ଲିମଥ୍ ବନ୍ଦରରେ ଅଟକି, ଇଂଲିଶ ପ୍ରଣାଳୀ ଦେଇ ତାହା ଏପ୍ରିଲ ମାସ ଚଉଦ ତାରିଖରେ ଟେମ୍‌ସ୍ ନଦୀ ମୁହାଣରେ ପହଞ୍ଚିଲା।

ସେ ଦିନ ଆକାଶ ପରିଷ୍କାର ଥିବାରୁ ପାଗ ଉଜ୍ଜ୍ୱଳ ଓ ଉଷୁମ ଥିଲା। ଗଲା କେତେଦିନ ଧରି ପାଗ ଭଲ ରହୁଥିଲା। ବନ୍ଦରରେ ନେଭିଲ୍ ଓ ତାଙ୍କ ବଡ଼ ଭାଇ ଅପେକ୍ଷା କରିଥିଲେ। ସେମାନେ ଆଣିଥିବା ମଟର ଗାଡ଼ିରେ ସମସ୍ତେ ଲଣ୍ଡନର ଦକ୍ଷିଣ କେନ୍ସିଙ୍ଗ୍‌ଟନ୍ ଅଞ୍ଚଳରେ ଥିବା 21 କ୍ରମ୍‌ୱେଲ୍ ରୋଡ୍ ଘରକୁ ଗଲେ। ଭାରତରୁ ସଦ୍ୟ ପହଞ୍ଚିଥିବା ଛାତ୍ରମାନଙ୍କ ପାଇଁ ତାହା ଏକ ସ୍ୱାଗତ କେନ୍ଦ୍ର ଥିଲା।

ସେ ସମୟରେ ଲଣ୍ଡନର ଜନସଂଖ୍ୟା ଥିଲା ପ୍ରାୟ ପଚାଶ ଲକ୍ଷ ଏବଂ ତା'ର ଆକାର ବଢ଼ି ବଢ଼ି ପୁରୁଣା ସୀମା ଡେଇଁ ସରି ଓ ମିଡଲ୍‌ଏସେକ୍ସର ଗ୍ରାମାଞ୍ଚଳକୁ ମାଡ଼ି ଯାଇଥିଲା। ମାନ୍ଦ୍ରାଜ ଥିଲା ଦକ୍ଷିଣ ଭାରତର ରାଜଧାନୀ। ଲୋକ ସଂଖ୍ୟାରେ ତା'ଠାରୁ ଦଶଗୁଣ ବଡ଼ ଲଣ୍ଡନ ଥିଲା ପୃଥିବୀର ରାଜଧାନୀ - ପୃଥିବୀର ବିଭିନ୍ନ ଅଞ୍ଚଳରେ ଖେଳାଇ ହୋଇ ରହିଥିବା ଇଂରେଜ ସାମ୍ରାଜ୍ୟ ପରିଚାଳିତ ହେଉଥିଲା ଏହି ଲଣ୍ଡନରୁ। ଲଣ୍ଡନରେ ଏବେ ବି ଘୋଡ଼ାଗାଡ଼ି ଚାଲୁଥିଲା, କିନ୍ତୁ ଶବ୍ଦ ଓ ଧୂଆଁ ଛାଡୁଥିବା ଦୁଇ ମହଲା ବସ୍ ସହିତ ସେଗୁଡ଼ିକ ତାଳ ଦେଇପାରୁ ନ ଥିଲେ। ଲଣ୍ଡନ ବେଗବାନ ହୋଇ ଚାଲିଥିଲା। ହାର୍ଡିଙ୍କ ସାଙ୍ଗ ଲିଓନାର୍ଡ ଉଲ୍‌ଫ୍ ଶ୍ରୀଲଙ୍କାରେ ସାତବର୍ଷ କଟାଇ ଫେରିବା ପରେ ଅନୁଭବ କରିଥିଲେ ଯେ ତାଙ୍କର ପରିଚିତ ପୁରୁଣା ଲଣ୍ଡନ ତୁଳନାରେ ନୂଆ ଲଣ୍ଡନର ବେଗ ଓ ଶବ୍ଦ ଅନେକ ଗୁଣ ବଢ଼ିଯାଇଛି।

ମାନ୍ଦ୍ରାଜରେ ଥିବା ଇଂରେଜମାନେ ମୁଖ୍ୟତଃ ଉଚ୍ଚ ସାମାଜିକ ସ୍ତରରୁ ଆସିଥିଲେ ଏବଂ ତାଙ୍କର ଭାଷା ଓ ଉଚ୍ଚାରଣରେ ତାହା ପ୍ରତିଫଳିତ ହେଉଥିଲା। ସେମାନେ ସମସ୍ତେ ଶିକ୍ଷିତ ଥିଲେ ଏବଂ ଶାରୀରିକ ପରିଶ୍ରମ କରୁ ନ ଥିଲେ। କିନ୍ତୁ ଲଣ୍ଡନର ରାସ୍ତାଘାଟରେ ସେ ଦୋକାନୀଙ୍କର ଚେଁ

ଚେଁଇଆଁ କକ୍‌ନି ଉଚ୍ଚାରଣ ଶୁଣିଲେ, ସନ୍ଧ୍ୟାବେଳେ ଲମ୍ବା ବାଡ଼ି ଧରି ରାସ୍ତା ଆଲୁଅ ଜଳାଉଥିବା, ଛୁରୀ ଧାର କରୁଥିବା ବା ରୁଟି ବିକୁଥିବା ଲୋକମାନଙ୍କୁ ମଧ୍ୟ ସେ ଦେଖିଲେ। ଏଠାରେ ସେ ସବୁ ପ୍ରକାରର ଇଂରେଜ ଲୋକଙ୍କୁ ଦେଖିବାକୁପାଇଲେ। ସେମାନଙ୍କ ଭିତରେ ଥିଲେ ଉଚ୍ଚ ବର୍ଗର ଲୋକ ଓ ଶ୍ରମିକ ଏବଂ ଦାମିକା ଲୁଗା ପିନ୍ଧିଥିବା ମହିଳା ଓ ଚିରା ପୋଷାକ ପିନ୍ଧିଥିବା ସ୍ତ୍ରୀଲୋକ।

ଜାହାଜରୁ ଓହ୍ଲାଉ ଓହ୍ଲାଉ ଭାରତୀୟମାନେ ଇଂଲଣ୍ଡର ନୂଆ ଦୁନିଆକୁ ସାମନା କରନ୍ତି। କ୍ରମୱେଲ ରାସ୍ତାର ସ୍ୱାଗତ କେନ୍ଦ୍ର ସେହି ଅଜଣା ଦୁନିଆରେ ପ୍ରବେଶ କରିବାରେ ଭାରତୀୟମାନଙ୍କୁ ସାହାଯ୍ୟ କରିବା ପାଇଁ ରହିଥିଲା। କିନ୍ତୁ ତାହା ଏଦିଗରେ ବିଶେଷ ସଫଳ ହେଉ ନ ଥିଲା। ସେହି କୋଠାରେ ନାସନାଲ ଇଣ୍ଡିଆ ଆସୋସିଏସନ୍‌ର ଅଫିସ୍ ମଧ୍ୟ ରହିଥିଲା। ଇଂଲଣ୍ଡକୁ ନୂଆକରି ଆସିଥିବା ଭାରତୀୟମାନେ ରହିବା ପାଇଁ ସେଠାରେ ବ୍ୟବସ୍ଥା ଥିଲା। ଆଶା କରାଯାଉଥିଲା ଯେ ଏହି କେନ୍ଦ୍ର ନୂଆ ପରିବେଶରେ ଖାପଖାଇବା କାମକୁ ସହଜ କରିଦେବ। କେତେ ବର୍ଷ ପରେ କରାଯାଇଥିବା ଏକ ସର୍ବେକ୍ଷଣରୁ ଜଣାଗଲା ଯେ ଏହା ପ୍ରକୃତରେ ସେ କାମକୁ ସହଜ ବଦଳରେ କଷ୍ଟକର କରୁଥିଲା।

ରାମାନୁଜନ୍‌ଙ୍କ ସହିତ ନେଭିଲ୍ ଥିଲେ ଏବଂ କେମ୍ବ୍ରିଜ ଅଧ୍ୟାପକଙ୍କର ଉପସ୍ଥିତି ବିଭିନ୍ନ ପରିସ୍ଥିତିରେ ସହାୟକ ହେଉଥିଲା। ଇଂଲଣ୍ଡରେ ଚାରିବର୍ଷ ଧରି ରହୁଥିବା ଜଣେ ତେଇଶି ବର୍ଷୀୟ ଇଞ୍ଜିନିଅର୍ ଏ. ଏସ୍. ରାମଲିଙ୍ଗମ୍‌ଙ୍କୁ ରାମାନୁଜନ୍ ଭେଟିଲେ। ଇଂଲଣ୍ଡ ଜୀବନ ସହିତ ନିଜକୁ ମିଶାଇ ନେବାରେ ରାମଲିଙ୍ଗମ୍ ରାମାନୁଜନ୍‌ଙ୍କୁ ସାହାଯ୍ୟ କରିଥିଲେ। ଏପ୍ରିଲ ମାସ ଅଠର ତାରିଖରେ ନେଭିଲ୍‌ଙ୍କ ସାଙ୍ଗରେ ସେ କେମ୍ବ୍ରିଜ୍ ଗଲେ। କେମ୍ବ୍ରିଜ ସହର ବାହାରେ କାମ୍ ନଦୀର ଆର ପଟରେ ଚେଷ୍ଟରଟାଉନ ରୋଡ୍‌ରେ ଥିବା ନେଭିଲ୍‌ଙ୍କ ଘରେ ସେ ରହିଲେ।

ଚେଷ୍ଟରଟାଉନ ରୋଡ୍‌ରେ ସୁନ୍ଦର ଛୋଟ ଘରଗୁଡ଼ିଏ ଥିଲା। ସେଗୁଡ଼ିକ ରାସ୍ତାରୁ କିଛି ପଛକୁ ରହିଥିଲା ଓ ବାଡ଼ରେ ଘେରା ହୋଇଥିଲା। ନେଭିଲ୍‌ଙ୍କ ଜାଗାଟି ଆଗପଟକୁ ବେଶ୍ ଛୋଟ ଥିଲା କିନ୍ତୁ ପଛରେ ତାହା ଓସାରିଆ ହୋଇଥିଲା। ନୂଆକରି ବାହା ହୋଇଥିବା ନେଭିଲ୍ ଓ ତାଙ୍କ ସ୍ତ୍ରୀ ଏଲିସ୍ ପୂର୍ବ ବର୍ଷ ଏହି ଘରକୁ ଆସିଥିଲେ ଏବଂ ଏବେ 1914 ମସିହାର ବସନ୍ତ ଋତୁରେ ଦୁଇ ମାସ ପାଇଁ ତାହା ରାମାନୁଜନ୍‌ଙ୍କ ଘର ହେବ।

1850 ମସିହା ବେଳକୁ ଏହା ଏକ ଦୁଇ ମହଲା ଘର ଭାବରେ ତିଆରି ହୋଇଥିଲା ଏବଂ ଅଳ୍ପଦିନ ଭିତରେ କିଛି ବଢ଼ା ଯାଇଥିଲା। ବେଶ୍ ପରେ ତାହା ଉପରେ ତିନିଟି ବଖରା ଥିବା ତୃତୀୟ ମହଲା ଗଢ଼ା ହୋଇଥିଲା। ଫଳରେ ନେଭିଲ୍‌ଙ୍କ ଘରେ ବହୁତ ଜାଗା ଥିଲା ଏବଂ ଘରର ଯେ କୌଣସି ଅଂଶରେ ରହିଲେ ବି ରାମାନୁଜନ୍ ଏକାନ୍ତତା ପାଉଥିଲେ। ଛୋଟ ଘରେ ଅନେକ ଲୋକଙ୍କ ସହିତ ରହୁଥିବାରୁ ଆଗରୁ ସେ କେବେ ଏଭଳି ଏକାନ୍ତତା ପାଇ ନ ଥିଲେ। ଘରର ପଛରେ ଗୋଟିଏ ବଡ଼ ବଗିଚା ଥିଲା ଏବଂ ଦ୍ୱିତୀୟ ମହଲା ବାରଣ୍ଡାରୁ କାମ୍ ନଦୀ ଓ ଭିକ୍ଟୋରିଆ ସେତୁ ଦେଖାଯାଉଥିଲା। ଆହୁରି ଦୂରରେ କଲେଜ ପ୍ରାଙ୍ଗଣକୁ ଯାଇଥିବା ଅଙ୍କାବଙ୍କା ଚଲା ବାଟ ସବୁ ଦିଶୁଥିଲା।

ପହଞ୍ଚିଲା ପରେ ରାମାନୁଜନ୍‌ଙ୍କୁ କିଛି ଅଫିସ୍ କାମ ସାରିବାକୁ ପଡ଼ିଲା। ଟଙ୍କା ଦାଖଲ କରିବା, ପଞ୍ଜୀକରଣ କରାଇବା ଆଦି ଅଧିକାଂଶ କାମରେ ହାର୍ଡି ଓ ନେଭିଲ୍ ସାହାଯ୍ୟ କରୁଥିଲେ।

ପ୍ରଥମ ବର୍ଷ ଛାତ୍ରଙ୍କ ତାଲିକାରେ ରାମାନୁଜନ୍‌ଙ୍କ ନାଁ ହାତଲେଖାରେ ଯୋଡ଼ାଗଲା। ତାଙ୍କର ପ୍ରଥମ କେତେ ସପ୍ତାହ ଭଲରେ କଟିଗଲା। ବସନ୍ତ ଋତୁର ପାଗ ଖୁବ୍ ଭଲ ଥିଲା ଏବଂ ଚାରିଆଡ଼େ ଫୁଲ ହସୁଥିଲା। ସେହି ମାସ ଶେଷରେ ସମ୍ରାଟ ଜର୍ଜ କେମ୍ବ୍ରିଜ ଆସିଥିଲେ ଏବଂ ପରିବେଶରେ ଉଦ୍ଦୀପନା ଖେଳୁଥିଲା। ସମ୍ରାଟଙ୍କୁ ସ୍ୱାଗତ କରିବା ପାଇଁ ପତାକା ଧରି ଧାଡ଼ି ବାନ୍ଧିଥିବା ପିଲାମାନେ ସମ୍ରାଟଙ୍କୁ ଦେଖିବା ଅପେକ୍ଷା ତାଙ୍କ ମଟର ଗାଡ଼ିକୁ ଦେଖିବା ପାଇଁ ବେଶି ଆଗ୍ରହ ଦେଖାଉଥିଲେ। ନୂଆ କାମର ଆଶା ରାମାନୁଜନ୍‌ଙ୍କ ମନରେ ଉତ୍ସାହ ଆଣୁଥିଲା।

ହାର୍ଡି ଓ ଲିଟଲ୍‌ଉଡ୍‌ଙ୍କ ସହିତ ରାମାନୁଜନ୍ ତାଙ୍କ କାମ ମଧ୍ୟ ଆରମ୍ଭ କରି ଦେଇଥିଲେ। ଲିଟଲ୍‌ଉଡ୍‌ଙ୍କୁ ସେ ସପ୍ତାହକୁ ପ୍ରାୟ ଥରେ ଭେଟୁଥିଲେ, କିନ୍ତୁ ହାର୍ଡି ଓ ସେ ବେଶ୍ ଅଧିକ ସମୟ ଏକାଠି କଟାଉଥିଲେ। ରାମାନୁଜନ୍ କଠିନ ପରିଶ୍ରମ କରୁଥିଲେ ଓ କାମରୁ ସେ ଭଲ ଫଳ ମଧ୍ୟ ପାଉଥିଲେ, ତେଣୁ ଖୁସୀ ଥିଲେ। ଜୁନ ମାସରେ ଘରକୁ ସେ ଚିଠିରେ ଲେଖିଥିଲେ, "ଏଠାରେ ଶ୍ରୀ ହାର୍ଡି, ଶ୍ରୀ ନେଭିଲ୍ ଓ ଅନ୍ୟମାନେ କିଛି ଆଡ଼ମ୍ବର ଦେଖାନ୍ତିନାହିଁ। ସେମାନେ ଖୁବ୍ ଦୟାଳୁ ଓ ସାହାଯ୍ୟପରାୟଣ।"

କେମ୍ବ୍ରିଜରେ ରାମାନୁଜନ୍ ବିଧିବଦ୍ଧ ଭାବରେ ପଢ଼ିବାର ନ ଥିଲା। କିନ୍ତୁ ସେ ନିଜ ଆଗ୍ରହରୁ କିଛି ଶ୍ରେଣୀରେ ବସୁଥିଲେ। ସେଥିରୁ କିଛି ଥିଲା ହାର୍ଡିଙ୍କର। ଅଧ୍ୟାପକ ଆର୍ଥର ବେରିଙ୍କର ଉପବୃତ୍ତୀୟ ସମାକଳ ଶ୍ରେଣୀରେ ମଧ୍ୟ ରାମାନୁଜନ୍ ବସୁଥିଲେ। ଦିନେ ବେରି କଳାପଟାରେ କିଛି ସମୀକରଣର ସମାଧାନ କରି ଶ୍ରେଣୀର ପିଲାଙ୍କ ଆଡ଼କୁ ଚାହିଁଲେ। ରାମାନୁଜନ୍ ଅତି ଉତ୍ସାହିତ ମନେ ହେଉଥିଲେ, ସେ ବୁଝୁଛନ୍ତି କି ନାହିଁ ସେକଥା ବେରି ତାଙ୍କୁ ପଚାରିଲେ। ରାମାନୁଜନ୍ ମୁଣ୍ଡ ଟୁଙ୍ଗାରି ହଁ କଲେ। ବେରି ପୁଣି ପଚାରିଲେ, ସେ କିଛି ଯୋଡ଼ିବାକୁ ଚାହୁଁଛନ୍ତି କି? ରାମାନୁଜନ୍ ଉଠି କଳାପଟାକୁ ଗଲେ ଏବଂ ବେରି ପ୍ରମାଣ କରି ନ ଥିବା କିଛି ଫଳାଫଳ ଲେଖିଲେ। ବେରିଙ୍କ ଶ୍ରେଣୀରୁ ରାମାନୁଜନ୍ ତାହା ଜାଣିବାର ବାଟ ନ ଥିଲା, କାରଣ ବେରି ସେଯାଏଁ ଯାଇ ନ ଥିଲେ।

ରାମାନୁଜନ୍‌ଙ୍କ ବିଷୟରେ ବିଭିନ୍ନ କଥା ଶୁଣିବାକୁ ମିଳୁଥିଲା। ଜଣେ ପ୍ରାକ୍‌ସ୍ନାତକ ଛାତ୍ର ଡବ୍ଲିଉ. ଏନ୍. ବେଲି କହନ୍ତି, "ଆମେ ବିଚିତ୍ର ଗୁଜବ ଶୁଣିଥିଲୁ ଯେ ସେ ପରୀକ୍ଷାରେ ପାସ୍ କରିପାରୁ ନ ଥିଲେ ଏବଂ ପରୀକ୍ଷାକୁ ଡରି ସେ ପଳାଇ ଆସିଛନ୍ତି। ତାଙ୍କ ନାଁ ରାମାନୁଜନ୍ ବୋଲି ଆମେ ପଢ଼ିଥିଲୁ, କିନ୍ତୁ କେହି ତାହା ଠିକ୍ ଭାବରେ ଉଚ୍ଚାରଣ କରିପାରୁ ନ ଥିଲେ।" ରାମାନୁଜନ୍ ବାହାରେ ବେଶି ଦେଖିବାକୁ ମିଳୁ ନ ଥିଲେ। ନିଜ କୋଠରୀରେ ସେ ଅଧିକାଂଶ ସମୟ ବ୍ୟସ୍ତ ରହୁଥିଲେ। କିନ୍ତୁ ଯିଏ ତାଙ୍କୁ ଦେଖୁଥିଲେ, ମନେରଖୁଥିଲେ। ତାଙ୍କର ଗେଡ଼ା, ମୋଟା ଚେହେରା, ଏକାପଣିଆ ଏବଂ ଚଟିପିନ୍ଧା (ଯୋତା ସେ ପିନ୍ଧିପାରୁ ନ ଥିଲେ) ପାଦଘୋଷଡ଼ା ଚାଲି ଧ୍ୟାନ ଆକର୍ଷଣ କରୁଥିଲା।

ରାମାନୁଜନ୍‌ଙ୍କର ଅଧିକାଂଶ ସମୟ ହାର୍ଡିଙ୍କ କୋଠରୀରେ କଟୁଥିଲା। ଏହା କିନ୍ତୁ ନେଭିଲ୍‌ଙ୍କ ଘରଠାରୁ ବେଶ୍ ଦୂର ଥିଲା ଏବଂ ରାମାନୁଜନ୍‌ଙ୍କୁ ପ୍ରାୟ କୋଡ଼ିଏ ମିନିଟ ଚାଲିକରି ଆସିବାକୁ ପଡୁଥିଲା। ତେଣୁ ନେଭିଲ୍‌ଙ୍କ ଘରେ ଦେଢ଼ ମାସ ରହିବା ପରେ ସେ ହ୍ୱେୱେଲ୍ କୋର୍ଟର ଏକ କୋଠରୀକୁ ଚାଲିଆସିଲେ। ଜଣେ ସାଙ୍ଗଙ୍କ ପାଖକୁ ଚିଠିରେ ସେ ଲେଖିଥିଲେ ଯେ ବାହାରେ ରହିଲେ ମୋ ପାଇଁ ଓ ଅଧ୍ୟାପକମାନଙ୍କ ପାଇଁ ସୁବିଧା ହେଉନାହିଁ।

ନେଭିଲ୍‌ଙ୍କ ଘର ଛାଡ଼ିବାରେ ତାଙ୍କୁ ବୋଧହୁଏ ଦୁଃଖ ଲାଗିଥିଲା। ନେଭିଲ୍ ଥିଲେ ପ୍ରଥମ ଇଂରେଜ ଯିଏ ରାମାନୁଜନ୍‌ଙ୍କର ବିଶ୍ୱାସଭାଜନ ହୋଇପାରିଥିଲେ। ଇଂଲଣ୍ଡରେ ପହଞ୍ଚିବା ପରଠାରୁ ନେଭିଲ୍ ରାମାନୁଜନ୍‌ଙ୍କର ସବୁକଥା ବୁଝୁଥିଲେ ଓ ଇଂରେଜ ବାତାବରଣରେ ମିଶିଯିବା ପାଇଁ ଅନେକ ସାହାଯ୍ୟ କରିଥିଲେ। ଆହୁରି ମଧ୍ୟ ନେଭିଲ୍ ଓ ଏଲିସ୍ ଖୁବ୍ ଅତିଥିପରାୟଣ ଥିଲେ। ଉଦାର ଚିନ୍ତାଧାରାର ଏହି ଯୁବଦମ୍ପତି ରାମାନୁଜନ୍‌ଙ୍କ ସହିତ ଏକ ସ୍ୱତନ୍ତ୍ର ମାନସିକ ସମ୍ପର୍କ ଯୋଡ଼ିସାରିଥିଲେ ଏବଂ ତାଙ୍କର ବିଶେଷ ଯତ୍ନ ନେଉଥିଲେ।

ହ୍ୱେୱେଲ୍ କୋର୍ଟ ହାର୍ଡିଙ୍କ ରହିବା ଜାଗାରୁ ମାତ୍ର ପାଞ୍ଚ ମିନିଟର ବାଟ ଥିଲା। ଏଠାରେ ରହି ରାମାନୁଜନ୍ ଗଣିତ ବିଷୟରେ ତାଙ୍କ ପୃଷ୍ଠଭୂମିକୁ ଦୃଢ଼ କରିବା କଥା ଭାବିଲେ। ତାଙ୍କୁ ଅନ୍ତତଃ କୋଡ଼ିଏ ବର୍ଷର ପାଠ ଆୟତ୍ତ କରିବାକୁ ହେବ। ତାଙ୍କର ଗଣିତ ଶିକ୍ଷା କାର୍‌ଙ୍କ ବହିରେ ସୀମିତ ଥିଲା। କିନ୍ତୁ ସେହି ବହି ଲେଖାହେବା ବେଳକୁ ହିଁ ପୁରୁଣା ହୋଇ ସାରିଥିଲା। ୧୫୫୬ ମସିହାରେ ପ୍ରକାଶିତ ହୋଇଥିଲେ ବି 1850 ପରେ ବିକଶିତ ହୋଇଥିବା ଗଣିତର ନୂଆ ବିଷୟ ସବୁକୁ ତାହା ଛୁଇଁ ନ ଥିଲା।

## 2. ଏକାଠି

ରାମାନୁଜନ୍ ଓ ହାର୍ଡି ଏବେ କେମ୍ବ୍ରିଜରେ ଏକାଠି। ଦୂରରେ ଥାଇ ଚିଠି ମାଧ୍ୟମରେ ଯୋଗାଯୋଗର ବାଧ୍ୟବାଧକତା ଏବଂ ତା'ର ଅପୂର୍ଣ୍ଣତା ଓ ଭୁଲ ବୁଝାମଣାର ସମ୍ଭାବନା ଏବେ ଦୂର ହୋଇଛି। ଦୁହେଁ ଏବେ ପ୍ରତିଦିନ ଏକାଠି ବସି ଗଣିତ ଚର୍ଚ୍ଚା କରିପାରୁଛନ୍ତି – ଆଗାମୀ କେତେ ବର୍ଷ ଧରି ଏହା ଚାଲୁରହିବ। ରାମାନୁଜନ୍‌ଙ୍କ ନୋଟ ଖାତା ଖୋଲା ହୋଇ ମଝିରେ ରହୁଛି, ତାଙ୍କର ବିଭିନ୍ନ ଧାରା ବିଷୟରେ ସେ ହାର୍ଡିଙ୍କୁ ବୁଝାଉଛନ୍ତି ଏବଂ ହାର୍ଡି ସେସବୁର ବିଶ୍ଳେଷଣ ଓ ଅନୁଧ୍ୟାନରେ ବୁଡ଼ିରହୁଛନ୍ତି।

ଚିଠିରେ ରାମାନୁଜନ୍ ପଠାଇଥିବା 120ଟି ପ୍ରମେୟ ଭିତରୁ ଅନେକଗୁଡ଼ିଏ ତାଙ୍କ ନୋଟ ଖାତାରୁ ଅବିକଳ ଭାବରେ ନିଆଯାଇଥିଲା। ତା ଭିତରେ ଥିଲା ପ୍ରଥମ ଚିଠିର ସେହି ଉଦ୍ଭଟ ପ୍ରମେୟ ଯାହାକୁ ଦେଖି ରାମାନୁଜନ୍‌ଙ୍କୁ ପାଗଳ ଗାରଦ ପଠାଇବା ଉଚିତ ବୋଲି ହୁଏତ ହାର୍ଡି ଭାବିବାର ଡର ଥିଲା। ସେଥିରେ ରାମାନୁଜନ୍ ଦେଖାଇଥିଲେ ଯେ $1 + 2 + 3 + 4 + \ldots = -{}^{1}/_{12}$ । ଆଖି ପକାଉ ପକାଉ ଯେ କେହି ବି ଏହାକୁ ହାସ୍ୟାସ୍ପଦ ମନେ କରିବ, କାରଣ ବଢ଼ି ଚାଲିଥିବା ସଂଖ୍ୟା ଶ୍ରେଣୀର ମିଶାଣଫଳ ସ୍ୱାଭାବିକ ଭାବରେ ଅସୀମ ହିଁ ହେବ। କିନ୍ତୁ ଏଥିରେ ରାମାନୁଜନ୍ ଅପସାରୀ ଶ୍ରେଣୀର ଗୁଣଧର୍ମ ବୁଝାଇବାକୁ ଚେଷ୍ଟା କରିଥିଲେ। ଏହା ପାଇଁ ସେ ମୌଳିକ ପଦାର୍ଥ ବିଜ୍ଞାନର ଅବଧାରଣାକୁ ଆଧାର କରି କୌଣସି ପିଣ୍ଡର ଗୁରୁତ୍ୱକେନ୍ଦ୍ର ଭଳି ଏକ ସ୍ଥିରାଙ୍କର କଳ୍ପନା କରିଥିଲେ।

ହାର୍ଡି ଦେଖିଲେ ଯେ ରାମାନୁଜନ୍‌ଙ୍କ ଫଳ ଭିତରୁ କିଛି ଭୁଲ ଥିଲା। ଆଉ କିଛି ରାମାନୁଜନ୍ ଭାବୁଥିଲା ଭଳି ଏତେ ଗୁରୁତ୍ୱପୂର୍ଣ୍ଣ ନ ଥିଲା। ଅନ୍ୟ କେତେଗୁଡ଼ିଏ ଥିଲା ପୁନଃଆବିଷ୍କାର – ପାଶ୍ଚାତ୍ୟ ଗଣିତଜ୍ଞମାନେ ଶହେ ଦୁଇଶହ ବର୍ଷ ତଳେ ପାଇଥିବା ଫଳାଫଳକୁ ରାମାନୁଜନ୍ ସ୍ୱାଧୀନ ଭାବରେ ଆଉ ଥରେ ବାହାର କରିଥିଲେ। କିନ୍ତୁ ଅନେକ ଥିଲା ବିସ୍ମୟକର ଭାବରେ ନୂଆ। ମୋଟ ପ୍ରମେୟ ଭିତରୁ ପ୍ରାୟ ଏକତୃତୀୟାଂଶ ଏହି ଶ୍ରେଣୀର ବୋଲି ହାର୍ଡି ଆକଳନ କରିଥିଲେ। ପରେ ଅନ୍ୟ

ଗଣିତଜ୍ଞମାନଙ୍କର ଗଭୀରତର ଅନୁଧ୍ୟାନ ଫଳରେ ନୂଆ ଫଳାଫଳର ଭାଗ ପ୍ରାୟ ଦୁଇତୃତୀୟାଂଶ ବୋଲି ଜଣାଗଲା। ହାର୍ଡି ଏବେ ବୁଝିଲେ ଯେ ରାମାନୁଜନ୍‌ଙ୍କ ଚିଠିରେ ଆସିଥିବା ପ୍ରମେୟତକ ଖାତାରେ ଥିବା ତିନି ଚାରି ହଜାର ପ୍ରମେୟ, ଉପପ୍ରମେୟ ଓ ଉଦାହରଣର ଅତି ଛୋଟ ଅଂଶ। ଦଶ ବର୍ଷ ଧରି ଲେଖା ଯାଇଥିବା ଖାତାର ପୃଷ୍ଠା ପରେ ପୃଷ୍ଠା ଅତି ଘନୀଭୂତ ଗଣିତରେ ଭରିଥିଲା। ପ୍ରମାଣ ବା ବ୍ୟାଖ୍ୟା ସେଥିରେ ପ୍ରାୟ ନ ଥିଲା, ଗାଣିତିକ ତତ୍ତ୍ୱଗୁଡ଼ିକ ଧାଡ଼ିଏ ଦୁଇଧାଡ଼ିରେ ନୀତି ବାକ୍ୟ ଭଳି ଲେଖା ଯାଇଥିଲା।

ସେହି ନୋଟ୍ ଖାତାଗୁଡ଼ିକ ଗୋଟିଏ ପିଢ଼ିର ଗଣିତଜ୍ଞଙ୍କୁ ବ୍ୟସ୍ତ ରଖିବ ଏବଂ ଅନେକ କ୍ଷେତ୍ରରେ ହତାଶ ମଧ୍ୟ କରିବ। କାରଣ ଘନୀଭୂତ ଅବସ୍ଥାରେ ସେଥିରେ ରହିଥିବା ଗାଣିତିକ ବିଭବର ସଠିକ ଆକଳନ ମଧ୍ୟ ସମ୍ଭବ ହେଉ ନ ଥିଲା। ପ୍ରତି ସମୀକ୍ଷା ପରେ ତାହାର ପରିସୀମା ବଢ଼ି ଚାଲିଥିଲା। ନୋଟ୍ ଖାତା ସହିତ ସାତ ବର୍ଷ କଟାଇଲା ପରେ 1921 ମସିହାରେ ହାର୍ଡି ଲେଖିଥିଲେ ଯେ ସେଥିରେ ବିଶ୍ଳେଷଣ ଅପେକ୍ଷାରେ ପ୍ରଚୁର ଅପ୍ରକାଶିତ ଗଣିତ ରହିଛି। ଦୁଇବର୍ଷ ପରେ ହାର୍ଡି ରାମାନୁଜନ୍‌ଙ୍କ ପ୍ରଥମ ନୋଟ୍ ଖାତାର ଦ୍ୱାଦଶ ଓ ତ୍ରୟୋଦଶ ଅଧ୍ୟାୟର ଅତିଜ୍ୟାମିତିକ ଶ୍ରେଣୀ ବିଷୟକୁ ନେଇ ଏକ ନିବନ୍ଧ ଲେଖିଥିଲେ। ସେଥିରେ ସେ ଜଣାଇଥିଲେ ଯେ ଏବେ ଯାଏଁ କେବଳ ସେହି ଦୁଇଟି ଅଧ୍ୟାୟ ଉପରେ ସେ ଗଭୀର ବିଶ୍ଳେଷଣ କରିପାରିଛନ୍ତି।

ପ୍ରାୟ ସେହି ସମୟରେ ହଙ୍ଗେରୀୟ ଗଣିତଜ୍ଞ ଜର୍ଜ ପୋଲ୍ୟା ହାର୍ଡିଙ୍କ ପାଖକୁ ଆସିଥିଲେ। ରାମାନୁଜନ୍‌ଙ୍କ ଅପ୍ରକାଶିତ ନୋଟ୍ ଖାତା ଖଣ୍ଡକ ଦେଖିବା ପାଇଁ ସେ ହାର୍ଡିଙ୍କଠାରୁ ନେଇଥିଲେ। କେତେ ଦିନ ପରେ ସେ ପ୍ରାୟ ଛାନିଆ ଅବସ୍ଥାରେ ତାହା ହାର୍ଡିଙ୍କ ପାଖରେ ଫୋପାଡ଼ିଦେଲେ କହିଲେ ଚଳେ। ପୋଲ୍ୟା ସେ ଖାତା ଦେଖିବାକୁ ଚାହାନ୍ତିନାହିଁ। କାରଣ ରାମାନୁଜନ୍‌ଙ୍କ ଯାଦୁକରୀ ପ୍ରମେୟଗୁଡ଼ିକର ମୋହରେ ପଡ଼ିଯିବା ଅତି ସହଜ, ତାହା ଘଟିଲେ ସେଗୁଡ଼ିକର ପ୍ରମାଣ ଖୋଜିବାରେ ସେ ତାଙ୍କର ସାରା ଜୀବନ ବିତାଇଦେବେ ଏବଂ ନିଜର ମୌଳିକ କାମ କିଛି କରିପାରିବେନାହିଁ।

୧୯୨୯ ମସିହାରେ ବର୍ମିଂହାମ୍ ବିଶ୍ୱବିଦ୍ୟାଳୟର ଶୁଦ୍ଧ ଗଣିତ ଅଧ୍ୟାପକ ଓ ଜଣେ ପ୍ରାକ୍ତନ ଟ୍ରିନିଟି ଫେଲୋ ଜି. ଏନ୍. ୱାଟସନ୍ ଏବଂ ରାମାନୁଜନ୍‌ଙ୍କୁ କେମ୍ବ୍ରିଜଠାରେ ଜାଣିଥିବା ଲିଭରପୁଲ ବିଶ୍ୱବିଦ୍ୟାଳୟର ଗଣିତଜ୍ଞ ବି. ଏମ୍. ୱିଲ୍‌ସନ୍ ରାମାନୁଜନ୍‌ଙ୍କ ଖାତାର ଅଧ୍ୟୟନ କରିବାର ବିଶାଳ କାମ ହାତକୁ ନେଲେ। ଦୁଇ ବର୍ଷ ପରେ ତାଙ୍କର ଅନୁଭୂତି ବିଷୟରେ ୱାଟସନ୍ କହିଥିଲେ ଯେ କାମଟି ହାଲୁକା ନୁହେଁ। ଗୋଟିଏ ଉଦାହରଣ ଦେଇ ସେ କହିଲେ ଯେ ଏକ ଯୋଡ଼ି ମଡୁଲାର୍ ସମୀକରଣର ପ୍ରମାଣ ପାଇବା ପାଇଁ ତାଙ୍କୁ ମାସେ ସମୟ ଲାଗିଗଲା। ତଥାପି କାମଟି ସେ ଦୁହିଁଙ୍କୁ ଖୁବ୍ ଲାଭଦାୟକ ମନେ ହେଉଥିଲା। ତେଣୁ ସେମାନେ ଭାବୁଥିଲେ ଯେ ତାଙ୍କ ଜୀବନର ଗୋଟିଏ ବଡ଼ ଭାଗ ରାମାନୁଜନ୍‌ଙ୍କ ନୋଟ ଖାତାର ସମ୍ପାଦନା କାମରେ ଏବଂ ରାମାନୁଜନ୍‌ଙ୍କ ପ୍ରଥମ ପର୍ଯ୍ୟାୟର ଫଳାଫଳକୁ ସୁଲଭ କରାଇବାରେ ବିତାଇବା ଯଥାର୍ଥ ହେବ।

ୱାଟସନ୍ ଭାବିଥିଲେ ଯେ କାମଟି ପୂରା କରିବା ପାଇଁ ତାଙ୍କୁ ପାଞ୍ଚ ବର୍ଷ ଲାଗିବ, କିନ୍ତୁ ସେଥିରେ ପ୍ରାୟ ଦଶ ବର୍ଷ କଟାଇବା ପରେ ସେ ପ୍ରାୟ ଦୁଇ ଡଜନ ନିବନ୍ଧ ଓ ଅନେକ ଅପ୍ରକାଶିତ ନୋଟ୍ ପ୍ରସ୍ତୁତ କରିଥିଲେ। ୧୯୩୦ ଦଶକର ଶେଷ ଭାଗରେ ସେ ଅସମର୍ଥ ହୋଇ ପଡ଼ିଲେ ଏବଂ

କାମ ଛାଡ଼ିବାକୁ ବାଧ ହେଲେ। ଆରମ୍ଭରେ ୱିଲ୍‌ସନ୍ ଏହି କାମରେ ମାତ୍ର ଚାରି ବର୍ଷ କଟାଇ ପାରିଥିଲେ। 1935 ମସିହାରେ ଏକ ସାଧାରଣ ଅସ୍ତ୍ରୋପଚାର ପରେ ସେ ଅପ୍ରତ୍ୟାଶିତ ଭାବରେ ପ୍ରାଣ ହରାଇଲେ।

ୱାଟସନ୍ ଓ ୱିଲ୍‌ସନ୍‌ଙ୍କ ଅଧୁରା କାମକୁ ଆଗେଇ ନେବାକୁ 1977 ମସିହାରେ ଆମେରିକୀୟ ଗଣିତଜ୍ଞ ବ୍ରୁସ୍ ବର୍ଣ୍ଣ ବାହାରିଲେ। ତେର ବର୍ଷର କାମର ଫଳ ଭାବରେ ସେ ରାମାନୁଜନ୍‌ଙ୍କ ନୋଟ୍ ଖାତା ଉପରେ ତିନିଟି ବହି ପ୍ରକାଶ କରିଥିଲେ ଏବଂ କାମ ଚାଲୁ ରଖିଥିଲେ।

ଏହି ପରିପ୍ରେକ୍ଷୀରେ ଦେଖିଲେ ଜାଣିହେବ ଯେ ରାମାନୁଜନ୍ ଇଂଲଣ୍ଡରେ ପହଞ୍ଚିବାର କେତେ ମାସ ଭିତରେ ହାର୍ଡି ଓ ଲିଟଲ୍‌ଉଡ୍ ନୋଟ୍ ଖାତାଗୁଡ଼ିକୁ କେବଳ ଓଲଟାଇ ପାରିଥିବେ। ହୁଏତ କିଛି ଜାଗାରେ ସେମାନେ ଟିକିଏ ଗଭୀରକୁ ଯାଇଥିବେ, ଆଉ କେଉଁଠି କିଛି ଆଗ୍ରହଜନକ କଥା ଦେଖି ଅଧିକ ପଢ଼ିଥିବେ ଏବଂ କେଉଁଠି କିଛି ପ୍ରମାଣ କରିଥିବେ ବା ବୁଝିବାକୁ ଚେଷ୍ଟା କରିଥିବେ। ତଥାପି ସେହି ଓଲଟାଇବା ଭିତରେ ସେମାନେ ଚିଠିରୁ ପାଇଥିବା ଧାରଣା ଦୃଢ଼ୀଭୂତ ହୋଇଥିବ।

ରାମାନୁଜନ୍‌ଙ୍କ ଦ୍ୱିତୀୟ ଚିଠି ପରେ ଲିଟଲ୍‌ଉଡ୍ ହାର୍ଡିଙ୍କୁ ଜଣାଇଥିଲେ, "ମୁଁ ବିଶ୍ୱାସ କରୁଛି ଯେ ସେ ଆଉ ଜଣେ ଜାକୋବି।" ଉତ୍ତରରେ ହାର୍ଡି ରାମାନୁଜନ୍‌ଙ୍କୁ ଆହୁରି ବେଶି ସମ୍ମାନ ଦେଇ ଲେଖିଥିଲେ, "ବୀଜଗାଣିତିକ ସମୀକରଣ, ଅସୀମ ଶ୍ରେଣୀର ରୂପାନ୍ତରଣ ଆଦି ବିଷୟରେ ତାଙ୍କର ଅନ୍ତର୍ଦୃଷ୍ଟି ମୋତେ ଅତି ବିସ୍ମୟଜନକ ଲାଗୁଛି। ଏହି ସବୁ କ୍ଷେତ୍ରରେ ତାଙ୍କର ସମକକ୍ଷ ଆଉ କାହାକୁ ମୁଁ ଜାଣିନାହିଁ। କେବଳ ଅଏଲର୍ ବା ଜାକୋବିଙ୍କ ସହିତ ମୁଁ ତାଙ୍କୁ ତୁଳନା କରିପାରିବି।"

ଗଣିତର ଇତିହାସରେ ଅଏଲର୍ ଓ ଜାକୋବି ଦୁହେଁ ଅତି ବିଶିଷ୍ଟ ସ୍ଥାନର ଅଧିକାରୀ ଥିଲେ। ପ୍ରାୟ ଆଠ ଶହ ନିବନ୍ଧ ଓ ବହି ଲେଖିଥିବା ଲିଓନାର୍ଡ ଅଏଲର ଅଷ୍ଟାଦଶ ଶତାବ୍ଦୀର ସବୁଠାରୁ ବଡ଼ ଉତ୍ପାଦନଶୀଳ ଗଣିତଜ୍ଞ ଥିଲେ ବୋଲି କୁହାଯାଏ। ତାଙ୍କର ନିବନ୍ଧ ଓ ବହି ଗଣିତର ସବୁ ବିଭାଗକୁ ଛୁଇଁଥିଲା ସେଥିରୁ ଅନେକଗୁଡ଼ିଏ ସେ ଦୃଷ୍ଟିଶକ୍ତି ହରାଇବା ପରେ ଲେଖାଯାଇଥିଲା। ତ୍ରିକୋଣମିତିକ ଫଳନର ଆଧୁନିକ ରୂପ ଅଏଲର୍ ହିଁ ସୃଷ୍ଟି କରିଥିଲେ। ଏହା 1948 ମସିହାରେ ପ୍ରକାଶିତ ତାଙ୍କ *ଇଣ୍ଟ୍ରୋଡକ୍ସିଓ ଇନ୍ ଆନାଲାଇସିନ୍ ଇନ୍‌ଫାଇନାଇଟୋରମ୍* ବହିରେ ବର୍ଣ୍ଣିତ ହୋଇଥିଲା।

ବର୍ତ୍ତମାନର ଗଣିତ ପାଠ ବହିରେ ଅଏଲର୍ ସ୍ଥିରାଙ୍କ, ଅଏଲର୍ ନିର୍ଦ୍ଧାରକ, ଅଏଲର୍-ମାକ୍‌ଲରିନ୍ ସୂତ୍ର, ଅଏଲର୍ ସମାକଳ, ଅଏଲର୍ ସଂଖ୍ୟା ଭଳି ଅନେକ ବିଷୟ ଦେଖିବାକୁମିଳେ। ଅଏଲର୍‌ଙ୍କ ମୃତ୍ୟୁର କୋଡ଼ିଏ ବର୍ଷ ପରେ ଜନ୍ମ ହୋଇଥିବା କାର୍ଲ ଗଷ୍ଟାଭ୍ ଜାକୋବ୍ ଜାକୋବି ବିଚକ୍ଷଣତାରେ ଅଏଲର୍‌ଙ୍କ ସମକକ୍ଷ ଥିଲେ। ସେ ଜର୍ମାନିର ଜଣେ ବ୍ୟାଙ୍କ ପରିଚାଳକଙ୍କ ପୁଅ ଥିଲେ। ଜାକୋବି ଉପବୃତ୍ତୀୟ ସମାକଳର ପ୍ରବର୍ତ୍ତକ ଥିଲେ ଏବଂ ସଂଖ୍ୟାତତ୍ତ୍ୱ କ୍ଷେତ୍ରରେ ତାହାର ପ୍ରୟୋଗ ଆରମ୍ଭ କରିଥିଲେ। ତାଙ୍କର ନାଁ ମଧ୍ୟ ଗଣିତର ପରିଭାଷାରେ ବିଶେଷ ସ୍ଥାନ ପାଇଛି ଏବଂ ଜାକୋବି ଉପପାଦ୍ୟ ଓ ଜାକୋବି ପଲିନୋମିଆଲ୍ ଭଳି ବିଷୟ ମାଧ୍ୟମରେ ଅମର ହୋଇଛି।

ଅଏଲର୍ ଓ ଜାକୋବି ଦୁହେଁ କେବଳ ସାଧାରଣ ଅର୍ଥରେ ଅତି ବିଶିଷ୍ଟ ଗଣିତଜ୍ଞ ନ ଥିଲେ। ସେମାନେ ଏକ ନିର୍ଦ୍ଦିଷ୍ଟ ଧାରାର ଗାଣିତିକ ପରମ୍ପରାର ଅଂଶ ଥିଲେ ଯାହାକୁ 'ଫର୍ମାଲିଜମ୍'

କୁହାଯାଉଥିଲା। ଏଠାରେ ଫର୍ମାଲ୍ ଶବ୍ଦ ପ୍ରଣାଳୀସିଦ୍ଧ ଅର୍ଥରେ ବ୍ୟବହୃତ ହୋଇନାହିଁ, ବରଂ ତାହା ରୂପ ବା ଅନ୍ତଃରୂପ ଅର୍ଥକୁ ସୂଚାଉଛି। ଏହି ଅର୍ଥରେ ଅଏଲର୍ ଓ ଜାକୋବି ଗଣିତର ସ୍ୱରୂପକୁ ବୁଝିବାର ଚେଷ୍ଟାରେ ଗଭୀର ଆନନ୍ଦ ପାଉଥିଲେ। ଗଣିତ ବିଷୟରେ ତାଙ୍କର ଗଭୀର ଅନ୍ତର୍ଦୃଷ୍ଟି ଓ ସ୍ୱଭାବଗତ ଦକ୍ଷତାର ସାହାଯ୍ୟରେ ସେମାନେ ବିଭିନ୍ନ ସୂତ୍ରକୁ ବ୍ୟବହାର କରିପାରୁଥିଲେ। ସେମାନେ ଦେଉଥିବା ଫର୍ମାଲ୍ ଫଳାଫଳ ସେହି ସୂତ୍ରଗୁଡ଼ିକରୁ ଆପେ ଆପେ ବାହାରୁଥିଲା, କିନ୍ତୁ ସୂତ୍ରର ଅର୍ଥ ଉପରେ ନିର୍ଭର କରୁ ନ ଥିଲା। ଉଦାହରଣ ସ୍ୱରୂପ, ଆଜିର କମ୍ପ୍ୟୁଟର ତ୍ରିବିମ ରେଖାଚିତ୍ରର ବିଶ୍ଳେଷଣ କରି ବିଭିନ୍ନ ଫଳ ଦେଇପାରୁଛି। କିନ୍ତୁ ମୂଳ ରେଖାଚିତ୍ର ଅର୍ଥନୀତି ସମ୍ପର୍କିତ କି ପାଣିପାଗ ସମ୍ପର୍କିତ ତାହା ବିଶ୍ଳେଷଣର ଧାରା ବା ମୌଳିକ ଫଳାଫଳକୁ ପ୍ରଭାବିତ କରେନାହିଁ। କିଛି କଳାକାର ଚିତ୍ରର ବିଷୟବସ୍ତୁ ଉପରେ ଯେତିକି ଜୋର ଦିଅନ୍ତି, ଚିତ୍ରର ପ୍ରକାର, ରେଖାର ଶୈଳୀ ଓ ରୂପବିନ୍ୟାସ ପ୍ରତି ସେତିକି ଧ୍ୟାନ ରଖନ୍ତି। ଗାଣିତିକ ଫର୍ମାଲିଷ୍ଟର ମାନସ ସେହିଭଳି କାମକରେ। ହାର୍ଡି ଓ ଲିଟଲ୍‌ଉଡ୍ ରାମାନୁଜନ୍‌ଙ୍କୁ ମଧ୍ୟ ଜଣେ ଫର୍ମାଲିଷ୍ଟ ଭାବରେ ବୁଝୁଥିଲେ।

ସବୁ ପ୍ରକାରର ଗଣିତଜ୍ଞ ସୂତ୍ର ବ୍ୟବହାର କରନ୍ତି। କିନ୍ତୁ ଫର୍ମାଲିଷ୍ଟମାନେ ଯାଦୁକର ଭଳି ସାଧାରଣ ସୂତ୍ରରୁ ବିଚିତ୍ର ପ୍ରକାରର ନୂଆ ଫଳ ବାହାର କରିପାରନ୍ତି। ଏଥିପାଇଁ ସେମାନେ ତାଙ୍କର ଅସାଧାରଣ ଅନ୍ତର୍ଦୃଷ୍ଟି ବଳରେ ଉପଯୋଗୀ କୌଶଳ ବାଛନ୍ତି। କୌଣସି ସମୀକରଣରେ ସେମାନେ ଗୋଟିଏ ଚଳ ଜାଗାରେ ଅନ୍ୟ ଗୋଟିଏ ଚଳ ବସାଇ ତାକୁ ସରଳ କରିଦେଇ ପାରନ୍ତି। କେଉଁଠି ସମାକଳନ ଦରକାର ତ କେଉଁଠି ଅବକଳନ, କେଉଁଠି ନୂଆ ଫଳନ ସୃଷ୍ଟି କରିବା ଦରକାର, କେଉଁଠି ପରିଶୁଦ୍ଧତା ଜରୁରୀ ବା କେଉଁଠି ତାହା ଜରୁରୀ ନୁହେଁ - ଏହିଭଳି ବିଭିନ୍ନ ପ୍ରକ୍ରିୟା ତାଙ୍କ ମନକୁ ଆପେ ଆପେ ଆସିଯାଏ।

କିନ୍ତୁ 1914 ମସିହା ବେଳକୁ ଫର୍ମାଲିଷ୍ଟମାନଙ୍କ ପ୍ରତି କିଛି ମାତ୍ରାରେ ବିଦ୍ରୂପଭାବ ଦେଖା ଦେଉଥିଲା। ସାମ୍ପ୍ରତିକ ଗଣିତଜ୍ଞମାନେ ପରିମାର୍ଜିତ ଓ ପରିଶୁଦ୍ଧ ଧାରାରେ ପ୍ରମାଣ ଦାବି କରୁଥିଲେ ଏବଂ ଏହି ଧାରାରେ ଫର୍ମାଲିଷ୍ଟମାନଙ୍କର ବିସ୍ମୟକର ଗାଣିତିକ ଫଳାଫଳ ଅନେକ ସମୟରେ ତର୍କସିଦ୍ଧ ହେଉ ନ ଥିଲା। ଆହୁରି ମଧ୍ୟ ଫର୍ମାଲିଷ୍ଟମାନଙ୍କୁ ପଛୁଆ ଗଣିତର ସାଧକ ଭାବରେ ଦେଖା ଯାଉଥିଲା। ଗଣିତର କୌଣସି ନୂଆ ବିଭାଗର ଆରମ୍ଭ ସମୟରେ ଅନେକ ମୂଲ୍ୟବାନ ସୂତ୍ର ବାହାରେ ଯାହା ଆଗକୁ ବାଟ ଦେଖାଇବାରେ ସାହାଯ୍ୟ କରେ। ସେହି ବିଭାଗର ବିକାଶ ଧାରାରେ ସୂତ୍ରଗୁଡ଼ିକର ପ୍ରୟୋଗ କରାଯାଏ ଏବଂ ସେସବୁର ପରିବର୍ଦ୍ଧିତ ରୂପ ବାହାରେ। କିନ୍ତୁ ଅନେକ ସମୟରେ ପରିବର୍ଦ୍ଧିତ ସୂତ୍ରଗୁଡ଼ିକ ଅତି ଜଟିଳ ହୋଇଯାଏ ଏବଂ ତା'ର ଉପଯୋଗିତା ହରାଇ ବସେ। ରାମାନୁଜନ୍‌ଙ୍କ ସମୟ ବେଳକୁ ଗଣିତର ଅନେକ ବିଭାଗରେ ଏଭଳି ଘଟି ସାରିଥିଲା।

ତେଣୁ ମେଧାବୀ ଗଣିତଜ୍ଞମାନେ ନୂଆ ସୂତ୍ର ଖୋଜିବା ଉପରେ ଗୁରୁତ୍ୱ ଦେଉ ନ ଥିଲେ। ଫର୍ମାଲିଷ୍ଟମାନଙ୍କୁ ଗଭୀର ଚିନ୍ତା କରୁ ନ ଥିବା ଗଣିତଜ୍ଞ ଭାବରେ ଦେଖାଗଲା। ଧାରଣା ସୃଷ୍ଟି ହେଲା ଯେ ସେମାନେ ଚତୁର କୌଶଳ ଖଟାଇ ସଂକୀର୍ଣ୍ଣ ଫଳ ବାହାର କରୁଥିବା ଗଣିତଜ୍ଞ ଯେଉଁମାନେ କୌଣସି ନୂଆ ଦିଗରେ ଆଗଉ ନ ଥିଲେ। ତାଙ୍କର ଗଣିତକୁ ଉଚ୍ଚ ବିଜ୍ଞାନ ଭାବରେ ନ ଦେଖି ନୀଚ ସ୍ତରର କଳା ବା କିମିଆ ଭଳି ଦେଖାଗଲା।

ରାମାନୁଜନ୍‌ଙ୍କ ଗଣିତକୁ ଶ୍ରେଣୀଭୁକ୍ତ କରିବାକୁ ହେଲେ ତାହା ଏହି ଶ୍ରେଣୀରେ ହିଁ ଖାପ ଖାଉଥିଲା। ତଥାପି ହାର୍ଡି ଦେଖିପାରୁଥିଲେ ଯେ ରାମାନୁଜନ୍‌ଙ୍କ କୌଶଳ ଯଦି ଯାଦୁକରୀ ହୋଇଥାଏ, ତେବେ ତାଙ୍କର ଯାଦୁ ଅତି ଶକ୍ତିଶାଳୀ। ଫର୍ମାଲିଷ୍ଟ ଶ୍ରେଣୀର ହୋଇଥିବା ଭଳି ମନେହେଲେ ବି ରାମାନୁଜନ୍ କୌଣସି ନିର୍ଦ୍ଦିଷ୍ଟ ଶ୍ରେଣୀରେ ପୂରାପୂରି ଖାପ ଖାଉ ନ ଥିଲେ। ହାର୍ଡି ଲେଖିଥିଲେ, "ସୂତ୍ର ଆଧାରିତ ଗଣିତର ଦିନ ଏବେ ସରି ଯାଇଛି। ରାମାନୁଜନ୍ ଶହେ ବର୍ଷ ତଳେ ଜନ୍ମ ହେବା ଉଚିତ ଥିଲା। ତଥାପି ସେ ଥିଲେ ତାଙ୍କ ସମୟର ସର୍ବଶ୍ରେଷ୍ଠ ଫର୍ମାଲିଷ୍ଟ।" ହାର୍ଡି ଆହୁରି କହିଥିଲେ ଯେ ଗାଣିତିକ କୌଶଳରେ ରାମାନୁଜନ୍‌ଙ୍କ ସମକକ୍ଷ କେହି ନ ଥିଲେ ଏବଂ ଯେଉଁ ବାଟରେ ସେ ପାଇଥା'ନ୍ତୁ ନା କାହିଁକି ତାଙ୍କର ପ୍ରମେୟଗୁଡ଼ିକ ସୁନ୍ଦର, ଅସାଧାରଣ ଏବଂ ଗଭୀର ଥିଲା।

ପ୍ରଥମ ଥର ପାଇଁ ରାମାନୁଜନ୍‌ଙ୍କ ନୋଟ୍ ଖାତାକୁ ଲମ୍ବା ସମୟ ଧରି ଦେଖିଲା ପରେ ହାର୍ଡି ଓ ଲିଟଲ୍‌ଉଡ୍‌ଙ୍କ ମନରେ ତାହା ରହସ୍ୟବୋଧ ଓ ବିସ୍ମୟ ସୃଷ୍ଟି କଲା। ରାମାନୁଜନ୍‌ଙ୍କ କାମର ଏକ ସମୀକ୍ଷାରେ ଲିଟଲ୍‌ଉଡ୍ ଲେଖିଥିଲେ, "ତାଙ୍କ ଫଳାଫଳର ସୌନ୍ଦର୍ଯ୍ୟ ଓ ଅନନ୍ୟତା ରହସ୍ୟମୟ ଲାଗେ। ବିଚିତ୍ରତା ପାଇଁ ନିର୍ବାଚିତ ଜିନିଷଠାରୁ ଏଗୁଡ଼ିକ କ'ଣ ବେଶି ବିଚିତ୍ର? ହୁଏତ ବିଚିତ୍ରତା ବିଷୟରେ ଆମର ଆଶା ସୀମିତ। ଯାହା ହେଉନା କାହିଁକି ପାଠକ ଏଥିରୁ ଅପ୍ରତ୍ୟାଶିତ ଆନନ୍ଦର ଧକ୍କା ପାଇବ।"

ହାର୍ଡିଙ୍କ ପାଇଁ ରାମାନୁଜନ୍‌ଙ୍କ ମନର ରହସ୍ୟକୁ ଖୋଲିବାର ଚେଷ୍ଟା ଥିଲା ତାଙ୍କ ଜୀବନର ସବୁଠାରୁ ଗଭୀର ଓ ଅନନ୍ୟ ଅନୁଭୂତି। ସେ ବୁଝିବାକୁ ଚେଷ୍ଟା କରୁଥିଲେ: ଗଭୀରତମ ଅନ୍ତର୍ଦୃଷ୍ଟି ଥିବା ଅଥଚ ଆଧୁନିକ ଗଣିତ ବିଷୟରେ ପ୍ରାୟ କିଛି ବି ଜାଣି ନ ଥିବା ବ୍ୟକ୍ତିକୁ ସେହି ଗଣିତ କିଭଳି ଦେଖାଯିବ?

ହାର୍ଡିଙ୍କ ସିଦ୍ଧାନ୍ତ ଥିଲା, "ରାମାନୁଜନ୍‌ଙ୍କ ମନରେ ସାର୍ବତ୍ରିକରଣର ଦକ୍ଷତା, ଅନ୍ତଃରୂପ ବିଷୟରେ ସୂକ୍ଷ୍ମ ଆବେଗ ଏବଂ ଉପକଳ୍ପନାକୁ ତୀବ୍ର ବେଗରେ ବଦଳାଇବାର ଶକ୍ତି ମିଶିକରି ରହିଥିଲା। ଏହି ସବୁର ମିଳିତ ପ୍ରଭାବରେ ସେ ତାଙ୍କ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଅପ୍ରତିଦ୍ୱନ୍ଦ୍ୱୀ ହୋଇ ରହିଥିଲେ।" ରାମାନୁଜନ୍‌ଙ୍କ କାମର ଦୀର୍ଘମିଆଦି ପ୍ରଭାବ କ'ଣ ହେବ ସେ ବିଷୟରେ ହାର୍ଡି ନିଶ୍ଚିତ ନ ଥିଲେ। ତାଙ୍କ ମତରେ ରାମାନୁଜନ୍‌ଙ୍କ କାମର ବିଚିତ୍ରତା ହିଁ ତା'ର ଦୁର୍ବଳତାର କାରଣ ହେଉଥିଲା। ସେ କହୁଥିଲେ, "ଯଦି ସେ କାମ ଏତେ ବିଚିତ୍ର ହୋଇ ନ ଥା'ନ୍ତା, ତେବେ ତା'ର ପ୍ରଭାବ ବେଶି ହୋଇଥା'ନ୍ତା।" ଶେଷରେ ଯୋଡ଼ିଥିଲେ, "ସେହି କାମର ଗୋଟିଏ ଦିଗ କେହି ନ ମାନି ରହିପାରିବେନାହିଁ - ତା'ର ଗଭୀରତା ଏବଂ ଅଲଙ୍ଘନୀୟ ମୌଳିକତା।"

ରାମାନୁଜନ୍‌ଙ୍କୁ କେମ୍ବ୍ରିଜକୁ ଆଣିବାର ଆଗ୍ରହ ହାର୍ଡିଙ୍କ ପାଇଁ କିଛି ମାତ୍ରାରେ ଜୁଆ ଖେଳ ଭଳି ଥିଲା। ଯଦି ରାମାନୁଜନ୍‌ଙ୍କର ପ୍ରତିଭା ସତ ହୋଇ ନ ଥାଏ ବା ଅଗଭୀର ହୋଇଥାଏ? କିନ୍ତୁ ନୋଟ୍ ଖାତାଗୁଡ଼ିକର ଗଣିତ ସହ ପରିଚିତ ହେଲା ପରେ ସେ ଆଶ୍ୱସ୍ତ ହେଲେ ଏବଂ ଗର୍ବିତ ମଧ୍ୟ ହେଲେ। ହାର୍ଡିଙ୍କ କହିବା ଅନୁସାରେ, "ରାମାନୁଜନ୍ ମୋର ଆବିଷ୍କାର ଥିଲେ। ମୁଁ ତାଙ୍କୁ ଉଦ୍ଭାବନ କରି ନ ଥିଲି। ସବୁ ବଡ଼ ମଣିଷଙ୍କ ଭଳି ସେ ନିଜକୁ ଉଦ୍ଭାବନ କରିଥିଲେ। କିନ୍ତୁ ମୁଁ ଥିଲି ପ୍ରଥମ ଦକ୍ଷ ଲୋକ

ଯିଏ ତାଙ୍କ କାମରୁ କିଛି ଦେଖିବାର ସୁଯୋଗ ପାଇଥିଲା। ମୋ ପାଇଁ ଏହା ଏକ ସନ୍ତୋଷଜନକ ସ୍ମୃତି ଯେ ଏକ ଅମୂଲ୍ୟ ରତ୍ନଭଣ୍ଡାର ପାଇଛି ବୋଲି ମୁଁ ତତ୍‌କ୍ଷଣାତ୍ ବୁଝିପାରିଥିଲି।''

ଅଳ୍ପ ସମୟ ଭିତରେ ବୁଝାପଡ଼ିଲା ଯେ ରାମାନୁଜନ୍‌ଙ୍କର ନୋଟ ଖାତାଗୁଡ଼ିକ ଅତି ମୂଲ୍ୟବାନ, ତେଣୁ ସେଗୁଡ଼ିକ ପ୍ରକାଶିତ ହେବା ଉଚିତ। କିନ୍ତୁ ସେଗୁଡ଼ିକର ସମ୍ପାଦନା ବିଶେଷ ଭାବରେ ଦରକାର ଥିଲା। ରାମାନୁଜନ୍‌ଙ୍କ ଫଳଗୁଡ଼ିକର ଉପଯୁକ୍ତ ଉପସ୍ଥାପନା କରାଯିବା, ଭାଷାକୁ ସାବଲୀଳ କରିବା ଏବଂ ପ୍ରଚଳିତ ସାଧାରଣ ସଙ୍କେତ ବସାଇବା ଜରୁରୀ ଥିଲା। ହାର୍ଡି ଗାଣିତିକ ପ୍ରକାଶନ କାମରେ ଦକ୍ଷ ଥିଲେ ଏବଂ ଏହି କାମରେ ଲାଗିପଡ଼ିଲେ। ତାଙ୍କ କଥା ଥିଲା, ''ରାମାନୁଜନ୍‌ଙ୍କର ସବୁ ପାଣ୍ଡୁଲିପି ମୋ ହାତ ଦେଇ ଯାଇଥିଲା ଏବଂ ଅତି ସାବଧାନ ହୋଇ ମୁଁ ସେସବୁର ସମ୍ପାଦନା କରିଥିଲି। ତାଙ୍କର ପ୍ରଥମ ପର୍ଯ୍ୟାୟ କାମର ବିବରଣୀ ମତେ ଆଉଥରେ ନୂଆ କରି ଲେଖିବାକୁ ହେଲା।''

ସେ ସ୍ପଷ୍ଟ କରିଦେଇଥିଲେ ଯେ ଗଣିତ ଦିଗରୁ ସେ ଏହି ପ୍ରକାଶନଗୁଡ଼ିକରେ କିଛି ବି ଯୋଡ଼ି ନ ଥିଲେ। ପର ସମୟରେ ଯେଉଁଠି ତାଙ୍କର ଅବଦାନ ରହୁଥିଲା ତାହା ରାମାନୁଜନ୍‌ଙ୍କ ସହିତ ମିଳିତ ପ୍ରକାଶନର ରୂପ ନେଉଥିଲା। ଅନ୍ୟ କାହାର ସାହାଯ୍ୟକୁ ସ୍ୱୀକାର କରିବାରେ ରାମାନୁଜନ୍ ମଧ୍ୟ ଅତି ନିଷ୍ଠାପର ଥିଲେ। ରାମାନୁଜନ୍‌ଙ୍କ ନୋଟ୍ ଖାତାର ଧାଡ଼ିକିଆ ଦୁଇଧାଡ଼ିଆ ଲେଖା ସବୁ ଏବେ ନୂଆ ଗାଣିତିକ ନିବନ୍ଧ ରୂପରେ ସମସ୍ତଙ୍କ ପାଇଁ ପଠନଯୋଗ୍ୟ ହେଲା। ଜୁନ୍ ମାସ ବେଳକୁ ଦୁଇଟି ନିବନ୍ଧ ଚୂଡ଼ାନ୍ତ ପର୍ଯ୍ୟାୟରେ ପହଞ୍ଚିଲା ଏବଂ ସେଥିରୁ ଗୋଟିଏ ସେମାନେ ବିଭିନ୍ନ ଲୋକଙ୍କୁ ଦେଖାଇଲେ।

ପ୍ରତି ମାସର ଦ୍ୱିତୀୟ ଗୁରୁବାର ଦିନ ହାର୍ଡି ଅପରାହ୍ନ 2:45 ବେଳର ରେଳଗାଡ଼ି ଧରି ଲଣ୍ଡନ ମାଥେମାଟିକାଲ ସୋସାଇଟିର ସଭାକୁ ଯାଉଥିଲେ। 1914 ମସିହା ଜୁନ୍ 11 ଦିନର ସଭାକୁ ଗଲାବେଳେ ସେ ରାମାନୁଜନ୍‌ଙ୍କ ପ୍ରମେୟ ବିଷୟରେ ପାଣ୍ଡୁଲିପିଟି ସାଙ୍ଗରେ ନେଇଥିଲେ। ସେଠାରେ ସେ ଏହି କାମ ବିଷୟରେ କହିଲାବେଳେ ଶ୍ରୋତାଙ୍କ ଭିତରେ ଥିଲେ – ହବ୍‌ସନ୍, ଯାହାଙ୍କ ପାଖକୁ ଦେଢ଼ ବର୍ଷ ତଳେ ରାମାନୁଜନ୍ ଚିଠି ଲେଖିଥିଲେ; ବ୍ରୋମ୍‌ୱିଚ୍, ଅସୀମ ଶ୍ରେଣୀ ବିଷୟରେ ଯାହାଙ୍କ ବହି ପଢ଼ିବା ପାଇଁ ରାମାନୁଜନ୍‌ଙ୍କୁ କଡ଼ା ଉପଦେଶ ଦିଆ ଯାଇଥିଲା; ହାର୍ଡିଙ୍କର ପ୍ରାକ୍‌ସ୍ନାତକ ବେଳର ଉପଦେଷ୍ଟା ଅଧ୍ୟାପକ ଲଭ୍ ଏବଂ ଲିଟଲ୍‌ଉଡ୍।

ରାମାନୁଜନ୍ ନିଜେ ସେଠାରେ ଉପସ୍ଥିତ ନ ଥିଲେ।

1914 ମସିହାରେ ଇଂଲଣ୍ଡରେ ରାମାନୁଜନ୍‌ଙ୍କର ପ୍ରଥମ ନିବନ୍ଧ ପ୍ରକାଶ ପାଇଲା। ଭାରତରେ ସେ କରିଥିବା କାମକୁ ନେଇ କ୍ୱାର୍ଟର୍‌ଲି ଜର୍ଣ୍ଣାଲ୍ ଅଫ୍ ମାଥେମାଟିକ୍‌ସ୍ ପତ୍ରିକାରେ ବାହାରିଥିବା ଏହି ନିବନ୍ଧ ଥିଲା 'ମଡୁଲାର ସମୀକରଣ ଓ 'ପାଇ'ର ଆସନ୍ନ ମୂଲ୍ୟ'।

ସ୍କୁଲ ସ୍ତରରୁ ପିଲାମାନେ ଜାଣନ୍ତି ଯେ ବୃତ୍ତର ପରିଧି ଓ ବ୍ୟାସର ଅନୁପାତକୁ ପାଇ ($\pi$) କୁହାଯାଏ ଏବଂ ଏହାର ମୂଲ୍ୟ ପ୍ରାୟ 3.14 ହୁଏ। ତେବେ ଏହାର ଆସନ୍ନ ମୂଲ୍ୟ ବାହାର କରିବା ପାଇଁ ନୂଆ ବାଟ ଖୋଜିବା କାହିଁକି? ଊନବିଂଶ ଶତାବ୍ଦୀର ମଝି ବେଳକୁ ଗଣିତଜ୍ଞମାନେ ଦଶମିକ ପରେ ପାଞ୍ଚଶହ ସ୍ଥାନ ଯାଏ ପାଇର ମୂଲ୍ୟ ବାହାର କରି ସାରିଥିଲେ। ପ୍ରାୟୋଗିକ ଦୃଷ୍ଟିରୁ ଏହି ମୂଲ୍ୟର ସଠିକତା ଦରକାରଠାରୁ ଅଧିକ ଥିଲା। କାନାଡାର ଦୁଇ ଗଣିତଜ୍ଞ ଭାଇ ଜନାଥନ୍ ଏମ୍.

ବୋର୍‌ୱିନ୍ ଓ ପିଟର୍ ବି. ବୋର୍‌ୱିନ୍ ଦେଖାଇଥିଲେ ଯେ ଦଶମିକ ପରେ ଅଣଚାଳିଶ ସ୍ଥାନ ଯାଏ ପାଇର ମୂଲ୍ୟକୁ ନେଇ ହିସାବ କଲେ ବିଶ୍ୱର ପରିଧିର ହିସାବରେ ଅନିଶ୍ଚିତତା ଗୋଟିଏ ଉଦ୍‌ଜାନ ପରମାଣୁର ବ୍ୟାସଠାରୁ ମଧ୍ୟ କମ୍ ହେବ। ତେଣୁ ପାଇର ମୂଲ୍ୟକୁ ଆହୁରି ସଠିକ କରିବା ପାଇଁ ଗଣିତଜ୍ଞମାନେ ଲାଗିଥିଲେ କାହିଁକି?

ପାଇ ଯେ କେବଳ ଜ୍ୟାମିତି ସହିତ ଯୋଡ଼ା ତାହା ନୁହେଁ। ଗଣିତର ପ୍ରାୟ ସବୁ ବିଭାଗରେ ଏହା ବିଭିନ୍ନ ପ୍ରକାରର କାମରେ ଲାଗେ। ସାଧାରଣ ଭାବରେ କୋଣର ମାପକୁ ଡିଗ୍ରୀରେ ପ୍ରକାଶ କରାଯାଏ। କିନ୍ତୁ କୋଣର ମାପକୁ ପାଇ ଆଧାରିତ ରେଡିଆନ୍‌ରେ ପ୍ରକାଶ କଲେ ତାହା ଗଣିତଜ୍ଞମାନଙ୍କ ପାଇଁ ସୁବିଧାଜନକ ହୁଏ। ଏହି ଦୃଷ୍ଟିରୁ ତ୍ରିକୋଣମିତିରେ ମଧ୍ୟ ପାଇର ବ୍ୟବହାର ଦେଖାଯାଏ। ଅନ୍ୟ ବହୁଳ ଭାବରେ ବ୍ୟବହୃତ ଅମୂର୍ତ୍ତ ସଂଖ୍ୟା 'ଇ' (e) ସହିତ ପାଇର ଘନିଷ୍ଠ ସମ୍ପର୍କ ରହିଛି। ଅଏଲର୍ ବାହାର କରିଥିବା ସୁନ୍ଦର ସମ୍ପର୍କ $e^{i\pi}=-1$ ମାଧ୍ୟମରେ 'କାଳ୍ପନିକ' ସଂଖ୍ୟା ସହିତ ପାଇ ଯୋଡ଼ିହୁଏ। ଏହି କ୍ଷୁଦ୍ର ଓ ବିଚିତ୍ର ସମ୍ପର୍କ ତ୍ରିକୋଣମିତି ଓ ଜ୍ୟାମିତି ବିଷୟକୁ ପ୍ରାକୃତିକ ଲଗାରିଦମ୍ ସହିତ ଯୋଡ଼ିଦିଏ ଏବଂ ତାହା ମାଧ୍ୟମରେ କାଳ୍ପନିକ ସଂଖ୍ୟାର ଦୁନିଆ ସହିତ ଯୋଡ଼େ। ସମ୍ଭାବ୍ୟତାର ଗଣିତ କ୍ଷେତ୍ରରେ ମଧ୍ୟ ପାଇର ବ୍ୟବହାର ଦେଖିବାକୁ ମିଳେ। ସମାନ ବ୍ୟବଧାନରେ ସମାନ୍ତରାଳ ଗାରଗୁଡ଼ିଏ ଟଣାଯାଇଥିବା ଗୋଟିଏ ଟେବୁଲ୍ ଉପରେ ସେହି ବ୍ୟବଧାନ ଲମ୍ବର ଛୁଞ୍ଚିଟିଏ ପକାଯାଉ। ଛୁଞ୍ଚିଟି କୌଣସି ଗାରକୁ କାଟିବାର ସମ୍ଭାବ୍ୟତା ହେବ $2/\pi$। ଏହିଭଳି ପାଇର ମୂଲ୍ୟକୁ ନୂଆ ବାଟରେ ପ୍ରକାଶ କରିବାର ଚେଷ୍ଟା କଲେ ଅଲଗା ମନେ ହେଉଥିବା ଗଣିତର ବିଭାଗମାନଙ୍କ ଭିତରେ ଲୁଚି ରହିଥିବା ସମ୍ପର୍କ ଧରା ପଡ଼ିପାରେ।

ଅତି ପୁରୁଣା କାଳରେ ପାଇର ମୂଲ୍ୟକୁ 3 ଧରି ହିସାବ କରା ଯାଉଥିଲା। ସପ୍ତମ ଶତାବ୍ଦୀରେ ଭାରତୀୟ ଗଣିତଜ୍ଞ ବ୍ରହ୍ମଗୁପ୍ତ ପାଇର ମୂଲ୍ୟକୁ 10ର ବର୍ଗମୂଳ ବା 3.16 ବୋଲି ହିସାବ କରିଥିଲେ। ପାଶ୍ଚାତ୍ୟରେ ପ୍ରଥମ ପର୍ଯ୍ୟାୟରେ ପାଇର ମୂଲ୍ୟ ନିର୍ଦ୍ଧାରଣ ପାଇଁ ଜ୍ୟାମିତିକ ଧାରା ବ୍ୟବହାର କରା ଯାଉଥିଲା। ବୃତ୍ତକୁ ଆଧାର କରୁଥିବା ଏହି ଧାରାକୁ 'ବୃତ୍ତର ବର୍ଗୀକରଣ' କୁହାଯାଉଥିଲା, କିନ୍ତୁ ତାହାର ସମାଧାନ ମିଳିପାରିଲାନାହିଁ। ଆର୍କମେଡିଜ୍ ଆଉ ଗୋଟିଏ ଜ୍ୟାମିତିକ ଧାରା ବ୍ୟବହାର କରି କହିଲେ ଯେ ପାଇର ମୂଲ୍ୟ $3\,{}^{10}/_{70}$ ଓ $3\,{}^{10}/_{71}$ ଭିତରେ ରହିବ।

ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରେ ପାଇର ମୂଲ୍ୟ ବାହାର କରିବା ପାଇଁ କାଲ୍‌କୁଲସ୍‌ର ଶକ୍ତିଶାଳୀ କୌଶଳ ବ୍ୟବହାର କରାଗଲା। ଏଥିରୁ ଅନେକ ପ୍ରକାରର ଅସୀମ ଶ୍ରେଣୀ ମିଳିଲା ଯାହାର ମୂଲ୍ୟ ପାଇ ଦିଗରେ ଅଭିସାରିତ ହେଉଥିଲା। ନିଉଟନ୍ ନିଜେ ଏଭଳି ଏକ ଶ୍ରେଣୀ ସୃଷ୍ଟି କରି ପାଇର ମୂଲ୍ୟ ଦଶମିକ ପନ୍ଦର ସ୍ଥାନ ଯାଏଁ ହିସାବ କରିଥିଲେ। ଜଣେ ସହକର୍ମୀଙ୍କୁ ସେ କହିଥିଲେ, "କହିବାକୁ ଲାଜ ଲାଗୁଛି ଯେ ଏତେ ସ୍ଥାନ ଯାଏଁ ମୁଁ ଏହି ହିସାବ ଚଳାଇ ରଖିଲି, କାରଣ ସେତେବେଳେ ମୋ ହାତରେ ଅନ୍ୟ କିଛି କାମ ନ ଥିଲା।"

ପାଇର ମୂଲ୍ୟ ବା ଆସନ୍ନ ମୂଲ୍ୟ ଦେଉଥିବା ଶ୍ରେଣୀଗୁଡ଼ିକରେ ଅସାଧାରଣ ଲାଳିତ୍ୟ ଦେଖାଯାଏ। ତଳର ଉଦାହରଣ ଏହାର ଏକ ଦୃଷ୍ଟାନ୍ତ। ଏହି ଶ୍ରେଣୀର ସ୍ରଷ୍ଟା ଭାବରେ ଲିବ୍‌ନିଜ୍ ବା ସ୍କଟ୍‌ଲାଣ୍ଡର ଜେମ୍‌ସ୍ ଗ୍ରେଗୋରି ବା କେରଳର ଗଣିତଜ୍ଞମାନଙ୍କୁ ବିଚାର କରାଯାଏ।

$$\frac{\pi}{4} = 1 - \frac{1}{3} + \frac{1}{5} - \frac{1}{7} + \frac{1}{9} \cdots$$

ଜନ୍ ୱାଲିସ୍ଙ୍କର ଶ୍ରେଣୀ ଥିଲା -

$$\frac{\pi}{2} = \frac{2}{1} \times \frac{2}{3} \times \frac{4}{3} \times \frac{4}{5} \times \frac{6}{5} \times \frac{6}{7} \times \cdots$$

ଏବଂ ଆଉ ଏକ ସୁନ୍ଦର ଶ୍ରେଣୀ -

$$\frac{\pi - 3}{4} = \frac{1}{2 \times 3 \times 4} + \frac{1}{4 \times 5 \times 6} + \frac{1}{6 \times 7 \times 8} + \cdots$$

ଗଣିତଜ୍ଞଙ୍କ ପାଇଁ ପାଇ ଏକ ଅବାଧ ସଂଖ୍ୟା ଥିଲା କହିଲେ ଭୁଲ ହେବନାହିଁ। ଦଶମିକ ଲକ୍ଷ ଲକ୍ଷ ସଂଖ୍ୟା ଯାଏଁ ହିସାବ କଲାପରେ ମଧ୍ୟ ତା'ର ଅଙ୍କଗୁଡ଼ିକରେ କୌଣସି ନିର୍ଦ୍ଦିଷ୍ଟ କ୍ରମ ଦେଖାଯାଏନାହିଁ। ଅନ୍ୟ ଦିଗରେ ତାହା ଅନେକ ସୁନ୍ଦର ଓ ସରଳ ଶ୍ରେଣୀ ମାଧ୍ୟମରେ ପ୍ରକାଶ କରାଯାଇ ପାରିବ।

ହାର୍ଡିଙ୍କ ପାଖକୁ ରାମାନୁଜନ୍ ଦେଇଥିବା ପ୍ରଥମ ଚିଠିଗୁଡ଼ିକରେ ଏଭଳି ଅନେକ ଶ୍ରେଣୀ ସେ ପଠାଇଥିଲେ। ଏବେ ତାଙ୍କର ତେଇଶ ପୃଷ୍ଠା ଲମ୍ବା ନିବନ୍ଧରେ ପାଇର ମୂଲ୍ୟ ପାଇବା ପାଇଁ ଅନ୍ୟ କେତେ ବାଟ ଦିଆଯାଇଥିଲା। ସେଥିରୁ ଅନେକଗୁଡ଼ିଏ ଧାରା ମଡୁଲାର ସମୀକରଣ ଆଧାରିତ ଥିଲା, ଯାହାକୁ 1825 ବେଳକୁ ଫରାସୀ ଗଣିତଜ୍ଞ ଲେଜାନ୍ଦ୍ରେ ବିକଶିତ କରିଥିଲେ। ମଡୁଲାର ସମୀକରଣ କୌଣସି ଚଳ $x$ ର ଏକ ଫଳନକୁ $x$ ର ପୂର୍ଣ୍ଣସଂଖ୍ୟାର ଘାତ (ଯଥା, $x^3$ ବା $x^4$ କିନ୍ତୁ $x^{3.2}$ ନୁହେଁ) ରୂପରେ ପ୍ରକାଶିତ ସେହି ଫଳନ ସହିତ ଯୋଡ଼ିଥାଏ। ଏହିଭଳି ବ୍ୟବହାର ଦେଖାଉଥିବା ଫଳନ ବେଶ୍ ବିରଳ। କିନ୍ତୁ ମିଳୁଥିବା ମଡୁଲାର ସମୀକରଣଗୁଡ଼ିକ ଅନେକ ବିଶେଷ ଧରଣର ଗୁଣଧର୍ମ ଦେଖାନ୍ତି ଯାହାକୁ ଗଣିତଜ୍ଞମାନେ କାମରେ ଲଗାଇପାରନ୍ତି। ରାମାନୁଜନ୍ ଏପରି କିଛି ଫଳନ ଆବିଷ୍କାର କରିଥିଲେ ଯାହା ନିର୍ଦ୍ଦିଷ୍ଟ ପ୍ରକାରର ମଡୁଲାର ସମୀକରଣର ଆବଶ୍ୟକତା ପୂରଣ କରିପାରୁଥିଲା ଏବଂ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ଯାହାର ସମାଧାନରୁ ପାଇର ଆସନ୍ନ ମୂଲ୍ୟ ମିଳୁଥିଲା।

ରାମାନୁଜନ୍ ପାଇଥିବା କିଛି ଫଳ ତାଙ୍କ ଆଗରୁ କ୍ରୋନେକର୍, ହର୍ମାଇଟ୍ ଓ ୱେବର୍ଙ୍କ ଭଳି ୟୁରୋପୀୟ ଗଣିତଜ୍ଞମାନେ ବାହାର କରିସାରିଥିଲେ। ତଥାପି ହାର୍ଡି ଲେଖିଥିଲେ ଯେ ରାମାନୁଜନ୍ଙ୍କ ନିବନ୍ଧ ସବୁଠାରୁ ବେଶି ଆଗ୍ରହଜନକ ଏବଂ ସେଥିରେ ଖୁବ୍ ବେଶି ସଂଖ୍ୟାର ନୂଆ ଫଳାଫଳ ରହିଛି। ଅତି ଆଶ୍ଚର୍ଯ୍ୟଜନକ ଭାବରେ ଏହି ଶ୍ରେଣୀଗୁଡ଼ିକ ଭିତରୁ କେତେକ ଅତି ତୀବ୍ର ଭାବରେ ପାଇ ପ୍ରତି ଅଭିସାରୀ ହେଉଥିଲେ। ଆଗରୁ ଦିଆଯାଇଥିବା ଲିବ୍‌ନିଜ୍ ଶ୍ରେଣୀ ଗଣିତ ଦୃଷ୍ଟିରୁ ସୁନ୍ଦର, କିନ୍ତୁ ପାଇର ମୂଲ୍ୟ ପାଇବା ପାଇଁ ତାହା ପ୍ରାୟ ମୂଲ୍ୟହୀନ। କାରଣ ଏଥିରୁ ପାଇର ଦଶମିକ ତିନି ସ୍ଥାନ ଯାଏଁ ସଠିକ ମୂଲ୍ୟ ପାଇବା ପାଇଁ ପାଞ୍ଚଶହ ପଦ ନେଇ ସମାଧାନ କରିବାକୁ ପଡ଼ିବ। ଏହା ତୁଳନାରେ ରାମାନୁଜନ୍ଙ୍କର ଗୋଟିଏ ଶ୍ରେଣୀର କେବଳ ପ୍ରଥମ ପାଦ ଦଶମିକ ଆଠ ସ୍ଥାନ ଯାଏଁ

ପାଇର ସଠିକ ମୂଲ୍ୟ ଦେଉଥିଲା। ଅନେକ ବର୍ଷ ପରେ ପାଇର ମୂଲ୍ୟ ନିର୍ଦ୍ଧାରଣ ପାଇଁ ଦ୍ରୁତତମ କମ୍ପ୍ୟୁଟର କାରିକା ରାମାନୁଜନ୍‌ଙ୍କର ଏହି କାମକୁ ଆଧାର କରି ବିକଶିତ ହେଲା।

କାର୍‌ଙ୍କ ସଂକ୍ଷିପ୍ତସାର ପଢ଼ିଲା ପରେ ଦଶବର୍ଷ ଧରି ରାମାନୁଜନ୍ ବୌଦ୍ଧିକ ଦୃଷ୍ଟିରୁ ଏକ ଅପନ୍ତରା ରାଜ୍ୟରେ ରହିଥିଲେ। ତାଙ୍କ ଚାରିପାଖରେ ପରିବାର, ସାଥୀ ଓ ଅନ୍ୟ ପରିଚିତ ଲୋକ ଘେରି ରହିଥିଲେ। କିନ୍ତୁ ତାଙ୍କ ଭଳି ପ୍ରଗାଢ଼ ପ୍ରତିଭାସମ୍ପନ୍ନ ଗଣିତଜ୍ଞ ଅନ୍ୟ କୌଣସି ଗଣିତ ଗବେଷକଙ୍କର ସାନ୍ନିଧ ପାଉ ନ ଥିଲେ। ନାରାୟଣ ଆୟାର ଓ ଶେଷୁ ଆୟାରଙ୍କ ଭଳି ଲୋକମାନେ ତାଙ୍କ ପ୍ରତିଭା ଦେଖି ଚମତ୍କୃତ ହେଉଥିଲେ ଏବଂ ତାଙ୍କ ପ୍ରମେୟଗୁଡ଼ିକୁ ପ୍ରଶଂସା କରୁଥିଲେ। କିନ୍ତୁ ତାଙ୍କ କାମର ପ୍ରକୃତ ମୂଲ୍ୟ ବୁଝିବା ଭଳି ବା ଆଲୋଚନା କରିବା ପାଇଁ ତାଙ୍କ ଭଳି ଦକ୍ଷତାର ଲୋକ କେହି ପାଖରେ ନ ଥିଲେ।

ଏବେ ହାର୍ଡି ଓ ଲିଟଲ୍‌ଉଡ୍ ସେହି ଅଭାବ ପୂରଣ କରୁଥିଲେ। କେମ୍ବ୍ରିଜରେ ସେ ତାଙ୍କର ବୌଦ୍ଧିକ ଆବାସ ପାଇଲେ। ଶେଷରେ ସେ ନିଜକୁ ଏକ ଗଣିତଜ୍ଞ ଗୋଷ୍ଠୀ ଭିତରେ ପାଇଲେ ଯେଉଁମାନେ ତାଙ୍କ କାମରେ ତାହା ଦେଖିଲେ ଯାହା ସେ ନିଜେ ଦେଖୁଥିଲେ। ଆରମ୍ଭରେ ଅନ୍ତତଃ ବିଦେଶରେ ଜଣେ ଅଜଣା ବ୍ୟକ୍ତି ଭାବରେ ସେ ଯେଉଁ ଅସୁବିଧା ଭୋଗୁଥିଲେ ଏହି ବୌଦ୍ଧିକ ଲାଭ ତାହାକୁ ଭରଣା କରିବା ଦିଗରେ ଯଥେଷ୍ଟରୁ ଅଧିକ ଥିଲା।

ଇଂରେଜ ଚଳଣି ସହିତ ନିଜକୁ ଖାପ ଖୁଆଇବା ରାମାନୁଜନ୍‌ଙ୍କ ପାଇଁ ଆରାମଦାୟକ ନ ଥିଲା। ଖାଇବା ପାଇଁ ଧାତୁର ଛୁରି ଓ କଣ୍ଟା ଚାମୁଚା ବ୍ୟବହାର କରିବା, ଖୋଲା ପାଦର ଅଭ୍ୟାସକୁ ବଦଳାଇ ଜୋତା ପିନ୍ଧିବା ଆଦି ସହିତ ପୂରା ଅଭ୍ୟସ୍ତ ହେବା ପାଇଁ ତାଙ୍କୁ କେତେ ମାସ ଲାଗିଗଲା। ଇଂରେଜ ନାଁ ସବୁକୁ ମନେ ରଖିବା ଯେତିକି କଷ୍ଟ ଥିଲା, ଗୋରା ମୁହଁଗୁଡ଼ିକ ଭିତରେ ତଫାତ ବାରିବା ତାଙ୍କ ପାଇଁ ସେତିକି କଷ୍ଟ କାମ ଥିଲା। କେଉଁ ଇଂରେଜ ଲୋକଙ୍କ ସହିତ ଘଣ୍ଟା ଘଣ୍ଟା ଧରି କଥାହେବା ପରେ ତାଙ୍କୁ ରାସ୍ତାରେ ଚିହ୍ନି ନ ପାରିବା ରାମାନୁଜନ୍‌ଙ୍କ ପାଇଁ ଅସ୍ୱସ୍ତିକର ହେଉଥିଲା। ତାଙ୍କ ଦକ୍ଷିଣ ଭାରତୀୟ ଶୈଳୀର ମୁଣ୍ଡ ଟୁଙ୍ଗାରିବାର ଅର୍ଥ ତାଙ୍କ ପାଇଁ 'ହଁ' ଥିଲା, କିନ୍ତୁ ଇଂରେଜମାନେ ତାକୁ 'ନାଁ' ବୋଲି ବୁଝୁଥିଲେ।

ତଥାପି ରାମାନୁଜନ୍‌ଙ୍କ ଆଗମନର ପ୍ରଥମ କେତେ ମାସ କେମ୍ବ୍ରିଜରେ ବେଶ୍ ଉଦ୍ଦୀପନା ସୃଷ୍ଟି କରିଥିଲା। ତେଣୁ ରାମାନୁଜନ୍‌ଙ୍କର ଘରକଥା ମନେ ପଡ଼ିବା, ଏକାକୀ ଅନୁଭବ କରିବା ଓ ଅନ୍ୟ ହତାଶା ଆଦି ତାହା ଭିତରେ ହଜି ଯାଇଥିଲା। ତଥାପି ତାଙ୍କୁ ପାଖରୁ ଦେଖୁଥିବା ନେଭିଲ୍ କହିଥିଲେ, "ଏକ ଅଜଣା ସଭ୍ୟତାରେ ଜୀବନ କଟାଇବାର ଛୋଟ ଛୋଟ ଯନ୍ତ୍ରଣା ତାଙ୍କୁ ବାଧୁଥିଲା। ଅଲଗା ପ୍ରକାରର ପରିବା ତାଙ୍କ ପାଇଁ ରୁଚିକର ନ ଥିଲା, ଜନ୍ମରୁ ଖୋଲା ରହିଥିବା ପାଦକୁ ଜୋତାରେ ଖୁନ୍ଦିବା କଷ୍ଟକର ଥିଲା। ତଥାପି ଏବେ ସେ ଜଣେ ସୁଖୀ ମଣିଷ ଥିଲେ। ଏକ ଗାଣିତିକ ସମାଜର ଅଂଶ ହୋଇପାରିଥିବାରୁ ସେ ଖୁବ୍ ଖୁସି ଥିଲେ। ଭାରତୀୟ ଛାତ୍ରମାନେ ତାଙ୍କୁ ଜଣେ ପୂଜ୍ୟ ବ୍ୟକ୍ତି ଭାବରେ ଦେଖୁଥିଲେ।" ନିଜର ଆବଶ୍ୟକତା ପୂରଣ କରିବା ପାଇଁ ତାଙ୍କ ପାଖରେ ଯଥେଷ୍ଟ ପଇସା ଥିଲା ଏବଂ କାମରେ ମନ ଦେବା ପାଇଁ ଉପଯୁକ୍ତ ଅବସର ମିଳୁଥିଲା। ପଥର ଛାଉଣି ପାଦଚଲା

ରାସ୍ତା, ଘାସଭରା ପ୍ରାଙ୍ଗଣ, ମଧ୍ୟଯୁଗୀୟ ପ୍ରାର୍ଥନାଳୟ ଆଦିରେ ଶୋଭିତ ଏବଂ ମାନ୍ଦ୍ରାଜଠାରୁ ବହୁ ଭାବରେ ଅଲଗା ସେହି ପୁରୁଣା କେମ୍ବ୍ରିଜ ସହରରେ ରାମାନୁଜନ୍ ଏକ ପ୍ରକାରର ବୌଦ୍ଧିକ ନିର୍ବାଣ ପାଇପାରିଲେ।

ଏତିକିବେଳେ ଦୁର୍ଯୋଗ ଆସି ପହଞ୍ଚିଲା।

## 3. ଲୁଭେନ୍‌ର ବହ୍ନି

ମହାଯୁଦ୍ଧ ଆସିବ ବୋଲି ଅନେକେ ବିଶ୍ୱାସ କରୁଥିଲେ, କିନ୍ତୁ ତାହା ଆସିବନାହିଁ ବୋଲି ଆଶା ମଧ୍ୟ କରୁଥିଲେ। 1913 ଓ 1914 ଦୁଇବର୍ଷ ଧରି ୟୁରୋପ କୁହୁଳୁଥିଲା। 1914 ମସିହା ଜୁନ ମାସ 28 ତାରିଖରେ ଅଷ୍ଟ୍ରିଆର ରାଜକୁମାର ଫ୍ରାନ୍‌ଜ୍ ଫର୍ଡିନାଣ୍ଡ ଆତତାୟୀର ଶିକାର ହେଲେ। ଏହା ଫଳରେ ଯାହା ସବୁ ଘଟିବାକୁ ଲାଗିଲା ତାକୁ ଅଟକାଇବାର ଶକ୍ତି କାହାର ନ ଥିଲା। ଜର୍ମାନି ଓ ଫ୍ରାନ୍‌ସ୍ ସନ୍ଧିସୂତ୍ରରେ ବନ୍ଧାହୋଇ ଯୁଦ୍ଧ ଘୋଷଣା କଲେ। ଜର୍ମାନିର ସେନାବାହିନୀ ବେଲ୍‌ଜିଅମ୍‌ର ନିରପେକ୍ଷତାକୁ ଅବଜ୍ଞା କରି ତାକୁ ଅଧିକାର କରିନେବାରୁ ଇଂଲଣ୍ଡ ମଧ୍ୟ ଯୁଦ୍ଧ ଘୋଷଣା କଲା। ଏହା ଥିଲା 1914 ମସିହା ଅଗଷ୍ଟ ମାସ ଚାରି ତାରିଖ ଦିନ ଏଗାରଟା ସମୟର କଥା। ଅଳ୍ପଦିନ ଭିତରେ ସାରା ୟୁରୋପରେ ଯୁଦ୍ଧ ଖେଳିଗଲା। ଜର୍ମାନି ଓ କେନ୍ଦ୍ରଶକ୍ତି ଫ୍ରାନ୍‌ସ୍, ଇଂଲଣ୍ଡ ଓ ମିତ୍ରଶକ୍ତି ବିରୁଦ୍ଧରେ ଲଢ଼ିବାରେ ଲାଗିଲେ।

କିଛି ଲୋକ ଚାହୁଁଥିଲେ ଯେ ଯୁଦ୍ଧ ଲାଗୁ, ତାହେଲେ ଚାଳିଶ ବର୍ଷରୁ ଅଧିକ ସମୟ ଶାନ୍ତିରେ କଟିବା ଭିତରେ ବଢ଼ି ଚାଲିଥିବା ଉତ୍ତେଜନା ଚାଲିଯିବ। ସେମାନେ ଭାବୁଥିଲେ ଯେ ଦୁଇ ପଟର ସେନାବାହିନୀ ପ୍ରସ୍ତୁତ, ତେଣୁ ମାସେ ଦୁଇ ମାସ ଭିତରେ ଯୁଦ୍ଧ ସରିଯିବ ଏବଂ ଶତ୍ରୁ ଉଚିତ ଶିକ୍ଷା ପାଇବ। କିନ୍ତୁ ଯୁଦ୍ଧର ଅପ୍ରତ୍ୟାଶିତ ଗୁଣ ଏବେ ଦେଖିବାକୁ ମିଳିଲା। ମାସ ପରେ ମାସ, ବର୍ଷ ପରେ ବର୍ଷ ତାହା ଗଡ଼ି ଚାଲିଲା। ଜର୍ମାନ ସୈନ୍ୟମାନେ ବେଲ୍‌ଜିଅମ୍ ଡେଇଁ ଫ୍ରାନ୍‌ସ୍ ଦଖଲ ଲକ୍ଷ୍ୟରେ ବାହାରିଲେ, ଫ୍ରାନ୍‌ସ୍ ତା'ର ନିଜର ଯୋଜନାରେ ବର୍ଲିନ୍ ଦିଗରେ ମାଡ଼ି ଚାଲିଲା। ଦେଢ଼ ମାସ ପରେ ସମସ୍ତେ ବୁଝିଲେ ଯେ ଯୁଦ୍ଧର ସହଳ ସମାପ୍ତି ସମ୍ଭବ ନୁହେଁ। ଅନେକ ସଂଖ୍ୟାର ସୈନ୍ୟ ନେଇ ସମ୍ମୁଖ ଯୁଦ୍ଧରେ ମାତିବା ବଦଳରେ ଏବେ ଖାତ ଭିତରେ ରହି ଛକାପଞ୍ଝାର ଖେଳ ଚାଲିଲା। ସ୍ୱିଜର୍‌ଲାଣ୍ଡରୁ ଇଂରେଜ ପ୍ରଣାଳୀ ଯାଏଁ ଲମ୍ବିଥିବା ଖାତ ଏକ ବିରାଟ କ୍ଷତ ଭଳି ମନେ ହେଉଥିଲା।

ଯୁଦ୍ଧର ଛାପ ରାମାନୁଜନ୍‌ଙ୍କ ଉପରେ ପଡ଼ିଲା। 1914 ମସିହା ସେପ୍ଟେମ୍ବର ମାସ 11 ତାରିଖରେ ମାର୍ଣ୍ଣେଠାରେ ଜର୍ମାନି ଓ ଫ୍ରାନ୍‌ସ୍ ଭିତରେ ଜୋର ଲଢ଼େଇ ଚାଲିଥିବା ବେଳେ ସେ ମା'ଙ୍କୁ ଆଶ୍ୱାସନା ଦେଇ ଚିଠିରେ ଲେଖିଥିଲେ, "ଏ ଦେଶରେ ଯୁଦ୍ଧ ଚାଲୁନାହିଁ। ପାଖର ଦେଶମାନଙ୍କରେ ଲଢ଼େଇ ଚାଲିଛି। ଯୁଦ୍ଧକ୍ଷେତ୍ରର ଦୂରତା ମାନ୍ଦ୍ରାଜରୁ ରେଙ୍ଗୁନର ଦୂରତା ଭଳି।" ଏହା କିନ୍ତୁ ପୂରା ସତ ନ ଥିଲା। ଯୁଦ୍ଧ ବେଶ୍ ପାଖକୁ ଆସି ଯାଇଥିଲା। କେମ୍ବ୍ରିଜ ପାଖରେ, ନେଭିଲ୍‌ଙ୍କ ଘର ଆଗରେ, ଗୋଟିଏ ସେନା ଛାଉଣୀ ବସିଥିଲା। କଲେଜ ହତାରେ ତାଲିମ କେନ୍ଦ୍ର ବସୁଥିଲା ଏବଂ ଛାତ୍ର, ଅଧ୍ୟାପକ, ଫେଲୋ ସମସ୍ତେ ସେଥିରେ ସାହାଯ୍ୟ କରିବାକୁ ଆଗେଇ ଆସିଥିଲେ। ଟ୍ରିନିଟି ଲାଇବ୍ରେରିର ତଳେ ଅସ୍ଥାୟୀ ହାସପାତାଳ ଖୋଲିଥିଲା। ଲିଟଲ୍‌ଉଡ୍‌ଙ୍କ ଘର ପାଖର ଦକ୍ଷିଣ

ତୋରଣର ଛାତରୁ ଉଜ୍ଜ୍ୱଳ ଆଲୁଅ ଝୁଲାଇ ସେଠାରେ ଅସ୍ତ୍ରୋପଚାର କରାଗଲା। ହାର୍ଡିଙ୍କ ପାଖ କୋଠରୀଗୁଡ଼ିକରେ ଯୁଦ୍ଧ ଅଫିସ୍ ଚାଲିଲା। ଅଗଷ୍ଟ ମଝି ବେଳକୁ ଆହତ ସୈନ୍ୟମାନେ ଟ୍ରିନିଟିର ମୁକ୍ତାକାଶ ହାସପାତାଳକୁ ଆସିବାରେ ଲାଗିଲେ। ଲାଇବ୍ରେରି ତଳେ ସେମାନଙ୍କୁ କାଠପଟା ଉପରେ ଧାଡ଼ି ଧାଡ଼ି କରି ଶୁଆଇ ଦିଆଯାଉଥିଲା। କଲେଜର ଭାଇସ୍‌ମାଷ୍ଟର ପ୍ରାଚୀନ ଶାସ୍ତ୍ରବିତ୍ ହେନେରି ଜାକ୍‌ସନ୍ ସେମାନଙ୍କୁ ସବୁଦିନ ଦେଖୁଥିଲେ। ସେ ଲେଖିଥିଲେ, "ଆମେ ଏବେ ଏକ ନୂଆ କେମ୍ବ୍ରିଜରେ ଅଛୁ। 3600 ଜଣ ବିଦ୍ୟାର୍ଥୀଙ୍କ ବଦଳରେ ଏବେ ଅଛନ୍ତି 1700..., ଖାକି ପୋଷାକ ପିନ୍ଧା ମେଡ଼ିକାଲ୍ କର୍ଣ୍ଣେଲ୍ ଓ ମେଜର୍‌ମାନେ ଏବେ ଭୋଜନାଳୟରେ ଖାଉଛନ୍ତି।"

ଯୁଦ୍ଧର ପ୍ରଥମ ଅବସ୍ଥାରେ ଦେଶପ୍ରେମରୁ ଯୁଦ୍ଧ ପ୍ରତି ସମର୍ଥନ ଅଧିକ ଥିଲା ଏବଂ ସଂଶୟୀ ଲୋକଙ୍କ ସଂଖ୍ୟା କମ୍ ଥିଲା। ଜର୍ମାନି ବିରୋଧୀ ମନୋଭାବ ଅତି ଶକ୍ତିଶାଳୀ ଥିଲା। ରାମାନୁଜନ୍ ମଧ୍ୟ ଏହିଭଳି ଭାବୁଥିଲେ ଓ ମା'ଙ୍କ ପାଖକୁ ଚିଠିରେ ଲେଖିଥିଲେ, "ଜର୍ମାନମାନେ ଅନେକ ସହରରେ ନିଆଁ ଲଗାଇ ଦେଉଛନ୍ତି, ପିଲା, ସ୍ତ୍ରୀ ଲୋକ ଓ ବୁଢ଼ାବୁଢ଼ୀଙ୍କ ସମେତ ସମସ୍ତଙ୍କୁ ମାରି ଫୋପାଡ଼ି ଦେଉଛନ୍ତି।"

x x x

ଅଗଷ୍ଟ ଶେଷ ବେଳକୁ ଜର୍ମାନିର ସୈନ୍ୟମାନେ ବେଲ୍‌ଜିଅମ୍‌ର ଲୁଭେନ୍ ସହରକୁ ଜାଳି ଦେବାକୁ ଲାଗିଲେ। ଘର ଓ ଅନୁଷ୍ଠାନ ସବୁ ଜାଳିବା ଭିତରେ ସେଠାରେ ଥିବା ବିଶାଳ ପ୍ରାଚୀନ ଗ୍ରନ୍ଥ ଓ ପାଣ୍ଡୁଲିପି ସଂଗ୍ରହକୁ ଧ୍ୱଂସ କରିଦେଲେ। ଲୁଭେନ୍ ସହରଠାରେ ଏଭଳି ବର୍ବରତା ଅନ୍ୟ ଦେଶମାନଙ୍କୁ ଜର୍ମାନି ବିପକ୍ଷରେ ଏକଜୁଟ କଲା ଏବଂ ଯୁଦ୍ଧର ଗତିପଥକୁ ବଦଳାଇ ଦେଲା। ଲୁଭେନ୍‌ର ଛାପ ସବୁ ଖବର କାଗଜରେ ଦେଖିବାକୁ ମିଳିଲା। ଏପରିକି ସମ୍ବାଦ ଛଡ଼ା ଅନ୍ୟ ଲେଖାମାନଙ୍କରେ ମଧ୍ୟ ଲୁଭେନ୍ ବିଷୟରେ ଅବତାରଣା କରାଗଲା।

ଡିସେମ୍ବର ମାସର ଗୋଟିଏ ରବିବାର ସକାଳେ ପି. ସି. ମହଲାନବିଶ୍ ରାମାନୁଜନ୍‌ଙ୍କ କୋଠରୀରେ ବସିଥିଲେ। ତାଙ୍କର ଆଖି ଜନପ୍ରିୟ ଇଂରେଜ ପତ୍ରିକା ଷ୍ଟ୍ରାଣ୍ଡର *ପର୍‌ପ୍ଲେକ୍ସିଟିଜ୍* (ଗୋଲକଧନ୍ଦା) ପୃଷ୍ଠାରେ ପଡ଼ିଲା। ମହଲାନବିଶ୍ ସେତେବେଳେ ପ୍ରାକୃତିକ ବିଜ୍ଞାନରେ ଟ୍ରାଇପସ୍ ପାଇଁ ପ୍ରସ୍ତୁତ ହେଉଥା'ନ୍ତି। ସେ ହିଁ ରାମାନୁଜନ୍‌ଙ୍କୁ ଥଣ୍ଡାରେ ଥରୁଥିବାର ଦେଖି କମ୍ବଳର ସଠିକ୍ ବ୍ୟବହାର ଶିଖାଇଥିଲେ। ରାମାନୁଜନ୍ ଏବେ ପଛ ଘରେ ରାନ୍ଧିବାରେ ବ୍ୟସ୍ତ ଥିଲେ। ଷ୍ଟ୍ରାଣ୍ଡର ଧନ୍ଦାଟି ମହଲାନବିଶ୍‌ଙ୍କୁ ରହସ୍ୟମୟ ଲାଗିଲା ଏବଂ ତାକୁ ନେଇ ସେ ରାମାନୁଜନ୍‌ଙ୍କୁ ପରୀକ୍ଷା କରିବାକୁ ଚାହିଁଲେ। ଧନ୍ଦାଟି ଥିଲା -

> ନିଆଁ ଚାରିପଟେ ବସି ୱିଲିଅମ୍ ରଜର୍ସ୍ ଓ ସାଥୀମାନେ ଗପ କରୁଥିଲେ। ରଜର୍ସ୍ କହିଲେ, "ସେଦିନ ମୁଁ ଜଣେ ଲୋକଙ୍କ ସହିତ ଲୁଭେନ୍ ବିଷୟରେ କଥା ହେଉଥିଲି। ସେ କହିଲେ ଯେ ଲୁଭେନ୍ ସହରକୁ ସେ ଭଲ ଭାବରେ ଜାଣିଥିଲେ ଏବଂ ସେଠାରେ ଜଣେ ସାଙ୍ଗଙ୍କୁ ଭେଟିବାକୁ ଯାଉଥିଲେ। ତାଙ୍କ ସାଙ୍ଗର ଘର ସେଠାରେ ଗୋଟିଏ ଲମ୍ବା ରାସ୍ତା ଉପରେ ଥିଲା ଯେଉଁଠି ଘରଗୁଡ଼ିକର ନମ୍ବର ଏକ, ଦୁଇ, ତିନି ... କ୍ରମରେ ଦିଆ ଯାଇଥିଲା। ମଜାର କଥା ଥିଲା ଯେ ସାଙ୍ଗଘରର ଗୋଟିଏ ପଟେ

ଥିବା ଘର ନମ୍ବରଗୁଡ଼ିକୁ ମିଶାଇଲେ ତାହା ତା' ଆର ପଟର ଘର ନମ୍ବରଗୁଡ଼ିକର ମିଶାଣ ଫଳ ସହିତ ସମାନ ହେଉଥିଲା। ସେ ଜାଣିଥିଲେ ଯେ ସେହି ରାସ୍ତାରେ ପଚାଶରୁ ଅଧିକ ଘର ଥିଲା, କିନ୍ତୁ ପାଞ୍ଚଶହ ଛୁଉଁ ନ ଥିଲା। ଏକଥା ମୁଁ ଆମ ପାଦ୍ରୀଙ୍କୁ କହିଲି ଏବଂ ସେ କାଗଜ କଲମ ନେଇ ହିସାବ କରି ସେ ସାଙ୍ଗର ଘର ନମ୍ବର କହିଦେଲେ। ମୁଁ ବୁଝିପାରୁନାହିଁ ସେ ଏହା କିପରି କଲେ।''

ପାଠକମାନେ ନିଜେ ନିଜେ ସେହି ଘର ନମ୍ବର ପାଇବାକୁ ଚେଷ୍ଟା କରିବେ କି?

ବିଭିନ୍ନ ସଂଖ୍ୟା ନେଇ କେତେ ମିନିଟ ଚେଷ୍ଟା କରିବା ପରେ ମହଲାନବିଶ୍ ଘର ନମ୍ବର ବାହାର କରିପାରିଲେ। ରାମାନୁଜନ୍ ମଧ୍ୟ ତାହା ପାଇଗଲେ, କିନ୍ତୁ ସେଥିରେ କିଛି ଯୋଡ଼ିଦେଲେ। ସେ ଗୋଟିଏ ପ୍ରସାରିତ ଭଗ୍ନାଂଶ ଲେଖିଲେ ଯାହାର ହର ଥିଲା ଗୋଟିଏ ସଂଖ୍ୟା ଯୁକ୍ତ ଗୋଟିଏ ଭଗ୍ନାଂଶ। ଦ୍ୱିତୀୟ ଭଗ୍ନାଂଶର ହର ମଧ୍ୟ ଥିଲା ଗୋଟିଏ ସଂଖ୍ୟା ଯୁକ୍ତ ଗୋଟିଏ ଭଗ୍ନାଂଶ ... ଏହିପରି ଅସୀମ ଯାଏଁ। ଏହା କେବଳ ସେହି ଧନ୍ଦାର ସମାଧାନ ନ ଥିଲା, ବରଂ ସେହି ପ୍ରକାରର ସବୁ ଧନ୍ଦାର ସମାଧାନ ଥିଲା। ମୂଳ ସମସ୍ୟାର ଗୋଟିଏ ମାତ୍ର ସମାଧାନ ଥିଲା - ରାସ୍ତାରେ 288 ଟି ଘର ଭିତରୁ ଘର ନମ୍ବର 204। 50 ରୁ 500 ଘର ଥିବାର ସର୍ତ୍ତ ନ ଥିଲେ ସମସ୍ୟାର ଅନ୍ୟ କେତେ ସମାଧାନ ମଧ୍ୟ ମିଳିବ। ଆଠଟି ଘର ଥିବା ରାସ୍ତା ପାଇଁ ଉତ୍ତର ହେବ ଘର ନମ୍ବର ଛଅ। ଆଗରୁ ଥିବା ଘର ନମ୍ବରଗୁଡ଼ିକର ମିଶାଣ ଫଳ ହେବ 1+2+3+4+5=15 ଯାହା ଛ ନମ୍ବର ଘରର ସେପଟେ ଥିବା ଘର ନମ୍ବରଗୁଡ଼ିକର ମିଶାଣ ଫଳ 7+8=15 ସହିତ ସମାନ ହେବ। ରାମାନୁଜନ୍‌ଙ୍କ ପ୍ରସାରିତ ଭଗ୍ନାଂଶ ଗୋଟିଏ ମାତ୍ର ରାଶିମାଳା ସାହାଯ୍ୟରେ ସବୁ ସଠିକ ଉତ୍ତର ଦେଇ ପାରୁଥିଲା।

ମହଲାନବିଶ୍ ବିସ୍ମିତ ହୋଇପଡ଼ିଲେ ଓ ପଚାରିଲେ ଯେ କିପରି ସେ ସାଙ୍ଗେ ସାଙ୍ଗେ ସେହି ଉତ୍ତର ପାଇଗଲେ।

ରାମାନୁଜନ୍ କହିଲେ, ''ସମସ୍ୟା ବିଷୟରେ ଶୁଣିବା ମାତ୍ରେ ମୁଁ ଜାଣିଲି ଯେ ତା'ର ଉତ୍ତର ଗୋଟିଏ ପ୍ରସାରିତ ଭଗ୍ନାଂଶ ହେବ। ତେବେ କେଉଁ ନିର୍ଦ୍ଦିଷ୍ଟ ଭଗ୍ନାଂଶଟି ଠିକ୍ କାମ କରିବ ସେ ବିଷୟରେ ମୁଁ ଭାବିଲି ଏବଂ ଉତ୍ତରଟି ମୋ ମନକୁ ଆସିଗଲା।''

## 4. ଜେଟା ଫଳନର ଶୂନଗୁଡ଼ିକ

ଉତ୍ତର ମୋ ମନକୁ ଆସିଗଲା! ତାହା ଥିଲା ରାମାନୁଜନ୍‌ଙ୍କ ମହିମା - ଅନେକ କିଛି ତାଙ୍କ ମନକୁ ତତ୍‌କ୍ଷଣାତ୍ ଆସି ଯାଉଥିଲା। ରାମାନୁଜନ୍ କହୁଥିଲେ ଯେ ତାହା ଥିଲା ଦେବୀ ନାମଗିରିଙ୍କ ଦୈବୀକୃପା। ପାଶ୍ଚାତ୍ୟ ଲୋକମାନେ ଏହାକୁ କହୁଥିଲେ ତାତ୍‌କ୍ଷଣିକ ଅନ୍ତର୍ଦୃଷ୍ଟି ବା ଇଣ୍ଟୁଇସନ୍। ତଥାପି ତାଙ୍କର ଏହି ଶକ୍ତିଶାଳୀ ଅନ୍ତର୍ଦୃଷ୍ଟି ହିଁ ତାଙ୍କର ଗାଣିତିକ ବିକାଶରେ ବାଧା ଦେଉଥିଲା। କାରଣ ଅନ୍ତର୍ଦୃଷ୍ଟିର ଶକ୍ତି ଯେ ସୀମିତ ତାହା ସେ ବୁଝୁ ନ ଥିଲେ ଏବଂ ଅନ୍ତର୍ଦୃଷ୍ଟି ଉପରେ ଅତ୍ୟଧିକ ଭରସା ରଖୁଥିବାରୁ ସେ ଆଧୁନିକ ଗଣିତ ବିଷୟରେ ଶିଖିବା ଦରକାର ମନେକରୁ ନ ଥିଲେ। ହାର୍ଡିଙ୍କ ଭାଷାରେ, ''ତାଙ୍କର ଜ୍ଞାନର ସୀମିତତା ତାହାର ଗଭୀରତା ଭଳି ଚମକପ୍ରଦ ଥିଲା।''

ରାମାନୁଜନ୍ ଏଭଳି ଜଣେ ମଣିଷ ଥିଲେ ଯିଏ - ମଡୁଲାର ସମୀକରଣର ଓ ଜଟିଳ ଗୁଣନ ଉପପାଦ୍ୟର ସମାଧାନ ଅତି ଉଚ୍ଚ ଘାତ ଯାଏଁ କରିପାରୁଥିଲେ; ପ୍ରସାରିତ ଭଗ୍ନାଂଶ ଉପରେ

> ଦକ୍ଷତାରେ ଅପ୍ରତିଦ୍ୱନ୍ଦ୍ୱୀ ଥିଲେ; ନିଜେ ନିଜେ ଜେଟା ଫଳନର କାର୍ଯ୍ୟକ୍ଷମ ସମୀକରଣ ଆବିଷ୍କାର କରିଥିଲେ; ବିଶ୍ଳେଷଣାତ୍ମକ ସଂଖ୍ୟାତତ୍ତ୍ୱ କ୍ଷେତ୍ରରେ ଅଧିକାଂଶ ବିଖ୍ୟାତ ସମସ୍ୟାର ପ୍ରମୁଖ ପଦଗୁଡ଼ିକ ନିର୍ଣ୍ଣୟ କରିଥିଲେ। କିନ୍ତୁ ସିଏ ମଧ୍ୟ ସେଭଳି ମଣିଷ ଥିଲେ ଯିଏ - ଦ୍ୱିରାବର୍ତ୍ତୀ ଫଳନ ବା କୋଶି ଉପପାଦ୍ୟର ନାଁ ଶୁଣି ନ ଥିଲେ; ଜଟିଳ ଚଳର ଫଳନ ବିଷୟରେ ପ୍ରାୟ କିଛି ବି ଜାଣି ନ ଥିଲେ। ଗାଣିତିକ ପ୍ରମାଣ ବିଷୟରେ ତାଙ୍କର ଧାରଣା ଅତି ଅସ୍ୱଷ୍ଟ ଥିଲା। ନୂଆ ବା ପୁରୁଣା, ଠିକ୍ ବା ଭୁଲ, ତାଙ୍କର ସବୁ ଫଳ ବାହାରିଥିଲା ଗୋଳିଆମିଶା ତର୍କ, ଅନ୍ତର୍ଦୃଷ୍ଟି ଓ ଆରୋହର ମିଶ୍ରଣ ଆଧାରିତ ଧାରାରେ। ସେହି ଧାରାର କିଛି ନିର୍ଦ୍ଦିଷ୍ଟ ବର୍ଣ୍ଣନା ସେ ଦେଇପାରୁ ନ ଥିଲେ।

ରାମାନୁଜନ୍‌ଙ୍କର ସେହି ରହସ୍ୟମୟ 'ଧାରା' ବେଳେ ବେଳେ ତାଙ୍କୁ ସାଙ୍ଘାତିକ ଭାବରେ ଭୁଲ ବାଟରେ ନେଇ ଯାଉଥିଲା। ଏଥିରୁ ଗୋଟିଏ ଉଦାହରଣ ଥିଲା ଜେଟା ଫଳନ ସମ୍ପର୍କିତ।

ରାମାନୁଜନ୍ ତାଙ୍କ ପ୍ରଥମ ଚିଠିରେ ହାର୍ଡିଙ୍କ *ଅର୍ଡର୍ସ୍ ଅଫ୍ ଇନ୍‌ଫିନିଟି* ବହିର ମୌଳିକ ସଂଖ୍ୟା ସମ୍ପର୍କିତ ଗୋଟିଏ ଉକ୍ତିକୁ ଆଧାର କରି ଲେଖିଥିଲେ, "ମୁଁ ଏପରି ଏକ ଫଳନ ପାଇଛି ଯାହା $x$ ଠାରୁ ଛୋଟ ସବୁ ମୌଳିକର ସଠିକ ସଂଖ୍ୟା ଦେଇପାରିବ।" ହାର୍ଡି ଉତ୍ତର ଦେଇଥିଲେ ଯେ ଏହା ଖୁବ୍ ଆଗ୍ରହର କଥା, କିନ୍ତୁ ତା'ର ପ୍ରମାଣ ଦରକାର। ପର ଚିଠିରେ ରାମାନୁଜନ୍ ସେ ବିଷୟରେ ଅଧିକ ଲେଖିଥିଲେ ଯାହାକୁ ଦେଖି ଲିଟଲ୍‌ଉଡ୍ କହିଲେ ଯେ ସେ ସବୁ ପୂରା ଭୁଲ। ଏବେ ରାମାନୁଜନ୍‌ଙ୍କ ପାଖରେ ବସି ହାର୍ଡି ଦେଖୁଥିଲେ କିପରି ସେ ଏଭଳି ଭୁଲ କରିଥିଲେ।

ରାମାନୁଜନ୍‌ଙ୍କ ଆଗରୁ ଅନେକ ଗଣିତଜ୍ଞ ମୌଳିକ ସଂଖ୍ୟା ଦ୍ୱାରା ବିମୋହିତ ହେଉଥିଲେ ଏବଂ ସେଗୁଡ଼ିକୁ ଚିହ୍ନଟ କରିବାର ବାଟ ଖୋଜୁଥିଲେ। ସବୁ ସଂଖ୍ୟାକୁ ଧାଡ଼ିରେ ସଜାଇ ମୌଳିକଗୁଡ଼ିକର କୌଣସି ନିର୍ଦ୍ଦିଷ୍ଟ କ୍ରମ ଅଛି କି ନାହିଁ ତାହା ସେମାନେ ଦେଖିବାକୁ ଚେଷ୍ଟା କରୁଥିଲେ। କିନ୍ତୁ ଢାଞ୍ଚା ମିଳୁ ନ ଥିଲା। ଗୋଟିଏ କଥା ଅନେକ ଦିନ ତଳୁ ଜଣାଥିଲା – ଶେଷ ମୌଳିକ ବୋଲି କିଛି ସଂଖ୍ୟା ନାହିଁ। ତେଇଶିଶହ ବର୍ଷ ତଳେ ଇଉକ୍ଲିଡ୍ ଏହା ପ୍ରମାଣ କରି ଦେଖାଇଥିଲେ। ହାର୍ଡି କହୁଥିଲେ ଯେ ଗଣିତକୁ ଗଢ଼ିବା ପାଇଁ ମୌଳିକଗୁଡ଼ିକ ହେଉଛନ୍ତି ଖଣ୍ଡେ ଖଣ୍ଡେ ଇଟା ଏବଂ ଇଉକ୍ଲିଡ୍‌ଙ୍କ ପ୍ରମାଣ ଜଣାଉଛି ଯେ ଆମ ପାଖରେ ଅସରନ୍ତି ପରିମାଣର ଇଟା ରହିଛି। ସଂଖ୍ୟାଗୁଡ଼ିକର ଶେଷ ନ ଥିଲା ଭଳି ମୌଳିକ ସଂଖ୍ୟା ସରିଯିବାର ଡର ନ ଥାଏ।

ମୌଳିକ ସଂଖ୍ୟା ବିଷୟରେ ଆହୁରି ଅନେକ ଆଗ୍ରହଜନକ କଥା ରହିଛି। ସଂଖ୍ୟା କ୍ରମରେ ଆମେ ଯେତେ ଆଗେଇବା, ମୌଳିକ ସଂଖ୍ୟାର ସାନ୍ଦ୍ରତା ସେତେ କମିଚାଲିଲା ଭଳି ମନେହେବ। ପ୍ରଥମ ଏକଶହ ସଂଖ୍ୟା ଭିତରେ ମୌଳିକର ସଂଖ୍ୟା ହେଉଛି ପଚିଶ, 101ରୁ 200 ଭିତରେ ମୌଳିକ ସଂଖ୍ୟା 21, 801ରୁ 900 ବା ନବମ ଶତକରେ ରହିଛି 15ଟି ମୌଳିକ ସଂଖ୍ୟା। ମଝିରେ କେଉଁଠି ମୌଳିକ ସାନ୍ଦ୍ରତା ଟିକିଏ ବଢ଼ିଯାଏ; 1100 ଓ 1200 ଭିତରେ ମୌଳିକର ସଂଖ୍ୟା 16। ହାରାହାରି ଭାବରେ ଦେଖିଲେ ମୌଳିକ ସାନ୍ଦ୍ରତା କମିବାର ନିୟମ ଚାଲିରହେ।

ମୌଳିକ ସଂଖ୍ୟାର ସାନ୍ଦ୍ରତା କମିବା ବିଷୟରେ ଆହୁରି ଗୋଟିଏ କଥା ଦେଖାଯାଏ। ସାନ୍ଦ୍ରତା କମିବାର ହାର ମଧ୍ୟ କମିଚାଲେ, କିନ୍ତୁ ଏହି ହାରର କମିବାର ବେଗ ଖୁବ୍ ଧୀର। ଦଶକୋଟି ଉପରର ସଂଖ୍ୟା ଭିତରେ ପ୍ରତି ଶହେ ସଂଖ୍ୟାରେ ପ୍ରାୟ ପାଞ୍ଚଟି ମୌଳିକ ମିଳେ। ଉପରେ ଦେଖିଥିଲେ ଯେ

ଏକ ହଜାର ପର୍ଯ୍ୟନ୍ତ ସଂଖ୍ୟା ଭିତରେ ପ୍ରତି ଶହେରେ ପ୍ରାୟ ପନ୍ଦରଟି ମୌଳିକ ରହିଥାଏ। କମିବାର ହାର କେତେ ଧୀର ତାହାର ଧାରଣା ଏଥିରୁ ମିଳେ।

ମୌଳିକ ସଂଖ୍ୟାର ସାନ୍ଦ୍ରତା କମିବାର ହାରକୁ ନିର୍ଦ୍ଦିଷ୍ଟ ଗାଣିତିକ ରୂପ ଦେବା ପାଇଁ ଗଣିତଜ୍ଞମାନେ ଅନେକ ଚେଷ୍ଟା ଚଳାଇଲେ। ଅନୁମାନ କରାଗଲା ଯେ ତାହା ଲଗାରିଦମିକ ହାରରେ କମୁଛି। ଲଗାରିଦମିକ ହାରରେ କମିବା ହେଉଛି ଘାତାଙ୍କୀ ବା *ଏକ୍ସପୋନେନ୍ସିଆଲ୍* ହାରରେ ବଢ଼ିବାର ବିପରୀତ। ଘାତାଙ୍କୀ ବୃଦ୍ଧିରେ ବଢ଼ିବାର ବେଗ ବଢ଼ି ବଢ଼ି ଚାଲେ। କିନ୍ତୁ ଲଗାରିଦମିକ ବୃଦ୍ଧିରେ ବଢ଼ିବାର ବେଗ କମି କମି ଚାଲେ। ଲଗାରିଦମିକ ହ୍ରାସ ବା ବୃଦ୍ଧି ପ୍ରକୃତିରେ ଅନେକ ଜାଗାରେ ଦେଖାଯାଏ। ମଣିଷ ଇନ୍ଦ୍ରିୟର ସମ୍ବେଦନଶୀଳତା ଏହାର ଗୋଟିଏ ଉଦାହରଣ। ଘର ଭିତରେ ଆଲୁଅର ଉଜଳତା ଦୁଇଗୁଣ ହୋଇଗଲେ ଆମର ଦେଖିବାରେ ବିଶେଷ ତଫାତ ପଡ଼େନାହିଁ। ଆଖି ମଧ୍ୟାହ୍ନର ଟାଣ ସୂର୍ଯ୍ୟକିରଣରେ ଯେପରି ଦେଖିପାରେ, ଅନ୍ଧାର ରାତିରେ ଦୂରରେ ଦିଆସିଲିଟିଏ ଜଳିଲେ ତାକୁ ସେପରି ଧରିପାରେ। ଆଖିର ପ୍ରତିକ୍ରିୟା ଲଗାରିଦମିକ ହୋଇଥାଏ, ତେଣୁ ଆଲୁଅର ତୀବ୍ରତା ହଜାରେ ଗୁଣ ବଢ଼ିଲେ ମଧ୍ୟ ଆଖିର ପ୍ରତିକ୍ରିୟାରେ ପ୍ରାୟ ତିନି ଗୁଣ ତଫାତ ଦେଖାଯାଏ।

ମୌଳିକ ସଂଖ୍ୟା କମିବାର ହାରର କମିବା ବେଗକୁ ଲଗାରିଦମିକ ଧାରାରେ ପ୍ରକାଶିତ କରୁଥିବା ସମୀକରଣର ଗୋଟିଏ ରୂପ ଥିଲା $\pi(x) = x/\ln x$ । ଏଠାରେ $\pi(x)$ ହେଉଛି ପ୍ରଥମ $x$ ଅଙ୍କ ଭିତରେ ମିଳୁଥିବା ମୌଳିକଗୁଡ଼ିକର ସଂଖ୍ୟା ଯାହା ଏହି ସମୀକରଣ ଅନୁସାରେ $x$ କୁ $x$ ର ପ୍ରାକୃତିକ ଲଗାରିଦମ୍ ($\ln x$) ଦ୍ୱାରା ଭାଗକଲେ ମିଳିବ। କିନ୍ତୁ ଏହା ପୂରା ଠିକ୍ ହେଉ ନ ଥିଲା, ତେଣୁ ଏହାର ଅଧିକ ଗ୍ରହଣୀୟ ରୂପ ହେଲା $\pi(x) \sim x/\ln x$ । ଦ୍ୱିତୀୟ ସମୀକରଣରେ ମିଳୁଥିବା ମୌଳିକର ସଂଖ୍ୟା ($x/\ln x$) ସହିତ ପ୍ରାୟ ସମାନ ଏବଂ $x$ ର ମୂଲ୍ୟ ଯେତେ ବଡ଼ ହେବ ସମୀକରଣର ଫଳ ସେତେ ବେଶି ଠିକ୍ ହେବ ବୋଲି ବିଶ୍ୱାସ କରାଯାଏ। ଗସ୍ ଏହି ସମୀକରଣକୁ ଏକ ଲଗାରିଦମିକ ସମାକଳ ରୂପରେ ଲେଖିଥିଲେ ଯାହା ମୂଳତଃ ଏଠାରେ ଦିଆଯାଇଥିବା ସମୀକରଣ ସହିତ ସମାନ।

1896 ମସିହାରେ ଫରାସି ଗଣିତଜ୍ଞ ହାଦାମାର୍ଦ ଓ ବେଲ୍‌ଜିଅମ୍‌ର ଗଣିତଜ୍ଞ ଡି ଲା ଭାଲେ-ପୁସିନ୍ ଅନେକ ଦିନ ତଳୁ ପ୍ରସ୍ତାବିତ ହୋଇଥିବା ଏହି ଉପପାଦ୍ୟର ପ୍ରମାଣ ଦେଲେ। ଏହି ଉପପାଦ୍ୟ କହୁଥିଲା ଯେ $x$ ର ମୂଲ୍ୟ ବଢ଼ିବା ସହିତ $(\pi(x)\ln x)/x$ ଅନୁପାତ 1ର ସନ୍ନିକଟ ହେଉଥିଲା। ଉପପାଦ୍ୟର ଗାଣିତିକ ଭିତ୍ତି ଏବେ ଦୃଢ଼ତର ହେଲା, ତଥାପି ତାହା ପୂରା ଠିକ୍ ହେଉ ନ ଥିଲା ଏବଂ $x$ ର କେବଳ ଆନୁମାନିକ ମୂଲ୍ୟ ଦେଉଥିଲା। 1914 ମସିହା ଯାଏଁ ପରିସ୍ଥିତି ଏହିଭଳି ରହିଥିଲା। ସେତିକିବେଳେ ରାମାନୁଜନ୍ ହାର୍ଡିଙ୍କ ପାଖକୁ ଦାମ୍ଭିକତା ସହିତ ଲେଖିଲେ ଯେ ସେ ପାଇଥିବା ଫଳନଟି ମୌଳିକଗୁଡ଼ିକର ସଠିକ ସଂଖ୍ୟା ଦେଇପାରିବ।

କିନ୍ତୁ ତାଙ୍କର ଦାବି ଠିକ୍ ନ ଥିଲା।

ରାମାନୁଜନ୍‌ଙ୍କର ସୂତ୍ରଟି ଏକ ଅସୀମ ଶ୍ରେଣୀ ଥିଲା ଏବଂ ତା'ର ତିନିଟି ରୂପ ସେ ଚିଠିରେ ପଠାଇଥିଲେ। ଏହା 1ରୁ 1000 ଭିତରେ ମୌଳିକଗୁଡ଼ିକର ସଠିକ୍ ସଂଖ୍ୟା ଦେଉଥିଲା। ଆହୁରି

ବେଶି ସଂଖ୍ୟା ପାଇଁ ଏହା ପ୍ରକୃତ ମୂଲ୍ୟର ଅତି ପାଖ ଉତ୍ତର ଦେଉଥିଲା। ଉଦାହରଣ ସ୍ୱରୂପ, 1ରୁ 9,000,000 ଭିତରେ 602,489ଟି ମୌଳିକ ସଂଖ୍ୟା ରହିଛି, ରାମାନୁଜନ୍‌ଙ୍କ ସୂତ୍ରରୁ ମିଳୁଥିବା ଉତ୍ତର ମାତ୍ର 53 କମ୍ ଥିଲା। ଉପରର ମୌଳିକ ସଂଖ୍ୟା ଉପପାଦ୍ୟ ତୁଳନାରେ ଏହାର ଉତ୍ତର ବେଶି ଠିକ୍ ଥିଲା। ରାମାନୁଜନ୍‌ଙ୍କ ସୂତ୍ରର ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଗୁଣ ଥିଲା ଯେ ତାହାର ଫଳରେ ରହୁଥିବା ଅଶୁଦ୍ଧି ନିର୍ଦ୍ଦିଷ୍ଟ ସୀମା ଭିତରେ ରହିବ ବୋଲି ସେ ଦାବି କରୁଥିଲେ। ସେଥିପାଇଁ ସେ ତାଙ୍କ ପ୍ରଥମ ଚିଠିରେ ହାର୍ଡିଙ୍କର ଲେଖା - "ଅଶୁଦ୍ଧି ପଦ ସଠିକ ରୂପରେ ନିର୍ଣ୍ଣିତ ହୋଇନାହିଁ" – ର ପ୍ରତିବାଦ କରିଥିଲେ। ରାମାନୁଜନ୍ ଦାବି କରୁଥିଲେ ଯେ ତାଙ୍କ ସୂତ୍ର ଏହା ନିରୂପିତ କରୁଛି।

କିନ୍ତୁ ତାଙ୍କ ସୂତ୍ର ଏହା କରିପାରୁ ନ ଥିଲା। 1913 ମସିହାରେ ହାର୍ଡିଙ୍କର ପ୍ରଥମ ଉତ୍ସାହଜନକ ଚିଠି ମାନ୍ଦ୍ରାଜରେ ପହଞ୍ଚିଲା ପରେ ନାରାୟଣ ଆୟାର ରାମାନୁଜନ୍‌ଙ୍କର ମୌଳିକ ସଂଖ୍ୟା ବିଷୟରେ କିଛି ଫଳାଫଳ ଜର୍ଣ୍ଣାଲ ଅଫ୍ ଇଣ୍ଡିଆନ୍ ମାଥେମାଟିକାଲ୍ ସୋସାଇଟିରେ ପ୍ରକାଶ କରାଇଥିଲେ। ସେଥିରେ ସେ ଲେଖିଥିଲେ ଯେ ସେ ସବୁର ପ୍ରମାଣ ପରେ ଦିଆଯିବ। କିନ୍ତୁ ତାହା କେବେ ଦିଆଯାଇ ନ ଥିଲା, କାରଣ ତା'ର ପ୍ରମାଣ ରାମାନୁଜନ୍‌ଙ୍କ ପାଖରେ ନ ଥିଲା। ବାସ୍ତବରେ, ସେ ପ୍ରମାଣ ସମ୍ଭବ ନ ଥିଲା କାରଣ ରାମାନୁଜନ୍‌ଙ୍କ ପରିକଳ୍ପନା ଭୁଲ ଥିଲା।

ରାମାନୁଜନ୍‌ଙ୍କ ନୋଟ୍ ଖାତା ଇଂଲଣ୍ଡରେ ପହଞ୍ଚିଲା ପରେ ହାର୍ଡି ଏହି ସମସ୍ୟା ଉପରେ ତାଙ୍କର ଲେଖା ଓ ଯୁକ୍ତିର ବିଶ୍ଳେଷଣ କଲେ ଏବଂ ତାହାର ତ୍ରୁଟି ଧରିପାରିଲେ। ଦେଖାଗଲା ଯେ $x$ର କମ୍ ମୂଲ୍ୟ ଉପରେ ରାମାନୁଜନ୍ ଅଧିକ ଗୁରୁତ୍ୱ ଦେଇଥିଲେ ଯାହା ସାମଗ୍ରିକ ଫଳାଫଳ ବିଷୟରେ ତାଙ୍କୁ ଭୁଲ ଧାରଣା ଦେଇଥିଲା। ପ୍ରକୃତରେ $x$ର ଉଚ୍ଚ ମୂଲ୍ୟ ପାଇଁ ଫଳାଫଳରେ ଅଶୁଦ୍ଧି ରାମାନୁଜନ୍ ଭାବୁଥିବାଠାରୁ ବେଶ୍ ଅଧିକ ହେଉଥିଲା। $x$ର ଉଚ୍ଚ ମୂଲ୍ୟକୁ ନେଇ ତାଙ୍କର ସୂତ୍ରରୁ ମିଳୁଥିବା ଫଳକୁ ଦେଖିଥିଲେ ରାମାନୁଜନ୍ ସେହି ତ୍ରୁଟି ବିଷୟରେ ସଚେତନ ହୋଇପାରିଥା'ନ୍ତେ। ଏହି ପୂରା ପ୍ରକ୍ରିୟା ହାର୍ଡିଙ୍କ ପାଇଁ ବେଶ୍ ଜ୍ଞାନବର୍ଦ୍ଧକ ଥିଲା, ପରେ ସେ ଏହାକୁ ଆଧାର କରି ଗୋଟିଏ ଭାଷଣ ପ୍ରସ୍ତୁତ କରିଥିଲେ। ହାର୍ଡି କହିଥିଲେ, "ଜେଟା ଫଳନରେ ସମ୍ମିଶ୍ର ବା କମ୍ପ୍ଲେକ୍ସ ଶୂନ ନ ଥିଲେ ଯେଉଁ ତତ୍ତ୍ୱ ବାହାରିବ, ରାମାନୁଜନ୍‌ଙ୍କ ତତ୍ତ୍ୱ ସେହିଭଳି ଥିଲା।"

ରିମାନ୍ ଜେଟା ଫଳନ ହେଉଛି ସମ୍ମିଶ୍ର ଚଳ ଆଧାରିତ ଏକ ଅସୀମ ଶ୍ରେଣୀ ଯାହା ବେଶ୍ ସରଳ ମନେ ହେଉଥିଲା। ସମ୍ମିଶ୍ର ଚଳରେ ଗୋଟିଏ ବାସ୍ତବ ଅଂଶ ଓ ଆଉ ଗୋଟିଏ କାଳ୍ପନିକ ଅଂଶ ଥାଏ। ସେହି ଦୁଇ ଅଂଶ ମିଶି ଗୋଟିଏ ଦ୍ୱିବିମ କ୍ଷେତ୍ରର ବର୍ଣ୍ଣନା ଦେଉଛନ୍ତି ବୋଲି କୁହାଯାଇପାରେ। 1860 ମସିହାରେ ଜର୍ଜ ଫ୍ରିଡ୍ରିଚ୍ ବର୍ଣ୍ଣହାର୍ଡ ରିମାନ୍ ଜେଟା ଫଳନ ବିଷୟରେ ଛ'ଟି ଅନୁମାନ କରିଥିଲେ। ରାମାନୁଜନ୍‌ଙ୍କ ସମୟକୁ ସେଥିରୁ ପାଞ୍ଚଟି ପ୍ରମାଣିତ ହୋଇ ସାରିଥିଲା। ବାକି ଗୋଟିକ ରିମାନ୍ ଉପକଳ୍ପନା ନାଁରେ ଜଣା ଥିଲା ଏବଂ ସେବେ ଯାଏଁ ଅପ୍ରମାଣିତ ରହିଥିଲା।

ରିମାନ୍ ଅନୁମାନ କରିଥିଲେ ଯେ ଜେଟା ଫଳନର ମୂଲ୍ୟକୁ ଶୂନ ଧରିଲେ ମିଳୁଥିବା ସମୀକରଣର ସମାଧାନ ଫଳଗୁଡ଼ିକ ଏକ ନିର୍ଦ୍ଦିଷ୍ଟ ରେଖା ଉପରେ ରହିବ। ସେହି ରେଖା କାଳ୍ପନିକ ଅକ୍ଷ ସହିତ ସମାନ୍ତର ହେବ ଏବଂ ତା'ର ଡାହାଣକୁ ଅଧ ଏକକ ଛାଡ଼ି ରହିବ। ସମୀକରଣର ସମାଧାନ ଫଳଗୁଡ଼ିକ 'ସମ୍ମିଶ୍ର ଶୂନ' ଭାବରେ ଜଣା ଥିଲେ। ଏହି ଉପକଳ୍ପନା ଯଦି ଠିକ୍ ହୁଏ ତେବେ

ସେଥିରୁ ମୌଳିକ ସଂଖ୍ୟାଗୁଡ଼ିକର ଅବସ୍ଥିତି ବିଷୟରେ କିଛି ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତ ମିଳିପାରିବ ଯାହା ମୌଳିକ ସଂଖ୍ୟା ଉପପାଦ୍ୟଠାରୁ ଉନ୍ନତ ହେବ।

କିନ୍ତୁ ରିମାନ୍ ଉପକଳ୍ପନା ଠିକ୍ କି ଭୁଲ ତାହା ଆଜି ଯାଏଁ କେହି ପ୍ରମାଣ କରିପାରିନାହାନ୍ତି ଏବଂ ଗଣିତର ବିଖ୍ୟାତ ଅସମାହିତ ସମସ୍ୟା ଭିତରୁ ଏହା ଗୋଟିଏ ହୋଇ ରହିଛି। ରାମାନୁଜନ୍‌ଙ୍କ ଇଂଲଣ୍ଡ ଆସିବାର ଠିକ୍ ଆଗରୁ ହାର୍ଡି ରିମାନ୍ ଉପକଳ୍ପନାର ପାଖାପାଖି ଏକ ସମସ୍ୟାର ସମାଧାନ କରିଥିଲେ। ସେ ଦେଖାଇଥିଲେ ଯେ ରିମାନ୍‌ଙ୍କ ପ୍ରସ୍ତାବିତ ରେଖା ଉପରେ ଅସୀମ ସଂଖ୍ୟାର ସମାଧାନ ଫଳ ରହିବ, କିନ୍ତୁ ସବୁ ଫଳ ରହିବ ବୋଲି ସେ ଦେଖାଇପାରି ନ ଥିଲେ। ଜର୍ମାନିର ବିଖ୍ୟାତ ଗଣିତଜ୍ଞ ଡେଭିଡ୍ ହିଲ୍‌ବର୍ଟ କହିଥିଲେ ଯେ ଯଦି ସେ ହଜାରେ ବର୍ଷ ଧରି ଶୋଇ ରହନ୍ତି, ନିଦରୁ ଉଠିଲା ପରେ ତାଙ୍କର ପ୍ରଥମ ପ୍ରଶ୍ନ ହେବ - ରିମାନ୍ ଉପକଳ୍ପନା ପ୍ରମାଣିତ ହୋଇଛି କି?

ରାମାନୁଜନ୍ ତାଙ୍କ ନିଜ ଚେଷ୍ଟାରେ ରିମାନ୍ ଜେଟା ଫଳନ ଭଳି କିଛି ସୂତ୍ର ପାଇଥିଲେ, କିନ୍ତୁ ତା'ର ପ୍ରକୃତ ଅର୍ଥ ବୁଝିପାରି ନ ଥିଲେ। ସମ୍ମିଶ୍ର ଶୂନଗୁଡ଼ିକୁ ସେ ଏଡ଼ାଇ ଯାଇଥିଲେ, ତେଣୁ ସେ ମୌଳିକ ସଂଖ୍ୟା ଉପପାଦ୍ୟର ଅନ୍ୟ ଏକ ରୂପ ପାଇଲେ ଯାହା ପୂରା ଭୁଲ ଥିଲା। ଏହା ବିଷୟରେ ହାର୍ଡିଙ୍କ ମତ ଥିଲା, "ଗଣିତର କେତେ କ୍ଷେତ୍ର ଅଛି ଯେଉଁଠାରେ ଆଧୁନିକ ପରିଶୁଦ୍ଧତାର ନିୟମକୁ ନ ମାନିଲେ ବି ବିଶେଷ କ୍ଷତି ହେବନାହିଁ। କିନ୍ତୁ ବିଶ୍ଳେଷଣାତ୍ମକ ସଂଖ୍ୟାତତ୍ତ୍ୱ ସେଭଳି କ୍ଷେତ୍ର ନୁହେଁ।"

ରାମାନୁଜନ୍‌ଙ୍କ ମୌଳିକ ସଂଖ୍ୟା ସମ୍ପର୍କିତ କାମ ବିଷୟରେ ଲିଟଲ୍‌ଉଡ୍‌ଙ୍କ ମତ ଥିଲା, "ଏହି ସମସ୍ୟାର ସମାଧାନ ପାଇଁ ଗଭୀର ବିଶ୍ଳେଷଣ ଦରକାର ହୁଏ, ତେଣୁ ତା'ର ସମାଧାନ ପାଇଁ 100 ବର୍ଷ ଲାଗିଗଲା। ଏଥିରେ ପୂରା ସଫଳ ହେବା ରାମାନୁଜନ୍‌ଙ୍କ ପକ୍ଷରେ ପ୍ରାୟ ସମ୍ଭବ ନ ଥିଲା। କିନ୍ତୁ ସେ ଧାରଣା କରିପାରିଥିଲେ ଯେ ସେହି ସମସ୍ୟାର ସମାଧାନ ଚେଷ୍ଟା ଫର୍ମାଲ୍ ଦିଗରୁ ଆରମ୍ଭ କରାଯାଇପାରେ। ଏହି ଧାରାରେ ଏପରି କିଛି ଅବସ୍ଥା ଆସିବ ଯେଉଁଠି ମୁଖ୍ୟ ଫଳାଫଳ ଆପାତସମ୍ଭବ ହୋଇପାରିବ। ଏହି ସୂତ୍ରଗୁଡ଼ିକ ସହଜରେ ମିଳେନାହିଁ, ତେଣୁ ସାମଗ୍ରିକ ଭାବରେ ଦେଖିଲେ ରାମାନୁଜନ୍‌ଙ୍କ କୃତି ଅତି ଅସାଧାରଣ।"

ହାର୍ଡି ରାମାନୁଜନ୍‌ଙ୍କ ତ୍ରୁଟି ପ୍ରତି ସହାନୁଭୂତିଶୀଳ ଥିଲେ। ଶେଷରେ ଭୁଲ ସିଦ୍ଧାନ୍ତରେ ପହଞ୍ଚିଥିଲେ ମଧ୍ୟ ରାମାନୁଜନ୍ ମୌଳିକ ସଂଖ୍ୟା ଉପପାଦ୍ୟକୁ ପୁନଃଆବିଷ୍କାର କରିଥିଲେ। ଆହୁରି ଆଗକୁ ଯିବା ପାଇଁ ସେ ଯେଉଁ ଧାରା ବ୍ୟବହାର କରିଥିଲେ ତାହା ବୈଷୟିକ ଦୃଷ୍ଟିରୁ ତ୍ରୁଟିଯୁକ୍ତ ଥିଲେ ମଧ୍ୟ ତାର୍କିକ ଦିଗରୁ ବିଚକ୍ଷଣ ଥିଲା।

ତଥାପି ରାମାନୁଜନ୍‌ଙ୍କର କିଛି ଫଳ ଭୁଲ ଥିଲା। ଏବେ ଇଂଲଣ୍ଡରେ ହାର୍ଡିଙ୍କ ଅଭିଭାବକତ୍ୱରେ ସେ ତାଙ୍କ ଭୁଲ ବୁଝିବାକୁ ଲାଗିଲେ। ହାର୍ଡି କହୁଥିଲେ ଯେ ରାମାନୁଜନ୍‌ଙ୍କ ଅନ୍ତର୍ଦୃଷ୍ଟି ତାଙ୍କୁ ଭୁଲ ବାଟରେ ନେଇଗଲା। ତାଙ୍କର ଗାଣିତିକ ଅନ୍ତର୍ଦୃଷ୍ଟି ଖୁବ୍ ଉନ୍ନତ ଥିଲା, କିନ୍ତୁ ସଠିକ ଉତ୍ତର ପାଇବା ପାଇଁ ତାହା ସବୁବେଳେ ଯଥେଷ୍ଟ ନ ଥିଲା।

ଗାଡ଼ି ସଜାଡୁଥିବା ମିସ୍ତ୍ରୀ ତାଙ୍କର ଯାନ୍ତ୍ରିକ ଅନ୍ତର୍ଦୃଷ୍ଟି ବଳରେ ଗାଡ଼ି କିପରି କାମ କରେ ତା'ର ଏକ ଧାରଣା କରିପାରନ୍ତି। କିନ୍ତୁ ସେ ଇଞ୍ଜିନର କାମର ଭୌତିକ ଓ ରାସାୟନିକ ତତ୍ତ୍ୱ ବିଷୟରେ

କହିପାରିବେନାହିଁ। କାହାଣୀର କେଉଁ ଦୃଶ୍ୟ ଆଗ ଓ କିଏ ପଛରେ ରହିବ ତାହା ଜଣେ ଲେଖକ ଜାଣିପାରେ, କିନ୍ତୁ ତା'ପାଇଁ କିଛି ନିର୍ଦ୍ଦିଷ୍ଟ ନିୟମ ବତାଇ ପାରିବନାହିଁ। ଗଣିତଜ୍ଞମାନେ କେବଳ ଅନୁମାନ କରିବା ବା ଧରିନେବା ବା ଦାବି କରିବାରେ ସନ୍ତୁଷ୍ଟ ରହନ୍ତିନାହିଁ, ତାଙ୍କ ପାଇଁ ପ୍ରମାଣ ଅପରିହାର୍ଯ୍ୟ।

ପ୍ରମାଣ ଖାଲି ପୁଟ ଭଳି ନୁହେଁ। ଗୋଟିଏ ଉଦାହରଣରୁ ଏହା ଦେଖିହେବ - 31, 331, 3331, 33331, 333331, 3333331 ପୂର୍ଣ୍ଣ ସଂଖ୍ୟାଗୁଡ଼ିକ ଗୋଟିଏ ଗୋଟିଏ ମୌଳିକ ସଂଖ୍ୟା। ଏହି କ୍ରମରେ ପର ସଂଖ୍ୟାଟି ମଧ୍ୟ ମୌଳିକ। ଏହା କ'ଣ ତେବେ ମୌଳିକ ସଂଖ୍ୟା ପାଇବାର ସୂତ୍ର? ଦୁଃଖର କଥା, ଏହି କ୍ରମର ପର ସଂଖ୍ୟାଟି ଯୌଗିକ - 33333331 ହେଉଛି 17 ଓ 19,607,843 ର ଗୁଣଫଳ। ଆଉ ଗୋଟିଏ ଉଦାହରଣ ହେଉଛି 22n+1 ରୁ ମିଳୁଥିବା ସଂଖ୍ୟା କ୍ରମ। n=0, 1, 2, 3 ଓ 4 ପାଇଁ ମିଳୁଥିବା ସଂଖ୍ୟାଗୁଡ଼ିକ ମୌଳିକ। କିନ୍ତୁ ସବୁ n ପାଇଁ ଏହା କ'ଣ ସତ? ପିଅର୍ ଡି ଫର୍ମାଟ୍ ଏହାକୁ ସତ ବୋଲି ଧରିନେଇଥିଲେ, କିନ୍ତୁ ତାହା ଭୁଲ ଥିଲା। ଅଏଲର ଦେଖିଲେ ଯେ n=5 ପାଇଁ ଏହା ମୌଳିକ ସଂଖ୍ୟା ଦେଉ ନାହିଁ, ବରଂ 641 ଓ 6,700,417 ର ଗୁଣଫଳ ବାହାରୁଛି।

ସଂଖ୍ୟାତତ୍ତ୍ୱ କ୍ଷେତ୍ରରେ ଓ ଗଣିତର ଅନ୍ୟ କେତେ ଜାଗାରେ ଏଭଳି ଅନେକ ଉଦାହରଣ ଦେଖିବାକୁ ମିଳେ ଯେଉଁଠି ସତ ମନେ ହେଉଥିବା ସୂତ୍ର ଭୁଲ ପ୍ରମାଣିତ ହୁଏ। ଏଭଳି ଉଦାହରଣଟିଏ ମୌଳିକ ସଂଖ୍ୟା କ୍ଷେତ୍ରରୁ ହାର୍ଡି ପାଇଥିଲେ। ମୌଳିକ ସଂଖ୍ୟା ପାଇଁ ବାହାରୁଥିବା ବିଭିନ୍ନ ସୂତ୍ରର ତୁଳନାରୁ ଦେଖାଗଲା ଯେ ସୂତ୍ରଗୁଡ଼ିକରୁ ମିଳୁଥିବା ମୌଳିକର ସଂଖ୍ୟା ପ୍ରକୃତ ସଂଖ୍ୟାଠାରୁ ସବୁବେଳେ ଅଧିକ ହେଉଛି। କୋଟି କୋଟି ସଂଖ୍ୟା ନେଇ ପରୀକ୍ଷା କରିବା ପରେ ସବୁବେଳେ ଏପରି ଫଳ ମିଳୁଥିଲା। ତେଣୁ ଅନ୍ତର୍ଦୃଷ୍ଟିକୁ ଆଧାର କରି ଆଗେଇଲେ ଏହା ସତ ବୋଲି ମନେହେବ। କିନ୍ତୁ ଏହାକୁ ଏକ ଉପପାଦ୍ୟର ରୂପ ଦେଇ ପ୍ରମାଣ କରିବା ସମ୍ଭବ ହୋଇନାହିଁ। ଅନ୍ତର୍ଦୃଷ୍ଟି ଯେତେ ଶକ୍ତିଶାଳୀ ହେଲେ ମଧ୍ୟ ଫଳାଫଳର ସଠିକତା ବିଷୟରେ ତାହା ନିର୍ଭରଯୋଗ୍ୟ ହୁଏନାହିଁ।

ରାମାନୁଜନ୍‌ଙ୍କ ଚିଠି ପାଇବାର ବର୍ଷେ ଆଗରୁ ଲିଟଲ୍‌ଉଡ୍ ପ୍ରମାଣ କରି ଦେଖାଇଥିଲେ ଯେ ଆହୁରି ବେଶି ସଂଖ୍ୟା ନେଇ ଖୋଜି ଚାଲିଲେ ସୂତ୍ରଗୁଡ଼ିକରୁ ବେଳେ ବେଳେ ପ୍ରକୃତ ମୌଳିକ ସଂଖ୍ୟାଠାରୁ କମ୍ ମିଳିବ। ଏହାପରେ ଗୋଟିଏ ସଂଖ୍ୟା ଜଣାଗଲା ଯାହା ଉପରକୁ ସୂତ୍ରରୁ ମିଳୁଥିବା ମୌଳିକର ସଂଖ୍ୟା ପ୍ରକୃତ ସଂଖ୍ୟାଠାରୁ ସବୁବେଳେ କମ୍ ହେବ। ଏହି ସଂଖ୍ୟାଟି ଏତେ ବିରାଟ ଥିଲା ଯେ ତାହାର ବାସ୍ତବ ବ୍ୟବହାର ହାସ୍ୟାସ୍ପଦ ମନେହେଉଥିଲା। ବିଶ୍ୱର ମୋଟ କଣିକା ସଂଖ୍ୟାଠାରୁ ବା ଯେତେ ଚେସ୍ ଖେଳ ସମ୍ଭବ ତାହାଠାରୁ ମଧ୍ୟ ଏହି ସଂଖ୍ୟା ବଡ଼ ଥିଲା। ଏହା ବିଷୟରେ ହାର୍ଡି କହିଥିଲେ. 'ସବୁଠାରୁ ବଡ଼ ସଂଖ୍ୟା ଯାହା ଗଣିତରେ କିଛି ନିର୍ଦ୍ଦିଷ୍ଟ କାମରେ ଲାଗିଛି।' ଅନ୍ତର୍ଦୃଷ୍ଟି କିପରି ଭୁଲ ବାଟରେ ନେଇଯାଇପାରେ ଏହା ଥିଲା ତାହାର ଏକ ଚରମ ଉଦାହରଣ। ଅନ୍ତର୍ଦୃଷ୍ଟିଭିତ୍ତିକ ଉପକଳ୍ପନା ପ୍ରମାଣସିଦ୍ଧ ହେବା କେତେ ଜରୁରୀ ତା'ର ସୂଚନା ଏଥିରୁ ମିଳୁଥିଲା।

ପ୍ରମାଣିତ ହେଲାପରେ କୁହାଯାଇ ପାରିବ ଯେ କ, ଖ, ଘ ପଦ ପାଇଁ ଚ, ଛ, ଜ ସୀମା ଭିତରେ ଏକ ଉପପାଦ୍ୟ ସଠିକ ଫଳାଫଳ ଦେବ। ନିୟମିତ ବ୍ୟବହାର ଛଡ଼ା ଅପ୍ରତ୍ୟାଶିତ ନୂଆ

କ୍ଷେତ୍ରରେ ମଧ୍ୟ ଉପପାଦ୍ୟଟି କାମ କରିବା ଦରକାର। ଏଥିପାଇଁ ତା'ର ସୀମା ନିରୂପିତ ହୋଇଥିବା ଦରକାର, ନଚେତ ତା'ର ପ୍ରୟୋଗ ସଫଳ ହେବନାହିଁ।

ରାମାନୁଜନ୍‌ଙ୍କ ନୋଟ୍ ଖାତାରେ ଅନେକ ଜାଗାରେ ସିଧାସଳଖ ଉତ୍ତର ଦିଆଯାଇଥିଲା ଏବଂ ଅଧିକାଂଶ ସମୟରେ ତାହା ଠିକ୍ ଥିଲା। କିନ୍ତୁ ଅନ୍ୟ ଗଣିତଜ୍ଞମାନଙ୍କ ପକ୍ଷରେ ଗ୍ରହଣଯୋଗ୍ୟ ହେବା ପାଇଁ ଉପଯୁକ୍ତ ପ୍ରମାଣ ତାଙ୍କ ପାଖରେ ନ ଥିଲା। ପାଦ ପାଦ କରି ନିଜ ମନରେ ଆଗେଇବା ପରେ ରାମାନୁଜନ୍ ତାଙ୍କ ପ୍ରମେୟଗୁଡ଼ିକୁ ଲେଖିଥିଲେ। ଏହି ତାର୍କିକ ବିକାଶ ତାଙ୍କ ପାଇଁ ଯଥେଷ୍ଟ ପ୍ରମାଣ ଥିଲା, କିନ୍ତୁ ଅନ୍ୟମାନେ ତାକୁ ସେଭଳି ଗ୍ରହଣ କରୁ ନ ଥିଲେ। ତେବେ ତାଙ୍କ ପ୍ରମାଣ ଭୁଲ ହେଉଥିଲା କାହିଁକି?

ଏହାର ଗୋଟିଏ ସାଧାରଣ ଭାବରେ ଜଣାଶୁଣା, ଯଦିଓ ମାମୁଲି, ଉଦାହରଣ ହେଉଛି $2 = 1$ର 'ପ୍ରମାଣ'। ଧରାଯାଉ $a = b$ । ଦୁଇ ପଟକୁ a ଦ୍ୱାରା ଗୁଣନ କରାଯାଉ, ମିଳିବ:

$$a^2=ab \text{ ।}$$

ଦୁଇ ପଟରେ $a^2–2ab$ ମିଶାଇଲେ ମିଳିବ:

$$a^2+(a^2–2ab)= ab+(a^2–2ab)$$

ସରଳ କଲେ ଏହା ହେବ:

$$2(a^2–ab) = a^2–ab$$

ଦୁଇ ପଟକୁ $a^2–ab$ ଦ୍ୱାରା ହରଣ କଲେ ଫଳ ହେବ:

$$2 = 1$$

ବାସ୍, ଆମର ପ୍ରମାଣ ମିଳିଗଲା। ସାଧାରଣ ଜ୍ଞାନ ପାଇଁ ଶେଷଫଳ ଗ୍ରହଣଯୋଗ୍ୟ ନ ହେଉଥିଲେ ବି ପ୍ରମାଣର ଧାରାରେ କିଛି ତ୍ରୁଟି ଦେଖାଯାଉନାହିଁ।

ତେବେ ଅସୁବିଧା ରହିଲା କେଉଁଠି? ଏଥିରେ ଲୁଚି ରହିଥିବା ଅସଲ ଅସୁବିଧାଟି ଏହିଭଳି ପ୍ରମାଣରେ ପ୍ରାୟ ଦେଖାଯାଏ। ତାହା ହେଉଛି 'ଶୂନ ଦ୍ୱାରା ବିଭାଜନ' – ଶୂନ ଦ୍ୱାରା ହରଣ ହେଉଛି ଗାଣିତିକ ଦୃଷ୍ଟିରୁ ଅସମ୍ଭବ। ଶୂନ ଦ୍ୱାରା ହରଣ କଲେ ମିଳୁଥିବା ଫଳ ଅର୍ଥହୀନ ହୁଏ। ଉପର ଉଦାହରଣରେ $a = b$, ତେଣୁ $a^2=ab$, ଅର୍ଥାତ୍ $a^2 – ab = 0$ ଯାହା ଦ୍ୱାରା ଆମେ ଶେଷ ପାଦରେ ହରଣ କରୁଛେ।

ଅତି ଅସାବଧାନ ମୁହୂର୍ତ୍ତରେ ମଧ୍ୟ ରାମାନୁଜନ୍ ଏଭଳି ହାସ୍ୟାସ୍ପଦ ଭୁଲ କେବେ ବି କରିବେନାହିଁ। ତଥାପି ବିଭିନ୍ନ ଗାଣିତିକ ପ୍ରକ୍ରିୟାରେ ବୁଡ଼ି ରହିଥିବା ବେଳେ କିଛି ଜଟିଳ ପାଦରେ ଭୁଲ ରହିଯିବା ପୂରା ସମ୍ଭବ ଥିଲା। ଗଣିତ କ୍ଷେତ୍ରରେ ଏଭଳି ଅନେକ ପ୍ରକାରର ବିପଦ ଜଣାଅଛି। ରାମାନୁଜନ୍‌ଙ୍କ ମୌଳିକ ସଂଖ୍ୟା ସମ୍ପର୍କିତ ପ୍ରମାଣ ବିଷୟରେ ହାର୍ଡି ଲେଖିଥିଲେ:

> ଅପସାରୀ ଶ୍ରେଣୀର ବ୍ୟାପକ ପ୍ରୟୋଗ ଉପରେ ତାହା ନିର୍ଭର କରୁଥିଲା। ଯୁଗ୍ମସୀମା ବଦଳ କରିବାର ବିପଦକୁ ସେ ଅଣଦେଖା କରିଦେଉଥିଲେ। ଉଦାହରଣ ସ୍ୱରୂପ କୌଣସି ଶ୍ରେଣୀର ଯୋଗଫଳ $\Sigma a_n$ ଓ ଆବେଲିଆନ୍ ସୀମା

$$\frac{\lim}{x \to 1} \Sigma a_n x^n$$

ଭିତରେ ଥିବା ପ୍ରଭେଦକୁ ସେ ଗୁରୁତ୍ୱ ଦେଉ ନ ଥିଲେ। ଆଧୁନିକ ବିଶ୍ଳେଷଣାତ୍ମକ ଗଣିତଜ୍ଞମାନେ ଏହିଭଳି ପ୍ରକ୍ରିୟାରେ ଯେଉଁଭଳି ସୀମା ବ୍ୟବହାର କରନ୍ତି ତାହା ସେ କରୁ ନ ଥିଲେ।

ଏହି ବ୍ୟତିକ୍ରମଗୁଡ଼ିକ ବୈଷୟିକ ପ୍ରକୃତିର ଥିଲା। ବିଧିବଦ୍ଧ ଗଣିତ ଶିକ୍ଷାର ଅଭାବରୁ ରାମାନୁଜନ୍ ଏହିଭଳି ଅନେକ ଅସୁବିଧାକୁ ଧରିପାରୁ ନ ଥିଲେ। ତାଙ୍କ ଅନ୍ତର୍ଦୃଷ୍ଟି ତାଙ୍କୁ ଅନେକ ପରିସ୍ଥିତିରେ ବଞ୍ଚାଇ ଦେଉଥିଲା, କିନ୍ତୁ ସବୁ ସମୟରେ ନୁହେଁ। ଆହୁରି ମଧ୍ୟ, ଉପଯୁକ୍ତ ଗଣିତ ଜ୍ଞାନର ଅଭାବ ଯୋଗୁ ସେ ଜାଣିପାରୁ ନ ଥିଲେ କେଉଁଠି ସେ ଠିକ୍ ଓ କେଉଁଠି ଭୁଲ। ଉଭୟ ଠିକ୍ ଓ ଭୁଲ ପ୍ରମେୟକୁ ସେ ସମାନ ଜୋର ଦେଉଥିଲେ ଏବଂ ଅକୃତ୍ରିମ ଦୃଢ଼ ପ୍ରତ୍ୟୟ ସହିତ ଉପସ୍ଥାପିତ କରୁଥିଲେ। ଯେଉଁଠି ବି ସେ ପ୍ରମାଣ ଦେଉଥିଲେ, ତାହା ଗଣିତ ଦୃଷ୍ଟିରୁ ଅତି ଦୁର୍ବଳ ଥିଲା।

ଲିଟଲ୍‌ଉଡ୍ ଲେଖିଥିଲେ, "ବର୍ତ୍ତମାନର ଗଣିତଜ୍ଞମାନେ ଯେଉଁ ପ୍ରମାଣ ସହିତ ଅତି ପରିଚିତ, ସେ ବିଷୟରେ ରାମାନୁଜନ୍‌ଙ୍କର କିଛି ସ୍ପଷ୍ଟ ଧାରଣା ନ ଥିଲା। ଯଦି କୌଣସି ପାଦରେ ସେ କିଛି ଗୁରୁତ୍ୱପୂର୍ଣ୍ଣ ଯୁକ୍ତିଯୁକ୍ତ ସିଦ୍ଧାନ୍ତ ପାଉଥିଲେ ଏବଂ ଯଦି ତାହା ହିସାବ ସହିତ ମେଳ ଖାଉଥିଲା ଓ ତାହା ଠିକ୍ ବୋଲି ତାଙ୍କର ଅନ୍ତର୍ଦୃଷ୍ଟି କହୁଥିଲା, ତେବେ ସେ ଆଉ କିଛି ଖୋଜୁ ନ ଥିଲେ।"

ଏହା ବୋଧହୁଏ ରାମାନୁଜନ୍‌ଙ୍କ ପାଇଁ ସୌଭାଗ୍ୟର କଥା ଥିଲା ଯେ ସେ ହାର୍ଡିଙ୍କ ସହିତ ମିଶିକରି କାମ କଲେ। ପରିଶୁଦ୍ଧତା ବିଷୟରେ ହାର୍ଡିଙ୍କର ଜୋର ଯୋଗୁ ସେ ଇଂରେଜ ଗଣିତର ସଂସ୍କାର ପାଇଁ ଏକା ଏକା ଆଗେଇଥିଲେ ଏବଂ ଶୁଦ୍ଧ ଗଣିତ ବିଷୟରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ବହି ଲେଖିଥିଲେ। ସେଥିପାଇଁ ସେ ଦୁଇ ବର୍ଷ ଆଗରୁ ବର୍ଟ୍ରାଣ୍ଡ ରସେଲ୍‌ଙ୍କୁ କହିଥିଲେ ଯେ କିଛି ପ୍ରମାଣ କରିପାରିଲେ, ପ୍ରକୃତରେ ପ୍ରମାଣ କରିପାରିଲେ, ସେ ଖୁସି ହେବେ। "ତର୍କ ଦ୍ୱାରା ଯଦି ମୁଁ ନିଶ୍ଚିତ ଭାବରେ ପ୍ରମାଣ କରିପାରିବି ଯେ ପାଞ୍ଚ ମିନିଟ ପରେ ତୁମର ମୃତ୍ୟୁ ହେବ, ମୁଁ ଦୁଃଖିତ ହେବି ଯେ ତମେ ମରିବାକୁ ଯାଉଛ, କିନ୍ତୁ ପ୍ରମାଣ କରିପାରିଥିବାର ଖୁସି ମୋର ସେ ଦୁଃଖକୁ ବହୁ ପରିମାଣରେ ପ୍ରଶମିତ କରିପାରିବ।" ଅନ୍ତର୍ଦୃଷ୍ଟିର ଅବତାର ରାମାନୁଜନ୍ ଏବେ ପ୍ରମାଣର ମହାନ ପୂଜକ ହାର୍ଡିଙ୍କ ସହିତ ମୁହାଁମୁହିଁ ହେଉଥିଲେ।

ବୌଦ୍ଧିକ ଦୁନିଆରୁ ଅଲଗା ହୋଇ ରହିଥିବାରୁ ରାମାନୁଜନ୍‌ଙ୍କର ଯେଉଁ ଅଭାବ ରହିଯାଇଥିଲା ହାର୍ଡି ଏବେ ତାକୁ ଭରଣା କରିବାର ଚେଷ୍ଟାରେ ଲାଗିଲେ। ଛବିଶ ବର୍ଷ ବୟସରେ ରାମାନୁଜନ୍ କାମ କରିବାର ନିଜସ୍ୱ ଧାରା ପକ୍କା କରିସାରିଥିଲେ। ତଥାପି ସେ ପୁରୁଣା ଗୁଳା ଭାଙ୍ଗି ନୂଆ ବାଟରେ ଯିବାର ଚେଷ୍ଟା ପ୍ରତି ଉନ୍ମୁକ୍ତ ଥିଲେ। ହାର୍ଡି ଲେଖିଥିଲେ:

ତାଙ୍କର ମନ ବେଶ୍ କଠୋର ହୋଇସାରିଥିଲା। ସେ ପାରମ୍ପରିକ ଗଣିତଜ୍ଞ ହୋଇପାରି ନ ଥିଲେ, କିନ୍ତୁ ନୂଆ ଧାରାରେ କାମ କରିବାର କୌଶଳ ସେ ଶିଖିପାରୁଥିଲେ ଏବଂ ଅତି ଚମତ୍କାର ଭାବରେ ଶିଖୁଥିଲେ। ବିଧିବଦ୍ଧ ଭାବରେ ତାଙ୍କୁ ଶିଖାଇବା ସମ୍ଭବ ନ ଥିଲା, ତଥାପି ଧୀରେ ଧୀରେ ନୂଆ କଥା ସବୁକୁ ସେ ଗ୍ରହଣ କରିନେଉଥିଲେ। ପ୍ରମାଣ କ'ଣ ତାହା ସେ ବିଶେଷ କରି ଶିଖିଲେ, ଫଳରେ

ତାଙ୍କର ପର ପର୍ଯ୍ୟାୟର ନିବନ୍ଧଗୁଡ଼ିକ କେତେ ଦିଗରୁ ଆଗ ଭଳି ବିଚିତ୍ର ଓ ଅନନ୍ୟ ଥିଲେ ମଧ୍ୟ ସୁଶିକ୍ଷିତ ଗଣିତଜ୍ଞଙ୍କ କାମ ଭଳି ମନେ ହେଉଥିଲା।

1915 ମସିହାର ଆରମ୍ଭ ବେଳକୁ ରାମାନୁଜନ୍ ତାଙ୍କ ଧାରାର ଦିଗ ବଦଳାଇବା ଆରମ୍ଭ କରିସାରିଥିଲେ ଏବଂ ହାର୍ଡି ଦେଖାଉଥିବା ଦିଗରେ ଚାଲୁଥିଲେ। କ୍ରିଷ୍ଣା ରାଓଙ୍କ ପାଖକୁ ଚିଠିରେ ରାମାନୁଜନ୍ ଲେଖିଥିଲେ, "ପ୍ରକାଶନ ପାଇଁ ମୋର ଯୋଜନା ଏବେ ବଦଳି ଯାଇଛି। ନୋଟ୍ ଖାତାରେ ଥିବା ମୋର ପୁରୁଣା ଫଳାଫଳରୁ କିଛି ବି ମୁଁ ଯୁଦ୍ଧ ସରିବା ଆଗରୁ ପ୍ରକାଶ କରିବିନାହିଁ। ଏଠାକୁ ଆସିବା ପରେ ମୁଁ ସେମାନଙ୍କର ଧାରାରୁ କିଛି ଶିଖିଲିଣି ଏବଂ ସେହି ନୂଆ ଧାରାରେ ମୁଁ କିଛି ନୂଆ ଫଳ ପାଇବାକୁ ଚେଷ୍ଟା କରୁଛି।" ତା ପର ବର୍ଷ ଆରମ୍ଭ ବେଳକୁ ସେ ତାଙ୍କର ପୁରୁଣା କାମର ଅଧିକାଂଶ ଭାଗକୁ ପଛକୁ ରଖିଦେଇଥିଲେ ଓ ନୂଆ କାମରେ ଆଗଉଥିଲେ। ପିଲାଦିନର ସାଥି ଏସ୍. ଏମ୍. ସୁବ୍ରମଣ୍ୟନ୍, ଯାହାଙ୍କ ପାଖରେ ଦୁଇ ବର୍ଷ ତଳେ ସେ ସମର୍ ହାଉସ୍‌ଠାରେ ଆଶ୍ରୟ ପାଇଥିଲେ, ତାଙ୍କ ପାଖକୁ ଚିଠିରେ ଲେଖିଥିଲେ, "କେବଳ ମୋର ସାମ୍ପ୍ରତିକ ଗବେଷଣାର ଫଳାଫଳକୁ ମୁଁ ଏବେ ପ୍ରକାଶ କରୁଛି, କାରଣ ନୋଟ୍ ଖାତାର ପୁରୁଣା କାମଗୁଡ଼ିକୁ ମୁଁ ଏଯାଏଁ କଠୋରତା ସହକାରେ ପ୍ରମାଣ କରିପାରିନାହିଁ।"

*ପ୍ରମାଣ, କଠୋରତା* – ହାର୍ଡିଙ୍କର ନୂଆ ମନ୍ତ୍ର ସବୁ ରାମାନୁଜନ୍‌ଙ୍କ ମନକୁ ପ୍ରଭାବିତ କରୁଥିଲା।

ନୂଆ କଥାସବୁ ଗ୍ରହଣ କରୁଥିଲେ ମଧ୍ୟ ରାମାନୁଜନ୍‌ଙ୍କର ମୌଳିକ ସୃଷ୍ଟିର ସ୍ରୋତ ଥମିବାର କୌଣସି ସୂଚନା ଦେଉନଥିଲା। ସୁବ୍ରମଣ୍ୟନ୍‌ଙ୍କ ପାଖକୁ ଗୋଟିଏ ଚିଠିର ମଝିରେ ସେ ହଠାତ୍ ଲେଖିଥିଲେ, "ମୁଁ ଗୋଟିଏ ବିଚିତ୍ର ଫଳନ ବିଷୟରେ ତମକୁ କହିବି" ଏବଂ ତଳର ଭଗ୍ନାଂଶଗୁଡ଼ିକ ଦେଇଥିଲେ।

1, 1/2, 2/1, 1/3, 3/1, 2/3, 3/2, 1/4, 4/1, 2/4, 4/4, 3/4, 4/3

ଏହାକୁ ଆଧାର କରି ସେ ଅତି ବିଚକ୍ଷଣତା ସହିତ ଗୋଟିଏ ଫଳନ ସୃଷ୍ଟି କରିଥିଲେ। ବିଚିତ୍ର କଥା ଥିଲା ଯେ ସେହି ଫଳନ ଉପରର ଭଗ୍ନାଂଶ ଶ୍ରେଣୀ ପାଇଁ ଆଗରୁ ବର୍ଣ୍ଣିତ ହୋଇ ନ ଥିଲା ଏବଂ କେବଳ ଅପରିମେୟ ସଂଖ୍ୟାମାନଙ୍କ ପାଇଁ ପ୍ରଯୁଜ୍ୟ ହେଉଥିଲା। 'ଅତି ବିଚିତ୍ର ଫଳନ' ଭାବରେ ରାମାନୁଜନ୍ ଏହାକୁ ପୁଣି ଥରେ ବର୍ଣ୍ଣନା କରିଥିଲେ। ଆହୁରି ସେ ଲେଖିଥିଲେ, "ଏଥିରେ ଆହୁରି ଗୋଟିଏ କୌତୂହଳୀ କଥା ରହିଛି ..." ଏବଂ "ସେ ଫଳନ ଏପରି ବ୍ୟବହାର କରୁଛି ଯେ ..."। ଏହା ଥିଲା ପୁରୁଣା ରାମାନୁଜନ୍‌ଙ୍କ ଲେଖା, ଫଳନର ବିଚିତ୍ର ବ୍ୟବହାର ବିଷୟରେ ତାଙ୍କର ଉତ୍ସାହ ଚିଠିର ପୃଷ୍ଠାଗୁଡ଼ିକରେ ଉଦ୍‌ବେଳିତ ହେଉଥିଲା।

ଏହା ଥିଲା ହାର୍ଡିଙ୍କର ସବୁଠାରୁ ବଡ଼ କୃତି। ରାମାନୁଜନ୍‌ଙ୍କ ମୌଳିକତାରେ ବା ତାଙ୍କ ଉତ୍ସାହର ପ୍ରାବଲ୍ୟରେ କୌଣସି ପ୍ରକାରର ଆଞ୍ଚ ନ ଆଣି ସେ ତାଙ୍କୁ ଆଧୁନିକ ଗଣିତର ଧାରାରେ ଦକ୍ଷ କରିପାରିଥିଲେ। ଅନ୍ୟ କେହି ହୁଏତ ରାମାନୁଜନ୍‌ଙ୍କ ଗାଣିତିକ ଦୁର୍ବଳତା ପ୍ରତି ନାକ ଟେକିଥା'ନ୍ତା ଓ ରୁକ୍ଷ ଭାବରେ ତାକୁ ସୁଧାରିବାର ଚେଷ୍ଟା କରିଥା'ନ୍ତା। କିନ୍ତୁ ସମ୍ବେଦନଶୀଳ ହାର୍ଡି ବୁଝୁଥିଲେ ଯେ ରାମାନୁଜନ୍‌ଙ୍କ ଅନ୍ତର୍ଦୃଷ୍ଟିଭିତ୍ତିକ ପ୍ରତିଭା ଅତି ବିରଳ ଧରଣର ଥିଲା ଏବଂ ଉଚ୍ଚତମ ବୈଷୟିକ

ଦକ୍ଷତା କେବେ ବି ତା'ର ବିକଳ୍ପ ହୋଇପାରିବନାହିଁ। ଉପପାଦ୍ୟକୁ ପ୍ରମାଣ କରିବା ପାଇଁ ଦରକାର ହେଉଥିବା ଗଣିତର ସବୁ କୌଶଳ ଜାଣିବା ଖୁବ୍ ଭଲ କଥା, କିନ୍ତୁ ପ୍ରମାଣ କରିବା ପାଇଁ ପ୍ରଥମେ ଭଲ ଉପପାଦ୍ୟ ସୃଷ୍ଟି କରିବା ବେଶି ଜରୁରୀ।

ଗଣିତ ବିଷୟରେ ଗବେଷଣା ପତ୍ରିକା ସବୁ ଦେଖିଲେ ଏହି କଥା ମନକୁ ଆସେନାହିଁ। କାରଣ ସେଥିରେ ପୃଷ୍ଠା ପୃଷ୍ଠା ଧରି ପ୍ରମାଣମାନ ଭରି ରହିଥାଏ। ପାଦ ପରେ ପାଦ ତର୍କ, ସୂତ୍ର ଓ ସମୀକରଣକୁ ନେଇ ଆରମ୍ଭରୁ ଶେଷ ଯାଏଁ କୌଣସି ପ୍ରମେୟ ବିକଶିତ ହୋଇ ପ୍ରମାଣିତ ଶେଷଫଳରେ ପହଞ୍ଚୁଥିଲା ଭଳି ଦିଆଯାଇଥାଏ। ବାସ୍ତବ କ୍ଷେତ୍ରରେ କିନ୍ତୁ ତାହା ଘଟେନାହିଁ। ବିଧିବଦ୍ଧ ପ୍ରମାଣର ଆବଶ୍ୟକତାକୁ ପୂରଣ କରିବା ପାଇଁ ନିବନ୍ଧରେ ଏପରି କରାଯାଇଥାଏ, ଉପପାଦ୍ୟର ପରିକଳ୍ପନା ବିଷୟରେ ତାହା କିଛି କହେନାହିଁ। ଏ ବିଷୟରେ ହାର୍ଡିଙ୍କ ନିଜ କଥା ଥିଲା, "ଜଣେ ଗଣିତଜ୍ଞ ତା'ର ଅନ୍ତର୍ଦୃଷ୍ଟି ବଳରେ କୌଣସି ଉପପାଦ୍ୟର ଧାରଣା ପାଏ। ସେଥିରୁ ମିଳୁଥିବା ସିଦ୍ଧାନ୍ତ ଯଦି ସଠିକ୍ ବୋଲି ତା'ର ବିଶ୍ୱାସ ଆସେ ତେବେ ସେ ତା ପାଇଁ ପ୍ରମାଣ ଖୋଜିବାରେ ଲାଗେ।"

ବିଭିନ୍ନ ସୃଜନାତ୍ମକ ଉତ୍ପାଦ ଭଳି ଗାଣିତିକ ଉପପାଦ୍ୟ ଜନ୍ମ ହୁଏ ଅନ୍ତର୍ଦୃଷ୍ଟିର ଗୋଟିଏ ବଡ଼ ଝଲକରୁ କିମ୍ବା ଲମ୍ବା ସମୟ ଧରି ସମସ୍ୟା ସହିତ କାମ କଲାବେଳେ ଅନେକ ଛୋଟ ଛୋଟ ଝଲକରୁ। ଉପପାଦ୍ୟର ସ୍ରଷ୍ଟା ପ୍ରଥମେ କିଛି ସ୍ୱତନ୍ତ୍ର ପରିସ୍ଥିତିରେ ତାକୁ କାମରେ ଲଗାଇ ଫଳାଫଳର ସଠିକତା ଆକଳନ କରେ। ସେଥିରୁ ଯଦି ଉପପାଦ୍ୟଟି ଠିକ୍ ବୋଲି ତା'ର ହୃଦବୋଧ ହୁଏ, ତେବେ ସେ ଗଣିତର ସବୁ କୌଶଳ ଲଗାଇ ସମସ୍ତଙ୍କ ପାଇଁ ଗ୍ରହଣୀୟ ହେଲାଭଳି ତାକୁ ପ୍ରମାଣିତ କରିବାର ଚେଷ୍ଟାରେ ଲାଗେ। ଏହା କିନ୍ତୁ ପର ସମୟର କଥା ଏବଂ ସେହି କୌଶଳ ସବୁ ଜଣେ ପ୍ରଗାଢ଼ ଚେଷ୍ଟା ବଳରେ ଶିଖିପାରିବ। ପ୍ରଥମ କଥା ହେଉଛି ଅବଧାରଣାର ପରିକଳ୍ପନା ଏବଂ ତାହା ହିଁ ପ୍ରକୃତ ମୌଳିକତା।

ଜର୍ମାନିର ଗଣିତଜ୍ଞ ଫେଲିକ୍ସ କ୍ଲାଇନ୍ ଲେଖିଥିଲେ, "ପ୍ରମାଣ କୌଶଳରେ ଦକ୍ଷ ଗଣିତଜ୍ଞଙ୍କ ତୁଳନାରେ ଗଭୀର ଅନ୍ତର୍ଦୃଷ୍ଟିସମ୍ପନ୍ନ ବ୍ୟକ୍ତିମାନେ ଗଣିତର ବିକାଶ ପାଇଁ ଅଧିକ କାମ କରିଛନ୍ତି।" ହାର୍ଡିଙ୍କ ପରେ ତାଙ୍କ ପଦବୀରେ ଆସିଥିବା ଆମେରିକୀୟ ଗଣିତଜ୍ଞ ଲୁଇସ୍ ମୋର୍ଡେଲ୍ ସେହି ଉକ୍ତିରେ ଯୋଡ଼ିଥିଲେ, "କ୍ଲାଇନ୍‌ଙ୍କ ମତ ଖୁବ୍ କମ୍ ଗଣିତଜ୍ଞଙ୍କ କ୍ଷେତ୍ରରେ ପ୍ରଯୁଜ୍ୟ ହୁଏ... ଯେପରି ରାମାନୁଜନ୍।" ମୌଳିକ ଅବଧାରଣା ଆସେ କିପରି? - ଏହା ଏକ ରହସ୍ୟ ହୋଇ ରହିଛି। କିନ୍ତୁ ତାହା ସୃଷ୍ଟି କରିବା ପାଇଁ ଜଣକୁ ତାଲିମ ଦେବା ଯେ ସମ୍ଭବ ନୁହେଁ ତାହା ନିଶ୍ଚିତ। ତେଣୁ ଯେଉଁଠି ତାହା ଦେଖାଦିଏ, ତାକୁ ସୁରକ୍ଷା ଓ ପ୍ରୋତ୍ସାହନ ଯୋଗାଇବା ଅତି ଜରୁରୀ।

ହାର୍ଡି ଜାଣିଥିବା ଅନେକ ଗଣିତଜ୍ଞ ପାଦ ପାଦ କରି କୌଣସି ତତ୍ତ୍ୱର ବିକାଶ ଓ ପ୍ରମାଣକୁ ବୁଝିବାରେ ଦକ୍ଷ ଥିଲେ, କିନ୍ତୁ ରାମାନୁଜନ୍‌ଙ୍କ ଆଗରେ ସେମାନେ କିଛି ନ ଥିଲେ କହିଲେ ଚଳେ। କେତେ ବର୍ଷ ପରେ ହାର୍ଡି ପ୍ରକୃତିଗତ ଗାଣିତିକ ଦକ୍ଷତା ମାପିବା ପାଇଁ ଏକ ଅନୌପଚାରିକ ମାପକାଠିର କଳ୍ପନା କରିଥିଲେ। ସେଥିରେ ସେ ନିଜକୁ ଦେଇଥିଲେ 25, ଲିଟଲ୍‌ଉଡ୍‌ଙ୍କୁ 30 ଏବଂ ତାଙ୍କ ସମୟର ସବୁଠାରୁ ବଡ଼ ଗଣିତଜ୍ଞ ଡେଭିଡ୍ ହିଲ୍‌ବର୍ଟଙ୍କୁ ଦେଇଥିଲେ ୪0।

ରାମାନୁଜନ୍ ପାଇଥିଲେ 100।

ହାର୍ଡି କହିଥିଲେ, "ଏଭଳି ଜଣେ ବ୍ୟକ୍ତିଙ୍କୁ ବିଧିବଦ୍ଧ ଧାରାରେ ଆରମ୍ଭରୁ ଗଣିତ ଶିଖିବାକୁ କହିବା ସମ୍ଭବ ନ ଥିଲା। ମୋର ମଧ୍ୟ ଡର ଥିଲା ଯେ ରାମାନୁଜନ୍‌ଙ୍କ ପାଇଁ ବିରକ୍ତିକର ଥିବା ଏଭଳି କଥା ଉପରେ ଜୋର ଦେଲେ ତାଙ୍କର ଆତ୍ମବିଶ୍ୱାସ ଭାଙ୍ଗିଯିବ ବା ତାଙ୍କର ପ୍ରେରଣାର ସ୍ରୋତ ବାଧା ପାଇବ।" ତେଣୁ ସେ ମଝି ମଝିଆ ବାଟ ଖୋଜିଲେ ଯେଉଁଥିରେ ରାମାନୁଜନ୍‌ଙ୍କ ସୃଜନଶୀଳତାକୁ ସଙ୍କୁଚିତ ନ କରି କିଛି ଅତ୍ୟାବଶ୍ୟକୀୟ ବିଷୟ ତାଙ୍କୁ ଶିଖାଯାଇ ପାରିବ। ଜେଟା ଫଳନର ସବୁତକ ଶୂନ ବାସ୍ତବ ବୋଲି ଜୀବନ ସାରା ବିଶ୍ୱାସ କରିବାକୁ ତାଙ୍କୁ ଛାଡ଼ିଦେବା ସମ୍ଭବ ନ ଥିଲା। ତେଣୁ ମୁଁ ତାଙ୍କୁ କିଛି ଶିଖାଇବାକୁ ଚେଷ୍ଟା କଲି ଏବଂ କିଛି ମାତ୍ରାରେ ସଫଳ ହେଲି। ଅବଶ୍ୟ ଏହା ସତ ଯେ ତାଙ୍କୁ ମୁଁ ଯେତିକି ଶିଖାଇଲି, ତା'ଠାରୁ ମୁଁ ବେଶି ଶିଖିଲି।" ରାମାନୁଜନ୍‌ଙ୍କୁ ଗଣିତ ଶିଖାଇବା ବିଷୟରେ ଲରେନ୍‌ସ୍ ୟଙ୍ଗ କହିଥିଲେ, "ଏହା ହେଉଛି ଏପରି ଏକ କଳାପଟାରେ ଲେଖିବା ଭଳି ଯେଉଁଥିରେ ବେଶି ଆଗ୍ରହଜନକ ପାଠ ବିଷୟରେ ଆଗରୁ ଲେଖା ହୋଇଛି।"

ହାର୍ଡିଙ୍କ ହାତରେ ରାମାନୁଜନ୍ ଏବେ ଗୋଟିଏ ବିରଳ ଓ କୋମଳ ଫୁଲ ଭଳି ଥିଲେ ଯାହାର ଲାଳନପାଳନ ପାଇଁ ସେ ଦାୟୀ ଥିଲେ ଏବଂ ଯୁଦ୍ଧ ଯୋଗୁ ଏବେ ସେହି ଦାୟିତ୍ୱ ଦ୍ୱିଗୁଣିତ ହୋଇଯାଇଥିଲା।

## 5. ଏସ୍. ରାମାନୁଜନ୍, ବି.ଏ.

1915 ମସିହା ଜାନୁଆରି ମାସ। ଯୁଦ୍ଧର ଘନଘଟାରେ କେମ୍ବ୍ରିଜ ମଧ୍ୟ ପ୍ରଭାବିତ। ରାସ୍ତାରେ ଆଲୁଅ ନାହିଁ, ଶତ୍ରୁର ଗାଡ଼ି ମଟରକୁ ବାଧା ଦେବା ପାଇଁ ଅନେକ ରାସ୍ତା ଅବରୁଦ୍ଧ। ବିଭିନ୍ନ ସ୍ଥାନରେ ଆକ୍ରମଣ ବା ସମ୍ଭାବ୍ୟ ଆକ୍ରମଣର ଗୁଜବ ଚାରିଆଡ଼େ ଖେଳୁଛି। ଫ୍ରାନ୍‌ସ୍ ଓ ଫ୍ଲାଣ୍ଡର୍ସ ଯୁଦ୍ଧରେ ଇଂଲଣ୍ଡର ସ୍ଥିତି ଭଲ ନୁହେଁ। ଜୁଲାଇ ମାସରେ ପ୍ରାୟ ବାର ହଜାର ଆହତ ସୈନିକ ଅସ୍ଥାୟୀ ହାସପାତାଳରେ ଆସି ପହଞ୍ଚିଲେ। ସୁସ୍ଥ ସବଳ ବିଦ୍ୟାର୍ଥୀଙ୍କ ବଦଳରେ କେମ୍ବ୍ରିଜ ଏବେ ଆହତ ଓ ରୁଗ୍‌ଣ ସୈନିକଙ୍କ ଆବାସ।

କେମ୍ବ୍ରିଜର ସାଧାରଣ ବିଦ୍ୟାର୍ଥୀ ସଂଖ୍ୟା ପ୍ରାୟ ପଇଁତିରିଶ ଶହ ବଦଳରେ ଏବେ ସେଠାରେ ମାତ୍ର ପାଞ୍ଚ ଛଅ ଶହ। ଫେଲୋମାନେ ମଧ୍ୟ ବୈଦେଶିକ, ଯୁଦ୍ଧ ବା ଅର୍ଥ ବିଭାଗରେ କାମ କରୁଛନ୍ତି; କେହି କେହି ସେନାବାହିନୀରେ ମଧ୍ୟ ସାମିଲ ହୋଇଛନ୍ତି। ବିଶ୍ୱବିଦ୍ୟାଳୟର ଭେଷଜ ଗବେଷଣାଗାର ଏବେ ହାସପାତାଳର କାମରେ ଲାଗୁଛି, ରାସାୟନିକ ଓ ଯାନ୍ତ୍ରିକ ଇଞ୍ଜିନିଅରିଙ୍ଗ ପରୀକ୍ଷାଗାରରେ ଅସ୍ତ୍ରଶସ୍ତ୍ର ତିଆରି ଚାଲିଛି।

ଲିଟଲ୍‌ଉଡ୍ କମାଣ ବାହିନୀରେ ଯୋଗଦେଇ ବିମାନବିଧ୍ୱଂସୀ କମାଣର ଦକ୍ଷତା ବଢ଼ାଇବା ପାଇଁ ଗଣିତ କରୁଛନ୍ତି। ସେ ଯୁଦ୍ଧର ସପକ୍ଷରେ ନ ଥିଲେ, କିନ୍ତୁ ନିର୍ଲିପ୍ତ ଭାବରେ ଦେଶ ପାଇଁ ଦାୟିତ୍ୱ ତୁଲାଉଥିଲେ, ଠିକ୍ ଯେପରି ସେ ଟ୍ରାଇପସ୍ ପରୀକ୍ଷାରେ ପ୍ରସନ୍ନ ଓ ଆବେଗହୀନ ଭାବରେ ବସିଥିଲେ। 1915 ମସିହା ଶେଷ ବେଳକୁ ମଧ୍ୟ ସେ ତାଙ୍କର ନୂଆ କାମରେ ବିଶେଷ ସଫଳତା ପାଇପାରି ନ ଥିଲେ ଏବଂ ହାର୍ଡି କହିଥିଲେ ଯେ ଲିଟଲ୍‌ଉଡ୍ ଯଦି ନ ପାରିବେ ତେବେ ଆଉ କିଏ ପାରିବ? ଟ୍ରିନିଟି ଫେଲୋଙ୍କ ଭିତରୁ ପ୍ରାୟ ଏକା ଲିଟଲ୍‌ଉଡ୍ ପଦୋନ୍ନତି ପାଇ ନ ଥିଲେ ଏବଂ

ନିତିଦିନିଆ କାମରୁ ଅବ୍ୟାହତି ପାଇ ସାଥିମାନଙ୍କ ସହିତ ଲଣ୍ଡନରେ ରହିବାର ଅନୁମତି ପାଇଲେ। ଜଣେ ଜୀବନୀକାର ଲେଖିଥିଲେ ଯେ ଯୁଦ୍ଧ ସମୟରେ ମଧ୍ୟ କ୍ଷେପଣାସ୍ତ୍ର ବିଜ୍ଞାନ ଲିଟଲ୍‌ଉଡ୍‌ଙ୍କର ସବୁ ସମୟ ନେଉ ନ ଥିଲା। 1915 ଓ 1919 ମସିହା ଭିତରେ ସେ ହାର୍ଡିଙ୍କ ସହିତ ମିଳିତ ଭାବରେ ଦଶଟି ଗାଣିତିକ ନିବନ୍ଧ ପ୍ରକାଶ କରିଥିଲେ। ଏହି ନିବନ୍ଧଗୁଡ଼ିକର ବିଷୟବସ୍ତୁର ଯୁଦ୍ଧ ସହିତ ଟିକିଏ ବି ସମ୍ପର୍କ ନ ଥିଲା।

ରାମାନୁଜନ୍‌ଙ୍କୁ କେମ୍ବ୍ରିଜକୁ ଆଣିବାରେ ଲିଟଲ୍‌ଉଡ୍ ଓ ତାଙ୍କର ବଳିଷ୍ଠ ଗାଣିତିକ ଶକ୍ତି ବଡ଼ ଭୂମିକା ନେଇଥିଲେ। ଏବେ ସେ କେମ୍ବ୍ରିଜରେ ନ ଥିଲେ। ତେଣୁ ଇଂଲଣ୍ଡ ଆସିବାର ମାତ୍ର ଚାରିମାସ ଭିତରେ, ପୂରା ଥୟ ହେବା ଆଗରୁ, ରାମାନୁଜନ୍ ହାର୍ଡିଙ୍କ ଉପରେ ଆହୁରି ବେଶି ନିର୍ଭରଶୀଳ ହୋଇପଡ଼ିଲେ। ଅଠତିରିଶ ବର୍ଷ ବୟସର ହାର୍ଡି ଏକ ବିଶେଷ ଯୋଜନାରେ ଯୁଦ୍ଧ ପାଇଁ ନାଁ ଲେଖାଇଲେ, କିନ୍ତୁ ପ୍ରତ୍ୟକ୍ଷ ଭାଗ ନେବା ପାଇଁ 'ଅଯୋଗ୍ୟ' ଘୋଷିତ ହୋଇ ଯୁଦ୍ଧ ସମୟତକ କେମ୍ବ୍ରିଜରେ ହିଁ କଟାଇଲେ।

ଏହି ପ୍ରଥମ ମହାଯୁଦ୍ଧ ସମୟରେ ଯୁଦ୍ଧବିରୋଧୀ ଆବେଗ ତୀବ୍ର ଥିଲା। ହାର୍ଡି ଯୁଦ୍ଧର ବିରୋଧୀ ନ ଥିଲେ ଏବଂ 'ନୀତିଗତ ବିରୋଧୀ'ଙ୍କୁ ପସନ୍ଦ କରୁ ନ ଥିଲେ। କିନ୍ତୁ ନୀତିଗତ ବିରୋଧୀଙ୍କ ପ୍ରତି କରାଯାଉଥିବା ଦୁର୍ବ୍ୟବହାର ବିପକ୍ଷରେ ସେ ଦୃଢ଼ ଭାବରେ ସ୍ୱର ଉଠାଉଥିଲେ। 'ୟୁନିଅନ୍ ଅଫ୍ ଡେମୋକ୍ରାଟିକ୍ କଣ୍ଟ୍ରୋଲ' ବା ୟୁ.ଡି.ସି. ନାମକ ନିଷ୍ପାପର ଓ ଉଚ୍ଚମନା ଦଳର ସେ ଜଣେ ସଦସ୍ୟ ଥିଲେ। ଅଳ୍ପଦିନ ଭିତରେ ଯୁଦ୍ଧ ସରିଯିବ ବୋଲି ସମସ୍ତେ ଭାବୁଥିଲେ। ତେଣୁ ଏହି ଦଳଟି ଯୁଦ୍ଧ ପରର ଶାନ୍ତି ପ୍ରକ୍ରିୟା ବିଷୟରେ ଚିନ୍ତା କରୁଥିଲା। ହାର୍ଡି ଏହାର କେମ୍ବ୍ରିଜ ଶାଖାର ସଚିବ ଥିଲେ ଏବଂ ଆପୋଷ୍ଟୋଲ୍‌ସ୍ ଦଳରେ ତାଙ୍କ ପୁରୁଣା ସାଥୀ ଜି. ଲୋଏସ୍ ଡିକିନ୍‌ସନ୍ ସଭାପତି ଥିଲେ। ଏହାର ପ୍ରଥମ ସାଧାରଣ ସଭା 4 ମାର୍ଚ୍ଚ 1915 ଦିନ ଅନୁଷ୍ଠିତ ହୋଇଥିଲା। କିନ୍ତୁ ନଭେମ୍ବରରେ ଲିଟଲ୍‌ଉଡ୍‌ଙ୍କ କୋଠରୀରେ ହେବାକୁ ଥିବା ସଭାକୁ କର୍ତ୍ତୃପକ୍ଷ ବାଧା ଦେଇଥିଲେ।

1915 ମସିହା ମେ ମାସ ବେଳକୁ ଇଂଲଣ୍ଡରେ ଜର୍ମାନି ବିରୋଧୀ ମନୋଭାବ ବେଶ୍ ବଢ଼ିଯାଇଥିଲା। ଜର୍ମାନିର ଗଣିତଜ୍ଞମାନଙ୍କ ସହିତ ବୌଦ୍ଧିକ ସମ୍ପର୍କ ସମ୍ଭବ ନ ଥିଲା। କେମ୍ବ୍ରିଜର ଗଣିତଜ୍ଞମାନେ ଯୁଦ୍ଧ କାମରେ ଚାଲିଯାଇଥିଲେ, ହାର୍ଡି ଅନ୍ୟ କାମରେ ବ୍ୟସ୍ତ ରହି ଗଣିତ ପାଇଁ ସମୟ ଦେଇପାରୁ ନ ଥିଲେ। ରାମାନୁଜନ୍ ତଥାପି ଯୁଦ୍ଧ ଚିନ୍ତାରୁ ମୁକ୍ତ ଥିଲେ। ତାଙ୍କ ମନରେ ଯୁଦ୍ଧ ପ୍ରତି ଘୃଣାଭାବ ଥିଲା, କିନ୍ତୁ ବୌଦ୍ଧିକ ଦୃଷ୍ଟିରୁ ତାଙ୍କ ପାଇଁ ଏହି ସମୟଟି ଥିଲା ବସନ୍ତ ଋତୁ ଭଳି ଏବଂ ସେ ତା'ର ଉଷ୍ମତାକୁ ଉପଭୋଗ କରୁଥିଲେ।

ଇଂଲଣ୍ଡରେ ପହଞ୍ଚିଲା ପରେ ରାମାନୁଜନ୍ ନିୟମିତ ଭାବରେ ଘରକୁ ଚିଠି ଲେଖୁଥିଲେ - ପ୍ରଥମେ ମାସକୁ ତିନି ଚାରି ଥର, ଏବେ 1915 ମସିହାରେ ମାସକୁ ପ୍ରାୟ ଦୁଇ ଥର। ଘର ଲୋକଙ୍କୁ ସେ ଆଶ୍ୱାସନା ଦେଉଥିଲେ ଯେ ସେ ନିରାମିଷାଶୀ ରହିଛନ୍ତି ଏବଂ ଧାର୍ମିକ ରୀତିନୀତି ପାଳୁଛନ୍ତି। ସାଙ୍ଗମାନଙ୍କ ପାଖକୁ ଚିଠିରେ ମଧ୍ୟ ସେ ଯୁଦ୍ଧ ବିଷୟରେ ଲେଖୁ ନ ଥିଲେ, ବରଂ ତାଙ୍କର କାମର ବିବରଣୀ ଦେଉଥିଲେ। ସାଙ୍ଗମାନଙ୍କର ପରିବାରର ଖବର ସେ ବୁଝୁଥିଲେ ଏବଂ ବେଳେ ବେଳେ ଉପଦେଶ ମଧ୍ୟ ଦେଉଥିଲେ। ଭାରତରେ ଥିବା ତାଙ୍କର ଦୁଇ ଭାଇଙ୍କ ପାଖକୁ ସେ ଇଂରେଜ

ସାହିତ୍ୟ ବିଷୟରେ ଗୁଡ଼ିଏ ବହି ପାର୍ସଲ କରି ପଠାଇଥିଲେ।

ଶାକାହାରୀ ଖାଦ୍ୟ ଯୋଗାଡ଼ କରିବା ଓ ତାକୁ ନିଜେ ରାନ୍ଧିବା କାମ ରାମାନୁଜନ୍‌ଙ୍କୁ ବେଶ୍ ହଇରାଣ କରୁଥିଲା। ଇଂଲଣ୍ଡର ଥଣ୍ଡା ଓ ଚିପା ପୋଷାକ ମଧ୍ୟ ତାଙ୍କୁ ଅସୁବିଧା ଲାଗୁଥିଲା। ଜାନକୀଙ୍କଠାରୁ ଚିଠି ନ ପାଇବା ତାଙ୍କ ଅଶ୍ୱସ୍ତିର ଆଉ ଏକ କାରଣ ଥିଲା। କିନ୍ତୁ ଗଣିତ କାମ କରିପାରୁଥିବାର ଖୁସୀ ତାଙ୍କୁ ବେଶ୍ ଉତ୍‌ଫୁଲ୍ଲ ରଖୁଥିଲା।

ହାର୍ଡିଙ୍କ ପାଖକୁ ତାଙ୍କ ପ୍ରଥମ ଚିଠିରେ ରାମାନୁଜନ୍ ତାଙ୍କ କାମର ପ୍ରକାଶନ ଦିଗରେ ସାହାଯ୍ୟ ମାଗିଥିଲେ। ଏବେ 1914-1915 ମସିହାରେ ପ୍ରକାଶନ କାମ ତାଙ୍କୁ କେତେ ବ୍ୟସ୍ତ ରଖୁଛି ତାହା ତାଙ୍କ ଚିଠିରୁ ଜଣା ପଡୁଥିଲା। 1914 ମସିହା ଜୁନ୍ ମାସର ଗୋଟିଏ ଚିଠିରେ ସେ ଲେଖିଥିଲେ, "ଏବେ ଯାଏଁ ... ମୁଁ ଦୁଇଟି ନିବନ୍ଧ ଲେଖିଛି। ଶ୍ରୀ ହାର୍ଡି ମୋର କାମ ବିଷୟରେ ଲଣ୍ଡନ ମାଥ୍. ସୋସାଇଟି ଆଗରେ ଏକ ଉପସ୍ଥାପନା ଦେବାକୁ ଆଜି ଲଣ୍ଡନ ଯାଉଛନ୍ତି।"

ସେବର୍ଷ ଅଗଷ୍ଟ ମାସରେ ସେ ପୁଣି ଲେଖିଥିଲେ, "ବର୍ତ୍ତମାନ ପର୍ଯ୍ୟନ୍ତ ମୁଁ ତିନିଟି ନିବନ୍ଧ ଲେଖିଛି। ସେଗୁଡ଼ିକର ପ୍ରୁଫ୍ ଆସିଛି। ମୁଁ ଆଉ ତିନିଟି ନିବନ୍ଧ ଏବେ ଲେଖୁଛି। ଛୁଟି ସରିଲେ ଅକ୍ଟୋବର ମାସରେ ସବୁଗୁଡ଼ିକ ପ୍ରକାଶ ପାଇବ।"

1914 ମସିହା ନଭେମ୍ବର ମାସର ଚିଠିରେ ଥିଲା, "ଯୁଦ୍ଧ ଯୋଗୁଁ ମୁଁ ଧୀରେ ଧୀରେ ମୋର ଫଳାଫଳ ସବୁ ପ୍ରକାଶିତ କରୁଛି।" 1915 ମସିହା ନଭେମ୍ବର ମାସରେ ସେ ନାରାୟଣ ଆୟାରଙ୍କ ପାଖକୁ ଲେଖିଥିଲେ, "ନିବନ୍ଧଟିକୁ ସୁସଙ୍ଗଠିତ ଭାବରେ ଲେଖିବାକୁ ମତେ କେତେ ମାସ ଲାଗିଯିବ।"

ବର୍ଷ ବର୍ଷ ଧରି ଜଣେ ଗଣିତଜ୍ଞ ଭାବରେ ରାମାନୁଜନ୍ କେବଳ ନିଜେ ହିଁ ନିଜକୁ ଜାଣିଥିଲେ। ପରେ ସେ ମାନ୍ଦ୍ରାଜରେ ଜଣାଶୁଣା ହେଲେ। ଏବେ ମର୍ଯ୍ୟାଦାବାନ ଇଂରେଜ ଗାଣିତିକ ପତ୍ରିକାରେ ତାଙ୍କ ନିବନ୍ଧ ପ୍ରକାଶିତ ହେଉଥିବା କଥା ରାମାନୁଜନ୍‌ଙ୍କୁ ବିଶେଷ ଖୁସି କରୁଥିଲା। ନିଜର କାମ ବିଷୟରେ ପୃଥିବୀ ସାରା ଲୋକଙ୍କୁ ଜଣାଇବାର ଏହା ଥିଲା ଏକମାତ୍ର ବାଟ। ବନ୍ଧୁବାନ୍ଧବଙ୍କ ପାଇଁ ଏହା ଥିଲା ପ୍ରତିଷ୍ଠାର ସ୍ଥୂଳ ପରିଚାୟକ।

ରାମାନୁଜନ୍ ଥରେ ଜାଣିବାକୁ ପାଇଲେ କିଙ୍ଗସ୍ କଲେଜର ଗଣିତ ଛାତ୍ର ଆନନ୍ଦ ରାଓ, ଯିଏ ମାନ୍ଦ୍ରାଜର ଜଣେ ବିଚାରପତିଙ୍କ ପୁଅ ଓ ରାମଚନ୍ଦ୍ର ରାଓଙ୍କ ସମ୍ପର୍କୀୟ ଥିଲେ, ସ୍ମିଥ୍ ପୁରସ୍କାର ପାଇଁ ଏକ ପ୍ରବନ୍ଧ ଲେଖୁଛନ୍ତି। ଏହା ଜାଣିଲା ପରେ ସେ ସିଧା ଯାଇ ହାର୍ଡିଙ୍କୁ ପଚାରିଲେ ଯେ ସେ ମଧ୍ୟ ସେହି ପୁରସ୍କାର ପାଇଁ ଚେଷ୍ଟା କରିପାରିବେ କି। ଗଣିତ କାମ କରିବାରେ ରାମାନୁଜନ୍ ଆତ୍ମିକ ଓ ବୌଦ୍ଧିକ ସନ୍ତୋଷ ପାଉଥିଲେ। କିନ୍ତୁ ସମ୍ମାନ, ପୁରସ୍କାର ଓ ପ୍ରଶଂସା ତାଙ୍କୁ ଅନ୍ୟ ପ୍ରକାରର ସନ୍ତୋଷ ଦେଉଥିଲା। ବୌଦ୍ଧିକ ଦିଗରୁ ରାମାନୁଜନ୍ ଅନନ୍ୟ ଥିଲେ, କିନ୍ତୁ ସାମାଜିକ ପରିସରରେ ସେ ଅନ୍ୟ ସମସ୍ତଙ୍କ ଭଳି ଥିଲେ – ସେ ପ୍ରତିଷ୍ଠା ଚାହୁଁଥିଲେ, ପ୍ରତିଷ୍ଠା ତାଙ୍କର ଦରକାର ଥିଲା।

ଏବଂ ପ୍ରତିଷ୍ଠା ତାଙ୍କୁ ଏବେ ମିଳିଲା। 1915 ମସିହାରେ ତାଙ୍କର ନ'ଟି ନିବନ୍ଧ ପ୍ରକାଶିତ ହେଲା ଯେଉଁଥିରୁ ପାଞ୍ଚଟି ଥିଲା ଇଂଲଣ୍ଡର ପତ୍ରିକାରେ। ଏହା ଆଗରୁ ତାଙ୍କର ସତେଇଶି ବର୍ଷର ଜୀବନ କାଳ ଭିତରେ ସେ ମୋଟରେ ଛ'ଟି ନିବନ୍ଧ ପ୍ରକାଶ କରିଥିଲେ ଏବଂ ସେଥିରୁ ପାଞ୍ଚଟି ଥିଲା ଭାରତୀୟ ଗଣିତ ସମାଜର ପତ୍ରିକାରେ।

ଇଂଲଣ୍ଡରେ କାମ କରିବାର ସୁବିଧା ଏବେ ସେ ବୁଝୁଥିଲେ। ଇଂଲଣ୍ଡ ଆସିବାବେଳେ ଦୁଇବର୍ଷ ପରେ ଭାରତକୁ ଫେରିଯିବା ପାଇଁ ତାଙ୍କ ଯୋଜନା ଥିଲା। 1915 ମସିହା ଜୁନ୍ ମାସରେ ମଧ୍ୟ ସେହି କଥା ସେ ସୁବ୍ରମଣ୍ୟନ୍ଙ୍କ ପାଖକୁ ଲେଖିଥିଲେ। କିନ୍ତୁ ତା ପର ମାସର ଚିଠିରେ ସେ ସୂଚନା ଦେଇଥିଲେ ଯେ ସେ କିଛି ସମୟ ପାଇଁ ଭାରତରେ ରହି ଇଂଲଣ୍ଡ ଫେରିଆସିବେ। ତାଙ୍କର କହିବାର କଥା ଥିଲା, "ମାନ୍ଦ୍ରାଜରେ ମତେ କାମରେ ସାହାଯ୍ୟ କରିବା ପାଇଁ କେହି ନାହାନ୍ତି, ବହିପତ୍ର ମଧ୍ୟ ମିଳିବନାହିଁ। ତେଣୁ କିଛିବର୍ଷ ପାଇଁ ମୋର ଇଂଲଣ୍ଡରେ ରହିବା ଦରକାର ବୋଲି ମୁଁ ଭାବୁଛି।"

ଇଂଲଣ୍ଡ ଆସିବା ପରେ ପରେ ରାମାନୁଜନ୍ଙ୍କ ଲାଜକୁଳା ଗୁଣକୁ ସମସ୍ତେ ଭୁଲ ବୁଝୁଥିଲେ ଓ ଭାବୁଥିଲେ ଯେ ସେ କାହା ସାଙ୍ଗରେ ମିଶିବାକୁ ଚାହୁଁନାହାନ୍ତି। ତେଣୁ କିଛି ପିଲା ତାଙ୍କୁ ଟାହିଟାପରା କରିବାକୁ ପଛାଉ ନ ଥିଲେ। ଏବେ କିନ୍ତୁ ସେ ବେଶ୍ ଆଦର ପାଉଥିଲେ ଏବଂ କିଛି ମାତ୍ରାରେ କିଂବଦନ୍ତି ପାଲଟି ଯାଇଥିଲେ। ତାଙ୍କ ରହିବା ଘର ଏକ ତୀର୍ଥସ୍ଥାନର ମର୍ଯ୍ୟାଦା ପାଇବାକୁ ଲାଗିଲା। ବମ୍ବେର ଜଣେ କଲେଜ ଛାତ୍ର ସି. ଡି. ଦେଶମୁଖ ମନେପକାଉଥିଲେ ଯେ, "1915 ମସିହା ଜୁଲାଇ ମାସରେ କେମ୍ବ୍ରିଜରେ ପହଞ୍ଚିଲା ପରେ ଜାଣିଲି ଯେ ମୁଁ ସେଠାରେ ରାମାନୁଜନ୍ଙ୍କ ସମସାମୟିକ ହେବି। ଏହା ମତେ ଚମତ୍କୃତ କରିଥିଲା। ରାମାନୁଜନ୍ଙ୍କ କୃତି ସବୁ ଭାରତୀୟ ଛାତ୍ରଙ୍କ ଭିତରେ ଆଲୋଚିତ ହେଉଥିଲା।" ଆନନ୍ଦ ରାଓ ମନେପକାନ୍ତି ଯେ ରାମାନୁଜନ୍ଙ୍କୁ ସେ ବିଭିନ୍ନ ସାମାଜିକ ମିଳନୀରେ ଭେଟୁଥିଲେ ଏବଂ ରାମାନୁଜନ୍ ଉଭୟ ଭାରତୀୟ ଓ ଇଂରେଜଙ୍କ ସହିତ ବିନା ଦ୍ୱିଧାରେ ମିଶୁଥିଲେ। ରବିବାରମାନଙ୍କରେ ରାମାନୁଜନ୍ଙ୍କ ସହିତ ଲମ୍ବା ବାଟ ବୁଲି ଯାଉଥିବା ମହଲାନବିଶ୍ କହୁଥିଲେ ଯେ ବହୁତ ଲୋକ ଥିବା ଜାଗାରେ ରାମାନୁଜନ୍ ଚୁପଚାପ ରହୁଥିଲେ, କିନ୍ତୁ ଛୋଟ ଦଳରେ ସେ ମନଖୋଲି କଥାବାର୍ତ୍ତା କରୁଥିଲେ। ଭାରତୀୟ ଛାତ୍ରମାନଙ୍କ ପାଇଁ ସେ ଜଣେ ବିଶିଷ୍ଟ ବ୍ୟକ୍ତି ଥିଲେ - ପ୍ରତିଭାସମ୍ପନ୍ନ ଗଣିତଜ୍ଞ ଯାହାଙ୍କୁ କେମ୍ବ୍ରିଜ ଆଣିବା ପାଇଁ ଇଂରେଜମାନେ ସବୁ ଚେଷ୍ଟା କରିଥିଲେ। ଏହି ସମୟର ଦୁଇଟି ଦଳଗତ ଫଟୋ ତିଷ୍ଠିରହିଛି ଯେଉଁଥିରେ ରାମାନୁଜନ୍ ବଡ଼ ଦଳର କେନ୍ଦ୍ରରେ ରହିଛନ୍ତି।

ଲମ୍ବା ଛୁଟିଗୁଡ଼ିକରେ ରାମାନୁଜନ୍ ପ୍ରାୟ କେମ୍ବ୍ରିଜରେ ରହୁଥିଲେ। ବେଳେ ବେଳେ ସେ ଲଣ୍ଡନ ଯାଉଥିଲେ ଏବଂ ଚିଡ଼ିଆଖାନା ବା ମିଉଜିଅମ୍ ବୁଲି ଦେଖୁଥିଲେ। ଥରେ ସେ ଓ ସାଥୀ ଜି. ସି ଚାଟାର୍ଜୀ ଅକ୍ସଫୋର୍ଡ-କେମ୍ବ୍ରିଜର ଛାତ୍ରଜୀବନ ବିଷୟରେ ଗୋଟିଏ ପ୍ରହସନଧର୍ମୀ ନାଟକ ଚାର୍ଲିଜ୍ ଅଣ୍ଟ (ଚାର୍ଲିର ମାଉସି) ଦେଖିବାକୁ ଯାଇଥିଲେ। 1892 ମସିହାରେ ଏହା ପ୍ରଥମେ ମଞ୍ଚସ୍ଥ ହୋଇଥିଲା ଏବଂ ଜନପ୍ରିୟତା ଦୃଷ୍ଟିରୁ ପ୍ରତି ବର୍ଷ ମଞ୍ଚକୁ ଫେରୁଥିଲା। ଅନେକ ହାସ୍ୟୋଦ୍ଦୀପକ ଓ ଲଘୁ ଦୃଶ୍ୟରେ ତାହା ଭରିରହିଥିଲା। ରାମାନୁଜନ୍ଙ୍କ ପାଇଁ ତାହା ଅତି ଆମୋଦଦାୟକ ଥିଲା ଏବଂ ସେ ହସରେ ବେଦମ୍ ହୋଇ କାନ୍ଦି ପକାଉଥିଲେ।

1915 ମସିହା ଅକ୍ଟୋବର ମଝି ବେଳକୁ ରାମାନୁଜନ୍ ହ୍ୱେୱେଲ୍ କୋର୍ଟ ଛାଡ଼ି ବିଶପ ହଷ୍ଟେଲକୁ ଆସିଲେ। ଏଠାରେ ତାଙ୍କର ଗୋଟିଏ ବଡ଼ ବୈଠକଖାନା ସହିତ ଛୋଟ ଶୋଇବା ଘର ଓ ମିଳିତ ଭଣ୍ଡାର-ରୋଷେଇ ଅଞ୍ଚଳ ରହିଥିଲା। ଏବଂ ତାହା ହାର୍ଡିଙ୍କ ରହିବା ଜାଗାରୁ ମାତ୍ର ଶହେ

ପାହୁଣ୍ଡ ଦୂରରେ ଥିଲା। କୁମ୍ଭକୋଣମ୍‌ରୁ ମାନ୍ଦ୍ରାଜ... ଚେଷ୍ଟରଟାଉନ ରୋଡ୍... ହ୍ୱେୱେଲ୍ କୋର୍ଟ... ବିଶପ୍ ହଷ୍ଟେଲ। ମନେହେଉଥିଲା ଯେପରି କେଉଁ ଅଦୃଶ୍ୟ ଶକ୍ତି ରାମାନୁଜନ୍‌ଙ୍କୁ ହାର୍ଡିଙ୍କର ନିକଟତର କରାଇ ଚାଲିଥିଲା।

1915 ମସିହା ଶେଷ ବେଳକୁ ରାମାନୁଜନ୍‌ଙ୍କର ଏକ ଅତି ଗୁରୁତ୍ୱପୂର୍ଣ୍ଣ ନିବନ୍ଧ ପ୍ରୋସିଡିଙ୍ଗ୍‌ସ୍ ଅଫ୍ ଲଣ୍ଡନ ମାଥେମାଟିକାଲ୍ ସୋସାଇଟି ପତ୍ରିକାରେ ପ୍ରକାଶିତ ହେଲା। 'ଅତିଯୌଗିକ' ସଂଖ୍ୟା ବିଷୟରେ ସେହି ନିବନ୍ଧ କେମ୍ବ୍ରିଜରେ ତାଙ୍କର ପ୍ରଥମ ବର୍ଷର କାମରୁ ବାହାରିଥିଲା। ପୂର୍ବ ବର୍ଷ ଜୁନ୍ ମାସରେ ହାର୍ଡି ମାଥେମାଟିକାଲ ସୋସାଇଟିରେ ତାଙ୍କ ସାଙ୍ଗମାନଙ୍କୁ ଏ ବିଷୟରେ ଜଣାଇଥିଲେ, କିନ୍ତୁ ପାଣ୍ଡୁଲିପି ପ୍ରସ୍ତୁତି ଓ ପରିମାର୍ଜନ ପରେ ଚୂଡ଼ାନ୍ତ ହେଲାବେଳକୁ 1915 ମସିହା ମାର୍ଚ୍ଚ ମାସ ହୋଇଗଲା। ବର୍ଷ ଶେଷ ବେଳକୁ ତାହା ପ୍ରକାଶିତ ରୂପକୁ ଆସିଲା। ଏହା ଏକ ଲମ୍ବା ନିବନ୍ଧ ଥିଲା ଏବଂ ତା'ର ଆଲୋଚନାର ପରିସର ବେଶ୍ ବିସ୍ତୃତ ଥିଲା। ତେଣୁ ପାଠକକୁ ବାଟ କଢ଼ାଇବା ପାଇଁ ସେଥିରେ କ୍ରମସଂଖ୍ୟାଯୁକ୍ତ ଅନୁଚ୍ଛେଦମାନ ଓ ଏକ ସ୍ୱତନ୍ତ୍ର ସୂଚୀପତ୍ର ରହିଥିଲା। ପାଣ୍ଡୁଲିପିକୁ ପଢ଼ି ମତାମତ ଦେବା ପାଇଁ ରାମାନୁଜନ୍ ଡବ୍ଲିଉ. ଏନ୍. ବେଲି ଓ ଏସ୍. ପୋଲାର୍ଡଙ୍କୁ ନିମନ୍ତ୍ରଣ କରିଥିଲେ। ବେଲି କହନ୍ତି, "ରାମାନୁଜନ୍ ମୂଳରୁ ବୁଝାଇବା ଆରମ୍ଭ କଲେ ଏବଂ ଶୀଘ୍ର ଶୀଘ୍ର ପୃଷ୍ଠା ଓଲଟାଇ ଚାଲିଲେ। ଅତି ସଂକ୍ଷିପ୍ତ ଭାବରେ ସେ ନିବନ୍ଧର ବିଷୟ ଓ ତର୍କ ବୁଝାଉଥିଲେ। ଅଳ୍ପ ସମୟ ପରେ ମୁଁ ବୁଝିବାର ଚେଷ୍ଟା ଛାଡ଼ିଦେଲି। ପୋଲାର୍ଡ କଷ୍ଟେମଷ୍ଟେ ଲାଗିରହିଲେ ଏବଂ ପ୍ରବଳ ମୁଣ୍ଡବିନ୍ଧାର ଶିକାର ହେଲେ।"

ଯୌଗିକ ସଂଖ୍ୟା ହେଉଛି ମୌଳିକ ସଂଖ୍ୟାର ବିପରୀତ। 21 ହେଉଛି ଗୋଟିଏ ଯୌଗିକ ସଂଖ୍ୟା ଯାହା 3 ଓ 7ର ଗୁଣନଫଳ। 22 ମଧ୍ୟ ଯୌଗିକ। କିନ୍ତୁ 23 ହେଉଛି ମୌଳିକ ସଂଖ୍ୟା - କେବଳ ନିଜ ସହିତ 1ର ଗୁଣନରୁ ତାହା ଉତ୍ପନ୍ନ ହୋଇପାରିବ। ପ୍ରତି ଯୌଗିକ ସଂଖ୍ୟା ପାଇଁ ତା'ର ଭାଜକଗୁଡ଼ିକ ବାହାର କରାଯାଇପାରିବ। ଯେପରି 21ର ଭାଜକଗୁଡ଼ିକ ହେଉଛି 1, 3, 7, 21 ଏବଂ 22ର 1, 2, 11, 22। ସେହିପରି 24ର ଭାଜକଗୁଡ଼ିକ ହେଉଛି 1, 2, 3, 4, 6, 8, 12, 24।

ରାମାନୁଜନ୍‌ଙ୍କ ନିବନ୍ଧ ଏହି ଶେଷ 24 ଭଳି ସଂଖ୍ୟାମାନଙ୍କ ବିଷୟରେ ଥିଲା। ଏହାର ଭାଜକ ସଂଖ୍ୟା ଥିଲା 8 ଏବଂ 24 ତଳକୁ ଆଉ କୌଣସି ସଂଖ୍ୟାର ଏତେ ଭାଜକ ନ ଥିଲେ। ଏହିଭଳି ଅଧିକ ଭାଜକଯୁକ୍ତ ସଂଖ୍ୟାଗୁଡ଼ିକୁ ରାମାନୁଜନ୍ 'ଅତିଯୌଗିକ' ନାଁ ଦେଇଥିଲେ। ହାର୍ଡିଙ୍କ ଭାଷାରେ ଏଗୁଡ଼ିକ ଥିଲେ, 'ଯେତେ ସମ୍ଭବ ଅଣମୌଳିକ ଗୁଣ ଦେଖାଉଥିବା ସଂଖ୍ୟା'। ମୌଳିକ ସଂଖ୍ୟାଗୁଡ଼ିକର ଭାଜକ ସଂଖ୍ୟା ସବୁବେଳେ ଦୁଇ ବା ନ୍ୟୁନତମ ହେଉଥିଲା ବେଳେ ଅତିଯୌଗିକ ସଂଖ୍ୟା ଏହାର ବିପରୀତ (ଅଣମୌଳିକ) ଗୁଣ ଦେଖାଇ ସର୍ବାଧିକ ଭାଜକର ଅଧିକାରୀ ହୋଇଥାଏ। ଅନେକ ଦିନ ତଳୁ ରାମାନୁଜନ୍ ଏହି ବିଷୟରେ ଆଗ୍ରହୀ ଥିଲେ। ତାଙ୍କ ଦ୍ୱିତୀୟ ନୋଟ୍ ଖାତାର ଆରମ୍ଭରେ ସେ ପ୍ରାୟ ଏକ ଶହ ଅତିଯୌଗିକ ସଂଖ୍ୟାର ତାଲିକା କରିଥିଲେ। ସେଥିରୁ ପ୍ରଥମ କେତୋଟି ଥିଲା 2, 4, 6, 12, 24, 36, 48, 60, 120। ସେଗୁଡ଼ିକର ଗୁଣଧର୍ମର ତର୍ଜମା କଲାପରେ ସେ ତାଙ୍କ ଭିତରେ ସମ୍ପର୍କ ବାହାରକଲେ, ଯାହା ଥିଲା -

$$N = 2^{a_2} \times 3^{a_3} \times 5^{a_5} \cdots$$

ଏଠାରେ ଯୌଗିକ ସଂଖ୍ୟା N ବିଭିନ୍ନ ମୌଳିକ ସଂଖ୍ୟା 2, 3, 5... ର $a_2$, $a_3$, $a_5$ ... ଆଦି ଘାତର ଗୁଣନଫଳ ଭାବରେ ପ୍ରକାଶିତ ହେଉଛି। ଏହି ଧାରାରେ ଅତିଯୌଗିକ ସଂଖ୍ୟା 24 ହେବ $2^3 x 3^1$। ଏଠାରେ $a_2 = 3$ ଓ $a_3 = 1$। ରାମାନୁଜନ୍ ଦେଖିଲେ ଯେ କୌଣସି ଅତିଯୌଗିକ ସଂଖ୍ୟା ପାଇଁ $a_2$ ସବୁବେଳେ $a_3$ ସହିତ ସମାନ ବା ତା'ଠାରୁ ବଡ଼ ହେଉଥିଲା, $a_3$ ସବୁବେଳେ $a_5$ ସହିତ ସମାନ ବା ତା'ଠାରୁ ବଡ଼ ହେଉଥିଲା...। ଯେତେ ବଡ଼ ସଂଖ୍ୟା ଯାଏଁ ଖୋଜିଲେ ମଧ୍ୟ କୌଣସି ଅତିଯୌଗିକ ସଂଖ୍ୟା ମିଳିବନାହିଁ ଯାହାର ସୂତ୍ର ହେବ $N = 2^3 x 3^4 x$ ...। କେବେ ବି ନୁହେଁ। ରାମାନୁଜନ୍ ଆହୁରି ଦେଖାଇଲେ ଯେ କେବଳ 4 ଓ 36କୁ ଛାଡ଼ିଦେଲେ ବାକି ସବୁ ଅତିଯୌଗିକ ସଂଖ୍ୟା ପାଇଁ ସୂତ୍ରରେ ଶେଷ $a_n$ ସବୁବେଳେ 1 ହେବ। ଏହିସବୁ ପାଇଁ ସେ ପ୍ରମାଣ ମଧ୍ୟ ଯୋଗାଇଲେ ଯାହା ବାଉନ ପୃଷ୍ଠା ଧରି ବ୍ୟାପିଥିଲା। ତାଙ୍କର ପ୍ରମାଣକୁ ହାର୍ଡି କହିଥିଲେ, "ସରଳ କିନ୍ତୁ ଅତି ବିଚକ୍ଷଣ"।

ହାର୍ଡିଙ୍କ ମତରେ, "ରାମାନୁଜନ୍‌ଙ୍କର ଏହି ସମସ୍ୟାଟି ଅତି ବିଚିତ୍ର ଥିଲା ଏବଂ ଗାଣିତିକ ଗବେଷଣାର ମୁଖ୍ୟ ସ୍ରୋତଠାରୁ ଅଲଗା ହୋଇ ରହିଥିଲା। ତଥାପି ତା'ର ବିଶ୍ଳେଷଣରେ ରାମାନୁଜନ୍ ଯେ ଅସାଧାରଣ ଅନ୍ତର୍ଦୃଷ୍ଟି ଓ ବିଚକ୍ଷଣତା ଦେଖାଇଛନ୍ତି ସେ ବିଷୟରେ କୌଣସି ପ୍ରଶ୍ନ ନ ଥିଲା। ଆହୁରି ମଧ୍ୟ ସନ୍ଦେହ ନ ଥିଲା ଯେ ଏହି ବିଷୟରେ ତାଙ୍କର ନିବନ୍ଧ ଅନେକ ବର୍ଷ ଧରି ଇଂଲଣ୍ଡରେ ପ୍ରକାଶ ପାଇଥିବା ଉଲ୍ଲେଖନୀୟ ନିବନ୍ଧଗୁଡ଼ିକ ଭିତରୁ ଅନ୍ୟତମ ଥିଲା।"

x x x

କେମ୍ବ୍ରିଜର ପ୍ରତ୍ୟେକ ଛାତ୍ର ପାଇଁ ଜଣେ ଜଣେ ଟିଉଟର ରହିଥିଲେ। ରାମାନୁଜନ୍‌ଙ୍କ ଟିଉଟର ଥିଲେ ଇ. ଡବ୍ଲିଉ. ବାର୍ଣ୍ଣସ୍। ତାଙ୍କର କହିବା ଅନୁସାରେ ସେ ଜାଣିଥିବା ଟ୍ରିନିଟିର ଶ୍ରେଷ୍ଠତମ ଛାତ୍ରମାନଙ୍କ ଭିତରେ ରାମାନୁଜନ୍ ସବୁଠାରୁ ବେଶି ବିଚକ୍ଷଣ ଥିଲେ। ବାର୍ଣ୍ଣସ୍‌ଙ୍କ ଛାତ୍ରମାନଙ୍କ ଭିତରେ ଲିଟଲ୍‌ଉଡ୍ ଜଣେ ଥିଲେ। ପର ସମୟରେ ବାର୍ଣ୍ଣସ୍ ଜଣେ ଉଚ୍ଚପଦସ୍ଥ ଧର୍ମଯାଜକ ହୋଇଥିଲେ, କିନ୍ତୁ କେମ୍ବ୍ରିଜରେ ଥିଲାବେଳେ ସେ ଜଣେ ଭଲ ଗଣିତଜ୍ଞ ଭାବରେ ସମ୍ମାନ ପାଉଥିଲେ। ଆଣ୍ଡ୍ରିଉ ଫୋରସାଇଥ୍‌ଙ୍କର ସେ ପ୍ରଥମ ପର୍ଯ୍ୟାୟର ଶିଷ୍ୟ ଥିଲେ ଏବଂ ହାର୍ଡିଙ୍କ ଭଳି ଟ୍ରାଇପସ୍ ସଂସ୍କାରର ଦୃଢ଼ ସମର୍ଥକ ଥିଲେ। ତାଙ୍କର ଗାଣିତିକ ଆବିଷ୍କାର ମଧ୍ୟ ଉଲ୍ଲେଖନୀୟ ଥିଲା। 1915 ମସିହା ନଭେମ୍ବର ମାସରେ ସେ ମାଡ୍ରାସ୍ ବିଶ୍ୱବିଦ୍ୟାଳୟର କୁଳସଚିବ ଫ୍ରାନ୍‌ସିସ୍ ଡିଉଜ୍‌ବରିଙ୍କ ପାଖକୁ ରାମାନୁଜନ୍‌ଙ୍କ ପ୍ରଗତି ବିଷୟରେ ଲେଖିଥିଲେ, "ଚମତ୍କାର। ଏଠାକୁ ଆସିବା ସମୟରେ ଯେଉଁ ଆଶା ରହିଥିଲା ତାହା ସେ ପୂରା ମାତ୍ରାରେ ପୂରଣ କରୁଛନ୍ତି।" ରାମାନୁଜନ୍‌ଙ୍କର ଦୁଇବର୍ଷିଆ ବୃତ୍ତି ଏବେ ସରିବାକୁ ଯାଉଥିଲା। ତାହାକୁ ବଢ଼ାଇ ଦିଆଯାଉ ବୋଲି ମଧ୍ୟ ସେ ଲେଖିଥିଲେ। ତାଙ୍କର ବିଶ୍ୱାସ ଥିଲା ଯେ ରାମାନୁଜନ୍ ନିଶ୍ଚୟ ଟ୍ରିନିଟିର ଫେଲୋ ଭାବରେ ନିର୍ବାଚିତ ହେବେ। ସେହି ନିର୍ବାଚନ 1917 ମସିହା ଅକ୍ଟୋବର ମାସରେ ହେବାକୁ ଥିଲା, ତେଣୁ ସେ ସମୟ ଯାଏଁ ରାମାନୁଜନ୍‌ଙ୍କ ବୃତ୍ତି ଚଳାଇ ରଖିବା ପାଇଁ ସେ ପ୍ରସ୍ତାବ ଦେଇଥିଲେ।

କିଛିଦିନ ପରେ ହାର୍ଡି ମଧ୍ୟ ଡିଉଜ୍‌ବରିଙ୍କ ପାଖକୁ ଲେଖିଲେ, "ଏଥିରେ ସନ୍ଦେହ ନାହିଁ ଯେ ରାମାନୁଜନ୍ ହେଉଛନ୍ତି ଆଧୁନିକ ସମୟର ଶ୍ରେଷ୍ଠ ଭାରତୀୟ ଗଣିତଜ୍ଞ ... ତାଙ୍କର ଗବେଷଣା ବିଷୟ ବାଛିବାରେ ଓ କାମର ଧାରାରେ ସେ ସବୁବେଳେ ଆଡ଼ବାୟା ବ୍ୟବହାର ଦେଖାଇବେ ... କିନ୍ତୁ ତାଙ୍କର ଅସାଧାରଣ ପ୍ରତିଭାକୁ କେହି ପ୍ରଶ୍ନ କରିପାରିବେନାହିଁ; ଅନେକ ଦୃଷ୍ଟିରୁ ସେ ହେଉଛନ୍ତି ମୁଁ ଜାଣିଥିବା ଗଣିତଜ୍ଞମାନଙ୍କ ଭିତରେ ସବୁଠାରୁ ବେଶି ଅସାଧାରଣ।"

ମାନ୍ଦ୍ରାଜରେ ମଧ୍ୟ ରାମାନୁଜନ୍‌ଙ୍କ ବୃତ୍ତିର ମିଆଦ ବଢ଼ାଇବା ପାଇଁ ଦାବି ଉଠିଲା। ସାର୍ ଫ୍ରାନ୍‌ସିସ୍ ସ୍ପ୍ରିଙ୍ଗ୍ ନିର୍ଦ୍ଦିଷ୍ଟ ଭାବରେ ଚାହିଁଲେ ଯେ ତାହା ଦୁଇବର୍ଷ ପାଇଁ ବଢ଼ାଯାଉ। କେତେଦିନ ପାଇଁ ସେହି ବୃତ୍ତି ବଢ଼ାଯିବ ସେ ନେଇ ଅନେକ ବିଚାରବିମର୍ଷ ଚାଲିଲା। ଶେଷରେ ସ୍ଥିର ହେଲା ଯେ ଏବେ ତାହା ଏକବର୍ଷ ପାଇଁ ବଢ଼ାଯିବ ଏବଂ ଯଦି ଦରକାର ହୁଏ ତେବେ ଦ୍ୱିତୀୟ ବର୍ଷ ପାଇଁ ସେ ସମୟରେ ବଢ଼ାଯିବ।

ମାଡ୍ରାସ୍ ବିଶ୍ୱବିଦ୍ୟାଳୟ ଦେଉଥିବା ବୃତ୍ତିର ପରିମାଣ ବର୍ଷକୁ 250 ପାଉଣ୍ଡ ଥିଲା ଏବଂ ଟ୍ରିନିଟି ଆଉ 60 ପାଉଣ୍ଡ ମିଶାଉଥିଲା। ତୁଳନା କରିବାକୁ ଗଲେ 1914 ମସିହାରେ କାରଖାନାରେ କାମ କରୁଥିବା ଇଂରେଜ ଶ୍ରମିକମାନେ ବର୍ଷକୁ ହାରାହାରି 75 ପାଉଣ୍ଡ ରୋଜଗାର କରୁଥିଲେ। 160 ପାଉଣ୍ଡରୁ ଅଧିକ ରୋଜଗାର କରୁଥିବା ଲୋକମାନଙ୍କୁ ସେଠାରେ ଆୟକର ଦେବାକୁ ପଡୁଥିଲା ଏବଂ ଶତକଡ଼ା ସାତ ଭାଗ ଲୋକ କର ଦେଉଥିଲେ। ତେଣୁ ଘରକୁ ପଚାଶ ପାଉଣ୍ଡ ପଠାଇଲା ପରେ ମଧ୍ୟ ରାମାନୁଜନ୍‌ଙ୍କ ପାଖରେ ବେଶ୍ ପଇସା ରହୁଥିଲା। ରାମାନୁଜନ୍‌ଙ୍କ ଅତି ସରଳ ଜୀବନଶୈଳୀ ଦୃଷ୍ଟିରୁ ଏହା ତାଙ୍କର ଚାହିଦାଠାରୁ ଢେର ଅଧିକ ଥିଲା।

କଲେଜ ପାଇଁ ରାମାନୁଜନ୍‌ଙ୍କୁ କିଛି କାମ କରିବାକୁ ପଡୁ ନ ଥିଲା, ତେଣୁ ସେ ନିଜ ଇଚ୍ଛା ଅନୁସାରେ ଗଣିତ କାମ କରିପାରୁଥିଲେ। ନିଜର ବା ପରିବାରର ଆର୍ଥିକ ଅସୁବିଧା ମଧ୍ୟ ଏବେ ନ ଥିଲା। ଗଣିତରେ ବୁଡ଼ି ରହିବାରେ ସେ ଖୁସି ଥିଲେ, ତଥାପି ଗୋଟିଏ କଥା ତାଙ୍କୁ ବ୍ୟଥିତ କରୁଥିଲା। ତାହା ଥିଲା କୌଣସି ଡିଗ୍ରୀର ଅଭାବ ଏବଂ ଜନସାଧାରଣଙ୍କ ପାଇଁ ଡିଗ୍ରୀ ଥିଲା ବୌଦ୍ଧିକ ବିକାଶର ମାପକାଠି। ରାମାନୁଜନ୍‌ଙ୍କ ପାଇଁ ଏହା ଏକ ଔପଚାରିକତା ଥିଲା, କିନ୍ତୁ ତାହା ସେ ଚାହୁଁଥିଲେ।

ଗବେଷଣା ଛାତ୍ର ଭାବରେ କାମ କରିବା ଆଗରୁ ସାଧାରଣତଃ ଜଣେ ବିଶ୍ୱବିଦ୍ୟାଳୟର କୌଣସି ଉପାଧିପତ୍ର ହାସଲ କରିଥିବା ଦରକାର ହେଉଥିଲା। ରାମାନୁଜନ୍‌ଙ୍କ ପାଇଁ ତାହା ଛାଡ଼ କରିଦିଆଯାଇଥିଲା। 1916 ମସିହା ମାର୍ଚ୍ଚ ମାସରେ ଅତିଯୌଗିକ ସଂଖ୍ୟା ବିଷୟରେ ତାଙ୍କର ଲମ୍ବା ନିବନ୍ଧକୁ ବିଚାରକୁ ନେଇ ତାଙ୍କୁ 'ଗବେଷଣା ଆଧାରରେ' ବି.ଏ. ଡିଗ୍ରୀ ଦିଆଗଲା। ସନ୍ଦର୍ଭ ଦାଖଲ ପାଇଁ ପାଞ୍ଚ ପାଉଣ୍ଡ ଏବଂ ଦୁଇ ଜଣ ପରୀକ୍ଷକଙ୍କୁ ଦୁଇ ପାଉଣ୍ଡ କରି ଦେୟ ତାଙ୍କୁ ଦେବାକୁ ପଡ଼ିଥିଲା। ଟାଉନ ହାଇସ୍କୁଲ ଛାଡ଼ିବାର ବାର ବର୍ଷ ପରେ, କଲେଜରେ ଦୁଇ ଥର ଫେଲ ହୋଇଥିବା ରାମାନୁଜନ୍ ଏବେ ତାଙ୍କ ସ୍ନାତକ ଡିଗ୍ରୀ ହାସଲ କଲେ।

ଏହାର ଏକ ସ୍ମାରକୀ ଭାବରେ ଦଳେ ଛାତ୍ରଙ୍କ ସହିତ ସିନେଟ କକ୍ଷ ଆଗରେ ସେ ଏକ ଫଟୋ ଉଠାଇଥିଲେ। ସେଥିରେ ସେ ସମାବର୍ତ୍ତନ ପୋଷାକ ପିନ୍ଧିଥିଲେ ଏବଂ ସଳଖ ହୋଇ ଛିଡ଼ା ହୋଇଥିଲେ। ଦଳ ଭିତରେ ସେ ସବୁଠାରୁ ଗେଡ଼ା ଓ ମୋଟା ଥିଲେ। ତାଙ୍କର ପ୍ୟାଣ୍ଟର ଗୋଡ଼ ପ୍ରାୟ

ଦୁଇ ଇଞ୍ଚ ଛୋଟ ହେଉଥିଲା ଏବଂ କୋଟ୍ ବେଶ୍ ଚିପା ଜଣାପଡୁଥିଲା।

ବୃତ୍ତିର ମିଆଦ ମାତ୍ର ବର୍ଷକ ପାଇଁ ବଢ଼ାଯାଇଥିବାରୁ ହେଉ କିମ୍ବା ଇଂଲଣ୍ଡର ଜାହାଜ ଉପରେ ଜର୍ମାନିର ବୁଡ଼ାଜାହାଜ ଆକ୍ରମଣ କରୁଥିବାରୁ ହେଉ ରାମାନୁଜନ୍ ସେବର୍ଷ ଆଉ ଭାରତ ଆସିଲେନାହିଁ। ତା ପର ବର୍ଷର ଅଧିକାଂଶ ସମୟ ସେ ହାର୍ଡିଙ୍କ ସହିତ ଏକ ମିଳିତ କାମରେ କଟାଇଲେ ଯାହା ସେ ଦୁହିଁଙ୍କର ନାଁକୁ ଗଣିତର ଇତିହାସରେ ସବୁଦିନ ପାଇଁ ଯୋଡ଼ିକରି ରଖିବ।

ଜୁନ୍ ମାସରେ ହାର୍ଡି ଡିଉଜ୍‌ବରିଙ୍କ ପାଖକୁ ରାମାନୁଜନ୍‌ଙ୍କ ପ୍ରଗତି ବିଷୟରେ ଲେଖିଲେ -

> ଗୋଟିଏ ଦୃଷ୍ଟିରୁ ରାମାନୁଜନ୍ ଦୁର୍ଭାଗ୍ୟଗ୍ରସ୍ତ ହୋଇଛନ୍ତି। ଗଣିତ ଗବେଷଣାର ପ୍ରଗତି ଉପରେ ଯୁଦ୍ଧର ପ୍ରଭାବ ସ୍ୱାଭାବିକ ଭାବରେ ମାରାତ୍ମକ ହୋଇଛି। ତାଙ୍କ ପ୍ରତି ଦେଖାଯାଉଥିବା ଆଗ୍ରହର ପ୍ରାୟ ତିନିଚତୁର୍ଥାଂଶ ଦିଗହରା ହୋଇପଡ଼ିଛି ଏବଂ ୟୁରୋପୀୟ ଗଣିତଜ୍ଞମାନଙ୍କ ଦୃଷ୍ଟିକୁ ତାଙ୍କ କାମ ଆସିପାରୁନାହିଁ। ତାଙ୍କୁ ପଢ଼ାଉଥିବା ଲିଟଲ୍‌ଉଡ୍ ମଧ୍ୟ ଏଠାରେ ନାହାନ୍ତି। ଯାହାଙ୍କଠାରୁ ଶିକ୍ଷାର ଲାଭ ପାଇବା ରାମାନୁଜନ୍‌ଙ୍କର ଇଂଲଣ୍ଡ ଆସିବା ପଛରେ ଗୋଟିଏ ଲକ୍ଷ୍ୟ ଭାବରେ ରହିଥିଲା। ଏସବୁ ଅସୁବିଧା ଦୂର ହୋଇଯିବ। ଏସବୁ ସତ୍ତ୍ୱେ ଏହା ନିରାପଦରେ କୁହାଯାଇପାରେ ଯେ ରାମାନୁଜନ୍ ଭାରତରେ କରିଥିବା କାମକୁ ଦେଖି ଯାହା ଆଶା କରାଯାଉଥିଲା ତାହା ସେ ଏଠାରେ ପୂରଣ କରିପାରିଛନ୍ତି। ସେ ଦେଖାଇ ଦେଇଛନ୍ତି ଯେ ସେ ଅସାଧାରଣ ଦକ୍ଷତାର ଅଧିକାରୀ ଏବଂ ବର୍ତ୍ତମାନର ଅନ୍ୟ ଯେ କୌଣସି ଗଣିତଜ୍ଞଙ୍କ ସହ ସମକକ୍ଷ।

ରାମାନୁଜନ୍‌ଙ୍କ କାମ ବିଷୟରେ ତାଙ୍କ ବିବରଣୀ କେବଳ ଆଂଶିକ ଥିବାରୁ ହାର୍ଡି କ୍ଷମା ମାଗିଛନ୍ତି ଏବଂ ଲେଖିଛନ୍ତି -

> ଆଶା କରୁଛି ଯେ ମୁଁ ଲେଖିଥିବା କଥାରୁ ତାଙ୍କର ଆଶ୍ଚର୍ଯ୍ୟଜନକ ଅନନ୍ୟତା ଓ ଅସାଧାରଣ ଦକ୍ଷତା ବିଷୟରେ କିଛି ଧାରଣା ମିଳିପାରିବ। ଗଲା କେତେବର୍ଷ ଭିତରେ ଭାରତରୁ ଅନେକ ଧୀମାନ ଗଣିତଜ୍ଞ ବାହାରିଛନ୍ତି ଏବଂ ସେମାନଙ୍କ ଭିତରୁ କେତେ ଜଣ କେମ୍ବ୍ରିଜକୁ ଆସିଛନ୍ତି ଏବଂ ତାଙ୍କର କୃତିତ୍ୱ ଦେଖାଇଛନ୍ତି। ରାମାନୁଜନ୍‌ଙ୍କର କାମ ଯେ ଏକ ଭିନ୍ନ ଶ୍ରେଣୀର ତାହା ବୁଝିବାରେ ସେମାନେ ପ୍ରଥମ ହେବେ।

ପୂର୍ବ ବର୍ଷର ଡିସେମ୍ବର ମାସରେ ଇଂରେଜ, ଅଷ୍ଟ୍ରେଲୀୟ ଓ ନିଉଜିଲାଣ୍ଡର ସୈନ୍ୟମାନେ ଗାଲିପୋଲିଠାରେ ଏକ ଭୟଙ୍କର ପରାଜୟର ସମ୍ମୁଖୀନ ହେଲେ। ମିତ୍ର ଶକ୍ତିର ଜାହାଜମାନେ ଜର୍ମାନିର ବୁଡ଼ାଜାହାଜର ଶିକାର ହୋଇଚାଲିଥିଲେ। ଫ୍ରାନ୍ସ୍‌ରେ ଯୁଦ୍ଧ ଲାଗିରହିଥିଲା। ବର୍ଷ ସରିଲାବେଳକୁ ଦିନେ ଦିନେ ଚାରି ହଜାର ପର୍ଯ୍ୟନ୍ତ ଆହତଙ୍କ ତାଲିକା ଖବର କାଗଜରେ ବାହାରୁଥିଲା।

1916 ମସିହାର ମଝି ଭାଗ ରାମାନୁଜନ୍‌ଙ୍କ ପାଇଁ ଅତି ଭଲ ସମୟ ଥିଲା। କିନ୍ତୁ ଶେଷରେ ସେ ମଧ୍ୟ ଯୁଦ୍ଧର ଶିକାର ହେବାକୁ ଯାଉଥିଲେ।

7

# ଇଂରେଜ ଶୀତଳତା

(1916–1918)

## 1. ମୁଖ୍ୟ ଟେବୁଲ୍

ଯୁଦ୍ଧ ସମୟରେ ରାମାନୁଜନ୍‌ଙ୍କ ଜୀବନ ଶାନ୍ତ ଭାବରେ କଟୁଥିବା ଭଳି ମନେ ହେଉଥିଲା। କିନ୍ତୁ ଭିତରେ ସେ ଅତି ମାତ୍ରାରେ ଚାପଗ୍ରସ୍ତ ଥିଲେ, ତାଙ୍କର ସମ୍ବେଦନଶୀଳ ମନ ଭୁଷୁଡ଼ି ପଡ଼ିବା ଅବସ୍ଥାରେ ଥିଲା।

1916 ମସିହା ଆରମ୍ଭ ବେଳକୁ ସେ ଜାଣିବାକୁ ପାଇଲେ ଯେ ତାଙ୍କର ସାଙ୍ଗ ଜ୍ଞାନେଶ ଚନ୍ଦ୍ର ଚାଟାର୍ଜୀ ବିବାହ କରିବାକୁ ଯାଉଛନ୍ତି। ଏକୋଇଶ ବର୍ଷୀୟ ଜ୍ଞାନେଶ ପଞ୍ଜାବ ଅଞ୍ଚଳରୁ ଆସିଥିଲେ ଏବଂ ଭାରତ ସରକାରଙ୍କର ବୃତ୍ତି ପାଇ ସେ କେମ୍ବ୍ରିଜରେ ପଢୁଥିଲେ। ସେହି ଖୁସିରେ ସେ ଜ୍ଞାନେଶ ଓ ତାଙ୍କ ଭାବୀପତ୍ନୀଙ୍କୁ ଖାଇବା ପାଇଁ ଡାକିଲେ।

ଭାରତରେ ରାମାନୁଜନ୍ କେବେ ରାନ୍ଧି ନ ଥିଲେ, ବୋଧହୁଏ କେବେ ରୋଷେଇ ଘରେ ପଶି ବି ନ ଥିଲେ। କିନ୍ତୁ ଇଂଲଣ୍ଡରେ ରାନ୍ଧିଦେବା ପାଇଁ ମା ବା ସ୍ତ୍ରୀ କେହି ନ ଥିଲେ। ନିରାମିଷାଶୀ ଖାଦ୍ୟ ପାଇଁ ସେ କଲେଜ ଭୋଜନାଳୟକୁ ବିଶ୍ୱାସ କରୁ ନ ଥିଲେ। ତେଣୁ ତାଙ୍କୁ ଶିଖିବାକୁ ପଡ଼ିଥିଲା। ସାଙ୍ଗମାନେ ତାଙ୍କ ରସମ୍‌ର ବେଶ୍ ପ୍ରଶଂସା କରୁଥିଲେ। ଦକ୍ଷିଣ ଭାରତର ପ୍ରମୁଖ ଇଂରାଜୀ ଖବର କାଗଜ ହିନ୍ଦୁର ସମ୍ପାଦକ ଏସ୍. କସ୍ତୁରିରଙ୍ଗାର୍ ଆୟେଙ୍ଗାର ଥରେ ରାମାନୁଜନ୍‌ଙ୍କୁ କେମ୍ବ୍ରିଜଠାରେ ଭେଟିଥିଲେ ଏବଂ ରାମାନୁଜନ୍ ତାଙ୍କୁ ଖୁଆଇଥିବା ପୋଙ୍ଗଲ୍ ଭାତକୁ ଖୁବ୍ ପସନ୍ଦ କରିଥିଲେ।

ରାମାନୁଜନ୍ ନିଜର ରାନ୍ଧଣା ଦକ୍ଷତା ପାଇଁ ଗର୍ବିତ ଥିଲେ ଏବଂ ଜ୍ଞାନେଶ ଆଦିଙ୍କ ପାଇଁ ବଡ଼ ଭୋଜି ତିଆରିରେ ଲାଗିପଡ଼ିଲେ। ଜ୍ଞାନେଶଙ୍କ ସହିତ ତାଙ୍କ ଭାବୀପତ୍ନୀ ଇଲା ରୁଦ୍ର ଓ ଜଣେ ସହଚରୀ ମୃଣାଳିନୀ ଚଟ୍ଟୋପାଧ୍ୟାୟ ଆସିଥିଲେ। ଇଲା ପାଖର ଶିକ୍ଷକ କଲେଜର ଛାତ୍ରୀ ଥିଲେ ଏବଂ ମୃଣାଳିନୀ କେମ୍ବ୍ରିଜର ନିଉହାମ କଲେଜରେ ନୀତିଶାସ୍ତ୍ର ପଢୁଥିଲେ। ପର ସମୟରେ ମୃଣାଳିନୀ ଭାରତରେ ଶ୍ରମିକ ଆନ୍ଦୋଳନରେ ଜଡ଼ିତ ହୋଇଥିଲେ ଏବଂ ଅସ୍ପୃଶ୍ୟମାନଙ୍କ ପାଇଁ ଏକ ସ୍କୁଲ ଚଳାଉଥିଲେ।

ଭୋଜିର ସନ୍ଧ୍ୟାରେ ରାମାନୁଜନ୍‌ଙ୍କ ଘର ରାନ୍ଧଣା ବାସ୍ନାରେ ଭାସୁଥିଲା। ସମସ୍ତେ ଆସିଲା

ପରେ ସୁପ୍ ପରଷା ଗଲା। ଥରେ ସରିଲା ପରେ ସମସ୍ତେ ଆଉ ଥରେ ନେଲେ। ରାମାନୁଜନ୍ ତୃତୀୟ ଥର ପାଇଁ ସୁପ୍ ଯାଚିଲେ ଏବଂ କେବଳ ଜ୍ଞାନେଶ ହଁ କଲେ। ଗପସପ ଚାଲିଥିଲା ...

କିଛି ସମୟ ପରେ ଦେଖିଲା ବେଳକୁ ରାମାନୁଜନ୍ ନାହାନ୍ତି। ଘର ଭିତରେ ସେମାନେ ସବୁଆଡ଼େ ଖୋଜିଲେ, କିନ୍ତୁ ରାମାନୁଜନ୍‌ଙ୍କର ଚିହ୍ନବର୍ଣ୍ଣ ନ ଥିଲା। ଘଣ୍ଟାଏ ଯାଏଁ ସମସ୍ତେ ଅପେକ୍ଷା କଲେ। ଶେଷରେ ଜ୍ଞାନେଶ ତଳକୁ ଆସି ରାମାନୁଜନ୍‌ଙ୍କ ବିଷୟରେ ତତ୍ତ୍ୱାବଧାରକଙ୍କୁ ପଚାରିଲେ ଏବଂ ଜାଣିବାକୁ ପାଇଲେ ଯେ ରାମାନୁଜନ୍ ଗୋଟିଏ ଟାକ୍ସି ଡକାଇଥିଲେ। କିଛି ବୁଝି ନ ପାରି ସେ ରାମାନୁଜନ୍‌ଙ୍କ ଘରକୁ ଫେରିଆସିଲେ ଏବଂ ଅନ୍ୟମାନଙ୍କ ସହିତ ବସି ଅପେକ୍ଷା କରିବାକୁ ଲାଗିଲେ। ରାତି ଦଶଟା ବେଳକୁ ଅତିଥିମାନଙ୍କୁ ସେଠାରୁ ଚାଲିଯିବାକୁ ହୁଏ। ତଥାପି ରାମାନୁଜନ୍‌ଙ୍କର ଦେଖାନାହିଁ। ସମସ୍ତେ ଘରକୁ ଫେରିଲେ।

ପରଦିନ ସକାଳେ ଜ୍ଞାନେଶ ରାମାନୁଜନ୍‌ଙ୍କୁ ଭେଟିବାକୁ ଗଲେ, କିନ୍ତୁ ସେ ଫେରି ନ ଥିଲେ। ଚାରିଦିନ ପର୍ଯ୍ୟନ୍ତ ତାଙ୍କର କିଛି ଖବର ମିଳିଲାନାହିଁ, ସମସ୍ତେ ଛାନିଆ ହେବାକୁ ଲାଗିଲେ। ପଞ୍ଚମ ଦିନ ଜ୍ଞାନେଶ ଗୋଟିଏ ତାର ବାର୍ତ୍ତା ପାଇଲେ। ରାମାନୁଜନ୍ ତାହା ଅଶି ମାଇଲ ଦୂର ଅକ୍ସଫୋର୍ଡରୁ ପଠାଇଥିଲେ ଏବଂ ତାର ଯୋଗେ ପାଞ୍ଚ ପାଉଣ୍ଡ ପଠାଇବାକୁ ଅନୁରୋଧ କରିଥିଲେ।

ତା'ପରଦିନ ରାମାନୁଜନ୍ କେମ୍ବ୍ରିଜକୁ ଫେରିଲେ ଏବଂ ତାଙ୍କ ଅନ୍ତର୍ଦ୍ଧାନର ରହସ୍ୟ ଖୋଲିଲା। ଜ୍ଞାନେଶଙ୍କୁ ସେ କହିଲେ, "ମହିଳାମାନେ ତାଙ୍କ ପରଷା ଖାଦ୍ୟ ନେବା ପାଇଁ ମନା କରିବା ତାଙ୍କୁ ବାଧିଲା ଓ ଅପମାନିତ କଲା। ସେମାନେ ଘରେ ଥିବାବେଳେ ମୁଁ ଫେରିବାକୁ ଚାହିଁଲିନାହିଁ।" ପକେଟରେ ଯେତିକି ପଇସା ଥିଲା ସେଥିରେ ସେ ଯେତେ ଦୂର ସମ୍ଭବ ଚାଲିଗଲେ।

ଏହା ଠିକ୍ ବିଶାଖାପାଟଣା ଚାଲିଯିବା ଭଳି ଘଟଣା ଥିଲା। ଅପମାନିତ ହୋଇଥିବା ମନେକରି ସେ ତାଙ୍କ ଆବେଗ ଅନୁସାରେ କାମ କରିଗଲେ। ବର୍ତ୍ତମାନର ତରବରିଆ ଓ ଅବିଚାରିତ ପ୍ରତିକ୍ରିୟା ତାଙ୍କର ଚାପଗ୍ରସ୍ତ ମନର ସୂଚନା ଦେଉଥିଲା।

ଜଣାପଡୁଥିଲା ଯେ ରାମାନୁଜନ୍ ଚମତ୍କାର ଭାବରେ ବିଦେଶ ଓ ବିଦେଶୀ ଜୀବନ ସହିତ ନିଜକୁ ଖାପ ଖୁଆଇ ନେଲେ। ଗଣିତ ଦିଗରେ ସେ ହାର୍ଡି, ଲିଟଲ୍‌ଉଡ୍, ନେଭିଲ୍ ଓ ଅନ୍ୟ ଇଂରେଜ ସାଥୀମାନଙ୍କର ଉଚ୍ଚତମ ଆଶାକୁ ପୂରଣ କରିଥିଲେ। ସାମାଜିକ ଦିଗରୁ ମଧ୍ୟ ସେ ମିଶିଯାଇଥିବା ଭଳି ଜଣା ପଡୁଥିଲା। ଥଟ୍ଟା ମଜା କରିବାରେ ଓ ଦର୍ଶନ ବା ରାଜନୀତି ଆଲୋଚନା କରିବାରେ ରାମାନୁଜନ୍ ବିଶେଷ ଭାବରେ ଖୁସି ହେଉଥିବା କଥା ନେଭିଲ୍ କହୁଥିଲେ। ତାଙ୍କର ସରଳତା ଏବଂ ଆଚାର ବ୍ୟବହାରରେ ସ୍ୱତଃସ୍ଫୂର୍ତ୍ତ ନିଖୁଣତା ମଧ୍ୟ ନେଭିଲ୍‌ଙ୍କୁ ପସନ୍ଦ ହେଉଥିଲା।

ଭିତରେ କିନ୍ତୁ ରାମାନୁଜନ୍ ଏକ ଭଣ୍ଡାରଘର ପରି ଅନୁଭବ କରୁଥିଲେ ଯେଉଁଠାରୁ କେବଳ ସବୁ ବାହାରି ଚାଲିଥିଲା, କିଛି ପଶୁନଥିଲା। ଗଣିତ କାମ ପ୍ରଚୁର ଶକ୍ତି ଦରକାର କରୁଥିଲା। ଇଂଲଣ୍ଡରେ ଏକ ଅଜଣା ସଂସ୍କୃତି ଭିତରେ ନୂଆ ଜୀବନକୁ ଆଦରି ନେବା ପାଇଁ ମଧ୍ୟ ବେଶ୍ ଶକ୍ତି ଖଟାଇବାକୁ ହେଉଥିଲା। ଏହି ସବୁର ପ୍ରଭାବରେ ତାଙ୍କର ଶାରୀରିକ ଓ ମାନସିକ ଶକ୍ତି କମିଚାଲିଲା। ଶେଷରେ ସମୟ ଆସିଲା ଯେବେ ସେ ଭଣ୍ଡାର ଶୂନ୍ୟ ହୋଇଗଲା।

1916 ମସିହାର କେଉଁ ଏକ ସମୟରେ, ବୋଧହୁଏ ଜ୍ଞାନେଶ ଚାଟାର୍ଜୀଙ୍କ ଭୋଜି ବେଳରେ,

ଏହା ଘଟିଗଲା। ଅନେକ ଘଟଣା ମିଶି ତାଙ୍କ ମାନସିକ ଚାପ ବଢ଼ାଇ ଦେଇଥିଲା, ଦୈହିକ ଦୁର୍ବଳତା ଆଣିଥିଲା ଏବଂ ସାମାଜିକ ଦୃଷ୍ଟିରୁ ତାଙ୍କୁ ଏକାକୀ କରି ରଖିଥିଲା। ଜ୍ଞାନେଶଙ୍କ ପାଇଁ ତାଙ୍କର ଭୋଜି ସେମାନଙ୍କ ପାଇଁ ହୁଏତ ସାଧାରଣ ଥିଲା, କିନ୍ତୁ ରାମାନୁଜନ୍‌ଙ୍କ ମନରେ ତା'ର ଗୁରୁତ୍ୱ ଅତି ବିଶାଳ ଥିଲା। କାରଣ, ହାର୍ଡି ଓ ଅନ୍ୟମାନେ ସାଥୀ ମେଳରେ ଖାଉଥିଲା ବେଳେ ରାମାନୁଜନ୍ ସବୁବେଳେ ଏକଲା ଖାଉଥିଲେ।

କଲେଜର ଫେଲୋମାନେ ତାଙ୍କର କଳା ଶୈକ୍ଷିକ ପୋଷାକ ପିନ୍ଧି ଗମ୍ଭୀରତା ସହକାରେ ଭୋଜନ କକ୍ଷରେ ପ୍ରବେଶ କଲେ। କାଠ ଖିଲାଣ ଓ ଉଚ୍ଚ ଛାତ ଥିବା କକ୍ଷଟି ମହମବତୀ ଆଲୁଅରେ ଆଲୋକିତ ହୋଇଥିଲା। ଡ୍ରାଇଡେନ୍, ଟେନିସନ୍, ନିଉଟନ୍, ଥାକରେ, ଫ୍ରାନ୍‌ସିସ୍ ବେକନ୍ ଓ ଟ୍ରିନିଟିର ଅନ୍ୟ ବିଖ୍ୟାତ ବ୍ୟକ୍ତିଙ୍କର ଚିତ୍ରପଟମାନ କାନ୍ଥରେ ଝୁଲୁଥିବା ଅବସ୍ଥାରେ ତଳେ ବସିଥିବା ଫେଲୋମାନଙ୍କୁ ନିରେଖୁଥିଲେ। କାଠ ଟେବୁଲ ଉପରେ ଚାମୁଚ ଆଦି ସଜଡ଼ା ହୋଇଥିଲା। ଟେବୁଲ ଉପରେ ଏବେ କନା ପଡୁନଥିଲା, କାଳେ ସେ ଧଳା କନାରୁ ପ୍ରତିଫଳିତ ଆଲୁଅ ଜର୍ମାନିର ବୋମାବର୍ଷୀ ବାୟୁପୋତର ଧ୍ୟାନ ଆକର୍ଷଣ କରିବ। ସମସ୍ତେ ବସିଲା ପରେ ଲମ୍ବା ଟେବୁଲର ମୁଣ୍ଡରେ ବସିଥିବା ବରିଷ୍ଠ ବ୍ୟକ୍ତି ଲାଟିନ ଭାଷାରେ ପ୍ରାର୍ଥନା କଲେ ଏବଂ ଖାଇବା ଆରମ୍ଭ ହେଲା।

ଏହାକୁ ଉଚ୍ଚ ଟେବୁଲ କୁହାଯାଉଥିଲା, କାରଣ ଯେଉଁ ଟେବୁଲ ଉପରେ ଫେଲୋମାନେ ଖାଉଥିଲେ ତାହା ଚଟାଣଠାରୁ ପ୍ରାୟ ଚାରି ଇଞ୍ଚ ଉଠିରହିଥିବା ପିଣ୍ଡି ଉପରେ ରଖାଯାଇଥିଲା। ଟ୍ରିନିଟି ଏବଂ କେମ୍ବ୍ରିଜର ଅନ୍ୟ ସବୁ କଲେଜର ସାମାଜିକ ଜୀବନରେ ଏହା କେନ୍ଦ୍ର ସ୍ଥାନ ଅଧିକାର କରୁଥିଲା ଏବଂ ସେଠାରେ କଥୋପକଥନର ପାରମ୍ପରିକ ଶିଷ୍ଟାଚାର ରକ୍ଷା କରାଯାଉଥିଲା।

ଅତି ଗମ୍ଭୀର ବିଷୟରେ ଆଲୋଚନା ସେଠାରେ କରାଯାଉ ନ ଥିଲା। ଲିଟଲ୍‌ଉଡ୍ କହୁଥିଲେ, "ଦିନସାରା ଗଭୀର ଚିନ୍ତା କଳାପରେ ଗମ୍ଭୀର କଥାବାର୍ତ୍ତା କେହି ଚାହାନ୍ତିନାହିଁ। ତେଣୁ ଖାଇବା ସମୟର କଥାବାର୍ତ୍ତା ହାଲୁକା ଓ ଆରାମଦାୟକ ହୋଇଥାଏ। କୌଣସି ବିଷୟରେ କଥା ହେବାକୁ ମନା ନ ଥାଏ, କିନ୍ତୁ ବିଭିନ୍ନ ବିଭାଗର ଲୋକଙ୍କ ଗହଣରେ କେବଳ ନିଜର କାମ ବିଷୟରେ କଥା ହେବା ପାଇଁ କେହି ଚାହାନ୍ତିନାହିଁ। ରାଜନୀତି ଭଳି ଗୁରୁତ୍ୱପୂର୍ଣ୍ଣ ଓ ବିରକ୍ତିକର ବିଷୟ ସେଠାରେ ଉଠେନାହିଁ।" ପାଣ୍ଡିତ୍ୟ ଦେଖାଇବାର ଜାଗା ଏହା ନ ଥିଲା, ବରଂ ମଦିରା ଓ ଖୁସିଗପରେ କାର୍ଯ୍ୟଦିବସର ଚାପରୁ ମନକୁ ମୁକ୍ତ କରିବା ପାଇଁ ଜାଗା। ଗୁରୁ କଥା ଏଠାରେ ପଛରେ ରହୁଥିଲା ଓ ଲଘୁ କଥା ଆଗକୁ ଆସୁଥିଲା।

ସେଠାରେ ରଖାଯାଇଥିବା ଖାତାରେ ବର୍ଷ ବର୍ଷ ଧରି ପରଷା ଯାଉଥିବା ଖାଦ୍ୟ ବିଷୟରେ ମତାମତ ଓ ପରାମର୍ଶ ଲେଖାହୋଇ ରହିଛି। ବିଭିନ୍ନ ଖାଦ୍ୟର ସପକ୍ଷ ଓ ବିପକ୍ଷରେ ଦଳମାନ ଗଢ଼ାଯାଇଛି ଏବଂ ଉଭୟ ପକ୍ଷ ପାଇଁ ଗ୍ରହଣୀୟ ସମାଧାନ ଖୋଜାଯାଇଛି। ଥରେ ଫଳପିଠା ବିଷୟରେ ଏକ ବିବାଦରେ ହାର୍ଡି ଛନ୍ଦିହୋଇ ପଡ଼ିଥିଲେ। ତାଙ୍କର ମତ ଥିଲା ଯେ ତାହା ଥଣ୍ଡା ଅବସ୍ଥାରେ ଖିଆଯିବା ଉଚିତ, କାରଣ, "ଗରମ ଫଳପିଠା ଖାଉଥିବା ଲୋକ ଭଦ୍ରସମାଜ ପାଇଁ ଅନୁପଯୁକ୍ତ।"

ମୋଟ ଉପରେ ଦେଖିଲେ ଦିନର ଜଞ୍ଜାଳ ପରେ ତାହା ଥିଲା ବନ୍ଧୁ ମେଳରେ କଟୁଥିବା ଏକ ହାଲୁକା ସମୟ। ହାର୍ଡି, ଲିଟଲ୍‌ଉଡ୍, ନେଭିଲ୍ ସମସ୍ତେ ଏହାକୁ ଉପଭୋଗ କରୁଥିଲେ। ସମୟ ସମୟରେ କେହି ଭାରତୀୟ ଏବଂ ଯୁଦ୍ଧ ସମୟରେ କିଛି ସେନା ଅଧିକାରୀ ମଧ୍ୟ ସେଠାକୁ ଆସୁଥିଲେ। କିନ୍ତୁ ରାମାନୁଜନ୍‌ଙ୍କ ପାଦ ସେଠାରେ ପଡୁ ନ ଥିଲା। ଖାଦ୍ୟ ପରଷୁଥିବା ଲୋକଙ୍କର ମାଂସ ଓ ଅନ୍ୟ ଆମିଷ ଖାଦ୍ୟ ଯାଚିଚାଲିବା ତାଙ୍କ ପାଇଁ ଏକ ସମସ୍ୟା ଥିଲା।

ଇଂଲଣ୍ଡରେ ଥିବା ଅନ୍ୟ ଦକ୍ଷିଣ ଭାରତୀୟଙ୍କ ତୁଳନାରେ ରାମାନୁଜନ୍ ଅତି କଡ଼ାକଡ଼ି ଭାବରେ ନିରାମିଷାଶୀ ଥିଲେ। ଦରିଆ ପାରି ହେବାରେ ସେ ବ୍ରାହ୍ମଣ ଧର୍ମର ନୀତି ଲଙ୍ଘନ କରିଥିଲେ। ସେ ଚୁଟି କାଟି ଦେଇଥିଲେ ଓ ପାଶ୍ଚାତ୍ୟ ଜୋତାପୋଷାକ ପିନ୍ଧୁଥିଲେ। କିନ୍ତୁ ଖାଦ୍ୟ ବିଷୟରେ ମା'ଙ୍କୁ ଦେଇଥିବା କଥାରେ ସେ ଟିକିଏ ବି ସାଲିସ କରିବାକୁ ପ୍ରସ୍ତୁତ ନ ଥିଲେ।

ଜଣେ ଭୋକିଲା ବ୍ରାହ୍ମଣଙ୍କ ବିଷୟରେ କଥାଟିଏ ଶୁଣାଯାଏ। ଭୋକ ଦାଉରୁ ଜାତିଗୋତ୍ର ଜଣା ନ ଥିବା ଜଣେ ଲୋକକୁ ସେ କିଛି ଖାଦ୍ୟ ମାଗିଲେ। ପେଟ ଭରିଲା ପରେ ସେ ନିଜ ବାଟରେ ଚାଲିଲେ ଓ ରାତିରେ ଜଣେ ବ୍ରାହ୍ମଣଙ୍କ ଘରେ ଆଶ୍ରୟ ନେଲେ। ସେଠାରେ ସେ ସୁନାର ଏକ ମୂର୍ତ୍ତି ଦେଖିଲେ ଓ ଲୋଭରେ ତାକୁ ଚୋରାଇ ନେଲେ। କିନ୍ତୁ ଅନୁତାପ ତାଙ୍କୁ ଘାରିଲା ଓ ମୂର୍ତ୍ତିଟି ଫେରାଇବା ପାଇଁ ସେ ଆସିଲେ। ଆଶ୍ରୟ ଦେଇଥିବା ବ୍ରାହ୍ମଣ ତାଙ୍କୁ କହିଲେ, "ମୁଁ ଜାଣିଥିଲି ଯେ ତମେ ଚୋରି କରିବ। କାରଣ ଜଣେ ଚୋରଠାରୁ ତମେ ଖାଦ୍ୟ ନେଉଥିବା କଥା ମୁଁ କାଲି ଦେଖିଥିଲି।"

ବ୍ରାହ୍ମଣଙ୍କ ପାଇଁ ଖାଦ୍ୟ ବିଷୟରେ ରହିଥିବା କଟକଣା ପଛରେ ଏହି ନୀତି କାମ କରୁଥିଲା - କାହାଠାରୁ ତମେ ଖାଦ୍ୟ ନେଉଛ ତାହା ଗୁରୁତ୍ୱପୂର୍ଣ୍ଣ। ଖାଦ୍ୟ ଦେଉଥିବା ଅଜଣା ମଣିଷ କେଉଁ ପାପ କରିଛି ତାହା ଜାଣିବାର ବାଟ ନାହିଁ। ଖାଦ୍ୟ ବିଷୟରେ କଟକଣାର ରୂପରେଖ ମଧ୍ୟ ଅନେକ ପ୍ରକାରର ହେଉଥିଲା। କେହି କେହି ପିଆଜ ରସୁଣ ଖା'ନ୍ତି ନାହିଁ, ଆଉ କେହି କୋବି ଓ ଆଳୁ ମଧ୍ୟ ବର୍ଜନ କରନ୍ତି। ରାମାନୁଜନ୍‌ଙ୍କ ଖାଦ୍ୟ ବିଷୟରେ ନିଶ୍ଚିତ ଭାବରେ କେହି କିଛି ମନେ ରଖିନାହାନ୍ତି। କିଏ କହେ ଯେ ସେ ଅଣ୍ଡା ଖାଉଥିଲେ, ଆଉ କିଏ କହେ ନାଁ। ଆହୁରି ପୁଣି କିଏ କହେ ଯେ ସେ ପିଆଜ ଖାଉ ନ ଥିଲେ, ବିଲାତି ବାଇଗଣ ମଧ୍ୟ ଛୁଉଁ ନ ଥିଲେ। କିନ୍ତୁ ଖାଦ୍ୟର ଶୁଦ୍ଧତା ଉପରେ ସେ କେତେ ଜୋର ଦେଉଥିଲେ ସେକଥା ସମସ୍ତଙ୍କର ମନେଅଛି।

କେମ୍ବ୍ରିଜରେ ନୂଆ ଥିଲା ବେଳେ ରାମାନୁଜନ୍ ଥରେ ଦୁଇଥର କଲେଜ ଭୋଜନାଳୟରୁ ଆଳୁଭଜା ମଗାଇଥିଲେ। ଜଣେ ତାମିଲ ବ୍ରାହ୍ମଣ ସାଙ୍ଗ ତାଙ୍କୁ ଥଟ୍ଟାରେ କହିଥିଲା ଯେ ସେ ଆଳୁ ଚର୍ବିରେ ଭଜା ହୋଇଛି। ବାସ୍, ବାହାର ଖାଦ୍ୟ ଆଉ ନ ଛୁଇଁବା ପାଇଁ ସେତିକି ଯଥେଷ୍ଟ ଥିଲା। ତାଙ୍କର ବୈଠକଖାନା ପାଖରେ ଗୋଟିଏ କଣ ଜାଗା ଥିଲା ଯେଉଁଠି ସେ ଗ୍ୟାସ୍ ଚୁଲିରେ ଏକା ଏକା ରୋଷେଇ କରୁଥିଲେ। ସବୁ ଜିନିଷ ମିଳିଗଲେ ସେ ତାଙ୍କର ଘର ଖାଇବା ଭଳି ଭାତ, ସମ୍ବର, ରସମ୍ ସବୁ ରାନ୍ଧୁଥିଲେ ଏବଂ ଦହି ଓ ଫଳ ମିଶାଇ ଖାଉଥିଲେ।

ତାଙ୍କ ଝରକାରୁ ସେ କଲେଜ ଭୋଜନାଳୟ ଦେଖିପାରୁଥିଲେ। 1916 ମସିହାର ଶୀତ ଋତୁର ଲମ୍ବା ସନ୍ଧ୍ୟା ସମୟରେ ସେଠାରେ ମହମବତୀ ଜଳୁଥିଲା ଏବଂ ଉଚ୍ଚ ଟେବୁଲରେ କଥାବାର୍ତ୍ତା ଜମୁଥିଲା। କିନ୍ତୁ ରାମାନୁଜନ୍ କେବେ ତାହାର ଅଂଶ ହେଉ ନ ଥିଲେ।

## 2. ଇଂଲଣ୍ଡରେ ଜଣେ ଭାରତୀୟ

ଶିକ୍ଷା ପାଇଁ ଇଂଲଣ୍ଡକୁ ଆସି ଅଜଣା ପରିବେଶରେ ଏକାକୀ ଅନୁଭବ କରିବା ଦିଗରେ ରାମାନୁଜନ୍ ପ୍ରଥମ ଭାରତୀୟ ନ ଥିଲେ। ରାମାନୁଜନ୍‌ଙ୍କ ଜନ୍ମବର୍ଷ 1887 ମସିହାରେ ମୋହନଦାସ କରମଚାନ୍ଦ ଗାନ୍ଧି ଇଂଲଣ୍ଡକୁ ଆସିଥିଲେ। ତାଙ୍କର ଅଭିଜ୍ଞତା ବିଷୟରେ ସେ ପରେ ଲେଖିଥିଲେ:

> ଘର ଓ ଦେଶ କଥା ମୋର ସବୁବେଳେ ମନେ ପଡୁଥିଲା। ମା'ର ଆଦର କଥା ମୋ ମନରୁ ବାହାରୁ ନ ଥିଲା। ରାତିରେ ମୋ ଆଖିରୁ ଲୁହ ଝରୁଥିଲା ଏବଂ ଘର ବିଷୟରେ ନାନା କଥା ମନକୁ ଆସି ଶୋଇବାକୁ ଦେଉ ନ ଥିଲା। କାହା ସହିତ ସେହି ଦୁଃଖ ଭାଗ କରିବା ସମ୍ଭବ ନ ଥିଲା। କାହାକୁ କହିଥିଲେ ବି ଲାଭ କ'ଣ ହୋଇଥା'ନ୍ତା? କ'ଣ ଯେ ମତେ ସାନ୍ତ୍ୱନା ଦେବ ତାହା ମୁଁ ଜାଣେନାହିଁ। ଏଠାର ମଣିଷ, ତାଙ୍କର ଚାଲିଚଳନ, ତାଙ୍କର ଘରଦ୍ୱାର ସବୁକିଛି ମୋର ଅପରିଚିତ ଥିଲା। ଇଂରେଜ ଆଚାର ବ୍ୟବହାରରେ ମୁଁ କୁନିପିଲା ଭଳି ଥିଲି ଏବଂ ସବୁକିଛି ମତେ ଜଗିରଖି କରିବାକୁ ପଡୁଥିଲା।

1892 ଓ 1906 ମସିହା ଭିତରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ବର୍ଷକୁ ପ୍ରାୟ କୋଡ଼ିଏ ଜଣ ଭାରତୀୟ ଛାତ୍ରଙ୍କୁ ଗ୍ରହଣ କରୁଥିଲା। ରାମାନୁଜନ୍‌ଙ୍କ ସମୟକୁ ଏହା ଟିକିଏ ବଢ଼ିଥିଲା। ଯେ କୌଣସି ସମୟରେ ପ୍ରାୟ ହଜାରେ ଭାରତୀୟ ଛାତ୍ର ଇଂଲଣ୍ଡର କଲେଜମାନଙ୍କରେ ବାଣ୍ଟିହୋଇ ରହିଥିଲେ। ସେମାନଙ୍କର ସଂଖ୍ୟା ଓ ସମସ୍ୟା ଏପରି ଥିଲା ଯେ ଇଂରେଜ ସରକାର ତାହା ଅନୁଧ୍ୟାନ କରିବା ପାଇଁ 1907, 1922 ମସିହାରେ ଓ ଆହୁରି ପରେ ବିଭିନ୍ନ ପଦକ୍ଷେପ ନେଇଥିଲେ। ଏଥିରୁ ଜଣାପଡ଼ିଥିଲା ଯେ ଭାରତୀୟ ଛାତ୍ରମାନଙ୍କ ପାଇଁ ପ୍ରଧାନ ବାଧା ଥିଲା ସାଧାରଣ ଇଂରେଜ ଲୋକଙ୍କର ଦୂରତା ରକ୍ଷାକରିବା ଓ ନ ମିଶିବାର ଗୁଣ।

ଅନେକ ସମୟରେ ଭାରତୀୟମାନେ ଅବଶ୍ୟ ସିଧା ସଳଖ ଭାବରେ ବର୍ଣ୍ଣବୈଷମ୍ୟର ଶିକାର ହେଉଥିଲେ। କିନ୍ତୁ ଇଂରେଜମାନଙ୍କର ଦୂରେଇ ରହିବାଟା ହିଁ ମୁଖ୍ୟ ଅସୁବିଧା ରୂପେ ଦେଖା ଯାଉଥିଲା। 1922 ମସିହାର ଲିଟନ୍ କମିଟି ରିପୋର୍ଟରେ କୁହାଯାଇଥିଲା, "ଏହା ମାନିବାକୁ ହେବ ଯେ ଇଂରେଜ ଓ ଭାରତୀୟ ଛାତ୍ରମାନଙ୍କର ନିଜ ନିଜର ଗୋଷ୍ଠୀଗତ ସ୍ୱତନ୍ତ୍ରତା ରହିଛି ଯାହା ସେମାନଙ୍କ ଭିତରେ ଅନ୍ତରଙ୍ଗତା ଆସିବା ଦିଗରେ ବାଧା ସୃଷ୍ଟିକରେ। ଭାରତୀୟମାନେ ଅନୁଗ୍ରହ ପ୍ରଦର୍ଶନ ପ୍ରତି ଅତି ମାତ୍ରାରେ ସମ୍ବେଦନଶୀଳ ହୋଇଥିବା ବେଳେ ଇଂରେଜଙ୍କର ଚୁପଚାପ ରହିବା ଗୁଣ ବନ୍ଧୁତା ଆଣିବାରେ ବାଧକ ହୁଏ। ଏଥିପାଇଁ ଇଂରେଜମାନେ ନିଜ ଦେଶର ପିଲାମାନଙ୍କ ସହିତ ମଧ୍ୟ ମିଶିବା ପାଇଁ ସମୟ ନିଅନ୍ତି ଏବଂ ବନ୍ଧୁ ହେବା ପାଇଁ ଆଗେଇ ଆସୁଥିବା ଅଜଣା ଲୋକଙ୍କୁ ସନ୍ଦେହ କରନ୍ତି।"

ଜଣେ ଛାତ୍ର ମତ ଦେଇଥିଲେ, "ଇଂରେଜମାନଙ୍କର ଭଦ୍ରଜନୋଚିତ, ଆବେଗରହିତ, ଔପଚାରିକ ବ୍ୟବହାର ଅତି ମାର୍ଜିତ କିନ୍ତୁ ଶୀତଳ ମନେହୁଏ ଏବଂ ସେମାନେ କୌଣସି ପକ୍ଷ ନେବାକୁ ବା ସଂପୃକ୍ତ ହେବାକୁ ପସନ୍ଦ କରନ୍ତିନାହିଁ। ଆରମ୍ଭ ସମୟରେ ଏହି ମନୋଭାବକୁ ଭାଙ୍ଗିବା ହେଉଛି ସବୁଠାରୁ ବଡ଼ ଅସୁବିଧା।"

ଆଉ ଜଣେ କହିଥିଲେ ଯେ ଇଂରେଜମାନଙ୍କ ସହିତ ଚଳିଲା ବେଳେ ନିଜ ପାଖରେ ଯଥେଷ୍ଟ 'ଦୟାକରି' ଓ 'ଧନ୍ୟବାଦ' ଗଚ୍ଛିତକରି ରଖିବାକୁ ହୁଏ। ତାଙ୍କ ପାଇଁ ସବୁକିଛି ଅମାର୍ଜିତ ଅଦଳବଦଳ

ବ୍ୟବସ୍ଥା ଭଳି ଥିଲା - ତମେ ମତେ କିଛି ଦେଲେ ମୁଁ ତୁମକୁ ଧନ୍ୟବାଦଟିଏ ଦେବି। ଇଂରେଜମାନଙ୍କର ଉଦାସୀନତା ଓ ଅନାଗ୍ରହତା ଆହୁରି ବେଶି ଖରାପ ଥିଲା। ସେମାନଙ୍କର ଏକାନ୍ତତା ପ୍ରତି ସମ୍ମାନ ଦେଖାଇବା ନ୍ୟାୟରେ କିଛି ଭାରତୀୟ ଏହାକୁ ଗ୍ରହଣ କରିନେଉଥିଲେ। କିନ୍ତୁ ଅଧିକାଂଶ ଭାରତୀୟ ଏହାକୁ ଆବେଗଶୂନ୍ୟ ଓ ଉଦାସୀନ ପ୍ରକୃତି ଭାବରେ ଦେଖୁଥିଲେ। ମୋଟାମୋଟି ଭାବରେ ଧାରଣା ଆସୁଥିଲା ଯେ ଇଂରେଜମାନଙ୍କର ସମ୍ପର୍କ ଉପରଠାଉରିଆ ଥିଲା ଏବଂ ଆନ୍ତରିକ ଭାବରେ ସେମାନେ ଆଦୌ ଖାତିର କରୁ ନ ଥିଲେ। ଜଣେ ଭାରତୀୟ ଛାତ୍ରଙ୍କର ଡର ଥିଲା ଯେ ସେ ତାଙ୍କ କୋଠରୀରେ ମରିଗଲେ ସପ୍ତାହ ସପ୍ତାହ ଧରି ତାଙ୍କ ଗଳିତ ଶବ ପଡ଼ିରହିବ ଏବଂ କେହି ବି ସେ ବିଷୟରେ ଜାଣିବେନାହିଁ। ନେଭିଲ୍ କହୁଥିଲେ, "1913 ମସିହାରେ ରାମାନୁଜନ୍‌ଙ୍କର ଇଂଲଣ୍ଡ ନ ଆସିବାର ପ୍ରକୃତ କାରଣ ଜାଣିବା ପାଇଁ ଆମେ କେହି ତାଙ୍କ ଉପରେ ଚାପ ପକାଇ ନ ଥିଲୁ। ଏହା ତାଙ୍କ ଇଂରେଜ ସାଥିମାନଙ୍କର ମୌନଭାବର ପରିଚାୟକ ଭାବରେ ଦେଖାଯାଇପାରେ।"

ସମ୍ଭ୍ରାନ୍ତ ପରିବାରର ଲୋକଙ୍କ ଭିତରେ ଏହା ସବୁଠାରୁ ବେଶି ଦେଖାଯାଉଥିଲା। ପ୍ରଥମ ବିଶ୍ୱଯୁଦ୍ଧର ଠିକ୍ ପୂର୍ବରୁ ହାଉସ୍ ଅଫ୍ ଲର୍ଡସ୍‌ର ଜଣେ ସଦସ୍ୟ କହିଥିଲେ ଯେ ସେଠାରେ 'ଏକ ପ୍ରକାରର ନିର୍ଲିପ୍ତତା ଯାହା ପ୍ରାୟ ଉଦାସୀନତା ଭଳି ଥିଲା' ଦେଖିବାକୁ ମିଳୁଥିଲା। ଆଉ ଜଣେ ଅଭିଯୋଗ ଆଣିଥିଲେ ଯେ ହାଉସ୍ ଅଫ୍ ଲର୍ଡସ୍‌ର ସଦସ୍ୟମାନେ ଗଭୀର ବିରକ୍ତି ଓ କ୍ଳାନ୍ତି ସୃଷ୍ଟି କରନ୍ତି। ବିଖ୍ୟାତ ଲେଖକ ନିରଦ ସି. ଚୌଧୁରୀ ତାଙ୍କର ଇଂଲଣ୍ଡ ଗସ୍ତର ଅନୁଭୂତି ବିଷୟରେ କହନ୍ତି ଯେ, "ଦିନେ ସନ୍ଧ୍ୟାବେଳେ ମୁଁ କ୍ଲବରେ ରାତ୍ରିଭୋଜନ ପାଇଁ ବସିଥିଲି ଏବଂ ସରଳ ଭାବରେ ସାମନାରେ ବସିଥିବା ବ୍ୟକ୍ତିଙ୍କ ସହିତ କଥାବାର୍ତ୍ତା ଆରମ୍ଭ କରିବାକୁ ଚେଷ୍ଟା କଲି। ସାମାନ୍ୟତମ ଅସୌଜନ୍ୟ ନ ଦେଖାଇ ସେ ଯେପରି ମୋର ଉଦ୍ୟମକୁ ପ୍ରତିହତ କରିଗଲେ ତାହା ବାସ୍ତବିକ ପ୍ରଶଂସନୀୟ।" ତେବେ କଥାବାର୍ତ୍ତା ଆରମ୍ଭ କରିବାର ଚେଷ୍ଟା ପ୍ରତିହତ ହିଁ ହୋଇଥିଲା।

ଭାରତରେ କେହି ଜଣେ ଅଳ୍ପ ସମୟର କଥାବାର୍ତ୍ତା ଭିତରେ ଅନେକ କଥା ଜାଣିଯାଇପାରେ - ଘର ଓ ପରିବାର କଥା, କାମ ଓ ରହିବା ଜାଗାର କଥା। ଇଂଲଣ୍ଡରୁ ଫେରିଥିବା ଭାରତୀୟମାନେ ସେଠାକୁ ଯାଉଥିବା ଦେଶବାସୀଙ୍କୁ ଉପଦେଶ ଦେଉଥିଲେ ଯେ ଔପଚାରିକ ପରିଚୟ ଆଦାନପ୍ରଦାନ ସେଠାରେ ଅତି ଜରୁରୀ। ଏହି ବିଷୟରେ ଗୋଟିଏ ଗପ ଭାରତରେ ବେଶ୍ ପ୍ରଚାରିତ ହେଉଥିଲା - ଭାରତର କୌଣସି ଏକ ଜାଗାରେ ଥରେ ଜଣେ ପହଁରାଳି ବୁଡ଼ିଯାଉଥିଲା। ସେକଥା ଦେଖି ସମସ୍ତେ ତାକୁ ସାହାଯ୍ୟ କରିବାକୁ ଦୌଡ଼ିଲେ। କେବଳ ଜଣେ ଇଂରେଜ ଲୋକ ବସି ରହିଲେ। ପରେ ଯେବେ ତାଙ୍କୁ ପଚରାଗଲା ଯେ ସେ କାହିଁକି ଅନ୍ୟମାନଙ୍କ ସହିତ ଗଲେନାହିଁ, ସେ ପଚାରିଲେ, "ଆଗରୁ ଆମର କ'ଣ ପରିଚୟ ଆଦାନପ୍ରଦାନ ହୋଇଥିଲା ?"

କେମ୍ବ୍ରିଜରେ ତା'ର ସ୍ୱତନ୍ତ୍ର ଧରଣର ନିର୍ଲିପ୍ତତା ଦେଖାଯାଉଥିଲା। କଲେଜର ସାଧାରଣ କର୍ମଚାରୀମାନେ କିପରି ନୂଆ ଛାତ୍ରଙ୍କ ପ୍ରତି ଉଦାସୀନ ରହୁଥିଲେ ବା ଟିଉଟରମାନେ ଛାତ୍ରମାନଙ୍କ ପ୍ରତି ବିଶେଷ ଆଗ୍ରହୀ ନ ଥିବାର ଧାରଣା ଦେଉଥିଲେ ସେ ବିଷୟରେ ଅନେକ କଥା କୁହାଯାଉଥିଲା। ଏହି ଦୃଷ୍ଟିରୁ ରାମାନୁଜନ୍‌ଙ୍କ ଟିଉଟର ଇ. ଡବ୍ଲିଉ. ବାର୍ଣ୍ଣସ୍ କିପରି ଅଲଗା ଥିଲେ ଓ ଛାତ୍ରଙ୍କ କଥା ବୁଝୁଥିଲେ ତାହା ମଧ୍ୟ ଆଲୋଚିତ ହେଉଥିଲା। କୁହାଯାଉଥିଲା କେମ୍ବ୍ରିଜର ବିଶେଷତ୍ୱ ଏହା ଯେ

ଯାହା ତୁମର ପସନ୍ଦ ତାହା ବିଷୟରେ କଥା ହେବା ଦରକାର ନାହିଁ। ଲିଟଲ୍‌ଉଡ୍ କହୁଥିଲେ, "ଟ୍ରିନିଟି ଫେଲୋସିପ୍ ନିର୍ବାଚନ ସଭାରେ ଭାଷଣ ଦେଲାବେଳେ ଆଶା କରନାହିଁ ଯେ ଜୋର ତାଳିମାଡ଼ ହେବ। ପ୍ରକୃତରେ କେହି ଆଖି ବି ମିଟିକାଇବେ ନାହିଁ।"

ବ୍ୟକ୍ତିଗତ ଆବେଗ ଚାରିପଟେ ସମସ୍ତେ ବାଡ଼ ବୁଲାଇଲା ଭଳି ଚଳୁଥିଲେ। କେମ୍ବ୍ରିଜଠାରେ ଚିନ୍ତନ, ଘଟଣା, ଜିନିଷ, କାମ, ଖେଳ ଆଦି ସବୁ ବିଷୟ ଉପରେ ଗୁରୁତ୍ୱ ଦିଆଯାଉଥିଲା, କେବଳ ବ୍ୟକ୍ତିଗତ ବିଷୟକୁ ଛାଡ଼ିକରି।

ପାଶ୍ଚାତ୍ୟ ଭ୍ରମଣକାରୀମାନେ ଭାରତର ରାସ୍ତା ଘାଟରେ ବୁଲା ଗାଈଗୋରୁ ଦେଖି ଆମୋଦିତ ହେଲାଭଳି ରାମାନୁଜନ୍ କେମ୍ବ୍ରିଜର ଏଭଳି ବିଚିତ୍ର ହାବଭାବ ଦେଖି ପ୍ରଥମେ ଚମତ୍କୃତ ହୋଇଥିବେ। କିନ୍ତୁ ବିଦେଶୀ ଚଳଣିକୁ ଆଦରି ନେବା ତାଙ୍କର ପ୍ରକୃତି ନ ଥିଲା, ବରଂ ତା ଠାରୁ ଅଲଗା ହୋଇ ରହିବା ତାଙ୍କ ପାଇଁ ସ୍ୱାଭାବିକ ଥିଲା। ଏକଜିଦିଆ ଓ ଦୃଢ଼ମନା ରାମାନୁଜନ୍ ନିଜ ଦେଶର ପରମ୍ପରାରେ ବଢ଼ିଥିଲେ। ମାନ୍ଦ୍ରାଜର ଅନ୍ୟ କେତେ ବୁଦ୍ଧିଜୀବୀଙ୍କ ଭଳି ଭାରତରେ ଥିବାବେଳେ ସେ ପାଶ୍ଚାତ୍ୟ ଶୈଳୀରେ ଜୀବନ କଟାଉ ନ ଥିଲେ। ଅଳ୍ପଦିନ ତଳ ଯାଏଁ ସେ କୁମ୍ଭକୋଣମ୍ ମାଟିର ପିଲା ହିଁ ଥିଲେ ଏବଂ ଭାରତୀୟ ପରମ୍ପରାରେ ବାପା ମା'ଙ୍କ ଇଚ୍ଛାକୁ ସେ ଉଚ୍ଚ ସମ୍ମାନ ଦେଉଥିଲେ। ମୁଣ୍ଡରୁ ଚୁଟି କଟା ହେଲା ବେଳେ ସେ କାନ୍ଦିପକାଇଥିଲେ। ଇଂଲଣ୍ଡରେ ଏବେ ସେ ଶାକାହାର କରୁଥିଲେ, ସଫା ଧୋତି ପିନ୍ଧି, ତିଳକ ଲଗାଇ କୋଠରୀରେ ଦେବୀଙ୍କ ଚିତ୍ର ଆଗରେ ନିତିଦିନିଆ ପୂଜାପାଠ କରୁଥିଲେ। ବାହାରକୁ ଗଲାବେଳେ ସେ ତିଳକ ପୋଛିଦେଉଥିଲେ ଓ ପାଶ୍ଚାତ୍ୟ ପୋଷାକ ପିନ୍ଧୁଥିଲେ।

ଏବେ ସେ ଅନବରତ ଘର କଥା ଭାବୁ ନ ଥିଲେ, କିନ୍ତୁ ଛୋଟ ଛୋଟ ଘଟଣା ତାଙ୍କ ମନକୁ ଘରମୁହାଁ କରିପକାଉଥିଲା। ମଝିରେ ମଝିରେ ଘରର ବିଭିନ୍ନ ଦୃଶ୍ୟ ତାଙ୍କ ଆଖି ଆଗରେ ନାଚି ଯାଉଥିଲା। ଇଂରେଜଙ୍କ ମେଳରେ ସେ ନିଜର ବିଦେଶୀପଣିଆକୁ ବେଶି ସମୟ ପାଇଁ ଭୁଲିପାରୁ ନ ଥିଲେ। ତାଙ୍କର ଉଚ୍ଚାରଣ, ଦେହର ରଙ୍ଗ ଆଦି ବିଷୟରେ ସେ ସଚେତନ ରହୁଥିଲେ। ବିଭିନ୍ନ ଜାଗାରେ ଗୀର୍ଜା, ପ୍ରାର୍ଥନାଳୟ, କୃଶ ଓ ଯିଶୁଖ୍ରୀଷ୍ଟଙ୍କର ଚିତ୍ର ଦେଖି ସେ ନିଜ ଦେଶରେ ନ ଥିବା କଥା ଅନୁଭବ କରୁଥିଲେ। ଇଂରେଜମାନଙ୍କର ଦେହର ଗନ୍ଧ ତାଙ୍କୁ ବିସ୍ମିତ କରୁଥିଲା। ଶୁଣାଯାଏ ଯେ ଦିନେ ଗୋଟିଏ ଚା'ଭୋଜିରେ ଜଣେ ମହିଳାଙ୍କ ଅଭିଯୋଗ ଶୁଣି ସେହି ଗନ୍ଧ କଥା ବୁଝିପାରିଲେ। ମହିଳା ଜଣକ କହୁଥିଲେ ଯେ ଇଂରେଜ ଶ୍ରମଜୀବୀମାନେ ଯଥେଷ୍ଟ ଗାଧୋଉ ନ ଥିଲେ, ଏପରିକି ସପ୍ତାହକୁ ଥରେ ମଧ୍ୟ ନୁହେଁ। ରାମାନୁଜନ୍‌ଙ୍କ ମୁହଁରେ ବିରକ୍ତିର ଛାପ ଦେଖି ମହିଳା ଜଣକ ତାଙ୍କୁ ଆଶ୍ୱାସନା ଦେଲେ ଯେ ରାମାନୁଜନ୍ ଭେଟୁଥିବା ଇଂରେଜମାନେ ସବୁଦିନ ଗାଧୋଉଥିଲେ। ରାମାନୁଜନ୍ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ଦିନରେ ମାତ୍ର ଥରଟିଏ ଗାଧାନ୍ତି?"

ରାମାନୁଜନ୍ ବହୁରୂପୀ ଭଳି ନିଜକୁ ବଦଳାଇ ବିଦେଶୀ ସଂସ୍କୃତି ସହିତ ଖାପ ଖୁଆଇପାରୁ ନ ଥିଲେ। ଇଂରେଜ ଜୀବନ ଭିତରେ ଲୀନ ହୋଇଯିବା ଭଳି ନମନୀୟତା ତାଙ୍କ ପାଖରେ ନ ଥିଲା। ସାଧାରଣ ଇଂରେଜମାନଙ୍କର ଅସଚେତନ ବ୍ୟବହାରରେ ଥିବା ସୂକ୍ଷ୍ମ ଓ କୋମଳ ପ୍ରତ୍ୟାଖ୍ୟାନକୁ ମଧ୍ୟ ସେ ଅଣଦେଖା କରିପାରୁ ନ ଥିଲେ। ସେଭଳି କେତୋଟି ଉଦାସୀନତା ଓ ନିରବତା ମିଶା

ବ୍ୟବହାର ତାଙ୍କ ପ୍ରଫୁଲ୍ଲତାକୁ ଦାବି ଦେଉଥିଲା ଏବଂ ସେ ତାଙ୍କର ଆରାମଦାୟକ ଗଣିତର ଦୁନିଆକୁ ପଳାୟନ କରୁଥିଲେ।

ବି. ଏମ୍. ୱିଲ୍‌ସନ୍ କୁହନ୍ତି, "ସେହି ସମୟରେ ମୁଁ ତାଙ୍କୁ ଜାଣିଥିଲି, ଯଦିଓ ତାଙ୍କ ସହିତ କେବେ ବି କଥା ହୋଇ ନ ଥିଲି। ତାଙ୍କୁ ଦେଖିବା ମଧ୍ୟ ବିରଳ ଘଟଣା ଥିଲା।" ଲମ୍ବା ସମୟ ଧରି ରାମାନୁଜନ୍ ତାଙ୍କ କୋଠରୀରୁ ବାହାରୁ ନ ଥିଲେ। ଭାରତରେ ଦିନର ଗରମରୁ ରକ୍ଷାପାଇବା ପାଇଁ ସେ ରାତିରେ କାମ କରୁଥିଲେ। ଏବେ ଇଂଲଣ୍ଡରେ ଗରମ ନ ଥିଲେ ମଧ୍ୟ ସେ ରାତିରେ ଏକା ଏକା କାମ କରୁଥିଲେ।

ବିଦେଶ ମାଟିରେ କଇଁଛ ଭଳି ଖୋଳରେ ପଶିଯିବାରେ ରାମାନୁଜନ୍ ପ୍ରଥମ ବିଦେଶୀ ନ ଥିଲେ। ବାସ୍ତବରେ ଏଭଳି ବ୍ୟବହାର କିଛି ବ୍ୟତିକ୍ରମ ନ ଥିଲା, ବରଂ ସ୍ୱାଭାବିକ ଥିଲା। ଆଫ୍ରିକୀୟ ଓ ଏସୀୟ ଛାତ୍ରମାନଙ୍କ ଉପରେ କରାଯାଇଥିବା ଏକ ଅଧ୍ୟୟନରେ ଲକ୍ଷ୍ୟ କରାଯାଇଥିଲା ଯେ 'ଗୋଷ୍ଠୀଗତ ଜୀବନରେ ଭାଗ ନେଇପାରୁ ନ ଥିବାର ଏକ ଅନୁଭୂତି ସେମାନଙ୍କ ପାଇଁ ଏକ ଗୁରୁତର ସମସ୍ୟା ଥିଲା... ଏବଂ ଗୁରୁତର ମନସ୍ତାତ୍ତ୍ୱିକ ପ୍ରଭାବ ପକାଉଥିଲା।' କେବଳ ଭାରତୀୟ ଛାତ୍ରଙ୍କୁ ନେଇ କରାଯାଇଥିବା ଆଉ ଏକ ଅଧ୍ୟୟନରୁ ଜଣାପଡ଼ିଲା ଯେ ଭାରତରେ ଥିଲାବେଳେ ସେମାନଙ୍କ ଭିତରୁ ଶତକଡ଼ା 83 ଭାଗ ପ୍ରାୟ ପ୍ରତିଦିନ ସାଙ୍ଗସାଥିଙ୍କୁ ଭେଟୁଥିଲେ, କିନ୍ତୁ ଇଂଲଣ୍ଡରେ ଥିବା ଅବସ୍ଥାରେ ମାତ୍ର 17 ଶତାଂଶ ସେପରି କରୁଥିଲେ।

1916 ମସିହା ସ୍କୁଲବର୍ଷର ଇଷ୍ଟର ଭାଗରେ ହାର୍ଡି ଟ୍ରିନିଟି ପ୍ରବନ୍ଧ ସମାଜର ସଦସ୍ୟ ଥିଲେ। ଇ. ଏଚ୍. ନେଭିଲ୍ ଓ ବର୍ଟ୍ରାଣ୍ଡ ରସେଲ୍ ମଧ୍ୟ ସେହି ସମାଜରେ ଯୋଗ ଦେଇଥିଲେ। କିନ୍ତୁ ରାମାନୁଜନ୍ ଭାଗ ନେଉ ନ ଥିଲେ। ହାର୍ଡି ଟେନିସ୍ ଖେଳୁଥିଲେ ଏବଂ ଯୁଦ୍ଧ ସମୟରେ ଯେତେଦୂର ସମ୍ଭବ କିଛି କ୍ରିକେଟ୍ ଖେଳୁଥିଲେ। କିନ୍ତୁ ରାମାନୁଜନ୍ କେବଳ ବସିରହି କାମ କରୁଥିଲେ। ରାମାନୁଜନ୍‌ଙ୍କର ଅନେକ ସାଙ୍ଗ ଭାରତୀୟ ଛାତ୍ରମାନଙ୍କର ଏକ ବିତର୍କ ସମାଜ 'ମଜଲିସ୍'ରେ ଯୋଗ ଦେଇଥିଲେ। କୁହାଯାଏ ଯେ ଭାରତୀୟ ସମ୍ଭ୍ରାନ୍ତ ପରିବାରର ପିଲାମାନେ ମଜଲିସ୍‌ର କାର୍ଯ୍ୟକ୍ରମରୁ ଜାତୀୟତାବାଦ ଓ ବୈପ୍ଳବିକ ଚିନ୍ତାଧାରାରେ ଅନୁପ୍ରାଣିତ ହେଉଥିଲେ। ରାମାନୁଜନ୍ କିନ୍ତୁ ତା'ର ପାଖ ମାଡ଼ୁ ନ ଥିଲେ। ଏକ ପ୍ରକାରର ଡାୟୋଫାଣ୍ଟାଇନ୍ ସମୀକରଣ ବିଷୟରେ ରାମାନୁଜନ୍‌ଙ୍କର ଏକ ନିବନ୍ଧ କେମ୍ବ୍ରିଜ୍ ଫିଲୋସୋଫିକାଲ୍ ସୋସାଇଟିର ଅକ୍ଟୋବର 30, 1922 ଅଧିବେଶନରେ ପଢ଼ାଯାଇଥିଲା। ଏହାକୁ ହାର୍ଡି ପଢ଼ିଥିଲେ, ରାମାନୁଜନ୍ ନୁହେଁ। ଜାନୁଆରି 18, 1917 ଦିନ ହାର୍ଡି ଓ ରାମାନୁଜନ୍‌ଙ୍କର ଏକ ମିଳିତ ନିବନ୍ଧ ପଢ଼ାଯାଇଥିଲା। ଏହାକୁ ମଧ୍ୟ ହାର୍ଡି ପଢ଼ିଥିଲେ। ଶ୍ରୋତାଙ୍କ ଭିତରେ ଲିଟଲ୍‌ଉଡ୍, ନେଭିଲ୍ ଓ ବ୍ରୋମ୍‌ୱିଚ୍ ଉପସ୍ଥିତ ଥିଲେ, କିନ୍ତୁ ରାମାନୁଜନ୍ ସେଠାରେ ନ ଥିଲେ।

ବିଶପ୍ ହଷ୍ଟେଲରେ ରାମାନୁଜନ୍ ନିଜକୁ ଆବଦ୍ଧ କରି ରଖିଥିଲେ।

ଇଂଲଣ୍ଡରେ ସୂର୍ଯ୍ୟକିରଣ ପାଇବା ବିରଳ ଥିଲା। ଆକାଶ ପ୍ରାୟ ମେଘାଚ୍ଛନ୍ନ ରହୁଥିଲା। ଶୀତଦିନେ ବେଶ୍ ଉତ୍ତରକୁ ଥିବା କେମ୍ବ୍ରିଜଠାରେ ଦିନ ଅତି ଛୋଟ ହେଉଥିଲା ଏବଂ ଅପରାହ୍ନ ଚାରିଟା ବେଳକୁ ଅନ୍ଧାର ହୋଇଯାଉଥିଲା। ଗ୍ରୀଷ୍ମଋତୁର ଲମ୍ବା ଦିନରେ ମଧ୍ୟ ମାନ୍ଦ୍ରାଜ ତୁଳନାରେ

କେମ୍ବ୍ରିଜଠାରେ କିଛି ବି ଖରା ପଡୁନଥିଲା। ଜୁଲାଇ ମାସରେ ହାରାହାରି ବାର ଦିନ ପାଇଁ ସେଠାରେ ବର୍ଷା ହେଉଥିଲା।

ଏଭଳି ପରିସ୍ଥିତି ଯୁଦ୍ଧ ଯୋଗୁ ଆହୁରି ଖରାପ ହୋଇଗଲା। କେମ୍ବ୍ରିଜ ଓ ତା'ର ଚାରିପଟରେ ଥିବା ପୂର୍ବ ଆଙ୍ଗ୍ଲିଆ ଅଞ୍ଚଳ ୟୁରୋପର ମୁଖ୍ୟ ଭୂଖଣ୍ଡ ଦିଗରେ ସମୁଦ୍ର ଭିତରକୁ ବାହାରି କରି ରହିଥିଲା। ତେଣୁ ଜର୍ମାନିର ବାୟୁପୋତ ଆକ୍ରମଣ ପାଇଁ ଏହା ଏକ ଭଲ ଲକ୍ଷ୍ୟସ୍ଥଳ ଥିଲା। କିଙ୍ଗ୍ସ୍ କଲେଜ ପ୍ରାର୍ଥନାଳୟକୁ ସେହି ଆକ୍ରମଣରୁ ରକ୍ଷାକରିବା ପାଇଁ ରାତିରେ ସବୁ ରାସ୍ତା ଅନ୍ଧାର କରି ରଖାଯାଉଥିଲା। ଜଣେ କହିଥିଲେ ଯେ କେମ୍ବ୍ରିଜ ସେବେ ମଧ୍ୟଯୁଗୀୟ ଅନ୍ଧକାରରେ ବୁଡ଼ିରହୁଥିଲା ଏବଂ ଲୋକମାନଙ୍କୁ ଅଣ୍ଡାଳି ଅଣ୍ଡାଳି ବାଟ ଖୋଜିବାକୁ ପଡୁଥିଲା। ଏଭଳି କଳା ପରିବେଶ ସମସ୍ତଙ୍କୁ ଘର ଭିତରେ ରହିବାକୁ ବାଧ୍ୟ କରୁଥିଲା।

ଦକ୍ଷିଣ ଭାରତରେ ଘରର ଭିତର ଓ ବାହାର ମଧ୍ୟରେ ନିର୍ଦ୍ଦିଷ୍ଟ ସୀମାରେଖା ରହୁ ନ ଥିଲା। କାନ୍ଥ ଓ ଝରକା ଦେଇ ବାହାରର ପବନ, ବାସ୍ନା, ଶବ୍ଦ, କୀଟପତଙ୍ଗ ଓ ଛୋଟ ଜୀବ ଭିତରକୁ ଆସିପାରନ୍ତି। କିନ୍ତୁ ଶୀତକୁ ଦୂରରେ ରଖିବା ପାଇଁ ସବୁବେଳେ ଲଢୁଥିବା ଇଂଲଣ୍ଡରେ ବ୍ୟବସ୍ଥା ସେପରି ନ ଥିଲା। କେମ୍ବ୍ରିଜର ପାଞ୍ଚଶହ ବର୍ଷ ପୁରୁଣା ପଥର କାନ୍ଥ ଭିତର ଓ ବାହାର ବିଭାଜନ ପାଇଁ ସୀମାରେଖାର କାମ କରୁଥିଲା।

ତେଣୁ ରାମାନୁଜନ୍‌ଙ୍କ ରହିବା ଘର ଏକ ନିବୁଜ ବନ୍ଦୀଶାଳା ଭଳି ମନେ ହେଉଥିଲା। ଶୀତ ଦିନ ପାଇଁ ଏହି କଥା ବିଶେଷ ଭାବରେ ସତ ହେଉଥିଲା। ହୁଏତ ଏକ ସୁସଜ୍ଜିତ ଓ ଆରାମଦାୟକ ବନ୍ଦୀଶାଳା, କିନ୍ତୁ ବନ୍ଦୀଶାଳା। ଇଂରେଜଙ୍କ ନ ମିଶିବା ଗୁଣ, ଶୀତ ଦିନର ଥଣ୍ଡା, ଯୁଦ୍ଧ ଯୋଗୁ ଅନ୍ଧାର ରାସ୍ତାଘାଟ ଓ ବିଷର୍ଣ୍ଣତା ରାମାନୁଜନ୍‌ଙ୍କୁ ସେହି ବନ୍ଦୀଶାଳା ଭିତରକୁ ଠେଲି ଦେଉଥିଲା। ଆହୁରି ମଧ୍ୟ ହାର୍ଡିଙ୍କ ସହିତ କାମ କରିବାର ଆନନ୍ଦ ତାଙ୍କୁ ସେହି ବନ୍ଦୀଶାଳା ଭିତରକୁ ଟାଣି ଆଣୁଥିଲା।

## 3. ଏକ ଅନନ୍ୟ ଓ ଆନନ୍ଦଦାୟକ ସହଯୋଗ

ଗଣିତଜ୍ଞ ନର୍ବର୍ଟ ୱାଇନର୍ ମତ ଦେଇଥିଲେ ଯେ ଗୋଟିଏ ଦୃଷ୍ଟିରୁ ସଂଖ୍ୟାତତ୍ତ୍ୱ ଶୁଦ୍ଧ ଓ ପ୍ରାୟୋଗିକ ଗଣିତର ସୀମାରେଖାକୁ ଅସ୍ପଷ୍ଟ କରିଦେଉଛି। ଶୁଦ୍ଧ ଗଣିତର ସ୍ଥୂଳ ପ୍ରୟୋଗ ଖୋଜିବା ପାଇଁ ପଦାର୍ଥ ବିଜ୍ଞାନ ବା ରସାୟନ ବିଜ୍ଞାନ ଭଳି ବିଭାଗକୁ ଯିବାକୁ ପଡ଼ିଥାଏ। କିନ୍ତୁ ସଂଖ୍ୟାତତ୍ତ୍ୱବିତ୍ ପାଇଁ ବାସ୍ତବ ଜୀବନ ସହିତ ଯୋଡ଼ା ଅନେକ ସମସ୍ୟା ସାମନାରେ ରହିଥାଏ। ସଂଖ୍ୟା ପ୍ରଣାଳୀ ତାଙ୍କ ପାଇଁ ତଥ୍ୟ ଓ ସମସ୍ୟାର ଏକ ଅସରନ୍ତି ଭଣ୍ଡାର ହୋଇଥାଏ। ସଂଖ୍ୟାତତ୍ତ୍ୱ କ୍ଷେତ୍ରରେ ଅନେକ ସମୟରେ ସ୍ଥୂଳ ସମସ୍ୟା ଆଗକୁ ଆସିଥାଏ। ଏହାର ପରିସରରେ ନିର୍ଦ୍ଦିଷ୍ଟ ସମସ୍ୟାକୁ ରୂପ ଦେବା ସହଜ ହୋଇଥାଏ, କିନ୍ତୁ ତା'ର ସମାଧାନ ପାଇଁ ଗଣିତଜ୍ଞଙ୍କର ଉଚ୍ଚତମ ଶକ୍ତି ଓ କୌଶଳ ଦରକାର ହୁଏ।

1916 ମସିହାରେ ଏଭଳି ଏକ ସମସ୍ୟା ସଂଖ୍ୟାତତ୍ତ୍ୱର 'ବିଭାଜନ' କ୍ଷେତ୍ରରେ ଦେଖାଯାଇଥିଲା।

ପ୍ରଥମ ଦୃଷ୍ଟିରେ ସମସ୍ୟାଟି ଅତି ସରଳ ଥିଲା: $2+2=4$ । କିନ୍ତୁ ବିଭିନ୍ନ ସଂଖ୍ୟା ମିଶାଇ 4 ପାଇବା ପାଇଁ ଏହା ଏକ ମାତ୍ର ବାଟ ନୁହେଁ। $1+3=4$, $1+1+2=4$, $1+1+1+1=4$,

ଭଳି ଅନ୍ୟ ବାଟମାନ ମଧ୍ୟ ରହିଛି। କେବଳ 4କୁ ମଧ୍ୟ ଗୋଟିଏ ସମାଧାନ ଭାବରେ ଧରାଯାଇପାରିବ। ମିଶାଣରେ ସଂଖ୍ୟାମାନଙ୍କ କ୍ରମ ପ୍ରତି ଧ୍ୟାନ ନ ଦେଲେ ଏହିଗୁଡ଼ିକ ହେବ 4 ପାଇବାର ସବୁତକ ବାଟ। ଏହି ପାଞ୍ଚଟି ବାଟକୁ ଗଣିତର ଭାଷାରେ 'ବିଭାଜନ' କୁହାଯାଏ ଏବଂ ପୂରା ପ୍ରକ୍ରିୟାର ବର୍ଣ୍ଣନା ହୁଏ: 4ର ବିଭାଜନ ସଂଖ୍ୟା ହେଉଛି 5 ବା $p(4) = 5$ । ସାଧାରଣ ରୂପରେ $p(n)$ ବା 'ପି ଅଫ୍ ଏନ୍' ହୁଏ $n$ର ବିଭାଜନ ସଂଖ୍ୟା। $p(n)$କୁ କୁହାଯାଏ ପାର୍ଟିସନ୍ ଫଙ୍କ୍ସନ୍ ବା ବିଭାଜନ ଫଳନ। ଯେ କୌଣସି $n$ ପାଇଁ ଏହି ଫଳନର ମୂଲ୍ୟାୟନ କିପରି କରାଯାଇ ପାରିବ?

ତାତ୍ତ୍ୱିକ ଦୃଷ୍ଟିରୁ ଏହା ବିଶେଷ କଷ୍ଟ ନୁହେଁ। ବିଭିନ୍ନ ମିଶାଣ ଧାରା ବାହାର କରି ସେଗୁଡ଼ିକର ସଂଖ୍ୟା ଗଣିନେଲେ ଉତ୍ତର ମିଳିଯିବା କଥା। କିନ୍ତୁ ବାସ୍ତବ କ୍ଷେତ୍ରରେ ଏହା ସେତେ ସହଜ ନୁହେଁ। କାରଣ ବିଭାଜନ ସଂଖ୍ୟା ଖୁବ୍ ଶୀଘ୍ର ବଢ଼ି ବଢ଼ି ଯାଏ। ଉଦାହରଣ ସ୍ୱରୂପ, 3ର ବିଭାଜନ ସଂଖ୍ୟା ହେଉଛି 3 (3, 1+1+1, 1+2)। କିନ୍ତୁ 10ର ବିଭାଜନ ସଂଖ୍ୟା ହେଉଛି 42 ଏବଂ 50ର ହେବ 204,226। ଗୋଟିକୁ ପାଞ୍ଚ ସେକେଣ୍ଡ ହିସାବରେ ଏହି ଦୁଇଲକ୍ଷ ଚାରିହଜାର ଦୁଇଶହ ଛବିଶଟି ମିଶାଣକୁ କେବଳ ଲେଖିବା ପାଇଁ ଦୁଇ ସପ୍ତାହ ଲାଗିଯିବ। ଆହୁରି ବଡ଼ ସଂଖ୍ୟା ପାଇଁ ଏହା ଚିନ୍ତା କରିବା କଷ୍ଟର କଥା। ତେଣୁ ଏପରି କିଛି ସୂତ୍ର ବାହାର କରିହେବ କି ଯେଉଁଥିରୁ ବିଭାଜନ ସଂଖ୍ୟା ସହଜରେ ମିଳିପାରିବ?

ଅଏଲର୍ ପ୍ରଥମେ ଏହି ସମସ୍ୟାର ସମାଧାନ ଦିଗରେ ନିର୍ଦ୍ଦିଷ୍ଟ ଅବଦାନ ରଖିଥିଲେ। ସେ ଗଣିତର ଏକ ବିଭାଗର ସାହାଯ୍ୟ ନେଲେ ଯାହା ପରେ ଉପବୃତ୍ତୀୟ ମଡୁଲାର ଫଳନ ଭାବରେ ପରିଚିତ ହେଲା। ତାହା ସାହାଯ୍ୟରେ ସେ ମୂଳ ସମସ୍ୟାର ସାଧାରଣ ସମାଧାନ ପାଇଁ ଏକ 'ଜନକ ଫଳନ' ବା ଜେନେରେଟିଙ୍ଗ ଫଙ୍କ୍ସନ୍ ବାହାର କଲେ ଯାହା ବିଭିନ୍ନ ସମ୍ପର୍କିତ ସମସ୍ୟାର ମଧ୍ୟ ସମାଧାନ କରିପାରୁଥିଲା। ଅଏଲର୍‌ଙ୍କର ଜନକ ଫଳନରୁ ଏକ 'ଘାତ ଶ୍ରେଣୀ' ବା ପାୱାର୍ ସିରିଜ୍ ମିଳିଲା ଯାହା ଥିଲା:

$$f(x)=1+\Sigma p(n)x^n$$

ବିସ୍ତାରିତ ରୂପରେ ଯାହା ହେବ:

$$f(x)=1+p(1)x^1+p(2)x^2+p(3)x^3...$$

ଏହି ଶ୍ରେଣୀର $p(1)$, $p(2)$ ଆଦି ଗୁଣାଙ୍କଗୁଡ଼ିକ ବିଭାଜନ ସଂଖ୍ୟା ସମସ୍ୟାର ଉତ୍ତର ଯୋଗାଇବାର ସମ୍ଭାବନା ଦେଖାଉଥିଲା। କାରଣ ଏହି ଶ୍ରେଣୀର ମୂଲ୍ୟ ବାହାରକଲେ ଦେଖାଯିବ ଯେ ଗୁଣାଙ୍କଗୁଡ଼ିକ ଯେ କୌଣସି ସାଧାରଣ ସଂଖ୍ୟା ନୁହେଁ, ବରଂ ଖୋଜାଯାଉଥିବା ବିଭିନ୍ନ ବିଭାଜନ ସଂଖ୍ୟା। ଅର୍ଥାତ, ଏହି ଶ୍ରେଣୀର ପଚାଶତମ ପଦ $x^{50}$ର ଗୁଣାଙ୍କ $p(50)$ ହେବ 204,226 ବା 50ର ବିଭାଜନ ସଂଖ୍ୟା।

ବିଭାଜନ ପାଇଁ ଜନକ ଫଳନ ଯେ ଏକ ଘାତ ଶ୍ରେଣୀ ହେବ ତାହା ସ୍ୱାଭାବିକ ଥିଲା, କାରଣ ବିଭିନ୍ନ ପଦର ଘାତର ମିଶାଣ କରାଯାଇପାରେ। ଯେପରି $4x8=32$କୁ $2^2x2^3=2^5$ ରୂପରେ ଲେଖାଯାଇପାରିବ, ଯେଉଁଠି ଘାତଗୁଡ଼ିକ ମିଶାଗଲେ ନୂଆ ଘାତ ମିଳୁଛି। ବିଭାଜନ ସଂଖ୍ୟା ପାଇବା

ପାଇଁ ଛୋଟ ଛୋଟ ସଂଖ୍ୟାର ମିଶାଣ ହିଁ କରାଯାଏ। ତେଣୁ ଏହି ଦୁଇ ଧାରା ଭିତରେ ସମ୍ପର୍କ ରହିବା ସ୍ୱାଭାବିକ ମନେହୁଏ।

ଅଏଲର୍ ସମସ୍ୟାର ସମାଧାନ ପାଇଁ ବାଟ ଖୋଲିଦେଲେ ସତ, କିନ୍ତୁ ସେ ପ୍ରକୃତ ସମାଧାନ ଦିଗରେ ଆଗେଇ ନ ଥିଲେ। ଜନକ ଫଳନକୁ ବ୍ୟବହାର କରି ଉପଯୁକ୍ତ ଘାତ ଶ୍ରେଣୀ କିପରି ବାହାର କରାଯିବ ତାହା ସେ କହି ନ ଥିଲେ। ଏହି କାମଟି ଆଉ କେହି ମଧ୍ୟ କରି ନ ଥିଲେ। କିନ୍ତୁ ସମାଧାନର ମଞ୍ଜି 1913 ଜାନୁଆରିରେ ହାର୍ଡିଙ୍କ ପାଖକୁ ରାମାନୁଜନ୍ ଲେଖିଥିବା ପ୍ରଥମ ଚିଠିରେ ରହିଥିଲା। ଚିଠିର ସପ୍ତମ ପୃଷ୍ଠାରେ ରାମାନୁଜନ୍ ଗୋଟିଏ ନିର୍ଦ୍ଦିଷ୍ଟ ଥିଟା ଶ୍ରେଣୀ ବିଷୟରେ ଲେଖିଥିଲେ ଯାହା ଏକ ପ୍ରକାରର ଘାତ ଶ୍ରେଣୀ ଥିଲା। ସେଥିରେ କେବଳ $x^1$, $x^4$, $x^9$ ଭଳି ବର୍ଗ ସଂଖ୍ୟାର ଘାତ ରହୁଥିଲା। ସେହି ଶ୍ରେଣୀର ଗୁଣାଙ୍କଗୁଡ଼ିକ ପାଇବା ପାଇଁ ରାମାନୁଜନ୍ ଗୋଟିଏ ସୂତ୍ର ଦେଇଥିଲେ ଏବଂ ଦାବି କରିଥିଲେ ଯେ ସୂତ୍ରରୁ ମିଳୁଥିବା ମୂଲ୍ୟର ନିକଟତମ ପୂର୍ଣ୍ଣ ସଂଖ୍ୟା ହିଁ ତାଙ୍କ ଥିଟା ଶ୍ରେଣୀର ଗୁଣାଙ୍କ ହେବ।

ହାର୍ଡି କହିଥିଲେ ଯେ ରାମାନୁଜନ୍ଙ୍କର ସେହି ଦାବି ପୂରା ଠିକ୍ ନ ଥିଲା। ତାଙ୍କ ସୂତ୍ରର ସମାଧାନରୁ ଗୁଣାଙ୍କର ଆସନ୍ନ ମୂଲ୍ୟ ମିଳୁଥିଲା, କିନ୍ତୁ ତାହା ପ୍ରକୃତ ମୂଲ୍ୟଠାରୁ ବେଶ୍ ଅଲଗା ହେଉଥିଲା। ତଥାପି ହାର୍ଡିଙ୍କ ଭାଷାରେ, "ସେହି ଭୁଲ ଦାବି ଅତି ଫଳପ୍ରଦ ହୋଇଥିଲା, କାରଣ ଆମ ସମସ୍ତଙ୍କୁ ବିଭାଜନ ଉପରେ ମିଳିତ ଭାବରେ କାମ କରିବା ପାଇଁ ତାହା ଆଗେଇ ନେଇଥିଲା।" ଏହି ସମସ୍ୟାର ଶେଷ ସମାଧାନ ଆସିଲା 1937 ମସିହାରେ ଏବଂ 1913 ମସିହାରେ ରାମାନୁଜନ୍ଙ୍କ ପ୍ରସ୍ତାବିତ ସମାଧାନ ସହିତ ତାହାର ବଳିଷ୍ଠ ଶ୍ରେଣୀଗତ ସାମଞ୍ଜସ୍ୟ ରହିଥିଲା।

ହାର୍ଡି ଓ ରାମାନୁଜନ୍ ତାଙ୍କର ଏହି କାମ ପାଇଁ ଯେଉଁ ଧାରା ବ୍ୟବହାର କଲେ ପରେ ତାହା ବୃତ୍ତ ପଦ୍ଧତି ନାଁରେ ପରିଚିତ ହେଲା। ସେହି ପଦ୍ଧତି କୋଶି ଉପପାଦ୍ୟ ଉପରେ ଆଧାରିତ ଥିଲା ଯଦିଓ ଏହି କାମ ପାଇଁ ସେହି ଉପପାଦ୍ୟ ଯେ ଉପଯୋଗୀ ହେବ ତାହା କଳ୍ପନାତୀତ ଥିଲା। କୋଶି ଉପପାଦ୍ୟ 'ବିଶ୍ଳେଷଣ' ନାମକ ଗଣିତର ଏକ ବିସ୍ତୃତ କ୍ଷେତ୍ର ପାଇଁ ପ୍ରଯୁଜ୍ୟ ଥିଲା। ତାହା ବିବିକ୍ତ ସଂଖ୍ୟା ବଦଳରେ ଅବିଚ୍ଛିନ୍ନ ପରିମାଣ ସହିତ କାମ କରୁଥିଲା। କେତେ ଦିନ ଧରି ଗଛଟିଏ ବଢୁଛି ତାହା ହେଉଛି ଏକ ଅବିଚ୍ଛିନ୍ନ ପରିମାଣ, ତୁମର କେତୋଟି ବିଲେଇ ଅଛନ୍ତି ତାହା ହେଉଛି ଏକ ବିବିକ୍ତ ପରିମାଣ। ବିଭାଜନ ସଂଖ୍ୟା ହେଉଛି ଏକ ବିବିକ୍ତ ପରିମାଣ। କୌଣସି ସଂଖ୍ୟାର 6.719 ଟି ବିଭାଜନ ରହିପାରିବନାହିଁ, ଠିକ୍ ଯେପରି କାହାର 6.719 ଟି ବିଲେଇ ରହିପାରିବନାହିଁ। ତାହା 6 ହେବ ବା 7 ହେବ।

ଏଭଳି ଅନେକ ସମସ୍ୟା ପାଇଁ କୋଶି ଉପପାଦ୍ୟ କାମରେ ଲାଗୁଥିବା କଥା ଜଣାଥିଲା ଏବଂ ତାହାର ଶ୍ରେୟ ହାର୍ଡିଙ୍କୁ ମିଳିବାର ଥିଲା। 'ବିଶ୍ଳେଷଣାତ୍ମକ ସଂଖ୍ୟାତତ୍ତ୍ୱ' ବିଷୟକୁ ଆଗେଇ ନେବାରେ ବିଂଶ ଶତାବ୍ଦୀର ଗଣିତଜ୍ଞଙ୍କ ଭିତରେ ହାର୍ଡି ପଥପ୍ରଦର୍ଶକ ଥିଲେ। ଏହି କାମ ପାଇଁ ସେ ଦୁଇ ଶତାବ୍ଦୀ ଧରି ଅବିଚ୍ଛିନ୍ନ ପରିମାଣ ପାଇଁ ବିକଶିତ ହୋଇଥିବା ବିଭିନ୍ନ ଗାଣିତିକ କୌଶଳରେ ପରିବର୍ତ୍ତନ ଆଣି ସେଗୁଡ଼ିକୁ ପୂର୍ଣ୍ଣ ସଂଖ୍ୟା ସହିତ ବ୍ୟବହାର କଲେ। ହାର୍ଡି କହିଥିଲେ ଯେ କୋଶି ଉପପାଦ୍ୟର ଏଭଳି ବ୍ୟବହାରର ସମ୍ଭାବନା ଅତି ସ୍ପଷ୍ଟ ଥିଲା ଏବଂ ଏବେ ବିଶ୍ଳେଷଣାତ୍ମକ ସଂଖ୍ୟାତତ୍ତ୍ୱ କାମର

ନବେ ଶତାଂଶ କ୍ଷେତ୍ରରେ ଏହା ପ୍ରମୁଖ ଭୂମିକା ନେଉଛି। ତେଣୁ ଆଶ୍ଚର୍ଯ୍ୟ ଲାଗେ ଯେ କେହି ତାକୁ ଏପର୍ଯ୍ୟନ୍ତ ଏହି କାମରେ ଲଗାଇ ନ ଥିଲେ। ଏହାର ବ୍ୟବହାରକୁ ବାଧା ଦେଉଥିବା ଗୋଟିଏ କାରଣ ହେଉଛି ଏକକ ବୃତ୍ତର କୌଣସି ବିନ୍ଦୁର ନିକଟରେ ଜନକ ଫଳନର ଅତି ଜଟିଳ ଗୁଣଧର୍ମ। ଏହି ବାଧାକୁ ଅତିକ୍ରମ କରିବା ପାଇଁ ସେମାନଙ୍କୁ ନୂଆ କୌଶଳ ବାହାର କରିବାକୁ ପଡ଼ିଲା।

ତାଙ୍କର ଫଳାଫଳ ଅନେକଗୁଡ଼ିଏ ଆସନ୍ନ ମୂଲ୍ୟ ଉପରେ ଆଧାରିତ ହୋଇଥିଲା, ତେଣୁ ଶେଷ ଫଳଟି ମଧ୍ୟ ଏକ ଆସନ୍ନ ମୂଲ୍ୟ ହେବା ନିଶ୍ଚିତ ଥିଲା। ଏହାକୁ କିପରି ଆହୁରି ସଠିକ କରିହେବ ସେ ଚିନ୍ତା ସେମାନେ କରିବାରେ ଲାଗିଲେ। ମୌଳିକ ସଂଖ୍ୟା କ୍ଷେତ୍ରରେ ମଧ୍ୟ ଏହିଭଳି ସମସ୍ୟା ଆଗରୁ ଦେଖା ଦେଇଥିଲା ଏବଂ ଗଣିତଜ୍ଞମାନେ ଆସନ୍ନ ମୂଲ୍ୟରେ ସନ୍ତୁଷ୍ଟ ହେବାକୁ ବାଧ୍ୟ ହେଉଥିଲେ। ଅବଶ୍ୟ nର ମୂଲ୍ୟ ବଢ଼ିବା ସହିତ ସେହି ଆସନ୍ନ ମୂଲ୍ୟର ସଠିକତା ମଧ୍ୟ ବଢୁଥିଲା, କିନ୍ତୁ ମୌଳିକ ସଂଖ୍ୟା ଉପପାଦ୍ୟରୁ ସଠିକ ଉତ୍ତର ପାଇବାର ସବୁ ଚେଷ୍ଟା ବିଫଳ ହୋଇଥିଲା। ହୁଏତ ବିଭାଜନ ସଂଖ୍ୟା କ୍ଷେତ୍ରରେ ମଧ୍ୟ ତାହା ଘଟିବ ଏବଂ ଗଣିତଜ୍ଞମାନଙ୍କୁ ଆସନ୍ନ ମୂଲ୍ୟରେ ସନ୍ତୁଷ୍ଟ ରହିବାକୁ ହେବ।

ତଥାପି ଆସନ୍ନ ମୂଲ୍ୟଟି ପ୍ରକୃତ ମୂଲ୍ୟଠାରୁ କେତେ ଦୂରରେ ରହୁଛି ସେମାନେ ଦେଖିବାକୁ ଚାହିଁଲେ ଏବଂ ମେଜର ମାକ୍‌ମୋହନ୍‌ଙ୍କୁ ସେହି କାମରେ ଲଗାଇଲେ। ଏକଷଠି ବର୍ଷୀୟ ଗଣିତଜ୍ଞ ପର୍ସି ଆଲେକ୍‌ଜାଣ୍ଡର ମାକ୍‌ମୋହନ୍ ଜଣେ ବ୍ରିଗେଡିଅର୍ ଜେନେରାଲ୍‌ଙ୍କର ପୁଅ ଥିଲେ ଏବଂ କମାଣ ବାହିନୀରେ କାମ କଲା ପରେ ଗୁରୁତ୍ୱର ସହିତ ଗଣିତରେ ମନଦେଲେ। ସେନାବାହିନୀ କାମରେ ସେ 1870 ଦଶକରେ ମାନ୍ଦ୍ରାଜରେ କିଛି ସମୟ କଟାଇଥିଲେ। ତାଙ୍କର ନିଶ, ଔପନିବେଶିକ ହାବଭାବ ଓ ସାମରିକ ପୃଷ୍ଠଭୂମି ଦୃଷ୍ଟିରୁ କେହି ଭାବୁ ନ ଥିଲେ ଯେ ସେ ଜଣେ ବଡ଼ ଗଣିତଜ୍ଞ ହେବେ। କିନ୍ତୁ ସେନାବାହିନୀ ଛାଡ଼ିବା ପରେ ସେ ଉଲ୍‌ୱିଚ ସାମରିକ ସ୍କୁଲରେ ଗଣିତ ଅଧ୍ୟାପକ ହୋଇଥିଲେ ଏବଂ 1904 ମସିହାଠାରୁ କେମ୍ବ୍ରିଜର ସେଣ୍ଟ ଜନ୍‌ସ୍ କଲେଜ ସହିତ ଯୋଡ଼ି ହୋଇଥିଲେ।

ସଂଯୋଗ-ଗଣିତ ବା କମ୍ବିନେଟୋରିକ୍‌ସ୍ କ୍ଷେତ୍ରରେ ମାକ୍‌ମୋହନଙ୍କର ବିଶେଷ ଦକ୍ଷତା ରହିଥିଲା। ସେହି କ୍ଷେତ୍ରରେ ମୌଳିକ ଅବଦାନ ପାଇଁ ସେ 1890 ମସିହାରେ ରୟାଲ ସୋସାଇଟିର ଫେଲୋ ଭାବରେ ଗୃହୀତ ହୋଇଥିଲେ। ମନେ ମନେ ହିସାବ କରିବାରେ ସେ ଅତି କ୍ଷୀପ୍ର ଓ ଦକ୍ଷ ଥିଲେ। ବେଳେ ବେଳେ ସେ ମାନସିକ ହିସାବ କରିବାରେ ରାମାନୁଜନ୍‌ଙ୍କ ସହିତ ପ୍ରତିଯୋଗିତା କରୁଥିଲେ ଏବଂ ନିୟମିତ ଭାବରେ ଜିତୁଥିଲେ। ଏବେ ସେ ତାଙ୍କ ହିସାବ କରିବା ଦକ୍ଷତାକୁ ବିଭାଜନ ସଂଖ୍ୟା କାମରେ ଲଗାଇଲେ। ଅଏଲର୍‌ଙ୍କ ପ୍ରାଥମିକ କାମରୁ ବାହାରିଥିବା ଏକ ସରଳ ସୂତ୍ର ବ୍ୟବହାର କରି ମାକ୍‌ମୋହନ୍ ଅସଂଖ୍ୟ ହିସାବ କରିଚାଲିଲେ ଏବଂ ପ୍ରଥମ 200ଟି ସଂଖ୍ୟା ପାଇଁ $p(n)$ ର ମୂଲ୍ୟ ବାହାର କଲେ। ଅତି ସରଳ ଭାବରେ କହିବାକୁ ଗଲେ ସେ 29+29+29... 1,000,001 ଥର ମିଶାଇ 29,000,029 ବାହାର କରୁଥିଲେ। ହାର୍ଡି ଓ ରାମାନୁଜନ୍ ଏହି କାମକୁ ଗୁଣନ ମାଧ୍ୟମରେ ସହଜରେ କରିବାକୁ ଚେଷ୍ଟା କରି ସେ ପର୍ଯ୍ୟନ୍ତ ସଫଳ ହୋଇପାରି ନ ଥିଲେ। କିନ୍ତୁ ତାଙ୍କର ଫଳର ସଠିକତା ଜାଣିବା ପାଇଁ ମାକ୍‌ମୋହନ୍‌ଙ୍କ ଅଗାଧ ପରିଶ୍ରମର ଫଳ ଅତି ମୂଲ୍ୟବାନ ହେଲା। ଦୁଇ ଧାରାରେ ବାହାରୁଥିବା ଫଳର ତୁଳନାରୁ ଦେଖାଗଲା ଯେ ହାର୍ଡି ଓ

ରାମାନୁଜନ୍‌ଙ୍କ ଆସନ୍ନ ମୂଲ୍ୟ ପ୍ରକୃତ ମୂଲ୍ୟର ପାଞ୍ଚ ଶତାଂଶ ଭିତରେ ରହୁଥିଲା। ତାଙ୍କର ସୂତ୍ରକୁ ଆହୁରି ମାର୍ଜିତ କରିବା ଫଳରେ ଦୁଇ ମୂଲ୍ୟ ଭିତରେ ପ୍ରଭେଦ ଆହୁରି କମିଗଲା ଓ ବିଶ୍ୱାସ ଆସିଲା ଯେ ହାର୍ଡି ଓ ରାମାନୁଜନ୍ ଠିକ୍ ବାଟରେ ଆଗଉଛନ୍ତି।

1916 ମସିହା ଡିସେମ୍ବର ମାସର ଛୁଟି ସମୟରେ ହାର୍ଡି ଓ ରାମାନୁଜନ୍ ଏକାଠି ନ ଥିଲେ। ସେତିକିବେଳେ କାମ ଚାଲୁ ରଖିଥିବା ରାମାନୁଜନ୍ ହାର୍ଡିଙ୍କ ପାଖକୁ ଖଣ୍ଡେ ପୋଷ୍ଟକାର୍ଡରେ ଖୁନ୍ଦିଖାନ୍ଦି ତାଙ୍କର ଅଗ୍ରଗତି ବିଷୟରେ ଲେଖିଥିଲେ:

> ଦେଖାଯାଉଛି ଯେ p(n)ର ମୂଲ୍ୟ ଆସନ୍ନ ମୂଲ୍ୟର ନିକଟତମ ପୂର୍ଣ୍ଣ ସଂଖ୍ୟା ହେବାକୁ ହେଲେ Sର ମୂଲ୍ୟ $\beta\sqrt{x}/\log n$ ଉପରକୁ ହେବା ଦରକାର ନାହିଁ, କିନ୍ତୁ ତାହା $\alpha\sqrt{x}/\log n$ ତଳକୁ ଆସିପାରିବନାହିଁ। ଆଶାକରୁଛି ଆପଣ ଏହା ସହଜରେ ପ୍ରମାଣ କରିପାରିବେ। ତାହେଲେ ସମସ୍ୟାର ପୂରା ସମାଧାନ ମିଳିଯିବ। ମେଜର ମାକ୍‌ମୋହନ୍ ତାଙ୍କ 200 ସଂଖ୍ୟାର ଫଳାଫଳକୁ ଟାଇପ କରି ମୋ ପାଖକୁ ପଠାଇଛନ୍ତି। ଆସନ୍ନ ମୂଲ୍ୟଗୁଡ଼ିକ ତାହା ସହିତ ପୂରା ମେଳ ଖାଉଛି। ମୁଁ ଭାବୁଛି ଯେ ଆପଣ ତାଙ୍କଠାରୁ ଏହା ଜାଣିବାକୁ ପାଇଥିବେ।

ରାମାନୁଜନ୍ ଓ ହାର୍ଡିଙ୍କ ଭିତରେ ଚାଲିଥିବା ଗାଣିତିକ ପତ୍ରାଳାପ କ୍ଷେତ୍ରରେ ଏହା ଆଉ ଗୋଟିଏ ବିଶେଷ ଅବଦାନ ହୋଇ ରହିଲା। ରାମାନୁଜନ୍‌ଙ୍କ ଧାରା ବିଷୟରେ ଲିଟଲ୍‌ଉଡ୍ କହିଥିଲେ, "ଏହା ଏକ ବିରାଟ ପଦକ୍ଷେପ ଥିଲା। ଏଥିରେ କିଛି ନୂଆ ଓ ଗଭୀର ଫଳନ-ତତ୍ତ୍ୱ ଧାରା ବ୍ୟବହୃତ ହୋଇଥିଲା ଯାହାକୁ ରାମାନୁଜନ୍ ନିଜେ ନିଜେ ଆବିଷ୍କାର କରିପାରି ନ ଥିବେ।" ହାର୍ଡି ଓ ରାମାନୁଜନ୍ ବିଶ୍ୱାସ କରୁଥିଲେ ଯେ ସେମାନେ ଏବେ ଏପରି ଏକ ସୂତ୍ର ପାଇପାରିବେ ଯେଉଁଥିରୁ ମିଳୁଥିବା ମୂଲ୍ୟଗୁଡ଼ିକର ଅଶୁଦ୍ଧି କମ୍ ଓ ସୀମିତ ହେବ। କିନ୍ତୁ ଯେଉଁ ଫଳ ସେମାନେ ପାଇଲେ ତାହା ତାଙ୍କ ଆଶାଠାରୁ ଉନ୍ନତ ଥିଲା:

> ମେଜର୍ ମାକ୍‌ମୋହନ୍ ଦୟାପରବଶ ହୋଇ ଯୋଗାଇ ଦେଇଥିବା ହିସାବ ସହିତ ଆମର ଫଳକୁ ତୁଳନା କରିବାକୁ ଯାଇ ଆମେ ଦେଖିଲୁ ଯେ ଆମେ ପାଉଥିବା ଫଳର ସଠିକତା ଆଶ୍ଚର୍ଯ୍ୟଜନକ ଭାବରେ ଉଚ୍ଚ ସ୍ତରର। ଏହା ଆମର ଆଶାକୁ ବଢ଼ାଇଦେଲା। n=100 ନେଇ ଆମେ ଦେଖିଲୁ ଯେ ଆମ ସୂତ୍ରର ପ୍ରଥମ ଛ'ଟି ପଦରୁ ମିଳୁଥିଲା: $190568944.783 + 348.872 - 2.598 + 0.685 - 0.318 + 0.064 = 190569291.996$
>
> ଏହା ତୁଳନାରେ p(100)ର ପ୍ରକୃତ ମୂଲ୍ୟ ଥିଲା 190569292। ଅର୍ଥାତ, ଛ'ଟି ପଦ ପରେ ଅଶୁଦ୍ଧି ହେଉଥିଲା ମାତ୍ର 0.004।

p(200) ପାଇଁ ମଧ୍ୟ ଅଶୁଦ୍ଧି ପ୍ରାୟ ସେତିକି ରହୁଥିଲା। ତାଙ୍କର ଧାରାରୁ ମିଳୁଥିବା ଫଳର ଅଶୁଦ୍ଧି କେବଳ ସୀମିତ ରହୁ ନ ଥିଲା, ତାହା ଏତେ ଛୋଟ ହେଉଥିଲା ଯେ ନିକଟତମ ପୂର୍ଣ୍ଣ ସଂଖ୍ୟା ହିଁ ପ୍ରକୃତ ମୂଲ୍ୟ ଦେଉଥିଲା। ହାର୍ଡି ଓ ରାମାନୁଜନ୍ ଲେଖିଥିଲେ, "ଏହି ଫଳରୁ ବଳିଷ୍ଠ ସୂଚନା ମିଳୁଛି ଯେ ଏହା ପାଇଁ ଏକ ସୂତ୍ର ମିଳିବା ସମ୍ଭବ ହେବ... ଯାହା ସାହାଯ୍ୟରେ ଯେ କୌଣସି n ପାଇଁ p(n)ର ସଠିକ ମୂଲ୍ୟ ହିସାବ କରିବା ସମ୍ଭବ ହେବ।"

ଏହା ସେମାନଙ୍କୁ ବିସ୍ମିତ କଲା। ଏହି ସମସ୍ୟାର ଇତିହାସରେ ବା ମୌଳିକ ସଂଖ୍ୟା ସମ୍ପର୍କିତ

ତାଙ୍କ କାମରେ ଏପରି କିଛି ନ ଥିଲା ଯାହା ତାଙ୍କୁ ଏହି ଫଳାଫଳ ପାଇଁ ପ୍ରସ୍ତୁତ କରିଥା'ନ୍ତା। ଏବେ ସେମାନେ ବିଭାଜନ ସଂଖ୍ୟା କ୍ଷେତ୍ରରେ ଯାହା କଲେ ତାହା ମୌଳିକ ସଂଖ୍ୟା କ୍ଷେତ୍ରରେ ରାମାନୁଜନ୍ ଭାବୁଥିବା ସମାଧାନ ଭଳି ଥିଲା। କିନ୍ତୁ ହାର୍ଡି ଦେଖାଇଥିଲେ ଯେ ମୌଳିକ ସଂଖ୍ୟା ସମ୍ପର୍କରେ ରାମାନୁଜନ୍‌ଙ୍କର ପ୍ରସ୍ତାବିତ ସମାଧାନ ଠିକ୍ ନ ଥିଲା। ବିଭାଜନ ସଂଖ୍ୟା କ୍ଷେତ୍ରରେ କିନ୍ତୁ ସମାଧାନରେ କିଛି ସନ୍ଦେହ ନ ଥିଲା। ସେହି ଅପ୍ରତ୍ୟାଶିତ ସଠିକତା ତାଙ୍କ ନୂଆ ଧାରାର ଶକ୍ତି ବିଷୟରେ ମଧ୍ୟ ସୂଚନା ଦେଉଥିଲା। ଆସନ୍ନ ଫଳର ମୂଲ୍ୟାୟନ ପାଇଁ ନିଆ ଯାଇଥିବା ପାଦଗୁଡ଼ିକ ଏତେ ସୂକ୍ଷ୍ମ ଓ ସୁଚିନ୍ତିତ ଥିଲା ଯେ ସମ୍ପୂର୍ଣ୍ଣ ସଠିକ ଉତ୍ତର ପାଇଁ ବାଟ ଖୋଲିବାର ସମ୍ଭାବନା ତାହା ଦେଖାଉଥିଲା। ଏହା ସତ ହେଲା ପ୍ରାୟ କୋଡ଼ିଏ ବର୍ଷ ପରେ, ଯେତେବେଳେ ହାନ୍ସ୍ ରେଡମାକର ସେହି ସୂତ୍ରକୁ ମାର୍ଜିତ କରି ପ୍ରକୃତ ମୂଲ୍ୟ ପାଇପାରିଲେ।

ରାମାନୁଜନ୍ କ'ଣ ଆରମ୍ଭରୁ ହିଁ ଜାଣିଥିଲେ ଯେ ସେହି ସମସ୍ୟାର ଏକ ସଠିକ ସମାଧାନ ରହିଛି? ନରୱେର ବିଖ୍ୟାତ ସଂଖ୍ୟାତତ୍ତ୍ୱବିତ୍ ଅଟ୍‌ଲି ସେଲ୍‌ବର୍ଗ ଭାବନ୍ତି ଯେ ହଁ। ସେଲ୍‌ବର୍ଗ କହନ୍ତି ଯେ କିଛି ନିର୍ଦ୍ଦିଷ୍ଟ ଧାରା ବ୍ୟବହାର କରିବା ଉପରେ ହାର୍ଡି ଜୋରଦେବା ଫଳରେ ସେମାନଙ୍କର ସଠିକ ସମାଧାନ ପାଇଁ ପ୍ରଚେଷ୍ଟା ବାଧା ପାଇଥିଲା। ରାମାନୁଜନ୍‌ଙ୍କ ଅନ୍ତର୍ଦୃଷ୍ଟି ଉପରେ ହାର୍ଡିଙ୍କର ଭରସା ନ ଥିବାରୁ ସଠିକ ସମାଧାନ ଖୋଜିବା ଦିଗରେ ରାମାନୁଜନ୍ ଉତ୍ସାହ ଦେଖାଇ ନ ଥିଲେ।

ହାର୍ଡି ଓ ରାମାନୁଜନ୍‌ଙ୍କର ବିଭାଜନ ସଂଖ୍ୟା ସମସ୍ୟାର ସମାଧାନ ଖୁବ୍ ବଡ଼ ଖବର ଥିଲା ଏବଂ ସେମାନେ ବ୍ୟବହାର କରିଥିବା ବୃତ୍ତ ପଦ୍ଧତି ବ୍ୟାପକ ସଫଳତା ପାଇଲା। ଏହା ଉପରେ କିଛି ସଂକ୍ଷିପ୍ତ ସୂଚନା ସାଙ୍ଗେ ସାଙ୍ଗେ ପ୍ରକାଶ ପାଇଥିଲା। କିନ୍ତୁ ବିସ୍ତୃତ ବିବରଣୀ ସମ୍ବଳିତ ଚାଳିଶ ପୃଷ୍ଠାର ନିବନ୍ଧ ପ୍ରକାଶିତ ହେଲା 1918 ମସିହାରେ।

ରାମାନୁଜନ୍ ଓ ହାର୍ଡି – ଏକ ଗଣିତଜ୍ଞ ଯୋଡ଼ି ଭାବରେ ସେମାନେ ବେଶ୍ ଜଣାଶୁଣା ହୋଇଗଲେ। ପେନ୍‌ସିଲ୍‌ଭାନିଆ ଷ୍ଟେଟ୍ ବିଶ୍ୱବିଦ୍ୟାଳୟର ଗଣିତଜ୍ଞ ଜର୍ଜ ଆଣ୍ଡ୍ରିଉଜ୍ ସେ ଦୁହିଁଙ୍କୁ ଜଣେ ଅନ୍ଧ ଓ ଆଉ ଜଣେ ଗୋଡ଼ ନ ଥିବା ଲୋକଙ୍କ ଯୋଡ଼ି ଭାବରେ ବର୍ଣ୍ଣନା କରିଥିଲେ। ଦୁହେଁ ମିଶି ଯାହା କରିପାରୁଥିଲେ ତାହା କୌଣସି ସାଧାରଣ ମଣିଷ କରିପାରିବନାହିଁ। ସେ ଦୁହେଁ ଏକ ଅତି ଶକ୍ତିଶାଳୀ ଯୋଡ଼ି ଥିଲେ। କେବଳ ବିଭାଜନ ସମ୍ପର୍କରେ ତାଙ୍କର କାମ ରାମାନୁଜନ୍‌ଙ୍କୁ ଇଂଲଣ୍ଡ ଆଣିବା ଯେ ଯଥାର୍ଥ ଥିଲା ତାହା ପ୍ରମାଣିତ କରୁଥିଲା। ସେହି କାମ ମଧ୍ୟ ସେମାନଙ୍କ ନାଁକୁ ଗଣିତର ଇତିହାସରେ ସବୁଦିନ ପାଇଁ ସ୍ଥାନିତ କରିଦେଲା।

କେମ୍ବ୍ରିଜ ଗଣିତଜ୍ଞ ବେଲା ବୋଲୋବାସ୍ ମତ ଦେଇଥିଲେ ଯେ ସମସ୍ୟାର ସମାଧାନ ସୂତ୍ର ବାହାର କରିବା ପାଇଁ ବୈଷୟିକ କୌଶଳ ହାର୍ଡି ଯୋଗାଉଥିଲେ, କିନ୍ତୁ:

> ମୋର ବିଶ୍ୱାସ ଯେ ହାର୍ଡି ଏକ ମାତ୍ର ଗଣିତଜ୍ଞ ନ ଥିଲେ ଯିଏ ଏହି କାମ କରିପାରିଥା'ନ୍ତେ। ବୋଧହୁଏ ମୋର୍ଡେଲ୍ ତାହା କରିପାରିଥା'ନ୍ତେ, ପୋଲ୍ୟା ମଧ୍ୟ ପାରିଥା'ନ୍ତେ। ମୁଁ ନିଶ୍ଚିତ ଯେ ଅନେକ କେହି ହାର୍ଡିଙ୍କ ଭୂମିକା ତୁଲାଇ ପାରିଥା'ନ୍ତେ। କିନ୍ତୁ ମୁଁ ଭାବୁନାହିଁ ଯେ ଆଉ କେହି ବି ସେହି ସହଯୋଗରେ ସେହି ସମୟରେ ରାମାନୁଜନ୍‌ଙ୍କ ଭୂମିକା ତୁଲାଇ ପାରିଥା'ନ୍ତା।

କାହାର ଶ୍ରେୟ କେତେ ତାକୁ ପଛରେ ରଖି ଲିଟଲ୍‌ଉଡ୍ ଲେଖିଥିଲେ, "ଏହି ଉପପାଦ୍ୟଟି ଭିନ୍ନ ଦକ୍ଷତାର ଅଧିକାରୀ ଦୁଇଜଣ ବ୍ୟକ୍ତିଙ୍କର ଅନନ୍ୟ ଭାବରେ ସୁଖଦ ସହଯୋଗର ଫଳ। ଏଥିପାଇଁ ଦୁହେଁ ତାଙ୍କର ସାଧ୍ୟମତେ ଶ୍ରେଷ୍ଠ... ଅବଦାନ ଦେଇଛନ୍ତି। ରାମାନୁଜନ୍‌ଙ୍କର ପ୍ରତିଭାର ପରିପ୍ରକାଶ ପାଇଁ ଏହା ଏକ ମୂଲ୍ୟବାନ ସୁଯୋଗ ଥିଲା।"

ରାମାନୁଜନ୍‌ଙ୍କ ପାଇଁ ଏହା ସୁସ୍ୱାଦୁ ନିଶା ଭଳି ହୋଇଥିଲା। ଦଶବର୍ଷ ତଳେ କାର୍‌ଙ୍କ ବହିର ମାୟାରେ ପଡ଼ି ସେ ଏକମନା ହୋଇ ଗଣିତ କାମରେ ଲାଗିଗଲେ ଏବଂ ଜଣେ ସାଧାରଣ କଲେଜ ଛାତ୍ର ଭାବରେ ଅସଫଳ ହୋଇଗଲେ। ଏବେ ସେହିଭଳି କିଛି ଘଟୁଥିଲା, କିନ୍ତୁ ବେଶି ଗୁରୁତର ଭାବରେ। କେବଳ ଗଣିତ କାମରୁ ସେ ପାଉଥିବା ଆନନ୍ଦ ଯେ ତାଙ୍କୁ ଆଗକୁ ଟାଣି ନେଉଥିଲା ତାହା ନୁହେଁ, ହାର୍ଡିଙ୍କଠାରୁ ମିଳୁଥିବା ଉତ୍ସାହ ମଧ୍ୟ ସେଥିରେ ମିଶୁଥିଲା। ହାର୍ଡି ଥିଲେ ପାଶ୍ଚାତ୍ୟ ଗଣିତର ଶ୍ରେଷ୍ଠ ଓ ଉଚ୍ଚତମ ପରମ୍ପରାର ଜୀବନ୍ତ ପ୍ରତୀକ। ତାଙ୍କର ବୈଷୟିକ ଦକ୍ଷତା ଅତି ଶକ୍ତିଶାଳୀ ଥିଲା ଏବଂ ଇଂରେଜ ଓ ୟୁରୋପୀୟ ଗଣିତର ସବୁ କ୍ଷେତ୍ରରେ ତାଙ୍କର ବ୍ୟାପକ ଜ୍ଞାନ ରହିଥିଲା। ଏହାଠାରୁ ଅଧିକ କେଉଁ ଉପଦେଷ୍ଟାଠାରେ ରାମାନୁଜନ୍ ଆଶା କରିପାରି ନ ଥା'ନ୍ତେ। ହାର୍ଡି ଯେ ରାମାନୁଜନ୍‌ଙ୍କଠାରେ ଅବିଶ୍ୱସନୀୟ ମୌଳିକତା ଦେଖୁଥିଲେ ତାହା କାମ କରିଚାଲିବା ପାଇଁ ରାମାନୁଜନ୍‌ଙ୍କୁ ଅବାରିତ ପ୍ରେରଣା ଦେଉଥିଲା।

ହାର୍ଡିଙ୍କ ବିଷୟରେ ସି. ପି. ସ୍ନୋ ଥରେ କହିଥିଲେ, "... ଏକ ଚରିତ୍ର ଯାହା ଅତି ଉଲ୍ଲେଖନୀୟ ଭାବରେ ମଣିଷ ଜୀବନର ସଂକୀର୍ଣ୍ଣତାରୁ ମୁକ୍ତ ... ସବୁଠାରୁ ଉଦାର ମଣିଷ।" ଆଉ ଥରେ ସେ କହିଥିଲେ ଯେ ହାର୍ଡି ହେଉଛନ୍ତି ମୁଁ ଜାଣିଥିବା ଅନ୍ୟ ଯେ କୌଣସି ମଣିଷ ତୁଳନାରେ ପରଶ୍ରୀକାତରତାରୁ ଅଧିକ ମୁକ୍ତ। ଏକଥା ସତ ଯେ ଯଦିଓ ହାର୍ଡି ରାମାନୁଜନ୍‌ଙ୍କ ଗାଣିତିକ ପ୍ରତିଭାକୁ ନିଜର ଦକ୍ଷତା ତୁଳନାରେ ଉଚ୍ଚତର ବୋଲି ଭାବୁଥିଲେ, ରାମାନୁଜନ୍‌ଙ୍କ ସହିତ ତାଙ୍କ ସମ୍ପର୍କରେ ଈର୍ଷାର ତିଳେ ମାତ୍ର ସୂଚନା ଦେଖିବାକୁ ମିଳୁ ନ ଥିଲା। ଯଦି ବି କିଛି କ୍ଷଣସ୍ଥାୟୀ ଦୁଶ୍ଚିନ୍ତା ତାଙ୍କ ମନରେ ଆସୁଥାଏ ତାହା କେବେ ଜଣାପଡୁ ନ ଥିଲା। ସେ ସବୁବେଳେ ରାମାନୁଜନ୍‌ଙ୍କର ଦ୍ୱିଧାହୀନ ସାଥୀ ଓ ସମର୍ଥକ ଭାବରେ ଜଣାଥିଲେ। ଜୀବନ ସାରା ସେ ରାମାନୁଜନ୍‌ଙ୍କର ଓ ତାଙ୍କ ପ୍ରତିଭାର ଗୁଣଗାନ କରୁଥିଲେ। ରାମାନୁଜନ୍‌ଙ୍କ ବିଚକ୍ଷଣତାକୁ ଚିହ୍ନିଲାପରେ ତାକୁ ସେ ତା'ର ଚରମ ସୀମାରେ ପହଞ୍ଚାଇବାକୁ ଚାହୁଁଥିଲେ।

ଏବଂ ତାହା ହିଁ ଏକ ସମସ୍ୟା ଥିଲା।

ଅନେକ ଦୃଷ୍ଟିରୁ ହାର୍ଡି ଥିଲେ ରାମାନୁଜନ୍‌ଙ୍କର ସବୁଠାରୁ ଭଲ ଓ ନିଷ୍ପାପର ସାଙ୍ଗ। ରାମାନୁଜନ୍‌ଙ୍କ ପ୍ରତି ସେ ଥିଲେ ଉଦାର, ବିଶ୍ୱସ୍ତ ଓ ଦୟାଶୀଳ। ତଥାପି ଅନ୍ତତଃ ଗୋଟିଏ ବାଟରେ ଅନିଚ୍ଛାକୃତ ଭାବରେ ସେ ବୋଧହୁଏ ରାମାନୁଜନ୍‌ଙ୍କର କ୍ଷତି କରୁଥିଲେ। ରାମାନୁଜନ୍‌ଙ୍କଠାରୁ ଉଚ୍ଚ ଆଶା ରଖିଥିବାରୁ ଏବଂ ତାଙ୍କର ସାମର୍ଥ୍ୟ ଅନୁସାରେ ରାମାନୁଜନ୍‌ଙ୍କୁ ଫଳବତୀ ହେବାର ଦେଖିବାର ଇଚ୍ଛାରୁ ସେ ଅଧିକରୁ ଅଧିକ କାମ କରିବା ପାଇଁ ରାମାନୁଜନ୍‌ଙ୍କୁ ଉତ୍ସାହିତ କରିଚାଲିଲେ। ଏବଂ ତାହା କାମ ପ୍ରତି ରାମାନୁଜନ୍‌ଙ୍କ ଆସକ୍ତିକୁ ବଢ଼ାଇ ଚାଲିଲା।

ନିଜ ପାଇଁ ରାମାନୁଜନ୍ ଯେଉଁ ବିପଦ ଡାକି ଆଣୁଥିଲେ ସେଥିରୁ ହାର୍ଡି ତାଙ୍କୁ ନିବର୍ତ୍ତାଇ ପାରି ନ ଥିଲେ, ବରଂ ସେହି ବିପଦ ଆଡ଼କୁ ଆଗେଇବାରେ ସେ ସହାୟକ ହୋଇଥିଲେ।

## 4. ବଢ଼ନ୍ତା ବିପଦ

ବୌଦ୍ଧିକ ଦୃଷ୍ଟିରୁ ହାର୍ଡି ଜଣେ ସମ୍ଭ୍ରାନ୍ତ ବ୍ୟକ୍ତି ଥିଲେ। ଉଚ୍ଚ ସଫଳତାକୁ ସେ ସମ୍ମାନ ଦେଉଥିଲେ ଏବଂ ଅନ୍ୟ ସବୁକୁ ଉପେକ୍ଷା କରୁଥିଲେ। ଗଣିତଜ୍ଞ ଭାବରେ ରାମାନୁଜନ୍ଙ୍କ ପାଇଁ ସେ ସବୁକିଛି ଥିଲେ। କିନ୍ତୁ ସେ ଜଣେ କଠୋର ଓ ଅନାସକ୍ତ ବ୍ୟକ୍ତି ଥିଲେ ଯିଏ ରାମାନୁଜନ୍ଙ୍କଠାରୁ ସବୁବେଳେ କେବଳ ସର୍ବୋତ୍କୃଷ୍ଟ ଅବଦାନ ଚାହୁଁଥିଲେ। କେମ୍ବ୍ରିଜରେ ପ୍ରାକ୍‌ସ୍ନାତକ ପଢ଼ା ସାରି ଜଣେ ବିଶିଷ୍ଟ ଗଣିତଜ୍ଞ ହୋଇଥିବା ଜେ. ସି. ବର୍କିଲ୍ କହୁଥିଲେ ଯେ ହାର୍ଡିଙ୍କୁ ଦେଖିଲେ ତାଙ୍କ ମନରେ ଭୟ ଆସେ। ଅନ୍ୟ ପକ୍ଷରେ ଲିଟଲ୍‌ଉଡ୍‌ଙ୍କୁ ସେମାନେ ଜଣେ ସାଧାରଣ ଓ ମେଳାପି ମଣିଷ ଭାବରେ ଦେଖୁଥିଲେ। ଭୋଜନାଳୟରେ ଲିଟଲ୍‌ଉଡ୍ ହାଲୁକା ଭାବରେ ଗପି ଚାଲୁଥିଲେ, କିନ୍ତୁ କଥାବାର୍ତ୍ତା କଲାବେଳେ ହାର୍ଡି ଏକ ଉଚ୍ଚତର ସ୍ତରରେ ରହିବାକୁ ଚାହୁଁଥିବା ଭଳି ମନେ ହେଉଥିଲା।

ହଙ୍ଗେରିର ବିଶିଷ୍ଟ ଗଣିତଜ୍ଞ ଜର୍ଜ ପୋଲ୍ୟା ଗୋଟିଏ ସମ୍ଭାବନାପୂର୍ଣ୍ଣ ଗାଣିତିକ ଅବଧାରଣାକୁ ଏଡ଼ାଇ ଯାଇଥିଲେ। ସେହି କଥାକୁ ନାପସନ୍ଦ କରି ହାର୍ଡି ଯେଉଁ ପ୍ରତିକ୍ରିୟା ଦେଖାଇଥିଲେ ତାହା ଥିଲା ଏହିପରି - ହାର୍ଡି, ପୋଲ୍ୟା ଓ ଅନ୍ୟ ଜଣେ ଗଣିତଜ୍ଞ ଥରେ ଚିଡ଼ିଆଖାନାକୁ ବୁଲିଯାଇଥିଲେ। ଯନ୍ତାରେ ଥିବା ଗୋଟିଏ ଭାଲୁ ଯନ୍ତାର ତାଲାକୁ ଶୁଙ୍ଘିଲା ଓ ତାକୁ ପଞ୍ଝାରେ ବାଡ଼େଇ ଗଁ ଗଁ ହେଲା ଏବଂ ବୁଲିପଡ଼ି ଫେରି ଚାଲିଗଲା। ହାର୍ଡି କହିଲେ, "ଭାଲୁଟି ପୋଲ୍ୟାଙ୍କ ପରି। ତା'ର ଚମତ୍କାର ଚିନ୍ତନ ରହିଛି, କିନ୍ତୁ ସେ ତାକୁ କାମରେ ପରିଣତ କରୁନାହିଁ।"

ବିନା ବିଚାରରେ ସହାନୁଭୂତି ପାଇବା ପାଇଁ ହାର୍ଡିଙ୍କ ପାଖକୁ ଯିବାରେ କିଛି ଲାଭ ନ ଥିଲା। ଗଣିତଜ୍ଞ ଲୁଇସ୍ ଜେ. ମୋର୍ଡେଲ୍ ଥରେ ହାର୍ଡିଙ୍କ ପାଖରେ ଅଭିଯୋଗ କରିଥିଲେ ଯେ ଏକ ଗଣିତ ପତ୍ରିକାର ସମ୍ପାଦକ ତାଙ୍କ ନିବନ୍ଧରେ ଥିବା ଛୋଟ ଛୋଟ ଶୈଳୀଗତ ତ୍ରୁଟି ପାଇଁ ତାଙ୍କୁ ହଇରାଣ କରୁଛନ୍ତି। ହାର୍ଡି କିନ୍ତୁ ତାଙ୍କୁ ସହାନୁଭୂତି ଦେଖାଇ ନ ଥିଲେ, ବରଂ କହିଥିଲେ, "ତାହା ମୁଁ ଜାଣେ। ତମ ନିବନ୍ଧର ପ୍ରୁଫ୍ ଦେଖିବାରେ ମୁଁ ତିନି ଘଣ୍ଟାରୁ ବେଶି କଟାଇଛି ଏବଂ ଗୋଟିଏ ପୃଷ୍ଠାରେ ତିରିଶରୁ ଅଧିକ ଭୁଲ ଦେଖିଛି। ସେଗୁଡ଼ିକ ମାମୁଲି ହୋଇପାରେ, ହୁଏତ ଏତେ ମାମୁଲି ଯେ ତାହା ତୁମ ଆଖିରେ ପଡ଼ିନାହିଁ। କିନ୍ତୁ ସେଥିପାଇଁ ମୋର ଗୋଟିଏ ସକାଳର କାମ ନଷ୍ଟ ହେଲା।" ହାର୍ଡିଙ୍କର ଏଗାର ପୃଷ୍ଠା ଲମ୍ବା ଚିଠା ଏହିଭଳି ବିରକ୍ତିରେ ଭରିଥିଲା। ତାଙ୍କର କହିବାର ମୁଖ୍ୟ କଥା ଥିଲା - ନିଜ ପ୍ରତି ଏତେ ଉଦାର ହୁଅ ନାହିଁ।

ସଂକ୍ଷେପରେ କହିଲେ ହାର୍ଡି ଥିଲେ ଜଣେ କଠୋର କାମ ଆଦାୟକାରୀ। ତାଙ୍କର ଆଶା ଥିଲା ବିଶାଳ ଏବଂ କାମର ମାନ ଥିଲା ଉଚ୍ଚ ସ୍ତରର। ରାମାନୁଜନ୍ ତାଙ୍କଠାରୁ ଉତ୍ସାହ ପାଉଥିଲେ। ଯେଭଳି ବନ୍ଧୁତ୍ୱ ଦେଖାଇବା ପାଇଁ ହାର୍ଡି ସକ୍ଷମ ଥିଲେ ତାହା ମଧ୍ୟ ସେ ପାଉଥିଲେ। କିନ୍ତୁ ବିନା ସମାଲୋଚନାରେ କେବଳ ସହାନୁଭୂତି ସେ ପାଉ ନ ଥିଲେ।

ରାମାନୁଜନ୍ଙ୍କ ପାଖକୁ ତାଙ୍କର ପ୍ରଥମ ଚିଠିରୁ ହାର୍ଡି ପ୍ରମାଣ ଚାହିଁଥିଲେ ଏବଂ ରାମାନୁଜନ୍

ଇଂଲଣ୍ଡରେ ପହଞ୍ଚିବା ପରେ ହାର୍ଡିଙ୍କର ଦାବି କମି ନ ଥିଲା। ରାମାନୁଜନ୍ ଥରେ ଡାକ୍ତରଖାନାରେ ଥିବାବେଳେ ହାର୍ଡି ତାଙ୍କ ପାଖକୁ କାମ ବିଷୟରେ ଗୋଟିଏ ଚିଠି ପଠାଇଥିଲେ। ସେଥିରେ କାମ ପାଇଁ ବ୍ୟଗ୍ରତା ଓ ବନ୍ଧୁଙ୍କର ସ୍ୱାସ୍ଥ୍ୟ ଭିତରେ ତାଙ୍କର ଦ୍ୱନ୍ଦ୍ୱ ଦେଖାଯାଉଥିଲା - "ଯଦି ଆଉ କିଛି ଫଳ ବାହାରେ ତାହେଲେ ମୁଁ ପୁଣି ଲେଖିବି। ତୁମେ ସୁସ୍ଥ ହୋଇ ଏଠାକୁ ଫେରି ଆସିଥିଲେ ଭଲ ହୋଇଥା'ନ୍ତା, କାମ କରିବା ପାଇଁ କିଛି ଭଲ ସମସ୍ୟା ମିଳିଛି। କିନ୍ତୁ ସେଭଳି କଷ୍ଟ ବିଷୟରେ ମୁଣ୍ଡ ଖେଳାଇବା ପାଇଁ ତୁମେ ଯଥେଷ୍ଟ ଭଲ ଅବସ୍ଥାରେ ଅଛ କି ନାହିଁ ତାହା ମୁଁ ଜାଣେନାହିଁ... ବର୍ତ୍ତମାନ କିନ୍ତୁ ତୁମକୁ ଡାକ୍ତରଙ୍କ କଥା ମାନି ଚଳିବାକୁ ହେବ। ତଥାପି ଏହି ସବୁ ବିଷୟରେ ଟିକିଏ ଭାବିପାରିଲେ ଭଲ ହୁଅନ୍ତା, ଏହା ଖୁବ୍ ଉଦ୍ଦୀପନାମୂଳକ।" ଚିଠିରେ ଏହା ସ୍ପଷ୍ଟ ଭାବରେ ଲେଖା ନ ହୋଇଥିଲେ ମଧ୍ୟ ତା'ର ସାର କଥା ଥିଲା - ତୁମ ପାଇଁ କାମ ଅପେକ୍ଷା କରି ରହିଛି।

ରାମାନୁଜନ୍‌ଙ୍କ ମନର କେଉଁ ଅଂଶ ଯଦି ଆରାମ ଖୋଜୁଛି, ତାଙ୍କର ପ୍ରିୟ ଦାର୍ଶନିକ ଚିନ୍ତାରେ ଆଗେଇବାକୁ ଚାହୁଁଛି, ଇଂରେଜ ପଦାର୍ଥ ବିଜ୍ଞାନୀ ଓଲିଭର୍ ଲଜ୍‌ଙ୍କର ରହସ୍ୟବାଦ ବିଷୟରେ ଅଧିକ ଜାଣିବାକୁ ଚାହୁଁଛି, ଲଣ୍ଡନ ଯାଇ ଚିଡ଼ିଆଖାନାରେ ବୁଲିବାକୁ ଚାହୁଁଛି, କିମ୍ବା ଅନ୍ୟ କେଉଁ କାମରେ ଗଣିତଠାରୁ ଦୂରରେ ରହିବାକୁ ଚାହୁଁଛି, ତେବେ ହାର୍ଡିଙ୍କଠାରୁ ତାହା ସମର୍ଥନ ପାଉ ନ ଥିଲା।

ହାର୍ଡିଙ୍କର ଅର୍ଜି ପ୍ରତି ରାମାନୁଜନ୍‌ଙ୍କ କାମରେ ବୁଡ଼ିରହିବା ପ୍ରବୃତ୍ତି ସହାନୁଭୂତିଶୀଳ ଥିଲା। ହାର୍ଡିଙ୍କ ପାଖକୁ ସେ ଲେଖିଥିଲେ ଯେ ଡାକ୍ତରଖାନାଟି ଅତି ଥଣ୍ଡା, କିନ୍ତୁ,

> ଗାଧୁଆଘର ବେଶ୍ ଭଲ ଓ ଉଷୁମ। ପ୍ରତିଦିନ ମୁଁ କାଗଜ କଲମ ଧରି ଗାଧୁଆଘରେ ଘଣ୍ଟାଏ ଖଣ୍ଡେ କଟାଇବି ଏବଂ ଅଳ୍ପଦିନ ଭିତରେ ଦୁଇ ତିନିଟି ନିବନ୍ଧ ଆପଣଙ୍କ ପାଖକୁ ପଠାଇବି। ଏକଥା ଆଗରୁ ମୋ ମନକୁ ଆସି ନ ଥିଲା, ନହେଲେ ଏଭିତରେ ମୁଁ କିଛି ଲେଖି ସାରିଥା'ନ୍ତି। ସପ୍ତାହେ ଖଣ୍ଡେ ଭିତରେ ମୋର ଡାକ୍ତର ହୁଏତ ଅଭିଯୋଗ କରିପାରନ୍ତି ଯେ ମୁଁ ସବୁଦିନ ଗାଧୋଉଛି। କିନ୍ତୁ ମୁଁ ଆଗରୁ କଥା ଦେଉଛି ଯେ ମୁଁ ଗାଧୋଇବାକୁ ଯାଉନାହିଁ, ଲେଖିବାକୁ ଯାଉଛି।

ଅସୁସ୍ଥ ଅବସ୍ଥାରେ ଡାକ୍ତରଖାନାରେ ପଡ଼ିଥିବା ରାମାନୁଜନ୍ ଗଣିତ କରିପାରୁ ନ ଥିବାରୁ ହାର୍ଡିଙ୍କ ପାଖରେ ଦୁଃଖପ୍ରକାଶ କରୁଛନ୍ତି!

1909 ମସିହାରେ ବିବାହ କଲା ପରେ ରାମାନୁଜନ୍ ବିଭିନ୍ନ ସାମାଜିକ ସମ୍ପର୍କ ଯୋଡ଼ିଥିଲେ। ଏବେ କିନ୍ତୁ ଇଂଲଣ୍ଡରେ ରହୁଥିବାରୁ ସେସବୁ ପ୍ରାୟ ଛିଣ୍ଡି ଯାଇଥିଲା। 1917 ମସିହାର ଆରମ୍ଭ ବେଳକୁ ସେ ତାଙ୍କ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଦିଗରେ ଏକମୁହାଁ ହୋଇ ଆଗେଇବାକୁ ଲାଗିଲେ ଏବଂ ଗଣିତ ଛଡ଼ା ଅନ୍ୟ କିଛି ପ୍ରତି ଧ୍ୟାନ ଦେଲେନାହିଁ। କେମ୍ବ୍ରିଜରେ ତିନିବର୍ଷ ରହିଲା ପରେ ତାଙ୍କ ଜୀବନରେ କେବଳ ରହିଥିଲେ ହାର୍ଡି, ଘରର ଚାରି କାନ୍ଥ ଓ କାମ। ବେଳେ ବେଳେ ସେ ତିରିଶ ଘଣ୍ଟା ଧରି ନିରବଚ୍ଛିନ୍ନ ଭାବରେ କାମ କରିଚାଲିବେ ଏବଂ ତା'ପରେ କୋଡ଼ିଏ ଘଣ୍ଟା ଧରି ଶୋଇବେ। ନିୟମିତତା, ସନ୍ତୁଳନ ଓ ବିଶ୍ରାମ ତାଙ୍କ ଜୀବନରୁ ଉଭେଇଗଲା।

ଗଣିତ ସାଧନା ପାଇଁ ନିଜର ସ୍ୱାସ୍ଥ୍ୟକୁ ବଳି ଦେବାରେ ରାମାନୁଜନ୍ ପ୍ରଥମ ବ୍ୟକ୍ତି ନ ଥିଲେ। ଜାକୋବି ଗଣିତ କାମରେ ଏତେ ବୁଡ଼ି ରହୁଥିଲେ ଯେ ତାଙ୍କର ଜଣେ ସାଙ୍ଗ ଚିନ୍ତିତ ହୋଇ ଆଶଙ୍କା ପ୍ରକାଶ କଲେ ଯେ ସେ ଏପରି କଲେ ଅସୁସ୍ଥ ହୋଇପଡ଼ିବେ। ଜାକୋବିଙ୍କ ଉତ୍ତର ଥିଲା, "ଏକଥା

ସତ ଯେ ଅତ୍ୟଧିକ କାମ ଯୋଗୁଁ ମୁଁ କେବେ କେବେ ମୋର ସ୍ୱାସ୍ଥ୍ୟ ପ୍ରତି ବିପଦ ଆଣିଛି। କିନ୍ତୁ ସେଥିରେ ଅସୁବିଧା କ'ଣ? ଯେପରି ବନ୍ଧାକୋବିର ଅନୁଭବ ଶକ୍ତି ନାହିଁ, ଦୁଶ୍ଚିନ୍ତା ନାହିଁ। କିନ୍ତୁ ତା'ର ସେହି ନିଖୁଣ ଅବସ୍ଥାରୁ ସେ ପାଉଛି କ'ଣ?'' ଜାକୋବିଙ୍କ ଆଗରୁ ନିଉଟନ୍ ମଧ୍ୟ ସେହିପରି ଥିଲେ। ତାଙ୍କ ବିଷୟରେ ଇ. ଟି. ବେଲ୍ କହିଥିଲେ, "ତାଙ୍କର ଶ୍ରେଷ୍ଠ କାମ ପାଇଁ ନିଜକୁ ଉତ୍ସର୍ଗ କରିଥିଲା ବେଳେ ନିଉଟନ୍ ଭୁଲି ଯାଉଥିଲେ ଯେ ତାଙ୍କର ଦେହଟିଏ ଅଛି ଯାହାର ଖାଦ୍ୟ ଓ ନିଦ ଦରକାର। ଖାଇବାକୁ ସେ ଭୁଲି ଯାଉଥିଲେ ବା ଉପେକ୍ଷା କରୁଥିଲେ।''

ରାମାନୁଜନ୍‌ଙ୍କ ପାଇଁ ହାର୍ଡି ଥିଲେ ଜଣେ ବୌଦ୍ଧିକ ସହଚର ଯାହା ସେ ଆଗରୁ ପାଇ ନ ଥିଲେ। କେମ୍ବ୍ରିଜର ପଥର କୋଠାବାଡ଼ି, କୋଳାହଳମୁକ୍ତ ପ୍ରାଙ୍ଗଣ ଓ ଉନ୍ନତ ପୁସ୍ତକାଳୟ ରୂପରେ ପାଶ୍ଚାତ୍ୟ ଜଗତର ମୂଲ୍ୟବାନ ସମ୍ପତ୍ତି ତାଙ୍କ ପାଖରେ ରହିଥିଲା। ତଥାପି ଭାରତରେ ତାଙ୍କୁ ଯାହା ଉଜ୍ଜୀବିତ କରି ରଖୁଥିଲା ତାହା ଏବେ ସେ ଅବଚେତନ ଭାବରେ ହରାଇ ବସିଥିଲେ। ତାହା ଥିଲା ତାଙ୍କ ପରିବାର। କଳା ଓ ଚିହ୍ନା ମୁହଁ, ମନଖୋଲା ଭାରତୀୟ ହସ ଏବଂ ତାମିଲ ଭାଷାର ଧ୍ୱନି। ଖାଦ୍ୟ ରାନ୍ଧିବା ପାଇଁ ବା କାମ କଲା ବେଳେ ହାତରେ ଭାତ ଗୁଣ୍ଡା ରଖିଦେବା ପାଇଁ ତାଙ୍କ ମା' ବା ଜାନକୀ ଏଠାରେ ନ ଥିଲେ। ଶୋଇବା ପାଇଁ ତାଗିଦ କରିବାକୁ କେହି ନ ଥିଲେ। କାମରେ ଭାରାକ୍ରାନ୍ତ ଦେହ ଓ ମନକୁ ହାଲୁକା କରିବା ପାଇଁ କାହାରି ଅନ୍ତରଙ୍ଗ ସାନ୍ନିଧ୍ୟ ନ ଥିଲା। ବର୍ଷାରୁ ଚାଲି ଆସିବାକୁ କହିବା ଭଳି ଅତ୍ୟଧିକ କାମ ନ କରିବା ପାଇଁ ଉପଦେଶ ଦେବାକୁ କେହି ନ ଥିଲେ। ଦ୍ୱନ୍ଦ୍ୱରେ ପଡ଼ିଥିବା ଏକ ଜାତିଆ ଘୋଡ଼ା ଭଳି ସେ ଥିଲେ ଯାହାର ଯତ୍ନ ନେବା ପାଇଁ କେହି ନ ଥିଲେ। ନେଭାସା ଜାହାଜରେ ପାଦ ଦେବା ସମୟରୁ ସେ ଏଭଳି ସମସ୍ତଙ୍କୁ ଛାଡ଼ିଆସିଥିଲେ।

ବୌଦ୍ଧିକ ଦୃଷ୍ଟିରୁ ରାମାନୁଜନ୍ ତାଙ୍କର ଆସ୍ଥାନ ପାଇଥିଲେ। କିନ୍ତୁ କେବଳ ମନକୁ ନେଇ ସେ ଗଢ଼ାହୋଇ ନ ଥିଲେ, ତାଙ୍କର ରକ୍ତମାଂସର ଅନୁଭବୀ ଦେହଟିଏ ମଧ୍ୟ ଥିଲା। ସେହି ଦେହର ଅନେକ ଚାହିଦା ରହିଥିଲା ଯେଉଁ ବିଷୟରେ ତାଙ୍କ ମନ ସଚେତନ ନ ଥିଲା।

୧୮୭୦ ମସିହାରେ ଇଂରେଜ ବିଶ୍ୱବିଦ୍ୟାଳୟରେ ଚାରି ବର୍ଷ ଶୀର୍ଷକ ଗୋଟିଏ ଛୋଟ ବହି ମାନ୍ଦ୍ରାଜରେ ପ୍ରକାଶିତ ହୋଇଥିଲା। ଭାରତୀୟ ଛାତ୍ରମାନଙ୍କ ପାଇଁ ଲେଖାଯାଇଥିବା ସେହି ବହିର ଲେଖକ ଥିଲେ ପ୍ରେସିଡେନ୍‌ସି କଲେଜର ତର୍କ ଓ ନୀତିଶାସ୍ତ୍ର ଅଧ୍ୟାପକ ଏସ୍. ସତ୍ୟନାଧନ୍। କେମ୍ବ୍ରିଜର କର୍ପସ୍ କ୍ରିଷ୍ଟି କଲେଜର ଛାତ୍ର ଭାବରେ ଲେଖକଙ୍କର ଅନୁଭୂତି ଉପରେ ଏହା ଆଧାରିତ ଥିଲା ଏବଂ କେମ୍ବ୍ରିଜ ଜୀବନର ଏକ ବାସ୍ତବ ଚିତ୍ର ଦେଉଥିବାର ଦାବି ରଖୁଥିଲା। ଭାରତୀୟ ଛାତ୍ରମାନେ ସେହି ଜୀବନରୁ କ'ଣ ଶିଖିପାରିବେ ତା'ର ସୂଚନା ମଧ୍ୟ ସେ ବହିରେ ରହିଥିଲା। ବହିର ଗୋଟିଏ ଜାଗାରେ କ୍ରୀଡ଼ା ଓ ଅବସର ବିନୋଦନ ଉପରେ ଇଂରେଜମାନଙ୍କର ଜୋର ବିଷୟରେ କୁହାଯାଇଥିଲା -

> ଜଣେ କେମ୍ବ୍ରିଜବାସୀ ଦିନକୁ ଦୁଇ ଘଣ୍ଟାର ଖେଳକୁଦ କରିବାକୁ କେବେ ଭୁଲେନାହିଁ। ପାଠ ପ୍ରତି ଯେତେ ଆଗ୍ରହୀ ହୋଇଥିଲେ ବି କୌଣସି ଛାତ୍ରକୁ ଅପରାହ୍ନରେ କୋଠରି ଭିତରେ ଦେଖିବାକୁ ମିଳେନାହିଁ। ଯିଏ ସେପରି କରେ ଓ ସାରା ଦିନ ବହି ଧରି ବସେ, ତାକୁ ଅନ୍ୟମାନେ ଅସ୍ୱାଭାବିକ ଭାବରେ ଦେଖନ୍ତି ଓ ତାଚ୍ଛଲ୍ୟ କରନ୍ତି। ସୁସ୍ଥ ଦେହରେ ସୁସ୍ଥ ମନ - ଏହା ହେଉଛି ତାଙ୍କର ସାର୍ବତ୍ରିକ

ମନ୍ତ୍ର। ମାନସିକ ବିକାଶ ଭଳି ଦୈହିକ ବିକାଶ ଦିଗରେ ସମାନ ଧ୍ୟାନ ଦେଉଥିବା ସେହି ଇଂରେଜ ଯୁବକମାନେ ଶିକ୍ଷାର୍ଥୀ ଭାବରେ କୌଣସି ଦୃଷ୍ଟିରୁ ପଛୁଆ ହୋଇ ନ ଥା'ନ୍ତି। ଯେଉଁମାନେ ହାଲିଆ ନ ହୋଇ ଦିନକୁ ବାର ମାଇଲ ଚାଲନ୍ତି ବା ଷୋହଳ ମାଇଲ ନୌକାଚାଳନ କରିପାରନ୍ତି, ସେମାନେ ପରିଶ୍ରମ କରିବାରେ ଜର୍ମାନ ଛାତ୍ରମାନଙ୍କର ସମକକ୍ଷ ହୋଇଥା'ନ୍ତି ଏବଂ ଏହି ବଳିଷ୍ଠ ଯୁବକମାନେ ମଧ୍ୟ ରାଙ୍ଗ୍‌ଲର୍ ଓ ପ୍ରାଚୀନ ଶାସ୍ତ୍ର ବିଶାରଦ ହୁଅନ୍ତି।

ଯଦି ଗୋଟିଏ ମାତ୍ର କଥା ଭାରତୀୟ ଛାତ୍ରମାନେ ଇଂରେଜ ଛାତ୍ରମାନଙ୍କଠାରୁ ଶିଖିବାର ଥାଏ ତାହା ହେବ - ମନର ବିକାଶ ଭଳି ଦେହର ବିକାଶ ଦିଗରେ ଯଥେଷ୍ଟ ଧ୍ୟାନ ଦେବା ଦରକାର।

କହିବା ବାହୁଲ୍ୟ ଯେ ରାମାନୁଜନ୍ ଏହି ଉପଦେଶକୁ ମାନୁ ନ ଥିଲେ। ଖେଳ ପ୍ରତି ତାଙ୍କର କୌଣସି ଆଗ୍ରହ ନ ଥିଲା; ହାର୍ଡି ଯଦି କ୍ରିକେଟ ଖେଳ ପ୍ରତି ତାଙ୍କୁ ଆକୃଷ୍ଟ କରିବାକୁ ଚାହିଁଥା'ନ୍ତି, ତେବେ ତାହା ସଫଳ ହୋଇ ନ ଥିଲା। ସେ ସବୁବେଳେ ମୋଟା ଥିଲେ ଏବଂ ନିଜର ଦେହ ବିଷୟରେ ଧ୍ୟାନ ନ ଦେଇ ବସି ରହି କାମରେ ଲାଗୁଥିଲେ। ତଥାପି ଏବେଯାଏଁ ସେ ସତ୍ୟନାଧନ୍‌ଙ୍କ ବର୍ଣ୍ଣିତ ସାଧାରଣ ଭାରତୀୟ ଛାତ୍ର ରୂପକୁ ଆସି ନ ଥିଲେ। ସତ୍ୟନାଧନ୍‌ଙ୍କର ସେହି ବର୍ଣ୍ଣନା ଥିଲା, "ପାଠ ପଢ଼ି ପଢ଼ି ବିରସ ଓ କ୍ଷୟରୋଗଗ୍ରସ୍ତ ଭଳି ଦିଶୁଥିବା ବ୍ୟକ୍ତି ଯାହାର କିଛି ବଳ ନ ଥିବା ଭଳି ମନେ ହେଉଥାଏ ଏବଂ ଯିଏ ନିଜ ବୟସର ଦୁଇଗୁଣ ବୟସର ହୋଇଥିବା ଭଳି ଲାଗୁଥାଏ। ଯିଏ ବିଭିନ୍ନ ଶ୍ରେଣୀକୁ ଦଉଡ଼ିବା ବଦଳରେ ଡାକ୍ତରଖାନାରେ ରହିବା ପାଇଁ ବେଶି ଯୋଗ୍ୟ ମନେହୁଏ।"

ଅନେକ ଭାରତୀୟ ଛାତ୍ର ଡାକ୍ତରଖାନାରେ ପଡୁଥିଲେ ଏବଂ ଅକ୍ସଫୋର୍ଡର ଜଣେ ଲୋକ କହୁଥିଲେ ଯେ ଦ୍ୱିତୀୟ ବର୍ଷର ଶେଷ ଆଡ଼କୁ ଭାରତୀୟ ଛାତ୍ରମାନଙ୍କର ସ୍ୱାସ୍ଥ୍ୟ ଭାଙ୍ଗିଯାଏ। ଏହାର ସମ୍ଭାବ୍ୟ କାରଣ ଭାବରେ କୁହାଯାଇଥିଲା ଯେ ଭାରତୀୟମାନେ ଖରା ପାଗ ଓ ମସଲାଯୁକ୍ତ ଖାଦ୍ୟ ସହିତ ଅଭ୍ୟସ୍ତ ଥା'ନ୍ତି। ଇଂଲଣ୍ଡର ବିଦେଶୀ ପରିବେଶ ସହିତ ନିଜକୁ ଖାପ ଖୁଆଇବାର ଚେଷ୍ଟାରେ ଦୁର୍ବଳ ପିଲାମାନେ ଅସମର୍ଥ ହୁଅନ୍ତି, ତେଣୁ ଅସୁସ୍ଥ ହୋଇପଡ଼ନ୍ତି। ଇଂଲଣ୍ଡରେ ପଢ଼ିବାକୁ ଆସୁଥିବା ଭାରତୀୟମାନେ ସେଠାର ଜଳବାୟୁଜନିତ ବିପଦକୁ ସାମନା କରିବାକୁ ବାଧ୍ୟ ହୁଅନ୍ତି।

ଏହି ବିଷୟରେ ଏଡିନ୍‌ବରୋ ବିଶ୍ୱବିଦ୍ୟାଳୟର ଭାରତୀୟ ଛାତ୍ରାବାସର ନିର୍ଦ୍ଦେଶକ କହିଥିଲେ, "ଭାରତୀୟ ଛାତ୍ରମାନଙ୍କର ସ୍ୱାସ୍ଥ୍ୟ ସାଧାରଣତଃ ଭଲ ରହେ। ତେବେ ଦକ୍ଷିଣ ଭାରତର ପିଲାମାନେ କିଛି ବିଶେଷ ଅସୁବିଧାରେ ପଡ଼ନ୍ତି। ଅତି ଥଣ୍ଡା ଯୋଗୁ ସେମାନେ ଯକ୍ଷ୍ମା ଓ ଅନ୍ୟ ଛାତି ରୋଗର ଶିକାର ହୁଅନ୍ତି।" ଯକ୍ଷ୍ମା ରୋଗର ପ୍ରକୋପ ବଢ଼ିବାରେ ସାହାଯ୍ୟ କରୁଥିବା ଅନ୍ୟ ଏକ କାରଣ ଭାବରେ କୁହାଯାଇଥିଲା ଯେ ଧର୍ମବିଶ୍ୱାସକୁ ଅଧିକ ମାନୁଥିବା ପିଲାମାନେ ତାଙ୍କର ଭାରତୀୟ ଖାଦ୍ୟକୁ ବଦଳାଇବାକୁ ରାଜି ହୁଅନ୍ତିନାହିଁ, କିନ୍ତୁ ସେହି ଖାଦ୍ୟ ଏଠାର ପରିସ୍ଥିତି ପାଇଁ ଉପଯୁକ୍ତ ହୁଏନାହିଁ।

ରାମାନୁଜନ୍ ତାଙ୍କର ଧର୍ମସମ୍ମତ ଖାଦ୍ୟ ହିଁ ଖାଉଥିଲେ ଏବଂ ଆସିବା ଦିନଠାରୁ ତାହା ତାଙ୍କ ପାଇଁ ସମସ୍ୟା ସୃଷ୍ଟି କରୁଥିଲା। ଯୁଦ୍ଧ ଯୋଗୁ ଏହା ଆହୁରି ଗୁରୁତର ହୋଇପଡ଼ିଲା। ଇଂଲଣ୍ଡରେ ପହଞ୍ଚିବାର ଅଳ୍ପଦିନ ପରେ ସେ ଜଣେ ସାଙ୍ଗଙ୍କ ପାଖକୁ ଦେଇଥିବା ଚିଠିରେ ଅଭିଯୋଗ କରିଥିଲେ, "ଏଠାରେ ଉପଯୁକ୍ତ ଖାଦ୍ୟ ମିଳିବାରେ ଅସୁବିଧା ହେଉଛି। ତେବେ ଭଲ କ୍ଷୀର ଓ ଫଳ ମିଳୁଛି, ନ

ହେଲେ ଆହୁରି ବେଶି ଅସୁବିଧା ଭୋଗିବାକୁ ହୁଅନ୍ତା। ଏବେ ମୁଁ କିଛି ଖାଦ୍ୟ ନିଜେ ରାନ୍ଧିବାକୁ ସ୍ଥିର କରିଛି ଏବଂ ସେଥିପାଇଁ ଦରକାରୀ ଜିନିଷ ପଠାଇବାକୁ ଘରକୁ ଲେଖିଛି।'' ନାରାୟଣ ଆୟାର ପ୍ରତି ମାସରେ ତାଙ୍କ ପାଖକୁ ଟିଣ ଡବାରେ ଚାଉଳ ଚୂନା ପଠାଉଥିଲେ। ଅନ୍ୟମାନେ ମସଲା ଓ ଆଚାର ପଠାଉଥିଲେ।

ଜାନକୀ ମନେପକାନ୍ତି ଯେ ଭାରତରେ ଥିଲାବେଳେ ରାମାନୁଜନ୍ ବେଳେ ବେଳେ ହଠାତ୍ ଖାଇବା ବନ୍ଦ କରିଦେବେ ବା ତର ତର ହୋଇ ଖାଇବା ସାରିଦେବେ ଓ ମନକୁ ଆସିଥିବା ଗଣିତ କାମରେ ଲାଗିଯିବେ। ଖାଇବାଟା ସେଠାରେ ଏତେ ଗୁରୁତ୍ୱପୂର୍ଣ୍ଣ ମନେହେଉ ନ ଥିଲା। କିନ୍ତୁ ଇଂଲଣ୍ଡରେ ନିଜେ ରାନ୍ଧିବାର କାମ ଏକ ବୋଝ ହୋଇପଡ଼ିଥିଲା। ସବୁ କିଛି ମୂଳରୁ କରିବା ପାଇଁ ସମୟ ଲାଗୁଥିଲା ଏବଂ ଗଣିତର ବଡ଼ ବଡ଼ ସମସ୍ୟାକୁ ଛାଡ଼ି ରାନ୍ଧିବାରେ ସମୟ ଦେବା ତାଙ୍କ ପାଇଁ ବଡ଼ ଦୁଃଖର କଥା ଥିଲା। ନେଭିଲ୍‌ଙ୍କ ସ୍ତ୍ରୀ ଏଲିସ୍ କହନ୍ତି ଯେ ସେଥିପାଇଁ ସେ ଦିନେ ବା ଦୁଇ ଦିନରେ ଥରେ ରାନ୍ଧୁଥିଲେ, ତା ମଧ୍ୟ ଅତି ସକାଳ ଭଳି ଅଖାଡୁଆ ସମୟରେ।

ରାମାନୁଜନ୍ ଏହାର ଏକ ସରଳ ସମାଧାନ ବାହାର କଲେ। ତାହା ଥିଲା ଏକ ପ୍ରକାରର ସନ୍ନ୍ୟାସ। ସୁସ୍ୱାଦୁ ଦକ୍ଷିଣ ଭାରତୀୟ ଖାଦ୍ୟ ଖାଇବା ସେ ଛାଡ଼ିଦେଲେ। 1915 ମସିହାରେ ସେ ସୁବ୍ରମଣ୍ୟନ୍‌ଙ୍କ ପାଖକୁ ଲେଖିଥିଲେ, "ଏବେ ମୋର ଆଉ କିଛି ଦରକାର ହେଉନାହିଁ, କାରଣ ମୋର ରୁଚିକୁ ମୁଁ ଏବେ ନିୟନ୍ତ୍ରଣରେ ରଖୁଛି। ଖାଲି ଭାତ, ଲୁଣ ଓ ଲେମ୍ବୁ ରସ ଖାଇ ମୁଁ ଅନିର୍ଦ୍ଦିଷ୍ଟ କାଳ ପାଇଁ ଚଳିଯାଇ ପାରିବି।''

କିଛିଦିନ ପାଇଁ ସେ ନିଶ୍ଚୟ ଚଳିଯାଇ ପାରିବେ, କିନ୍ତୁ ସବୁଦିନ ପାଇଁ ନୁହେଁ। ଶାକାହାରୀ ହୋଇଥିବାରୁ ସେ ନିଜକୁ ଉଚ୍ଚ ଟେବୁଲର ସାମାଜିକ ପରିବେଶର ବାହାରେ ରଖିଥିଲେ। ସେହି ସାମାଜିକ ପରିବେଶ ହୁଏତ ତାଙ୍କ ଜୀବନରେ ସନ୍ତୁଳନ ରକ୍ଷା କରିବାରେ ସହାୟକ ହୋଇପାରିଥା'ନ୍ତା। ଏବେ ଯୁଦ୍ଧ ସମୟରେ ତାହା ତାଙ୍କ ସ୍ୱାସ୍ଥ୍ୟ ପ୍ରତି ବିପଦ ମଧ୍ୟ ଆଣୁଥିଲା।

## 5. ବଡ଼ ଷ୍ଟିମର

ଟ୍ରିନିଟିରେ ଗବେଷଣା ଛାତ୍ର ଭାବରେ ଯୋଗଦେଲା ବେଳେ ରାମାନୁଜନ୍ ପ୍ରବେଶ ଖାତାରେ ତାଙ୍କ ନାଁ ଓ ଅନ୍ୟ ବିବରଣୀ ଭରିଥିଲେ। ସବୁ ଛାତ୍ର ଏହା କରୁଥିଲେ ଓ ଖାତାର ପୃଷ୍ଠାଗୁଡ଼ିକରେ ସେହି ସବୁ ତଥ୍ୟ ଖୁନ୍ଦିହୋଇ ରହିଥିଲା। ରାମାନୁଜନ୍‌ଙ୍କ ନାଁ ପରେ କେତେ ପୃଷ୍ଠାରେ କିଛି ନାଁ ରହିଥିଲା, କିନ୍ତୁ ଦସ୍ତଖତ ବା ଅନ୍ୟ ବିବରଣୀ ନ ଥିଲା। କୋଡ଼ିଏ ପୃଷ୍ଠା ଧରି ଏଭଳି ଫାଙ୍କା ଜାଗା ଦେଖିବାକୁ ମିଳୁଥିଲା। ଏହା ଥିଲା ଯୁଦ୍ଧର ଛାପ। ସେହି ଯୁବକମାନେ ଟ୍ରିନିଟିରେ ଯୋଗଦେବା ପାଇଁ ବଛା ଯାଇଥିଲେ, କିନ୍ତୁ ସୈନ୍ୟବାହିନୀରେ ମିଶି କେଉଁଠି ଲଢୁଥିଲେ ବା ପ୍ରାଣ ହରାଇ ସାରିଥିଲେ।

ବିଶ୍ୱବିଦ୍ୟାଳୟ ଖୋଲା ରହିଥିଲା କିନ୍ତୁ ନିଜର ସ୍ୱାଭାବିକ ଅବସ୍ଥାର ଅତି ରୁଗ୍‌ଣ ଚିତ୍ର ଦେଖାଉଥିଲା। ଯୁଦ୍ଧ ପୂର୍ବରୁ ବର୍ଷକୁ ଏଠାରେ ଛ'ଶହ ପିଲା ନାଁ ଲେଖାଉଥିଲେ, 1916 ମସିହା ଅକ୍ଟୋବରରେ ମାତ୍ର ସତଚାଳିଶ ଜଣ ଆସିଥିଲେ। ବିଶ୍ୱବିଦ୍ୟାଳୟର ହୃଦ୍‌ସ୍ପନ୍ଦନ ପ୍ରାୟ ବନ୍ଦ ହୋଇଯାଇଥିଲା କହିଲେ ଚଳେ। କେବଳ ସେନାବାହିନୀର ବୟସ ସୀମା ତଳର ପିଲା, ଏସୀୟ ଓ

ଶାରୀରିକ ଅସାମର୍ଥ୍ୟଯୁକ୍ତ ପିଲାମାନେ ସେଠାରେ ଦେଖାଯାଉଥିଲେ। 1916 ମସିହାରେ ଟ୍ରାଇପସ୍ ପରୀକ୍ଷା ଦେଉଥିବା ପିଲାଙ୍କ ଭିତରେ ଭାରତୀୟ ନାଁ ବେଶି ରହିଥିଲା।

ଯୁଦ୍ଧ ଲମ୍ବି ଚାଲିଥିଲା, ବଢ଼ିଚାଲିଥିବା ମୃତାହତ ସଂଖ୍ୟା ପରିବେଶକୁ ଦୁଃଖଦ କରୁଥିଲା। ଜୀବନର ସବୁ କଥାରେ ଯୁଦ୍ଧର ଛାପ ଦେଖିବାକୁ ମିଳିଲା। ଦରଦାମ ବଢ଼ିଲା, ଖାଦ୍ୟ ଓ ଅନ୍ୟ ଜିନିଷର ଅଭାବ ଦେଖାଗଲା। କେମ୍ବ୍ରିଜର ଅନେକ ପରିଚିତ ନାଁ ଯୁଦ୍ଧରେ ମୃତାହତ ତାଲିକାରେ ଦେଖିବାକୁ ମିଳିଲା। କିଛି ବିଶିଷ୍ଟ ଗଣିତଜ୍ଞ ମଧ୍ୟ ସେହି ତାଲିକାରେ ସ୍ଥାନ ପାଇଲେ। ରାମାନୁଜନ୍‌ଙ୍କ ଟିଉଟର ଅତି ତିକ୍ତତାର ସହିତ କହିଥିଲେ, "କେମ୍ବ୍ରିଜରେ ମୋର ସବୁ ଛାତ୍ରଙ୍କ ଭିତରୁ ପ୍ରାୟ ଅଧା ଏବଂ ଭଲ ଛାତ୍ରଙ୍କ ଭିତରୁ ପ୍ରାୟ ସମସ୍ତେ ପ୍ରାଣ ହରାଇଛନ୍ତି ବା ବିକଳାଙ୍ଗ ହୋଇଛନ୍ତି। ଗଣିତ ପଢ଼ାଇବା ଦିଗରେ ମୁଁ ଯେଉଁ କାମ କରିଥିଲି ତାହାର କିଛି ବି ମୂଲ୍ୟ ରହିନାହିଁ।"

*ମୁଁ ଗଢ଼ି ନ ଥିବା ଦୁନିଆରେ* ବହିରେ ବାର୍ବାରା ଉଟନ୍ ଲେଖିଥିଲେ -

> କଲେଜ ପ୍ରାର୍ଥନାଳୟ ବା କେମ୍ବ୍ରିଜର ଗୀର୍ଜା ସବୁରେ ଅସରନ୍ତି ଶୋକସଭା ଚାଲିଥିଲା। ମତେ ସବୁଠାରୁ ବେଶି ବ୍ୟଥିତ କରୁଥିବା କଥା ଥିଲା ସର୍ବସାଧାରଣ ସ୍ଥାନରେ ମୃତ ସୈନିକଙ୍କର ବାପାମାନଙ୍କର କାନ୍ଦିବା... ଆମ ସମାଜରେ ପିଲାମାନଙ୍କର ଲୁହ ଗଡ଼ାଇବା ଗ୍ରହଣୀୟ ଧରାହୁଏ। କେବେ କେବେ ସ୍ତ୍ରୀଲୋକମାନଙ୍କର ମଧ୍ୟ - କିନ୍ତୁ ବୟସ୍କ ପୁରୁଷ, କେବେ ବି ନୁହେଁ। ବିଶିଷ୍ଟ ଅଧ୍ୟାପକମାନେ ଓ ବିଖ୍ୟାତ ବ୍ୟକ୍ତିମାନେ, ଯେଉଁମାନଙ୍କୁ ମୁଁ ଭକ୍ତି ଓ ଭୟ ମିଶା ପ୍ରଶଂସାର ଦୃଷ୍ଟିରେ ଦେଖିଆସିଥିଲି, ଖୋଲାଖୋଲି ଭାବରେ କାନ୍ଦିବା ମତେ ଗଭୀର ଭାବରେ ମର୍ମାହତ କରିଥିଲା।

x x x

1915 ମସିହା ଫେବୃଆରି ମାସରେ ଜର୍ମାନିର ବୁଡ଼ାଜାହାଜ ବାହିନୀ ଇଂରେଜ ଦ୍ୱୀପପୁଞ୍ଜକୁ ଅବରୋଧ କରିଥିଲା। 1916 ମସିହା ଅକ୍ଟୋବର ମାସରେ ଏହା ଆହୁରି ତୀବ୍ର ହେଲା ଏବଂ ବିନା ଚେତାବନୀରେ ଜଳଜାହାଜଗୁଡ଼ିକୁ ବୁଡ଼ାଇ ଦିଆଗଲା।

ଅନେକ ଇଂରେଜ ଜାହାଜ ବୁଡୁଥିବାର ଖବର ଆସୁଥିଲା। ଏବେ ଖବର ଆସିଲା ଯେ ଆମେରିକାର ବନ୍ଦରଗୁଡ଼ିକ ମଧ୍ୟ ଅବରୋଧର ଶିକାର ହୋଇଛନ୍ତି ଏବଂ ଜାହାଜରେ ଗହମ ବୋଝେଇ ବନ୍ଦ ରହିଛି। ଯୁଦ୍ଧ ଆଗରୁ ଇଂଲଣ୍ଡରେ ଦରକାର ହେଉଥିବା ମାଂସର ଦୁଇପଞ୍ଚମାଂଶ ଓ ଗହମର ଚାରିପଞ୍ଚମାଂଶ ବିଦେଶରୁ ଆମଦାନି କରିବାକୁ ପଡୁଥିଲା। ବଡ଼ ବଡ଼ ଷ୍ଟିମର ଏହି ଜିନିଷ ସବୁ ଆଣି ପହଞ୍ଚାଉଥିଲେ। ଏବେ ସେଗୁଡ଼ିକ ଆଉ ଯିବା ଆସିବା କରିପାରୁ ନ ଥିଲେ। ଫଳରେ ଇଂଲଣ୍ଡରେ ଗୁରୁତର ଖାଦ୍ୟାଭାବ ଦେଖାଦେଲା। ଜନସାଧାରଣଙ୍କ ଭିତରେ ମନ୍ଦପୁଷ୍ଟି ବ୍ୟାପିବାରେ ଲାଗିଲା। ପଡ଼ି ବ୍ୟବସ୍ଥା ଲାଗୁ ହେଲା, ଦରଦାମ ବଢ଼ିଲା ଓ ଖାଦ୍ୟ ପାଇଁ ଗଣ୍ଡଗୋଳ ଦେଖାଗଲା। ସାଧାରଣ ଇଂରେଜମାନଙ୍କ ପାଇଁ ଖାଦ୍ୟ ସମସ୍ୟା ଯଦି ଗୁରୁତର ଥିଲା, ରାମାନୁଜନ୍‌ଙ୍କ ପାଇଁ ତାହା ଅସହ୍ୟ ହୋଇଉଠିଥିଲା। 1914 ମସିହାରେ ଯେଉଁ 'କ୍ଷୀର ଓ ଫଳ' ତାଙ୍କ ଖାଦ୍ୟ ସମସ୍ୟାକୁ ଲାଘବ କରୁଥିଲା ଏବେ ତାହା ଦୁଷ୍ପ୍ରାପ୍ୟ ହୋଇଗଲା।

ଯୁଦ୍ଧ ଏବେ ରାମାନୁଜନ୍‌ଙ୍କୁ ମଧ୍ୟ କବଳିତ କଲା।

ଖାଦ୍ୟର ଅଭାବ ସାଙ୍ଗକୁ ଖାଇବାରେ ଅନିୟମିତତା ତାଙ୍କ ସ୍ୱାସ୍ଥ୍ୟ ପ୍ରତି ବିପଦ ଆଣିଲା। ଏକାକୀ ରହିବା, ଅତ୍ୟଧିକ ପରିଶ୍ରମ କରିବା ଏବଂ ପ୍ରତିକୂଳ ଜଳବାୟୁ ଆଦିର ପ୍ରଭାବ ଯଦି ତାଙ୍କୁ କେଉଁ ରୋଗ ପ୍ରତି ସମ୍ବେଦନଶୀଳ କରିଥିଲା, ମନ୍ଦପୁଷ୍ଟି ଯୋଗୁ ଏବେ ସେ ତା'ର ପ୍ରତିରୋଧ କରିବାକୁ ସକ୍ଷମ ନ ଥିଲେ। ଇଂଲଣ୍ଡରେ ତାଙ୍କର ତୃତୀୟ ବର୍ଷ ଚାଲିଥିଲାବେଳେ ସେ ପୂରା ସୁସ୍ଥ ନ ଥିଲେ, କିନ୍ତୁ ରୋଗାକ୍ରାନ୍ତ ନ ଥିଲେ। ତାହା ଥିଲା ରୋଗକୁ ଅପେକ୍ଷା କରି ରହିଥିବା ଭଳି ଅବସ୍ଥା।

ଇଂଲଣ୍ଡର ଗୋଟିଏ ବିଖ୍ୟାତ ଯକ୍ଷ୍ମା ଚିକିତ୍ସକ ଡବ୍ଲୁ. ସି. ୱିଙ୍ଗଫିଲ୍ଡ କହୁଥିଲେ ଯେ ତ୍ରୁଟିପୂର୍ଣ୍ଣ ଜୀବନଶୈଳୀ ହେଉଛି ଯକ୍ଷ୍ମା ରୋଗର କାରଣ। ସେହି ତ୍ରୁଟିଗୁଡ଼ିକର ତାଲିକାରେ ଥିଲା 'ଅତ୍ୟଧିକ କାମ, ଅତ୍ୟଧିକ ଖେଳ, ଅତ୍ୟଧିକ ଦୁଶ୍ଚିନ୍ତା, ପୁଷ୍ଟିହୀନତା, ସୂର୍ଯ୍ୟାଲୋକ ଓ ତାଜା ପବନର ଅଭାବ ଏବଂ ଖାଦ୍ୟପେୟରେ ଅମିତାଚାର'।

କେବଳ ଅତ୍ୟଧିକ ଖେଳକୁ ଛାଡ଼ିଦେଲେ ରାମାନୁଜନ୍‌ଙ୍କଠାରେ ଅନ୍ୟ ସବୁ ତ୍ରୁଟି ରହିଥିଲା।

## ୬. ଡେନ୍‌ମାର୍କର ଦୃଷ୍ଟାନ୍ତ

ଠିକ୍ କ'ଣ ରାମାନୁଜନ୍‌ଙ୍କ ସ୍ୱାସ୍ଥ୍ୟରେ ଦ୍ରୁତ ଅବନତି ଆଣିଲା ତାହା ତାଙ୍କ ଜୀବିତ ଅବସ୍ଥାରେ ଓ ମୃତ୍ୟୁ ପରେ ରହସ୍ୟମୟ ହୋଇ ରହିଗଲା। 1917 ମସିହା ବସନ୍ତ ଋତୁରେ କିଛି ଘଟିଗଲା ଯାହା ଫଳରେ ରାମାନୁଜନ୍ ରୁଗ୍‌ଣ ହୋଇ ପଡ଼ିଲେ। ସେହିବର୍ଷ ମେ ମାସରେ ହାର୍ଡି ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟକୁ ଜଣାଇଲେ ଯେ ରାମାନୁଜନ୍ ଏବେ ଅସୁସ୍ଥ ଏବଂ ସନ୍ଦେହ କରାଯାଉଛି ଯେ ତାଙ୍କ ରୋଗ ଆରୋଗ୍ୟତାସାପେକ୍ଷ ନୁହେଁ।

ତାଙ୍କୁ ଭାରତକୁ ପଠାଇଦେବା କଥା ଆଲୋଚିତ ହେଲା। କିନ୍ତୁ ଭାରତରେ ଅଧିକାଂଶ ଡାକ୍ତର ଯୁଦ୍ଧକୁ ଯାଇଥିବାରୁ ସେଠାରେ ଉପଯୁକ୍ତ ଚିକିତ୍ସା ପାଇବା ଅସମ୍ଭବ ହେବ ବୋଲି ମତ ଆସିଲା। ତା'ଛଡ଼ା ଜର୍ମାନିର ବୁଡ଼ାଜାହାଜ ସମୁଦ୍ର ଯାତ୍ରାକୁ ବିପଦସଙ୍କୁଳ କରିଦେଇଥିଲେ, ତେଣୁ ରାମାନୁଜନ୍‌ଙ୍କ ଜାହାଜ ଭାରତରେ ପହଞ୍ଚି ମଧ୍ୟ ନ ପାରେ। ଯେଉଁ ଗଣିତଜ୍ଞମାନଙ୍କ ଗହଣରେ ରାମାନୁଜନ୍ କାମ କରିବାକୁ ଇଂଲଣ୍ଡ ଆସିଥିଲେ ଯୁଦ୍ଧ ଯୋଗୁ ସେମାନେ ଏବେ ନ ଥିଲେ, ଯୁଦ୍ଧ ତାଙ୍କ ମନ୍ଦପୁଷ୍ଟିର କାରଣ ହେଲା ଏବଂ ରୋଗ ପାଇଁ ଦ୍ୱାର ଖୋଲିଦେଲା, ଏବେ ରୋଗାକ୍ରାନ୍ତ ଅବସ୍ଥାରେ ଯୁଦ୍ଧ ହିଁ ତାଙ୍କୁ ଇଂଲଣ୍ଡରେ ଅଟକାଇ ରଖିଲା।

ଟ୍ରିନିଟିର ଲୋକମାନଙ୍କୁ ସେବା ଯୋଗାଉଥିବା ଏକ ଛୋଟ ଘରୋଇ ଡାକ୍ତରଖାନାରେ ରାମାନୁଜନ୍‌ଙ୍କୁ ରଖାଗଲା। ତାଙ୍କ ଅବସ୍ଥା ଅତି ଖରାପ ଥିଲା, ତେଣୁ ହାର୍ଡି ରାମଚନ୍ଦ୍ର ରାଓଙ୍କ ପାଖକୁ ସେହି ଖବର ପଠାଇଲେ। ପରେ ରାମାନୁଜନ୍ ଟିକିଏ ସୁସ୍ଥ ମନେହେଲେ ଓ ରାମଚନ୍ଦ୍ର ରାଓଙ୍କୁ ଆଶ୍ୱସ୍ତ କରିବା ପାଇଁ ହାର୍ଡି ସୁବ୍ରମଣ୍ୟନ୍‌ଙ୍କ ପାଖକୁ ଚିଠି ଲେଖିଲେ। ଡାକ୍ତରଖାନାରୁ ବାହାରି ରାମାନୁଜନ୍ ବିଶପ୍ ହଷ୍ଟେଲକୁ ଆସିଲେ। କିଛିଦିନ ପାଇଁ ହାର୍ଡି ସେଠାରେ ତାଙ୍କର ଯତ୍ନ ନେଉଥିବାର ଜଣାପଡ଼େ। କିନ୍ତୁ ରାମାନୁଜନ୍‌ଙ୍କର ଯତ୍ନ ନେବା କାହା ପାଇଁ ବି ସହଜ ନ ଥିଲା, କାରଣ ସେ ନିଜେ ନିଜର ଯତ୍ନ ନେବାକୁ ଏବଂ କାହାରି କଥା ମାନିବାକୁ ପ୍ରସ୍ତୁତ ନ ଥିଲେ। ହାର୍ଡି ସେକଥା ସୁବ୍ରମଣ୍ୟନ୍‌ଙ୍କୁ ଚିଠିରେ ଜଣାଇଥିଲେ। ରାମାନୁଜନ୍‌ଙ୍କୁ ସୁସ୍ଥ କରିବାର ସବୁ ଚେଷ୍ଟା ଏଥିପାଇଁ ଜଟିଳ ହୋଇପଡୁଥିଲା।

ରାମାନୁଜନ୍‌ଙ୍କ ସହିତ ଏହା କିଛି ନୂଆ କଥା ନ ଥିଲା। 1910 ମସିହାରେ ମାନ୍ଦ୍ରାଜରେ ରହୁଥିଲାବେଳେ ସେ ଥରେ ଅସୁସ୍ଥ ହୋଇଥିଲେ। ରାଧାକ୍ରିଷ୍ଣା ଆୟାର ତାଙ୍କୁ ସେତେବେଳେ ନେଇ ପାଖରେ ରଖିଥିଲେ। ସେ ମନେପକାନ୍ତି, "ଜଣେ ରୋଗୀ ଭାବରେ ରାମାନୁଜନ୍ ଉଚିତ ବ୍ୟବହାର କରୁ ନ ଥିଲେ। ଉଷୁମ ପାଣି ନ ପିଇବା ପାଇଁ ସେ ଜିଦି କରୁଥିଲେ ଏବଂ ତାଙ୍କ ପାଇଁ ଖରାପ କୁହାଯାଉଥିବା ଅଙ୍ଗୁର ଖାଇବା ପାଇଁ ଜିଦି ଧରୁଥିଲେ।" ଶେଷରେ ଡାକ୍ତରଙ୍କ ପରାମର୍ଶ ଅନୁସାରେ ତାଙ୍କୁ କୁମ୍ଭକୋଣମ୍ ପଠାଇ ଦିଆଯାଇଥିଲା।

ସାତବର୍ଷ ପରେ ସେ କିଛି ବି ବଦଳି ନ ଥିଲେ ଏବଂ ତାଙ୍କର ଯତ୍ନ ନେଉଥିବା ଲୋକଙ୍କ କାମକୁ କଷ୍ଟକର କରିଦେଉଥିଲେ। ହାର୍ଡିଙ୍କ କହିବାରେ, "ତାଙ୍କ କଥା ବୁଝିବା କଷ୍ଟକର ଥିଲା।" ଲିଟଲ୍‌ଉଡ୍‌ଙ୍କ ସାଙ୍ଗ ଓ ଟ୍ରିନିଟି କଲେଜର ଗଣିତଜ୍ଞ ବେଲା ବୋଲୋବାସ୍ ରାମାନୁଜନ୍‌ଙ୍କ ପାଇଁ ବିଶେଷ ଆଗ୍ରହ ଦେଖାଉଥିଲେ। ସେ କହୁଥିଲେ, "ଜଣେ ନୂଆ ଡାକ୍ତର ଆସିଲେ ରାମାନୁଜନ୍ ଆଶା ଓ ବିଶ୍ୱାସରେ ଭରି ଯାଉଥିଲେ, କିନ୍ତୁ ସେ ଡାକ୍ତର ତାଙ୍କୁ ସାହାଯ୍ୟ କରିପାରିବେନାହିଁ ବୋଲି ଜାଣିଲା ପରେ ସେ ଠିକ୍ ବିପରୀତ ବ୍ୟବହାର ଦେଖାଉଥିଲେ। ସେ କହୁଥିଲେ ଯେ ସେ ଡାକ୍ତରଙ୍କୁ କିଛି ଜଣାନାହିଁ, ମୁଁ ତାଙ୍କ କବ୍‌ଜାରେ ପଡ଼ିଛି, ସେଥିରୁ ମୁକୁଳିବି କିପରି ?"

ଖାଦ୍ୟ ବିଷୟରେ ରାମାନୁଜନ୍ ବହୁତ ବାଛବିଚାର କରୁଥିଲେ, ଯାହା କୁହାଯାଉଥିଲା ତାହା କରୁ ନ ଥିଲେ ଏବଂ ଘୋଳାବିନ୍ଧା ବିଷୟରେ ସବୁବେଳେ ଅଭିଯୋଗ କରୁଥିଲେ। କୁହାଯାଉଥିଲା ଯେ ଖୁବ୍ କମ୍ ଡାକ୍ତର ଅଛନ୍ତି ଯେଉଁମାନେ ତାଙ୍କୁ ତାଙ୍କ ଚିକିତ୍ସାଳୟରେ ରଖିବେ ଏବଂ ଆହୁରି କମ୍ ଡାକ୍ତର ତାଙ୍କ ଇଚ୍ଛାକୁ ଜଗି କାମ କରିବେ।

ତାଙ୍କର ଜିଦ୍‌ଖୋର ମନୋବୃତ୍ତି ଓ ରୋଗନିର୍ଣ୍ଣୟର ଅନିଶ୍ଚିତତା କାରଣରୁ ରାମାନୁଜନ୍ ଦୁଇବର୍ଷ ଭିତରେ ଆଠ ଜଣ ଡାକ୍ତରଙ୍କ ପାଖରେ ଚିକିତ୍ସିତ ହୋଇଥିଲେ ଏବଂ ଅନ୍ତତଃ ପାଞ୍ଚଟି ଚିକିତ୍ସାଳୟରେ ଭର୍ତ୍ତି ହୋଇଥିଲେ। ବୋଧହୁଏ ଅକ୍ଟୋବର ମାସ ବେଳକୁ ସେ ସମରସେଟ୍‌ର ୱେଲ୍‌ସ୍ ସହର ପାଖରେ ଥିବା ହିଲ୍ ଗ୍ରୋଭ୍‌ର ମେଣ୍ଡିପ୍ ହିଲ୍‌ସ୍ ଚିକିତ୍ସାଳୟରେ ରହିଲେ। ସେଠାରେ ସେ ଯକ୍ଷ୍ମା ରୋଗ ବିଶାରଦ ଡ. ଚୌରି-ମୁଥୁଙ୍କ ଦାୟିତ୍ୱରେ ରହିଲେ। ଭାରତୀୟ ଡାକ୍ତର ଚୌରି-ମୁଥୁ ତିନିବର୍ଷ ତଳେ ନେଭାସା ଜାହାଜରେ ରାମାନୁଜନ୍‌ଙ୍କ ସହିତ ଇଂଲଣ୍ଡ ଆସିଥିଲେ।

ରାମାନୁଜନ୍‌ଙ୍କ ରୋଗକୁ ଡାକ୍ତରମାନେ ପ୍ରଥମେ ଜଠରକ୍ଷତ ବୋଲି ଭାବିଥିଲେ। କିନ୍ତୁ ଏହାର ସପକ୍ଷରେ ଓ ବିପକ୍ଷରେ ମତ ରହୁଥିଲା। ଏକ ସମୟରେ ଅଧିକ ଜାଣିବା ପାଇଁ ଅସ୍ତ୍ରୋପଚାର କଥା ମଧ୍ୟ ଚିନ୍ତା କରାଯାଇଥିଲା। ଜଣେ ଡାକ୍ତର ଭାବୁଥିଲେ ଯେ ଭାରତରେ ରାମାନୁଜନ୍‌ଙ୍କ ଅଣ୍ଡକୋଷରେ କରାଯାଇଥିବା ଅସ୍ତ୍ରୋପଚାର ପ୍ରକୃତରେ କର୍କଟ ରୋଗ ପାଇଁ କରାଯାଇଥିଲା ଏବଂ ସେହି କର୍କଟ ରୋଗ ଏବେ ବ୍ୟାପୁଛି। କିନ୍ତୁ ରାମାନୁଜନ୍‌ଙ୍କ ଅବସ୍ଥା ବେଶି ଖରାପ ହେଉ ନ ଥିବାରୁ ଅନ୍ୟ ଡାକ୍ତରମାନେ ଏହାକୁ ଗ୍ରହଣ କରି ନ ଥିଲେ। ଟିଣ ଡବାରେ ଆସୁଥିବା ଖାଦ୍ୟକୁ ସେଥିରେ ହିଁ ଗରମ କରି ରାମାନୁଜନ୍ ଖାଉଥିଲେ। ତେଣୁ ସନ୍ଦେହ ଆସିଲା ଯେ ସେ ଡବାକୁ ନିବୁଜ କରିବା ପାଇଁ ବ୍ୟବହୃତ ସୀସା ଖାଦ୍ୟରେ ମିଶି ତାଙ୍କ ରକ୍ତକୁ ବିଷାକ୍ତ କରିଛି।

ରାମାନୁଜନ୍‌ଙ୍କର ରୋଗ ଯକ୍ଷ୍ମା ହୋଇଥିବାର ସନ୍ଦେହ ଅଧିକାଂଶ ଡାକ୍ତର କରୁଥିଲେ ଏବଂ ତାହା ହିଁ ହୋଇଥିବାର ଅଧିକ ସୂଚନା ମିଳୁଥିଲା। ମେଣ୍ଡିପ୍ ହିଲ୍‌ସ୍‌ଠାରେ ଯକ୍ଷ୍ମା ପାଇଁ ତାଙ୍କର ଚିକିତ୍ସା କରାଗଲା।

ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ୟୁରୋପୀୟ ସହରମାନଙ୍କରେ ପ୍ରତି ତିନିଟି ମୃତ୍ୟୁରୁ ଗୋଟିଏ ଯକ୍ଷ୍ମା ରୋଗ ଯୋଗୁ ହେଉଥିଲା। ତାହା କମି କମି ବିଂଶ ଶତାବ୍ଦୀର ଆରମ୍ଭ ବେଳକୁ ଆଠରୁ ଏକରେ ପହଞ୍ଚି ଥିଲା। 1882 ମସିହାରେ ରବର୍ଟ କଖ୍ ଦେଖାଇଲେ ଯେ *ମାଇକୋବାକ୍ଟେରିଅମ୍ ଟ୍ୟୁବର୍‌କୁଲୋସିସ୍* ନାମକ ଏକ ଧୀରେ ବଢୁଥିବା ବୀଜାଣୁର ସଂକ୍ରମଣ ହେଉଛି ଯକ୍ଷ୍ମା ରୋଗର କାରଣ। ଏହି ବୀଜାଣୁ ଦେହର ପ୍ରାୟ ସବୁ ପ୍ରକାରର ତନ୍ତୁକୁ ଆକ୍ରାନ୍ତ କରି କ୍ଷତ ସୃଷ୍ଟି କରିପାରେ। ମେରୁଦଣ୍ଡ, ଆଖି, ହାଡ଼, ଯକୃତ ବା ଲସିକା ଗ୍ରନ୍ଥି ଆଦିରେ ସେହି ବୀଜାଣୁ ସଂକ୍ରମିତ ହୋଇ ଅନେକ ଗୁଳିକା ସୃଷ୍ଟି କରେ। କିନ୍ତୁ ଅଧିକାଂଶ କ୍ଷେତ୍ରରେ ଫୁସ୍‌ଫୁସ୍‌ରେ ହିଁ ଯକ୍ଷ୍ମା ରୋଗ ଦେଖାଯାଏ। ଜ୍ୱର, ରାତିରେ ଝାଳ ବୋହି ସକାଳକୁ ରୋଗୀକୁ ତିନ୍ତାଇ ଦେବା, କାସ, ଶ୍ୱାସକ୍ରିୟାରେ ଅସୁବିଧା, ଖଙ୍କାରରେ ରକ୍ତ ପଡ଼ିବା, ରୋଗୀର ଓଜନ କମିଯିବା ଆଦି ଯକ୍ଷ୍ମା ରୋଗର ପ୍ରମୁଖ ଲକ୍ଷଣ। କିନ୍ତୁ ସବୁବେଳେ ଏହି ସବୁ ଲକ୍ଷଣ ଦେଖାଯାଇ ନ ପାରେ କିମ୍ବା ଅନ୍ୟ କିଛି ଲକ୍ଷଣ ମଧ୍ୟ ଦେଖାଯାଇପାରେ ଏବଂ ରୋଗ ବଢ଼ିବାର ଧାରା ମଧ୍ୟ ବିଭିନ୍ନ ପ୍ରକାରର ହୁଏ। ତେଣୁ ଅନେକ ସମୟରେ ଯକ୍ଷ୍ମା ରୋଗକୁ ଠିକ୍ ଭାବରେ ଚିହ୍ନଟ କରିବା ବେଶ୍ କଷ୍ଟସାଧ୍ୟ ହୁଏ। କେତେ ରୋଗୀଙ୍କ ଦେହରେ ଏହା ହଠାତ୍ ଗୁରୁତର ପରିସ୍ଥିତି ସୃଷ୍ଟି କରେ, ଆଉ କାହା ଦେହରେ ବର୍ଷ ବର୍ଷ ଧରି ନିଷ୍କ୍ରିୟ ହୋଇ ରହେ ଏବଂ ହଠାତ୍ ମୁଣ୍ଡ ଟେକେ। ଆଉ କେତେବେଳେ ମାଡ଼ି ଚାଲିଥିବା ରୋଗ ଆପେ ଆପେ ଭଲ ହୋଇଯାଏ।

ଭାରତରେ ତଥା ଇଂଲଣ୍ଡରେ ଅନେକ ଲୋକଙ୍କ ଦେହରେ ଯକ୍ଷ୍ମା ବୀଜାଣୁ ପଶିଥାଏ, କିନ୍ତୁ ସମସ୍ତେ ରୋଗରେ ପଡ଼ନ୍ତିନାହିଁ। ଅଧିକାଂଶ କ୍ଷେତ୍ରରେ ଦେହର ପ୍ରତିରକ୍ଷା ବ୍ୟବସ୍ଥା ସେହି ବୀଜାଣୁକୁ ଅକାମୀ କରିବାରେ ସଫଳ ହୋଇଥାଏ। କିଏ ରୋଗରେ ପଡ଼ିବ ତାହା ଆନୁବଂଶିକ ଗୁଣଧର୍ମ ଏବଂ ଜୀବନଶୈଳୀ ଉପରେ ନିର୍ଭର କରିଥାଏ। ଠିକ୍ କେଉଁ ପରିସ୍ଥିତିରେ ଯକ୍ଷ୍ମା ରୋଗ ଦେଖାଯାଏ ଓ ବଢ଼େ ସେ ବିଷୟରେ ବିଭିନ୍ନ ମତ ଦେଖାଯାଏ। ତଥାପି ଡ. ୱିଙ୍ଗଫିଲ୍‌ଡଙ୍କ ଉପରେ କୁହାଯାଇଥିବା ଧାରଣା ବେଶ୍ ଗୁରୁତ୍ୱପୂର୍ଣ୍ଣ ବୋଲି ମନେ କରାଯାଏ।

ବିଭିନ୍ନ ଗବେଷଣାରୁ ସୂଚନା ମିଳେ ଯେ ମାନସିକ ଅବସ୍ଥା ମଧ୍ୟ ଯକ୍ଷ୍ମା (ଏବଂ ଅନ୍ୟ କେତେ) ରୋଗ ସୃଷ୍ଟି ହେବାକୁ ପ୍ରଭାବିତ କରେ। ମାନସିକ ଚାପ ଦେହର ପ୍ରତିରକ୍ଷା ବ୍ୟବସ୍ଥାକୁ ଦୁର୍ବଳ କରିଦେଇ ରୋଗ ପ୍ରତି ସମ୍ବେଦନଶୀଳତା ବଢ଼ାଇଦିଏ। ଗୋଟିଏ ଅଧ୍ୟୟନରୁ ଦେଖାଯାଇଥିଲା ଯେ ଆମେରିକାର ନୌବାହିନୀରେ କାମ କରୁଥିବା ଫିଲିପିନ୍‌ସ୍‌ର ଲୋକମାନେ ଅନ୍ୟ ନାବିକଙ୍କ ତୁଳନାରେ ଅଧିକ ସଂଖ୍ୟାରେ ଯକ୍ଷ୍ମା ରୋଗରେ ଆକ୍ରାନ୍ତ ହେଉଥିଲେ। ଘର, ପରିବାର ଓ ସାଙ୍ଗସାଥୀଙ୍କୁ ଛାଡ଼ି ଲମ୍ବା ସମୟ ପାଇଁ ବାହାରେ ରହୁଥିବାରୁ ସେମାନେ ମାନସିକ ଦୁଶ୍ଚିନ୍ତା ଓ ଚାପରେ ରହୁଥିଲେ ଏବଂ ତାହା ଫଳରେ ସହଜରେ ରୋଗର ଶିକାର ହେଉଥିଲେ।

ସାଧାରଣ ଅବସ୍ଥାରେ ରାମାନୁଜନ୍‌ଙ୍କର ଶାକାହାରୀ ଖାଦ୍ୟ ହୁଏତ ତାଙ୍କ ଦେହ ପାଇଁ ଯଥେଷ୍ଟ

ପୁଷ୍ଟିକର ହେଉଥିଲା। କିନ୍ତୁ ଯୁଦ୍ଧ ଯୋଗୁ କ୍ଷୀର, ଫଳ ଆଦିର ଅଭାବ ଏବଂ ତାଙ୍କର ଖାଇବାରେ ଅନିୟମିତତା ସେହି ପରିସ୍ଥିତିକୁ ଓଲଟାଇ ଦେଇଥିଲା ଏବଂ ତାଙ୍କ ଦେହକୁ ରୋଗ ବଢ଼ିବା ପାଇଁ ଅନୁକୂଳ କରି ଦେଇଥିଲା।

ଡେନ୍‌ମାର୍କ ଦେଶର ଘଟଣାରୁ ଏହି ଦିଗରେ କିଛି ସୂଚନା ମିଳିଥିଲା। ଗୋଟିଏ ବିବରଣୀରୁ ଜଣାପଡ଼େ ଯେ 1850ରୁ 1904 ମସିହା ଭିତରେ ଇଂଲଣ୍ଡ, ସୁଇଜର୍‌ଲାଣ୍ଡ, ଜର୍ମାନି, ଡେନ୍‌ମାର୍କ ଓ ଯୁକ୍ତରାଷ୍ଟ୍ର ଆମେରିକାରେ ଯକ୍ଷ୍ମା ରୋଗୀଙ୍କ ସଂଖ୍ୟା ଲକ୍ଷେ ଲୋକରେ 300ରୁ କମି କମି 120ରେ ପହଞ୍ଚିଥିଲା।

କିନ୍ତୁ ଯୁଦ୍ଧ ଆରମ୍ଭ ହେବା ପରେ ଯୁଦ୍ଧରେ ସମ୍ପୃକ୍ତ ଥିବା ଦେଶମାନଙ୍କରେ ତାହା ବଢ଼ିବାର ଦେଖାଗଲା। କିନ୍ତୁ ଯୁଦ୍ଧରେ ନିରପେକ୍ଷ ରହିଥିବା ଏବଂ କୌଣସି ଆକ୍ରମଣର ଶିକାର ହୋଇ ନ ଥିବା ଡେନ୍‌ମାର୍କରେ ମଧ୍ୟ ଯକ୍ଷ୍ମା ରୋଗୀଙ୍କ ସଂଖ୍ୟା ଅତି ବେଶି, ପ୍ରାୟ 30 ଶତାଂଶ, ବଢ଼ିବାର ଦେଖାଗଲା। ଖାଲି ସେତିକି ନୁହେଁ, 1917 ମସିହା ବେଳକୁ ତାହା କମିବାକୁ ଆରମ୍ଭ କଲା। କିନ୍ତୁ ଅନ୍ୟ ଦେଶମାନଙ୍କରେ ଏହାର ଦୁଇବର୍ଷ ପର ଯାଏଁ ଯକ୍ଷ୍ମା ରୋଗର ପ୍ରାଦୁର୍ଭାବ ଲାଗି ରହିଥିଲା।

ଘଟଣାର ବିଶ୍ଳେଷଣରୁ ଦେଖାଗଲା ଯେ ଯୁଦ୍ଧର ପ୍ରଥମ ଦୁଇବର୍ଷ ଧରି ଡେନ୍‌ମାର୍କ ପ୍ରଚୁର ପରିମାଣର ମାଂସ, ଦୁଧ ଓ ଦୁଗ୍ଧଜାତ ଦ୍ରବ୍ୟ ଇଂଲଣ୍ଡ ଓ ଅନ୍ୟ ଦେଶମାନଙ୍କୁ ପଠାଉଥିଲା। ଏହା ଫଳରେ ଦେଶ ଭିତରେ ଏସବୁର ଦର ବଢ଼ିଗଲା କିନ୍ତୁ ସେହି ହାରରେ ସାଧାରଣ ଲୋକଙ୍କର ଉପାର୍ଜନ ବଢ଼ିଲାନାହିଁ। ତେଣୁ ଲୋକମାନେ ଯଥେଷ୍ଟ ଖାଦ୍ୟ କିଣିପାରିଲେନାହିଁ ଏବଂ ମନ୍ଦପୁଷ୍ଟିର ଶିକାର ହେଲେ। ଏହି ସମୟରେ ଯକ୍ଷ୍ମା ରୋଗର ହାର ମଧ୍ୟ ବଢ଼ିଗଲା। 1917 ମସିହା ବେଳକୁ ବ୍ୟାପକ ବୁଡ଼ାଜାହାଜ ଆକ୍ରମଣ ଯୋଗୁ ଜାହାଜ ଚଳାଚଳ ପ୍ରାୟ ବନ୍ଦ ହୋଇଗଲା ଏବଂ ଡେନ୍‌ମାର୍କର ଖାଦ୍ୟଦ୍ରବ୍ୟ ଦେଶ ବାହାରକୁ ପଠାଯାଇ ପାରିଲାନାହିଁ। ଫଳରେ ଦରଦାମ କମିଗଲା, ଯଥେଷ୍ଟ ଖାଦ୍ୟ ମିଳିବାରୁ ଲୋକଙ୍କର ସ୍ୱାସ୍ଥ୍ୟରେ ଉନ୍ନତି ଆସିଲା ଏବଂ ଯକ୍ଷ୍ମା ରୋଗର ପ୍ରକୋପ ମଧ୍ୟ କମିବାରେ ଲାଗିଲା। ଡେନ୍‌ମାର୍କର ଏହି ଦୃଷ୍ଟାନ୍ତରୁ ବିଶ୍ୱାସ ଆସିଲା ଯେ ମନ୍ଦପୁଷ୍ଟି ଓ ଯକ୍ଷ୍ମା ରୋଗର ସମ୍ପର୍କ ବେଶ୍ ନିବିଡ଼।

ଅଧିକ ଗବେଷଣାରୁ ସୂଚନା ମିଳିଲା ଯେ ଯକ୍ଷ୍ମା ସମ୍ବେଦନଶୀଳତାର କାରଣ ଜୀବସାର 'ଘ'ର ଅଭାବ। ଏହି ଜୀବସାର ଅଣ୍ଡା, କ୍ଷୀର, କେତେ ପ୍ରକାରର ମାଂସ ଓ ମାଛରୁ ମିଳିଥାଏ। ସୂର୍ଯ୍ୟକିରଣ ସାହାଯ୍ୟରେ ମଧ୍ୟ ଏହା ମଣିଷ ଦେହରେ ତିଆରି ହୋଇପାରେ। ଏହି ସବୁ ଜିନିଷ ରାମାନୁଜନ୍ ଖାଉ ନ ଥିଲେ ବା ଏବେ ପାଉ ନ ଥିଲେ। ଅର୍ଥାତ, ଇଂଲଣ୍ଡରେ ତାଙ୍କର ତିନିବର୍ଷର ରହଣି ଭିତରେ ରାମାନୁଜନ୍ ଯକ୍ଷ୍ମା ରୋଗ ପାଇଁ ନିଜ ଦେହକୁ ଅନୁକୂଳ କରି ଦେଇଥିଲେ।

ମେଣ୍ଡିପ ହିଲ୍‌ସ୍ ଚିକିତ୍ସାଳୟ ଦାବି କରୁଥିଲା ଯେ 1899 ଓ 1913 ମସିହା ଭିତରେ ସେଠାରେ ଶହ ଶହ ଯକ୍ଷ୍ମା ରୋଗୀ ସୁସ୍ଥ ହୋଇ ଫେରିଛନ୍ତି। ଆଖପାଖର ପାଞ୍ଚଟି ଚିକିତ୍ସାଳୟ ଦାବି କରୁଥିଲେ ଯକ୍ଷ୍ମା ରୋଗରୁ ମୁକ୍ତି ପାଇବା ପାଇଁ ସେହି ଅଞ୍ଚଳର ଜଳବାୟୁ ବିଶେଷ ଉପଯୋଗୀ। ତଥାପି ଏହି ସବୁ ଦାବି ରାମାନୁଜନ୍‌ଙ୍କ କ୍ଷେତ୍ରରେ କାମ କଲା ନାହିଁ। ସେଠାରେ ଅଳ୍ପ ସମୟ କଟାଇବା ପରେ ନଭେମ୍ବର ମାସରେ ସେ ଡର୍ବିସାୟାରଠାରେ ଥିବା ମାଟ୍‌ଲକ୍ ହାଉସ୍ ସାନାଟୋରିଅମ୍‌କୁ

ସ୍ଥାନାନ୍ତରିତ ହେଲେ। ଏଠାରେ ବର୍ଷେ କାଳ ଧରି ସେ ତିନି ଜଣ ଡାକ୍ତରଙ୍କ ଦ୍ୱାରା ଚିକିତ୍ସିତ ହେଲେ ଏବଂ ତାଙ୍କ ପାଇଁ 240 ପାଉଣ୍ଡରୁ ଅଧିକ ଖର୍ଚ୍ଚ ହୋଇଥିଲା।

ମାଟ୍‌ଲକ୍ ହାଉସ୍‌ରେ ରହିବାର ଅଳ୍ପ ଦିନ ପରେ ରାମାନୁଜନ୍ ହାର୍ଡିଙ୍କ ପାଖକୁ ଲେଖିଥିଲେ:

> ମୁଁ ଏଠାରେ ମାସେ କାଳ ରହିଲିଣି, କିନ୍ତୁ ଦିନେ ବି ମତେ ନିଆଁ ପାଖକୁ ଯିବାକୁ ଅନୁମତି ମିଳିନାହିଁ। ଅନେକ ଥର ମୁଁ ଥଣ୍ଡାରେ ଥରିଛି ଏବଂ କେତେ ଥର ଖାଇବାକୁ ଯାଇପାରିନାହିଁ। ଏଠାକୁ ଆସିଲା ବେଳେ ଘଣ୍ଟାଏ ଦୁଇ ଘଣ୍ଟା ପାଇଁ ମୁଁ ନିଆଁ ପାଖରେ ବସିଥିଲି। ମତେ ଜଣାଇ ଦିଆଯାଇଥିଲା ଯେ ଆଉ ନିଆଁ ପାଖରେ ବସିବା ସମ୍ଭବ ହେବନାହିଁ। ପ୍ରାୟ ଦୁଇ ସପ୍ତାହର ରହଣି ପରେ ମତେ କହିଲେ ଯେ ଆପଣଙ୍କଠାରୁ ଏ ବିଷୟରେ ଏକ ଚିଠି ମିଳିଛି ଏବଂ ମୁଁ ଗଣିତ କାମ କରିବାକୁ ଚାହୁଁଥିଲା ବେଳେ ସେମାନେ ମୋ ପାଇଁ ନିଆଁର ବ୍ୟବସ୍ଥା କରିଦେବେ। କିନ୍ତୁ ଏବେ ଯାଏଁ ସେ ଦିନ ଆସିନାହିଁ ଏବଂ ମୁଁ ଏହି ପ୍ରବଳ ଥଣ୍ଡା ଓ ଖୋଲା କୋଠରିରେ ରହିଛି।

ନିଆଁ ନ ଯୋଗାଇବାରେ ମାଟଲକ୍‌ର କର୍ତ୍ତୃପକ୍ଷ ରାମାନୁଜନ୍‌ଙ୍କ ପ୍ରତି ନିଷ୍ଠୁର ବା କୃପଣ ହେଉ ନ ଥିଲେ। ଖୋଲା ଓ ଥଣ୍ଡା କୋଠରି ସେଠାର ଯକ୍ଷ୍ମା ଚିକିତ୍ସାର ଏକ ସର୍ବସ୍ୱୀକୃତ ଅଂଶ ଥିଲା।

1950 ଦଶକରେ ଷ୍ଟ୍ରେପ୍ଟୋମାଇସିନ୍‌ର ଆବିଷ୍କାର ପୂର୍ବରୁ ଯକ୍ଷ୍ମା ବିରୁଦ୍ଧରେ କୌଣସି ଫଳପ୍ରଦ ଔଷଧ ନ ଥିଲା। ତେଣୁ ଏହା ପୃଥିବୀ ସାରା 'ଧଳା ମହାମାରୀ' ରୂପରେ ଭୟ ସୃଷ୍ଟି କରୁଥିଲା। ଯକ୍ଷ୍ମାର ଚିକିତ୍ସା ପାଇଁ ଅନେକ କୌଶଳ ବ୍ୟବହାର କରାଯାଉଥିଲା, କିନ୍ତୁ କିଛି ବି ସଫଳ ହେଉ ନ ଥିଲା। ସହରଠାରୁ ଦୂରରେ ଥିବା ଗ୍ରାମାଞ୍ଚଳରେ ଥଣ୍ଡା ଓ ଖୋଲା କୋଠରିରେ ରୋଗୀକୁ ରଖି ବିଶ୍ରାମ ଦେବା ସବୁଠାରୁ ବେଶି ଗ୍ରହଣୀୟ ବୋଲି ମନେ କରାଯାଉଥିଲା। 1913 ମସିହା ବେଳକୁ ଅନ୍ତତଃ ବାଉନଟି ଚିକିତ୍ସାଳୟ ଏହି ଧାରାରେ ଚିକିତ୍ସାର ସୁବିଧା ଯୋଗାଉଥିଲେ। ଥଣ୍ଡାରେ ଥରିବା ଏକା ରାମାନୁଜନ୍‌ଙ୍କ ଭାଗ୍ୟରେ ନ ଥିଲା।

ଚିକିତ୍ସା ସମୟରେ ରାମାନୁଜନ୍ ଅସୁଖୀ ହେବାର ଅନ୍ୟ କିଛି କାରଣ ମଧ୍ୟ ଥିଲା, ଯେଉଁ ସବୁ କାରଣ ଆଗରୁ ରହିଥିଲା ଏବଂ ଆଗକୁ ମଧ୍ୟ ରହିବ।

1917 ମସିହା ସେପ୍ଟେମ୍ବର ମାସରେ ହାର୍ଡି ରାମାନୁଜନ୍‌ଙ୍କ ସ୍ୱାସ୍ଥ୍ୟରେ ଉନ୍ନତି ବିଷୟରେ ସୁବ୍ରମଣ୍ୟନ୍‌ଙ୍କ ପାଖକୁ ଚିଠି ଲେଖିଥିଲେ। ସେଥିରେ ସେ ଜଣାଇଥିଲେ, "କେତେ ମାସ ତଳେ ରାମାନୁଜନ୍ ଡାକ୍ତରଖାନାରେ ଥିଲାବେଳେ ଆମେ ଜାଣିବାକୁ ପାଇଲୁ ଯେ ସେ ଘରକୁ ଚିଠି ଲେଖୁନାହାନ୍ତି ବା ଘରୁ ଚିଠି ପାଉନାହାନ୍ତି। ଏ ବିଷୟରେ ସେ କଥା ହେବାକୁ ଚାହୁଁ ନ ଥିଲେ, ତେଣୁ ଆମେ ଭାବୁଛୁ ଯେ ବୋଧହୁଏ ତାଙ୍କ ଭିତରେ କିଛି କଳି ଲାଗିଛି।"

ଚିଠିର ଅନିଶ୍ଚିତ ଭାଷାରୁ ମନେ ହୁଏ ଯେ ଏହି ଆବିଷ୍କାର ହାର୍ଡିଙ୍କ ପାଇଁ ଅପ୍ରତ୍ୟାଶିତ ଥିଲା, ତେଣୁ ସେ ଆଶ୍ଚର୍ଯ୍ୟ ହେବା ସହିତ ରାମାନୁଜନ୍‌ଙ୍କ ନିରବତା ପଛରେ ଲୁଚିବାକୁ ଚେଷ୍ଟା କରିଛନ୍ତି।

କିଛିଦିନ ପରେ ଏହି ବିଷୟରେ ଆଉ ଏକ ସୂଚନା ମିଳିଲା। ମାଟ୍‌ଲକ୍‌ରୁ ହାର୍ଡିଙ୍କ ପାଖକୁ ଲେଖିଥିବା ଏକ ଚିଠିରେ ରାମାନୁଜନ୍ ପ୍ରଥମ ଥର ପାଇଁ ନିଜର ବ୍ୟକ୍ତିଗତ ଜୀବନର କିଛି ମୌଳିକ କଥା ଜଣାଇଛନ୍ତି:

ଏହା ସତ ଯେ ଦୁଇବର୍ଷ ପରେ ଭାରତକୁ ଫେରିଆସିବି ବୋଲି ମୁଁ ମା'ଙ୍କୁ କହିଥିଲି। ଦେଢ଼ବର୍ଷ ତଳେ ଜଣାଇଥିଲି ଯେ ମୁଁ ଲମ୍ବା ଛୁଟିରେ ଆସିବି। କିନ୍ତୁ ମା ପ୍ରତିବାଦ କରି ଅନେକ ଚିଠି ଲେଖିଲେ ଯେ ମୁଁ ଏମ୍.ଏ. ଡିଗ୍ରୀ ନ ପାଇଲା ପର୍ଯ୍ୟନ୍ତ ଭାରତ ଫେରିବା ଉଚିତ ହେବନାହିଁ। ତେଣୁ ଭାରତ ଯିବା ଚିନ୍ତା ମୁଁ ଛାଡ଼ିଦେଲି।

ଏହା ସତ ନୁହେଁ ଯେ ପତ୍ନୀ, ଶାଳକ ବା ଅନ୍ୟ କାହାଠାରୁ ମୁଁ ଚିଠି ପାଉଥିଲି। ପତ୍ନୀ କେବଳ କେତୋଟି ଔପଚାରିକ ଚିଠିରେ ସେ ଆମ ଘର ଛାଡ଼ି ଯାଉଥିବାର କାରଣ ଜଣାଇଥିଲେ ...।

ମୋର ନାଁ'ର ଆରମ୍ଭରେ ଥିବା 'ଏସ୍' ଶ୍ରୀନିବାସର ସଂକ୍ଷେପ। ତାହା ହେଉଛି ମୋ ବାପାଙ୍କ ନାଁ। କହିବାକୁ ଗଲେ ମୋର କୌଣସି ସାଙ୍ଗିଆ ନାହିଁ।

ଏବେ ଯାଏଁ ଏ ସବୁ କଥା ହାର୍ଡିଙ୍କ ପାଇଁ ଅଜଣା ଥିଲା।

ରାମାନୁଜନ୍‌ଙ୍କ ଘରେ କିଛି ଗୋଳମାଳ ହୋଇଥିଲା, ଯଦିଓ କଳି ଶବ୍ଦ ତାହା ପାଇଁ ଠିକ୍ ନ ଥିଲା। ଇଂଲଣ୍ଡରେ ସେହି ଖବର ପାଇଲା ପରେ ସେ ବିଚଳିତ ହୋଇପଡ଼ିଥିଲେ। ହାର୍ଡି ସେ ବିଷୟରେ କିଛି ବି ଜାଣି ନ ଥିଲେ, ତେଣୁ ରାମାନୁଜନ୍‌ଙ୍କ ଦୁଃଖକୁ ହାଲୁକା କରିବା ପାଇଁ ସେ କିଛି କରିବା ଅବସ୍ଥାରେ ନ ଥିଲେ।

1917 ମସିହା ଆରମ୍ଭ ବେଳକୁ ରାମାନୁଜନ୍‌ଙ୍କ ଦେହରେ ଗୁରୁତର ଅସୁବିଧା ଦେଖାଦେଇଥିଲା ଏବଂ ସେ ରୁଗ୍‌ଣ ହୋଇପଡ଼ିଥିଲେ। କିନ୍ତୁ ବର୍ଷ ସରିଲା ବେଳକୁ କେବଳ ତାଙ୍କ ଦେହରେ ଅସୁବିଧା ନ ଥିଲା, ତାଙ୍କ ମନକୁ ମଧ୍ୟ ତାହା ଗ୍ରାସ କରିଥିଲା। ସେତେବେଳକୁ ନିଶ୍ଚିତ ଭାବରେ ସେ ଜଣେ ସୁଖୀ ମଣିଷ ନ ଥିଲେ।

ସୁଖୀ ମଣିଷ ନିଜର ଜୀବନ ନେବାକୁ ଚାହାନ୍ତିନାହିଁ।

## 7. ଘରେ ସମସ୍ୟା

ରାମାନୁଜନ୍ ଜାନକୀଙ୍କଠାରୁ ଚିଠି ପାଉ ନ ଥିଲେ। ଜାନକୀ ଯେ ଲେଖୁ ନ ଥିଲେ ତା'ନୁହେଁ, ରାମାନୁଜନ୍‌ଙ୍କ ମା ସେଗୁଡ଼ିକୁ ପଠାଉ ନ ଥିଲେ।

ଥରେ ରାମାନୁଜନ୍‌ଙ୍କ ପାଖକୁ ଯିବା ପାଇଁ ଗୋଟିଏ ପ୍ୟାକେଟ୍ ପ୍ରସ୍ତୁତ ହୋଇ ରହିଥିଲା। ଶାଶୂ ଘରେ ନ ଥିବା ବେଳେ ଜାନକୀ ତା ଭିତରେ ଚିଠି ଖଣ୍ଡେ ପୂରାଇଦେଲେ। ପ୍ୟାକେଟଟି ଯିବା ଆଗରୁ କିନ୍ତୁ କୋମଳତାମ୍ମାଲ୍ ଫେରିଆସିଲେ ଏବଂ ଚିଠିଟି ଦେଖିଲେ। ଚିଠି ଖୋଲି ପଢ଼ିବା ପରେ ସେ ଅର୍ଥହୀନ କହି ପଠାଇଲେନାହିଁ। ଜାନକୀଙ୍କ ମନରେ ବଡ଼ କଷ୍ଟ ହେଲା। କିନ୍ତୁ ସେ କ'ଣ ବା କରିପାରନ୍ତେ ବା କହିପାରନ୍ତେ? ସେ ମାତ୍ର ସତର ବର୍ଷର ଝିଅଟିଏ ଥିଲେ, ଆଉ ଶାଶୂ ଥିଲେ ସର୍ବେସର୍ବା। ସେ ଚୁପ ରହିଲେ, ମନକୁ ବୁଝାଇଲେ ଯେ ତାହା ହିଁ ପ୍ରଚଳିତ ପ୍ରଥା। ଅନେକ ବଡ଼ ଭାରତୀୟ ପରିବାରରେ ଶାଶୂ-ବୋହୂଙ୍କ କଳି ଦେଖାଯାଉଥିଲା। ତାକୁ ନେଇ ଅନେକ ଥଟ୍ଟାତାମସା ମଧ୍ୟ ଚଳୁଥିଲା। ବାଳିକା ବଧୂଙ୍କ ଅବସ୍ଥା ଆହୁରି ବେଶି ଦୟନୀୟ ହେଉଥିଲା। ଏଭଳି ପରିସ୍ଥିତିରେ ପରିବାର ଭିତରେ ଉତ୍ତେଜନା ଲାଗି ରହୁଥିଲା।

ରାମାନୁଜନ୍‌ଙ୍କ ପରିବାରରେ ଏଭଳି ପରିସ୍ଥିତି ସୃଷ୍ଟି ହେବାର ସବୁ ଉପାଦାନ ରହିଥିଲା।

କୋମଳତାମ୍ମାଲ୍ ରାମାନୁଜନ୍‌ଙ୍କୁ ଅତି ମାତ୍ରାରେ ନିଜସ୍ୱ ବୋଲି ମନେ କରୁଥିଲେ। ରାମାନୁଜନ୍ ମଧ୍ୟ ମା'ଙ୍କ ପ୍ରତି ସମାନ ଭାବରେ ଅନୁରକ୍ତି ଦେଖାଉଥିଲେ। ଦୁହିଁଙ୍କର ମାନସିକତା ମଧ୍ୟ ଏକାଭଳି ଥିଲା। ପ୍ରୌଢ଼ା କୋମଳତାମ୍ମାଲ୍ ଏବେ ଜଣେ କଠୋର ମହିଳା ଭାବରେ ଜଣା ଥିଲେ ଏବଂ ଅନଭିଜ୍ଞ ଓ ଭୟାଳୁ ଜାନକୀ ତାଙ୍କ ଆଗରେ ଛୁଆଟିଏ ଥିଲେ।

ସତୁରି ବର୍ଷ ପରେ ଜାନକୀ ଟ୍ରିପ୍ଲିକେନ୍‌ରେ ତାଙ୍କର ପାଳିତ ପୁତ୍ର ସହିତ ରହୁଥିଲେ। ସେତେବେଳେ ତାଙ୍କୁ ଅଠାଅଶି ବର୍ଷ ବୟସ ହୋଇଥିଲା ଓ ଅଣ୍ଟା ନଇଁ ଯାଇଥିଲା। ପଇଁଚାଳିଶ ବର୍ଷ ବୟସ୍କ ପାଳିତ ପୁତ୍ର ନାରାୟଣନ୍, ତାଙ୍କ ସ୍ତ୍ରୀ ଓ ତିନି ପିଲା ଜାନକୀଙ୍କ ସହିତ ରହୁଥିଲେ। ଜାନକୀ ସେତେବେଳକୁ ଚାଲିପାରୁ ନ ଥିଲେ, ପ୍ରାୟ ଶୁଣି ପାରୁ ନ ଥିଲେ। କଥା କହିବା ତାଙ୍କ ପାଇଁ ସହଜ ନ ଥିଲା, କିନ୍ତୁ ତାଙ୍କର ସ୍ମିତହାସ୍ୟ ମନମୁଗ୍ଧକର ଥିଲା।

ତାଙ୍କୁ ଜାଣିଥିବା ଲୋକମାନେ କହନ୍ତି ଯେ ବୟସ ବଢ଼ିବା ସହିତ ଜାନକୀଙ୍କର ଆତ୍ମବିଶ୍ୱାସ ଓ ଦୃଢ଼ତା ବଢ଼ିଥିଲା। ତଥାପି ଜଣେ ବୋହୂ ଭାବରେ ଶାଶୂଙ୍କର କଠୋର ବ୍ୟବହାରକୁ ସହି ନେଉଥିଲେ। ଶାଶୂଙ୍କ ପ୍ରତି ରାଗ ଆସୁଥିଲେ ମଧ୍ୟ ସେ ତାଙ୍କୁ କେବେ ଅସମ୍ମାନଜନକ ବ୍ୟବହାର ଦେଖାଉ ନ ଥିଲେ। ଶାଶୂଙ୍କର ମୃତ୍ୟୁର ଅନେକ ବର୍ଷ ପରେ ଓ ନିଜର ପରିଣତ ବୟସରେ ତାଙ୍କର ସେହି ମନୋଭାବ ବଦଳି ନ ଥିଲା।

ନାରାୟଣନ୍‌ଙ୍କ ମାଧ୍ୟମରେ ବୃଦ୍ଧା ଜାନକୀ ଜଣାଇଲେ ଯେ ରାମାନୁଜନ୍‌ଙ୍କୁ ବିବାହ କରିବାର ସୁଯୋଗ ପାଇଥିବାରୁ ସେ କୃତଜ୍ଞ ଥିଲେ। ତାଙ୍କର ପାରିବାରିକ ସମସ୍ୟା ବିଷୟରେ ଆଲୋଚନାକୁ ସମ୍ମାନଜନକ ସ୍ତରରେ ରଖିବା ପାଇଁ ସେ ଅନୁରୋଧ କରିଥିଲେ। ସଂକ୍ଷିପ୍ତ ଭାବରେ ସେ କହିଥିଲେ ଯେ ଶାଶୂଙ୍କ ସହିତ ତାଙ୍କର ମନ ମିଳିଲାନାହିଁ ଏବଂ ଏକ ସମୟରେ ଅଲଗା ପରିବେଶ ପାଇବା ପାଇଁ ସେ ଘର ଛାଡ଼ି ଚାଲିଗଲେ।

ଜାନକୀଙ୍କୁ ଅନ୍ତରଙ୍ଗ ଭାବରେ ଜାଣିଥିବା ଲୋକମାନେ ତାଙ୍କ ରୋଷର କାରଣ ବିଷୟରେ କିଛି ଧାରଣା ଦିଅନ୍ତି। ଯାହା ଜଣାପଡୁଥିଲା, ରାମାନୁଜନ୍ ଭାରତରେ ଥିଲାବେଳେ କୋମଳତାମ୍ମାଲ୍ ତାଙ୍କୁ ଓ ଜାନକୀଙ୍କୁ ସ୍ୱାମୀ-ସ୍ତ୍ରୀ ଭାବରେ ମିଶିବାକୁ ଦେଉ ନ ଥିଲେ। ରାମାନୁଜନ୍ ଇଂଲଣ୍ଡ ଗଲା ପରେ ଜାନକୀ ଭଲ ଲୁଗା ପିନ୍ଧିବାକୁ ପାଉ ନ ଥିଲେ, ତାଙ୍କ ହାତକୁ କିଛି ପଇସା ଦିଆଯାଉ ନ ଥିଲା ଏବଂ ସବୁ କିଛି ପାଇଁ ତାଙ୍କୁ ଶାଶୂଙ୍କ ଉପରେ ନିର୍ଭର କରିବାକୁ ପଡୁଥିଲା। ନଈରୁ ପାଣି ଆଣିବା ଓ ଅନ୍ୟ ଘର କାମ କରିବା ସହିତ ଶାଶୂଙ୍କର କଡ଼ା କଥା ତାଙ୍କୁ ଶୁଣିବାକୁ ପଡୁଥିଲା। ଶେଷରେ ରାମାନୁଜନ୍‌ଙ୍କ ପାଖକୁ ତାଙ୍କର ଚିଠି ଓ ତାଙ୍କ ପାଖକୁ ରାମାନୁଜନ୍‌ଙ୍କ ଚିଠି ସବୁ ଅଟକା ଯାଉଥିଲା। ଶୁଣାଯାଏ ଯେ ଜାନକୀଙ୍କୁ ଇଂଲଣ୍ଡ ପଠାଇବା ପାଇଁ ଥରେ ରାମାନୁଜନ୍ ମା'ଙ୍କ ପାଖକୁ ଲେଖିଥିଲେ। କିନ୍ତୁ ଜାନକୀଙ୍କୁ ସେ ବିଷୟରେ କିଛି ନ କହି ତାହା ସମ୍ଭବ ନୁହେଁ ବୋଲି କୋମଳତାମ୍ମାଲ୍ ଉତ୍ତର ଦେଇଥିଲେ।

ଏହି ସବୁ ବିଷୟରେ କୋମଳତାମ୍ମାଲ୍‌ଙ୍କ ପଟର କଥା କିଛି ଜଣାନାହିଁ। ତେବେ କେହି କେହି କହନ୍ତି ଯେ ରାମାନୁଜନ୍‌ଙ୍କ ଅସୁସ୍ଥତା ପାଇଁ ସେ ଜାନକୀଙ୍କୁ ଦୋଷ ଦେଉଥିଲେ। ଜାନକୀଙ୍କ ଜାତକରେ କିଛି ଅସୁବିଧା ଥିବାରୁ ଏପରି ଘଟିଥିଲା ବୋଲି ସେ କହୁଥିଲେ। ଆଉ କାହାକୁ ବାହା

ହୋଇଥିଲେ ରାମାନୁଜନ୍ ରୋଗରେ ପଡ଼ି ନ ଥା'ନ୍ତେ ବୋଲି ସେ ନିଶ୍ଚିତ ଥିଲେ। ଏକଥା ମଧ୍ୟ ହୋଇପାରେ ଯେ କୋମଳତାମ୍ମାଲ୍ ଜାନକୀଙ୍କ ପ୍ରତି କିଛି ସ୍ୱତନ୍ତ୍ର ବିଦ୍ୱେଷ ଦେଖାଉ ନ ଥିଲେ। ବୟସରେ ସେ ଜାନକୀଙ୍କଠାରୁ ପ୍ରାୟ ଚାଳିଶ ବର୍ଷ ବଡ଼ ଥିଲେ ଏବଂ ଘର ଚଳାଇବାର ଦାୟିତ୍ୱ ତାଙ୍କ ଉପରେ ରହିଥିଲା। ତେଣୁ ଜାନକୀଙ୍କ ବୟସ ନ ବଢ଼ିଲା ଯାଏଁ ତାଙ୍କୁ ପିଲାଭଳି ବ୍ୟବହାର କରିବା ଏବଂ ସ୍ୱାଧୀନତା ନ ଦେବା କୋମଳତାମ୍ମାଲ୍‌ଙ୍କ ପକ୍ଷରେ ସ୍ୱାଭାବିକ ଥିଲା। ଜାନକୀଙ୍କର ଅଳି ବା ରାଗକୁ ସେ ଖାତିର ନ କରିବା ମଧ୍ୟ ଏହି ବିଚାରରେ ଦେଖାଯାଇପାରେ।

ପରିବାର ଭିତରେ ପ୍ରକୃତ ସମ୍ପର୍କର ସଠିକ ରୂପ ଜାଣିବା ସମ୍ଭବ ନ ଥିଲା, କିନ୍ତୁ ସେଠାରେ ନିଶ୍ଚିତ ଭାବରେ ତିକ୍ତତା ରହିଥିଲା ଓ କଡ଼ା କଥାବାର୍ତ୍ତା ଚାଲୁଥିଲା। ପରିସ୍ଥିତି ଥରେ ଏତେ ଖରାପ ହେଲା ଯେ ପ୍ରଥମରୁ ବିବାହକୁ ବିରୋଧ କରୁଥିବା ରାମାନୁଜନ୍‌ଙ୍କ ବାପା ଜାନକୀଙ୍କ ସପକ୍ଷରେ ବାହାରିଥିଲେ। ସାଧାରଣତଃ ଘର କଥାରେ ମୁଣ୍ଡ ପୂରାଉ ନ ଥିବା ବାପା ସେତେବେଳକୁ ଅଧାଅଧି ଅନ୍ଧ ହୋଇଯାଇଥିଲେ, ତଥାପି ସେ ସ୍ତ୍ରୀଙ୍କୁ ବିରୋଧ କରିଥିଲେ।

ଶେଷରେ ଶାଶୂଘର ଛାଡ଼ିବା ପାଇଁ ଜାନକୀଙ୍କୁ ଏକ ସୁଯୋଗ ମିଳିଲା। କରାଚୀରେ କାମ କରୁଥିବା ତାଙ୍କର ଭାଇ ଶ୍ରୀନିବାସଙ୍କର ବାହାଘର ଆସିଲା ଏବଂ ରାଜେନ୍ଦ୍ରମ୍‌ଠାରେ ବାପାମା'ଙ୍କ ଘରକୁ ଯିବାକୁ ସେ ବାହାରିଲେ। କୁମ୍ଭକୋଣମ୍‌ଠାରେ ଥିବା କିଛି ସାଙ୍ଗଙ୍କଠାରୁ ଜାନକୀଙ୍କ ଅସୁବିଧା ବିଷୟରେ ତାଙ୍କ ବାପାମା କିଛି ଖବର ପାଉଥିଲେ। ତେଣୁ ଜାନକୀଙ୍କୁ ନେଇ ଆସିବାକୁ ସେମାନେ ହୁଏତ ଏଭଳି ଏକ ସୁଯୋଗ ଅପେକ୍ଷାରେ ଥିଲେ।

କିଛିଦିନ ପରେ ଜାନକୀ କରାଚୀରେ ଭାଇ ପାଖରେ ରହୁଥିଲା ବେଳେ ରାମାନୁଜନ୍‌ଙ୍କ ପାଖକୁ ଚିଠି ଲେଖିଲେ। ଚିଠିଟି ଏଥର ରାମାନୁଜନ୍‌ଙ୍କ ହାତକୁ ଆସିଲା। ସେଥିରେ ନିଜ ପାଇଁ ଖଣ୍ଡେ ନୂଆ ଶାଢ଼ି ଓ ଭାଇ ପାଇଁ କିଛି ଉପହାର କିଣିବାକୁ ସେ କିଛି ପଇସା ମାଗିଥିଲେ। ନିଜର କର୍ତ୍ତବ୍ୟ ଭାବରେ ରାମାନୁଜନ୍ ତାହା ପଠାଇଥିଲେ, କିନ୍ତୁ ଜାନକୀଙ୍କ ପାଖକୁ ତାଙ୍କ ଚିଠିରେ କିଛି ଉଷ୍ମତା ବା ଆବେଗ ନ ଥିଲା। ଜାନକୀଙ୍କଠାରୁ ଆଗରୁ ଚିଠି ପାଇ ନ ଥିବାରୁ ଏବଂ ଘର ବିଷୟରେ ସେ କେବଳ ମା'ଙ୍କ ତରଫର କଥା ଜାଣୁଥିବାରୁ ରାମାନୁଜନ୍ ବେଶ୍ ତିକ୍ତ ଅନୁଭବ କରୁଥିଲେ।

ଘରର ଗୋଳମାଳିଆ ପରିସ୍ଥିତି ସାରା ପରିବାର ସହିତ ରାମାନୁଜନ୍‌ଙ୍କ ସମ୍ପର୍କକୁ ଖରାପ କରିଦେଲା। ଘରକୁ ତାଙ୍କର ଚିଠିଦେବା କମି କମି ଚାଲିଲା ଏବଂ ଶେଷରେ ପୂରା ବନ୍ଦ ହୋଇଗଲା। 1914 ମସିହାରେ ସେ ମାସକୁ ତିନି ଚାରିଟି ଚିଠି ଘରକୁ ପଠାଉଥିଲେ, 1916 ମସିହାରେ ଦୁଇ ତିନି ମାସରେ ସେ ଖଣ୍ଡେ ଚିଠି ଲେଖିଲେ। 1917 ମସିହାରେ ଘରକୁ ସେ ଗୋଟିଏ ବି ଚିଠି ପଠାଇ ନ ଥିଲେ।

ପାରିବାରିକ ସମସ୍ୟା ବିଷୟରେ ବୋଧହୁଏ ସେ ଲଜ୍ଜିତ ଅନୁଭବ କରୁଥିଲେ, ତେଣୁ ଏହି ବିଷୟରେ ସେ କାହାକୁ କିଛି କହି ନ ଥିଲେ। ଶେଷରେ ଡାକ୍ତରଖାନାରେ ଥିବା ବେଳେ ସେ ଆଉ ସମ୍ଭାଳି ପାରିଲେନାହିଁ। ହାର୍ଡିଙ୍କ ପାଖକୁ ସେ ଚିଠି ଲେଖି ଏହାର ସୂଚନା ଦେଲେ। ତାଙ୍କର ସାଙ୍ଗ ଚାଟାର୍ଜୀଙ୍କୁ ମଧ୍ୟ ସେ କହିଥିଲେ। ରାମାନୁଜନ୍‌ଙ୍କୁ ଦେଖିବା ପାଇଁ ଚାଟାର୍ଜୀ ଥରେ ଡାକ୍ତରଖାନାକୁ ଆସିଥିଲେ, ରାମାନୁଜନ୍‌ଙ୍କୁ ଅସୁଖୀ ଥିବାର ଦେଖି ତା'ର କାରଣ ସେ ଜାଣିବାକୁ ଚାହିଁଲେ।

ରାମାନୁଜନ୍‌ଙ୍କର ସଂକ୍ଷିପ୍ତ ରୋଷଭରା ଉତ୍ତର ଥିଲା, "ପତ୍ନୀ ମୋ ପାଖକୁ ଚିଠି ଦେଉନାହାନ୍ତି।" ଚାଟାର୍ଜୀ ଅପ୍ରସ୍ତୁତ ହୋଇପଡ଼ିଲେ ଏବଂ ପରିସ୍ଥିତିକୁ ହାଲୁକା କରିବା ପାଇଁ କିଛି ଥଟ୍ଟାମଜା କରି ଅନ୍ୟ କଥାରେ ମନ ଦେଲେ।

ପାରିବାରିକ ବିବାଦ ରାମାନୁଜନ୍‌ଙ୍କ ମାନସିକ ସନ୍ତୁଳନକୁ ଦୋହଲାଇ ଦେଇଥିଲା। ମାନସିକ ବଳ ଯୋଗାଉଥିବା ପାରିବାରିକ ସମ୍ପର୍କ ଅଡୁଆ ହୋଇଯାଇଥିଲା। ଖାଲି ସେତିକିରେ କଥା ସରି ନ ଥିଲା। ଇଂଲଣ୍ଡରେ ସାଢ଼େ ତିନିବର୍ଷ ହାର୍ଡିଙ୍କ ସହିତ କଟାଇବା ପରେ ମଧ୍ୟ ହାର୍ଡି ତାଙ୍କ ବ୍ୟକ୍ତିଗତ ଜୀବନ ବିଷୟରେ ପ୍ରାୟ କିଛି ବି ଜାଣି ନ ଥିଲେ। ହାର୍ଡି ପୁଣି ତାଙ୍କର ସବୁଠାରୁ ବଡ଼ ସାଙ୍ଗ ଥିଲେ ଏବଂ ରାମାନୁଜନ୍ ଅସୁସ୍ଥ ହେବା ଆଗରୁ ସେମାନଙ୍କ ଭିତରେ ପ୍ରତିଦିନ ସାକ୍ଷାତ ଆଲୋଚନା ଚାଲୁଥିଲା। ତଥାପି ରାମାନୁଜନ୍ ଘରୁ ଚିଠି ନ ପାଇବା ବିଷୟରେ ସେ ଏବେ ଯାଏଁ ଜାଣି ନ ଥିଲେ। ଇଂଲଣ୍ଡରେ ନିଜକୁ ଖାପ ଖୁଆଇବାକୁ ନେଇ ରାମାନୁଜନ୍ ଚାପଗ୍ରସ୍ତ ରହିଥିବା ବା ବେଳେ ବେଳେ ତୀବ୍ର ଭାବରେ ଏକାକୀ ଅନୁଭବ କରୁଥିବା ବିଷୟରେ ମଧ୍ୟ ହାର୍ଡି ବୋଧହୁଏ ପୂରାପୂରି ଅଜ୍ଞ ଥିଲେ।

ସେମାନେ ଯଦି ଏତେ ସାଙ୍ଗ ଥିଲେ ତେବେ ରାମାନୁଜନ୍ ଏସବୁ କଥା ହାର୍ଡିଙ୍କୁ କହିପାରି ନ ଥିଲେ କାହିଁକି?

ପ୍ରକୃତରେ ଦେଖିଲେ ସେଦୁହେଁ ଅନ୍ତରଙ୍ଗ ସାଥୀ ନ ଥିଲେ। ରାମାନୁଜନ୍‌ଙ୍କର ଭାରତ ସମ୍ପର୍କ କଟିଯାଇଥିଲା, ଇଂଲଣ୍ଡ ସହିତ ସମ୍ପର୍କ ଗଢ଼ିଉଠି ନ ଥିଲା। ବ୍ୟକ୍ତିଗତ, ସାଂସ୍କୃତିକ ଓ ପାରିପାର୍ଶ୍ୱିକ ବ୍ୟବଧାନ ଦୃଷ୍ଟିରୁ ହାର୍ଡିଙ୍କ ସହିତ ମଧ୍ୟ ତାଙ୍କ ସମ୍ପର୍କ ନିବିଡ଼ ନ ଥିଲା।

### ୪. ନେଲ୍‌ସନ୍ ସ୍କାରକୀ

ରାମାନୁଜନ୍‌ଙ୍କ ପ୍ରତି ହାର୍ଡି ଗଭୀର ଆଗ୍ରହ ଦେଖାଉଥିଲେ, କିନ୍ତୁ ଆହୁରି ଅନେକ କଥା ତାଙ୍କୁ ବୁଝିବାକୁ ପଡୁଥିଲା। ଗଣିତ କ୍ଷେତ୍ରରେ ସେ ଜଣେ ଆନ୍ତର୍ଜାତିକ ବ୍ୟକ୍ତିତ୍ୱ ଥିଲେ। ରାମାନୁଜନ୍‌ଙ୍କ ଗଣିତ କ୍ଷେତ୍ର ଛଡ଼ା ସେ ଆହୁରି ଅନେକ ଗାଣିତିକ ବିଭାଗରେ କାମ କରୁଥିଲେ। 1915ରୁ 1918 ମସିହା ଭିତରେ ସେ ପ୍ରକାଶ କରିଥିବା ପଇଁଚାଳିଶଟି ନିବନ୍ଧ ଭିତରୁ ମାତ୍ର ଚାରିଟି ରାମାନୁଜନ୍‌ଙ୍କ ସହିତ ଥିଲା। ଅବଶ୍ୟ ରାମାନୁଜନ୍‌ଙ୍କ ସହିତ ମିଳିତ କାମର ପ୍ରଭାବ ତାଙ୍କର ଅନ୍ୟ କେତେ ନିବନ୍ଧରେ ଦେଖାଯାଉଥିଲା। ଲଣ୍ଡନ ମାଥେମାଟିକାଲ୍ ସୋସାଇଟିର କାର୍ଯ୍ୟକଳାପରେ ହାର୍ଡି ବିଶେଷ ଭାବରେ ସମ୍ପୃକ୍ତ ଥିଲେ। ତାହାର ଅଧିବେଶନଗୁଡ଼ିକରେ ଭାଗ ନେବା ସହିତ ସୋସାଇଟିର କାର୍ଯ୍ୟାଳୟ ଓ ଗଣମାଧ୍ୟମ ସମ୍ପର୍କିତ ଦାୟିତ୍ୱ ମଧ୍ୟ ସେ ତୁଲାଉଥିଲେ। ଉଦାହରଣ ସ୍ୱରୂପ, 1917 ମସିହା ଜାନୁଆରି ମାସରେ ନିବନ୍ଧ ଲେଖକମାନଙ୍କ ପାଇଁ ନିର୍ଦ୍ଦେଶାବଳୀ ସମ୍ବଳିତ ଏକ ଚିଠା ପ୍ରସ୍ତୁତିର ଦାୟିତ୍ୱ ସେ ନେଇଥିଲେ। କେମ୍ବ୍ରିଜ ଫିଲୋସୋଫିକାଲ ସୋସାଇଟିରେ ମଧ୍ୟ ସେ ସକ୍ରିୟ ଥିଲେ। 1917 ମସିହାରେ ଏହାର ବିବରଣୀକୁ ଦୁଇଟି ପତ୍ରିକାରେ ବିଭକ୍ତ କରିବା ପାଇଁ ସେ ଏକ ଅଭିଯାନ ଚଳାଇଥିଲେ। ଏପରି ହେଲେ ଶୁଦ୍ଧ ଗଣିତ ବିଷୟକ ଭାଗର ମାନ ବଢ଼ିପାରିବ ବୋଲି ସେ ଭାବୁଥିଲେ।

ଗଣିତ ବାହାରର ଦୁନିଆରେ, ବିଶେଷ କରି ଯୁଦ୍ଧର ବିରୋଧରେ ମଧ୍ୟ ହାର୍ଡିଙ୍କର ଗଭୀର ସମ୍ପୃକ୍ତି ରହିଥିଲା। ଆରମ୍ଭରୁ ହିଁ ଯୁଦ୍ଧ କେମ୍ବ୍ରିଜକୁ ଭାଗ ଭାଗ କରିଦେଇଥିଲା। ଯୁଦ୍ଧରେ ଭାଗ ନେଉଥିବା ଲୋକଙ୍କୁ ହାର୍ଡି ଭଲ ଦୃଷ୍ଟିରେ ଦେଖୁ ନ ଥିଲେ। ତାଙ୍କର ମତ ଥିଲା ଯେ ଅତି ବେଶିରେ ଫ୍ରାନ୍ସ୍ ଓ ବେଲ୍‌ଜିଅମ୍ ବିପଦ ମୁକ୍ତ ହେବା ଯାଏଁ ଯୁଦ୍ଧ ଚାଲୁ ଓ ତା'ପରେ ବନ୍ଦ ହୋଇଯାଉ। ଅବଶ୍ୟ ସେ ଦୁଇ ଦେଶ ଉପରୁ ଶେଷ ଯାଏଁ ବିପଦ ଟଳି ନ ଥିଲା।

ଏହି ସମୟ ଭିତରେ ବର୍ଟ୍ରାଣ୍ଡ ରସେଲ୍ ଘଟଣାକୁ ନେଇ ଟ୍ରିନିଟିରେ ତୀବ୍ର ମତାନ୍ତର ଦେଖାଯାଇଥିଲା। ତାଙ୍କ ସମୟର ଶ୍ରେଷ୍ଠ ଗାଣିତିକ-ଦାର୍ଶନିକ ବର୍ଟ୍ରାଣ୍ଡ ରସେଲ୍ ଯୁଦ୍ଧର ତୀବ୍ର ବିରୋଧ କରୁଥିଲେ। ତାଙ୍କର ଯୁଦ୍ଧବିରୋଧୀ କାର୍ଯ୍ୟକଳାପ 1960 ଦଶକର ଭିଏତନାମ୍ ଯୁଦ୍ଧ ପର୍ଯ୍ୟନ୍ତ ସେ ଚଳାଇ ରଖିଥିଲେ। ଶାନ୍ତିବାଦୀ ରସେଲ୍‌ଙ୍କ ମନୋଭାବକୁ ରକ୍ଷଣଶୀଳ ବରିଷ୍ଠ ଫେଲୋମାନେ ପସନ୍ଦ କରୁ ନ ଥିଲେ। କନିଷ୍ଠ ଫେଲୋମାନେ ଯୁଦ୍ଧରେ ସମ୍ପୃକ୍ତ ଥିବାରୁ ସେହି ବରିଷ୍ଠ ଫେଲୋମାନେ ଟ୍ରିନିଟିର ପରିଚାଳନା ଦାୟିତ୍ୱ ଏବେ ନେଇଥିଲେ। ଜଣେ ସ୍କୁଲ ଶିକ୍ଷକ ଏଭରେଟ୍ ବିବେକର ତାଡ଼ନାରେ ଯୁଦ୍ଧର ବିରୋଧ କରୁଥିଲେ, ତେଣୁ ପ୍ରତ୍ୟକ୍ଷ ଲଢ଼େଇ ଦାୟିତ୍ୱରୁ ଛାଡ଼ ପାଇଥିଲେ। କିନ୍ତୁ 1916 ମସିହା ଏପ୍ରିଲ ମାସରେ ପରୋକ୍ଷ ଭାବରେ ଯୁଦ୍ଧ କାମରେ ଲାଗିବା ପାଇଁ ତାଙ୍କୁ ଡକରା ଆସିଲା। ଏହାର ପ୍ରତିବାଦ କରି ସେ କାମରେ ଯୋଗ ଦେଲେନାହିଁ, ତେଣୁ ସାମରିକ ବିଚାର ଜରିଆରେ ତାଙ୍କୁ ଦୁଇବର୍ଷର ସଶ୍ରମ କାରାଦଣ୍ଡ ଦିଆଗଲା। ଯୁଦ୍ଧ ପାଇଁ ବାଧ୍ୟତାମୂଳକ ସୈନିକ ଚୟନର ବିରୋଧ କରୁଥିବା ନନ୍-କନ୍‌ସ୍କ୍ରିପସନ୍ ଫେଲୋସିପ୍ ଅନୁଷ୍ଠାନରେ ସେତେବେଳେ ସକ୍ରିୟ ଥିବା ରସେଲ୍ ଏଭରେଟ୍‌ଙ୍କ ପକ୍ଷ ନେଇ ଏକ ସ୍ୱାକ୍ଷରିତ ପ୍ରଚାରପତ୍ର ବାଣ୍ଟିଥିଲେ। ସୈନିକ ଚୟନରେ ବାଧା ସୃଷ୍ଟି କରୁଥିବା ଦର୍ଶାଇ ରସେଲ୍‌ଙ୍କୁ ଦୋଷୀ ସାବ୍ୟସ୍ତ କରାଗଲା ଏବଂ ମୋଟା ଅଙ୍କର ଅର୍ଥ ଦଣ୍ଡ ଦିଆଗଲା।

ଏହାର ପ୍ରତିକ୍ରିୟାରେ 1916 ମସିହା ଜୁଲାଇ 11 ତାରିଖରେ ଟ୍ରିନିଟିର ଲେକ୍ଚରର୍ ପଦରୁ ରସେଲ୍‌ଙ୍କୁ ବରଖାସ୍ତ କରାଗଲା। କଲେଜର କାର୍ଯ୍ୟରେ କ୍ଷୋଭ ପ୍ରକାଶ କରି କେମ୍ବ୍ରିଜ ମାଗାଜିନ୍ ତା'ର ଶିରୋନାମାରେ ଲେଖିଥିଲା, "କଳଙ୍କିତ କେମ୍ବ୍ରିଜ"। ହାର୍ଡି, ଲିଟଲ୍‌ଉଡ୍, ବାର୍ଣ୍ଣସ୍, ନେଭିଲ୍ ଓ ଅନ୍ୟ କିଛି ଫେଲୋ କଲେଜର କାମକୁ ବିରୋଧ କରିଥିଲେ। ହାର୍ଡି ଏହି ଘଟଣାର ବିବରଣୀ ଦେଇ ଗୋଟିଏ ବହି - ରସେଲ୍ ଓ ଟ୍ରିନିଟି - ଲେଖିଥିଲେ। ହାର୍ଡିଙ୍କର ସେହି 'ଛୋଟିଆ ବହି' ବିଷୟରେ ଜଣେ ସମୀକ୍ଷକ ଲେଖିଥିଲେ, "ଏହା ସେହି ଜୀବନଧାରାର ବିବରଣୀ ଯେଉଁଠି ଲୋକମାନେ ଦିନବେଳେ ପରସ୍ପରକୁ ଆଘାତ ଦେବା ପାଇଁ ପ୍ରଗାଢ଼ ଚେଷ୍ଟା କରନ୍ତି ଏବଂ ରାତିରେ ଏକାଠି ବସି ଖିଆପିଆ କରନ୍ତି।"

ୟୁନିଅନ୍ ଅଫ୍ ଡେମୋକ୍ରାଟିକ୍ କଣ୍ଟ୍ରୋଲ୍ ଅନୁଷ୍ଠାନର କେମ୍ବ୍ରିଜ ଶାଖା ବିଷୟରେ ଏକ କ୍ଷୁଦ୍ର ବିଜ୍ଞାପନ 1917 ମସିହା ମେ 5 ତାରିଖ ଦିନର କେମ୍ବ୍ରିଜ ମାଗାଜିନ୍‌ରେ ବାହାରିଲା। ସେହି ଅନୁଷ୍ଠାନର ବର୍ଣ୍ଣନା ଥିଲା, "ବୈଦେଶିକ ନୀତି ଓ ଯୁଦ୍ଧ ପରର ରାଜିନାମା ବିଷୟରେ ସ୍ୱାଧୀନ ମତ ପ୍ରକାଶ କରିବା ପାଇଁ ଏକ ସମିତି" ଏବଂ ତାହା ବିଷୟରେ ଅଧିକ ଜାଣିବା ପାଇଁ "ଟ୍ରିନିଟି କଲେଜର ଜି. ଏଚ୍. ହାର୍ଡି"ଙ୍କ ସହିତ ଯୋଗାଯୋଗ କରିବାକୁ କୁହାଯାଇଥିଲା। ଏହା ଆଗରୁ ତାଙ୍କ

କାମର ଜାତୀୟ ଗୁରୁତ୍ୱ ଦୃଷ୍ଟିରୁ ଅନ୍ତତଃ ଆଉ ଜଣେ ଗଣିତଜ୍ଞଙ୍କୁ ଯୁଦ୍ଧ କାମରୁ ଛାଡ଼ କରିବାକୁ କର୍ତ୍ତୃପକ୍ଷଙ୍କୁ ବୁଝାଇପାରିଥିଲେ। 1918 ମସିହାରେ ଯୁଦ୍ଧ ବିରୋଧୀ ମତ ଯୋଗୁ ଜଣେ ଦକ୍ଷ ଲାଇବ୍ରେରି ପରିଚାଳକଙ୍କ ବହିଷ୍କାର ଘଟଣାରେ ମଧ୍ୟ ହାର୍ଡି ପ୍ରତିବାଦ କରିଥିଲେ। ସେହି ବିଷୟରେ ହାର୍ଡି କହିଥିଲେ, "ମୁଁ ଜାଣିବାରେ (ଲାଇବ୍ରେରି ପରିଚାଳକ) ଡିଙ୍ଗୱାଲ୍ କିଛି କରିନାହାନ୍ତି। କଥା ଏତିକି ଯେ ତାଙ୍କର ଚିନ୍ତାଧାରାକୁ ପସନ୍ଦଯୋଗ୍ୟ ମନେ କରାଯାଉନାହିଁ... ରସେଲଙ୍କ କ୍ଷେତ୍ରରେ ମଧ୍ୟ ମୁଁ କାଉନ୍‌ସିଲ୍‌ର ପଦକ୍ଷେପ ପ୍ରତି କ୍ଷୋଭ ପ୍ରକାଶ କରିଥିଲି। ତାଙ୍କ କଥା କିନ୍ତୁ ବେଶ୍ ଅଲଗା ଥିଲା: ଠିକ୍ ହେଉ ବା ଭୁଲ ହେଉ ସେ କିଛି ନିର୍ଦ୍ଦିଷ୍ଟ ଓ ବାସ୍ତବ କାମ କରିଥିଲେ।"

ଏହି ଭାବରେ ହାର୍ଡି ଅନେକ କାମରେ ବ୍ୟସ୍ତ ରହୁଥିଲେ ଏବଂ ତାହା ଫଳରେ ରାମାନୁଜନ୍‌ଙ୍କ ସହିତ ତାଙ୍କ ସମ୍ପର୍କ ପାଇଁ ସେ ଯଥେଷ୍ଟ ଶକ୍ତି ଓ ସମୟ ଦେଇପାରୁ ନ ଥିଲେ। କାମରେ ଦୁହେଁ ଅତି ନିବିଡ଼ ଥିଲେ ଏବଂ ରାମାନୁଜନ୍‌ଙ୍କ ଜୀବନରେ ହାର୍ଡି ଏକ ଆଲୋକ ବର୍ତ୍ତିକା ସଦୃଶ ଥିଲେ, କିନ୍ତୁ ହାର୍ଡିଙ୍କ ଜୀବନରେ ରାମାନୁଜନ୍‌ଙ୍କର ଭୂମିକା ସେତେ ମାତ୍ରାରେ ନ ଥିଲା।

ହାର୍ଡି ଏତେ ବ୍ୟସ୍ତ ରହୁ ନ ଥିଲେ ମଧ୍ୟ ସେ ଦୁହିଁଙ୍କ ଭିତରେ ଥିବା ବିଶାଳ ବ୍ୟକ୍ତିଗତ ଓ ସାଂସ୍କୃତିକ ବ୍ୟବଧାନ ଅନ୍ତରଙ୍ଗତାକୁ ବାଧା ଦେଇଥା'ନ୍ତା। ଅନେକ ବର୍ଷ ପରେ, 1936 ମସିହାରେ, ଇଂରେଜ ଗଣିତଜ୍ଞ ଆଲାନ୍ ଟିଉରିଙ୍ଗ ଅଭିଯୋଗ କରିଥିଲେ ଯେ ହାର୍ଡି ସାଧାରଣ ବନ୍ଧୁତ୍ୱ ମଧ୍ୟ ଦେଖାଉନାହାନ୍ତି। ଏକା ଦେଶ ଓ ସଂସ୍କୃତିର ଲୋକ ହୋଇ ମଧ୍ୟ ସେମାନଙ୍କ ସମ୍ପର୍କ ଯଦି ଏଭଳି ଥିଲା ରାମାନୁଜନ୍‌ଙ୍କ କ୍ଷେତ୍ରରେ ବେଶି ଅସୁବିଧା ଆସିବା ସ୍ୱାଭାବିକ।

ଗୋଟିଏ ମତରେ ରାମାନୁଜନ୍‌ଙ୍କ ପ୍ରତି ହାର୍ଡିଙ୍କ ମନୋଭାବ ପିତୃସୁଲଭ ଥିଲା। ବୟସରେ ହାର୍ଡି ରାମାନୁଜନ୍‌ଙ୍କଠାରୁ ଦଶବର୍ଷ ବଡ଼ ଥିଲେ ଏବଂ ଅନେକ ଦୃଷ୍ଟିରୁ ରାମାନୁଜନ୍‌ଙ୍କ ପାଇଁ ଜଣେ ଉଦାର, ସାହାଯ୍ୟ ପରାୟଣ ଓ ସଦୟ ପିତୃସ୍ଥାନୀୟ ବ୍ୟକ୍ତିର ଭୂମିକା ତୁଲାଉଥିଲେ। ତେଣୁ ସେହି ସମ୍ପର୍କରେ କିଛି ଭୟ, ଦାବି ଓ ଦୂରତା ରହିବା ମୋଟେ ଅସ୍ୱାଭାବିକ ନ ଥିଲା। ସେ ଦୁହିଁଙ୍କ ଭିତରେ ହୁଏତ ପିତା-ପୁତ୍ରଙ୍କ ଆତ୍ମୀୟତା ଥିଲା, କିନ୍ତୁ ବନ୍ଧୁତ୍ୱର ଅନ୍ତରଙ୍ଗତା ନ ଥିଲା।

1805 ମସିହାରେ ଆଡ୍‌ମିରାଲ୍ ନେଲ୍‌ସନ୍ ଫରାସିମାନଙ୍କ ଉପରେ ବିଜୟ ହାସଲ କରିଥିବାର ସ୍ମାରକୀ ଭାବରେ ଲଣ୍ଡନର ଟ୍ରାଫଲ୍‌ଗାର୍ ଛକ ନିର୍ମିତ ହୋଇଛି। ତା'ର ମଝିରେ ରହିଛି ନେଲ୍‌ସନ୍ ସ୍ତମ୍ଭ ଯାହାର ମୂଳରେ ଛିଡ଼ାହେଲେ ସେଥିରେ ଥିବା କଳାକୃତିର ସୂକ୍ଷ୍ମ ରୂପ ସବୁ ଦେଖିହେବ। ଉପରକୁ ଦୃଷ୍ଟି ଉଠାଇ ଚାଲିଲେ 167 ଫୁଟ ଉଚ୍ଚ ସ୍ତମ୍ଭ ଉପରେ ନେଲ୍‌ସନ୍‌ଙ୍କ ମୂର୍ତ୍ତି ଦେଖାଯିବ। ଏତେ ଉଚ୍ଚରେ ଥିବା ହୁଗୁଳା ପୋଷାକ ପିନ୍ଧା ମୂର୍ତ୍ତିଟିକୁ ଦେଖିହେବ ସତ, କିନ୍ତୁ ତା'ର ସୂକ୍ଷ୍ମ ଗଠନକୁ ଧରିବା ସମ୍ଭବ ହେବନାହିଁ।

ହାର୍ଡିଙ୍କୁ ଥରେ ପଚରା ଯାଇଥିଲା ଯେ ସେ କାହାକୁ ବେଶି ପସନ୍ଦ କରିବେ - ଏଭଳି ଅତି ଉଚ୍ଚରେ ଥିବା ତାଙ୍କର ପ୍ରତିମୂର୍ତ୍ତିକୁ ନା ଅଳ୍ପ ଉଚ୍ଚତାରେ ଥିବା ଛୁଇଁ ହେଉଥିବା ମୂର୍ତ୍ତିକୁ? ହାର୍ଡି ବାଛିଥିଲେ ପ୍ରଥମଟିକୁ। ବାଡ଼, ଏକାନ୍ତତା, ଦୂରତା ଆଦିରେ ରହିଥିବା ନିରାପତ୍ତାକୁ ହାର୍ଡି ଅଧିକ ପସନ୍ଦ କରୁଥିଲେ।

ମଣିଷ ମନର ଅସମତଳ ପ୍ରାନ୍ତରରେ ବିଚରଣ କରିବାରେ ହାର୍ଡିଙ୍କର ଆଗ୍ରହ ବା ଦକ୍ଷତା ନ ଥିଲା। ରାମାନୁଜନ୍‌ଙ୍କ ସହିତ ସେ କଳା ବା ଦର୍ଶନଶାସ୍ତ୍ର ବିଷୟରେ ଆଲୋଚନା କରିପାରନ୍ତି, ଠିକ୍ ଯେଉଁଭଳି ସେ ଅନ୍ୟ ପାଶ୍ଚାତ୍ୟ ବନ୍ଧୁଙ୍କ ସହ ବିଭିନ୍ନ ବିଷୟରେ ବିଚକ୍ଷଣ କଥୋପକଥନରେ ମଜ୍ଜିଯା'ନ୍ତି। ରାମାନୁଜନ୍‌ଙ୍କର ସେହି ପ୍ରକାରର ରୁଚି ବିଷୟରେ ସେ କିଛି କିଛି ଜାଣିଥିଲେ ମଧ୍ୟ। କିନ୍ତୁ ସେ କେବେ ବି ଘର ଓ ପରିବାର, ଜାତିପ୍ରଥା ବା ହିନ୍ଦୁ ଦେବାଦେବୀଙ୍କ ବିଷୟରେ ରାମାନୁଜନ୍‌ଙ୍କ ସହିତ କଥାବାର୍ତ୍ତା ହେଉ ନ ଥିଲେ। କାହାର ବ୍ୟକ୍ତିଗତ ଜୀବନ ବିଷୟରେ ଉଖାଡ଼ି କରି ପଚାରିବା ହାର୍ଡିଙ୍କ ପାଇଁ ରୁଚିକର ନ ଥିଲା। ଅନେକ ଦିନ ପରେ ରାମାନୁଜନ୍‌ଙ୍କ ବିଷୟରେ ଲେଖିଲା ବେଳେ ସେ ଆରମ୍ଭ କରିଥିଲେ, "ରାମାନୁଜନ୍‌ଙ୍କ ଜୀବନ ବିଷୟରେ ତଥ୍ୟ ପାଇଁ ମୁଁ ଶେଷୁ ଆୟାର ଓ ରାମଚନ୍ଦ୍ର ରାଓଙ୍କ ଉପରେ ନିର୍ଭର କରିଛି।" ସେହି ତଥ୍ୟ ସେ ରାମାନୁଜନ୍‌ଙ୍କଠାରୁ ଆଦାୟ କରି ନ ଥିଲେ, ବରଂ ସେଥିପାଇଁ ସେ ଅନ୍ୟମାନଙ୍କ ଉପରେ ନିର୍ଭର କରୁଥିଲେ।

ଆଦୌ ସମ୍ବେଦନଶୀଳ ହୋଇ ନ ଥିବା ବିଭିନ୍ନ ପ୍ରଶ୍ନ ମଧ୍ୟ ହାର୍ଡି ରାମାନୁଜନ୍‌ଙ୍କୁ ପଚାରି ନ ଥିଲେ। ଯେପରି ଭାରତରେ କେଉଁ ଗଣିତଜ୍ଞଙ୍କ ପ୍ରଭାବ ରାମାନୁଜନ୍‌ଙ୍କ ଉପରେ ପଡ଼ିଥିଲା। ହାର୍ଡିଙ୍କ କହିବା ଅନୁସାରେ, "ମୁଁ ମାନୁଛି ଏହା ମୋର ବଡ଼ ଦୋଷ ଥିଲା, କାରଣ ଅନେକ କଥା ରହିଛି ଯାହା ଆମେ ଏବେ ଜାଣିବାକୁ ଚାହୁଁଛେ ଏବଂ ଯାହା ମୁଁ ସହଜରେ ବୁଝି ନେଇପାରିଥା'ନ୍ତି। ରାମାନୁଜନ୍‌ଙ୍କୁ ମୁଁ ପ୍ରାୟ ପ୍ରତିଦିନ ଭେଟୁଥିଲି, ତେଣୁ ଟିକିଏ ପଚରାପଚରି କରିଥିଲେ ଅଧିକାଂଶ କଥାର ସଠିକ ଉତ୍ତର ମିଳିପାରିଥା'ନ୍ତା।" ମୁଁ ଗୋଟିଏ ବି ଏଭଳି ପ୍ରଶ୍ନ କେବେ ପଚାରି ନ ଥିଲି ...

> ସେ ବିଷୟରେ ଏବେ ମୁଁ ଦୁଃଖିତ, କିନ୍ତୁ ତାହା କିଛି ବଡ଼ କଥା ନୁହେଁ, ତାହା ପୂରା ସ୍ୱାଭାବିକ ଥିଲା। ରାମାନୁଜନ୍ ଜଣେ ଗଣିତଜ୍ଞ ଥିଲେ ଯିଏ କାମ କରିବା ପାଇଁ ବ୍ୟଗ୍ର ଥିଲେ। ମୁଁ ମଧ୍ୟ ଜଣେ ଗଣିତଜ୍ଞ ଏବଂ ରାମାନୁଜନ୍‌ଙ୍କୁ ଭେଟିବା ପରେ ଜଣେ ଗଣିତଜ୍ଞ ଅଧିକ ଆଗ୍ରହର କଥା ବିଷୟରେ ଭାବିବାକୁ ଚାହୁଁଥିଲା, ଇତିହାସ ବିଷୟରେ ନୁହେଁ। କେଉଁ ପ୍ରମେୟକୁ ସେ କିପରି ପାଇଲେ ସେ ବିଷୟରେ ବ୍ୟସ୍ତ ହେବାଟା ହାସ୍ୟାସ୍ପଦ ମନେ ହେଉଥିଲା, ବିଶେଷ କରି ଯେତେବେଳେ ସେ ପ୍ରତିଦିନ ଅଧ ଡଜନ ଖଣ୍ଡେ ନୂଆ ପ୍ରମେୟ ଦେଖାଉଥିଲେ।

ହାର୍ଡି ଓ ରାମାନୁଜନ୍‌ଙ୍କର ବନ୍ଧୁତ୍ୱ ଗଣିତ ଆଧାରିତ ଥିଲା। ତାଙ୍କର ବୋଧହୁଏ ଆଉ ଗୋଟିଏ ମାତ୍ର ଅନ୍ୟ ଖୁସି ରହିଥିଲା - ପରସ୍ପରକୁ ଆବିଷ୍କାର କରିଥିବାର ଖୁସି। ତଥାପି ଇଂରେଜ ଶୀତଳତାରୁ ରାମାନୁଜନ୍‌ଙ୍କୁ ରକ୍ଷା କରିବା ପାଇଁ ଏବଂ ସେହି ଅଜଣା ପରିବେଶରେ ମିଶିବାରେ ତାଙ୍କୁ ସାହାଯ୍ୟ କରିବା ପାଇଁ ହାର୍ଡି ଉପଯୁକ୍ତ ବ୍ୟକ୍ତି ନ ଥିଲେ।

## ୨. ରାମାନୁଜନ୍, ଗଣିତ ଓ ଭଗବାନ

ହାର୍ଡି ଓ ରାମାନୁଜନ୍‌ଙ୍କ ଭିତରେ ଦୂରତାର ଆଉ ଗୋଟିଏ କ୍ଷେତ୍ର ଥିଲା ରାମାନୁଜନ୍‌ଙ୍କ ଧାର୍ମିକ ବିଶ୍ୱାସ ଏବଂ ତାକୁ ହାର୍ଡିଙ୍କର ଉପେକ୍ଷା। ପ୍ରାଚ୍ୟ ପୃଷ୍ଠଭୂମିର କୌଣସି ପ୍ରଭାବ ଯେ ରାମାନୁଜନ୍‌ଙ୍କ କାମ ପଛରେ ରହିଥାଇପାରେ ହାର୍ଡି ତାହା ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ।

ଇ. ଟି. ବେଲ୍ କହିଥିଲେ, "ଯେତେବେଳେ ଅତି ବିଶିଷ୍ଟ ଗଣିତଜ୍ଞ ହିନ୍ଦୁ ରାମାନୁଜନ୍ ଅକସ୍ମାତ୍

ଆବିର୍ଭୂତ ହେଲେ ସେତେବେଳେ ଦକ୍ଷ ବିଶ୍ଳେଷଣାତ୍ମକ ଗଣିତଜ୍ଞମାନେ ମଧ୍ୟ ତାଙ୍କୁ ସ୍ୱର୍ଗର ଦାନ ଭାବରେ ବର୍ଣ୍ଣନା କଲେ ଏବଂ ଅସମ୍ପର୍କିତ ମନେହେଉଥିବା ଉପପାଦ୍ୟ ଭିତରେ ଲୁକ୍କାୟିତ ସମ୍ପର୍କ ଦେଖିବା ଦିଗରେ ତାଙ୍କର ଅଲୌକିକ ଅନ୍ତର୍ଦୃଷ୍ଟିକୁ ଶ୍ରେୟ ଦେଲେ।''

ଶୁଣିଲେ ବିଚିତ୍ର ଲାଗେ ଯେ କଠୋର ହେତୁବାଦୀମାନେ ରାମାନୁଜନ୍‌ଙ୍କ ସମ୍ପର୍କରେ 'ସ୍ୱର୍ଗର ଦାନ', 'ଅଲୌକିକ ଅନ୍ତର୍ଦୃଷ୍ଟି' ଭଳି ଈଶ୍ୱରବିଶ୍ୱାସୀଙ୍କ ଶବ୍ଦମାନ ବ୍ୟବହାର କରୁଥିଲେ। ରାମାନୁଜନ୍‌ଙ୍କ ନୋଟ୍ ଖାତାକୁ ଭଲକରି ଦେଖିବାରେ ହାର୍ଡି ପ୍ରଥମ ପାଶ୍ଚାତ୍ୟ ଗଣିତଜ୍ଞ ଥିଲେ। ତାହାପର ପଞ୍ଚସ୍ତରୀ ବର୍ଷ ଭିତରେ ଆହୁରି ଅନେକ ଗଣିତଜ୍ଞ ସେଗୁଡ଼ିକୁ ଦେଖିଲେ। ଦେଖିଲା ପରେ ସମସ୍ତେ ବିସ୍ମୟ ଓ ସମ୍ମାନରେ ହତବାକ୍ ହୋଇପଡୁଥିଲେ। ସେଥିରେ ପ୍ରତିଫଳିତ ହେଉଥିବା ରାମାନୁଜନ୍‌ଙ୍କର ଅମାପ ଓ ରହସ୍ୟମୟ ଦକ୍ଷତାର ବର୍ଣ୍ଣନା ଦେବାକୁ ସେମାନେ ଭାଷା ପାଉ ନ ଥିଲେ।

ୱିସ୍‌କନ୍‌ସିନ୍ ବିଶ୍ୱବିଦ୍ୟାଳୟର ରାମାନୁଜନ୍ ଗବେଷକ ରିଚାର୍ଡ ଆସ୍କି କୁହନ୍ତି, "ଏଭଳି ଚମତ୍କାର କାମ ସେ କିପରି କଲେ, ତାଙ୍କର ଅବଧାରଣାର ଉତ୍ସ କ'ଣ ଥିଲା ବା ଅନ୍ୟ କିଛି ବିଷୟରେ କୌଣସି ଧାରଣା ଆମେ ପାଇପାରିନାହୁଁ।'' ଅନେକ ବର୍ଷ ଧରି ରାମାନୁଜନ୍‌ଙ୍କ ନୋଟ ଖାତା ଉପରେ କାମ କରିବା ପରେ ବ୍ରୁସ୍ ବର୍ଣ୍ଟ କହନ୍ତି, "ସବୁକିଛି ବୁଝିବା ମୋ ପାଇଁ ଏବେ ଯାଏଁ ସମ୍ଭବ ହୋଇନାହିଁ। ହୁଏତ ମୁଁ ଏଥିରୁ କିଛି ପ୍ରମାଣିତ କରିପାରିବି, କିନ୍ତୁ ତାହା କେଉଁଠୁ ଆସିଲା ଏବଂ ଗଣିତର ବୃହତ୍ତର ପରିସରରେ ତାହା କିପରି ଖାପ ଖାଉଛି ତାହା ମୁଁ ଜାଣିନାହିଁ... ରାମାନୁଜନ୍‌ଙ୍କ ସୃଜନଶୀଳତାର ରହସ୍ୟ ଏବେ ମଧ୍ୟ ଏକ ପରଦା ପଛରେ ରହିଛି ଯାହା ଟିକିଏ ମାତ୍ର ଖୋଲା ହୋଇଛି।''

ବିଭାଜନ ସଂଖ୍ୟା ବିଷୟରେ ରାମାନୁଜନ୍‌ଙ୍କ କାମର ବର୍ଣ୍ଣନା କଲାବେଳେ ଲିଟଲ୍‌ଉଡ୍ ମଧ୍ୟ ତାଙ୍କର ରହସ୍ୟମୟତା ବିଷୟରେ ସୂଚନା ଦେଇଛନ୍ତି। ରାମାନୁଜନ୍‌ଙ୍କ ଚିନ୍ତନର ବିକାଶଧାରାକୁ ଖୋଜିବାକୁ ସେ ଚେଷ୍ଟା କରିଛନ୍ତି ଏବଂ ଶେଷରେ ହତାଶ ଓ କିଂକର୍ତ୍ତବ୍ୟବିମୂଢ଼ ହୋଇ ହାତ ଟେକି ଦେଇଛନ୍ତି। ସେ କହିଛନ୍ତି:

> ଏଥିରେ ପ୍ରକୃତରେ କିଛି ରହସ୍ୟ ରହିଛି। ଶେଷ ଫଳ ବିଷୟରେ ଯଦି ଆମେ ଆଗରୁ ଜାଣିଥା'ନ୍ତେ ତେବେ ଧୀରେ ଧୀରେ ଆଗେଇବା ପାଇଁ ଆମେ ବାଧ୍ୟ ହୋଇଥା'ନ୍ତେ ଏବଂ $\Psi_q$ର ସଠିକ ରୂପରେ ପହଞ୍ଚିଥା'ନ୍ତେ। କିନ୍ତୁ ରାମାନୁଜନ୍ କାହିଁକି ଏତେ ନିଶ୍ଚିତ ଥିଲେ ଯେ ତା'ର ନିର୍ଦ୍ଦିଷ୍ଟ ଶେଷ ଫଳ ରହିଥିଲା? ଯଦି ତାହା ତାତ୍ତ୍ୱିକ ଅନ୍ତର୍ଦୃଷ୍ଟିରୁ ଆସିଥାଏ, ତେବେ ସେହି ଅନ୍ତର୍ଦୃଷ୍ଟି ଆଶାତୀତ ଭାବରେ ଉଚ୍ଚସ୍ତରର ହୋଇଥିବ। କେଉଁ ସାଂଖ୍ୟିକ ଉଦାହରଣ ଦେଖି ସେ ଏଭଳି ଏକ ଦୃଢ଼ ଶେଷଫଳ ବିଷୟରେ ନିଶ୍ଚିତ ହୋଇଥିଲେ ତାହା ଭାବିବା ମଧ୍ୟ କଷ୍ଟର କଥା। $\Psi_q$ର ରୂପ ଯଦି ଆଗରୁ ଜଣା ନଥାଏ, ତେବେ କୌଣସି ସାଂଖ୍ୟିକ ଉଦାହରଣ ଏହାର ଧାରଣା ଦେଇପାରିବନାହିଁ। ତେଣୁ ସଠିକ ରୂପର ଆବିଷ୍କାର ଯେ ଅନ୍ତର୍ଦୃଷ୍ଟିର ଏକ ଝଲକ ଥିଲା, ତାହା ନମାନିବାର ବାଟ ନାହିଁ।

ପୋଲାଣ୍ଡର ପ୍ରବାସୀ ଗଣିତଜ୍ଞ ମାର୍କ କାକ୍‌ଙ୍କ ଭାଷାରେ ରାମାନୁଜନ୍ ଜଣେ 'ସାଧାରଣ ବିଚକ୍ଷଣ' ବ୍ୟକ୍ତି ନ ଥିଲେ, ବରଂ ଜଣେ 'ଯାଦୁକର' ଥିଲେ।

> ଜଣେ ସାଧାରଣ ବିଚକ୍ଷଣ ବ୍ୟକ୍ତି ଠିକ୍ ଆମରି ଭଳି ହେବ, କିନ୍ତୁ ଅନେକ ଗୁଣ ଅଧିକ ଦକ୍ଷତା ଦେଖାଇବ। ତାଙ୍କର ମସ୍ତିଷ୍କ କିପରି କାମ କରେ ସେ ବିଷୟରେ କିଛି ରହସ୍ୟ ନଥାଏ। ସେ ଯାହା

> କରିଛନ୍ତି ତାକୁ ଥରେ ବୁଝିଗଲେ ଆମର ବିଶ୍ୱାସ ଆସେ ଯେ ଆମେ ମଧ୍ୟ ତାହା ନିଶ୍ଚିତ ଭାବରେ କରିପାରିଥା'ନ୍ତେ। ଯାଦୁକରଙ୍କ କଥା କିନ୍ତୁ ଅଲଗା। ତାଙ୍କ ଭାଷାରେ କହିଲେ, ଆମେ ଯେଉଁଠାରେ ଅଛେ ସେମାନେ ତା'ର ଲମ୍ବକୋଣୀୟ ବା ଅର୍ଥଗୋନାଲ୍ ଅନୁପୂରକ ଅଞ୍ଚଳରେ ରହିଥା'ନ୍ତି ଏବଂ ତାଙ୍କର ମନ କିପରି କାମ କରେ ତାହା ସବୁ ଦିଗରୁ ଆମ ପାଇଁ ଅବୋଧ୍ୟ ହୁଏ। ସେମାନେ କ'ଣ କରିଛନ୍ତି ତାହା ବୁଝିଲା ପରେ ବି ତାହା କିପରି କରାଯାଇଛି ତାହା ବୁଝିବା ସମ୍ଭବ ହୁଏନାହିଁ।

ରାମାନୁଜନ୍‌ଙ୍କ କାମ ବିଷୟରେ ବ୍ୟବହୃତ ଶବ୍ଦ ଭିତରେ ରହସ୍ୟ, ଯାଦୁ, ଅନ୍ଧାର, ଲୁକ୍କାୟିତ, ସାଧାରଣ ଚିନ୍ତନ ପାଇଁ ଅପହଞ୍ଚ ଆଦି ସବୁବେଳେ ରହିଥାଏ। ତାହାକୁ ବୁଝିବାକୁ ଚେଷ୍ଟା କଲାବେଳେ ତର୍କଶକ୍ତିର ଉପର ସୀମାକୁ ଛୁଇଁବାକୁ ପଡୁଥାଏ।

ତର୍କଶକ୍ତିର ସୀମାରେ କ'ଣ ଆଉ କିଛି ଶକ୍ତି ଆବିର୍ଭୂତ ହୁଏ? ଆମ ବୁଝିବାର ବାହାରେ ଥିବା କିଛି ଆଧ୍ୟାତ୍ମିକ ବା ଅଲୌକିକ ଶକ୍ତି କ'ଣ ସତରେ ଦେଖାଯାଏ?

ପାଶ୍ଚାତ୍ୟ ହେତୁବାଦ ଏବେ ସବୁଆଡ଼େ ବିଜୟୀ। ତେଣୁ କିଛି ଅଲୌକିକ ଶକ୍ତିର ଅବତାରଣା ସେହି ନୀତିର ବିରୋଧ କରିବ ଏବଂ ପୁରୁଣା ସମୟର କଥା ଭାବରେ ଏବେ ଅସମ୍ଭବ ମନେହେବ। ରାମାନୁଜନ୍‌ଙ୍କର କିନ୍ତୁ ତାହା ଉପରେ ବିଶ୍ୱାସ ରହିଥିଲା। ତାଙ୍କୁ ଜାଣିଥିବା ଦକ୍ଷିଣ ଭାରତୀୟ ହେତୁବାଦୀମାନେ କହନ୍ତି ଯେ ମା ଓ ଆଈ ତାଙ୍କୁ ଯେଉଁ ଆଧ୍ୟାତ୍ମିକ ଦୁନିଆ ସହିତ ପରିଚିତ କରାଇ ଦେଇଥିଲେ ତାକୁ ସେ ସହଜରେ ଗ୍ରହଣ କରିପାରୁଥିଲେ। ସେଥିରେ ସେ ଗାଣିତିକ ପ୍ରେରଣାର ଅସରନ୍ତି ଉତ୍ସ ଦେଖୁଥିଲେ।

ମାନ୍ଦ୍ରାଜର ଜଣେ ପୂର୍ବତନ ଆକାଉଣ୍ଟାଣ୍ଟ ଜେନେରାଲ ଟି. କେ. ରାଜଗୋପାଳଚାରୀ ରାମାନୁଜନ୍‌ଙ୍କର ଗୋଟିଏ ଦୃଢ଼ୋକ୍ତି ବିଷୟରେ କହନ୍ତି। ରାମାନୁଜନ୍ ଥରେ ସ୍ୱପ୍ନରେ କିଛି ରକ୍ତ ଟୋପା ଦେଖିଲେ କିଂବଦନ୍ତି ଅନୁସାରେ ଯାହା ଦେବୀ ନାମଗିରିଙ୍କ ସ୍ୱାମୀ ଦେବ ନରସିଂହଙ୍କର ଉପସ୍ଥିତିର ସୂଚନା ଦେଉଥିଲା। ତାହା ଦେଖିଲା ପରେ ଅତି ଜଟିଳ ଗଣିତ ଲେଖାଥିବା ପୋଥି ତାଙ୍କ ଆଖି ଆଗରେ ଖୋଲି ଯାଉଥିଲା।

ପାଶ୍ୟାପ୍ପା କଲେଜରେ ରାମାନୁଜନ୍‌ଙ୍କ ସହପାଠୀ ଥିବା ଆର୍. ରାଧାକ୍ରିଷ୍ଣା ଆୟାର ଦିନେ ତାଙ୍କ ଗବେଷଣା ବିଷୟରେ ରାମାନୁଜନ୍‌ଙ୍କୁ ପଚାରିଲେ। ତାଙ୍କୁ ମିଳିଥିବା ଉତ୍ତର ଥିଲା, "ଦେବ ନରସିଂହ ତାଙ୍କୁ ସ୍ୱପ୍ନରେ ଦେଖା ଦେଇଥିଲେ ଓ କହିଲେ ଯେ ତାଙ୍କର ଗବେଷଣା ଫଳକୁ ସମସ୍ତଙ୍କୁ ଜଣାଇବାର ବେଳ ଏବେ ଆସିନାହିଁ।"

ଇଂଲଣ୍ଡ ଯିବାର ପ୍ରାୟ ବର୍ଷେ ଆଗରୁ ଗଣିତ ଅଧ୍ୟାପକ ଆର୍. ଶ୍ରୀନିବାସନ୍‌ଙ୍କୁ ରାମାନୁଜନ୍ ନିଜର କାମ ଦେଖାଉଥିଲେ ଏବଂ କହୁଥିଲେ ଯେ ସମୀକରଣଗୁଡ଼ିକୁ ସେ ଭଗବାନଙ୍କ ସୃଷ୍ଟି ଭାବରେ ଦେଖୁଥିଲେ।

ଜ୍ୟୋତିଷବିଦ୍ୟାରେ ଓ ସ୍ୱପ୍ନର ବ୍ୟାଖ୍ୟା କରିବାରେ ରାମାନୁଜନ୍ ବିଶେଷ ଆଗ୍ରହୀ ଥିବା କଥା ତାଙ୍କ ସାଙ୍ଗମାନେ ଜଣାନ୍ତି। ରାମାନୁଜନ୍‌ଙ୍କର ପିଲାଦିନର ସାଙ୍ଗ ଅନନ୍ତରମଣ ଏଭଳି ଏକ ଘଟଣା ବିଷୟରେ ସୂଚନା ଦେଇଥିଲେ। ଥରେ ତାଙ୍କର ଭାଇଙ୍କର ସ୍ୱପ୍ନର ବ୍ୟାଖ୍ୟାକରି ରାମାନୁଜନ୍ କହିଲେ ଯେ ତାଙ୍କ ଘର ପାଖରେ କାହାର ମୃତ୍ୟୁ ହେବ। ଏବଂ ତାହା ଘଟିଥିଲା। ରାମାନୁଜନ୍ ତାଙ୍କ ସାଥୀ

କେ. ଗୋପାଳଚାରୀଙ୍କୁ କହିଥିଲେ ଯେ ଗଣିତ ପ୍ରତି ତାଙ୍କର ଆଗ୍ରହ ଏକ ସ୍ୱପ୍ନରୁ ଆସିଛି। ତାହା ଥିଲା ଜଣେ ବୁଲା ବିକାଳିର ବଟିକା ବିକୁଥିବାର ସ୍ୱପ୍ନ।

ଅଦୃଶ୍ୟ ଶକ୍ତି ଓ ଅଲୌକିକ ପ୍ରଭାବ ଉପରେ ରାମାନୁଜନ୍‌ଙ୍କ ବିଶ୍ୱାସ ବିଷୟରେ ଅନ୍ତତଃ ଭାରତରେ ତାଙ୍କୁ କିଛି ଲୁଚାଇବାକୁ ବା ସଫେଇ ଦେବାକୁ ପଡୁ ନ ଥିଲା। ତାହା ଯେ କେବଳ ଏକ ଅକାମୀ ବିଶ୍ୱାସ ଥିଲା ତାହା ନୁହେଁ। ଅନେକ ସମୟରେ ସେ ସେହି ବିଶ୍ୱାସ ଅନୁସାରେ କାମ ମଧ୍ୟ କରୁଥିଲେ।

ଇଂଲଣ୍ଡ ଯିବାର ପୂର୍ବ ବର୍ଷରେ ନିଜର ବ୍ୟସ୍ତତା ଭିତରେ ମଧ୍ୟ ସେ ସାଙ୍ଗ ଓ ପରିବାର ପାଇଁ ଭବିଷ୍ୟବାଣୀ କରିବା ଓ ବିଭିନ୍ନ କାମର ଶୁଭବେଳ ଠିକ୍ କରିବା ପାଇଁ ସମୟ ବାହାର କରୁଥିଲେ। ନିଜ ହାତ ଦେଖି ସାଙ୍ଗମାନଙ୍କୁ ସେ କହିଥିଲେ ଯେ ପଇଁତିରିଶ ବର୍ଷ ବୟସ ଆଗରୁ ତାଙ୍କର ମୃତ୍ୟୁ ହେବ। ଏହିଭଳି ଅନେକ ଘଟଣା ବିଷୟରେ ବିଭିନ୍ନ ଲୋକ ଜାଣିଥିଲେ।

1895 ମସିହାରେ ମାଦ୍ରାଜରେ ଟ୍ରାମ୍ ଚଳାଚଳ ଆରମ୍ଭ ହେଲା। ଭାରତରେ ଏହା ପ୍ରଥମ ଥିଲା ଏବଂ ଅନେକ ବର୍ଷ ଯାଏଁ ଆଉ କେଉଁଠି ଟ୍ରାମ୍ ଚାଲି ନ ଥିଲା। ଦିନେ ସନ୍ଧ୍ୟାରେ ଟ୍ରାମ୍ ଯୋଗେ ରାମାନୁଜନ୍ ଘରକୁ ଫେରୁଥିଲେ। ଟ୍ରାମ୍‌ଚାଳକ ମଜାରେ ଖୁବ୍ ଜୋରରେ ଯାଉଯାଉ ହଠାତ୍ ଅଟକି ଯାଉଥିଲା ଏବଂ ଯାତ୍ରୀମାନେ ଦୟନୀୟ ଭାବରେ ଏପଟ ସେପଟ ହୋଇଯାଉଥିଲେ। ରାମାନୁଜନ୍ ତାଙ୍କ ସାଙ୍ଗଙ୍କୁ କହିଲେ, "ଲୋକଟି ଭାବୁଛି ଯେ ତା'ର ଶକ୍ତିରେ ସେ ଜୋରରେ ଯାଉଛି ବା ଅଟକୁଛି। ସେ ଭୁଲିଯାଉଛି ଯେ ମୁଣ୍ଡ ଉପରେ ଥିବା ତାରର ବିଦ୍ୟୁତ ଶକ୍ତି ଉପରେ ସେ ନିର୍ଭର କରୁଛି ... ଏହା ହେଉଛି ପୃଥିବୀରେ ମାୟାର ଖେଳ।"

ରାମାନୁଜନ୍ ତାଙ୍କର ସଂସ୍କୃତିର ବିଶ୍ୱାସ ଓ ବିଚାରରେ ବୁଡ଼ି ରହିଥିଲେ। ଅନେକ ବର୍ଷ ଧରି, ଅନେକ ପରିସ୍ଥିତିରେ, ଅନେକ ପ୍ରକାରରେ ତାଙ୍କ ସମ୍ପର୍କିତ ଅନୁଭୂତି ବିଭିନ୍ନ ଲୋକଙ୍କଠାରୁ ଶୁଣାଯାଏ। ଏହା କୌଣସି ସନ୍ଦେହୀ ହେତୁବାଦୀର ଚିତ୍ର ଆଙ୍କୁ ନ ଥିଲା ବା ଯାନ୍ତ୍ରିକ ଭାବରେ ପୁରୁଣା କାଳିଆ ବିଶ୍ୱାସକୁ ଜାବୁଡ଼ି ଧରିଥିବା ଲୋକର ଧାରଣା ଦେଉ ନ ଥିଲା।

ତଥାପି ହାର୍ଡି ଜୋର ଦେଇ ତାହା ହିଁ କହୁଥିଲେ। ଥରେ ରାମାନୁଜନ୍‌ଙ୍କ ବିଷୟରେ ଭାଷଣ ଦେଉଥିଲା ବେଳେ ହାର୍ଡି ଘୋଷଣା କରିଥିଲେ:

> ରାମାନୁଜନ୍‌ଙ୍କୁ ମୁଁ ଏପରି ଜଣେ ମଣିଷ ଭାବରେ ଉପସ୍ଥାପିତ କରିବାକୁ ଚାହୁଁଛି ଯାହାର ଅନ୍ୟ ବିଶିଷ୍ଟ ବ୍ୟକ୍ତିମାନଙ୍କ ଭଳି ଅନେକ ବିଚିତ୍ରତା ରହିଥିଲା, କିନ୍ତୁ ଯାହାର ସାନ୍ନିଧ୍ୟ ଆନନ୍ଦଦାୟକ ଥିଲା, ଯାହା ସହିତ ଚା' ପିଇବା ସହିତ ରାଜନୀତି ବା ଗଣିତ ଆଲୋଚନା କରାଯାଇପାରେ। ସଂକ୍ଷେପରେ ସେ ପ୍ରାଚ୍ୟର କୌଣସି ବିସ୍ମୟକର ବସ୍ତୁ ନ ଥିଲେ ବା କେହି ଉଦ୍‌ବୁଦ୍ଧ ମୂର୍ଖ ଲୋକ କି ମାନସିକ ବିକୃତିଗ୍ରସ୍ତ ମଣିଷ ନ ଥିଲେ। ସେ ଥିଲେ ଜଣେ ବିଚାରବନ୍ତ ମଣିଷ ଯିଏ ଜଣେ ମହାନ ଗଣିତଜ୍ଞ ମଧ୍ୟ ଥିଲେ।

ରାମାନୁଜନ୍‌ଙ୍କ ଧର୍ମ ବିଷୟରେ ହାର୍ଡି କହୁଥିଲେ, "ତାହା ତାଙ୍କ ପାଳନ ପାଇଁ ଏକ ପ୍ରଥା ଥିଲା କିନ୍ତୁ ବୌଦ୍ଧିକ ବିଶ୍ୱାସର ବିଷୟ ନ ଥିଲା। ମୋର ମନେଅଛି ସେ କହୁଥିଲେ ଯେ ତାଙ୍କ ପାଇଁ ସବୁ ଧର୍ମ ସତ ଥିଲା। ଏହା ମତେ ଆଶ୍ଚର୍ଯ୍ୟ କରିଥିଲା।"

ହାର୍ଡିଙ୍କର ଆଉ ଗୋଟିଏ ଲେଖା ଥିଲା, "ରାମାନୁଜନ୍ ରହସ୍ୟବାଦୀ ନ ଥିଲେ ଏବଂ କେବଳ ବସ୍ତୁବାଦୀ ଦିଗ ଛଡ଼ା ଧର୍ମ ତାଙ୍କ ଜୀବନରେ କୌଣସି ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଉ ନ ଥିଲା।"

ସି. ପି. ସ୍ନୋ'ଙ୍କର ପଢ଼ାଘରେ ପ୍ରାୟ କିଛି ଆସବାବପତ୍ର ନ ଥିଲା, ଅନେକ ବର୍ଷ ଧରି କେବଳ ହାର୍ଡିଙ୍କର ଗୋଟିଏ ବଡ଼ ଫଟୋ ଥିଲା। ସବୁ ଦିଗରୁ ସେ ହାର୍ଡିଙ୍କୁ ସମ୍ମାନ କରୁଥିଲେ। କିନ୍ତୁ ରାମାନୁଜନ୍‌ଙ୍କ ବିଷୟରେ ହାର୍ଡିଙ୍କ କଥା ଥିଲା, "ଏକ ଅସ୍ପଷ୍ଟ ସର୍ବେଶ୍ୱରବାଦୀ ଉଦାରତା ଛଡ଼ା ସେ ଧର୍ମଶାସ୍ତ୍ରର ତତ୍ତ୍ୱରେ ବିଶେଷ ବିଶ୍ୱାସ ରଖୁ ନ ଥିଲେ।" ଏହା ହାର୍ଡିଙ୍କର ଚିନ୍ତାଧାରା ସହିତ ମେଳ ଖାଉଥିଲା ଏବଂ ସ୍ନୋ ଏହାଠାରୁ ନିଜକୁ ଦୂରରେ ରଖିଥିଲେ। ସ୍ନୋ'ଙ୍କର କହିବା କଥା ଥିଲା, "ଏହି କଥାରେ ହାର୍ଡିଙ୍କ ଅନ୍ତର୍ଦୃଷ୍ଟିକୁ ମୁଁ ବେଶି ବିଶ୍ୱାସ କରିବିନାହିଁ।"

ହାର୍ଡିଙ୍କ କଥାରେ ପ୍ରଭାବିତ ହୋଇ କିଛି ଭାରତୀୟ ଏବଂ ଅଧିକାଂଶ ପାଶ୍ଚାତ୍ୟ ପର୍ଯ୍ୟବେକ୍ଷକ ରାମାନୁଜନ୍‌ଙ୍କ ରହସ୍ୟବାଦୀ ଦିଗକୁ ଗଣିତ କ୍ଷେତ୍ରରେ ନୂଆ ନୂଆ ସମ୍ପର୍କ ଦେଖିପାରିବାରେ ତାଙ୍କର ଅସାଧାରଣ ଶକ୍ତିଠାରୁ ଅଲଗା ଭାବରେ ଦେଖିଛନ୍ତି। ତାଙ୍କର ଗୋଟିଏ ଦିଗକୁ ସେମାନେ ଉଚ୍ଚ ସମ୍ମାନ ଦେଉଥିଲା ବେଳେ ଅନ୍ୟ ଦିଗଟିକୁ ଉପେକ୍ଷା କରି ଯାଇଛନ୍ତି। ଜ୍ୟୋତିଷ ଶାସ୍ତ୍ର ଓ ଧର୍ମକର୍ମରେ ବିଶ୍ୱାସ ଏବଂ ଦେବୀ ନାମଗିରିଙ୍କ ପ୍ରତି ପ୍ରଗାଢ଼ ଭକ୍ତି ଆଦିକୁ ସେହି ପର୍ଯ୍ୟବେକ୍ଷକମାନେ ରାମାନୁଜନ୍‌ଙ୍କର ଦୁର୍ଭାଗ୍ୟଜନକ ଦୁର୍ବଳତା ଭାବରେ ହେୟ ମନେକରିଛନ୍ତି। ସେମାନଙ୍କ ମତରେ ତାଙ୍କର ଗାଣିତିକ ଦକ୍ଷତା ସହିତ ଏସବୁର କିଛି ସମ୍ପର୍କ ନ ଥିଲା, କିନ୍ତୁ ପ୍ରତିଭାବାନ ବ୍ୟକ୍ତିଙ୍କର ଦୁର୍ବଳତା ଭାବରେ ଏସବୁକୁ ସହିବାକୁ ହେବ।

ରାମାନୁଜନ୍‌ଙ୍କ ପାଇଁ କିନ୍ତୁ ତାଙ୍କ ଜୀବନର ବିଭିନ୍ନ ଦିଗ ଭିତରେ ବଡ଼ ଫାଙ୍କ ରହି ନ ଥିଲା। 1914 ମସିହା ଏପ୍ରିଲ ମାସରେ ଯେଉଁ ରାମାନୁଜନ୍‌ଙ୍କୁ ହାର୍ଡି ଭେଟିଥିଲେ ସେ ଦକ୍ଷିଣ ଭାରତର ଜଣେ ମଣିଷ ଥିଲେ, ଯିଏ ଭାରତୀୟ ଦେବାଦେବୀଙ୍କ ମେଳରେ ଓ ହିନ୍ଦୁ ଧର୍ମର ନମନୀୟ ସ୍ୱାଚ୍ଛନ୍ଦ୍ୟ ଭିତରେ ବଢ଼ି ଆସିଥିଲେ। ତାଙ୍କ ମନ ଭିତରେ ପ୍ରାକୃତିକ ଓ ଅଲୌକିକ, ଜାକୋବି ଓ ନାମଗିରି, ସଂଖ୍ୟା ଓ ଭଗବାନ, ସମସ୍ତେ ଗୋଟିଏ ଘରର ଅଧିବାସୀ ଥିଲେ ଏବଂ ସମସ୍ତଙ୍କ ଭିତରେ ଅନ୍ତରଙ୍ଗ ସଙ୍ଗତି ରହିଥିଲା।

ରାମାନୁଜନ୍‌ଙ୍କ ଧାର୍ମିକ ବିଶ୍ୱାସ କ'ଣ ତାଙ୍କ ଗାଣିତିକ ଶକ୍ତିର ଉତ୍ସ ଥିଲା? ନିଶ୍ଚିତ ଭାବରେ ତା ନ ଥିଲା, ନ ହେଲେ ସେଭଳି ଅସଂଖ୍ୟ ବିଶ୍ୱାସଧାରୀ ଲୋକ ମଧ୍ୟ ସେଭଳି କିଛି ଦକ୍ଷତା ଦେଖାଉଥା'ନ୍ତେ। ନାମଗିରିଙ୍କ କୃପା ବା ସ୍ୱପ୍ନରେ ନରସିଂହଙ୍କର ଆବିର୍ଭାବ ଭଳି ଯେଉଁ ସବୁ କାରଣ ରାମାନୁଜନ୍ ନିଜେ ଦେଉଥିଲେ ତାହା ମଧ୍ୟ ସତ ହେବାର ସମ୍ଭାବନା ନ ଥିଲା। ତାଙ୍କର ରହସ୍ୟବାଦୀ ଦିଗ କିପରି ସହଜ ଭାବରେ ତାଙ୍କର ତର୍କସିଦ୍ଧ ଗାଣିତିକ ଦକ୍ଷତା ସହିତ ମେଳ ଖାଇ ରହୁଥିଲା ସେକଥା ତାଙ୍କ ମନର ସ୍ୱତନ୍ତ୍ର ପ୍ରକାରର ନମନୀୟତା ବିଷୟରେ ସୂଚନା ଦିଏ। ସେହି ନମନୀୟତା ହୁଏତ ଅନ୍ୟମାନଙ୍କୁ ଜଣାପଡୁ ନ ଥିବା ଗାଣିତିକ ସମ୍ପର୍କଗୁଡ଼ିକୁ ଧରିବାରେ ସାହାଯ୍ୟ କରୁଥିଲା।

ହାର୍ଡି ପରିଶୁଦ୍ଧ ଗାଣିତିକ ବିଶ୍ଳେଷଣ ଉପରେ ଜୋର ଦେଉଥିଲେ ମଧ୍ୟ ଗଣିତ କ୍ଷେତ୍ରରେ ଅସ୍ପଷ୍ଟ ଅନ୍ତର୍ଦୃଷ୍ଟିଭିତ୍ତିକ ମାନସିକ ପ୍ରକ୍ରିୟାର ଗୁରୁତ୍ୱ ବିଷୟରେ ସଚେତନ ଥିଲେ। ସେ ଥରେ ଲେଖିଥିଲେ, "ବ୍ରୋମ୍‌ୱିଚ୍‌ଙ୍କର ଜୀବନ ଅଧିକ ସୁଖମୟ ଏବଂ ତାଙ୍କର ଗଣିତ ଆହୁରି ଉନ୍ନତ

ହୋଇଥା'ନ୍ତା ଯଦି ତାଙ୍କ ମନ କିଛି କମ୍ ସଠିକତାର ସହିତ କାମ କରୁଥା'ନ୍ତା। ତାଙ୍କର ଶ୍ରେଷ୍ଠତମ କାମରେ ମଧ୍ୟ କଳ୍ପନାର ଅଭାବ ରହିଛି। ଅନେକ ବିଷୟର କୌଶଳ ଉପରେ ଦକ୍ଷତାରେ ତାଙ୍କର କେହି ସମକକ୍ଷ ନ ଥିଲେ, କିନ୍ତୁ 'ଅସ୍ପଷ୍ଟ' ଭାବରେ ଚିନ୍ତାକରିବାର ଶକ୍ତି ତାଙ୍କର ନ ଥିଲା।" ହୁଏତ ରାମାନୁଜନ୍‌ଙ୍କ କ୍ଷେତ୍ରରେ ସେଭଳି 'ଅସ୍ପଷ୍ଟ ଚିନ୍ତା'ର ଶକ୍ତି ଅସାଧାରଣ ଭାବରେ ବିକଶିତ ହୋଇଥିଲା।

ପୁଣିଥରେ କୁହାଯାଇପାରେ ଯେ ଦେବଦେବୀଙ୍କ ଉପରେ ରାମାନୁଜନ୍‌ଙ୍କ ବିଶ୍ୱାସ ତାଙ୍କ ବିଚକ୍ଷଣତାର ଉତ୍ସ ନ ଥିଲା। କିନ୍ତୁ ଏହା ହୁଏତ ତାଙ୍କ ମନରେ କାର୍ଯ୍ୟ-କାରଣ ସମ୍ପର୍କରେ କିଛି ସୂକ୍ଷ୍ମ ଧାରଣା ସୃଷ୍ଟି କରିଥିଲା ଯାହା ଗଣିତ କ୍ଷେତ୍ରରେ ତାଙ୍କୁ ବିଭିନ୍ନ ଲୁକ୍କାୟିତ ସମ୍ପର୍କ ଦେଖିବାରେ ସାହାଯ୍ୟ କରୁଥିଲା। ଗଣିତର ତାର୍କିକ ଧାରାରେ ଦକ୍ଷ ବ୍ୟକ୍ତିମାନେ ସେଭଳି ସମ୍ପର୍କକୁ ଦେଖିପାରୁ ନ ଥିଲେ ବା ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ। ଅପରିପକ୍ୱ ବୋଲି ଯେଉଁ ଅବଧାରଣାକୁ ତାର୍କିକ ଗଣିତଜ୍ଞମାନେ ଅଗ୍ରାହ୍ୟ କରିଦେଉଥିଲେ, ରାମାନୁଜନ୍‌ଙ୍କର ମନର ସ୍ୱତନ୍ତ୍ର ନମନୀୟତା ସେଥିରେ ଅସ୍ପଷ୍ଟ, କିନ୍ତୁ ପ୍ରଣିଧାନଯୋଗ୍ୟ, ସମ୍ଭାବନା ଦେଖୁଥିଲା। ତାଙ୍କ ମନର ସମାଲୋଚକ ଦିଗଟି ହୁଏତ ସୃଜନଶୀଳ ଓ ସଂଶ୍ଳେଷକ ଦିଗ ତୁଳନାରେ ଦୁର୍ବଳ ଥିଲା।

ମନର ବିଶ୍ଳେଷଣ ବା ସମାଲୋଚନା ଦିଗ ମଣିଷକୁ ସୁରକ୍ଷା ଯୋଗାଏ, ଭୁଲ ବାଟରେ ଯିବାରୁ ବଞ୍ଚାଏ, ମିଛ କଥାରେ ଭଳିଯିବାରୁ ରକ୍ଷାକରେ। ରାମାନୁଜନ୍‌ଙ୍କ ମନରେ ତାହା ହୁଏତ ତୁଳନାତ୍ମକ ଭାବରେ ଅବିକଶିତ ଥିଲା, ତେଣୁ ସେ ସରଳ ବିଶ୍ୱାସୀ ଥିଲେ। ସମସ୍ତେ ଲକ୍ଷ୍ୟ କରିଥିବା ତାଙ୍କର ନିଷ୍କପଟ ଗୁଣ ବୋଧହୁଏ ଏହି କାରଣରୁ ଆସିଥିଲା। ସମାଲୋଚନାର ରକ୍ଷା କବଚ ନ ଥିବାରୁ ହୁଏତ ସେ ଜ୍ୟୋତିଷ ଶାସ୍ତ୍ର ଆଦି ଭିତ୍ତିହୀନ ବିଷୟକୁ ବିନା ବିଚାରରେ ଗ୍ରହଣ କରିନେଉଥିଲେ।

ସମାଲୋଚନାର ପରଦା ବିନା କ'ଣ ସେ ଗଣିତର ଜ୍ଞାନ ପ୍ରତି ଅଧିକ ଉନ୍ମୁକ୍ତ ହୋଇଥିଲେ?

ମନର ଦୁନିଆ ବିଷୟକ ଆଲୋଚନାକୁ ହାର୍ଡି ସହଜ ଭାବରେ ଗ୍ରହଣ କରିପାରୁ ନ ଥିଲେ। ୧୯୨୮ ମସିହାରେ କେମ୍ବ୍ରିଜରେ ଏକ ଭାଷଣରେ ସେ କହିଥିଲେ:

> ଗଣିତଜ୍ଞଙ୍କୁ ମୁଁ ଜଣେ ନିରୀକ୍ଷକ ଭାବରେ ଦେଖେ, ଜଣେ ମଣିଷ ଯିଏ ଦୂର ପର୍ବତମାଳାକୁ ନିରୀକ୍ଷଣ କରେ ଓ ସେଥିରୁ ପାଉଥିବା ତଥ୍ୟକୁ ଲେଖି ରଖେ। ତାଙ୍କର ଲକ୍ଷ୍ୟ ହେଉଛି ଶୃଙ୍ଗଗୁଡ଼ିକୁ ଗଣି ଅନ୍ୟମାନଙ୍କୁ ତା'ର ସଂଖ୍ୟା ଓ ପ୍ରକାର ଜଣାଇବା। କେତେଗୁଡ଼ିଏ ଶୃଙ୍ଗ ତାଙ୍କୁ ପରିଷ୍କାର ଭାବରେ ଦେଖାଯିବ, ଆଉ କେତେକ ଅସ୍ପଷ୍ଟ ରହିବ। ... ଶୃଙ୍ଗ 'କ'ରୁ ସେ ହୁଏତ ଏକ ଧାର ବାହାରିଥିବାର ଦେଖିବେ ଏବଂ ତା'ର ଶେଷରେ ଆଉ ଗୋଟିଏ ଶୃଙ୍ଗ 'ଖ' ଆବିଷ୍କାର କରିବେ। ସେଠାରୁ ଦୃଷ୍ଟି ଆଗେଇ ନେଇ ସେ ହୁଏତ ଆଉ କିଛି ନୂଆ ଆବିଷ୍କାର କରିପାରିବେ। ଅନ୍ୟ କେଉଁଠି ସେ ହୁଏତ ଦେଖିବେ ଯେ ଧାରଟି ଦୂରରେ ଅଦୃଶ୍ୟ ହୋଇଯାଉଛି ଏବଂ ମେଘ ଭିତରେ ବା ଦିଗ୍‌ବଳୟ ତଳେ ଲୁଚିରହିଥିବା କେଉଁ ଶୃଙ୍ଗର କଳ୍ପନା କରିବେ।

କିନ୍ତୁ କେଉଁ ପ୍ରଚ୍ଛନ୍ନ ଧାରାରେ ଜଣେ ସେହି ଶୃଙ୍ଗଗୁଡ଼ିକୁ ଚିହ୍ନଟ କରିବ ସେ ବିଷୟରେ ହାର୍ଡି ମୋଟାମୋଟି ଭାବରେ ନିରବ ରହିଥିଲେ। ଗଣିତ କ୍ଷେତ୍ରରେ ହାର୍ଡି ଲମ୍ବା ସମୟ କଟାଇଥିଲେ ଏବଂ

ଅନେକ ଲେଖାଲେଖି କରିଥିଲେ। କିନ୍ତୁ ଗଣିତଜ୍ଞଙ୍କର ସୃଜନଶୀଳ ପ୍ରକ୍ରିୟା ବିଷୟରେ ସେ ପ୍ରାୟ କେବେ ଆଲୋଚନା କରି ନ ଥିଲେ। ତାଙ୍କର *ମାଥେମାଟିସିଆନ୍‌ସ୍ ଆପୋଲୋଜି* ବହିରେ ଗଣିତ ଦୁନିଆ ବିଷୟରେ ଗଭୀର ଅନ୍ତର୍ଦୃଷ୍ଟିସମ୍ପନ୍ନ ରଚନା ରହିଛି, କିନ୍ତୁ ସେଥିରେ ମଧ୍ୟ ସେ ସୃଜନଶୀଳ ପ୍ରକ୍ରିୟା ବିଷୟରେ କିଛି ଲେଖିନାହାନ୍ତି। ସେହି ସୃଜନଶୀଳ ପ୍ରକ୍ରିୟାର ଶେଷଫଳ ରୂପେ ବାହାରୁଥିବା ଉପପାଦ୍ୟ ହିଁ ସବୁବେଳେ ତାଙ୍କର ଆଗ୍ରହର ବସ୍ତୁ ଥିଲା। ଉପପାଦ୍ୟର ସଠିକତା ସେ ହୁଏତ ପ୍ରମାଣ କରିବାକୁ ଚାହିଁବେ କିମ୍ବା ଗଣିତର ଦୁନିଆରେ ତା'ର ସ୍ଥାନ ନିରୂପଣ କରିବାକୁ ଚେଷ୍ଟା କରିବେ। ଆପୋଲୋଜି ବହିରେ ସେ ବିଭିନ୍ନ ଉପପାଦ୍ୟକୁ କଳାକୃତି ଭଳି ସମୀକ୍ଷା କରିଛନ୍ତି ଏବଂ ବିଭିନ୍ନ ମାନଦଣ୍ଡ ସାହାଯ୍ୟରେ ଉପପାଦ୍ୟଗୁଡ଼ିକର ଗାଣିତିକ ସୌନ୍ଦର୍ଯ୍ୟ ଅନୁସାରେ ମୂଲ୍ୟାୟନ କରିଛନ୍ତି।

ତାଙ୍କ ଜୀବନର ଶେଷ ଆଡ଼କୁ ହାର୍ଡି ଜାକ୍ ହାଦାମାର୍ଦଙ୍କର ବହି *ଦି ସାଇକୋଲୋଜି ଅଫ୍ ଇନ୍‌ଭେନ୍‌ସନ୍ ଇନ୍ ଦି ମାଥେମାଟିକାଲ୍ ଫିଲ୍‌ଡ* (ଗାଣିତିକ ଉଦ୍ଭାବନର ମନସ୍ତତ୍ତ୍ୱ)ର ସମୀକ୍ଷା କରିଥିଲେ। ସେହି ସମୀକ୍ଷାରେ ସେ ବୋଧହୁଏ ଏକମାତ୍ର ଥର ପାଇଁ ଗାଣିତିକ ସୃଜନଶୀଳତା ବିଷୟରେ ଲେଖିଥିଲେ। ଦାର୍ଶନିକ ବା କବିମାନେ ଗାଣିତିକ ସୃଜନଶୀଳତା ବିଷୟରେ କିଛି କହିପାରିବେନାହିଁ ବୋଲି ହାର୍ଡି ମତ ଦେଉଥିଲେ। କିନ୍ତୁ ହାଦାମାର୍ଦ ଜଣେ ବିଶିଷ୍ଟ ଗଣିତଜ୍ଞ ଥିଲେ। ଫ୍ରାନ୍‌ସ୍‌ର ପ୍ରମୁଖ ବିଜ୍ଞାନ ଶିକ୍ଷା କେନ୍ଦ୍ର ଇକୋଲ୍ ପଲିଟେକ୍ନିକ୍‌ର ପ୍ରବେଶିକା ପରୀକ୍ଷାରେ ସର୍ବକାଳୀନ ଶ୍ରେଷ୍ଠତମ ଫଳ ଦେଖାଇଥିଲେ। ବେଲ୍‌ଜିଅମ୍‌ର ଗଣିତଜ୍ଞ ଭାଲି-ପୁସିନ୍‌ଙ୍କ ସହିତ ମୌଳିକ ସଂଖ୍ୟା ଉପପାଦ୍ୟର ପ୍ରମାଣ ଦେଇଥିଲେ। ଗାଣିତିକ ଉଦ୍ଭାବନ ବିଷୟରେ ତାଙ୍କର ବକ୍ତବ୍ୟ ନିଶ୍ଚୟ ମୂଲ୍ୟବାନ ହେବାକଥା।

ହାଦାମାର୍ଦ ଲେଖିଥିଲେ ଏବଂ ହାର୍ଡି ଏକମତ ହୋଇଥିଲେ:

> ଅନେକ ସମୟରେ ଅଚେତନ ଭାବରେ କରାଯାଇଥିବା କାମ କିଛି ଆବିଷ୍କାରରେ ନିର୍ଣ୍ଣାୟକ ଭୂମିକା ନେଇଥାଏ। ଅନେକ ସମୟ ଧରି ନିଷ୍ଫଳ ଚେଷ୍ଟା ଚଳାଇ କିଛି ସମୟ ଅନ୍ୟ କାମରେ ବା ବିଶ୍ରାମରେ ବିତାଇବା ପରେ ହଠାତ୍ ସଫଳତାର ଆଲୋକ ଦେଖାଯାଇପାରେ। ପ୍ରେରଣାର ଏହି ଝଲକକୁ କେବଳ କର୍ମୀର ଅଜାଣତରେ ଚାଲିଥିବା କିଛି ମାନସିକ ପ୍ରକ୍ରିୟାର ଫଳ ରୂପେ ବୁଝାଯାଇପାରେ। ଏହି ମତର ସପକ୍ଷରେ ଅନେକ ସୂଚନା ରହିଛି।

ଏତିକି ମାନିବା ଛଡ଼ା ମନସ୍ତତ୍ତ୍ୱର ଅଜଣା ଦୁନିଆ ଭିତରକୁ ହାର୍ଡି ବେଶି ଆଗେଇବାକୁ ଚାହିଁ ନ ଥିଲେ। ସେଭଳି ବିଷୟ କିଛି ଆଗକୁ ଆସିଲେ ତାକୁ ଏଡ଼ାଇଯିବା ଉଚିତ ବୋଲି ସେ ମତ ଦେଇଥିଲେ। ତା ନ ହେଲେ ଅଜ୍ଞେୟ କଥାକୁ ବୁଝାଇବାକୁ ଯାଇ ଆମକୁ ଏଣୁତେଣୁ କଥା କହିବାକୁ ପଡ଼ିପାରେ। ଏହି ବିଷୟରେ ହାଦାମାର୍ଦ କୋହଳ ଓ ଅନିଶ୍ଚିତ ମନୋଭାବ ଦେଖାଇଥିବାରୁ ତାହା ବୁଦ୍ଧିମତ୍ତାର ପରିଚାୟକ ବୋଲି ହାର୍ଡି କହିଥିଲେ।

ସଚେତନ ଓ ଅବଚେତନ ଅଭିକ୍ରିୟା ଭିତରେ ସମ୍ପର୍କକୁ ବର୍ଣ୍ଣନା କରିବା ପାଇଁ ଉପଯୁକ୍ତ ଭାଷା ପାଇବା ମଧ୍ୟ କଷ୍ଟର କଥା ବୋଲି ହାର୍ଡି କହିଥିଲେ। ତାଙ୍କର ମତ ଥିଲା ଯେ ଅବଚେତନ ଅଭିକ୍ରିୟାର କାର୍ଯ୍ୟଧାରାକୁ ବୁଝିବା ଆହୁରି କଷ୍ଟକର। ତାଙ୍କ ପାଇଁ ସବୁଠାରୁ ବେଶି ରହସ୍ୟମୟ ପ୍ରଶ୍ନ ଥିଲା, "ଅବଚେତନ ମାନସିକ ଅଭିକ୍ରିୟାର ଫଳ ରୂପେ ବାହାରୁଥିବା ଅସଂଖ୍ୟ ଅବଧାରଣା

ଭିତରୁ ଗୋଟିଏ କିପରି ବାଛି ହୋଇଯାଏ?'' ହାଦାମାର୍ଦ ଏହାର ଏକ ଉତ୍ତର ଦେବାକୁ ଚେଷ୍ଟା କରିଥିଲେ ଯାହା ବିଷୟରେ ହାର୍ଡି କହିଥିଲେ, ''ସେହି ଉତ୍ତର ମୋ ପାଇଁ ଗ୍ରହଣୀୟ ହେଉନାହିଁ, କିନ୍ତୁ ମୁଁ ମନସ୍ତତ୍ତ୍ୱବିତ୍ ନୁହେଁ ଏବଂ ସବୁ ପ୍ରକାରର ରହସ୍ୟବାଦ ପ୍ରତି ମୋର ଅରୁଚି ମୋତେ ହୁଏତ ଅଯଥା ପକ୍ଷପାତୀ କରିଦେଉଛି।''

ହାଦାମାର୍ଦ ଗୋଟିଏ ଜାଗାରେ କହିଥିଲେ, ''ଅବଚେତନ ମାନସ କେବଳ ଯାନ୍ତ୍ରିକ ଭାବରେ କାମ କରେନାହିଁ, ବରଂ ତା'ର କାମରେ ସୂକ୍ଷ୍ମବିଚାର ଓ କମନୀୟତାର ଛାପ ଦେଖିବାକୁ ମିଳେ। ଏପରିକି ଅନୁମାନ କରିବାରେ ସଚେତନ ମାନସ ତୁଳନାରେ ତାହା ଉନ୍ନତ ମନେହୁଏ, କାରଣ ସଚେତନ ମାନସ ବିଫଳ ହେଉଥିବା ଜାଗାରେ ଅବଚେତନ ସଫଳତା ପାଇଥାଏ।'' ହାର୍ଡି ଏହାକୁ କିଛି ମାତ୍ରାରେ ମାନିଥିଲେ, କିନ୍ତୁ କହିଥିଲେ ଯେ ସେ ବର୍ଣ୍ଣନାର ଭାଷା ତାଙ୍କର ପସନ୍ଦର ନ ଥିଲା।

ଅବଚେତନ ଅଭିକ୍ରିୟାର ଏଭଳି ଅସ୍ପଷ୍ଟ ଦୁନିଆରେ ହାର୍ଡି ଘାଣ୍ଟିହେବାକୁ ଚାହୁଁ ନ ଥିଲେ। ଏହା ବିଷୟରେ ଭାବିବା ବା ଆଲୋଚନା କରିବା ତାଙ୍କ ପାଇଁ ଅସ୍ୱସ୍ତିକର ଥିଲା। ଗଣିତ ଯେ ଅତି ସୃଜନଶୀଳ ଅଭିକ୍ରିୟା ଥିଲା ସେ ବିଷୟରେ ତାଙ୍କର କୌଣସି ସନ୍ଦେହ ନ ଥିଲା, କିନ୍ତୁ ସେହି ସୃଜନଶୀଳତାର ଉତ୍ସକୁ ଖୋଜିବାରେ ସେ ଆଗ୍ରହୀ ନ ଥିଲେ। ତେଣୁ ରାମାନୁଜନ୍‌ଙ୍କ ସୃଜନଶୀଳତାକୁ ବୁଝାଇବା ଚେଷ୍ଟାରେ ଆସୁଥିବା ପ୍ରାଚ୍ୟ ମତଗୁଡ଼ିକ ପ୍ରତି ସେ ଉନ୍ମୁକ୍ତ ନ ଥିଲେ।

ନାସ୍ତିକ ହାର୍ଡି ଏଭଳି ଚରମ ମତ ପୋଷଣ କରୁଥିଲେ, କିନ୍ତୁ ପାଶ୍ଚାତ୍ୟ ଓ ପ୍ରାଚ୍ୟ ପରମ୍ପରାରେ ବିଶ୍ୱାସ ରଖୁଥିବା ଅନେକ ଲୋକ ତାହାକୁ ଗ୍ରହଣ କରୁ ନ ଥିଲେ। ସୃଜନଶୀଳତା ଓ ଅନ୍ତର୍ଦୃଷ୍ଟି ସହିତ ଆଧ୍ୟାତ୍ମିକ ଶକ୍ତିର ସମ୍ପର୍କ ଦେଖିବା ରାମାନୁଜନ୍‌ଙ୍କ ପାଇଁ ସ୍ୱାଭାବିକ କଥା ଥିଲା।

ପ୍ରାଚୀନ କାଳରୁ ଏଭଳି ବିଶ୍ୱାସ ରହିଆସିଥିଲା। ପ୍ରେରଣା ପାଇବା ପାଇଁ ଗ୍ରିସ୍‌ବାସୀମାନେ ଦେବୀମାନଙ୍କର ଆଶୀର୍ବାଦ ଭିକ୍ଷା କରୁଥିଲେ। ଇଂରାଜୀ ଓ ଫରାସୀ ଭାଷାରେ ସତ୍ୟର ଅନୁମାନ କରିବା ପାଇଁ 'ଡିଭାଇନିଙ୍ଗ' ଶବ୍ଦ ବ୍ୟବହୃତ ହେଉଥିଲା। ସୃଜନଶୀଳ ଅନ୍ତର୍ଦୃଷ୍ଟି ଉପରେ ଦୈବଶକ୍ତିର ପ୍ରଭାବ ରହିଥିବାର ବିଶ୍ୱାସ କେବଳ ଭାରତରେ ରହି ନ ଥିଲା। ଠିକ୍ ସେହିପରି ଗଭୀର ଧାର୍ମିକ ବିଶ୍ୱାସ ରଖିବାରେ ରାମାନୁଜନ୍ ଗଣିତଜ୍ଞଙ୍କ ଭିତରେ ଏକା ନ ଥିଲେ। ଧର୍ମ ପ୍ରତି ନିଉଟନ୍‌ଙ୍କର ଅଟଳ ବିଶ୍ୱାସ ରହିଥିଲା। ବିଶ୍ୱର ବୈଚିତ୍ର୍ୟ ନିଉଟନ୍‌ଙ୍କ ମନରେ ବିନୟ ଭାବ ଆଣୁଥିଲା। ନିଜ ଚେଷ୍ଟାରେ ସେ ଧର୍ମତତ୍ତ୍ୱ ଅଧ୍ୟୟନ କରୁଥିଲେ। ପ୍ରଥମରୁ ହିଁ ଧର୍ମବିଶ୍ୱାସୀ ଥିବା ଅଏଲରଙ୍କର ବିଶ୍ୱାସର ଗଭୀରତା ବୟସ ସହିତ ବଢ଼ି ଚାଲିଥିଲା। କୋଶି ଅନ୍ୟ ଗଣିତଜ୍ଞଙ୍କୁ ରୋମୀୟ କାଥଲିକ କରାଇବାର ଚେଷ୍ଟା ସବୁବେଳେ ଚଳାଇ ରଖିଥିଲେ। ହର୍ମାଇଟ୍ ମଧ୍ୟ ଏକ ଦୃଢ଼ ରହସ୍ୟବାଦୀ ଦିଗ ଦେଖାଉଥିଲେ। ଏପରିକି ହେତୁବାଦୀ ଜ୍ଞାନୋଦୟ ଦର୍ଶନର ପିତା ଡେକାର୍ଟ ଆତ୍ମାର ଡାକର ଉତ୍ତର ଦେଉଥିଲେ। ଇ. ଟି. ବେଲ୍‌ଙ୍କ କହିବା ଅନୁସାରେ, ''ତର୍କବାଦୀ ମନୋଭାବ ସତ୍ତ୍ୱେ ବି ତାଙ୍କର ଧର୍ମବିଶ୍ୱାସ ଅତି ସରଳ ଥିଲା। ଧର୍ମବିଶ୍ୱାସ ସେ ତାଙ୍କ ଧାଈଙ୍କଠାରୁ ପାଇଥିଲେ ଏବଂ କହୁଥିଲେ ଯେ ଉଭୟ ଧାଈଙ୍କର ଓ ଧର୍ମବିଶ୍ୱାସର ଆଶ୍ରୟ ତାଙ୍କ ପାଇଁ ଆରାମଦାୟକ ହେଉଥିଲା।'' ବେଲ୍ ମତ ଦେଇଥିଲେ ଯେ ବେଳେ ବେଳେ ଗୋଟିଏ ହେତୁବାଦୀ ମନ ତର୍କବାଦ ଓ ଅଯୌକ୍ତିକତାର

ସବୁଠାରୁ ବିଚିତ୍ର ମିଶ୍ରଣ ଦେଖାଇପାରେ।

ବିଶେଷ ଭାବରେ ଧାର୍ମିକ ପ୍ରବୃତ୍ତି ଦେଖାଉ ନ ଥିବା ଗଣିତଜ୍ଞମାନେ ମଧ୍ୟ ତର୍କ ଓ ବିଶ୍ୱାସ ମଧ୍ୟବର୍ତ୍ତୀ ଅସ୍ପଷ୍ଟ ଅଞ୍ଚଳ ପ୍ରତି ସମ୍ମାନ ଦେଖାଉଥିବାର ଜଣାଯାଏ। ଗସ୍ ତାଙ୍କର ଏକ ଉପପାଦ୍ୟର ପ୍ରମାଣ ବିଷୟରେ ଲେଖିଥିଲେ ଯେ ତାହା ସେ କଠୋର ପ୍ରଚେଷ୍ଟାରୁ ପାଇନାହାନ୍ତି, ବରଂ ଈଶ୍ୱରଙ୍କ ଦୟାରୁ ତାହା ମିଳିଛି। ଲିଟଲ୍‌ଉଡ୍ ଏବଂ ଅନ୍ୟ କେତେ ବିଶିଷ୍ଟ ଗଣିତଜ୍ଞ ବିଭିନ୍ନ ସମୟରେ ଏହିଭଳି ମିଶ୍ରିତ ପ୍ରତିକ୍ରିୟା ଦେଖାଇଥିବାର ସୂଚନା ରହିଛି।

ହାର୍ଡିଙ୍କ ମନରେ କିନ୍ତୁ ସେଭଳି ଦ୍ୱନ୍ଦ୍ୱ ଦେଖାଯାଉ ନ ଥିଲା। ଆଧ୍ୟାତ୍ମିକ ଦୁନିଆର କଳ୍ପନା ତାଙ୍କ ପାଇଁ ପୂରା ନିରର୍ଥକ ଥିଲା। ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ରାମାନୁଜନ୍‌ଙ୍କ ବିଚକ୍ଷଣତାକୁ ବୁଝାଇବା ପାଇଁ ନିଶ୍ଚୟ କିଛି ସରଳ ବାଟ ରହିଛି। ଏହି ବିଷୟରେ ସେ ଲେଖିଥିଲେ:

> ଅନେକ ଥର ମତେ ପଚରାଯାଇଛି ଯେ ରାମାନୁଜନ୍‌ଙ୍କର କୌଣସି ଗୁପ୍ତ କୌଶଳ ରହିଛି କି; ଅନ୍ୟ ଗଣିତଜ୍ଞମାନଙ୍କ ତୁଳନାରେ ତାଙ୍କର ଧାରା କିଛି ଅଲଗା କି; ତାଙ୍କର ଚିନ୍ତାଧାରା କୌଣସି ଭାବରେ ଅପ୍ରାକୃତିକ କି? ଏହି ସବୁ ପ୍ରଶ୍ନର ଉତ୍ତର ମୁଁ ନିଶ୍ଚିତ ହୋଇ ଦେଇ ପାରିବିନାହିଁ; କିନ୍ତୁ ସେସବୁ ସତ ବୋଲି ମୁଁ ବିଶ୍ୱାସ କରୁନାହିଁ। ମୁଁ ବିଶ୍ୱାସ କରେ ଯେ ଗଭୀରତମ ସ୍ତରରେ ସବୁ ଗଣିତଜ୍ଞ ଏକା ଧାରାରେ ଚିନ୍ତା କରନ୍ତି ଏବଂ ରାମାନୁଜନ୍ କୌଣସି ବ୍ୟତିକ୍ରମ ନୁହନ୍ତି।

ଅର୍ଥାତ, ହାର୍ଡିଙ୍କ କହିବା କଥା ଥିଲା ଯେ ରାମାନୁଜନ୍‌ଙ୍କ ଗଣିତ କୃତି ଥିଲା ଏକ ବିଚାରବନ୍ତ ମାନସର ତର୍କସିଦ୍ଧ ଫଳ ଏବଂ ସେ ବିଷୟରେ ମୁଣ୍ଡ ଖେଳାଇବା କିଛି ଦରକାର ନାହିଁ। ମୋଟ ଉପରେ ଦେଖିଲେ ରାମାନୁଜନ୍‌ଙ୍କ ଆଧ୍ୟାତ୍ମିକ ଦିଗ ପ୍ରତି ସାରା ଇଂରେଜ ଦ୍ୱୀପପୁଞ୍ଜରେ ହାର୍ଡିଙ୍କଠାରୁ କେହି ବୋଧହୁଏ ଅଧିକ ସହାନୁଭୂତିହୀନ ନ ଥିଲେ।

ହାର୍ଡିଙ୍କର ଦୃଢ଼ ମତ ଥିଲା ଯେ ରାମାନୁଜନ୍‌ଙ୍କ ଧାର୍ମିକ ବିଶ୍ୱାସ ସତ ନ ଥିଲା ଏବଂ ସେ ଦାବି କରୁଥିଲେ ଯେ ରାମାନୁଜନ୍ ନିଜେ ହିଁ ତାଙ୍କୁ ଏହି ସୂଚନା ଦେଇଛନ୍ତି। ଆହୁରି ସେ କହୁଥିଲେ ଯେ ସାଥୀମାନଙ୍କ ଆଖିରେ ରାମାନୁଜନ୍ ଅତି ଧାର୍ମିକ ଥିଲେ ଏବଂ ରାମାନୁଜନ୍ ସେମାନଙ୍କ ବିଶ୍ୱାସକୁ ଭାଙ୍ଗିବାକୁ ଚାହୁଁ ନ ଥିଲେ। ସେଥିପାଇଁ ସେ ଏକ ପ୍ରକାରର ନିରୀହ ଅର୍ଦ୍ଧସତ୍ୟ ପଛରେ ଲୁଚୁଥିଲେ।

ଅନ୍ୟମାନଙ୍କ ମତରେ ହାର୍ଡି ହିଁ ଥିଲେ ରାମାନୁଜନ୍‌ଙ୍କ ନିରୀହ ଅର୍ଦ୍ଧସତ୍ୟର ପ୍ରକୃତ ଶରବ୍ୟ। ରାମାନୁଜନ୍‌ଙ୍କ ଇଂଲଣ୍ଡ ଆସିବାର ଅଳ୍ପଦିନ ଭିତରେ ହାର୍ଡି ହୁଏତ ତାଙ୍କୁ କହିଥିବେ ଯେ ତାଙ୍କର ଗଣିତ ପାଇଁ ନାମଗିରିଙ୍କୁ ଶ୍ରେୟ ଦେବାଟା ଇଂରେଜମାନେ ପସନ୍ଦ କରିବେନାହିଁ। ଏଭଳି ଚେତାଇ ଦେବା କାମଟି ହାର୍ଡି ଅସଚେତନ ଭାବରେ ମଧ୍ୟ କରିଥାଇପାରନ୍ତି। ହାର୍ଡି ଜଣେ ଦୃଢ଼ମନା ନାସ୍ତିକ ବୋଲି ରାମାନୁଜନ୍ ଆଗରୁ ଶୁଣିଥିଲେ। ସେଭଳି ଜଣେ ଶୁଭଚିନ୍ତକ ଓ ଉପକାରୀ ସାଥୀଙ୍କୁ ଧର୍ମ ଭଳି ସମ୍ବେଦନଶୀଳ ବିଷୟରେ ଉତ୍ତେଜିତ କରିବା ପାଇଁ ରାମାନୁଜନ୍ ନିଶ୍ଚୟ ଚାହିଁ ନ ଥିବେ। ତେଣୁ ହୁଏତ ହାର୍ଡିଙ୍କୁ ସେ ନିଜର ଧର୍ମବିଶ୍ୱାସ ଓ ଆଧ୍ୟାତ୍ମିକ ଜୀବନର ପ୍ରକୃତ ଗଭୀରତା ବିଷୟରେ ସତ କଥା କହି ନ ଥିବେ।

ତାହା ହିଁ ଅସଲ ସମସ୍ୟା ଥିଲା। ହାର୍ଡିଙ୍କ ସହିତ ରାମାନୁଜନ୍ ସହଜ ବ୍ୟବହାର କରିପାରୁ ନ ଥିଲେ, ନିଜର ପ୍ରାକୃତିକ ରୂପ ଦେଖାଇବା ବଦଳରେ କିଛି ମାତ୍ରାରେ ଛଳନାତ୍ମକ ରୂପ

ଦେଖାଉଥିଲେ। ଦୁହିଁଙ୍କ ଭିତରେ ଏକ ଅଲଙ୍ଘ୍ୟ ପ୍ରାଚୀର ରହିଥିଲା। ତାଙ୍କ ସହିତ ଅନେକ ବର୍ଷ କାମ କଲା ପରେ ମଧ୍ୟ ହାର୍ଡି ରାମାନୁଜନ୍‌ଙ୍କୁ ବୁଝିପାରି ନ ଥିଲେ। ଏହା ଫଳରେ ରାମାନୁଜନ୍‌ଙ୍କ ଗଭୀର ଏକାନ୍ତତାକୁ ଲାଘବ କରିବାରେ ହାର୍ଡି ପୂରା ଅସମର୍ଥ ଥିଲେ।

## 10. ଏକକ ସିଙ୍ଗୁଲାରିଟି

୧୯୯୨ ମସିହାରେ ଆମେରିକାର ଗୋଟିଏ କୃଷ୍ଣାଙ୍ଗ ମହିଳା କଲେଜର ଡିନ୍ ଯିଏ ନିଜେ ଜଣେ କୃଷ୍ଣାଙ୍ଗ ମହିଳା ଥିଲେ ନିଜର ଗୋଟିଏ ପୁରୁଣା ଅନୁଭୂତି ବର୍ଣ୍ଣନା କରିଥିଲେ। ଆମେରିକାର ଉତ୍ତର ଭାଗରେ ଗୋଟିଏ ପ୍ରାୟ ପୂରା ଶ୍ୱେତାଙ୍ଗ କଲେଜର ପ୍ରଶାସକ ଭାବରେ କାମ କଲାବେଳେ ତାଙ୍କର ଅନୁଭୂତି ଥିଲା ଯେ ସେଠାରେ ଥିବା କୃଷ୍ଣାଙ୍ଗ ପିଲାମାନେ ଭଲ ପଢୁଥିଲେ, କିନ୍ତୁ ଖୁସି ନ ଥିଲେ। କାରଣ ସେମାନେ ସ୍ୱଭାବଗତ କୃଷ୍ଣାଙ୍ଗ ଭାବରେ ଚଳିପାରୁ ନ ଥିଲେ। ଠିକ୍ ଏହିଭଳି ଥିଲା କେମ୍ବ୍ରିଜରେ ରାମାନୁଜନ୍‌ଙ୍କ ସ୍ଥିତି। ହାର୍ଡିଙ୍କ ଦିଗ୍‌ଦର୍ଶନ ବଳରେ ସେ ଭଲ କାମ କରୁଥିଲେ, କିନ୍ତୁ ସେ ଖୁସି ନ ଥିଲେ।

ଏହା ସମ୍ଭବ ଥିଲା ଯେ ରାମାନୁଜନ୍ ନିଜେ ମଧ୍ୟ ଏହି କଥାଟି ବୁଝିପାରି ନ ଥିଲେ। ସାଧାରଣ ଭାବରେ ନିଜର ମନ କଥା ପ୍ରତି ସେ ଅତି ସମ୍ବେଦନଶୀଳ ନ ଥିଲେ। ଏବେ ଗଣିତରେ ସଫଳତାର ଏବଂ ହାର୍ଡିଙ୍କ ସହିତ ବୌଦ୍ଧିକ ଆଲୋଚନାର ଉନ୍ମାଦନା ଭିତରେ ସେ ବାହ୍ୟ ଭାବରେ ଅନ୍ତତଃ ନିଜକୁ ଖୁସି ମନେ କରୁଥିଲେ। ତାଙ୍କର ମନ ଭିତରେ କିନ୍ତୁ କିଛି ଅଜଣା ଅପୂର୍ଣ୍ଣତାର କ୍ଷୀଣ ଆଭାସ ରହୁଥିଲା। ନୂଆ ସଂସ୍କୃତି ଓ ପରିବେଶରେ ନିଜକୁ ଖାପ ଖୁଆଇବା ପାଇଁ ଯେଉଁ ନମନୀୟତା ଦରକାର ରାମାନୁଜନ୍‌ଙ୍କ ପାଖରେ ତାହା ନ ଥିଲା। ପୁରୁଣାକୁ ଛାଡ଼ି ନୂଆକୁ ଆଦରି ନେବା ପାଇଁ ପ୍ରଚୁର ଶକ୍ତି ଦରକାର ପଡ଼େ, କିନ୍ତୁ ରାମାନୁଜନ୍ ତାଙ୍କର ସବୁ ଶକ୍ତି ଗଣିତ ପାଇଁ ଖଟାଉଥିଲେ।

ଫଳରେ ସେ ଭାଙ୍ଗିପଡ଼ିଲେ, ପ୍ରଥମେ ଶାରୀରିକ ଭାବରେ, ପରେ ମାନସିକ ସ୍ତରରେ।

x x x

1916 ମସିହାରେ ରାମାନୁଜନ୍‌ଙ୍କ ଟିଉଟର ବାର୍ଣ୍ଣସ୍ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟକୁ ଲେଖିଥିଲେ ଯେ ରାମାନୁଜନ୍‌ଙ୍କ କୃତିତ୍ୱ ଦୃଷ୍ଟିରୁ ଆସନ୍ତା ବର୍ଷ ଅକ୍ଟୋବର ମାସରେ ସେ ଟ୍ରିନିଟି କଲେଜର ଫେଲୋ ଭାବରେ ଗୃହୀତ ହେବା ପ୍ରାୟ ନିଶ୍ଚିତ। କିନ୍ତୁ 1917 ମସିହା ଅକ୍ଟୋବର ମାସର ନିର୍ବାଚନରେ ରାମାନୁଜନ୍ ଫେଲୋ ପଦବୀ ପାଇଲେନାହିଁ। ସେ ସମୟରେ ବର୍ଟ୍ରାଣ୍ଡ ରସେଲ ପ୍ରସଙ୍ଗରେ ଟ୍ରିନିଟି ଭାଗ ଭାଗ ହୋଇଯାଇଥିଲା ଏବଂ ରାମାନୁଜନ୍‌ଙ୍କ ଦୃଢ଼ ସମର୍ଥକ ହାର୍ଡି କଲେଜ କର୍ତ୍ତୃପକ୍ଷଙ୍କର ଶୁଭଦୃଷ୍ଟିରେ ନ ଥିଲେ। ବର୍ଣ୍ଣବିଦ୍ୱେଷ ମଧ୍ୟ ରାମାନୁଜନ୍‌ଙ୍କ ବିପକ୍ଷରେ ଯାଇଥିବା କଥା ପର ସମୟର କେତେ ଘଟଣାରୁ ଜଣାପଡ଼େ। ଯାହା ହେଲେ ବି ରାମାନୁଜନ୍ ଜଣେ 'କୃଷ୍ଣାଙ୍ଗ' ଥିଲେ।

ଏହି ପ୍ରତ୍ୟାଖାନ ରାମାନୁଜନ୍‌ଙ୍କ ମାନସିକ ଅବସ୍ଥାକୁ ଆହୁରି ବେଶି ନୈରାଶ୍ୟମୟ କରିଦେଲା ଏବଂ ତାଙ୍କର ଆତ୍ମବିଶ୍ୱାସକୁ ଦୋହଲାଇଦେଲା। ଏହି ସମୟରେ ସେ ମାଟ୍‌ଲକ୍ ସାନାଟୋରିଅମ୍‌ରେ ଚିକିତ୍ସା ପାଇଁ ଭର୍ତ୍ତି ହେଲେ। ସେଠାର ପରିବେଶ ଓ କଠୋର ଅନୁଶାସନ

ଭିତରେ ରାମାନୁଜନ୍ ଶ୍ୱାସରୁଦ୍ଧ ହୋଇ ରହିଲେ। ରାମାନୁଜନ୍‌ଙ୍କ ପାଇଁ ତାଙ୍କ ଚିକିତ୍ସକ ଡାକ୍ତର ରାମ ଜଣେ ଭୀତିଉଦ୍ରେକକାରୀ ବ୍ୟକ୍ତି ଥିଲେ। ରାମାନୁଜନ୍‌ଙ୍କୁ ସେ କହିଥିଲେ, "ଏଠାରେ ରୋଗୀ ଭାବରେ ଥିଲାବେଳେ ଆପଣ ମୁକ୍ତ ମଣିଷ ନୁହନ୍ତି, ଆପଣଙ୍କର ସବୁ କାମ ଉପରେ ଡାକ୍ତରଙ୍କ ନିୟନ୍ତ୍ରଣ ରହିବ।"

ଇଂଲଣ୍ଡର ସବୁ ଯକ୍ଷ୍ମା ଚିକିତ୍ସାଳୟ ଭଳି ମାଟ୍‌ଲକ୍ ମଧ୍ୟ ଜନବସତିଠାରୁ ବେଶ୍ ଦୂରରେ ଏବଂ ଭୌଗଳିକ ଦୃଷ୍ଟିରୁ ଏକ ବିଚ୍ଛିନ୍ନ ଅଞ୍ଚଳରେ ଅବସ୍ଥିତ ଥିଲା। ଏଥଯୋଗୁଁ ରୋଗୀମାନେ ସମାଜରୁ ବହିଷ୍କୃତ ହୋଇଥିଲା ଭଳି ଅନୁଭବ କରୁଥିଲେ। ଯିବା ଆସିବାର ଅସୁବିଧା ଯୋଗୁ ଏବଂ ପ୍ରତିକୂଳ ସାମାଜିକ ମନୋଭାବ ଯୋଗୁ ରୋଗୀମାନଙ୍କ ପାଖକୁ ଆସୁଥିବା ଲୋକଙ୍କ ସଂଖ୍ୟା କମ୍ ରହୁଥିଲା। ଫଳରେ ରୋଗୀର ଏକାନ୍ତତା ବଢ଼ିଯାଉଥିଲା। ରାମାନୁଜନ୍‌ଙ୍କ କ୍ଷେତ୍ରରେ ମଧ୍ୟ ଏପରି ହେଲା। ବହୁ କଷ୍ଟ କରି ତାଙ୍କୁ ଦେଖିବାକୁ ଯାଇଥିବା ଜଣେ ସାଥୀ ଲେଖିଥିଲେ ଯେ ଦୀର୍ଘକାଳର ଅସୁସ୍ଥତା ଏବଂ ଏକାନ୍ତତା ରାମାନୁଜନ୍‌ଙ୍କ ମାନସିକ ଅବସ୍ଥାକୁ ପ୍ରଭାବିତ କରୁଛି।

ମାଟ୍‌ଲକ୍‌ଠାରେ ରାମାନୁଜନ୍ ଅଧିକାଂଶ ସମୟରେ ଥଣ୍ଡାର ପ୍ରକୋପରୁ ଏବଂ ଅନ୍ୟ ସବୁ ଦୃଷ୍ଟିରୁ ଶୋଚନୀୟ ଅବସ୍ଥାରେ ରହୁଥିଲେ। ଟ୍ରିନିଟି ଫେଲୋ ହେବାରୁ ବଞ୍ଚିତ ହେବା ତାଙ୍କୁ ବିଶେଷ ଭାବରେ ବାଧୁଥିଲା। ରୁଗ୍‌ଣ ଅବସ୍ଥାରେ ଥିବାରୁ ସେ ଗଣିତ କାମ ମଧ୍ୟ କରିପାରୁ ନ ଥିଲେ ଯାହା ତାଙ୍କ ଅସନ୍ତୋଷକୁ ବଢ଼ାଇ ଦେଉଥିଲା। ଡାକ୍ତରମାନେ ତାଙ୍କର ପସନ୍ଦ ନ ଥିଲେ। ମନ ପସନ୍ଦର ଖାଦ୍ୟ ସେ ପାଉ ନ ଥିଲେ, ଯେଉଁ ଖାଦ୍ୟ ମିଳୁଥିଲା ତାହା ତାଙ୍କ ପାଇଁ ରୁଚିକର ନ ଥିଲା। ଏସବୁ ଉପରେ ଘରୁ ସେ କିଛି ବି ଆତ୍ମିକ ସମର୍ଥନ ପାଉ ନ ଥିଲେ। ହାର୍ଡିଙ୍କଠାରୁ ମଧ୍ୟ ତାହା ମିଳୁ ନ ଥିଲା।

ରାମାନୁଜନ୍ ଅତି ଅବସାଦଗ୍ରସ୍ତ ହୋଇପଡ଼ିଲେ। ସେ ବିଭିନ୍ନ ପ୍ରକାରର ଦୁଃସ୍ୱପ୍ନ ଦେଖିବାକୁ ଲାଗିଲେ। ନିଜର ଅଙ୍ଗପ୍ରତ୍ୟଙ୍ଗ ଓ ଶାରୀରିକ କଷ୍ଟ ସବୁ ଅର୍ଥହୀନ ଗାଣିତିକ ସୂତ୍ର ରୂପରେ ତାଙ୍କ ମନକୁ ଆସିବାକୁ ଲାଗିଲା। ଲାଗିରହୁଥିବା ଦୁଃସ୍ୱପ୍ନରେ ସେ ଅତିଶୟ ଯନ୍ତ୍ରଣାକୁ ଏକକ ସିଙ୍ଗୁଲାରିଟି ରୂପରେ ଦେଖିଚାଲିଲେ।

ତାଙ୍କର ମାନସିକ ଅବନତି ବଢ଼ି ଚାଲିଥିଲା ଏବଂ ଏବେ ସେ ମାନସିକ ସ୍ଥିରତାର ଧାରରେ ଟଳମଳ ଅବସ୍ଥାରେ ରହିଥିଲେ।

ରାମାନୁଜନ୍‌ଙ୍କୁ ଫେଲୋ କରିବାରେ ଟ୍ରିନିଟିର ପ୍ରତ୍ୟାଖ୍ୟାନରେ ହାର୍ଡି ଦବିଯାଇ ନ ଥିଲେ। ରାମାନୁଜନ୍‌ଙ୍କୁ ଉତ୍ସାହିତ କରିବା ପାଇଁ ହାର୍ଡି ତାଙ୍କ ପାଇଁ ଅନ୍ୟ ଉପଯୁକ୍ତ ସମ୍ମାନର ବ୍ୟବସ୍ଥା କରିବାରେ ଲାଗିପଡ଼ିଲେ। 1917 ମସିହା ଡିସେମ୍ବର 6 ତାରିଖ ଦିନ ରାମାନୁଜନ୍ ଲଣ୍ଡନ ମାଥେମାଟିକାଲ୍ ସୋସାଇଟିର ସଦସ୍ୟ ଭାବରେ ନିର୍ବାଚିତ ହେଲେ। ଦୁଇ ସପ୍ତାହ ପରେ ଅନ୍ୟ ଏଗାର ଜଣ ଗଣିତଜ୍ଞଙ୍କ ସହିତ ହାର୍ଡି ରାମାନୁଜନ୍‌ଙ୍କ ପାଇଁ ଆହୁରି ଉଚ୍ଚତର ସମ୍ମାନ ପାଇଁ ଏକ ପ୍ରସ୍ତାବପତ୍ରରେ ସ୍ୱାକ୍ଷର କଲେ। ଏହି ପ୍ରସ୍ତାବ ଥିଲା କେମ୍ବ୍ରିଜର ଯେ କୌଣସି କଲେଜ ଫେଲୋ ପଦବୀଠାରୁ ବେଶ୍ ଉଚ୍ଚରେ ଥିବା ରୟାଲ ସୋସାଇଟିର ଫେଲୋ ହେବା ପାଇଁ। ଏଥିପାଇଁ ତାଙ୍କର ପ୍ରସ୍ତାବକମାନଙ୍କ ଭିତରେ ଥିଲେ – ହବସନ୍, ବେକର, ବ୍ରୋମ୍‌ୱିଚ୍, ଲିଟଲ୍‌ଉଡ୍, ଫୋର୍‌ସାଇଥ୍

ଏବଂ ପ୍ରିନ୍‌ସିପିଆ ମାଥେମାଟିକା ଲେଖିବାରେ ବର୍ଟ୍ରାଣ୍ଡ ରସେଲ୍‌ଙ୍କୁ ସହଯୋଗ କରିଥିବା ଆଲ୍‌ଫ୍ରେଡ୍ ନର୍ଥ ହ୍ୱାଇଟ୍‌ହେଡ୍।

କ୍ରିଷ୍ଟୋଫର୍ ରେନ୍ ଓ ରବର୍ଟ ବୟେଲ୍‌ଙ୍କ ପ୍ରଚେଷ୍ଟାରେ 1660 ମସିହାରେ ପ୍ରତିଷ୍ଠିତ ରୟାଲ ସୋସାଇଟି ଇଂଲଣ୍ଡର ସବୁଠାରୁ ବେଶି ମର୍ଯ୍ୟାଦାବନ୍ତ ବିଜ୍ଞାନୀ ଅନୁଷ୍ଠାନ ଥିଲା। ରାମାନୁଜନ୍‌ଙ୍କ ପାଇଁ ପ୍ରସ୍ତାବ ଆସିଲାବେଳେ ସେଥିରେ 39 ଜଣ ବିଦେଶୀ ଫେଲୋ ଥିଲେ। ଏମାନଙ୍କ ଭିତରେ ଥିଲେ ରୁଷିଆର ଇଭାନ୍ ପାଭ୍‌ଲଭ୍, ମୋର୍ଲିଙ୍କ ସହିତ ଆଲୋକର ବେଗ ମାପିଥିବା ଆମେରିକାର ଆଲ୍‌ବର୍ଟ୍ ମାଇକେଲ୍‌ସନ୍ ଏବଂ ଅନ୍ୟ ଛ' ଜଣ ନୋବେଲ ପୁରସ୍କାର ବିଜେତା। ବିଜ୍ଞାନର ବିଭିନ୍ନ ବିଭାଗରୁ ଏହାର ମୋଟ ସଦସ୍ୟ ସଂଖ୍ୟା ଥିଲା 464 ଯେଉଁମାନେ ତାଙ୍କର ନାଁ ପଛରେ ଏଫ୍. ଆର୍.ଏସ୍. ପଦବୀ ଯୋଡ଼ିପାରୁଥିଲେ। ବିଜ୍ଞାନ କ୍ଷେତ୍ରରେ ଏହାକୁ ସର୍ବୋଚ୍ଚ ସମ୍ମାନ ଭାବରେ ଗଣାଯାଉଥିଲା। ଏହା ପାଇ ନ ଥିବା ବରିଷ୍ଠ ବିଜ୍ଞାନୀମାନେ କ୍ଷୋଭ ପ୍ରକାଶ କରୁଥିଲେ, କନିଷ୍ଠ ବିଜ୍ଞାନୀମାନେ ତାହା ପାଇବାକୁ ଲାଳାୟିତ ରହୁଥିଲେ।

କଳ୍ପବିଜ୍ଞାନ ଲେଖକ ଏବଂ ଇତିହାସକାର ଓ ସମାଜତତ୍ତ୍ୱ ସମାଲୋଚକ ଏଚ୍. ଜି. ୱେଲ୍‌ସ୍‌ଙ୍କର ଏଫ୍.ଆର୍.ଏସ୍. ଲାଳସା ବିଷୟରେ ସି. ପି. ସ୍ନୋ ବର୍ଣ୍ଣନା କରିଥିଲେ। ୱାର୍ ଅଫ୍ ଦି ୱାର୍ଲଡ଼୍‌ସ୍, ଦି ଟାଇମ୍ ମେସିନ୍ ଭଳି ବିଖ୍ୟାତ କଳ୍ପବିଜ୍ଞାନ ତାଙ୍କର ସୃଷ୍ଟି ଭିତରେ ରହିଥିଲା। ଅନେକ ପୁରସ୍କାର ଓ ସମ୍ମାନ ସେ ପାଇଥିଲେ, କିନ୍ତୁ ରୟାଲ ସୋସାଇଟିର ଫେଲୋ ପଦବୀ ପାଇବାର ସ୍ୱପ୍ନ ସେ ଯୁବାବସ୍ଥାରୁ ଦେଖି ଆସୁଥିଲେ। ବୟସ ବଢ଼ିବା ସହିତ ତାଙ୍କର ଏହି ଇଚ୍ଛା କମିବା ବଦଳରେ ବଢ଼ିଚାଲିଲା। ୱେଲ୍‌ସ୍ ବିଜ୍ଞାନ ପଢ଼ିଥିଲେ ଏବଂ ବିଂଶ ଶତାବ୍ଦୀର ବିଜ୍ଞାନ ପାଇଁ ସେ ସବୁଠାରୁ ବଡ଼ ପ୍ରଭାବଶାଳୀ ଭବିଷ୍ୟତ ବକ୍ତା ଥିଲେ। କିନ୍ତୁ ତାଙ୍କର କିଛି ଗବେଷଣାଲବ୍ଧ ମୌଳିକ ଅବଦାନ ନ ଥିବାରୁ ତାଙ୍କୁ ସେହି ସମ୍ମାନ ମିଳି ନ ଥିଲା।

ଏଭଳି ମହାନ ସମ୍ମାନ ପାଇଁ ରାମାନୁଜନ୍‌ଙ୍କ ପ୍ରସ୍ତାବପତ୍ରରେ ହାର୍ଡି ତାଙ୍କର ସୁନ୍ଦର ହସ୍ତାକ୍ଷରରେ ଲେଖିଥିଲେ:

> ଶୁଦ୍ଧ ଗଣିତ କ୍ଷେତ୍ରରେ, ବିଶେଷକରି ଉପବୃତ୍ତୀୟ ଫଳନ ଓ ସଂଖ୍ୟାତତ୍ତ୍ୱ ସମ୍ପର୍କିତ, ଗବେଷଣା ପାଇଁ ଲବ୍ଧପ୍ରତିଷ୍ଠ। ତାଙ୍କର ଅନେକ ପ୍ରକାଶିତ ନିବନ୍ଧ ଭିତରେ ରହିଛି: "ମଡ୍ୟୁଲାର ସମୀକରଣ ଓ 'ପାଇ'ର ଆସନ୍ନ ମୂଲ୍ୟ ନିର୍ଦ୍ଧାରଣ"..., "ରିମାନ ଫଳନ ପାଇଁ ନୂତନ ରାଶିମାଳା $\xi(s)$ ଓ $\Xi(t)$"..., "ଅତିଯୌଗିକ ସଂଖ୍ୟା"...। ଜି. ଏଚ୍. ହାର୍ଡିଙ୍କ ସହିତ ନିମ୍ନପ୍ରଦତ୍ତ ନିବନ୍ଧଗୁଡ଼ିକର ସହ-ଲେଖକ...।

ଏହି ଭାବରେ ସେ ରାମାନୁଜନ୍‌ଙ୍କ ନିବନ୍ଧ ସବୁର ତାଲିକା ଦେଇଚାଲିଲେ ଏବଂ ଶେଷରେ ପ୍ରକାଶନ ଅପେକ୍ଷାରେ ଥିବା ବିଭାଜନ ସଂଖ୍ୟା ସମ୍ପର୍କିତ ଅତି ଗୁରୁତ୍ୱପୂର୍ଣ୍ଣ ନିବନ୍ଧ ବିଷୟରେ ଲେଖିଥିଲେ।

1918 ମସିହା ଜାନୁଆରି 24 ତାରିଖରେ ରାମାନୁଜନ୍ ଓ ଅନ୍ୟ 103 ଜଣ ପ୍ରାର୍ଥୀଙ୍କ ନାଁ ସମିତିର ଅଧିବେଶନରେ ଉପସ୍ଥାପିତ ହେଲା। ପୂର୍ବ ଅନୁଭୂତିର ଆଧାରରେ ଆଶା କରାଯାଉଥିଲା ଯେ ସେଥିରୁ ଅଳ୍ପ କେତେ ଜଣ ମାତ୍ର ଫେଲୋ ଭାବରେ ନିର୍ବାଚିତ ହେବେ।

ହାର୍ଡି, ଲିଟଲ୍‌ଉଡ୍ ଓ ଅନ୍ୟମାନଙ୍କ ମନରେ ଟିକିଏ ବି ସନ୍ଦେହ ନ ଥିଲା ଯେ ରାମାନୁଜନ୍ ସେହି ସମ୍ମାନ ପାଇଁ ଯୋଗ୍ୟ। କିନ୍ତୁ ସେମାନେ ଜାଣିଥିଲେ ଯେ ଖୁବ୍ କମ୍ ପ୍ରାର୍ଥୀ ପ୍ରଥମ ଥରରେ

ନିର୍ବାଚିତ ହୁଅନ୍ତି। ଆଉ ଗୋଟିଏ ବାଧା ଥିଲା ରାମାନୁଜନ୍‌ଙ୍କର ଅପରିପକ୍ୱତା। 1910 ମସିହାରେ ଏଫ୍.ଆର୍.ଏସ୍. ହେବା ସମୟରେ ହାର୍ଡିଙ୍କୁ 33 ବର୍ଷ ବୟସ ହୋଇଥିଲା। ଲିଟଲ୍‌ଉଡ୍ ମଧ୍ୟ ସେହି 33 ବର୍ଷ ବୟସରେ ଗତ ଫେବୃଆରି ମାସରେ ଏହି ସମ୍ମାନ ପାଇଥିଲେ। ତାଙ୍କର କୃତିତ୍ୱ ଭିତରେ ଥିଲା ଦଶବର୍ଷର ଗବେଷଣାରୁ ସେ ପାଇଥିବା କେତେ ଡଜନ୍ ଗୁରୁତ୍ୱପୂର୍ଣ୍ଣ ଗାଣିତିକ ନିବନ୍ଧ ଏବଂ ବରିଷ୍ଠ ରାଙ୍ଗଲର୍ ଭାବରେ ପ୍ରାରମ୍ଭିକ ପ୍ରତିଷ୍ଠା। ରାମାନୁଜନ୍‌ଙ୍କୁ ସେତେବେଳେ ମାତ୍ର 29 ବର୍ଷ ବୟସ ହୋଇଥିଲା ଏବଂ ୟୁରୋପୀୟ ଗଣିତ କ୍ଷେତ୍ରରେ ସେ ଅଳ୍ପ ଦିନ ହେଲା କାମ କରୁଥିଲେ। ପ୍ରକାଶନର ସଂଖ୍ୟା ଦୃଷ୍ଟିରୁ ଅନ୍ତତଃ ତାଙ୍କର ଅବଦାନ ସୀମିତ ଥିଲା।

ରାମାନୁଜନ୍‌ଙ୍କ ସ୍ୱାସ୍ଥ୍ୟ ହାର୍ଡିଙ୍କ ଉତ୍କଣ୍ଠା ବଢ଼ାଇ ଦେଇଥିଲା, ତେଣୁ ତାଙ୍କର ପ୍ରାର୍ଥିତ୍ୱକୁ ଅଗ୍ରାଧିକାର ଦେବାକୁ ସେ ଚାପ ପକାଉଥିଲେ। ଇଲେକ୍‌ଟ୍ରନ୍‌ର ଆବିଷ୍କାର ପାଇଁ 1906 ମସିହାରେ ନୋବେଲ ପୁରସ୍କାର ପାଇଥିବା ଜେ. ଜେ. ଥମ୍‌ସନ୍ ସେତେବେଳେ ରୟାଲ ସୋସାଇଟିର ସଭାପତି ଥା'ନ୍ତି। ରାମାନୁଜନ୍‌ଙ୍କ ପ୍ରାର୍ଥିତ୍ୱର ପୃଷ୍ଠଭୂମି ବିଷୟରେ ବୁଝାଇବା ପାଇଁ ସେ ହାର୍ଡିଙ୍କୁ କହିଥିଲେ। ସେହି ପରିପ୍ରେକ୍ଷୀରେ ହାର୍ଡି କହିଥିଲେ, "ସେ ଯଦି ଅସୁସ୍ଥ ନ ଥା'ନ୍ତେ ତେବେ ତାଙ୍କ ପାଇଁ ପ୍ରସ୍ତାବକୁ ବର୍ଷେ ଖଣ୍ଡେ ସ୍ଥଗିତ ରଖିଥା'ନ୍ତି ଏବଂ ଯଥା ସମୟରେ ତାହା ସ୍ୱାଭାବିକ ଭାବରେ ଉଠିଥା'ନ୍ତା। ଅବଶ୍ୟ ତାଙ୍କ ପ୍ରାର୍ଥିତ୍ୱର ଯଥାର୍ଥତା ବିଷୟରେ ଏବେ ମଧ୍ୟ କୌଣସି ସନ୍ଦେହ ନାହିଁ। ପରିସ୍ଥିତି ଦୃଷ୍ଟିରୁ ମୁଁ ଅନୁଭବ କରୁଛି ଯେ ଏଥିପାଇଁ ଆଉ ସମୟ ନଷ୍ଟ କରିବା ଠିକ୍ ହେବନାହିଁ।" ଅନ୍ୟ ଭାଷାରେ ହାର୍ଡି କହୁଥିଲେ ଯେ ରାମାନୁଜନ୍ ହୁଏତ ଆସନ୍ତା ନିର୍ବାଚନ ସମୟକୁ ବଞ୍ଚି ନ ଥାଇପାରନ୍ତି ଏବଂ ତାଙ୍କୁ ସମ୍ମାନିତ କରିପାରି ନ ଥିବାର ବିଫଳତା ସବୁଦିନ ପାଇଁ ରୟାଲ ସୋସାଇଟିର ଇତିହାସରେ ଯୋଡ଼ିହୋଇ ରହିବ।

ହାର୍ଡି ଆହୁରି କହିଥିଲେ:

> ତାଙ୍କ ପ୍ରାର୍ଥିତ୍ୱକୁ ତ୍ୱରାନ୍ୱିତ କରୁଥିବାରୁ ମୁଁ ଭୀତିଗ୍ରସ୍ତ ଏବଂ ବର୍ତ୍ତମାନ ସମୟରେ ତାଙ୍କ ପାଇଁ ମୁଁ ଜଣେ ଆଦର୍ଶ ସମର୍ଥକ ନୁହେଁ ତାହା ମୁଁ ବୁଝୁଛି। ଆହୁରି ମଧ୍ୟ ମୁଁ ବୁଝୁଛି ଯେ ରୟାଲ ସୋସାଇଟି ପାଇଁ ଆହୁରି ଅନେକ କଥା ବିଚାର କରିବାର ଅଛି। ତଥାପି ଏଥିରେ କିଛି ବି ସନ୍ଦେହ ନାହିଁ ଯେ କୌଣସି ବଡ଼ ସମ୍ମାନ ତାଙ୍କ ପାଇଁ ବହୁତ କିଛି କରିପାରିବ। ଟ୍ରିନିଟି ଫେଲୋ ନ ହୋଇପାରିବାର ହତାଶା ପରିପ୍ରେକ୍ଷୀରେ ଏହା ବିଶେଷ ଗୁରୁତ୍ୱପୂର୍ଣ୍ଣ ହେବ। ଏହା ହୋଇପାରିଲେ ସେ ଅନୁଭବ କରିବେ ଯେ ସେ ସଫଳ ହୋଇଛନ୍ତି ଏବଂ ଆଗକୁ ଚେଷ୍ଟା ଚଳାଇ ରଖିବା ପାଇଁ ସେ ଉତ୍ସାହିତ ହେବେ। ରୟାଲ ସୋସାଇଟି ତାଙ୍କୁ ହରାଇବା ତୁଳନାରେ ଏହି କଥା ବେଶି ଗୁରୁତ୍ୱପୂର୍ଣ୍ଣ ବୋଲି ମୋର ବିଶ୍ୱାସ।
>
> ମୋର ଧାରଣା ଏହା ଯେ ସମୟ ଆସିବ ଯେତେବେଳେ ତାଙ୍କର ପ୍ରାର୍ଥିତ୍ୱକୁ ପ୍ରତ୍ୟାଖ୍ୟାନ କରିହେବନାହିଁ। ମୋ ପାଇଁ ଏହା ସୁସ୍ପଷ୍ଟ। ତାଙ୍କ ଓ ଅନ୍ୟ ସବୁ ଗଣିତଜ୍ଞ ପ୍ରାର୍ଥିଙ୍କ ଭିତରେ ଏକ ଅପୂରଣୀୟ ବ୍ୟବଧାନ ରହିଛି।

ସେହି ଲେଖାରେ ରାମାନୁଜନ୍‌ଙ୍କ ମାନସିକ ଯନ୍ତ୍ରଣା ପାଇଁ ହାର୍ଡି ଆଉ ଗୋଟିଏ କାରଣର ସୂଚନା ଦେଇଥିଲେ। ତାହା ଥିଲା ରାମାନୁଜନ୍ ନିଜକୁ ସଫଳ ମନେକରୁ ନ ଥିବାର କଥା। ହାର୍ଡିଙ୍କର ସବୁ

ପ୍ରକାରର ଉତ୍ସାହ ସତ୍ତ୍ୱେ ଭାରତରେ ଥିବାବେଳେ ଅନ୍ୟ ଗଣିତଜ୍ଞଙ୍କ ସଂସ୍ପର୍ଶରେ ଆସିପାରି ନ ଥିବାରୁ ତାଙ୍କର କେତେ ବିରାଟ କ୍ଷତି ହୋଇଛି ତାହା ରାମାନୁଜନ୍ ଭୁଲିପାରୁ ନ ଥିଲେ। ଇଂଲଣ୍ଡରେ ପହଞ୍ଚିବା ପରଠାରୁ କେତେ ଯେ ଗଣିତ ସେ ଜାଣିନାହାନ୍ତି ତାହା ସେ ବୁଝୁଥିଲେ। ସେସବୁ ବିଷୟ ସେ ଦଶବର୍ଷ ତଳୁ ପଢ଼ିବା ଉଚିତ ଥିଲା ଏବଂ ଇଂଲଣ୍ଡରେ ତାହା ଏବେ ସାଧାରଣ ପାଠ୍ୟକ୍ରମରେ ରହିଥିଲା।

ରାମାନୁଜନ୍‌ଙ୍କ ମୃତ୍ୟୁ ପରେ ହାର୍ଡି ଲେଖିଥିଲେ, "ଏବେ ହୁଏତ ଇତିହାସ ବିଷୟରେ ଅନୁମାନ କରିବା ଅର୍ଥହୀନ ହୋଇପାରେ। କିନ୍ତୁ ଗଣିତର ଆଧୁନିକ ବିଷୟ ଓ କୌଶଳ ବିଷୟରେ ରାମାନୁଜନ୍ ଯଦି ଛବିଶ ବର୍ଷ ବୟସରେ ନ ଜାଣି ଷୋହଳ ବର୍ଷରେ ଜାଣିଥା'ନ୍ତେ, ତେବେ କ'ଣ ହୋଇଥା'ନ୍ତା? ସେ ତାଙ୍କ ସମୟର ଶ୍ରେଷ୍ଠ ଗଣିତଜ୍ଞ ହୋଇପାରିଥା'ନ୍ତେ ବୋଲି କହିବା ହୁଏତ ଅତିରଞ୍ଜନ ହେବନାହିଁ।"

ରାମାନୁଜନ୍ ଭାରତରେ କରିଥିବା କାମ ବିଷୟରେ ହାର୍ଡିଙ୍କର ମତ ଥିଲା ଯେ ସେଥିରୁ ଅଧିକାଂଶ ଆଗରୁ କରାଯାଇ ସାରିଥିଲା। କିନ୍ତୁ ସେଥିପାଇଁ ଦାୟୀ ଥିଲା ରାମାନୁଜନ୍ ଯେଉଁ ପରିସ୍ଥିତିରେ କାମ କରୁଥିଲେ - "ଜଣେ ନିର୍ଧନ ଓ ଏକାକୀ ହିନ୍ଦୁ ୟୁରୋପର ସାମୂହିକ ଜ୍ଞାନ ବିରୁଦ୍ଧରେ ଲଢୁଥିଲେ"।

ରାମାନୁଜନ୍ ସରକାରୀ କଲେଜ ଛାଡ଼ିବା ପରଠାରୁ ପୋର୍ଟ ଟ୍ରଷ୍ଟରେ ଯୋଗଦେବା ଯାଏଁ ସମୟ ବିଷୟରେ ହାର୍ଡି କହିଥିଲେ, "ଅଠରରୁ ପଚିଶ ବର୍ଷ ବୟସ କାଳ ଜଣେ ଗଣିତଜ୍ଞ ପାଇଁ ଅତି ଗୁରୁତ୍ୱପୂର୍ଣ୍ଣ। ରାମାନୁଜନ୍‌ଙ୍କ କ୍ଷେତ୍ରରେ ତାହା ଉପଯୁକ୍ତ ବ୍ୟବହାରରେ ଲାଗିପାରି ନ ଥିଲା ଏବଂ ତାହା ଅପୂରଣୀୟ କ୍ଷତି ଘଟାଇଥିଲା। ଫଳରେ ରାମାନୁଜନ୍‌ଙ୍କ ପ୍ରତିଭାର ପୂର୍ଣ୍ଣ ବିକାଶ ପାଇଁ ଆଉ ସୁଯୋଗ ମିଳି ନ ଥିଲା।"

ହାର୍ଡିଙ୍କର ସଚ୍ଚୋଟତାର ପୃଷ୍ଠଭୂମିରେ ଭାବିବା ସ୍ୱାଭାବିକ ଯେ ତାଙ୍କର ଏହି ଚିନ୍ତା ରାମାନୁଜନ୍‌ଙ୍କୁ ନିଶ୍ଚୟ ଜଣାଇଥିବେ। ତେବେ ରାମାନୁଜନ୍‌ଙ୍କୁ ଏହା ସ୍ୱାଭାବିକ ଭାବରେ ଆଘାତ ଦେଇ ନ ଥିବ କି?

ତାଙ୍କୁ ରୟାଲ ସୋସାଇଟିର ସଦସ୍ୟ କରାଇବା ପାଇଁ ହାର୍ଡିଙ୍କ ଚେଷ୍ଟା ବିଷୟରେ ରାମାନୁଜନ୍ ହୁଏତ କିଛି ଜାଣି ନ ଥିଲେ। ଜାଣିଥିଲେ ବି ସେ ଭାବିଥା'ନ୍ତେ ଯେ ସେଥିରୁ କିଛି ଲାଭ ମିଳିବନାହିଁ, ବରଂ ଟ୍ରିନିଟିର ପ୍ରତ୍ୟାଖ୍ୟାନ ଭଳି ତାହା ଆଉ ଏକ ଅପମାନଜନକ ଆଘାତ ଆଣିବ।

ବର୍ଷକରୁ ଅଧିକ ସମୟ ନିରବ ରହିବା ପରେ ଅକ୍ଟୋବର ମାସ 11 ତାରିଖ ଦିନ ରାମାନୁଜନ୍ ଘରକୁ ଚିଠି ଲେଖିଲେ। ପ୍ରାୟ ସେହି ସମୟରେ, ବୋଧହୁଏ ଚିଠି ଲେଖିବାର ଅଳ୍ପଦିନ ଆଗରୁ, ମାଟ୍‌ଲକ୍‌ରୁ ଅଳ୍ପଦିନ ପାଇଁ ବାହାରକୁ ଆସିଥିଲାବେଳେ ସେ ନିଜର ଜୀବନ ନେବାକୁ ଚେଷ୍ଟା କରିଥିଲେ। 1918 ମସିହା ଜାନୁଆରି ବା ଫେବୃଆରି ମାସରେ କେଉଁ ଗୋଟିଏ ଦିନରେ ସେ ଲଣ୍ଡନର ଭୂତଳ ରେଳପଥରେ ଗୋଟିଏ ଚଳନ୍ତା ଗାଡ଼ି ଆଗକୁ ଡେଇଁ ପଡ଼ିଥିଲେ।

ଏହା ପରର ଘଟଣାକୁ ଅଲୌକିକ କୁହାଯାଇପାରେ। ତାଙ୍କର ଡେଇଁବାକୁ ଜଣେ ଗାର୍ଡ ଦେଖିପାରିଲେ ଓ ଗାଡ଼ି ଅଟକାଇବା ପାଇଁ ସୁଇଚ ଦବାଇଦେଲେ। ବିକଟ ଶବ୍ଦ କରି ରେଳଗାଡ଼ିଟି

ରାମାନୁଜନ୍‌ଙ୍କଠାରୁ ମାତ୍ର କେତେ ଫୁଟ ଦୂରରେ ଅଟକିଗଲା। ରାମାନୁଜନ୍ ବଞ୍ଚିଗଲେ କିନ୍ତୁ ତା'ଙ୍କ ଗୋଡ଼ରେ ଗଭୀର କ୍ଷତ ହୋଇଥିଲା। ତାଙ୍କୁ ଗିରଫ କରାଯାଇ ସ୍କଟଲାଣ୍ଡ ୟାର୍ଡକୁ ନିଆଗଲା ଏବଂ ଖବର ପାଇ ହାର୍ଡି ଆସି ସେଠାରେ ପହଞ୍ଚିଲେ।

ତାଙ୍କର ସବୁ ମୋହିନୀ ଶକ୍ତି ଓ ପ୍ରଭାବ ଖଟାଇ ହାର୍ଡି ରାମାନୁଜନ୍‌ଙ୍କୁ ମୁକୁଳାଇବାକୁ ଚେଷ୍ଟା କଲେ। ପୋଲିସଙ୍କୁ ସେ କହିଲେ ଯେ ରାମାନୁଜନ୍ ହେଉଛନ୍ତି ଜଣେ ଏଫ୍.ଆର୍.ଏସ୍. ଏବଂ ସେଦୃଷ୍ଟିରୁ ତାଙ୍କୁ ଗିରଫ କରାଯାଇ ପାରିବନାହିଁ। ଅବଶ୍ୟ ଉଭୟ କଥା ଅସତ୍ୟ ଥିଲା ଏବଂ ପୋଲିସ ତାହା ଠିକ୍ ଜାଣିପାରିଥିଲା। କିନ୍ତୁ ବୁଝାବୁଝି କରି ସେମାନେ ଜାଣିଲେ ଯେ ରାମାନୁଜନ୍ ପ୍ରକୃତରେ ଜଣେ ବିଶିଷ୍ଟ ଗଣିତଜ୍ଞ ଏବଂ ତାଙ୍କୁ ଛାଡ଼ିଦେଲେ। ତାଙ୍କର କହିବା କଥା ଥିଲା, "ଆମେ ତାଙ୍କ ଜୀବନକୁ ନଷ୍ଟ କରିବାକୁ ଚାହୁଁ ନ ଥିଲୁ।"

ଠିକ୍ କେଉଁ କାରଣରୁ ରାମାନୁଜନ୍ ଏଭଳି ଚରମ ପଦକ୍ଷେପ ନେଲେ ତାହା ଜଣାନାହିଁ। କିନ୍ତୁ ସେ ରାନ୍ଧିଥିବା ଖାଦ୍ୟର ତୃତୀୟ ପରଷା ନ ଖାଇବା ତାଙ୍କ ପାଇଁ ଅତି ଅପମାନଜନକ ହୋଇଥିଲା ଏବଂ ସେ ଅଧା ଖାଇଥିବା ଅତିଥିଙ୍କୁ ଛାଡ଼ି ଚାଲିଯାଇଥିଲେ। ତେଣୁ ତାଙ୍କ ପକ୍ଷରେ ତାତ୍‌କ୍ଷଣିକ ଚରମ ନିଷ୍ପତ୍ତି ନେବାଟା କିଛି ଅସ୍ୱାଭାବିକ ନ ଥିଲା। 1917 ମସିହାରେ ତାଙ୍କୁ ହତାଶ କରିଥିବା ଅନେକ ଘଟଣା ରହିଥିଲା। ଟ୍ରିନିଟିର ପ୍ରତ୍ୟାଖ୍ୟାନ, ଜାନକୀଙ୍କର ଘର ଛାଡ଼ିବା, ରୁଗ୍‌ଣ ଅବସ୍ଥାରେ ଚିକିତ୍ସାଳୟ ଉପରେ ନିର୍ଭର କରିବା, ନିଜ ପସନ୍ଦର ଖାଦ୍ୟ ବ୍ୟବସ୍ଥା କରି ନ ପାରିବା ଆଦି ଏହା ଭିତରେ ଥିଲା। ତାଙ୍କ ସାଙ୍ଗମାନଙ୍କର ଆଶା ଅନୁରୂପ କାମ କରିପାରୁ ନାହାନ୍ତି ବୋଲି ସେ ଭାବୁଥିଲେ ଏବଂ ବ୍ୟଥିତ ହେଉଥିଲେ ଯେ ତାଙ୍କ ପୁରୁଣା କାମର ଅଧିକାଂଶ ଭାଗ ଆଗରୁ କରାଯାଇ ସାରିଥିଲା, ତେଣୁ ତାଙ୍କର ସେହି ସମୟତକ ନଷ୍ଟ ହୋଇଥିଲା।

ଏଭଳି ଘଟଣା ଓ ଚିନ୍ତା ସବୁ ତାଙ୍କୁ ଘୋର ନୈରାଶ୍ୟ ଭିତରକୁ ଟାଣି ନେଉଥିଲା। ଏହି ସବୁ ବିଷୟରେ କଥାହୋଇ ତାଙ୍କର ମନକୁ ହାଲୁକା କରିବା ପାଇଁ ତାଙ୍କ ପାଖରେ କେହି ସାଥୀ ନ ଥିଲେ। ଲିଟଲ୍‌ଉଡ୍ ସେଠାରେ ନ ଥିଲେ। ବୋଧହୁଏ ତାଙ୍କର ଯୁଦ୍ଧ ବିରୋଧୀ ମତ ପାଇଁ 1917 ମସିହାରେ ନେଭିଲ୍‌ଙ୍କ ଟ୍ରିନିଟି ଫେଲୋସିପ୍ ବାତିଲ କରାଯାଇଥିଲା ଏବଂ ସେ କେମ୍ବ୍ରିଜ ଛାଡ଼ି ଲଣ୍ଡନ ଚାଲିଯାଇଥିଲେ। ପାଖରେ ଥିବା ହାର୍ଡିଙ୍କ ସହିତ ରାମାନୁଜନ୍‌ଙ୍କର ସମ୍ପର୍କ ମନଖୋଲା କଥାହେବା ଭଳି ହାଲୁକା ନ ଥିଲା।

ଏହା ମଧ୍ୟ ସମ୍ଭବ ଯେ ସେ ଜୀବନ ହରାଇବା ପାଇଁ ଆଗରୁ କିଛି ଯୋଜନା କରି ନ ଥିଲେ। କିନ୍ତୁ ତାଙ୍କର ଭାରାକ୍ରାନ୍ତ ମାନସିକ ଅବସ୍ଥାରେ କିଛି ନୂଆ ଆଘାତ ତାଙ୍କୁ ସେଭଳି କାମରେ ଅକସ୍ମାତ ଆଗେଇ ନେଇଥିଲା।

ଫେବୃଆରି ମାସର ଶେଷ ବେଳକୁ ସେ ଖବର ପାଇଲେ ଯେ ସେ କେମ୍ବ୍ରିଜ ଫିଲୋସୋଫିକାଲ୍ ସୋସାଇଟିର ସଦସ୍ୟ ଭାବରେ ନିର୍ବାଚିତ ହୋଇଛନ୍ତି। ଏହା ସେତେ ବଡ଼ ସମ୍ମାନ ନ ଥିଲା, ବରଂ ବିଜ୍ଞାନ ଦୁନିଆରେ ତାଙ୍କର ସ୍ଥାନର ଏକ ଛୋଟିଆ ସ୍ୱୀକୃତି ଥିଲା।

ଏହାର ପ୍ରାୟ ଦଶଦିନ ପରେ ସେ ହାର୍ଡିଙ୍କଠାରୁ ଗୋଟିଏ ତାରବାର୍ତ୍ତା ପାଇଲେ। ତିନିଥର ପଢ଼ିଲା ପରେ ମଧ୍ୟ ସେ ସେହି ବାର୍ତ୍ତାର ଉଦ୍ଦେଶ୍ୟ ବୁଝିପାରିଲେନାହିଁ। ହାର୍ଡି ଫିଲୋସୋଫିକାଲ୍

ସୋସାଇଟିର ସଦସ୍ୟତା ବିଷୟରେ କାହିଁକି ପୁଣି ଥରେ ଜଣାଉଛନ୍ତି ତାହା ତାଙ୍କୁ ରହସ୍ୟମୟ ମନେହେଲା।

ଆଉ ଥରେ ସେ ତାରବାର୍ତ୍ତାଟିକୁ ପଢ଼ିଲେ। ତାଙ୍କ ଆଖିରେ ଏଥର ଗୋଟିଏ ଅଲଗା ଶବ୍ଦ ଧରାପଡ଼ିଲା। ତାହା ଥିଲା *ରୟାଲ*। ରାମାନୁଜନ୍ ରୟାଲ ସୋସାଇଟିର ଫେଲୋ ଭାବରେ ନିର୍ବାଚିତ ହୋଇଥିବା କଥା ହାର୍ଡି ତାର ଯୋଗେ ଜଣାଉଛନ୍ତି। 104 ପ୍ରାର୍ଥୀଙ୍କ ଭିତରୁ 15 ଜଣ ନିର୍ବାଚିତ ହୋଇଥିଲେ ଏବଂ ରାମାନୁଜନ୍ ସେଭିତରୁ ଜଣେ ଥିଲେ। ହାର୍ଡିଙ୍କ ପାଖକୁ ସେ ଲେଖିଲେ, "ଧନ୍ୟବାଦ ଜଣାଇବା ପାଇଁ ମୋର ଶବ୍ଦଗୁଡ଼ିକ ଯଥେଷ୍ଟ ହେବନାହିଁ। ନିର୍ବାଚିତ ହେବା ବିଷୟରେ ମୁଁ ସ୍ୱପ୍ନ ବି ଦେଖି ନ ଥିଲି।" ମେ ମାସରେ ସେ ହେବେ ଏସ୍. ରାମାନୁଜନ୍, ଏଫ୍.ଆର୍.ଏସ୍.।

ଅଳ୍ପଦିନ ଭିତରେ ଭାରତରେ ଖବର ପହଞ୍ଚିଲା ଓ ଚହଳ ପକାଇଦେଲା। ମାର୍ଚ୍ଚ 22 ଦିନ ଇଣ୍ଡିଆନ୍ ମାଥେମାଟିକାଲ୍ ସୋସାଇଟି ହାର୍ଡିଙ୍କୁ ଧନ୍ୟବାଦ ଜଣାଇ ଲେଖିଥିଲା, "ଶ୍ରୀ ରାମାନୁଜନ୍‌ଙ୍କ କାମ ପାଇଁ ଆପଣ ଯୋଗାଉଥିବା ସାହାଯ୍ୟ ଓ ଦିଗ୍‌ଦର୍ଶନ ନିମନ୍ତେ"...। ସେହି ଚିଠି ସହିତ ପି. ଭି. ଶେଷୁ ଆୟାର ବ୍ୟକ୍ତିଗତ ଧନ୍ୟବାଦ ଜଣାଇ ଯୋଡ଼ିଥିଲେ, "ତାଙ୍କର ଅସୁସ୍ଥତା ସମୟରେ ଗଲା କେତେ ମାସ ଧରି ଆପଣଙ୍କ ସେବା ଓ ଯତ୍ନ ପାଇଁ ..."।

ମେ ବେଳକୁ ରାମାନୁଜନ୍‌ଙ୍କ ସ୍ୱାସ୍ଥ୍ୟ ସେହିଭଳି ଖରାପ ରହିଥିଲା। ମାଟ୍‌ଲକ୍‌ର ରୋଗଶଯ୍ୟାରୁ ସେ ରୟାଲ ସୋସାଇଟିକୁ ଚିଠି ଲେଖି ଜଣାଇଲେ ଯେ ସୋସାଇଟିରେ ଆନୁଷ୍ଠାନିକ ଭାବେ ପ୍ରବେଶ କରିବା ପାଇଁ ସେ ଲଣ୍ଡନ ଯିବାକୁ ସମର୍ଥ ନୁହନ୍ତି।

ଇଂଲଣ୍ଡରେ ପହଞ୍ଚିବା ପରେ ପରେ ରାମାନୁଜନ୍ ଇଞ୍ଜିନିଅର୍ ଏ. ଏସ୍. ରାମଲିଙ୍ଗମଙ୍କୁ କ୍ରମ୍‌ୱେଲ୍ ରୋଡ୍‌ର ଅଭ୍ୟର୍ଥନା କେନ୍ଦ୍ରରେ ଭେଟିଥିଲେ। 1914 ପରେ ସେମାନଙ୍କ ଭିତରେ ଯୋଗାଯୋଗ ରହି ନ ଥିଲା। ବୋଧହୁଏ ରାମାନୁଜନ୍ ରୟାଲ ସୋସାଇଟି ସଦସ୍ୟ ହେବାର ଖବର ପାଇ ରାମଲିଙ୍ଗମ୍ ହାର୍ଡିଙ୍କ ମାର୍ଫତରେ ଚିଠି ଖଣ୍ଡେ ପଠାଇଲେ। କିଛି ଉତ୍ତର ନ ପାଇବାରୁ ସେ ହାର୍ଡିଙ୍କ ପାଖକୁ ସିଧା ଚିଠି ଲେଖିଲେ ଏବଂ ରାମାନୁଜନ୍‌ଙ୍କ ଅସୁସ୍ଥତା ବିଷୟରେ ଜାଣି ମାଟ୍‌ଲକ୍‌କୁ ଚିଠି ଦେଲେ।

ଯୁଦ୍ଧ ଯୋଗୁ ଇଂଲଣ୍ଡରେ ଖାଦ୍ୟାଭାବ ଦେଖାଯାଉଥିବା କଥା ରାମଲିଙ୍ଗମ୍ ତାଙ୍କ ଘରକୁ ଜଣାଇଥିଲେ। ଯଦିଓ ସେ ଖାଦ୍ୟ ପଠାଇବାକୁ ଲେଖି ନ ଥିଲେ ଘରୁ ତାଙ୍କ ପାଇଁ ପାର୍ସଲ ପାର୍ସଲ ଖାଦ୍ୟ ଆସି ପହଞ୍ଚିବାରେ ଲାଗିଲା। ଶେଷରେ ତାହା ବନ୍ଦ କରିବା ପାଇଁ ସେ ତାର ପଠାଇଲେ। ଗଦା ହୋଇ ରହିଥିବା ଖାଦ୍ୟରୁ ତାଙ୍କର କିଛି ଦରକାର କି, ସେ ରାମାନୁଜନ୍‌ଙ୍କୁ ପଚାରିଥିଲେ? ରାମାନୁଜନ୍ କିଛି ଘିଅ ଓ ମସଲାଦିଆ ଖାଦ୍ୟ ଚାହିଁଥିଲେ ଯାହା ରାମଲିଙ୍ଗମ୍ ସାଙ୍ଗେ ସାଙ୍ଗେ ପଠାଇ ଦେଇଥିଲେ। ଯୋଗାଯୋଗ ଲାଗିରହିବା ପରେ ରବିବାର, ଜୁନ୍ 16 ଦିନ ରାମଲିଙ୍ଗମ୍ ମାଟ୍‌ଲକ୍‌ରେ ରାମାନୁଜନ୍‌ଙ୍କୁ ଦେଖିବା ପାଇଁ ଆସିଲେ। ମଙ୍ଗଳବାର ଦ୍ୱିପ୍ରହର ଯାଏଁ ତିନିଦିନ ଧରି ସେମାନେ ସବୁ ପ୍ରକାର ବିଷୟରେ ଗପିଲେ। ରାମଲିଙ୍ଗମ୍ ଶୁଣିଥିଲେ ଯେ ରାମାନୁଜନ୍‌ଙ୍କ ମାନସିକ ଅବସ୍ଥା ଭଲ ନ ଥିଲା, କିନ୍ତୁ ଏବେ ସେ ତାହାର କିଛି ସୂଚନା ଦେଖିବାକୁ ପାଇଲେନାହିଁ।

କିନ୍ତୁ ରାମାନୁଜନ୍‌ଙ୍କ ଶାରୀରିକ ଅବସ୍ଥା ତାଙ୍କ ମନରେ ଭୟ ଆଣିଲା। ଫେରିବା ପରେ ସେ

ହାର୍ଡିଙ୍କ ପାଖକୁ ଲେଖିଥିଲେ, "ତାଙ୍କୁ ଏତେ ପତଳା, ଦୁର୍ବଳ ଓ କ୍ଷୟଗ୍ରସ୍ତ ଅବସ୍ଥାରେ ଦେଖି ମୁଁ ଆଚମ୍ବିତ ଓ ଭୟଭୀତ ହୋଇପଡ଼ିଲି।" ଅସୁସ୍ଥତା, ଆତ୍ମହତ୍ୟା ଉଦ୍ୟମ ଓ ମାଟ୍‌ଲକ୍‌ଠାରେ ରୁଚିକର ଖାଦ୍ୟର ଅଭାବ ଆଦିର ପ୍ରଭାବ ରାମାନୁଜନ୍‌ଙ୍କୁ ସେହି ଅବସ୍ଥାରେ ପହଞ୍ଚାଇଛି।

ହାର୍ଡିଙ୍କ ପାଖକୁ ରାମଲିଙ୍ଗମ୍‌ଙ୍କ ଚିଠି ବାର ପୃଷ୍ଠାର ଲମ୍ବା ବିବରଣୀରେ ଭରିଥିଲା। ସେଥିରେ ସେ ରାମାନୁଜନ୍‌ଙ୍କ ଅବସ୍ଥା, ଡାକ୍ତରଙ୍କ ମତାମତ, ଖାଦ୍ୟପେୟ ବ୍ୟବସ୍ଥା ଏବଂ ଯତ୍ନରେ ଉନ୍ନତି ଆଣିବା ପାଇଁ ପରାମର୍ଶ ଆଦି ବିଷୟରେ ଲେଖିଥିଲେ। ଚିଠିକୁ ସଂକ୍ଷିପ୍ତ କରିବାର କିଛି କାରଣ ସେ ଦେଖି ନ ଥିଲେ, କାରଣ ରାମାନୁଜନ୍‌ଙ୍କ କଥାବାର୍ତ୍ତାରୁ ସେ ଧାରଣା ପାଉଥିଲେ ଯେ ହାର୍ଡି ଏସବୁ ବିଷୟରେ ପ୍ରାୟ କିଛି ଜାଣନ୍ତିନାହିଁ। କହିବାକୁ ଗଲେ ସେହି ଚିଠିଟି ଜଣେ ମଧ୍ୟମ ବର୍ଗର ପରିଚାଳକ ତାଙ୍କ ଉପରିସ୍ଥ ଅଧିକାରୀଙ୍କୁ ଦେଉଥିବା ବିବରଣୀ ଭଳି ଥିଲା। ଯେଉଁ ଅଧିକାରୀଙ୍କ ପାଇଁ ଟିକିନିଖି ବିବରଣୀ ଜାଣିବାର ସୁଯୋଗ ନ ଥିଲା।

ଲମ୍ବା ହୋଇଥିଲେ ମଧ୍ୟ ରାମଲିଙ୍ଗମ୍‌ଙ୍କ ଚିଠିର ମୁଖ୍ୟ କଥା ସ୍ପଷ୍ଟ ଥିଲା। ସେ ଲେଖିଥିଲେ, "ଖାଦ୍ୟ ବିଷୟରେ ମୁଁ ବେଶ୍ ରୁକ୍ଷ ଭାବରେ ଓ ବିଶଦ୍ ଭାବରେ ଲେଖିବାକୁ ବାଧ୍ୟ ହେଉଛି।" ତାଙ୍କ ବିଶଦ୍ କଥାର ସାରାଂଶ ଥିଲା ଯେ ଉପଯୁକ୍ତ ଖାଦ୍ୟ ନ ଖାଇବା ଫଳରେ ରାମାନୁଜନ୍ ନିଜକୁ ମୃତ୍ୟୁ ଆଡ଼କୁ ଟାଣି ନେଉଛନ୍ତି।

ଯକ୍ଷ୍ମାକୁ କ୍ଷୟ ରୋଗ ମଧ୍ୟ କୁହାଯାଏ, କାରଣ ଏଥିରେ ରୋଗୀର ଓଜନ ବହୁତ କମିଯାଏ ଏବଂ ଦେହ ହାଡୁଆ ହୋଇଯାଏ। ତେଣୁ ପ୍ରାୟ ସବୁ ଚିକିତ୍ସାର ଗୋଟିଏ ଦିଗ ହୁଏ ରୋଗୀକୁ ପୁଷ୍ଟିକର ଖାଦ୍ୟ ଦେଇ ତା'ର ଓଜନ କମିବାକୁ ବାଧା ଦେବା।

ରାମାନୁଜନ୍‌ଙ୍କ ସକାଳ ଜଳଖିଆରେ ଅଣ୍ଡା ଦିଆଯାଉଥିଲା। ଦ୍ୱିପ୍ରହରରେ ତାଙ୍କୁ ଫୁଟଣ ଓ ଘିଅରେ ବଘରା ଭାତ, କାକୁଡ଼ି, ଲେମ୍ବୁ ଏବଂ ବେଳେ ବେଳେ ମଟର ମଞ୍ଜି ମିଳୁଥିଲା। କିନ୍ତୁ ସେଠାର ଲୋକମାନେ ଏଭଳି ଖାଦ୍ୟ ଠିକ୍ ଭାବରେ ରାନ୍ଧିଜାଣୁ ନ ଥିବାରୁ ତାହା ରାମାନୁଜନ୍‌ଙ୍କ ପାଇଁ ରୁଚିକର ହେଉ ନ ଥିଲା। ବଘରା ଭାତ ମଧ୍ୟ କଞ୍ଚା ଚାଉଳ ଭଳି ଲାଗୁଥିଲା ବୋଲି ସେ ଥରେ ଅଭିଯୋଗ କରି ରାମଲିଙ୍ଗମ୍‌ଙ୍କ ପାଖକୁ ଚିଠି ଲେଖିଥିଲେ।

ପଡ଼ି ବ୍ୟବସ୍ଥା ଭିତରେ ଖାଦ୍ୟଦ୍ରବ୍ୟ ପାଇଁ ଚିକିତ୍ସାଳୟକୁ ଅଗ୍ରାଧିକାର ମିଳୁଥିଲା। ତଥାପି ରାମାନୁଜନ୍ ଖୋଜୁଥିବା କଦଳୀ ବା ଛେନା ମିଳୁ ନ ଥିଲା। ବଟର୍ ଏତେ ମହଙ୍ଗା ପଡୁଥିଲା ଯେ ସେଥିରେ ଆଳୁ ଭାଜିବା ପାଇଁ ଚିକିତ୍ସାଳୟର କର୍ତ୍ତୃପକ୍ଷ କୁଣ୍ଠିତ ହେଉଥିଲେ।

ରାମଲିଙ୍ଗମ୍ କିଛି ବିକଳ୍ପ ବ୍ୟବସ୍ଥା କରିବାକୁ ଚେଷ୍ଟା କଲେ। ରାମାନୁଜନ୍‌ଙ୍କ ପାଇଁ ସେ ନିଜେ କିଛି ରାନ୍ଧିବାର ପ୍ରସ୍ତାବ ଦେଲେ, କିନ୍ତୁ ରୋଷେଇଘରେ ପଶିବାର ଅନୁମତି ତାଙ୍କୁ ମିଳିଲାନାହିଁ। ତାଙ୍କ ଲେଖା ଅନୁସାରେ ରାନ୍ଧିବା ପାଇଁ ମଧ୍ୟ କେହି ପ୍ରସ୍ତୁତ ନ ଥିଲେ। ଅସୁବିଧାର ମୂଳ କାରଣ ରାମଲିଙ୍ଗମ୍ ଅବଶ୍ୟ ବୁଝୁଥିଲେ। ତାହା ଥିଲା ରାମାନୁଜନ୍‌ଙ୍କର ଜିଦି। ଏହି ବିଷୟରେ ହାର୍ଡିଙ୍କ ପାଖକୁ ସେ ଲେଖିଥିଲେ, "ନିଜର ସ୍ୱାସ୍ଥ୍ୟ ଓ ଜୀବନକୁ ବିପଦରେ ପକାଇ ସେ ଏବେ ମଧ୍ୟ ନିରାମିଷ ଖାଦ୍ୟ କଥା ଭାବୁଛନ୍ତି। କିନ୍ତୁ ଦୁଧ ସର ଓ ପ୍ଲମ୍ ଖାଇବାକୁ ମନା କରିବାଟା ତାଙ୍କର ଆଡ଼ବାୟାମି

ଓ ଜିଦ୍‌ଖୋର ମନୋବୃତ୍ତି ଛଡ଼ା ଆଉ କିଛି ନୁହେଁ।'' ରାମାନୁଜନ୍‌ଙ୍କ ପାଖକୁ ମଧ୍ୟ ସେ କଠୋର ଭାବରେ ଏହି ବିଷୟରେ ଲେଖିଥିଲେ:

> ତୁମ ସହିତ ମୁଁ ଟିକିଏ ରୁକ୍ଷ ହେବାକୁ ଯାଉଛି। ଡାକ୍ତର ରାମଙ୍କ ସହିତ କଥା ହେବା ପରେ ଏବଂ ସବୁ ବିଷୟରେ ଭଲକରି ଭାବିବା ପରେ ଖାଦ୍ୟ ବିଷୟରେ ତୁମର ବଛାବଛି ମତେ ପ୍ରଭାବିତ କରିଛି। ବେଶ୍, ତୁମକୁ ବାଛିନେବାକୁ ହେବ... ତୁମର ଖାଦ୍ୟରୁଚିକୁ ନିୟନ୍ତ୍ରଣ କରିବ କି ନିଜକୁ ମାରିବ। ଗହମ ବା ଓଟ୍ ଶସ୍ୟର କ୍ଷୀରୀ, ଦୁଧ ସର ଆଦି ଖାଇବାକୁ ନିଜକୁ ମନାଇବାକୁ ପଡ଼ିବ। ମୋର ସାଙ୍ଗମାନେ ଦୃଢ଼ ଭାବରେ କହିଛନ୍ତି ଯେ ତୁମର ଆଚାର ଓ ଲଙ୍କା ଆଦି ଖାଇବା ବନ୍ଦ କରିବାକୁ ହେବ।
>
> ମାଂସ ଖାଇବା ପାଇଁ କହିବା ଭଳି ଚରମ ପଦକ୍ଷେପ ନେବାକୁ ମୁଁ ଯାଉନାହିଁ। ତଥାପି ତୁମର ଜୀବନ ବଞ୍ଚାଇବା ପାଇଁ ମୋର ଏହା କହିବା କେବଳ କ୍ଷମଣୀୟ ନୁହେଁ, ବରଂ ଜରୁରୀ ବୋଲି ମୁଁ ଭାବୁଛି। ଏପରିକି ତାହା ଅନିବାର୍ଯ୍ୟ ମନେ ହେଉଛି। ମତାନ୍ଧତା ଛାଡ଼ି ଯୁକ୍ତିଯୁକ୍ତ ଆଚରଣ ଦେଖାଅ।

ଆମିଷ ନ ଛୁଇଁବା ଦିଗରେ ରାମାନୁଜନ୍‌ଙ୍କ ସଙ୍କଳ୍ପକୁ ଯଦି କେବେ କୋହଳ କରିବା ଦରକାର ଥିଲା ତାହା ଥିଲା ଏବେ। କିନ୍ତୁ ବ୍ରାହ୍ମଣମାନଙ୍କ ପାଇଁ ସ୍ୱାସ୍ଥ୍ୟଗତ କାରଣରୁ ମଧ୍ୟ ସେଥିରେ ବ୍ୟତିକ୍ରମ କରିବାର ପ୍ରଥା ନ ଥିଲା, ତେଣୁ ରାମାନୁଜନ୍ ତାହା କରିବା ପାଇଁ ପ୍ରସ୍ତୁତ ନ ଥିଲେ।

ରାମାନୁଜନ୍ ଥରେ ଓଭାଲ୍‌ଟିନ୍ ଚକୋଲେଟ୍ ପାନୀୟ ପିଉଥିଲେ, କାରଣ ତାହା ନିରାମିଷ ବୋଲି ସେ ବୁଝିଥିଲେ। କିନ୍ତୁ ତା'ର ଡବା ଉପରେ ଥିବା ଲେଖାକୁ ପଢ଼ିକରି ସେ ଦେଖିଲେ ଯେ ସେଥିରେ ଖୁବ୍ ଅଳ୍ପ ପରିମାଣର ପଶୁ ଚର୍ବି ମିଶିଛି। ହତବମ୍ବ ହୋଇ ସେ ସେଠାରୁ ପଳାଇଯିବାକୁ ଚାହିଁଲେ ଏବଂ ଜିନିଷପତ୍ର ଧରି ସାଙ୍ଗେ ସାଙ୍ଗେ ବାହାରି ପଡ଼ିଲେ। ରେଳ ଷ୍ଟେସନ ପାଖରେ ପହଞ୍ଚିଲା ବେଳକୁ ଜର୍ମାନିର ବାୟୁପୋତରୁ ବୋମା ପଡ଼ିବାକୁ ଲାଗିଲା। ବୋଧହୁଏ ତାହା ଥିଲା 1917 ଅକ୍ଟୋବର 19ର ଆକ୍ରମଣ। ସେହି ଆକ୍ରମଣ ଫଳରେ ଅନେକ ଲୋକ ମରିଥିଲେ, କିନ୍ତୁ ରାମାନୁଜନ୍ ଅକ୍ଷତ ରହିଥିଲେ। ତଥାପି ତାଙ୍କର ମତ ଥିଲା ଯେ ଆମିଷ ଖାଇଥିବାରୁ ଏହା ତାଙ୍କ ପାଇଁ ଭଗବାନଙ୍କର ଦଣ୍ଡ ଥିଲା।

ଅସୁସ୍ଥ ହେବା ଆଗରୁ ରାମାନୁଜନ୍‌ଙ୍କର ବାଛବିଚାର ଯଦି କଠୋର ଥିଲା, ଏବେ ତାହା ବଢ଼ି ବଢ଼ି ଅସମ୍ଭବ ହୋଇପଡ଼ିଲା। ଏକ ସମୟରେ ସେ କେବଳ ପାଉଁରୁଟି ଓ କ୍ଷୀର ଖାଉଥିଲେ, କିନ୍ତୁ ମାଟ୍‌ଲକ୍‌ରେ ଏବେ ସେ ତାହା ଖାଇବା ବନ୍ଦ କରିଦେଇଥିଲେ। ସେ କେବଳ ଦକ୍ଷିଣ ଭାରତୀୟ ଖାଦ୍ୟ ଖୋଜୁଥିଲେ।

ଖାଦ୍ୟ ବିଷୟରେ ଯୁକ୍ତିଯୁକ୍ତ ହେବା ପାଇଁ ରାମଲିଙ୍ଗମ୍ ତାଙ୍କୁ ଅନୁରୋଧ କରିଚାଲିଥିଲେ। କିନ୍ତୁ ଏଥିରେ ବାଧା ଦେଉଥିବା ଆଉ ଗୋଟିଏ କଥା ଥିଲା ଇଂରେଜ ଖାଦ୍ୟର ସ୍ୱାଦହୀନତା। ନିଜର ଖାଦ୍ୟ ରୁଚି ବଦଳାଇଥିବା ଓ ଆମିଷ ଖାଉଥିବା ଅନେକ ଭାରତୀୟ ଛାତ୍ର ଏବଂ ୟୁରୋପୀୟମାନେ ଇଂରେଜ ରାନ୍ଧଣାକୁ ପସନ୍ଦ କରୁ ନ ଥିଲେ। ଇଂଲଣ୍ଡରେ ଛାତ୍ର ଅବସ୍ଥାରେ ଥିବାବେଳେ ଗାନ୍ଧିଜୀ ମଧ୍ୟ ସେଭଳି ମତ ଦେଇଥିଲେ। ନେଭିଲ୍‌ଙ୍କ ଘରେ ଥିଲାବେଳେ ନୂଆ ପରିବାର ସ୍ୱାଦ ରାମାନୁଜନ୍‌ଙ୍କୁ ଭଲଲାଗୁ ନ ଥିଲା, ତେଣୁ ତାହା ନ ଖାଉଥିବାରୁ ଦୁଃଖ ପ୍ରକାଶ କରି ପାଉଁରୁଟି ଓ ଜାମ୍ ଖାଉଥିଲେ।

ମାଟ୍‌ଲକ୍‌କୁ ଆଉଥରେ ଆସିଥିବା ବେଳେ ଡାକ୍ତର କିନ୍‌କେଡ୍ ରାମଲିଙ୍ଗମ୍‌ଙ୍କୁ କହିଥିଲେ ଯେ ମସଲାଦିଆ ଆଚାର, ଲଙ୍କା ବା ଆଉ ଯାହା ଇଚ୍ଛା ତାହା ରାମାନୁଜନ୍ ଖାଇପାରିବେ। ଏହି କଥା ତାଙ୍କୁ ଅତି ମାତ୍ରାରେ ବିଚଳିତ କରିପକାଇଲା। କାରଣ ସେ ବୁଝିଥିଲେ ଯେ ଯକ୍ଷ୍ମା ରୋଗୀ ସାଧାରଣ ଭାବରେ ଏଭଳି ଖାଦ୍ୟ ଖାଇବା କଥା ନୁହେଁ, କିନ୍ତୁ ବଞ୍ଚିବାର ଆଶା ଚାଲିଗଲା ପରେ ରୋଗୀକୁ ତା'ର ମନଇଚ୍ଛାର ଖାଦ୍ୟ ଦିଆଯାଇପାରେ। ହାର୍ଡିଙ୍କ ପାଖକୁ ସେ ଲେଖିଲେ:

> ରୋଗୀର ଅବସ୍ଥା ଯେତେବେଳେ ସୁଧୁରିବାର ଆଶା ଆଉ ନ ଥାଏ, ଯେତେବେଳେ ରୋଗୀର ଜୀବନକାଳ ମାତ୍ର କିଛି ସପ୍ତାହ ବା ମାସ ବୋଲି ଜଣାପଡ଼େ, ସେତେବେଳେ ଶେଷ ଦିନଗୁଡ଼ିକରେ ଖୁସୀ ହେବା ପାଇଁ ଓ ଆରାମ ପାଇବା ପାଇଁ ରୋଗୀ ନିଜ ପସନ୍ଦ ଅନୁସାରେ ଖାଇବାରେ କିଛି ଫରକ ପଡ଼େନାହିଁ। ସେଭଳି ଖାଦ୍ୟ ଦେବା ପାଇଁ ମତେ ଅନୁମତି ଦେବା ଦ୍ୱାରା ଡାକ୍ତର କିନ୍‌କେଡ୍ କ'ଣ ଏହି ସୂଚନା ଦେଉଛନ୍ତି?
>
> ଗଣିତ କ୍ଷେତ୍ରରେ ମୂଲ୍ୟବାନ ଅବଦାନ ରଖିଥିବା ଏବଂ ବିସ୍ମୟକର ପ୍ରତିଭାର ଅଧିକାରୀ ହୋଇଥିବା ରାମାନୁଜନ୍‌ଙ୍କୁ ଯେ ଏଭଳି ଭାବରେ ହରାଇବା ଅତି ଯନ୍ତ୍ରଣାଦାୟକ ଓ ହୃଦୟବିଦାରକ ହେବ! ଯୁଦ୍ଧର ଭୟାବହତା ପରିପ୍ରେକ୍ଷୀରେ ଅସଂଖ୍ୟ ମଣିଷଙ୍କ ନିଧନ ପ୍ରତି ଆମେ ଉଦାସୀନ ହୋଇପଡ଼ିଛେ, କିନ୍ତୁ ରାମାନୁଜନ୍‌ଙ୍କୁ କ'ଣ ଆମେ ସେପରି ଚାଲିଯିବାକୁ ଦେବା?

## 11. ବିସ୍ତୃତ ପ୍ରମାଣ

1918 ମସିହା ସେପ୍ଟେମ୍ବର ବେଳକୁ ଟ୍ରିନିଟି ଫେଲୋସିପ୍ ପାଇଁ ରାମାନୁଜନ୍‌ଙ୍କ ନାଁ ପୁଣି ଥରେ ପ୍ରସ୍ତାବିତ ହେଲା। ରାମାନୁଜନ୍‌ଙ୍କର ଅତି ଘନିଷ୍ଠ ବନ୍ଧୁ ଭାବରେ ହାର୍ଡିଙ୍କୁ ସମସ୍ତେ ଜାଣୁଥିଲେ। ସେଥିପାଇଁ ଏବଂ ଟ୍ରିନିଟିର ରାଜନୀତିରେ ଗଭୀର ଭାବରେ ଛନ୍ଦି ହୋଇଥିବା ହାର୍ଡି ଏଥର ରାମାନୁଜନ୍‌ଙ୍କର ପ୍ରସ୍ତାବକ ହୋଇ ନ ଥିଲେ। ଅତିଶୟ ପରିଶ୍ରମ ଫଳରେ ଓ ମୁଣ୍ଡରେ ଆଘାତ ଯୋଗୁ ଲିଟଲ୍‌ଉଡ୍ ଅସୁସ୍ଥ ହୋଇ ସାମୟିକ ବିଶ୍ରାମ ପାଇଁ କେମ୍ବ୍ରିଜ ଫେରି ଆସିଥିଲେ ଏବଂ ସେ ରାମାନୁଜନ୍‌ଙ୍କର ନାଁ ପ୍ରସ୍ତାବ କଲେ। ଏଥର ବର୍ଣ୍ଣବିଦ୍ୱେଷ ଉଗ୍ର ହୋଇଉଠିଲା। ରାମାନୁଜନ୍‌ଙ୍କ ପ୍ରାର୍ଥିତ୍ୱର ଜଣେ ବିରୋଧୀ ଖୋଲାଖୋଲି କହିବୁଲିଲେ ଯେ ଜଣେ କୃଷ୍ଣାଙ୍ଗ ବ୍ୟକ୍ତିଙ୍କୁ ସେ ଫେଲୋ ଭାବରେ ଗ୍ରହଣ କରିବାକୁ ରାଜି ନୁହନ୍ତି।

ରାମାନୁଜନ୍‌ଙ୍କ ଆତ୍ମହତ୍ୟା ଉଦ୍ୟମ ବିଷୟରେ ମଧ୍ୟ ସମସ୍ତେ ଜାଣିଯାଇଥା'ନ୍ତି ଏବଂ ବିରୋଧୀମାନେ ତାକୁ ଏକ ଅସ୍ତ୍ର କଲେ। ସେମାନେ ପ୍ରଚାର କଲେ ଯେ କଲେଜର ନିୟମ ଅନୁସାରେ କେବଳ ସୁସ୍ଥ ମନର ଲୋକମାନେ ଫେଲୋ ହୋଇପାରିବେ ଏବଂ ଆତ୍ମହତ୍ୟା ଉଦ୍ୟମ ଅସୁସ୍ଥ ମନର ପରିଚାୟକ। ନିର୍ବାଚନ ସମୟରେ ଲିଟଲ୍‌ଉଡ୍ ଅସୁସ୍ଥ ଥିଲେ, ତେଣୁ ସେ ନିଜେ ଉପସ୍ଥିତ ରହିପାରିଲେନାହିଁ। କିନ୍ତୁ ସେହି ପ୍ରଚାରକୁ ଖଣ୍ଡନ କରି ସେ ଗୋଟିଏ ରିପୋର୍ଟ ଲେଖିଲେ ଏବଂ ରାମାନୁଜନ୍‌ଙ୍କ ମାନସିକ ଅବସ୍ଥା ଠିକ୍ ଥିବା ବିଷୟରେ ଦୁଇ ଜଣ ଡାକ୍ତରଙ୍କ ମତ ତା ସହିତ ପଠାଇଲେ।

ଏହାର ପ୍ରଭାବରେ ରାମାନୁଜନ୍‌ଙ୍କର ମାନସିକ ସ୍ଥିତି ବିଷୟରେ କୌଣସି ପ୍ରଶ୍ନ ଉଠାଇବାର ସୁଯୋଗ ଦିଆଗଲାନାହିଁ। ରାମାନୁଜନ୍‌ଙ୍କ ସପକ୍ଷରେ ସବୁଠାରୁ ବଳିଷ୍ଠ ଯୁକ୍ତି ଥିଲା ତାଙ୍କ ନାଁ ପଛରେ ଯୋଡ଼ା ଯାଉଥିବା ତିନିଟି ଅକ୍ଷର - ଏଫ୍.ଆର୍.ଏସ୍.। କାରଣ ରୟାଲ ସୋସାଇଟିର ଜଣେ ଫେଲୋଙ୍କୁ ଟ୍ରିନିଟି ପ୍ରତ୍ୟାଖ୍ୟାନ କରିବା ବଡ଼ ଅପବାଦର କଥା ହେବ। ରାମାନୁଜନ୍ ଏଥର ଟ୍ରିନିଟିର ଫେଲୋ ରୂପେ ଗୃହୀତ ହେଲେ।

ରାମାନୁଜନ୍ ଏବେ ମାଟ୍‌ଲକ୍‌ରୁ ବାହାରି ଆସିଥିଲେ ଏବଂ ସୁବିଧାରେ ଭାରତୀୟ ଖାଦ୍ୟ ପାଇବାକୁ ଓ ସାଙ୍ଗସାଥୀଙ୍କୁ ଭେଟିବାକୁ ସେ ଲଣ୍ଡନରେ ରହିବାକୁ ଚାହୁଁଥିଲେ। ବୋମାମାଡ଼ର ବିପଦକୁ ମନରେ ରଖି ରାମଲିଙ୍ଗମ୍ ଏହାକୁ ବିରୋଧ କଲେ ଏବଂ ପ୍ରସ୍ତାବ ଦେଲେ ଯେ ରାମାନୁଜନ୍ ଦକ୍ଷିଣ ଇଟାଲି ବା ଦକ୍ଷିଣ ଫ୍ରାନ୍ସ୍‌ର ଅନୁକୂଳ ଜଳବାୟୁରେ ସମୟ କଟାନ୍ତୁ। ନ ହେଲେ ବୋମା ଉପଦ୍ରବରୁ ଦୂରରେ ଥିବା ଇଂଲଣ୍ଡର ଅନ୍ୟ କେଉଁ ଅଞ୍ଚଳରେ ରହନ୍ତୁ।

କିନ୍ତୁ ରାମାନୁଜନ୍‌ଙ୍କ କଥା ହିଁ ରହିଲା ଏବଂ ଲଣ୍ଡନର କେନ୍ଦ୍ର ଅଞ୍ଚଳର ଏକ ଚିକିତ୍ସାଳୟରେ ସେ ରହିଲେ। ୧୮୭୦ ଦଶକରେ ଜର୍ଜ ବର୍ଣ୍ଣାଡ୍ ଶ ଓ 1907ରୁ 1911 ମସିହା ଯାଏଁ ଭର୍ଜିନିଆ ଉଲ୍ଫ ସେହି ଅଞ୍ଚଳରେ ରହିଥିଲେ। ଅନେକ ବିଶେଷଜ୍ଞ ଆସି ରାମାନୁଜନ୍‌ଙ୍କୁ ସେଠାରେ ଦେଖିଲେ, କିନ୍ତୁ ତାଙ୍କର ରୋଗକୁ ସଠିକ ଭାବରେ ଚିହ୍ନିବା ପାଇଁ କେହି ସକ୍ଷମ ହେଲେନାହିଁ। ଅନିୟମିତ ଭାବରେ ତାଙ୍କର ଜ୍ୱର ଖୁବ୍ ବଢ଼ିଯାଉଥିଲା ଏବଂ ଦେହରେ ଯନ୍ତ୍ରଣା ହେଉଥିଲା। ଯନ୍ତ୍ରଣାର ଉତ୍ସ କିନ୍ତୁ ଧରାପଡୁ ନ ଥିଲା। ଜଣେ ଡାକ୍ତର ଭାବୁଥିଲେ ଯେ ଓପଡ଼ାଯିବାକୁ ଥିବା ଗୋଟିଏ ଦାନ୍ତ ଯୋଗୁଁ ଏପରି ହେଉଛି।

ଫିଜ୍‌ରଏ ହାଉସ୍ ଚିକିତ୍ସାଳୟରେ ଥିବାବେଳେ ରାମାନୁଜନ୍ ଟ୍ରିନିଟି ଫେଲୋସିପ୍ ବିଷୟରେ ହାର୍ଡିଙ୍କ ତାରବାର୍ତ୍ତା ପାଇଲେ ଏବଂ ଉତ୍ତରରେ ଲେଖିଥିଲେ, "ରୟାଲ ସୋସାଇଟିର ସଦସ୍ୟ ଭାବରେ ମତେ ନିର୍ବାଚିତ କରାଇବାରେ ସଫଳ ହେବା ପରେ ଟ୍ରିନିଟି ନିର୍ବାଚନରେ ଏବର୍ଷ ମତେ ଜିଣାଇବା ବୋଧହୁଏ ବେଶ୍ କମ୍ କଷ୍ଟକର ହୋଇଥିବ।"

ପରେ ପରେ ଶ୍ରୀ ଲିଟଲ୍‌ଉଡ୍ ଓ ମେଜର ମାକ୍‌ମୋହନ୍‌ଙ୍କୁ ତାଙ୍କର କୃତଜ୍ଞତା ଜଣାଇବା ପାଇଁ ଅନୁରୋଧ କରି ହାର୍ଡିଙ୍କ ପାଖକୁ ସେ ଆଉ ଗୋଟିଏ ଚିଠି ଲେଖିଲେ। ସେଥିରେ ସେ ଲେଖିଥିଲେ, "ଆପଣ କଷ୍ଟ କରି ନ ଥିଲେ ଏବଂ ସେମାନଙ୍କର ଉତ୍ସାହ ମିଳି ନ ଥିଲେ ମୁଁ ଏଇଟିର ବା ଅନ୍ୟଟିର ଫେଲୋ ହୋଇପାରିନଥା'ନ୍ତି।" ସେ ଚିଠିରେ ଫେଲୋସିପ୍ ବିଷୟରେ ବିଶଦ୍ ବିବରଣୀ ମଧ୍ୟ ମାଗିଥିଲେ।

ସେହି ଚିଠିର ଦ୍ୱିତୀୟ ଅନୁଚ୍ଛେଦରେ ସେ ଲେଖିଥିଲେ, "$p(\mathrm{n})$ର ସର୍ବସମତା ବା କଙ୍ଗ୍ରୁଏନ୍ସି ବିଷୟରେ ମୁଁ ବେଶ୍ ଗଭୀର ଭାବରେ ଚିନ୍ତା କରିଛି। $p_{\mathrm{r}}(\mathrm{n})$ ର ସର୍ବସମତା ବିଷୟରେ ମଧ୍ୟ ମୁଁ ସାଧାରଣ ଭାବରେ ବିଚାର କରିଛି... ଚାରିଟି ଭିନ୍ନ ଭିନ୍ନ ଧାରାରେ। ଯେଉଁଥିରୁ ପ୍ରଥମଟିର ଫଳାଫଳର ସମ୍ପର୍କ ଏବେ ଆପଣ ପ୍ରକାଶ କରୁଥିବା ନିବନ୍ଧ ସହିତ ରହିଛି ...।"

ଏହି ସବୁ ସମ୍ମାନ ଯେ ରାମାନୁଜନ୍‌ଙ୍କୁ ଅତି ଉତ୍ସାହିତ କରିବ ତାହା ହାର୍ଡି ଆଗରୁ ଅନୁମାନ କରୁଥିଲେ। ନେଭିଲ୍‌ଙ୍କ ଭାଷାରେ ରାମାନୁଜନ୍‌ଙ୍କ ପାଇଁ ଏହା ପରର ସମୟଟି ଥିଲା, "ଅତି ଉଜ୍ଜ୍ୱଳ

ଉଦ୍ଭାବନର ସ୍ୱଳ୍ପ କାଳ''। 1918 ମସିହାର ବସନ୍ତ ଋତୁରେ ଆରମ୍ଭ ହୋଇଥିବା ସେହି କାଳରେ ପ୍ରକାଶିତ ହୋଇଥିବା ନିବନ୍ଧ, ଯାହା ବିଷୟରେ ସେ ଚିଠିରେ ଲେଖିଥିଲେ, ରାମାନୁଜନ୍‌ଙ୍କ ପ୍ରତିଭାର ପୂର୍ଣ୍ଣ ବିକଶିତ ରୂପ ଦେଖାଉଥିଲା।

ବିଭାଜନ ସଂଖ୍ୟା ସମ୍ପର୍କିତ ତାଙ୍କ ନିବନ୍ଧ ବିଷୟରେ ରାମାନୁଜନ୍ ନିଜେ ଲେଖିଥିଲେ:

> ଶ୍ରୀ ହାର୍ଡି ଓ ମୁଁ ନିକଟରେ ପ୍ରକାଶ କରିଥିବା ନିବନ୍ଧରେ ମେଜର ମାକ୍‌ମୋହନ୍‌ଙ୍କ ହିସାବର ଏକ ସାରଣୀ ରହିଛି। 1ରୁ 200 ଯାଏଁ ସଂଖ୍ୟାର ଅବାଧ ବିଭାଜନ ସଂଖ୍ୟାଗୁଡ଼ିକର ମୂଲ୍ୟ ସେଥିରେ ଦିଆଯାଇଛି। ତାହାର ଅନୁଧ୍ୟାନରୁ ମୁଁ କେତେଗୁଡ଼ିଏ ବିଚିତ୍ର ସର୍ବସମତା ଗୁଣ ଦେଖିବାକୁ ପାଇଲି। ଏହା ଥିଲା:
>
> $$(1)\ p(4), p(9), p(14), p(19), \ldots \equiv 0 \pmod 5,$$
>
> $$(1)\ p(5), p(12), p(19), p(26), \ldots \equiv 0 \pmod 7,$$

ଏହିଭଳି ସେ ପୂରା ପୃଷ୍ଠାରେ ଲେଖିଥିଲେ।

ନିବନ୍ଧଟିର ଶୀର୍ଷକ ଥିଲା "n ର ବିଭାଜନ ସଂଖ୍ୟା $p$(n)ର କିଛି ଗୁଣଧର୍ମ''। ଏଠାରେ ମନେପକାଇ ଦିଆଯାଇପାରେ ଯେ ବିଭିନ୍ନ ସଂଖ୍ୟାକୁ ମିଶାଇ କେତେ ବାଟରେ n ମିଳିପାରିବ, ସେହି ବାଟସବୁର ସଂଖ୍ୟା ହେଉଛି n ର ବିଭାଜନ ସଂଖ୍ୟା ବା ପାର୍ଟିସନ୍। ନିବନ୍ଧଟି ଖୁବ୍ ଗୁରୁତ୍ୱପୂର୍ଣ୍ଣ ଥିଲା କାରଣ ଏବେ ଯାଏଁ ବିଭାଜନ ସଂଖ୍ୟାର ଗୁଣଧର୍ମ ଆବିଷ୍କୃତ ହୋଇପାରି ନ ଥିଲା। ଏପରିକି ସେ ବିଷୟରେ ଅତି ସାଧାରଣ ତଥ୍ୟ ମଧ୍ୟ ଜଣା ନ ଥିଲା। ଉଦାହରଣ ସ୍ୱରୂପ, କୌଣସି n ର ବିଭାଜନ ସଂଖ୍ୟା ଯୁଗ୍ମ ବା ଅଯୁଗ୍ମ ତାହା ମଧ୍ୟ ହିସାବ ନ କରି ଜାଣିହେଉ ନ ଥିଲା।

ରାମାନୁଜନ୍ ଯେଉଁ ସାରଣୀ କଥା ଲେଖିଥିଲେ ତାହା ମେଜର୍ ମାକ୍‌ମୋହନ ଦୁଇବର୍ଷ ତଳେ ତିଆରି କରିଥିଲେ। ସେଥିରେ 1ରୁ 200 ଯାଏଁ ଅଙ୍କର ବିଭାଜନ ସଂଖ୍ୟା ଦିଆଯାଇଥିଲା, ଯାହା ସେ ଅନେକ ପରିଶ୍ରମ କରି ହାତରେ ହିସାବ କରିଥିଲେ। ତାଙ୍କ ସୂତ୍ରରୁ ମିଳୁଥିବା ଫଳାଫଳର ସଠିକତା ପରୀକ୍ଷା କରିବା ପାଇଁ ହାର୍ଡି ଓ ରାମାନୁଜନ୍ ଆଗରୁ ଏହି ସାରଣୀ ବ୍ୟବହାର କରିଥିଲେ। ଏବେ କିନ୍ତୁ ରାମାନୁଜନ୍ ସେହି ନିରସ ସଂଖ୍ୟାଭରା ସାରଣୀକୁ ଗଭୀର ଭାବରେ ଅନୁଧ୍ୟାନ କରିବା ପରେ ତାଙ୍କ ମନରେ ଏକ ନୂଆ ଚିନ୍ତା ଆସିଲା। ସେହି କଳ୍ପନା ଏତେ ଅଭିନବ ଥିଲା ଯେ ବର୍ଷ ବର୍ଷ ଧରି ତାହା ଗଣିତଜ୍ଞମାନଙ୍କୁ ତଟସ୍ଥ କରିରଖିଥିଲା।

ବିଭାଜନ ସଂଖ୍ୟା ବିଷୟରେ ସେ ଦେଖିଥିବା ନୂଆ କଥାକୁ ବୁଝାଇବା ପାଇଁ ରାମାନୁଜନ୍ ସର୍ବସମତାର ଭାଷା ବ୍ୟବହାର କରିଥିଲେ। ସର୍ବସମତା କୌଣସି ସଂଖ୍ୟାର ବିଭାଜ୍ୟତା ବିଷୟରେ ତଥ୍ୟ ଯୋଗାଏ। ଦୁଇଟି ସଂଖ୍ୟାକୁ ସର୍ବସମ କୁହାଯାଏ ଯଦି ସେ ଦୁଇଟି ଏକା ସଂଖ୍ୟା ଦ୍ୱାରା ବିଭାଜିତ ହେଲେ ସମାନ ଭାଗଶେଷ ଦିଅନ୍ତି। ସେହି ଭାଗଶେଷ ଶୂନ ମଧ୍ୟ ହୋଇପାରେ। $^{14}/_{7} = 2$ କୁ ସର୍ବସମତାର ଭାଷାରେ ଲେଖାଯିବ:

$$14 \equiv 0\ (\text{ମଡ୍}\ 7)$$

ଅର୍ଥାତ୍, 14କୁ ମଡୁଲସ୍ (ସଂକ୍ଷେପରେ ମଡ୍) 7 ଦ୍ୱାରା ବିଭାଜନ କଲେ ଭାଗଶେଷ 0 ରହିବ।

ସେହିଭଳି

$$15 \equiv 1 \text{ (ମଡ୍ 7)}$$

ଅର୍ଥାତ୍, 15କୁ ମଡୁଲସ୍ (ସଂକ୍ଷେପରେ ମଡ୍) 7 ଦ୍ୱାରା ବିଭାଜନ କଲେ ଭାଗଶେଷ 1 ରହିବ। 22 ଓ 15 ସର୍ବସମ ହେବେ, କାରଣ 22 କୁ 7 ଦ୍ୱାରା ବିଭାଜନ କଲେ ଭାଗଶେଷ ସେହି 1 ରହିବ।

ହାର୍ଡି ଓ ଇ. ଏମ୍. ରାଇଟ୍ ମିଳିତ ଭାବରେ ଲେଖିଥିବା *ଆନ୍ ଇଣ୍ଟ୍ରୋଡକସନ୍ ଟୁ ଦି ଥିଓରି ଅଫ୍ ନମ୍ବର୍ସ* (ସଂଖ୍ୟାତତ୍ତ୍ୱ ପରିଚୟ) ବହିରେ ଲେଖାଯାଇଥିଲା, "ନିତିଦିନିଆ ଜୀବନରେ ସର୍ବସମତାର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି। ଉଦାହରଣ ସ୍ୱରୂପ, 'ଆଜି ଶନିବାର' ଉକ୍ତିଟି ଏକ ନିର୍ଦ୍ଦିଷ୍ଟ ଘଟଣା ପରେ ବିତିଥିବା ଦିନସଂଖ୍ୟାର ଏକ ସର୍ବସମ ଗୁଣ (ମଡ୍ 7)। ସ୍କୁଲ କଲେଜ ରୁଟିନ୍ ହେଉଛି ସର୍ବସମତାର ଏକ ସାରଣୀ ଯେଉଁଠି ମଡୁଲସ୍ ହେଉଛି 365, 7 ଓ 24। ସେହିଭଳି ରେଳ ସମୟସାରଣୀ ମଧ୍ୟ ଏକ ସର୍ବସମ ସାରଣୀ।"

ମାକ୍‌ମୋହନ୍‌ଙ୍କ ସାରଣୀରେ ରାମାନୁଜନ୍ କିଛି ବିଚିତ୍ର ଗୁଣ ବାରମ୍ବାର ଦେଖିବାକୁ ପାଇଲେ। ଏହାର ଗୋଟିଏ ଉଦାହରଣ ହେଉଛି:

$$p(5m+4) \equiv 0 \pmod 5$$

ରାମାନୁଜନ୍ ଦେଖିଲେ ଯେ m ର ଯେଉଁ ମୂଲ୍ୟ ନେଲେ ବି (5m + 4) ର ବିଭାଜନ ସଂଖ୍ୟା ସବୁବେଳେ 5 ଦ୍ୱାରା ବିଭାଜ୍ୟ ହେବ। m ଯଦି ଶୂନ ହେବ ତେବେ ଉପରର ରାଶିମାଳାର ମୂଲ୍ୟ ହେବ 4 ଏବଂ ଚାରିର ବିଭାଜନ ସଂଖ୍ୟା ହେଉଛି 5, ଯାହା 5 ଦ୍ୱାରା ବିଭାଜ୍ୟ। m ର ମୂଲ୍ୟ 1,000,000 ନେଲେ p(5,000,004)ର ମୂଲ୍ୟ ଜାଣିବା କଷ୍ଟକର ହେବ, କିନ୍ତୁ ଦୃଢ଼ ଭାବରେ କୁହାଯାଇ ପାରିବ ଯେ ତାହା ନିଶ୍ଚୟ 5 ଦ୍ୱାରା ବିଭାଜ୍ୟ ହେବ। ରାମାନୁଜନ୍ ଦେଖିଥିବା ଆଉ ଗୋଟିଏ ସମ୍ପର୍କ ଥିଲା p(7m+5)ର 7 ଦ୍ୱାରା ବିଭାଜ୍ୟତା। ତାଙ୍କ ନିବନ୍ଧରେ ସେ ଏହି ଫଳଗୁଡ଼ିକର ପ୍ରମାଣ ଦେଇଥିଲେ ଏବଂ ଆହୁରି କେତେ ସମ୍ପର୍କର ଅନୁମାନୋକ୍ତି ଦେଇଥିଲେ, ଯାହାର ପ୍ରମାଣ ପରେ ମିଳିଲା।

ରାମାନୁଜନ୍‌ଙ୍କର ସର୍ବସମତା ନିବନ୍ଧ ପାଇବା ଦିନ ହିଁ ଫିଲୋସୋଫିକାଲ୍ ସୋସାଇଟି ପାଖରେ ତାଙ୍କର ଆଉ ଗୋଟିଏ ନିବନ୍ଧ ପହଞ୍ଚିଲା। ସେହି ଦ୍ୱିତୀୟ ନିବନ୍ଧ ଗଣିତ କ୍ଷେତ୍ରରେ ରାମାନୁଜନ୍‌ଙ୍କ ବିଚକ୍ଷଣତା ତଥା ଅପୂର୍ଣ୍ଣ ରହିଥିବା ଦକ୍ଷତାର ଛାପ ବହନ କରୁଥିଲା।

1913 ମସିହା ଆଗରୁ ରାମାନୁଜନ୍ ଦୁଇଟି ଅଭେଦ ବା *ଆଇଡେଣ୍ଟିଟି* ଆବିଷ୍କାର କରିଥିଲେ ଏବଂ ପରେ ତାହା ହାର୍ଡିଙ୍କୁ ଦେଖାଇଥିଲେ। ଏହି ନିବନ୍ଧଟି ସେହି ଅଭେଦ ସମ୍ପର୍କରେ ଥିଲା। ଅଭେଦ ଏଭଳି ଏକ ସମୀକରଣକୁ ବୁଝାଏ ଯାହା ଚଳର ସବୁ ମୂଲ୍ୟ ପାଇଁ ଠିକ୍ ହୋଇଥାଏ। $x-2=3$ ଭଳି ଏକ ସାଧାରଣ ସମୀକରଣ କେବଳ $x=5$ ପାଇଁ ଠିକ୍ ହେବ, କିନ୍ତୁ $(x-2)(x+2)=x^2-4$ ସମୀକରଣଟି xର ଯେ କୌଣସି ମୂଲ୍ୟ ପାଇଁ ଠିକ୍ ହେବ। ରାମାନୁଜନ୍‌ଙ୍କର ଅଭେଦ ଦୁଇଟି ଭିତରୁ ଗୋଟିଏ ଥିଲା:

$$1+\frac{q}{1-q}+\frac{q^4}{(1-q)(1-q^2)}+\frac{q^9}{(1-q)(1-q^2)(1-q^3)}+\cdots$$

$$=\frac{1}{(1-q)(1-q^4)(1-q^6)(1-q^9)(1-q^{11})(1-q^{14})(1-q^{16})(1-q^{19})\cdots}$$

ଅନ୍ୟଟିର ରୂପ ମଧ୍ୟ ସେହିଭଳି ଥିଲା। ରାମାନୁଜନ୍ ଇଂଲଣ୍ଡକୁ ଆସିବା ପରେ, ବୋଧହୁଏ 1915 ମସିହାରେ, ମାକ୍‌ମୋହନ୍ ସେଥିରେ ବିଭାଜନ ସଂଖ୍ୟା ସମ୍ପର୍କିତ କିଛି ଗୁଣଧର୍ମ ଲକ୍ଷ୍ୟ କଲେ ଯାହା ରାମାନୁଜନ୍ ଆଗରୁ ଧରିପାରି ନ ଥିଲେ।

ଯୋଗାତ୍ମକ ସଂଖ୍ୟାତତ୍ତ୍ୱର ଛାତ୍ରମାନେ ବିଭାଜନ ବିଷୟରେ ସାଧାରଣ ଭାବରେ ଆଗ୍ରହୀ ହେଉଥିଲେ, କିନ୍ତୁ କିଛି ଶ୍ରେଣୀର ବିଭାଜନ ତାଙ୍କ ପାଇଁ ସ୍ୱତନ୍ତ୍ର ଆଗ୍ରହର ବିଷୟ ହେଉଥିଲା। ସଂଖ୍ୟା 10ର ବିଭାଜନ ସଂଖ୍ୟା - ସଠିକ ଭାବରେ କହିଲେ 'ଅବାଧ ବିଭାଜନ ସଂଖ୍ୟା' - ହେଉଛି 42। ଏହି 42ଟି ଧାରା ଭିତରେ ରହିଛି:

1+1+1+1+1+1+1+1+1+1=10

ଏବଂ

1+1+1+1+2+2+2=10

ଯଦି ସର୍ତ୍ତ ରଖାଯାଏ ଯେ ବିଭାଜନ ଦେଉଥିବା ଅଙ୍କଗୁଡ଼ିକ ଭିତରେ ପ୍ରଭେଦ ଅନ୍ତତଃ 2 ହେବା ଦରକାର, ତେବେ ଉପରେ ଦିଆଯାଇଥିବା ଭଳି ବିଭାଜନଗୁଡ଼ିକ କାଟ ଖାଇଯିବ। ଏହି ସର୍ତ୍ତ ପୂରଣ କରୁଥିବା ବିଭାଜନ ଭିତରେ ରହିବ 8+2=10 ଓ 6+3+1=10 ଏବଂ ଆଉ ଚାରିଟି ବିଭାଜନ - ମୋଟରେ ମାତ୍ର ଛ'ଟି। ଅନ୍ୟ 36 ବିଭାଜନରେ ଅନ୍ତତଃ ଏକ ଯୋଡ଼ା ଅଙ୍କ ରହିଛି ଯାହାର ପ୍ରଭେଦ ଦୁଇରୁ କମ୍, ତେଣୁ ସେଗୁଡ଼ିକ ବାଦ ପଡ଼ିଯିବେ।

ଆଉ ଗୋଟିଏ ଅଲଗା ପ୍ରକାରର ସର୍ତ୍ତ ବ୍ୟବହାର କରି ଦ୍ୱିତୀୟ ଶ୍ରେଣୀର ବିଭାଜନ ମିଳିପାରିବ। କୌଣସି ବୀଜଗାଣିତିକ ସୂତ୍ରକୁ ସର୍ତ୍ତ ଭାବରେ ବ୍ୟବହାର କରାଯାଇପାରେ। କୌଣସି ପୂର୍ଣ୍ଣ ସଂଖ୍ୟା mକୁ ଆଧାର କରି କେବଳ 5m+1 ବା 5m+4ରୁ ମିଳୁଥିବା ଅଙ୍କର ବିଭାଜନ ଖୋଜାଯାଇପାରେ। ଏହି ସର୍ତ୍ତ ଲାଗୁହେଲେ ବିଭାଜନ 6+3+1=10 ଗ୍ରହଣୀୟ ହେବନାହିଁ। କାରଣ ଏଥିରେ କିଛି ଅଙ୍କ ରହିଛି ଯାହା ଉପରର ସର୍ତ୍ତ ପୂରଣ କରିପାରୁ ନାହିଁ। m=1 ଧରିଲେ 5m+1ର ମୂଲ୍ୟ 6 ହେବ ଏବଂ m=0 ଧରିଲେ 5m+1ର ମୂଲ୍ୟ 1 ହେବ। କିନ୍ତୁ ଏହି ଦୁଇ ସୂତ୍ରରୁ 3 ମିଳିପାରିବନାହିଁ। ହିସାବ କରିଚାଲିଲେ ଦେଖାଯିବ ଯେ 5m+1ର ଓ 5m+4ର ସୂତ୍ର ଦୁଇଟିରୁ କେବଳ ସେଭଳି ସଂଖ୍ୟା ବାହାରିବ ଯାହାର ଶେଷ ଅଙ୍କଟି 1, 4, 6 ବା 9 ହେଉଥିବ।

10ର ବିଭାଜନ ଭିତରୁ 6+4=10 ଓ 4+1+1+1+1+1+1=10 ଦୁଇଟି ଗ୍ରହଣୀୟ ହେବେ ଏବଂ ଆଉ ଚାରିଟି, ମୋଟରେ 6ଟି, ବିଭାଜନ ଏହି ସର୍ତ୍ତ ପୂରଣ କରିପାରିବେ।

ପୂର୍ବ ସର୍ତ୍ତ, ବିଭାଜନରେ ମିଶୁଥିବା ଅଙ୍କ ଭିତରେ ପ୍ରଭେଦ 2 ରହିବା ଦରକାର, ଅନୁସାରେ ମଧ୍ୟ 6 ଟି ଗ୍ରହଣୀୟ ବିଭାଜନ ମିଳୁଥିଲା। ଏହା କିଛି ଆକସ୍ମିକ ସଂଯୋଗ ନ ଥିଲା, ବରଂ ଦେଖାଗଲା ଯେ ସବୁବେଳେ ଏହା ହିଁ ଘଟିବ।

ଏହା ଥିଲା ରାମାନୁଜନ୍ ଅଭେଦର ସାର କଥା। ଏହା ଫଳରେ ପୂରା ଅଲଗା ମନେ ହେଉଥିବା ଗାଣିତିକ ବିଭାଗ ଯୋଡ଼ି ହୋଇଗଲା। 1916 ମସିହାରେ ପ୍ରକାଶିତ ମାକ୍‌ମୋହନ୍‌ଙ୍କର କମ୍ବିନେଟୋରି ଆନାଲିସିସ୍ ବହିର ଦ୍ୱିତୀୟ ଭାଗରେ 'ରାମାନୁଜନ୍ ଅଭେଦ' ବିଷୟରେ ପୂରା ଗୋଟିଏ ଅଧ୍ୟାୟ ରହିଥିଲା। ଅନେକ ପରିମାଣର ହିସାବ ସେ ହାତରେ କରି ଦେଖାଇଥିଲେ ଯେ ସେ ସବୁ କ୍ଷେତ୍ରରେ ଅଭେଦଗୁଡ଼ିକ ସଠିକ ଫଳ ଦେଉଛି ଏବଂ ଲେଖିଥିଲେ, "ସେଗୁଡ଼ିକର ସତ୍ୟତା ବିଷୟରେ ସନ୍ଦେହ କରିବାର କୌଣସି କାରଣ ନାହିଁ କହିଲେ ଚଳେ; କିନ୍ତୁ ବିଧିବଦ୍ଧ ପ୍ରମାଣ ଜରିଆରେ ତାହା ଏ ଯାଏଁ ସ୍ୱୀକୃତ ହୋଇନାହିଁ।"

କିନ୍ତୁ କୋଡ଼ିଏ ବର୍ଷ ତଳର ଗୋଟିଏ ନିବନ୍ଧରେ ତାହା ପ୍ରମାଣିତ ହୋଇଥିଲା।

1916 ବା 1917 ମସିହାରେ ରାମାନୁଜନ୍ ଦିନେ *ପ୍ରୋସିଡିଙ୍ଗ୍‌ସ୍ ଅଫ୍ ଦି ଲଣ୍ଡନ ମାଥେମାଟିକାଲ ସୋସାଇଟି*ର ପୁରୁଣା ସଂଖ୍ୟାଗୁଡ଼ିକୁ ଓଲଟାଉଥିଲେ। 1894 ମସିହାର ଗୋଟିଏ ସଂଖ୍ୟାରେ 318 ପୃଷ୍ଠାର ତଳ ଆଡ଼କୁ ସେ '*ସେକେଣ୍ଡ ମେମୋଏର୍ ଅନ୍ ଦି ଏକ୍ସପାନ୍‌ସନ୍ ଅଫ୍ ସର୍ଟେନ ଇନ୍‌ଫାଇନାଇଟ୍ ପ୍ରଡକ୍ଟ୍‌ସ୍*' ଶୀର୍ଷକ ଗୋଟିଏ ଲେଖା ଦେଖିଲେ। ସେଥିରେ ବର୍ଣ୍ଣନା କରାଯାଇଥିବା 'ଇନ୍‌ଫାଇନାଇଟ୍ ପ୍ରଡକ୍ଟ୍‌ସ୍' ଭିତରୁ ଦୁଇଟି ଥିଲା ଯେଉଁ ଦୁଇଟି ଅଭେଦକୁ ସେ ଆବିଷ୍କାର କରିଥିଲେ ବୋଲି ଭାବୁଥିଲେ। ମାକ୍‌ମୋହନ୍‌ଙ୍କ ବହି ବାହାରିବା ଆଗରୁ ହାର୍ଡି ବିଭିନ୍ନ ଲୋକଙ୍କୁ ରାମାନୁଜନ୍‌ଙ୍କ ଅଭେଦ ବିଷୟରେ ଜଣାଇଥିଲେ ଏବଂ ସେହି ଚମତ୍କାର ଉପପାଦ୍ୟର ପ୍ରମାଣ ଯୋଗାଇବାକୁ ଅନୁରୋଧ କରିଥିଲେ। ଯଦିଓ ତାହା କେହି କରିପାରି ନ ଥିଲେ, ଏବେ ଭୂତ ଭଳି ତାହା ଅତୀତର ଗର୍ଭରୁ ବାହାରିଲା। ବେଶ୍ ଆଗରୁ କେହି ଜଣେ ସେ ପ୍ରମାଣ ଦେଇସାରିଥିଲେ।

ରାମାନୁଜନ୍‌ଙ୍କ ପ୍ରତିକ୍ରିୟା ବିଷୟରେ ହାର୍ଡି କହିଥିଲେ, "ତାଙ୍କର ଆଶ୍ଚର୍ଯ୍ୟ ହେବା କଥା ମୋର ପୂରା ମନେ ଅଛି। ପୁରୁଣା କାମର ପ୍ରଶଂସା ସେ କରିଥିଲେ।" କିନ୍ତୁ ରାମାନୁଜନ୍‌ଙ୍କ ମନରେ ଯେଉଁ ହର୍ଷବିଷାଦର ଦ୍ୱନ୍ଦ୍ୱ ନିଶ୍ଚୟ ଆସିଥିବ, ସେ ବିଷୟରେ ସେ ନିରବ ରହିଥିଲେ।

ରାମାନୁଜନ୍‌ଙ୍କ ଆଗରୁ ଅଭେଦର ପ୍ରମାଣ ଦେଇଥିବା ଗଣିତଜ୍ଞ ଜଣକ ଥିଲେ ଲିଓନାର୍ଡ ଜେମ୍‌ସ୍ ରଜର୍ସ ଯିଏ ଏକ ଉଲ୍ଲେଖନୀୟ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ। ତାଙ୍କର ବାପା ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟର ଜଣେ ଅର୍ଥନୀତି ବିଶାରଦ ଥିଲେ ଏବଂ ସେଠାରେ 1862 ମସିହାରେ ଲିଓନାର୍ଡ ଜନ୍ମ ହୋଇଥିଲେ। କେମ୍ବ୍ରିଜର ଗଣିତ ଟ୍ରାଇପସ୍ ଭଳି ଅକ୍ସଫୋର୍ଡର ମଧ୍ୟ ଏକ ମେଧା ପରୀକ୍ଷା ଥିଲା, ଯେଉଁଥିରେ ଲିଓନାର୍ଡ ଭଲ କରିଥିଲେ। 1884 ମସିହାରେ ସେ ସଙ୍ଗୀତରେ ସ୍ନାତକ ଡିଗ୍ରୀ ହାସଲ କରିଥିଲେ। ସେ ଅତି ସୁନ୍ଦର ଭାବରେ ପିଆନୋ ବଜାଉଥିଲେ, ଅନୁକରଣ କରିବାରେ ବିଶେଷ ଦକ୍ଷ ଥିଲେ, ବୁଣାବୁଣି ଓ ବଗିଚା କାମ କରୁଥିଲେ। ସ୍କେଟିଙ୍ଗ ତାଙ୍କର ପ୍ରିୟ ଥିଲା ଏବଂ ସେ ସ୍ୱାଭାବିକ ଭାବରେ ଜଣେ ଭାଷାବିତ୍ ଥିଲେ। ତାଙ୍କ ବିଷୟରେ କୁହାଯାଇଥିଲା:

ଭାଷା କ୍ଷେତ୍ରରେ ତାଙ୍କର ଦକ୍ଷତା, ଉପସ୍ଥିତ ବୁଦ୍ଧି, ସରସ ଚାତୁର୍ଯ୍ୟ, ରୂପ ଲାବଣ୍ୟ, କ୍ରୀଡ଼ାବିତ୍‌ର ଲାଳିତ୍ୟ, ମହିଳାଙ୍କ ପାଇଁ ଅଦମ୍ୟ ଆକର୍ଷଣୀୟତା ଆଦିର ବଳରେ ଯେ କୌଣସି କୂଟନୈତିକ ପଦବୀ ତାଙ୍କ ପାଇଁ ଅପହଞ୍ଚ ହୋଇ ନ ଥା'ନ୍ତା। ତଥାପି ଦୁନିଆର ଆଖିରେ ଯାହା ସଫଳତା ଭାବରେ ଗଣାଯାଏ ସେଥିରୁ କିଛି ବି ସେ ପାଇ ନ ଥିଲେ।

ଗଣିତ କ୍ଷେତ୍ରରେ ତାଙ୍କର ଦକ୍ଷତା ରହିଥିଲା। କିନ୍ତୁ ସେହି କାମକୁ ଏକ ସଉକ ଭାବରେ ସେ କରୁଥିଲେ। ଗଣିତର ବୃତ୍ତିରେ ସଫଳତା ପାଇଁ ଯେପରି ଏକମନା ହୋଇ ଲାଗିବା କଥା ତାହା ସେ କରୁ ନ ଥିଲେ। ତାଙ୍କ ବିଷୟରେ କୁହାଯାଇଥିଲା, "ଯାହା ସେ କରୁଥିଲେ, ଭଲଭାବରେ କରୁଥିଲେ, କାରଣ ତାହା କରିବାକୁ ସେ ଭଲ ପାଉଥିଲେ। କିନ୍ତୁ ପେଶାଦାର ମନୋବୃତ୍ତି ତାଙ୍କଠାରେ ନ ଥିଲା। ଅନ୍ୟ ଗଣିତଜ୍ଞଙ୍କ କାମ ବିଷୟରେ ତାଙ୍କର ଜ୍ଞାନ ଅସ୍ପଷ୍ଟ ଥିଲା। ତାଙ୍କର ଉଚ୍ଚାକାଂକ୍ଷା ବା ସ୍ୱୀକୃତି ପାଇଁ ଆଗ୍ରହ ନ ଥିଲା।"

ଏସବୁ ସତ୍ତ୍ୱେ ରାମାନୁଜନ୍ ତାଙ୍କୁ 'ଆବିଷ୍କାର' କରିବା ଆଗରୁ ମଧ୍ୟ ସେ ଜଣେ ପୂରା ନଗଣ୍ୟ ବ୍ୟକ୍ତି ନ ଥିଲେ। ପରେ ଯେଉଁ ଅନୁଷ୍ଠାନ ଲିଡ୍‌ସ୍ ବିଶ୍ୱବିଦ୍ୟାଳୟର ରୂପ ନେଲା, ଅନେକ ବର୍ଷ ଧରି ସେ ସେଠାରେ ଗଣିତ ଅଧ୍ୟାପକ ଭାବରେ କାମ କରିଥିଲେ ଏବଂ ବେଶ୍ ସଂଖ୍ୟାର ଗାଣିତିକ ନିବନ୍ଧ ପ୍ରକାଶ କରିଥିଲେ। ତାଙ୍କର କିଛି ଉଲ୍ଲେଖନୀୟ ଅବଦାନ ରହିଥିଲା, କିନ୍ତୁ ସଂଯୋଗବଶତଃ ସେଗୁଡ଼ିକ ବିସ୍ମୃତ ହୋଇଯାଇଥିଲା। ଅନ୍ତତଃ ସ୍ୱଳ୍ପକାଳୀନ ଭିତ୍ତିରେ ଏହା ସତ ଥିଲା। ରାମାନୁଜନ୍‌ଙ୍କ ଆବିଷ୍କାରର ତିନି ବର୍ଷ ଆଗରୁ ପ୍ରୋସିଡିଙ୍ଗ୍‌ସ୍ ଅଫ୍ ଦି ଲଣ୍ଡନ ମାଥେମାଟିକାଲ୍ ସୋସାଇଟିରେ ଏକ ଭ୍ରମ ସଂଶୋଧନ ପ୍ରକାଶ ପାଇଥିଲା:

ଅଧ୍ୟାପକ ରଜର୍ସ ତାଙ୍କର "ଅନ୍ ଦି କ୍ୱିନ୍‌କ୍ୱିସେକ୍ସନାଲ୍ ଇକ୍ୱେସନ୍‌ସ୍" ନିବନ୍ଧରେ ... ସମୀକରଣଟି ସ୍ପଷ୍ଟ ରୂପରେ ଦେଇଛନ୍ତି। ପ୍ରକାଶନ ସମୟରେ ମୁଁ ନିଶ୍ଚୟ ଅଧ୍ୟାପକ ରଜର୍ସଙ୍କର କାମ ବିଷୟରେ ପଢ଼ିଥିବି, କିନ୍ତୁ ମୁଁ ଦୁଃଖିତ ଯେ ତାହା ମୋର ମନେରହି ନ ଥିଲା। ଫଳରେ ମୁଁ ଲେଖିଥିଲି ଯେ ଭାଗ 12ରେ ପ୍ରକାଶିତ କେଲିଙ୍କ ନିବନ୍ଧ ପରେ ଆଉ କେହି ଏ ବିଷୟରେ କାମ କରିନାହାନ୍ତି।

ରାମାନୁଜନ୍ ପୁନଃଆବିଷ୍କାର କରିଥିବା ଗାଣିତିକ ସମ୍ପର୍କ ରଜର୍ସ-ରାମାନୁଜନ୍ ଅଭେଦ ଭାବରେ ପରିଚିତ ହେଲା। ରଜର୍ସଙ୍କର ମୂଳ ପ୍ରକାଶନରେ ସେଗୁଡ଼ିକ ଅନ୍ୟ ବିଷୟର ଉପପ୍ରମେୟ ଭାବରେ ଉପସ୍ଥାପିତ ହୋଇଥିବାରୁ ଅନ୍ୟ ଗଣିତଜ୍ଞଙ୍କ ଆଖିରେ ସହଜରେ ପଡ଼ି ନ ଥିଲା। ସେଥିରେ ଦିଆଯାଇଥିବା ପ୍ରମାଣ ଅତି ମାର୍ଜିତ ବା ସାବଲୀଳ ନ ଥିଲା, କିନ୍ତୁ ତାହାର ମୂଲ୍ୟକୁ କେହି ଅସ୍ୱୀକାର କରିବାର ନ ଥିଲା।

ମାକ୍‌ମୋହନ୍ ତାଙ୍କ ବହିରେ ପ୍ରମାଣ ନ ଥିବା କଥା ଲେଖିଥିଲେ। ଏବେ ସେ ଜାଣିଲେ ଯେ ତାହା ଭୁଲ। ସେଥିପାଇଁ ଦୁଃଖପ୍ରକାଶ କରି ସେ ରଜର୍ସଙ୍କ ପାଖକୁ ଚିଠି ଲେଖିଲେ। 1917 ମସିହାରେ ରଜର୍ସ ସେହି ଅଭେଦ ଉପରେ ଗୋଟିଏ ନୂଆ ଓ ସରଳ ପ୍ରମାଣ ମାକ୍‌ମୋହନ୍‌ଙ୍କ ପାଖକୁ ପଠାଇଲେ। 1918 ମସିହା ଏପ୍ରିଲ୍ ମାସରେ, ବୋଧହୁଏ ମାଟ୍‌ଲକ୍ ଚିକିତ୍ସାଳୟରେ ଥିବାବେଳେ, ରାମାନୁଜନ୍ ମଧ୍ୟ ଅଭେଦ ସମ୍ପର୍କୀୟ ତାଙ୍କର ପ୍ରମାଣ ହାର୍ଡିଙ୍କ ପାଖକୁ ପଠାଇଥିଲେ। 1918 ମସିହା ଅକ୍ଟୋବର 28 ତାରିଖରେ ସେହି ଦୁଇ ପ୍ରମାଣ ଏବଂ ସର୍ବସମତା ସମ୍ପର୍କରେ

ରାମାନୁଜନ୍‌ଙ୍କର ଗୁରୁତ୍ୱପୂର୍ଣ୍ଣ ନିବନ୍ଧ ଫିଲୋସୋଫିକାଲ୍ ସୋସାଇଟିର ବାର୍ଷିକ ସାଧାରଣ ସଭାରେ ପଠିତ ହୋଇଥିଲା।

ଏହାର ଦୁଇ ସପ୍ତାହ ପରେ ଯୁଦ୍ଧ ଶେଷ ହେଲା। ରୁଷିଆରେ ଘଟିଥିବା ବୋଲ୍‌ସେଭିକ୍ ବିପ୍ଳବର ପ୍ରଭାବରେ ଜର୍ମାନ ସୈନ୍ୟଙ୍କ ସାମନା କରୁଥିବା ରୁଷୀୟ ବାହିନୀ ଭାଙ୍ଗିଗଲା। ଜର୍ମାନି ସେହି ସୀମାନ୍ତରୁ ତା'ର ସୈନିକମାନଙ୍କୁ ଫେରାଇଆଣି ଫ୍ରାନ୍ସ୍ ମୁହାଁ କଲା। ସେମାନେ ପ୍ୟାରିସ୍ ପାଖରେ ପହଞ୍ଚି ଯାଇଥିଲେ, କିନ୍ତୁ ତାଙ୍କୁ ବିରୋଧ କରିବାକୁ ସେଠାରେ ନୂଆ ଆସିଥିବା 10 ଲକ୍ଷ ଆମେରିକୀୟ ସୈନିକ ଅପେକ୍ଷା କରିଥିଲେ। ବର୍ଷ ବର୍ଷ ଧରି ଯୁଦ୍ଧରେ ଲାଗିଥିବା ଜର୍ମାନ ସେନାବାହିନୀ ପଛେଇବାକୁ ବାଧ୍ୟ ହେଲା ଏବଂ ଜର୍ମାନି ପାଖରେ ଶାନ୍ତି ପ୍ରସ୍ତାବ ଦେବା ଛଡ଼ା ଅନ୍ୟ ବାଟ ନ ଥିଲା। 1918 ମସିହା ନଭେମ୍ବର 11 ଦିନ ଯୁଦ୍ଧବିରତି ଘୋଷିତ ହେଲା। ଲୋକମାନେ ପ୍ରବଳ ଉତ୍ସାହରେ ଏହାକୁ ସ୍ୱାଗତ ଜଣାଇଲେ।

ନଭେମ୍ବର 26 ତାରିଖରେ ହାର୍ଡି ମାନ୍ଦ୍ରାଜରେ ଥିବା ଫ୍ରାନ୍ସିସ୍ ଡିଉଜ୍‌ବରିଙ୍କ ପାଖକୁ ଚିଠିରେ ଲେଖିଲେ, "ସାମୟିକ ଭାବରେ ରାମାନୁଜନ୍‌ଙ୍କର ଭାରତକୁ ଫେରିବାର ଓ ଭବିଷ୍ୟତ ବିଷୟରେ ଚିନ୍ତା କରିବା ପାଇଁ ଏବେ ସମୟ ଆସିଛି।"

## ୪

# କିଛି ମାତ୍ରାରେ ଅସୁସ୍ଥ

(1918 ପରଠାରୁ)

### 1. ସାରା ଦୁନିଆ ଯୁବକ ମନେ ହେଉଛି

ରାମାନୁଜନ୍‌ଙ୍କ ସ୍ୱାସ୍ଥ୍ୟରେ ବେଶ୍ ଉନ୍ନତି ଆସିଥିଲା ଏବଂ ଡିଉଜ୍‌ବରିଙ୍କ ପାଖକୁ ହାର୍ଡି ଲେଖିଥିଲେ ଯେ ସେ ଏବେ ସମ୍ପୂର୍ଣ୍ଣ ଆରୋଗ୍ୟତାର ପଥରେ। ତାଙ୍କର ଓଜନ ପନ୍ଦର ପାଉଣ୍ଡ ବଢ଼ିଥିଲା ଓ ତାପମାତ୍ରା ସ୍ଥିର ରହୁଥିଲା। ଡାକ୍ତରମାନେ ଏବେ ବିଶ୍ୱାସ କରୁଥିଲେ ଯେ ତାଙ୍କ ରୋଗର କାରଣ ରକ୍ତରେ ବିଷାକ୍ତ ପ୍ରଭାବ ଥିଲା ଯାହା ଏବେ ଅପସାରିତ ହୋଇଛି।

ରାମାନୁଜନ୍‌ଙ୍କର ଭାରତକୁ ଫେରିବା ପାଇଁ ଏହା କ'ଣ ଉପଯୁକ୍ତ ସମୟ ନୁହେଁ? ଫେରିବାର ବିପକ୍ଷରେ ଥିବା କାରଣଗୁଡ଼ିକ ଏବେ ଦୂର ହୋଇଯାଇଛି। ସମୁଦ୍ରରେ ଯିବା ଏବେ ନିରାପଦ। ଇଂଲଣ୍ଡରେ କରିବାକୁ ଥିବା କାମଗୁଡ଼ିକ ଏବେ ହୋଇଯାଇଛି। ସେଠାରେ ରହିବା ପାଇଁ ଟ୍ରିନିଟି ଫେଲୋସିପ୍ ତାଙ୍କୁ ବାଧ କରୁନାହିଁ। ରୟାଲ ସୋସାଇଟିର ଫେଲୋସିପ୍ ତାଙ୍କୁ ମିଳିସାରିଛି। ବରଂ ଭାରତ ଫେରିଗଲେ ସେ ହୁଏତ ଆହୁରି ଶୀଘ୍ର ନୀରୋଗ ହୋଇପାରିବେ।

ଅବଶ୍ୟ ଆହୁରି କିଛି ଘଟୁଥିଲା ଯେଉଁ ବିଷୟରେ କେହି ନିଶ୍ଚିତ ନ ଥିଲେ। ଡିଉଜ୍‌ବରିଙ୍କ ପାଖକୁ ହାର୍ଡି ସେ ବିଷୟରେ ଚିଠିରେ ଲେଖିଥିଲେ, "ଫେରିବା ବିଷୟରେ ତାଙ୍କର ସାଙ୍ଗମାନେ ତାଙ୍କୁ ଲେଖିଛନ୍ତି, କିନ୍ତୁ ତାହା ବୋଧହୁଏ ସାବଧାନତାର ସହିତ କରାଯାଇନାହିଁ। ଯେଉଁ କାରଣରୁ ହେଲେ ବି ଏବେ ସେ ଭାରତ ଯିବା କଥାର ବିରୋଧ କରୁଛନ୍ତି।" ହାର୍ଡିଙ୍କ କହିବା କଥା ଥିଲା ଯେ କିଏ ବୋଧହୁଏ କିଛି ଅଖାଡୁଆ କଥା କହିଛି ଯାହା ରାମାନୁଜନ୍‌ଙ୍କୁ ଭଲ ଲାଗିନାହିଁ। ତେଣୁ ସେ ଯିବା ପାଇଁ ଆଗ୍ରହ ଦେଖାଉନାହାନ୍ତି। କିଛି ଅନ୍ୟ ବାଟ ବାହାର କରିବା ପାଇଁ ସେ ଡିଉଜ୍‌ବରିଙ୍କୁ ଲେଖିଥିଲେ, "ଆନୁଷ୍ଠାନିକ ସ୍ତରରେ କିଛି ପ୍ରସ୍ତାବ ଆସିଲେ ଏବଂ ସେକଥା ତାଙ୍କ ପାଖକୁ ଓ ମୋ ପାଖକୁ ଚିଠି ମାଧ୍ୟମରେ ପଠାଗଲେ ଭଲହେବ।" ରାମାନୁଜନ୍‌ଙ୍କୁ ବିଶ୍ୱବିଦ୍ୟାଳୟରେ କୌଣସି ଚାକିରି ଦିଆଯାଇପାରେ ଯେଉଁଠି ସେ ଗବେଷଣା କରିପାରିବେ ଏବଂ ବେଳେ ବେଳେ ଇଂଲଣ୍ଡ ଆସିପାରିବେ। ଏହା ହୋଇପାରିଲେ ଭାରତ ଫେରିବା ପାଇଁ ହାର୍ଡି ତାଙ୍କୁ ପ୍ରବର୍ତ୍ତାଇବେ ଏବଂ ହାର୍ଡିଙ୍କ ବିଶ୍ୱାସ ଅଛି ଯେ ରାମାନୁଜନ୍ ସେଥିରେ ରାଜି ହେବେ।

ହାର୍ଡିଙ୍କ ଚିଠିରେ ସୂଚନା ରହିଥିଲା ଯେ ରାମାନୁଜନ୍ ତାଙ୍କ ମାନସିକ ସମସ୍ୟାରୁ ପୂରା ମୁକ୍ତ ହୋଇନାହାନ୍ତି। ଯେଉଁ ସମସ୍ୟା ତାଙ୍କୁ ଚଳନ୍ତା ରେଳଗାଡ଼ି ଆଗରେ ଡେଇଁପଡ଼ିବାକୁ ବାଟ କଢ଼ାଇଥିଲା। ଏହାର ସମାଧାନର ବାଟ ବିଷୟରେ ସେ ଲେଖିଥିଲେ, "ଭାରତରେ ଆଗରୁ କେହି ପାଇ ନ ଥିବା ଭଳି କୌଣସି ସମ୍ମାନଜନକ ବିଜ୍ଞାନ ସମ୍ପର୍କିତ ପଦ ପାଇଲେ ସେ ଭାରତ ଫେରିଆସିବେ ଏବଂ ମୁଁ ନିଶ୍ଚିତ ଯେ ଭାରତ ତାଙ୍କ ଭଳି ରତ୍ନ ପାଇକରି ଗୌରବାନ୍ୱିତ ହେବ। ସଫଳତା ତାଙ୍କର ପ୍ରାକୃତିକ ସରଳତା ଓ ସଲଜ୍ଜତା ଉପରେ କିଛି ବି ପ୍ରଭାବ ପକାଇନାହିଁ। ବାସ୍ତବରେ ସେ ଯେ ଜଣେ ଅତି ସଫଳ ବ୍ୟକ୍ତି ତାହା ତାଙ୍କୁ ହୃଦୟଙ୍ଗମ କରାଇବାକୁ ପଡ଼ିବ।"

1918 ମସିହା ନଭେମ୍ବର ମାସରେ ରାମାନୁଜନ୍ ନିଜର ସଫଳତା ବିଷୟରେ ନିଶ୍ଚିତ ନ ଥିଲେ? ସେତେବେଳକୁ ତାଙ୍କର ପ୍ରାୟ କୋଡ଼ିଏଟି ଗୁରୁତ୍ୱପୂର୍ଣ୍ଣ ନିବନ୍ଧ ଗଲା ଚାରିବର୍ଷ ଭିତରେ ପ୍ରକାଶିତ ହୋଇ ସାରିଲାଣି। ରୟାଲ ସୋସାଇଟିର ଓ ଟ୍ରିନିଟିର ଫେଲୋ ସେ ହୋଇସାରିଲେଣି। ତଥାପି ସେ ନିଶ୍ଚିତ ନୁହନ୍ତି? ଉପରେ ସେ ସଲଜ୍ଜ ଥିଲେ ମଧ୍ୟ ମନ ଭିତରେ ସେ ଆଉ କିଛି ବେଶି ଚାହୁଁଥିଲେ। ଯୁଦ୍ଧ ସମୟରେ ରାମାନୁଜନ୍ ହାର୍ଡିଙ୍କ ଉପରେ ପୂରା ନିର୍ଭରଶୀଳ ହୋଇପଡ଼ିଥିଲେ। ସର୍ବସାଧାରଣ କ୍ଷେତ୍ରରେ ହାର୍ଡି ତାଙ୍କର ଦୃଢ଼ ସମର୍ଥକ ଓ ପ୍ରଶଂସକ ଭାବରେ ଜଣାଥିଲେ। ବ୍ୟକ୍ତିଗତ ସ୍ତରରେ କ'ଣ ସେ ସେଭଳି ଉତ୍ସାହ ଦେଖାଉ ନ ଥିଲେ? ରାମାନୁଜନ୍ଙ୍କ ପ୍ରତି କ'ଣ ସେ ଶୀତଳ ଆଚରଣ ଦେଖାଉଥିଲେ? ବ୍ୟକ୍ତିଗତ ଜୀବନରେ ଦୂରତା ରଖୁଥିଲେ?

ପ୍ରକୃତ ପରିସ୍ଥିତି ଯାହା ହୋଇଥିଲେ ବି ରାମାନୁଜନ୍ଙ୍କର ଭାରତ ଫେରିବା ପାଇଁ ଏବେ ବ୍ୟବସ୍ଥା କରାଯାଉଥିଲା। ତେବେ ସେ ପ୍ରକୃତରେ କାହିଁକି ଫେରୁଥିଲେ? ତାଙ୍କର ସ୍ୱାସ୍ଥ୍ୟ ଏବେ ସୁଧୁରି ଯାଇଥିବାରୁ ନା ଅବସ୍ଥା ବେଶି ଖରାପ ହେଉଥିବାରୁ? ଭାରତର ଜଳବାୟୁରେ ଆରୋଗ୍ୟତାର ସମ୍ଭାବନା ଅଧିକ ଥିବାରୁ? ଡିଉକ୍‌ବରିଙ୍କ ପାଖକୁ ହାର୍ଡିଙ୍କ ଚିଠିର ପ୍ରାୟ ଏକ ମାସ ପରେ ପି. ଭି. ଶେଷୁ ଆୟାର ଲେଖିଥିଲେ, "1918 ମସିହାର ବଡ଼ଦିନ ବେଳକୁ ଶ୍ରୀ ରାମାନୁଜନ୍ଙ୍କ ରୋଗ ସାଙ୍ଘାତିକ ହୋଇଯାଇଥିଲା। ଇଂଲଣ୍ଡରେ ତାଙ୍କ ଡାକ୍ତରମାନେ ଏଥିରେ ଅତି ଆତଙ୍କିତ ହୋଇପଡ଼ିଲେ ଏବଂ ସେ ଭାରତ ଫେରିଗଲେ ଲାଭ ପାଇପାରନ୍ତି ଭାବି ତାହା କରିବାକୁ ତାଙ୍କୁ ଉପଦେଶ ଦେଲେ।"

ରାମାନୁଜନ୍ଙ୍କର ସ୍ୱାସ୍ଥ୍ୟରେ ଉନ୍ନତି ବା ଅବନତି ଅତି ଅଳ୍ପ ମାତ୍ରାରେ ଦେଖାଯାଉଥିଲା। ଫଳରେ ବିଭିନ୍ନ ଲୋକ ତାକୁ ବିଭିନ୍ନ ଭାବରେ ଦେଖୁଥିଲେ। ତେଣୁ ତାଙ୍କର ଭାରତ ଫେରିବାର ଚିନ୍ତା ସ୍ୱାସ୍ଥ୍ୟ ଯୋଗୁ ଯେତେ ନ ଥିଲା ଯୁଦ୍ଧ ସରିବା କାରଣରୁ ବେଶି ଆସୁଥିଲା।

ଯୁଦ୍ଧ ସରିବା ପରେ ଧୀରେ ଧୀରେ ସାଧାରଣ ଅବସ୍ଥା ଫେରିବାକୁ ଲାଗିଲା। ରାସ୍ତାରେ ଏବେ ଆଲୁଅ ଜଳିଲା, ଖାଦ୍ୟ ପାଇଁ ପଡ଼ି ବ୍ୟବସ୍ଥା କୋହଳ ହେବାକୁ ଲାଗିଲା। ଯୁଦ୍ଧରେ କେମ୍ବ୍ରିଜର 2162 ଜଣ ଲୋକ ପ୍ରାଣ ହରାଇଥିଲେ ଏବଂ ପ୍ରାୟ 3000 ଆହତ ହୋଇଥିଲେ। ଯୁଦ୍ଧକୁ ଯାଇଥିବା କେମ୍ବ୍ରିଜ ଲୋକଙ୍କ ଭିତରୁ ପ୍ରାୟ ଏକଚତୁର୍ଥାଂଶ ପ୍ରାଣ ହରାଇଥିଲେ ବା ଆହତ ହୋଇଥିଲେ। ତଥାପି ଯୁଦ୍ଧ ସରିବାର କେତେ ମାସ ଭିତରେ କେମ୍ବ୍ରିଜ ତା'ର ପୂର୍ବ ଅବସ୍ଥାକୁ ଫେରିବାକୁ ଆରମ୍ଭ କଲା।

ରାମାନୁଜନ୍‌ଙ୍କୁ ଇଂଲଣ୍ଡ ଆଣିଥିବା ଜାହାଜ ନେଭାସା ଯୁଦ୍ଧ କାମରେ ଲାଗିଥିଲା, ଏବେ ତାହା ପୁଣି ତା'ର ପୁରୁଣା ଯାତ୍ରୀବାହୀ ରୂପକୁ ଫେରି ଆସିଲା। ହାର୍ଡିଙ୍କର ସାଙ୍ଗ ଇତିହାସ ବିଶାରଦ ଜି. ଏମ୍. ଟ୍ରେଭେଲ୍ୟାନ୍ ଇଂଲଣ୍ଡ ଫେରିଆସିଲେ। ତାଙ୍କର ଲକ୍ଷ୍ୟ ବିଷୟରେ ସେ କହିଥିଲେ, "... ପୁଣି ଇତିହାସ ବହି ଲେଖିବାରେ ଲାଗିବା ପାଇଁ। ଜୀବନରେ ମୋର ଅନ୍ୟ କୌଣସି ଆକାଂକ୍ଷା ନାହିଁ। ଅନ୍ତତଃ ଗୋଟିଏ ପିଢ଼ି ପାଇଁ, ହୁଏତ ସବୁଦିନ ପାଇଁ, ଆଉ ଯୁଦ୍ଧର ଭୟ ରହିବନାହିଁ, ଏହି ବିଶ୍ୱାସରେ ସମସ୍ତେ ଉତ୍ସାହିତ ଓ ଉଲ୍ଲସିତ ହୋଇ ଉଠୁଥିଲେ। ... ସାରା ଦୁନିଆ ପୁଣି ଯୁବକ ପାଲଟିଥିଲା ଭଳି ମନେ ହେଉଥିଲା। ..."

ଯୁଦ୍ଧବିରତି ବେଳକୁ ରାମାନୁଜନ୍ ଲଣ୍ଡନରୁ କିଛି ମାଇଲ ଦୂରରେ ଟେମ୍‌ସ୍ ନଦୀ କୂଳରେ ଥିବା ଆଉ ଗୋଟିଏ ଚିକିତ୍ସାଳୟରେ ରହୁଥିଲେ। କଲିନେଟ୍ ହାଉସ୍ ନାଁରେ ଜଣା ଏହି ଚିକିତ୍ସାଳୟଟି ଡାକ୍ତର ସାମୁଏଲ୍ ମାଣ୍ଡେଭିଲ୍ ଫିଲିପ୍‌ସ୍‌ଙ୍କ ତତ୍ତ୍ୱାବଧାନରେ ଚାଲୁଥିଲା। ଲଣ୍ଡନର ପାଖରେ ଥିବାରୁ ମାଟ୍‌ଲକ୍ ତୁଳନାରେ ଏଠାକୁ ଯିବା ସହଜ ଥିଲା। ଯୁଦ୍ଧ ସରିବାର ଅଳ୍ପ କେତେ ସପ୍ତାହ ପରେ କ୍ରାନ୍‌ଲେଠାରେ ହାର୍ଡିଙ୍କର ମାତୃବିୟୋଗ ଘଟିଥିଲା। ହାର୍ଡି ଏବେ ରାମାନୁଜନ୍‌ଙ୍କ ପାଖକୁ ଅନେକ ଥର ଆସୁଥିଲେ। କେମ୍ବ୍ରିଜରୁ ଲଣ୍ଡନ ରେଳଗାଡ଼ିରେ ଦୁଇ ଘଣ୍ଟାର ବାଟ ଥିଲା ଏବଂ ସେଠାରୁ ଟାକ୍ସିରେ ଯାଇ ଅଳ୍ପ ସମୟରେ କଲିନେଟ୍ ହାଉସ୍‌ରେ ପହଞ୍ଚି ହେଉଥିଲା।

ହାର୍ଡି ଥରେ ରାମାନୁଜନ୍‌ଙ୍କ ପାଖରେ ପହଞ୍ଚି କହିଲେ ଯେ ତାଙ୍କ ଟାକ୍ସିର ନମ୍ବର ଥିଲା 1729, ଯେଉଁ ସଂଖ୍ୟାର କିଛି ବିଶେଷତ୍ୱ ଥିଲା ଭଳି ତାଙ୍କୁ ଲାଗୁ ନ ଥିଲା। ଖଟରେ ଗଡ଼ୁଥିବା ରାମାନୁଜନ୍ କିନ୍ତୁ ସାଙ୍ଗେ ସାଙ୍ଗେ କହିଲେ, "ନା, ଏହା ଅତି ଆଗ୍ରହଜନକ ସଂଖ୍ୟା। ଏହା ହେଉଛି ସବୁଠାରୁ ଛୋଟ ସଂଖ୍ୟା ଯାହା ଦୁଇଟି ସଂଖ୍ୟାର ଘନଫଳ ଭାବରେ ଦୁଇଟି ବାଟରେ ପ୍ରକାଶ କରାଯାଇ ପାରିବ।"

ଏକ ଯୋଡ଼ା ସଂଖ୍ୟାର ଘନଫଳର ମିଶାଣରୁ ମିଳୁଥିବା ସଂଖ୍ୟା ପାଇବା ବିଶେଷ କଷ୍ଟର କଥା ନୁହେଁ। କିନ୍ତୁ ଏପରି ଦୁଇ ଯୋଡ଼ା ସଂଖ୍ୟା ଯାହାର ଘନଫଳର ମିଶାଣଫଳ ସମାନ ହେଉଥିବ ପାଇବା ବେଶ୍ କଷ୍ଟ। ହିସାବ କରି ଚାଲିଲେ 1729 ହେବ ପ୍ରଥମ ସଂଖ୍ୟା ଯାହା ଏହି ଗୁଣ ଦେଖାଇବ। $12^3+1^3=1729$ ଏବଂ $10^3+9^3=1729$।

ରାମାନୁଜନ୍ ସେକଥା ଜାଣିଲେ କିପରି? ତାହା ଅବଶ୍ୟ ତାଙ୍କର ଅନ୍ତର୍ଦୃଷ୍ଟିରେ ହଠାତ୍ ଭାସିଉଠି ନ ଥିଲା। ଅନେକ ବର୍ଷ ତଳେ ଏହି ଆଗ୍ରହଜନକ ଗାଣିତିକ ତଥ୍ୟଟି ତାଙ୍କ ହିସାବରୁ ବାହାରି ଥିଲା ଏବଂ ସେ ତାକୁ ତାଙ୍କ ନୋଟ ଖାତାରେ ଲେଖି ରଖିଥିଲେ। ସଂଖ୍ୟାମାନଙ୍କ ସହିତ ସେ ଏତେ ଅନ୍ତରଙ୍ଗ ଥିଲେ ଯେ ସେହି ପୁରୁଣା କଥା ସାଙ୍ଗେ ସାଙ୍ଗେ ତାଙ୍କ ମନକୁ ଆସିଲା।

କଲିନେଟ୍ ହାଉସ୍ ଚିକିତ୍ସାଳୟରେ ଥିଲାବେଳେ ରାମାନୁଜନ୍ କିଛି ଭଲ ଖବର ପାଇଲେ। ଯୁଦ୍ଧ ସମୟରେ ମାନ୍ଦ୍ରାଜର କର୍ତ୍ତୃପକ୍ଷ ହାର୍ଡିଙ୍କ ଜରିଆରେ ରାମାନୁଜନ୍‌ଙ୍କ ସହିତ ଯୋଗାଯୋଗ ରଖୁଥିଲେ। ପୋର୍ଟ ଟ୍ରଷ୍ଟରେ ତାଙ୍କ ଛୁଟିର ଓ ବିଶ୍ୱବିଦ୍ୟାଳୟ ଫେଲୋସିପ୍‌ର ମିଆଦ ବଢ଼ାଇବା ଭଳି କାମ ଏହି ବାଟରେ କରାଯାଉଥିଲା। 1917 ମସିହାରେ ରାମାନୁଜନ୍‌ଙ୍କ ମା' ମାନ୍ଦ୍ରାଜ ଆସିଥିଲେ

ଏବଂ ଜାଣିବାକୁ ପାଇଲେ ଯେ ତାଙ୍କ ପୁଅ ଏବେ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ପଦବୀରେ ରହିବେ। ତାଙ୍କର ଦରମା ହେବ ମାସକୁ 400 ଟଙ୍କା, ଭାରତ ଛାଡ଼ିବା ଆଗରୁ ପାଉଥିବା ଗବେଷଣା ବୃତ୍ତିର 6 ଗୁଣ। ଏଫ୍.ଆର୍.ଏସ୍. ହେଲା ପରେ ରାମାନୁଜନ୍ଙ୍କ ପାଇଁ ଯାହା ସମ୍ଭବ କରିବା ପାଇଁ ମାନ୍ଦ୍ରାଜରେ ସମସ୍ତେ ଲାଗିପଡ଼ିଥିଲେ। 1918 ମସିହାର ଶେଷରେ ବା ତା'ପର ବର୍ଷ ଆରମ୍ଭରେ ରାମାନୁଜନ୍ ଜାଣିବାକୁ ପାଇଲେ ଯେ ବିଶ୍ୱବିଦ୍ୟାଳୟ ତାଙ୍କୁ 250 ପାଉଣ୍ଡ ମୂଲ୍ୟର ଗୋଟିଏ ଫେଲୋସିପ୍ ଦେବାକୁ ଯାଉଛି। ଟ୍ରିନିଟି ମଧ୍ୟ ତାଙ୍କୁ ସେହି ପରିମାଣ ଦେଉଥିଲା ଏବଂ ଉଭୟ ଫେଲୋସିପ୍ ତାଙ୍କୁ ଏକା ସାଙ୍ଗରେ ମିଳିବାର ବ୍ୟବସ୍ଥା ଥିଲା। ଛ ବର୍ଷ ମିଆଦର ବିଶ୍ୱବିଦ୍ୟାଳୟ ଫେଲୋସିପ୍‌ରେ ବେଳେ ବେଳେ ତାଙ୍କର ଇଂଲଣ୍ଡ ଆସିବାର ସୁବିଧା ରହିଥିଲା।

ଅତୀତରେ ଛାତ୍ରବୃତ୍ତି ହରାଇଥିବାର ଦୁଃଖ ଏବଂ ମାନ୍ଦ୍ରାଜରେ ରାମଚନ୍ଦ୍ର ରାଓଙ୍କ ସ୍ୱଳ୍ପ ଆର୍ଥିକ ସାହାଯ୍ୟରେ ଚଳିବାର କଷ୍ଟ ତାଙ୍କ ମନରୁ ଯାଇ ନ ଥିଲା। ତାଛଡ଼ା ଗତ ଦେଢ଼ବର୍ଷରେ ଗଣିତ କ୍ଷେତ୍ରରେ ସେ ବିଶେଷ କିଛି କରିପାରି ନ ଥିଲେ ଏବଂ ଏହା ତାଙ୍କୁ ଲଜ୍ଜିତ କରୁଥିଲା। ଏହିସବୁ କଥା ମନରେ ରଖି ଶେଷରେ 1919 ମସିହା ଜାନୁଆରି 11 ଦିନ ଡିଉଜ୍‌ବରିଙ୍କ ପାଖକୁ ଚିଠି ଲେଖିଲେ:

ମହାଶୟ,

ନିବେଦନର କାରଣ ଏହିକି ଯେ ଆପଣଙ୍କର 9 ଡିସେମ୍ବର 1918 ତାରିଖର ପତ୍ରର ପ୍ରାପ୍ତିସ୍ୱୀକାର ମୁଁ କରୁଛି ଏବଂ କୃତଜ୍ଞତା ସହକାରେ ବିଶ୍ୱବିଦ୍ୟାଳୟର ଉଦାର ସହାୟତାର ପ୍ରସ୍ତାବ ମୁଁ ଗ୍ରହଣ କରୁଛି।

ଯାତ୍ରାର ବ୍ୟବସ୍ଥା ହୋଇଗଲା ମାତ୍ରେ ଭାରତକୁ ଫେରିଆସିବି। ମୁଁ ଅନୁଭବ କରୁଛି ଯେ ଫେରିବା ପରେ ମତେ ମିଳିବାକୁ ଥିବା ଟଙ୍କା ମୋର ଆବଶ୍ୟକତାଠାରୁ ବେଶ୍ ଅଧିକ ହେବ। ମୁଁ ଆଶାକରୁଛି ଯେ ଇଂଲଣ୍ଡରେ ମୋର ବିଭିନ୍ନ ଖର୍ଚ୍ଚ ଯିବା ପରେ ମା'ବାପାଙ୍କୁ ବର୍ଷକୁ ପଚାଶ ପାଉଣ୍ଡ ଦିଆଯିବ ଏବଂ ମୋର ନିଜର ଖର୍ଚ୍ଚ ପାଇଁ ଦରକାର ଟଙ୍କା ରଖି ବଳକା ଟଙ୍କା କିଛି ଶିକ୍ଷା ସମ୍ପର୍କିତ କାମରେ ଲଗାଯିବ। ଗରିବ ଓ ମାତୃପିତୃହୀନ ପିଲାଙ୍କର ସ୍କୁଲ ଖର୍ଚ୍ଚ ପାଇଁ ଏବଂ ସ୍କୁଲମାନଙ୍କୁ ବହି ଯୋଗାଇବା କାମରେ ଏହା ଲଗାଯାଇପାରିବ। ମୁଁ ଫେରିବା ପରେ ଏହି ବିଷୟରେ ଆବଶ୍ୟକୀୟ ବ୍ୟବସ୍ଥା କରାଯାଇପାରିବ ବୋଲି ମୁଁ ନିଶ୍ଚିତ।

ମୁଁ ଦୁଃଖିତ ଯେ ଗଲା ଦୁଇ ବର୍ଷରେ ମୋର ଅସୁସ୍ଥତା ଯୋଗୁ ଆଗଭଳି ଗଣିତ କାମ କରିପାରିନାହିଁ। ଆଶା କରୁଛି ଯେ ଅଳ୍ପଦିନ ଭିତରେ ମୁଁ ଅଧିକ କରିପାରିବି ଏବଂ ମୋତେ ମିଳିଥିବା ସହାୟତା ପାଇଁ ଯୋଗ୍ୟ ହେବା ଦିଗରେ ମୋର ସାଧ୍ୟମତେ ଚେଷ୍ଟା କରିବି।

ବିଦାୟ ନେବାର ଅନୁମତି ପ୍ରାର୍ଥନା ସହ, ମହାଶୟ,

ଆପଣଙ୍କର ଆଜ୍ଞାବହ ସେବକ,

ଏସ୍. ରାମାନୁଜନ୍

ପ୍ରାୟ ଏକ ମାସ ପରେ, ଫେବୃଆରି 24 ଦିନ, ବେଶ୍ ସୁସ୍ଥ ଅନୁଭବ କରୁଥିବା ରାମାନୁଜନ୍ ତାଙ୍କର ପାସ୍‌ପୋର୍ଟ ଆଣିବା ବ୍ୟବସ୍ଥାରେ ଲାଗିଲେ। ଦରଖାସ୍ତରେ ସେ ଦେଇଥିବା ତଥ୍ୟ ଥିଲା - "ବୟସ: 30, ପେଷା: ଗବେଷଣା ଛାତ୍ର"। ପାସ୍‌ପୋର୍ଟ ପାଇଁ ଫଟୋ ଉଠାଇଲା ବେଳେ ଘଞ୍ଚ କଳା ଓ

ସଳଖ ବାଳଭରା ତାଙ୍କ ମୁଣ୍ଡ ଟିକିଏ କଡ଼କୁ ଢଳିଥିଲା ଓ ଉଜ୍ଜ୍ୱଳ ଆଖି ଦୁଇଟି କ୍ୟାମେରା ଆଡ଼କୁ ଚାହିଁଥିଲା। ଫଟୋରେ ସେ ଜଣେ ଚଳଚିତ୍ର ତାରକା ଭଳି ସୁନ୍ଦର ଦିଶୁଥିଲେ, କିନ୍ତୁ ତାହା ତାଙ୍କର ଭାରତରେ ସାଙ୍ଗମାନେ ଜାଣିଥିବା ବା 1914 ମସିହାରେ ହାର୍ଡି ଜାଣିଥିବା ରୂପ ନ ଥିଲା। ତାହା ଥିଲା ଜଣେ ରୁଗ୍ଣ ଓ ବେଶ୍ ଝଡ଼ିଯାଇଥିବା ଲୋକର ରୂପ। ପୂରା ବୋତାମ ବନ୍ଦ ହୋଇଥିବା ଜାମା ତାଙ୍କର ବେକ ପାଖରେ ହୁଗୁଳା ଜଣାପଡୁଥିଲା, ଦେହର ମୋଟା ଚର୍ବି ତାଙ୍କ କୋଟ୍ ବୋତାମକୁ ଭିଡୁ ନ ଥିଲା। ପୂରା ଦେହ ପାଇଁ କୋଟ୍‌ଟି ବେଶ୍ ବଡ଼ ମନେ ହେଉଥିଲା ଏବଂ ବେକ ଓ କାନ୍ଧରେ ହୁଗୁଳା ହୋଇ ଝୁଲୁଥିଲା।

ଏହାର ପ୍ରାୟ ଦୁଇ ସପ୍ତାହ ପରେ, 1919 ମସିହା ମାର୍ଚ୍ଚ 13 ଦିନ, ରାମାନୁଜନ୍‌ଙ୍କର ଦୁଇଟି ଛୋଟ ଟୀକା ପ୍ରୋସିଡିଙ୍ଗ୍‌ସ୍ ଅଫ୍ ଲଣ୍ଡନ ମାଥେମାଟିକାଲ ସୋସାଇଟିରେ ପ୍ରକାଶିତ ହୋଇଥିଲା। ସେଥିରେ ସେ ବିଭାଜନ ଫଳନର କିଛି ନୂଆ ସର୍ବସମତା ସମ୍ପର୍କିତ ଗୁଣଧର୍ମ ବିଷୟରେ ଲେଖିଥିଲେ ଏବଂ ପ୍ରଥମ ଓ ଦ୍ୱିତୀୟ ରଜର୍ସ-ରାମାନୁଜନ୍ ଅଭେଦ ଭିତରେ ନୂଆ ସମ୍ପର୍କ ଦେଖାଇଥିଲେ। ସେହିଦିନ ଭାରତ ଯିବା ପାଇଁ ସେ ପାସିଫିକ୍ ଆଣ୍ଡ ଓରିଏଣ୍ଟ ଲାଇନ୍‌ସ୍‌ର ନାଗୋୟା ଜାହାଜ ଧରିଲେ। ନୋଟ୍ ଖାତାଗୁଡ଼ିକୁ ସେ ହାର୍ଡିଙ୍କ ପାଖରେ ଛାଡ଼ିଗଲେ ଏବଂ ସାଙ୍ଗରେ କିଛି ବହି, ସାନ ଭାଇ ପାଇଁ ଡବାଏ କିସ୍‌ମିସ୍ ଓ କାଗଜପତ୍ରରେ ଭରିଥିବା ଗୋଟିଏ ଚମଡ଼ା ଟ୍ରଙ୍କ ନେଇଥିଲେ। ନାଗୋୟା ନେଭାସାର ପ୍ରାୟ ସମସାମୟିକ ଥିଲା ଏବଂ ଏବେ ତାହା ବମ୍ବେ ଅଭିମୁଖେ ଯାତ୍ରା ଆରମ୍ଭ କଲା।

ୟୁରୋପକୁ ବିଧ୍ୱସ୍ତ କରିଥିବା ଯୁଦ୍ଧର ଛାପ ଭାରତ ଉପରେ ମଧ୍ୟ ପଡ଼ିଥିଲା ଏବଂ ମାନ୍ଦ୍ରାଜ ପ୍ରତ୍ୟକ୍ଷ ଯୁଦ୍ଧର ଅନୁଭୂତି ପାଇଥିଲା। ଯୁଦ୍ଧ ଘୋଷଣାର ପରେ ପରେ ଜର୍ମାନିର ଯୁଦ୍ଧ ଜାହାଜ ଏମ୍‌ଡେନ୍ ଭାରତ ମହାସାଗରରେ ଚାଲୁଥିବା ଜାହାଜମାନଙ୍କ ଉପରେ ଆକ୍ରମଣ ଚଳାଇଲା। ଦିନେ ରାତିରେ ମାନ୍ଦ୍ରାଜ ବନ୍ଦରର ଉଜ୍ଜ୍ୱଳ ଆଲୁଅ ତା'ର ଧ୍ୟାନ ଆକର୍ଷଣ କଲା। ସେଠାରେ ଥିବା ବର୍ମା ଅଏଲ୍ କମ୍ପାନିର ତେଲ ଟାଙ୍କିଗୁଡ଼ିକ ସହଜରେ ଜାଣି ହେଉଥିଲା ଏବଂ ତାହା ଉପରକୁ ଗୋଳାବର୍ଷଣ ଆରମ୍ଭ ହୋଇଗଲା। ଇଂରେଜ କର୍ତ୍ତୃପକ୍ଷ ଭୁଲ ଖବର ପାଇଥିଲେ ଯେ ଏମ୍‌ଡେନ୍‌କୁ ବୁଡ଼ାଇ ଦିଆଯାଇଛି, ତେଣୁ ସେମାନେ ନିଶ୍ଚିନ୍ତରେ ଏକ ଭୋଜିକୁ ଯାଇଥିଲେ। ଜାହାଜର ଗୋଳା ମାଡ଼ରେ ତେଲ ଟାଙ୍କିଗୁଡ଼ିକ ଜଳିବାରେ ଲାଗିଲା ଏବଂ ଭୟଙ୍କର ନିଆଁରେ ଆଲୋକିତ ଆକାଶ ସମୁଦ୍ର ଭିତରେ ନବେ ମାଇଲ ଦୂରରେ ମଧ୍ୟ ବାରି ହେଉଥିଲା। ଯୁଦ୍ଧ ଉପରେ ସେ ଆକ୍ରମଣର ପ୍ରଭାବ କିଛି ନ ଥିଲା, କିନ୍ତୁ ମାନ୍ଦ୍ରାଜବାସୀଙ୍କୁ ତାହା ଛାନିଆ କରିପକାଇଲା ଏବଂ ଅନେକ ଲୋକ ସହର ଛାଡ଼ି ଚାଲିଗଲେ।

ଯୁଦ୍ଧରେ ଯୋଗଦେବା ପାଇଁ ଅଧିକାଂଶ ଇଂରେଜ ସୈନିକ ଭାରତ ବାହାରକୁ ଚାଲିଯାଇଥିଲେ। ଦଶ ଲକ୍ଷରୁ ଅଧିକ ଭାରତୀୟ ଲୋକଙ୍କୁ ସେନା ବାହିନୀରେ ନିଆ ଯାଇଥିଲା। ମାନ୍ଦ୍ରାଜରୁ ଯୋଗଦେଇଥିବା ଅଧିକାଂଶ ସୈନିକ ଦଳିତ ଶ୍ରେଣୀର ଥିଲେ। ତାଙ୍କୁ କୁହାଯାଇଥିଲା ଯେ ସମ୍ରାଟ ଯୋଗାଇଥିବା ସୈନିକ ପୋଷାକ ପିନ୍ଧିଲା ପରେ ସେମାନେ ବ୍ରାହ୍ମଣ ବସତି ଭିତରେ ଯିବା ଆସିବା କରି ଛେପ ମଧ୍ୟ ପକାଇ ପାରିବେ।

ରାଜନୈତିକ କ୍ଷେତ୍ରରେ ସ୍ୱାଧୀନତା ଆନ୍ଦୋଳନ ତେଜିଉଠିଲା। 1915 ମସିହାରେ ଆନି ବେସାନ୍ତଙ୍କର ଗୃହ ଶାସନ ଦାବି ଓ ନିଉ ଇଣ୍ଡିଆ ଖବର କାଗଜ ଆରମ୍ଭ ହେଲା। ଦକ୍ଷିଣ ଆଫ୍ରିକାରେ ସତ୍ୟାଗ୍ରହର ସଫଳ ପ୍ରୟୋଗ ପରେ ସେହି ବର୍ଷ ଗାନ୍ଧିଜୀ ଭାରତ ଫେରିଲେ ଏବଂ ଏକ ଜନ ଆନ୍ଦୋଳନର ମୂଳଦୁଆ ପକାଇଲେ। ପାଞ୍ଚ ବର୍ଷ ପରେ ସେ ଭାରତୀୟ ଜାତୀୟ କଂଗ୍ରେସର ନେତୃତ୍ୱ ନେଲେ ଏବଂ ଆନ୍ଦୋଳନକୁ ପ୍ରଭାବଶାଳୀ କରିଲେ।

ରାମାନୁଜନ୍ ଇଂଲଣ୍ଡରେ ଥିବାବେଳେ ଭାରତରେ ଅନେକ ପରିବର୍ତ୍ତନ ଆସୁଥିଲା। ସାମାଜିକ କ୍ଷେତ୍ରରେ ଅତ୍ୟାଚାରୀ ଜାତିପ୍ରଥା ବିରୁଦ୍ଧରେ ସ୍ୱର ଉଠୁଥିଲା; ରାଜନୈତିକ କ୍ଷେତ୍ରରେ ଜନସାଧାରଣଙ୍କ ଭିତରେ ନୂଆ ସଚେତନତା ଓ ଜାତୀୟତାବୋଧ ଦେଖାଯାଉଥିଲା; ଭାରତୀୟ ଜୀବନଧାରା ପୁନଃଆବିଷ୍କୃତ ହେଉଥିଲା। ସୁପ୍ତ ଉପମହାଦେଶର ନିଦ ଭାଙ୍ଗୁଥିଲା ଏବଂ ତାହା ନିଜର ଶକ୍ତି ବିଷୟରେ ସଚେତନ ହେଉଥିଲା।

ଭାରତର ବୌଦ୍ଧିକ କ୍ଷେତ୍ରରେ ମଧ୍ୟ ଏଭଳି ପ୍ରଭାବ ଅନୁଭୂତ ହେଉଥିଲା। 1916 ମସିହା ଡିସେମ୍ବର ଶେଷ ବେଳକୁ ଇଣ୍ଡିଆନ୍ ମାଥେମାଟିକାଲ୍ ସୋସାଇଟିର ପ୍ରଥମ ଅଧିବେଶନ ମାନ୍ଦ୍ରାଜରେ ଅନୁଷ୍ଠିତ ହେଲା। ସମାଜର ଚତୁର୍ଥ ସଭାପତି ଆର୍. ରାମଚନ୍ଦ୍ର ରାଓ ଉଦ୍‌ଘାଟନ କରିବାକୁ ଆସିଥିବା ଲର୍ଡ ପେଣ୍ଟଲାଣ୍ଡଙ୍କୁ ପ୍ରେସିଡେନ୍‌ସି କଲେଜ ଭିତରକୁ ପାଛୋଟି ନେଲେ। ତାଙ୍କ ଭାଷଣରେ ହର୍ଷଧ୍ୱନି ଭିତରେ ଲର୍ଡ ପେଣ୍ଟଲାଣ୍ଡ କହିଥିଲେ, "ଜଣେ ଯୁବ ଭାରତୀୟ ଛାତ୍ର ଶ୍ରୀ ଏସ୍. ରାମାନୁଜନ୍ ଏବେ କେମ୍ବ୍ରିଜରେ କର୍ମରତ। ଦକ୍ଷିଣ ଭାରତରେ ଆମେ ସମସ୍ତେ ଅତି ଆଗ୍ରହ ଓ ଆଶାର ସହିତ ତାଙ୍କର କାମକୁ ଅନାଇ ରହିଛୁ। ଏହି ଅସାଧାରଣ ଛାତ୍ରଙ୍କୁ କିପରି ଆବିଷ୍କାର କରାଗଲା ସେ ବିଷୟରେ ଆପଣମାନେ ଜାଣନ୍ତି। ନିଜ ପ୍ରତିଭାର ବିକାଶ ପାଇଁ ଓ ସେ ପାଇଥିବା ସୁବିଧା ପାଇଁ କିପରି ନିଜକୁ ଯୋଗ୍ୟ ବିବେଚିତ କରାଉଛନ୍ତି ସେ କଥା ଶୁଣିଲେ ଆପଣମାନେ ନିଶ୍ଚୟ ଖୁସି ହେବେ।"

ଏବେ ସମସ୍ତେ ସେକଥା ଜାଣିଥିଲେ। ଇଂଲଣ୍ଡ ଯିବାର ଦୁଇ ମାସ ପରେ 1914 ମସିହା ମେ ମାସରେ ମାନ୍ଦ୍ରାଜର ଗୋଟିଏ ଖବର କାଗଜ ରାମାନୁଜନ୍‌ଙ୍କ ପ୍ରଶଂସାରେ ଲେଖିଥିଲା:

> ମାନ୍ଦ୍ରାଜର ଶ୍ରୀ ଏସ୍. ରାମାନୁଜନ୍, ଉଚ୍ଚତର ଗଣିତ କ୍ଷେତ୍ରରେ ଯାହାଙ୍କର କାମ କେମ୍ବ୍ରିଜରେ ବିସ୍ମୟ ସୃଷ୍ଟି କରିଛି, ଏବେ ଟ୍ରିନିଟିରେ ଅବସ୍ଥାପିତ ହୋଇଛନ୍ତି। କଲେଜର ଦୁଇଜଣ ଫେଲୋ - ଶ୍ରୀ ହାର୍ଡି ଓ ଶ୍ରୀ ଲିଟଲ୍‌ଉଡ୍ - ଙ୍କ ସହିତ ସେ ମୁଖ୍ୟତଃ କାମ କରିବେ। ସେ ଦୁହେଁ ରାମାନୁଜନ୍ ଆଗରୁ କରିଥିବା ବିଶାଳ ପରିମାଣର କାମକୁ ଅନୁଧ୍ୟାନ କରୁଛନ୍ତି ଏବଂ ତାହା ଭିତରେ ଆଶ୍ଚର୍ଯ୍ୟଜନକ ଆବିଷ୍କାରମାନ ପାଉଛନ୍ତି!

ରାମାନୁଜନ୍ ତାଙ୍କର ଡିଗ୍ରୀ ପାଇଲା ବେଳେ ମଧ୍ୟ ସେ ଖବର ଭାରତରେ ପ୍ରଚାରିତ ହୋଇଥିଲା। ଏଫ୍.ଆର୍.ଏସ୍. ପାଇଲା ବେଳେ ତାଙ୍କ ଅନୁପସ୍ଥିତିରେ ମଧ୍ୟ ପ୍ରେସିଡେନ୍‌ସି କଲେଜରେ ତାଙ୍କ ପାଇଁ ଏକ ସମ୍ବର୍ଦ୍ଧନା ସଭା ଆୟୋଜିତ ହୋଇଥିଲା। ପାଶ୍ୟାପ୍ପା କଲେଜ ବେଳର ଜଣେ ପୁରୁଣା ସାଙ୍ଗ କେ. ଚେଙ୍ଗଲ୍‌ଭନାରାୟନ୍ ସେଠାରେ କହୁଥିଲେ ଯେ ଯେବେ ବି ସେ ପୁରୁଣା ସାଙ୍ଗମାନଙ୍କୁ ଭେଟୁଥିଲେ, ସେମାନଙ୍କ ଭିତରେ ରାମାନୁଜନ୍‌ଙ୍କ ଖ୍ୟାତି ବିଷୟରେ ଆଲୋଚନା ହେଉଥିଲା।

ରାମାନୁଜନ୍ ବମ୍ବେରେ ପହଞ୍ଚିବାର ଦଶ ସପ୍ତାହ ପୂର୍ବରୁ ସେଠାରେ ଇଣ୍ଡିଆନ୍ ମାଥେମାଟିକାଲ୍

ସୋସାଇଟିର ଦ୍ୱିତୀୟ ସମ୍ମିଳନୀ ଅନୁଷ୍ଠିତ ହେଉଥିଲା। ପ୍ରତ୍ୟେକ ବକ୍ତା ସେଠାରେ ରାମାନୁଜନ୍‌ଙ୍କର ବିଚକ୍ଷଣତା, ତାଙ୍କର ସାଧାରଣ ସାମାଜିକ ପୃଷ୍ଠଭୂମି ଏବଂ ରୟାଲ ସୋସାଇଟିର ଫେଲୋ ଭାବରେ ସ୍ୱୀକୃତି ବିଷୟରେ କହୁଥିଲେ। କିନ୍ତୁ ସେ ଏକ ଖରାପ ସମୟରେ ଫେରୁଥିଲେ। ଭାରତରେ ସଂକ୍ରାମକ ସର୍ଦ୍ଦିଜରରେ ପ୍ରାୟ କୋଟିଏ ଲୋକ ସେବେ ପ୍ରାଣ ହରାଇଥିଲେ। ଗଣିତ ସମାଜର ସୀମିତ ସଦସ୍ୟ ସଂଖ୍ୟା ଭିତରେ ମଧ୍ୟ ପାଞ୍ଚ ଜଣଙ୍କର ମୃତ୍ୟୁ ଘଟି ସାରିଥିଲା। ମୃତକଙ୍କ ଭିତରେ ଥିଲେ ଇ. ଡବ୍ଲିଉ. ମିଡଲ୍‌ମାଷ୍ଟ, ପ୍ରେସିଡେନ୍‌ସି କଲେଜର ଗଣିତ ଅଧ୍ୟାପକ ଯିଏ ରାମାନୁଜନ୍‌ଙ୍କର ପ୍ରଥମ ସୁପାରିସକାରୀଙ୍କ ଭିତରୁ ଜଣେ ଥିଲେ, ଏବଂ ପାଶ୍ୟାପ୍ପା କଲେଜରେ ତାଙ୍କର ଗଣିତ ଅଧ୍ୟାପକ ଥିବା ବୟାଳିଶି ବର୍ଷୀୟ ସିଙ୍ଗାରାଭେଲୁ ମୁଦାଲିଅର୍।

ଗଣିତ ସମାଜର ମୁଖପତ୍ରର ପ୍ରଥମ ପୃଷ୍ଠାରେ ରାମାନୁଜନ୍ ଫେରୁଥିବାର ଖବର ପ୍ରକାଶ ପାଇଥିଲା। କିନ୍ତୁ ତାହା ଚେତାଇ ଦେଇଥିଲା ଯେ ସେ ଅତି ସୁସ୍ଥ ଭାବରେ ଫେରୁନାହାନ୍ତି।

## 2. କାବେରୀକୁ ପ୍ରତ୍ୟାବର୍ତ୍ତନ

1919 ମସିହା ମାର୍ଚ୍ଚ 17 ଦିନ ରାମାନୁଜନ୍ ବମ୍ବେଠାରେ ଜାହାଜରୁ ଓହ୍ଲାଇଲେ। ତାଙ୍କୁ ପାଛୋଟି ନେବା ପାଇଁ ସେଠାରେ ତାଙ୍କ ମା ଓ ଭାଇ ଲକ୍ଷ୍ମୀ ନରସିଂହନ୍ ଉପସ୍ଥିତ ଥିଲେ, କିନ୍ତୁ ଜାନକୀ ନ ଥିଲେ। ରାମାନୁଜନ୍ ପଚାରିଲେ, "ସେ କେଉଁଠି?" କୋମଳତାମ୍ମାଲ୍ ରୁକ୍ଷ ଭାବରେ କହିଲେ ଯେ ଜାନକୀ ବିଷୟରେ ବ୍ୟସ୍ତ ହେବା ଦରକାର ନାହିଁ। ଜାହାଜରୁ ଓହ୍ଲାଉ ଓହ୍ଲାଉ ରାମାନୁଜନ୍ ପରିବାରର ଅଶାନ୍ତ ଗହ୍ୱରରେ ପଡ଼ିଗଲେ। ପାରିବାରିକ ଗଣ୍ଡଗୋଳ ଗଲା ତିନିବର୍ଷ ଧରି ଇଂଲଣ୍ଡରେ ତାଙ୍କ ଜୀବନକୁ ଦୁର୍ବିସହ କରିଥିଲା। ଏବେ ତାଙ୍କ ଭାରତ ଫେରିବାକୁ ତାହା ନିରସ କରିପକାଇଲା।

ବର୍ଷକରୁ ଅଧିକ ସମୟ ଧରି ପରିବାରର ଦୁଇ ପକ୍ଷ ଭିତରେ ଯୋଗାଯୋଗ ନ ଥିଲା। ଜାନକୀ ଏବେ କେଉଁଠି ତାହା ରାମାନୁଜନ୍‌ଙ୍କ ଘରେ କେହି ଜାଣି ନ ଥିଲେ। ସେ ହୁଏତ ରାଜେନ୍ଦ୍ରମରେ ଥିବେ କିମ୍ବା ରାମାନୁଜନ୍‌ଙ୍କ ଫେରିବା ଖବର ଜାଣିଥିଲେ ମାନ୍ଦ୍ରାଜରେ ତାଙ୍କ ଭଉଣୀ ଘରକୁ ଆସିଥିବେ। ସେହି ଦୁଇ ଠିକଣାରେ ଜାନକୀଙ୍କୁ ଚିଠି ଲେଖିବା ପାଇଁ ଲକ୍ଷ୍ମୀ ନରସିଂହନ୍‌ଙ୍କୁ କୁହାଗଲା।

ଜାନକୀ ରାଜେନ୍ଦ୍ରମ୍‌ରେ ଥିଲେ ଏବଂ କେବଳ ଖବର କାଗଜରୁ ରାମାନୁଜନ୍‌ଙ୍କ ଫେରିବା ବିଷୟରେ ଜାଣିଥିଲେ। ଶାଶୂ ତାଙ୍କୁ ଏବିଷୟରେ କିଛି ଜଣାଇ ନ ଥିଲେ। ତାଙ୍କୁ ଭଲପାଉ ନ ଥିବା ଶାଶୂଙ୍କ ପାଖକୁ ନ ଫେରିବା ପାଇଁ ଜାନକୀଙ୍କ ଭାଇ ତାଙ୍କୁ କହିଥିଲେ। କିନ୍ତୁ ଏବେ ଚିଠି ଆସିଲା ଓ ରାମାନୁଜନ୍ ତାଙ୍କୁ ଆସିବା ପାଇଁ କହିଥିଲେ ବୋଲି ଜଣାଗଲା। ଭାଇଙ୍କ ସହିତ ଜାନକୀ ମାନ୍ଦ୍ରାଜ ଯିବାକୁ ବାହାରି ପଡ଼ିଲେ।

ଇଂଲଣ୍ଡ ଛାଡ଼ିବା ଆଗରୁ ରାମାନୁଜନ୍ ନେଭିଲ୍‌ଙ୍କୁ କହିଥିଲେ, "କୌଣସି ଶୁଦ୍ଧିକ୍ରିୟାକୁ ମୁଁ ଆଉ ନିମନ୍ତ୍ରିତ ହେବିନାହିଁ।" ପାରମ୍ପରିକ ବ୍ରାହ୍ମଣମାନଙ୍କ ପାଇଁ ଏହା ଇଂଲଣ୍ଡ ଯିବା ପାପର ଦଣ୍ଡ ଥିଲା। ଏହାର ପ୍ରତିକାର ପାଇଁ ରାମାନୁଜନ୍‌ଙ୍କୁ ବମ୍ବେରୁ ନେଇ ସିଧା ରାମେଶ୍ୱରମ୍ ଯିବା ପାଇଁ କୋମଳତାମ୍ମାଲ୍ ଠିକ୍ କରିଥିଲେ। ଭାରତର ଦକ୍ଷିଣ ସୀମାରେ ଥିବା ଏହି ପୀଠକୁ ଯିବା ଏକ ଲମ୍ବା

ଓ କଷ୍ଟକର ଯାତ୍ରା ଥିଲା। ଜାହାଜରୁ ଓହ୍ଲାଇଥିବା ରାମାନୁଜନ୍‌ଙ୍କ ରୁଗ୍‌ଣ ଓ ଦୁର୍ବଳ ଅବସ୍ଥା ଦେଖି ସେହି ନିଷ୍ପତ୍ତି ବଦଳା ଗଲା। ବମ୍ବେରେ କିଛି ଦିନ ବିଶ୍ରାମ ନେଇ ସେମାନେ ମାନ୍ଦ୍ରାଜ ଫେରିଲେ।

ଏପ୍ରିଲ 2 ତାରିଖରେ ମାନ୍ଦ୍ରାଜ ରେଳଷ୍ଟେସନ୍‌ରେ ରାମଚନ୍ଦ୍ର ରାଓ ତାଙ୍କୁ ଭେଟିଲେ। ସେ ମନେପକାଇ କହନ୍ତି, "ରେଳରୁ ଓହ୍ଲାଇଲା ବେଳେ ରାମାନୁଜନ୍‌ଙ୍କୁ ଦେଖିକରି ଏହା ତାଙ୍କର ଶେଷ ଅବସ୍ଥା ବୋଲି ମୋର ମନେହେଲା।" ସେ ଅତି ଦୟନୀୟ ଦେଖା ଯାଉଥିଲେ। ଜାନକୀଙ୍କ ଅନୁପସ୍ଥିତି ପରିସ୍ଥିତିକୁ ଆହୁରି ଖରାପ କରିଦେଲା। ମା'ଙ୍କଠାରୁ ସେ ଏହାର କାରଣ ଜାଣିବାକୁ ଦାବି କଲେ। ଏଥର କୋମଲତାମ୍ମାଲ୍ ଅସ୍ପଷ୍ଟ ଭାବରେ କହିଲେ ଯେ ତାଙ୍କର ଅସୁସ୍ଥ ବାପାଙ୍କ ଯତ୍ନ ନେବା ପାଇଁ ଜାନକୀ ତାଙ୍କ ଘରକୁ ଯାଇଛନ୍ତି।

ରାମାନୁଜନ୍ ଘୋଡ଼ାଗାଡ଼ିରେ ବସି ଜଣେ ଓକିଲଙ୍କର ବଡ଼ ଓ ସୁନ୍ଦର ବଙ୍ଗଳାରେ ପହଞ୍ଚିଲେ। ତାଙ୍କର ପୁରୁଣା ସାଙ୍ଗ କେ. ଏସ୍. ବିଶ୍ୱନାଥ ଶାସ୍ତ୍ରୀ ପଛରେ ସାଇକେଲରେ ଆସୁଥିଲେ। ସେ ସେହି ବଙ୍ଗଳାରେ ପହଞ୍ଚିଲା ବେଳକୁ ରାମାନୁଜନ୍ ଦହି ଓ ସମ୍ବର ଖାଉଥିଲେ। ତାଙ୍କୁ ଦେଖି ରାମାନୁଜନ୍ କହିଲେ, "ଇଂଲଣ୍ଡରେ ଯଦି ମୁଁ ଏହା ପାଉଥା'ନ୍ତି ତେବେ ମୁଁ ରୋଗରେ ପଡ଼ି ନ ଥା'ନ୍ତି।"

ରାମାନୁଜନ୍ ମାନ୍ଦ୍ରାଜରେ ପହଞ୍ଚିବାର କିଛି ଆଗରୁ ସେଠାର ଖବର କାଗଜରେ ତାଙ୍କର ଜୀବନୀ ପ୍ରକାଶିତ ହୋଇଥିଲା। ଡିଉଜ୍‌ବରିଙ୍କ ଅଫିସରେ ପ୍ରସ୍ତୁତ ସେହି ଜୀବନୀ କିନ୍ତୁ ସାର୍ ଫ୍ରାନ୍‌ସିସ୍ ସ୍ପ୍ରିଙ୍ଗଙ୍କ ମନକୁ ପାଇଲାନାହିଁ। ତାଙ୍କର ମତ ଥିଲା, "ଯାହାର ଗାଣିତିକ ପ୍ରତିଭା ପୃଥିବୀ ପାଇଁ କିଛି ବଡ଼ କାମ କରିବାକୁ ଯାଉଛି, ଏବଂ କିଛି କରିସାରିଛି, ତାଙ୍କ ବିଷୟରେ ଜାଣିବା ପାଇଁ ଜନସାଧାରଣଙ୍କର ଯୁକ୍ତିଯୁକ୍ତ ଆଗ୍ରହକୁ ସନ୍ତୁଷ୍ଟ କରିବା ପାଇଁ ଏହି ଲେଖା ଯଥେଷ୍ଟ ନୁହେଁ।" ପୋର୍ଟ ଟ୍ରଷ୍ଟର ଫାଇଲ୍‌ରେ ରାମାନୁଜନ୍‌ଙ୍କ ବିଷୟରେ ଥିବା ସବୁ ତଥ୍ୟକୁ ଏକାଠି କରି ଏକ ବିସ୍ତୃତ ଜୀବନୀ ଲେଖିବାର ଦାୟିତ୍ୱ ସେ ନାରାୟଣ ଆୟାରଙ୍କୁ ଦେଲେ। ସେହି ଜୀବନୀ ଏପ୍ରିଲ 6 ତାରିଖରେ ପ୍ରକାଶ ପାଇଥିଲା।

ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ହେବା ପାଇଁ ରାମାନୁଜନ୍‌ଙ୍କୁ ନିମନ୍ତ୍ରଣ କରାଗଲା। କିନ୍ତୁ ସ୍ୱାସ୍ଥ୍ୟାବସ୍ଥା ସୁଧୁରିଲେ ତାହା ଗ୍ରହଣ କରିବେ ବୋଲି ସେ ଜଣାଇଲେ। ମାନ୍ଦ୍ରାଜର ସବୁ ବିଶିଷ୍ଟ ବ୍ୟକ୍ତି ତାଙ୍କୁ ଦେଖାକରିବା ପାଇଁ ଆସିବାରେ ଲାଗିଲେ। ସେମାନଙ୍କ ଆଖିରେ ରାମାନୁଜନ୍ ଥିଲେ ବୌଦ୍ଧିକ କ୍ଷେତ୍ରରେ ଦକ୍ଷିଣ ଭାରତର ବୀରପୁରୁଷ। ତାଙ୍କର ଚିକିତ୍ସା ଓ ଅନ୍ୟ ଖର୍ଚ୍ଚ ଭରଣା କରିବା ପାଇଁ ଅନେକ ଲୋକ ଆଗେଇ ଆସିଲେ। ରହିବା ପାଇଁ ଅନେକ ଘର ତାଙ୍କୁ ଯଚାଗଲା। ହିନ୍ଦୁ ଖବର କାଗଜର ମୁଖ୍ୟ ଲୋକମାନେ, ରାମଚନ୍ଦ୍ର ରାଓ, ସାର୍ ଫ୍ରାନ୍‌ସିସ୍ ଓ ନାରାୟଣ ଆୟାର ସମସ୍ତେ ତାଙ୍କୁ ଦେଖିବାକୁ ଆସିଲେ।

ରାମାନୁଜନ୍‌ଙ୍କ ଡାକ୍ତର ଏମ୍. ସି. ନଞ୍ଜୁନ୍ଦା ରାଓ ଗହଳିରୁ ତାଙ୍କୁ ବଞ୍ଚାଇବାକୁ ଚାହିଁଲେ ଏବଂ ଟିକିଏ ଦୂର ଜାଗାରେ ଆଉ ଗୋଟିଏ ଘରେ ରଖାଇଲେ। ତାହା ଥିଲା ଲୁଜ୍ ଚର୍ଚ୍ଚ ରୋଡ୍‌ରେ ଥିବା 'ଭେଙ୍କଟ ବିଳାସ'। ଯୁବାବସ୍ଥାରେ ରାମାନୁଜନ୍ ଟ୍ରିପ୍ଲିକେନ୍ ଓ ଜର୍ଜଟାଉନର ଜନଗହଳି ଭିତରେ ରହୁଥିଲେ। ଏବେ ସେ ମାର୍ଜିତ ମାନ୍ଦ୍ରାଜର କେନ୍ଦ୍ରରେ ରହିଲେ ଯେଉଁଠି ଉଚ୍ଚ କୁଳର ବ୍ରାହ୍ମଣ,

ବୁଦ୍ଧିଜୀବୀ, ଆଇନଜୀବୀ ଆଦି ବଗିଚାଘେରା ବଡ଼ ବଡ଼ ଘରମାନଙ୍କରେ ରହୁଥିଲେ। ଶେଷରେ ଏପ୍ରିଲ 6 ତାରିଖ ଦିନ ଜାନକୀ ଓ ତାଙ୍କ ଭାଇ ଆସି ଏହି ଘରେ ପହଞ୍ଚିଲେ। ତା'ର ସପ୍ତାହେ ପରେ ରାମାନୁଜନ୍‌ଙ୍କ ବାପା, ଜେଜେମା ଓ ସାନ ଭାଇ କୁମ୍ଭକୋଣମ୍‌ରୁ ଆସିଲେ।

ଏପ୍ରିଲ 24 ଦିନ ରାମାନୁଜନ୍ ଇଂଲଣ୍ଡରେ ଥିବା ବେଳେ ଓ ଭାରତ ଫେରିବାରେ ତାଙ୍କ ପାଇଁ କରାଯାଇଥିବା ଖର୍ଚ୍ଚର ହିସାବ ଜାଣିବାକୁ ଚାହିଁଲେ ଏବଂ ଅନୁରୋଧ କଲେ ଯେ ତାଙ୍କର ଫେଲୋସିପ୍ ପ୍ରାପ୍ୟ ମାସିକ କିସ୍ତିରେ ଦିଆଯାଉ।

ତିନି ମାସ ଯାଏଁ ରାମାନୁଜନ୍ ଲୁଜ୍ ଚର୍ଚ୍ଚ ରୋଡ୍‌ର ସେହି ଘରେ ରହିଲେ। ଏହି ସମୟରେ ଜାନକୀଙ୍କ ସହିତ ତାଙ୍କର ପ୍ରକୃତ ସମ୍ପର୍କ ଗଢ଼ିଉଠିଲା ବୋଲି କୁହାଯାଇପାରେ। ରାମାନୁଜନ୍ ଇଂଲଣ୍ଡ ଗଲାବେଳେ ଜାନକୀ ମାତ୍ର ତେର ବର୍ଷ ବୟସର ହୋଇଥିଲେ, ଏବେ ତାଙ୍କୁ ଅଠର ବର୍ଷ। ଯିବା ଆଗରୁ ଦୁହିଁଙ୍କ ଭିତରେ ଅନ୍ତରଙ୍ଗ ଆଳାପ ବା ସମ୍ପର୍କର ସୁଯୋଗ ନ ଥିଲା ଏବଂ ପରେ ଚିଠି ଦିଆନିଆ ସମ୍ଭବ ହୋଇ ନ ଥିଲା। ଏବେ ରାମାନୁଜନ୍ ଘର ବିଷୟରେ ଜାନକୀଙ୍କ କଥା ଶୁଣି ହୁଏତ ନରମ ହୋଇଥିବେ। ଏସବୁ ଘଟଣାର ପ୍ରଭାବରେ ରାମାନୁଜନ୍‌ଙ୍କ ଜୀବନ ଏବେ ଭିନ୍ନ ଭାବରେ ଆଗେଇଲା।

ରାମାନୁଜନ୍‌ଙ୍କ ପରିବାର ଓ ସାଥୀମାନଙ୍କ ପାଇଁ ସେ ଏକ ଭିନ୍ନ ମଣିଷ ଭାବରେ ଫେରିଥିବା ଭଳି ମନେହେଲେ। କିଛି ବାହ୍ୟ ପରିବର୍ତ୍ତନ ସହଜରେ ଜଣା ପଡୁଥିଲା, ଯଥା – ଆଗରୁ ପ୍ରାୟ କଫି ପିଉ ନ ଥିବା ରାମାନୁଜନ୍ ଏବେ ତାହା ପିଉଥିଲେ, ତାଙ୍କର ଲମ୍ବା ବାଳ କଟା ହୋଇଯାଇଥିଲା, ଦେହର ରଙ୍ଗ ଟିକିଏ ଫିକା ଦିଶୁଥିଲା। କିନ୍ତୁ ସବୁଠାରୁ ବେଶି ଆଖିରେ ପଡୁଥିଲା ତାଙ୍କର ଅତି ପତଳା ଦେହ। ଓଜନ ହରାଇଥିବା ଓ କାଶରେ ଖଙ୍କାର ପଡ଼ିବା ଦେଖି ଜାନକୀ ବୁଝିଗଲେ ସେ କେତେ ଅସୁସ୍ଥ।

କିନ୍ତୁ ତାଙ୍କ ବ୍ୟକ୍ତିତ୍ୱରେ ଆସିଥିବା ପରିବର୍ତ୍ତନ ତାଙ୍କ ସାଙ୍ଗମାନଙ୍କୁ ବିବ୍ରତ କରିଥିଲା। ରାମାନୁଜନ୍‌ଙ୍କର ଜଣେ ପୁରୁଣା ସାଙ୍ଗ କେ. ନରସିଂହ ଆୟାର, ଯାହାଙ୍କ ସହିତ 1912 ମସିହାରେ ସେ ରହୁଥିଲେ, ତାଙ୍କୁ ସ୍ୱାଗତ କରିବା ପାଇଁ ଷ୍ଟେସନ୍‌କୁ ଆସିଥିଲେ। ରାମାନୁଜନ୍‌ଙ୍କୁ ସେଠାରେ ଭେଟିବା ପରେ ନରସିଂହ ଆୟାର କହିଥିଲେ, "ରାମାନୁଜନ୍ ଖୁସିବାସିଆ, ମେଳାପି ଓ ସ୍ନେହୀ ମନେ ହେଲେନାହିଁ। ବରଂ ସେ ଅତି ଅବସାଦଗ୍ରସ୍ତ, ଅପ୍ରସନ୍ନ ଓ ଉତ୍ସାହଶୂନ୍ୟ ଜଣାପଡୁଥିଲେ। ମୋ ଭଳି ଜଣେ ଘନିଷ୍ଠ ସାଥୀଙ୍କ ପାଇଁ ମଧ୍ୟ।" ରାମାନୁଜନ୍‌ଙ୍କର ପ୍ରିୟ କୁମ୍ଭକୋଣମ୍ କଦଳୀ ଧରି ଯାଇଥିବା ଆଉ ଜଣେ ବଡ଼ ସାଙ୍ଗ ଅନନ୍ତରମଣ କହିଥିଲେ, "ସେ ଆଉ ଅସଲ ରାମାନୁଜନ୍ ନ ଥିଲେ। କଥା କହିବା ତାଙ୍କ ପାଇଁ କଷ୍ଟକର ମନେ ହେଉଥିଲା ଏବଂ ରୋଗ ତାଙ୍କୁ ଚିଡ଼ିଚିଡ଼ା କରିଦେଇଥିଲା।" ସେ ଅତି ତିକ୍ତ ଓ ଅଧୈର୍ଯ୍ୟ ହୋଇଯାଇଥିଲେ। ତାଙ୍କର ଧର୍ମବିଶ୍ୱାସ ମଧ୍ୟ ମଳିନ ହୋଇଯାଇଥିଲା। ଅନନ୍ତରମଣଙ୍କ ବଡ଼ ଭାଇ ଗଣପତି ଥରେ ଦେବତା ଓ ମନ୍ଦିର ବିଷୟରେ କିଛି କହୁଥିଲେ ଏବଂ ରାମାନୁଜନ୍ ଚିଡ଼ିଉଠି କହିଲେ, "ସେସବୁ ବୋକାମିର କଥା, ସେସବୁ କେବଳ ସଇତାନ।"

ଜାନକୀ ମଧ୍ୟ ରାମାନୁଜନ୍‌ଙ୍କ ରୋଷର ଶିକାର ହେଉଥିଲେ। କାମ ବେଳେ ଗୋଳମାଳ ହେଲେ ରାମାନୁଜନ୍ ତାଙ୍କ ଉପରକୁ ଚିହିଁକି ଉଠୁଥିଲେ। ରାମାନୁଜନ୍‌ଙ୍କ ପାସ୍‌ପୋର୍ଟ ଫଟୋରେ ଜାନକୀ ଏକ ବିଚଳିତ ଭାବ ଦେଖିବାକୁ ପାଉଥିଲେ। ଫେରିବାର ପରବର୍ଷ ସାରା ଅନେକ ସମୟରେ

ସେହି ଭାବ ରାମାନୁଜନ୍‌ଙ୍କ ମୁହଁରେ ଆସୁଥିବାର ଜାନକୀ ଲକ୍ଷ୍ୟ କରୁଥିଲେ। ଅନ୍ୟମାନେ କହନ୍ତି ଯେ ଅନେକ ସମୟରେ ସେ ପଇସା ନଷ୍ଟ କରୁଥିବାରୁ ସାନ ଭାଇକୁ ଜୋରରେ ଗାଳି ଦେଉଥିଲେ, ଘରେ ଜିନିଷପତ୍ର ଫିଙ୍ଗାଫିଙ୍ଗି କରୁଥିଲେ, ଏପରିକି ଥର୍ମୋମିଟରକୁ କାମୁଡ଼ି ପକାଉଥିଲେ।

ରାମାନୁଜନ୍‌ଙ୍କ ପରିବାରର ଲୋକମାନେ ମନେପକାଉଥିବା କଥା ସବୁ ଏକାଠି କରାଯାଇଥିଲା। ବୋଧହୁଏ ତାଙ୍କ ଭାଇ ଲକ୍ଷ୍ମୀ ନରସିଂହନ୍ ରାମାନୁଜନ୍‌ଙ୍କ ମୃତ୍ୟୁ ପରେ ଏହି କାମଟି କରିଥିଲେ। ସେଥିରୁ ରାମାନୁଜନ୍‌ଙ୍କ ଭାରତ ଫେରିବା ପରବର୍ଷର ବିବରଣୀରେ ଅନେକ ଅସ୍ପଷ୍ଟ କଥା ରହିଥିଲା। ଘରକୁ ଯିବାଆସିବା କରୁଥିବା ଲୋକଙ୍କ କଥା, ଆସୁଥିବା ଚିଠିଗୁଡ଼ିକର ତାଲିକା ଓ ଅନ୍ୟ ଛୋଟ ଛୋଟ କଥା ରହିଥିଲା। କିନ୍ତୁ ସେସବୁ ଏତେ ସଂକ୍ଷିପ୍ତ ଭାବରେ ଓ ଠାରରେ ଲେଖା ହୋଇଥିଲା ଯେ ଦୀର୍ଘଦିନ ପରେ ସେଥିରୁ ସଠିକ ଅର୍ଥ ବାହାର କରିବା ସମ୍ଭବ ନ ଥିଲା। ସେହି ବିବରଣୀର ଅନେକ ଜାଗାରେ କଳି ବିଷୟରେ ଲେଖାଯାଇଥିଲା। କେବେ ଜାନକୀ ଓ କୋମଳତାମ୍ମାଲ୍‌ଙ୍କ ଭିତରେ, କେବେ ଜାନକୀ ଓ ରାମାନୁଜନ୍‌ଙ୍କ ଜେଜେମାଙ୍କ ଭିତରେ, କେବେ କେବେ ଅନାମିତ ଲୋକଙ୍କ ଭିତରେ।

ସେହି ବର୍ଷ ଭିତରେ ସେମାନେ ଅନେକ ଥର ଘର ବଦଳାଇଥିଲେ ଏବଂ ସାରା ପରିବାର ଅଶାନ୍ତିରେ କୁହୁଳୁଥିଲା। ରାମାନୁଜନ୍ ଚିକିତ୍ସାଳୟକୁ ଯିବେ କି ନାହିଁ ସେ ବିଷୟରେ ଥରେ ବିବାଦ ଉଠିଥିଲା। କିଏ ଜଣେ ଦେଇଥିବା ଟଙ୍କା ଆଉ ଥରକର ବିବାଦର କାରଣ ଥିଲା। ତାଙ୍କର ଫେଲୋସିପ୍ ଟଙ୍କାର କିଛି ଭାଗ ଅଭାବୀ ପିଲାଙ୍କ ପାଇଁ ଖର୍ଚ୍ଚ କରାଯିବା ପାଇଁ ରାମାନୁଜନ୍ ଦେଇଥିବା ପ୍ରସ୍ତାବ ବିଷୟରେ ସମସ୍ତେ ଅସୁଖୀ ଥିଲେ। କୋମଳତାମ୍ମାଲ୍ ଚାହୁଁଥିଲେ ଯେ ସେହି ଟଙ୍କା ବନ୍ଧୁବାନ୍ଧବଙ୍କ ପାଇଁ ଖର୍ଚ୍ଚ କରାଯାଉ। ଜାନକୀ ମଧ୍ୟ ଟଙ୍କା ବିଷୟରେ ନିରାସକ୍ତ ନ ଥିଲେ। ଅନେକ ବର୍ଷ ପରେ ସେ କହିଥିଲେ ଯେ ତାଙ୍କର ଶେଷ କେତେ ଦିନରେ ରାମାନୁଜନ୍ କହିଥିଲେ ଯେ ଜାନକୀଙ୍କ ଗହଣା କିଣିବା ପାଇଁ ସେ ପାଞ୍ଚ ହଜାର ଟଙ୍କା ରଖିଛନ୍ତି।

ଖରାଦିନ ଆସିବାରୁ ମାନ୍ଦ୍ରାଜରେ ଗରମ ବଢ଼ିଲା। ରାମାନୁଜନ୍‌ଙ୍କ ଡାକ୍ତରମାନେ ପରାମର୍ଶ ଦେଲେ ଯେ ଗରମ ଓ ଆର୍ଦ୍ରତାରୁ ରକ୍ଷା ପାଇବା ପାଇଁ ତାଙ୍କୁ ଅନ୍ୟ ଜାଗାକୁ ନିଆଯାଉ। ଗୋଟିଏ ପ୍ରସ୍ତାବ ଥିଲା କୋଏମ୍ବାଟୁର ଯିବା ପାଇଁ। ସେହି ପାହାଡ଼ିଆ ଅଞ୍ଚଳର ଜଳବାୟୁ ବେଶ୍ ଶୁଖିଲା ଓ ଥଣ୍ଡା ରହୁଥିଲା। କିନ୍ତୁ ତାଙ୍କ ମା' କୋଦୁମୁଡ଼ି ଯିବାକୁ ଅଧିକ ପସନ୍ଦ କଲେ। ଏହି ଛୋଟିଆ ଜାଗାଟି ଦେବୀପୀଠ ନାମାକ୍କାଲ୍ ଓ ରାମାନୁଜନ୍‌ଙ୍କ ଜନ୍ମସ୍ଥାନ ଇରୋଡ୍ ଉଭୟଠାରୁ କୋଡ଼ିଏ ମାଇଲ ଦୂରରେ ଥିଲା। କୋମଳତାମ୍ମାଲଙ୍କ ପରିବାର ପାଇଁ ଏହା ଘରକୁ ଯିବା ଭଳି କଥା ଥିଲା।

କୋଦୁମୁଡ଼ି ଜିଲ୍ଲାରେ କମ୍ ବର୍ଷା ହେଉଥିବାରୁ ସେଠାରେ ବିଶେଷ ଗଛପତ୍ର ଦେଖା ଯାଏନାହିଁ। କିନ୍ତୁ କାବେରୀ ନଦୀର ଦକ୍ଷିଣ ତୀରରେ ଥିବା କୋଦୁମୁଡ଼ି ସହରରେ ସବୁଜିମା ଭରି ରହିଥିଲା। କାବେରୀ ଏଠାରେ ବେଶ୍ ପ୍ରଶସ୍ତ ଥିଲା ଏବଂ ନଦୀ ଆରପଟେ ଧାଡ଼ି ଧାଡ଼ି ତାଳଗଛ ଅତି ସୁନ୍ଦର ଦେଖାଯାଉଥିଲା।

ରାମାନୁଜନ୍‌ଙ୍କ ରହିବା ପାଇଁ ସହର କାର୍ଯ୍ୟାଳୟ ପାଖରେ ବିଶ୍ୱବିଦ୍ୟାଳୟ ତରଫରୁ

ଗୋଟିଏ ଘରର ବ୍ୟବସ୍ଥା କରାଯାଇଥିଲା। ପୂର୍ବ ଅଗ୍ରହରମ୍ ବା ବ୍ରାହ୍ମଣ ବସତି ସରଣୀ ପାଖରେ ଥିବା ସେହି ଘର କଡ଼ରୁ ଗୋଟିଏ ଛୋଟ ରାସ୍ତା ଯାଇ ନଈକୂଳରେ ଉଠୁଥିଲା। ସେଠାରେ ଥିବା ତୁଠରେ ଲୋକମାନେ ଗାଧୋଉଥିଲେ ଓ ଲୁଗା ଧୋଉଥିଲେ। ବିଭିନ୍ନ ଧର୍ମକର୍ମ ମଧ୍ୟ ସେହି ତୁଠରେ କରାଯାଉଥବିଲା। 1919 ଅଗଷ୍ଟ 11 ଦିନ ସେହିଠାରେ ପଇତା ବଦଳାଇବା ସମୟରେ ରାମାନୁଜନ୍ ମା'ଙ୍କ ବିରୁଦ୍ଧରେ ବିଦ୍ରୋହ କଲେ।

ଦୁହିଁଙ୍କ ଭିତରେ କେତେ ସପ୍ତାହ ଧରି ଚାପା ବିବାଦ ଲାଗି ରହିଥିଲା। ଏଠାକୁ ଆସିବା ପାଇଁ ରାମାନୁଜନ୍ ପ୍ରଥମ ଶ୍ରେଣୀର ଟିକେଟ କରିବାକୁ ଚାହୁଁଥିଲେ, କିନ୍ତୁ କୋମଲତାମ୍ମାଲ୍ ଦ୍ୱିତୀୟ ବା ତୃତୀୟ ଶ୍ରେଣୀରେ ଯିବାକୁ କହୁଥିଲେ। ଏବେ ଶ୍ରାବଣମ୍ ରୀତି ଅନୁସାରେ ରାମାନୁଜନ୍ ନଈରେ ଗାଧୋଇବାକୁ ବାହାରିଲା ବେଳେ ଜାନକୀ ତାଙ୍କ ସାଙ୍ଗେ ଯିବାକୁ ଚାହିଁଲେ। କିନ୍ତୁ କୋମଲତାମ୍ମାଲ୍ ମନା କଲେ।

ରାମାନୁଜନ୍ ଜାନକୀଙ୍କ ଯିବାର ଇଚ୍ଛାରେ ରାଜି ହେଲେ।

ପାରିବାରିକ ସମ୍ପର୍କ ଏଠାରେ ଗୋଟିଏ ନୂଆ ମୋଡ଼ ନେଲା। ଗଲା କେତେବର୍ଷ ଧରି ଭିତରେ କୁହୁଳୁଥିବା ଅସନ୍ତୋଷ ଏବେ ବାହାରି ଆସିଲା। ସମ୍ମାନର ସହିତ କିନ୍ତୁ ଦୃଢ଼ ଭାବରେ ରାମାନୁଜନ୍ ମା'ଙ୍କୁ ଜଣାଇ ଦେଲେ ଯେ ଜାନକୀ ତାଙ୍କ ସହିତ ଯିବେ।

ଏହି ଘଟଣା ପରେ ଜାନକୀ ତାଙ୍କ ସ୍ୱାମୀଙ୍କ ଜୀବନରେ ଏକ ବୃହତ୍ତର ସ୍ଥାନ ନେବାକୁ ଲାଗିଲେ। ଜାନକୀଙ୍କ ଉପସ୍ଥିତିରେ ରାମାନୁଜନ୍ ଅଧିକ ମୁକ୍ତ ଅନୁଭବ କଲେ। କେତେ ଥର ସେ ଜାନକୀଙ୍କୁ କହିଥିଲେ, "ମୋ ସାଙ୍ଗରେ ତମେ ଇଂଲଣ୍ଡ ଆସିଥିଲେ ମୁଁ ରୋଗରେ ପଡ଼ି ନ ଥା'ନ୍ତି।" ପ୍ରତି ଶୁକ୍ରବାର ଅପରାହ୍ନରେ ଜାନକୀ ତେଲ ଲଗାଇ ମୁଣ୍ଡ ଧୁଅନ୍ତି ଓ ମୁକୁଳା ବାଳକୁ ଖରାରେ ଶୁଖାନ୍ତି। ଅନେକ ସମୟରେ ରାମାନୁଜନ୍ ବସି ତାହା ଦେଖିବାରେ ଲାଗନ୍ତି। ତାହା ତାଙ୍କୁ ଏତେ ସନ୍ତୋଷ ଦିଏ ଯେ ବେଳେ ବେଳେ ସେ କାମ ବନ୍ଦ କରି ଚାଲିଆସନ୍ତି। ଧୀରେ ଧୀରେ ଜାନକୀ ରାମାନୁଜନ୍‌ଙ୍କର ଯତ୍ନନେବା କାମ ପୂରା କରିବାକୁ ଲାଗିଲେ। ଥରେ କୋମଲତାମ୍ମାଲ୍ ଜାନକୀଙ୍କୁ ତାଙ୍କ ବାପାଙ୍କ ଘରକୁ ପଠାଇଦେବାକୁ ଚାହିଁଲେ, କିନ୍ତୁ ରାମାନୁଜନ୍ ସେ ପ୍ରସ୍ତାବ କାଟିଦେଲେ।

ରାମାନୁଜନ୍ ଦୁଇ ମାସ ଧରି କୋଦୁମୁଡ଼ିରେ ରହିଲେ। ଆଞ୍ଚଳିକ ସ୍ୱାସ୍ଥ୍ୟ ଅଧିକାରୀ ସି. ଏଫ୍. ଫର୍ଣ୍ଣସାଇଡ୍ ପ୍ରତି ରବିବାର ଦିନ ରାମାନୁଜନ୍‌ଙ୍କୁ ଦେଖିବାକୁ ଆସୁଥିଲେ। ଏବେ ଯାଏଁ କୋମଲତାମ୍ମାଲ୍ ବୋଧହୁଏ ରାମାନୁଜନ୍‌ଙ୍କର ସ୍ୱାସ୍ଥ୍ୟରେ ଗଭୀର ଅସୁବିଧା କଥା ବୁଝି ନ ଥିଲେ। ଡାକ୍ତର ଫର୍ଣ୍ଣସାଇଡ୍‌ଙ୍କୁ ପଚାରି ସେ ବିଷୟରେ ସେ କିଛି ଧାରଣା ଏବେ ପାଇଲେ। ଥରେ ଡାକ୍ତର ଫର୍ଣ୍ଣସାଇଡ୍ ପ୍ରସ୍ତାବ ଦେଲେ ଯେ ରାମାନୁଜନ୍ କୋଏମ୍ବାଟୁର ବା ତାଞ୍ଜାଭୁର ଯାଆନ୍ତୁ। ରାମାନୁଜନ୍ ଥଟ୍ଟା କଲେ ଯେ ସେ ମତେ ମୋର 'ମୃତ୍ୟୁର ସ୍ଥାନ'କୁ ଯିବାକୁ ଚାହୁଁଛନ୍ତି - ତାଞ୍ଜାଭୁରକୁ ସେ 'ତାନ୍-ସାଭୁ-ଉର୍' ଭାବରେ କହୁଥିଲେ ତାମିଲ ଭାଷାରେ ଯାହାର ଅର୍ଥ ହେଉଛି 'ମୋର ମୃତ୍ୟୁର ସ୍ଥାନ'। କିନ୍ତୁ ଖରାଦିନ ଏବେ ଚାଲିଯାଇଥିଲା, ତେଣୁ ଗମନାଗମନର ସୁବିଧା ଥିବା ଜାଗାରେ ରହିବା ପାଇଁ ରାମାନୁଜନ୍‌ଙ୍କ ଉପରେ ଚାପ ପଡୁଥିଲା।

କୋମଲତାମ୍ମାଲ୍ ଠିକ୍ କଲେ ଯେ ସେମାନେ କୁମ୍ଭକୋଣମ୍ ଯିବେ।

କୁମ୍ଭକୋଣମ୍‌ରେ ସରଙ୍ଗାପାନି ସନ୍ନିଧି ସରଣୀରେ ଥିବା ତାଙ୍କ ପୁରୁଣା ଘରଟି ରାମାନୁଜନ୍‌ଙ୍କ ଯତ୍ନ ନେବା ପାଇଁ ଯଥେଷ୍ଟ ନ ଥିଲା। ତେଣୁ ନୂଆ ଘର ଖୋଜିବା ପାଇଁ ଅଗଷ୍ଟ ଶେଷ ଆଡ଼କୁ କୋମଲତାମ୍ମାଲ୍ ଆଗୁଆ ବାହାରି ଗଲେ। ପାରିବାରିକ ପରିସ୍ଥିତି ତାଙ୍କ ମନଲାଖି ନ ଥିବାରୁ ହୁଏତ ସେ ତାହା ହିଁ ଚାହୁଁଥିଲେ। ସେପ୍ଟେମ୍ବର ମାସ ତିନି ତାରିଖ ଦିନ ରାମାନୁଜନ୍ ଓ ଅନ୍ୟମାନେ କୋଦୁମୁଡ଼ି ଛାଡ଼ିଲେ ଏବଂ ପରଦିନ ସନ୍ଧ୍ୟା ବେଳକୁ କୁମ୍ଭକୋଣମ୍‌ରେ ପହଞ୍ଚିଲେ।

ପିଲାଦିନର ଓ ଯୁବାବସ୍ଥାର ପରିବେଶ ହୁଏତ ରାମାନୁଜନ୍‌ଙ୍କୁ ଟିକିଏ ନରମାଇ ଦେଇଥିଲା। କାରଣ ଏହି ସମୟର ବିବରଣୀ ତାଙ୍କର କୋମଳ ବ୍ୟବହାରର ସୂଚନା ଦିଏ। ଅତୀତର ସ୍ମୃତି ହୁଏତ ତାଙ୍କୁ ଆବେଗମୟ କରୁଥିଲା। ତାଙ୍କର ଜଣେ କୋଡ଼ିଏ ବର୍ଷ ତଳର ସହପାଠୀ କହୁଥିଲେ ରାମାନୁଜନ୍ କିପରି ତାଙ୍କର ସତୁରି ବର୍ଷରୁ ବେଶି ବୟସର ଖୁଡ଼ିଙ୍କୁ ଦେଖିବାକୁ ଚାହୁଁଥିଲେ। ପୁରୁଣା ସାଙ୍ଗମାନେ ତାଙ୍କୁ ଦେଖିବାକୁ ଆସୁଥିଲେ। ବାଲକ୍ରିଷ୍ଣା ଆୟାର, 1910 ମସିହା ବେଳକୁ ଖଣ୍ଡେ ଚାକିରି ପାଇଁ ଯାହା ପାଖକୁ ରାମାନୁଜନ୍ ଯାଇଥିଲେ, ତାଙ୍କ ପାଇଁ କିଛି ବାଇଗଣ ଆଚାର ଆଣିଥିଲେ। ପାଶ୍ୟାପ୍ପା କଲେଜର ସହପାଠୀ ରାଧାକ୍ରିଷ୍ଣା ଆୟାର, ଯିଏ 1909 ମସିହାରେ ଅସୁସ୍ଥ ରାମାନୁଜନ୍‌ଙ୍କର ଯତ୍ନ ନେଇଥିଲେ, ଏବେ ତାଙ୍କୁ ଭେଟିବାର ଅନୁଭୂତି ବିଷୟରେ କହିଥିଲେ, "ଗୋଛାଏ ହାଡ଼ ଭଳି ଦିଶୁଥିବା ରାମାନୁଜନ୍ ଖଟରେ ଶୋଇଥିଲେ। ତାଙ୍କର ଆଖି ଦୁଇଟି ସତେଜ ଓ ତୀକ୍ଷ୍ଣ ଥିଲା। ମୁହୂର୍ତ୍ତକ ପାଇଁ ତାଙ୍କ ଆଖିରେ ପରିଚିତିର ଆଭାସ ଝଲକି ଉଠିଲା ଏବଂ ସେ କ୍ଷୀଣ ସ୍ୱରରେ ରାଧାକ୍ରିଷ୍ଣାଙ୍କ ନାଁ କହିଲେ।"

ରାମାନୁଜନ୍‌ଙ୍କ କଥା ବୁଝିବା ପାଇଁ ମାନ୍ଦ୍ରାଜରୁ ଜଣେ ନୂଆ ଡାକ୍ତର ପି. ଏସ୍. ଚନ୍ଦ୍ରଶେଖର ସ୍ୱତନ୍ତ୍ର ଭାବରେ ଅଣାଯାଇଥିଲେ। ରୟାଲ ସୋସାଇଟି ଜରିଆରେ ହାର୍ଡି ମାନ୍ଦ୍ରାଜ କର୍ତ୍ତୃପକ୍ଷଙ୍କ ସହିତ ଯୋଗାଯୋଗ କରିବା ପରେ ମୁଖ୍ୟ ସ୍ୱାସ୍ଥ୍ୟ ଅଧିକାରୀ ଚନ୍ଦ୍ରଶେଖରଙ୍କୁ ବାଛିଥିଲେ। ପଚାଶ ବର୍ଷ ବୟସ୍କ ଚନ୍ଦ୍ରଶେଖର ମାଡ୍ରାସ ମେଡିକାଲ କଲେଜରେ ସ୍ୱାସ୍ଥ୍ୟରକ୍ଷା ଓ ଶରୀର ବିଜ୍ଞାନ ବିଭାଗରେ ଅଧ୍ୟାପକ ଥିଲେ। ଜଣେ ଯକ୍ଷ୍ମା ରୋଗ ବିଶେଷଜ୍ଞ ଭାବରେ ତାଙ୍କର ଖ୍ୟାତି ରହିଥିଲା। ଭଲ ଭାବରେ ପରୀକ୍ଷାକରି ସେ ନିଶ୍ଚିତ ହେଲେ ଯେ ରାମାନୁଜନ୍‌ଙ୍କ ରୋଗ ହେଉଛି ଯକ୍ଷ୍ମା, ରକ୍ତଦୂଷଣ ନୁହେଁ। ଏହାପରେ ଅନେକ ଦିନ ତଳେ ତାଙ୍କଠାରୁ ଗଣିତରେ ବେଶି ନମ୍ବର ରଖିଥିବା ସାଙ୍ଗ ସରାଙ୍ଗାପାନିଙ୍କୁ ରାମାନୁଜନ୍ କହିଥିଲେ, "ମୋର ଜଣେ ସାଙ୍ଗ ଅଛି ଯିଏ ମତେ ତୁମ ସମସ୍ତଙ୍କଠାରୁ ବେଶି ଭଲପାଏ, ଯିଏ ମତେ କେବେ ବି ଛାଡ଼ିକରି ଯିବାକୁ ଚାହେଁନାହିଁ। ସେ ହେଉଛି ଏହି ଯକ୍ଷ୍ମାରୋଗର ଜର।"

ରାମାନୁଜନ୍ ଭାରତ ଫେରିବା ବେଳେ ସମସ୍ତେ ଆଶା କରିଥିଲେ ଯେ ସେ ଶୀଘ୍ର ଆରୋଗ୍ୟ ହୋଇଯିବେ। ହାର୍ଡି ଅନ୍ତତଃ ଏହିପରି ବିଶ୍ୱାସ କରୁଥିଲେ। ଇଂଲଣ୍ଡର ଚିକିତ୍ସାଳୟଗୁଡ଼ିକରେ ଯକ୍ଷ୍ମାରୋଗ ଦୂର କରିବାର କୌଣସି ବାଟ ନ ଥିଲା। ରୋଗୀକୁ ଭଲ ପରିବେଶରେ ରଖି, ପୁଷ୍ଟିକର ଖାଦ୍ୟ ଦେଇ, ପ୍ରାକୃତିକ ଭାବରେ ଆରୋଗ୍ୟ ହେବାରେ ସେଗୁଡ଼ିକ ସାହାଯ୍ୟ କରୁଥିଲେ। କିନ୍ତୁ ସବୁ କ୍ଷେତ୍ରରେ ଏହା ସଫଳ ହେଉ ନ ଥିଲା। ଅନୁଧ୍ୟାନରୁ ଦେଖା ଯାଇଥିଲା ଯେ ସେହି ଚିକିତ୍ସାଳୟଗୁଡ଼ିକରୁ ବାହାରିବାର ପାଞ୍ଚ ବର୍ଷ ଭିତରେ ଏକତୃତୀୟାଂଶରୁ ଦୁଇତୃତୀୟାଂଶ ରୋଗୀଙ୍କର ମୃତ୍ୟୁ ହେଉଥିଲା। ଏହି ମୃତ୍ୟୁର ଅଧିକାଂଶ ଭାଗ ଘଟୁଥିଲା ଦୁଇ ବର୍ଷ ଭିତରେ। ରାମାନୁଜନ୍‌ଙ୍କ କ୍ଷେତ୍ରରେ ଡାକ୍ତର

ଚନ୍ଦ୍ରଶେଖର ଦେଖିଲେ ଯେ ରୋଗ ଏବେ ଅତି ମାତ୍ରାରେ ଆଗେଇ ଗଲାଣି। ଏବେ ତାଙ୍କର ସ୍ୱାସ୍ଥ୍ୟ ବିଷୟରେ ଔଷଧ କିଛି କରିପାରିବନାହିଁ, ଯଦି ସମ୍ଭବ ଭଗବାନ ହିଁ କିଛି କରିପାରିବେ।

ଅଢ଼େଇ ବର୍ଷ ତଳେ ରୋଗରେ ପଡ଼ିବା ପରଠାରୁ ରାମାନୁଜନ୍ ଅତି କଷ୍ଟକର ପରିସ୍ଥିତି ଦେଇ ଯାଉଥିଲେ। ଇଂଲଣ୍ଡରେ ଅନେକ ଡାକ୍ତର ତାଙ୍କୁ ପରୀକ୍ଷା କରିଥିଲେ, ଅସଂଖ୍ୟ ପରସ୍ପର ବିରୋଧୀ ମତ ଦେଇଥିଲେ, ବିଭିନ୍ନ ପ୍ରକାରର ଚିକିତ୍ସାଳୟକୁ ତାଙ୍କୁ ପଠାଇବାରେ ଲାଗିଥିଲେ। ଏବେ ଭାରତରେ ବି ସେପରି ଘଟୁଥିଲା। ମାନ୍ଦ୍ରାଜରେ ଦୁଇଟି ଜାଗା, କୋଦୁମୁଡ଼ି, ଅଳ୍ପ ସମୟ ପାଇଁ କୋଏମ୍ବାଟୁର, କୁମ୍ଭକୋଣମ୍ – ଏହିଭଳି କେତେ ଜାଗା ସେ ନ ମାସ ଭିତରେ ବଦଳାଇ ସାରିଥିଲେ। ଏବଂ ତାଙ୍କ ଦେହର ଅବସ୍ଥା ଖରାପ ହୋଇ ଚାଲିଥିଲା। ଏବେ କୁମ୍ଭକୋଣମ୍‌ରେ ଅତି ଦୃତ ବେଗରେ ତାଙ୍କ ସ୍ୱାସ୍ଥ୍ୟର ଅବନତି ଘଟିବାରେ ଲାଗିଲା।

1919 ମସିହା ବଡ଼ଦିନର ଅଳ୍ପ ଦିନ ଆଗରୁ ଡିଉଜ୍‌ବରି ହାର୍ଡିଙ୍କ ପାଖକୁ ରାମାନୁଜନ୍‌ଙ୍କ ପାଇଁ ଖର୍ଚ୍ଚର ହିସାବ ପଠାଇଥିଲେ। ସେଥିରେ ସେ ଯୋଡ଼ିଥିଲେ, "ତାଙ୍କର ସ୍ୱାସ୍ଥ୍ୟ ଏବେ ବି ଅତି ଖରାପ ଅଛି। ସେ ତାଙ୍କ ପରିବାର ସହିତ ଦୂର ଜାଗାରେ ରହୁଛନ୍ତି, ତେଣୁ ତାଙ୍କ ବିଷୟରେ କିଛି କରିବା ସହଜ ହେଉନାହିଁ। ରାମଚନ୍ଦ୍ର ରାଓ ତାଙ୍କ ପାଇଁ ଯଥାସାଧ ଚେଷ୍ଟା କରୁଛନ୍ତି, କିନ୍ତୁ ଉପଯୁକ୍ତ ପରିବେଶରେ ରହି ଚିକିତ୍ସିତ ହେବା ପାଇଁ ଶ୍ରୀ ରାମାନୁଜନ୍ ରାଜି ହେଉନାହାନ୍ତି। ବାସ୍ତବିକ ଏହା ବଡ଼ ଦୁଃଖର କଥା।" କିଏ କହେ ଯେ ସେ ଆଉ ବେଶି ଔଷଧ ଖାଇବା ପାଇଁ ମନା କରିଦେଲେ, ଅନ୍ୟ କେହି କହେ ଯେ ସେ ବଞ୍ଚିବାର ଇଛା ହରାଇ ବସିଲେ। ଡାକ୍ତର ଚନ୍ଦ୍ରଶେଖର ଚାହୁଁଥିଲେ ଯେ ରାମାନୁଜନ୍ ମାନ୍ଦ୍ରାଜରେ ରହନ୍ତୁ, କିନ୍ତୁ ସେକଥା ସେ ଶୁଣିବାକୁ ପ୍ରସ୍ତୁତ ନ ଥିଲେ। ମାନ୍ଦ୍ରାଜର ପାଗ ଏହି ସମୟରେ ଥଣ୍ଡା ଓ ଆରାମଦାୟକ ରହୁଥିଲା, ତେଣୁ ଯେଉଁ କାରଣରୁ ସେ ସେହି ଜାଗା ଛାଡ଼ିଥିଲେ ତାହା ଚାଲିଯାଇଥିଲା। ଶେଷରେ ମାନ୍ଦ୍ରାଜ ଫେରିବାକୁ ରାମାନୁଜନ୍ ରାଜି ହେଲେ।

ନୂଆ ବର୍ଷର ଆରମ୍ଭରେ ରାମାନୁଜନ୍ ମା', ସ୍ତ୍ରୀ ଓ ଶାଳକ ଶ୍ରୀନିବାସଙ୍କ ସହିତ ମାନ୍ଦ୍ରାଜ ଯିବା ପାଇଁ ରେଳ ଷ୍ଟେସନକୁ ଆସିଲେ। ସେମାନେ ଷ୍ଟେସନରେ ପହଞ୍ଚିଲା ବେଳକୁ ଗାଡ଼ି ଛାଡ଼ି ଦେଇଥିଲା ଏବଂ ପର ଗାଡ଼ିଟି ଛ ଘଣ୍ଟା ପରେ ଆସିବାର ଥିଲା। କଷ୍ଟରେ ଘରକୁ ଯିବା ଓ ପୁଣି ଆସିବା ବଦଳରେ ସେମାନେ ଷ୍ଟେସନରେ ଅପେକ୍ଷା କଲେ। ଶେଷରେ ସେମାନେ ମାନ୍ଦ୍ରାଜରେ ପହଞ୍ଚିଲେ। ଜାନୁଆରି 15 ତାରିଖର ଚିଠିରେ ଡିଉଜ୍‌ବରି ହାର୍ଡିଙ୍କୁ ଜଣାଇଲେ ଯେ ରାମାନୁଜନ୍‌ଙ୍କ ନୂଆ ଠିକଣା ହେଉଛି "କୁଦ୍‌ସିଆ", ହ୍ୟାରିଙ୍ଗଟନ୍ ରୋଡ୍, ଚେତ୍‌ପୁଟ୍, ମାନ୍ଦ୍ରାଜ।

### 3. ଅନ୍ତିମ ସମସ୍ୟା

ସହରର ପଶ୍ଚିମ ସୀମାରେ ଇଂରେଜମାନଙ୍କ ପାଇଁ ତିଆରି ହୋଇଥିବା କିଛି ବଡ଼ ସିମେଣ୍ଟ ଘର ଭିତରୁ ଗୋଟିକରେ ରାମାନୁଜନ୍ ରହୁଥିଲେ। ସେହି ଘରଗୁଡ଼ିକୁ ମଧ୍ୟମ ବର୍ଗର ପ୍ରଶାସନିକ ସେବା ଅଧିକାରୀମାନେ ଓ କମ୍ପାନି କର୍ମକର୍ତ୍ତାମାନେ ଖୁବ୍ ପସନ୍ଦ କରୁଥିଲେ। ଘରଗୁଡ଼ିକର ନାଁ ସେମାନେ ଇଂରେଜ ଢାଞ୍ଚାରେ ରଖିଥିଲେ ଏବଂ କେତେ ଘର ଆଗରେ ଟେନିସ୍ ପଡ଼ିଆ ତିଆରି କରାଇଥିଲେ। ରାମାନୁଜନ୍ ରହୁଥିବା ଘରର ନାଁ ଥିଲା 'କୁଦ୍‌ସିଆ'। ଅଳ୍ପଦିନ ପରେ ସେ ରାସ୍ତାର ଶେଷ ମୁଣ୍ଡରେ

ଥିବା ଆହୁରି ବଡ଼ ଘର 'କ୍ରାଇନାଷ୍ଟ'କୁ ଗଲେ ଏବଂ ଆହୁରି ଥରେ ତାଙ୍କ ଘର ବଦଳା ଗଲା। ଶେଷରେ ସେ 'ଗୋମେତ୍ରା' ନାମକ ଘରେ ରହିଲେ।

1920 ମସିହା ଜାନୁଆରି 12 ତାରିଖ ଦିନ, ଭାରତ ଫେରିବାର ପ୍ରାୟ ଏକ ବର୍ଷ ପରେ, ରାମାନୁଜନ୍ ହାର୍ଡିଙ୍କ ପାଖକୁ ଚିଠି ଲେଖିଲେ:

> ମୁଁ ଖୁବ୍ ଦୁଃଖିତ ଯେ ଏପର୍ଯ୍ୟନ୍ତ ମୁଁ ଆପଣଙ୍କ ପାଖକୁ ଗୋଟିଏ ବି ଚିଠି ଲେଖିନାହିଁ ...। ଅଳ୍ପଦିନ ତଳେ ମୁଁ କିଛି ଆଗ୍ରହଜନକ ଫଳନ ଆବିଷ୍କାର କଲି ଯାହାର ନାଁ ମୁଁ 'ମକ୍-ଥିଟା' ଫଳନ ରଖିଛି। ଅଧ୍ୟାପକ ରଜର୍ସ ତାଙ୍କର ଆଗ୍ରହଜନକ ନିବନ୍ଧରେ ଆଂଶିକ ଭାବରେ ଆଲୋଚନା କରିଥିବା 'ଫଲ୍ସ୍ ଥିଟା ଫଳନଠାରୁ ଏହା ଏହି ଦୃଷ୍ଟିରୁ ସ୍ୱତନ୍ତ୍ର ଯେ ଏଗୁଡ଼ିକ ସାଧାରଣ ଥିଟା ଫଳନ ଭଳି ଗଣିତ ସହିତ ସୁନ୍ଦର ଭାବରେ ମିଶିଯା'ନ୍ତି। ଏହି ଚିଠି ସହିତ ମୁଁ କିଛି ଉଦାହରଣ ପଠାଉଛି।

ଏହି ଚିଠିଟି ସାତ ବର୍ଷ ତଳେ ରାମାନୁଜନ୍ଙ୍କ ହାର୍ଡିଙ୍କ ପାଖକୁ ଲେଖିଥିବା ପ୍ରଥମ ଚିଠି ଭଳି ଥିଲା। କାରଣ ପ୍ରଥମ ଚିଠି ଭଳି ଏହି ଚିଠିଟି ମଧ୍ୟ ଆଜି ଯାଏଁ ଗଣିତଜ୍ଞମାନଙ୍କୁ ଉଦ୍ଦୀପିତ କରୁଛି। ଗୋଟିଏ ମତରେ ଏହି କାମଟି ରାମାନୁଜନ୍ଙ୍କର ସବୁଠାରୁ ବେଶି ମୌଳିକତା ଦେଖାଉଥିବା କାମ ଭିତରୁ ଗୋଟିଏ, ହୁଏତ ତାଙ୍କର ଶ୍ରେଷ୍ଠ କାମ ମଧ୍ୟ।

ରାମାନୁଜନ୍ଙ୍କ ଆଗ୍ରହର ଅନେକ ବିଷୟ ଭଳି ଥିଟା ଫଳନ ମଧ୍ୟ ଅସୀମ ଶ୍ରେଣୀ ରୂପରେ ପ୍ରକାଶିତ ହୋଇପାରୁଥିଲା। କିଛି ନିର୍ଦ୍ଦିଷ୍ଟ ନିୟମ ଏହି ଶ୍ରେଣୀଗୁଡ଼ିକୁ ପରିଚାଳିତ କରୁଥିଲେ ଏବଂ ସେହି ନିୟମ ଭିତରେ କାମ କରିଚାଲିଲେ ଏହି ଶ୍ରେଣୀର ରହସ୍ୟମୟ ଅନେକ ଗୁଣଧର୍ମ ଜଣାପଡୁଥିଲା। ଉଦାହରଣ ସ୍ୱରୂପ ଏଗୁଡ଼ିକ 'ଅର୍ଦ୍ଧ ଦ୍ୱିରାବର୍ତ୍ତୀ ଫଳନ' (କ୍ୱାସି ଡବ୍‌ଲି ପିରିଅଡ଼ିକ୍) ଓ 'ସମ୍ପୂର୍ଣ୍ଣ ଫଳନ' (ଏଣ୍ଟାୟାର୍ ଫଙ୍କସନ୍) ଗୁଣଧର୍ମ ଦେଖାଉଥିଲେ। ଜାକୋବି ପ୍ରଥମେ ଥିଟା ଫଳନ ବିଷୟରେ ବିଶେଷ ଅନୁଧ୍ୟାନ କରିଥିଲେ ଏବଂ ଧୀରେ ଧୀରେ ଗାଣିତିକ ପଦାର୍ଥ ବିଜ୍ଞାନ ଓ ସଂଖ୍ୟାତତ୍ତ୍ୱ ଭଳି ଅନେକ କ୍ଷେତ୍ରରେ ଏହା ଗଭୀର ପ୍ରଭାବ ପକାଇବାକୁ ଲାଗିଲା। ଏହି ବିଷୟରେ ଲେଖା ହୋଇଥିବା ବହିଗୁଡ଼ିକ ଗଣିତର ବିଶାଳ କ୍ଷେତ୍ରକୁ ଛୁଉଁଥିଲା ଏବଂ ଅସମ୍ପର୍କିତ ମନେ ହେଉଥିବା କ୍ଷେତ୍ରଗୁଡ଼ିକ ଭିତରେ ସମ୍ପର୍କ ଦେଖାଇ ପାରୁଥିଲା।

ଥିଟା ଫଳନଗୁଡ଼ିକ ବେଶ୍ ଅନମନୀୟ ବ୍ୟବହାର ଦେଖାଉଥିଲେ। ସେସବୁର ତତ୍ତ୍ୱ ଅନୁମୋଦିତ ରୂପକୁ ଟିକିଏ ଏପଟ ସେପଟ କଲେ ସେଗୁଡ଼ିକର ଆଗ୍ରହଜନକ ଗୁଣ ହଜିଯାଉଥିଲା। ଏପରିକି କିଛି ପଦର ଯୁକ୍ତ ବା ବିଯୁକ୍ତ ଚିହ୍ନକୁ ବଦଳାଇଲେ ମଧ୍ୟ ଫଳନର ଆକର୍ଷଣ ଚାଲି ଯାଉଥିଲା। ଏଲ୍. ଜେ. ରଜର୍ସ ଯେଉଁ ଫଲ୍ସ୍ ଥିଟା ଫଳନଗୁଡ଼ିକ ଆବିଷ୍କାର କରିଥିଲେ ସେଗୁଡ଼ିକ କିଛି ମାତ୍ରାରେ ଆଗ୍ରହଜନକ ଥିଲେ ଏବଂ ପରେ ବିଭାଜନ ସଂଖ୍ୟା ଭଳି କ୍ଷେତ୍ରରେ ବ୍ୟବହୃତ ହେଲେ। କିନ୍ତୁ ପ୍ରକୃତ ଥିଟା ଫଳନ ତୁଳନାରେ ସେଗୁଡ଼ିକ ଖୁବ୍ ନିରସ ଥିଲେ।

ରାମାନୁଜନ୍ ଏବେ ଗୋଟିଏ ନୂଆ ଶ୍ରେଣୀର ଫଳନ ବିଷୟରେ ହାର୍ଡିଙ୍କ ପାଖକୁ ଚିଠି ଲେଖୁଥିଲେ। ଏହି ନୂଆ ଶ୍ରେଣୀର ଫଳନଗୁଡ଼ିକ ଥିଟା ଫଳନ ନ ଥିଲେ, କିନ୍ତୁ ଥିଟା ଫଳନ ସହିତ ତାଙ୍କର ଗୁରୁତ୍ୱପୂର୍ଣ୍ଣ ସାମଞ୍ଜସ୍ୟ ରହିଥିଲା। ଥିଟା ଫଳନ ଭଳି ରାମାନୁଜନ୍ଙ୍କ ନୂଆ ଫଳନ ଶ୍ରେଣୀ ଅତି ଆଗ୍ରହଜନକ ଥିଲା। ସେଗୁଡ଼ିକ ରଜର୍ସ ଅନୁଧ୍ୟାନ କରିଥିବା ଫଲ୍ସ୍ ଥିଟା ଫଳନ ଭଳି ନ

ଥିଲେ, ତେଣୁ ରାମାନୁଜନ୍ ସେଗୁଡ଼ିକୁ ମକ୍-ଥିଟା ଫଳନ ନାଁ ଦେଇଥିଲେ। ପାରମ୍ପରିକ ଥିଟା ଫଳନ ଏକ ପ୍ରକାରର ଅଏଲରୀୟ ରୂପରେ ପ୍ରକାଶିତ କରିହେବ ଯେଉଁଠି $(1-q)$ ବା $(1-q^3)$ ଭଳି ପଦମାନ ହରରେ ଦେଖାଯାଉଥିଲେ। $q$ ର ମୂଲ୍ୟ ଯଦି 1 ହୁଏ ତେବେ $(1-q)$ ବା $(1-q^3)$ ପଦଗୁଡ଼ିକର ମୂଲ୍ୟ ଶୂନ ହେବ ଏବଂ ରାଶିମାଳାର ମୂଲ୍ୟ ଅନିର୍ଣ୍ଣେୟ ହୋଇଯିବ। ତେଣୁ ଏହାର ମୂଲ୍ୟ ପାଇବା ପାଇଁ କିଛି ବିକଳ୍ପ ବାଟ ବାହାର କରିବାକୁ ହେବ। ଦୁଇଟି ଥିଟା ଫଳନର ଉଦାହରଣ ଦେଇ ରାମାନୁଜନ୍ ଲେଖିଥିଲେ, "ଏଭଳି ସିଙ୍ଗୁଲାରିଟି ଅବସ୍ଥାରେ ଫଳନର ଅନନ୍ତସ୍ପର୍ଶୀ ରୂପ କିପରି ସୁନ୍ଦର ଭାବରେ ଆବଦ୍ଧ ଘାତାଙ୍କୀ ରୂପରେ ପ୍ରକାଶିତ ହୋଇପାରିବ ତାହା ଆମେ ଜାଣିଛେ।" ଏହି ପୃଷ୍ଠଭୂମିରେ ସେ ନିଜର ନୂଆ କାମ ବିଷୟରେ ଯୋଡ଼ିଥିଲେ:

> ଏବେ ଗୋଟିଏ ଅତି ଆଗ୍ରହଜନକ ପ୍ରଶ୍ନ ଉଠୁଛି। ଦୁଇଟି ଥିଟା ଫଳନ ସମ୍ପର୍କିତ ଉକ୍ତିର ବିପରୀତ କ'ଣ ଠିକ୍? ମନେକରାଯାଉ ଗୋଟିଏ ଫଳନ ଅଏଲରୀୟ ରୂପରେ ଅଛି ଏବଂ ତା'ର ସବୁ ବିନ୍ଦୁ ବା ଅସୀମ ସଂଖ୍ୟକ ବିନ୍ଦୁ ଘାତାଙ୍କୀ ସିଙ୍ଗୁଲାରିଟି ଅଟନ୍ତି, ଆହୁରି ମଧ୍ୟ ...

ଏହି ଭାବରେ ସେ ତାଙ୍କର ଫଳନର ଗଠନ ବର୍ଣ୍ଣନା କରିଚାଲିଥିଲେ। ଶେଷରେ ସେ କହିଥିଲେ ଯେ ଏଭଳି ସ୍ୱତନ୍ତ୍ର ସର୍ତ୍ତମାନ ପୂରଣ କରୁଥିଲେ ତାହା 'ମକ୍-ଥିଟା ଫଳନ' ଭାବରେ ଗୃହୀତ ହେବ। ଚିଠିରେ ସେ ଅନେକଗୁଡ଼ିଏ ସେଭଳି ଫଳନର ଉଦାହରଣ ଯୋଡ଼ିଲେ - ଚାରିଟି ଘାତ 3 ର ଫଳନ, ଦଶଟି ଘାତ 5 ର ଫଳନ ଏବଂ ଆହୁରି ଅନେକ।

ରାମାନୁଜନ୍‌ଙ୍କ ଚିଠିର ଅନୁଧ୍ୟାନ କରିବାରେ ପ୍ରଥମ ଲୋକଙ୍କ ଭିତରୁ ଜଣେ ଥିଲେ ଜି. ଏନ୍. ୱାଟ୍‌ସନ୍। ଚିଠିର ପ୍ରଥମ ତିନି ପୃଷ୍ଠା ଯେଉଁଥିରେ ରାମାନୁଜନ୍ ମକ୍-ଥିଟା ଫଳନର ବର୍ଣ୍ଣନା ଦେଇଥିଲେ ସେ ବିଷୟରେ ତାଙ୍କର ମତ ଥିଲା ଯେ ତାହା ସ୍ପଷ୍ଟ ନ ଥିଲା। କିନ୍ତୁ ସେହି ଅସ୍ପଷ୍ଟ ଲେଖା ଭିତରେ ଅତି ଗଭୀର ଗାଣିତିକ ତତ୍ତ୍ୱ ଲୁଚି ରହିଥିଲା। ଷୋହଳ ବର୍ଷ ପରେ ଲଣ୍ଡନ ମାଥେମାଟିକାଲ ସୋସାଇଟିର ସଭାପତି ଭାବରେ ୱାଟ୍‌ସନ୍ ତାଙ୍କ ଅଭିଭାଷଣରେ ସେ ବିଷୟରେ ଆଲୋଚନା କରିଥିଲେ ଏବଂ ଆହୁରି କେତେ ଗଣିତଜ୍ଞଙ୍କୁ ତାହା ବର୍ଷ ବର୍ଷ ଧରି ବ୍ୟସ୍ତ ରଖିଥିଲା। ୱାଟ୍‌ସନ୍ ଲେଖିଥିଲେ:

> ମକ୍-ଥିଟା ଫଳନର ଆବିଷ୍କାର ସ୍ପଷ୍ଟ କରିଦିଏ ଯେ ତାଙ୍କର ଜୀବନକାଳ ସରିଆସୁଥିବା ସମୟରେ ମଧ୍ୟ ରାମାନୁଜନ୍‌ଙ୍କ ଦକ୍ଷତା ଓ ବିଚକ୍ଷଣତା ଅତୁଟ ରହିଥିଲା। ଆଗରୁ ସେ କରିଥିବା ଯେ କୌଣସି କାମ ଭଳି ମକ୍-ଥିଟା ଫଳନ କାମ ମଧ୍ୟ ଏକ ମହାନ କୃତି ଥିଲା। ତାଙ୍କୁ ସବୁଦିନ ପାଇଁ ସ୍ମରଣୀୟ କରି ରଖିବା ପାଇଁ ଏହା ଯଥେଷ୍ଟ ଥିଲା। ତାଙ୍କର କାମକୁ ଅଧ୍ୟୟନ କରୁଥିବା ବ୍ୟକ୍ତିମାନଙ୍କ ପାଇଁ ତାହା ଆନନ୍ଦ ଓ ବିସ୍ମୟର ଉତ୍ସ ହୋଇରହିବ ସେହି ସମୟ ଯାଏଁ ଯେବେ ଆମେ ମଧ୍ୟ କାଳର ଗର୍ଭରେ ହଜିଯିବା।

ମୃତ୍ୟୁର ମାତ୍ର କେତେ ମାସ ଆଗରୁ ରାମାନୁଜନ୍‌ଙ୍କର ଗାଣିତିକ ସୃଜନଶୀଳତାର ଉଦ୍‌ବେଳନ ବିଷୟରେ ଆଲୋଚନା କଲାବେଳେ ୱାଟ୍‌ସନ୍ କହିଥିଲେ ଯେ ମକ୍-ଥିଟା ଫଳନ ଥିଲା ରାମାନୁଜନ୍‌ଙ୍କର 'ଅନ୍ତିମ ସମସ୍ୟା'।

ଭାରତରେ କଟାଇଥିବା ସେହି ବର୍ଷରେ ରାମାନୁଜନ୍ ମକ୍-ଥିଟା ଫଳନ, କ୍ୟୁ-ଶ୍ରେଣୀ, ଓ ଅନ୍ୟ ସମ୍ପର୍କିତ ବିଷୟ ଉପରେ କାମ ଚଳାଇଥିଲେ ଏବଂ ପୃଷ୍ଠା ପରେ ପୃଷ୍ଠା ଉପପାଦ୍ୟ ଓ ହିସାବରେ ଭରି ଚାଲିଥିଲେ। ଜଣେ ହିସାବ କରିଥିଲେ ଯେ ସେହି ପୃଷ୍ଠାଗୁଡ଼ିକରେ ମୋଟରେ ପ୍ରାୟ 650ଟି ସୂତ୍ର ରହିଥିଲା। ପଚାଶ ବର୍ଷ ପରେ ଆମେରିକୀୟ ଗଣିତଜ୍ଞ ଜର୍ଜ ଆଣ୍ଡ୍ରିଉଜ୍ ସେହି ସୂତ୍ରଗୁଡ଼ିକୁ ଅନୁଧ୍ୟାନ କରିବାରେ ଲାଗିଲେ। ସେସବୁର ମହାନତା ତାଙ୍କୁ ଅତି ମାତ୍ରାରେ ବିସ୍ମିତ କଲା। ସେହି ଫଳାଫଳ ଭିତରେ ଅନେକ ଅପ୍ରତ୍ୟାଶିତ କଥା ଲୁଚି ରହିଥିଲା। କେହି କିପରି ସେସବୁ ଭାବିପାରିଛି ତାହା ତାଙ୍କୁ ଅତି ରହସ୍ୟମୟ ମନେହେଲା। ପ୍ରାୟ ଏକା ଭଳି ଦେଖାଯାଉଥିବା ପାଞ୍ଚଟି ସୂତ୍ରର ଦଳ ବିଷୟରେ ସେ କହିଥିଲେ, "ଗଣିତରେ ତାଲିମ ପାଇଥିଲେ ମଧ୍ୟ ବିଶେଷଜ୍ଞ ହୋଇ ନ ଥିଲେ ଜଣେ ସେହି ସୂତ୍ରଗୁଡ଼ିକ ଭିତରେ ପ୍ରଭେଦ ଧରିପାରିବନାହିଁ। ପ୍ରଥମଟି ପ୍ରମାଣ କରିବା ପାଇଁ ମତେ ପନ୍ଦର ମିନିଟ ଲାଗିଲା, ଦ୍ୱିତୀୟଟି ପାଇଁ ଲାଗିଲା ଘଣ୍ଟାଏ। ଚତୁର୍ଥ ସମସ୍ୟା ଦ୍ୱିତୀୟରୁ ବାହାରିଥିଲା। କିନ୍ତୁ ତୃତୀୟ ଓ ପଞ୍ଚମର ପ୍ରମାଣ ପାଇଁ ମତେ ତିନି ମାସ ଲାଗିଗଲା।"

ରାମାନୁଜନ୍‌ଙ୍କ ଜୀବନର ଶେଷ ବର୍ଷର କାମ ଯକ୍ଷ୍ମା ରୋଗ ବିଷୟରେ ରହିଥିବା ଗୋଟିଏ ପୁରୁଣା ବିଶ୍ୱାସ ପ୍ରତି ସମର୍ଥନ ଯୋଗାଉଥିବା ଭଳି ମନେହୁଏ। ସେହି ବିଶ୍ୱାସ ଅନୁସାରେ ମୃତ୍ୟୁ ପାଖେଇ ଆସିଲା ବେଳକୁ ଯକ୍ଷ୍ମା ରୋଗୀର ସୃଜନଶୀଳତା ଅତି ମାତ୍ରାରେ ବଢ଼ିଯାଏ ଏବଂ ମୃତ୍ୟୁର ଠିକ୍ ପୂର୍ବରୁ ସୃଜନଶୀଳତାର ଯେଉଁ ତୀବ୍ର ପ୍ରବାହ ଦେଖାଯାଏ ତାହା ସାଧାରଣ ସମୟରେ ସମ୍ଭବ ହୋଇ ନ ଥାଏ। ଆଧୁନିକ ସମୟରେ ଏହି ବିଶ୍ୱାସ ଭିତ୍ତିହୀନ ବୋଲି ପ୍ରତ୍ୟାଖ୍ୟାତ ହୋଇଛି, କିନ୍ତୁ ରାମାନୁଜନ୍‌ଙ୍କ ଶେଷ ସମୟରେ ଏହା ପ୍ରଚଳିତ ଥିଲା। ସେହି ସମୟର ବିବରଣୀରେ ପି. ଭି. ଶେଷୁ ଆୟାର ଲେଖିଥିଲେ, "ସେହି ଅଶୁଭକର ଦିନଗୁଡ଼ିକରେ ବାହାରିଥିବା ରାମାନୁଜନ୍‌ଙ୍କର ଗବେଷଣାର ଫଳାଫଳ ଅନ୍ୟ ସମୟ ତୁଳନାରେ ଅଧିକ ମୂଲ୍ୟବାନ ଓ ଅନ୍ତର୍ଦୃଷ୍ଟିସମ୍ପନ୍ନ। ତାଙ୍କର ସ୍ଥୂଳ ଶରୀର ଯେ ଶିଥିଳ ହେଉଥିଲା ସେଥିରେ ସନ୍ଦେହ ନାହିଁ, କିନ୍ତୁ ସେହି ଅନୁପାତରେ ତାଙ୍କର ବୌଦ୍ଧିକ ଶକ୍ତି ତୀକ୍ଷ୍ଣତର ଓ ତୀବ୍ରତର ହେଉଥିଲା।"

ଅନ୍ୟମାନେ କିନ୍ତୁ ଭିନ୍ନ ମତ ପୋଷଣ କରୁଥିଲେ। ଏହିଭଳି ଯୁକ୍ତିଯୁକ୍ତ ମତ ଭିତରୁ ଜର୍ଜ ଆଣ୍ଡ୍ରିଉଜ୍‌ଙ୍କର ମତ ଗୋଟିଏ ଥିଲା। ସେ କହିଥିଲେ ଯେ ରାମାନୁଜନ୍‌ଙ୍କ ପାଖରେ ତୀକ୍ଷ୍ଣ ଅନ୍ତର୍ଦୃଷ୍ଟି ଓ ବଳିଷ୍ଠ ଚିନ୍ତା ଶକ୍ତି ଯୁବାବସ୍ଥାରୁ ରହିଥିଲା। ଏବେ ସେ ହାର୍ଡିଙ୍କ ଏବଂ ଅନ୍ୟ ଇଂରେଜ ଗଣିତଜ୍ଞଙ୍କ ସଂସ୍ପର୍ଶରେ ଆସିବା ସହିତ ଆଧୁନିକ ଗଣିତର ବିଭିନ୍ନ ଧାରା ଉପରେ ଦକ୍ଷତା ହାସଲ କରିଥିଲେ। ତେଣୁ ଆଗକୁ ତାଙ୍କର କାମ ଯେ ଗଭୀରତର ହେବ ତାହା ସ୍ୱାଭାବିକ ଭାବରେ ଆଶା କରାଯାଉଥିଲା। ତାଙ୍କୁ ଜାଣିଥିବା ଗଣିତଜ୍ଞମାନେ ବିଶ୍ୱାସ କରୁଥିଲେ ଯେ ରାମାନୁଜନ୍ ଏବେ ତାଙ୍କ ଦକ୍ଷତାର ଶୀର୍ଷ ସ୍ଥାନରେ ପହଞ୍ଚିବେ। ଏବଂ ଜୀବନର ଶେଷ ବର୍ଷର କାମକୁ ଧରିରଖିଥିବା ନୋଟ ଖାତା ଏହି ବିଶ୍ୱାସ ସପକ୍ଷରେ ପ୍ରମାଣ ଦେଉଥିଲା।

1920 ମସିହାର ଶୀତ ଋତୁ ସରି ଆସିଲା ବେଳକୁ ରାମାନୁଜନ୍ ରହୁଥିବା ଘର ବିଷୟରେ ଅଭିଯୋଗ କଲେ ଯେ 'କ୍ରାଇନାଣ୍ଟ' ନାମକ ସେହି ଘରର ନାଁରେ ଥିବା 'କ୍ରାଇ' ଅଶୁଭ ମନେହେଉଛି।

କୋମଲତାମ୍ମାଲ୍ ଘରର ମାଲିକ ନାମ୍ବୁରମାଲ୍ ଚେଟ୍ଟିଙ୍କ ପାଖକୁ ଯାଇ, ପ୍ରକୃତ କାରଣ ନ କହି, ଗୋଟିଏ ଅନ୍ୟ ଘର ପାଇଁ ଅନୁରୋଧ କଲେ। ସାର୍ ଫ୍ରାନ୍‌ସିସ୍‌ଙ୍କ ବନ୍ଧୁ ନାମ୍ବୁରମାଲ୍ 'ଗୋମେତ୍ର' ନାମକ ଘର ତାଙ୍କ ପାଇଁ ଯୋଗାଇ ଦେଲେ। ସେହି ଘରେ ଆଗରୁ ରହୁଥିବା କେଉଁ ଇଂରେଜ 'ଗୋମିତ୍ର' ନାଁକୁ ଏହି ଭାବରେ ଲେଖିଥିଲେ।

ସେହି ଘରଟି ବେଶ୍ ବଡ଼ ଥିଲା ଏବଂ ଅସଂଖ୍ୟ ଦ୍ୱାର ଥିବାରୁ ଖୋଲା ମନେ ହେଉଥିଲା। ରାମାନୁଜନ୍ ପ୍ରଥମେ ବାହାର ପାଖକୁ ଥିବା ଗୋଟିଏ ବଡ଼ ଖୋଲା କୋଠରିରେ ରହୁଥିଲେ। କିନ୍ତୁ ପରେ ଘରର ଭିତର ଆଡ଼କୁ ଥିବା ଗୋଟିଏ ଛୋଟ କୋଠରିରେ ରହିଲେ। ପଥର ଚଟାଣ ଉପରେ ପଡ଼ିଥିବା ଗଦି ଉପରେ ସେ ପ୍ରାୟ ଶୋଇ ରହୁଥିଲେ ଏବଂ ଛାତକୁ ଚାହିଁ ରହୁଥିଲେ। ଆସୁଥିବା ଲୋକମାନେ ବିଶୃଙ୍ଖଳା ସୃଷ୍ଟି ନ କରିବା ଦିଗରେ ବିଶେଷ ଧ୍ୟାନ ଦେଉଥିଲେ। ରାମାନୁଜନ୍‌ଙ୍କ ସାଙ୍ଗରେ ଆଗରୁ ଖେଳକୁଦ କରୁଥିବା ଓ ତାଙ୍କଠାରୁ ଗପ ଶୁଣୁଥିବା ସାନ ଭାଇ ତିରୁନାରାୟଣନ୍ ଏବେ ଦେଖୁଥିଲେ ଯେ ଭାଇଙ୍କ ପାଖକୁ ଯିବା ପାଇଁ ତାଙ୍କୁ ବାଧା ଦିଆଯାଉଛି। ରାମାନୁଜନ୍‌ଙ୍କୁ କେହି ଯେପରି ବିରକ୍ତ ନ କରନ୍ତି ସେଥିପାଇଁ ସବୁ ପ୍ରକାରର ବ୍ୟବସ୍ଥା କରାଯାଉଥିଲା।

ତଥାପି ରାମାନୁଜନ୍ ତାଙ୍କ ଚାରିପାଖରେ ଖେଳୁଥିବା ଉତ୍କଣ୍ଠା ବିଷୟରେ ନିଶ୍ଚୟ ସଚେତନ ଥିବେ। ପରିବାରର ସମସ୍ତେ ଅତି ଅସ୍ଥିର ମନରେ ଥିଲେ। ରୁଗ୍‌ଣ ରାମାନୁଜନ୍ ଅସୁଖୀ ଅନୁଭବ କରୁଥିଲେ ଏବଂ ହଠାତ୍ ରାଗିଯାଇ ପାଟି କରୁଥିଲେ। ପରିସ୍ଥିତିକୁ ଏହା ଆହୁରି ଶୋଚନୀୟ କରିଦେଉଥିଲା। ଜାନକୀ ଓ କୋମଲତାମ୍ମାଲ୍‌ଙ୍କ ଭିତରେ କଳହ ବଢୁଥିଲା ଏବଂ ରାମାନୁଜନ୍‌ଙ୍କ ସେବାରେ ଯେଉଁ ଶକ୍ତି ଲାଗିପାରୁଥା'ନ୍ତା ତାହା ବିବାଦରେ କ୍ଷୟ ହେଉଥିଲା।

ମାର୍ଚ୍ଚ ମାସରେ କୋମଲତାମ୍ମାଲ୍ ପି. ଭି. ଶେଷୁ ଆୟାରଙ୍କ ସୁପାରିଶ ପତ୍ର ଧରି ଜଣେ ଅତି ବିଖ୍ୟାତ ଜ୍ୟୋତିଷୀ ଜି. ଭି. ନାରାୟଣସ୍ୱାମୀ ଆୟାରଙ୍କ ପାଖକୁ ଗଲେ ଏବଂ ପରିଚୟ ନ ଦେଇ ରାମାନୁଜନ୍‌ଙ୍କ ଜାତକ ଦେଖାଇଲେ। ତାକୁ ପରୀକ୍ଷା କରି ଜ୍ୟୋତିଷୀ ମହାଶୟ କହିଲେ ଯେ ତାହା ହେଉଛି ଏପରି ଜଣେ ବ୍ୟକ୍ତିଙ୍କର ଯିଏ ଅଳ୍ପଦିନ ବଞ୍ଚିବେ କିନ୍ତୁ ସାରା ବିଶ୍ୱରେ ବିଖ୍ୟାତ ହେବେ କିମ୍ବା ଯିଏ ବହୁତ ଦିନ ପାଇଁ ବଞ୍ଚିବେ, କିନ୍ତୁ ଅଜଣା ଅଶୁଣା ହୋଇ ରହିବେ।

ରାମାନୁଜନ୍‌ଙ୍କ ମା' ତାଙ୍କୁ ରାମାନୁଜନ୍‌ଙ୍କ ଜାତକ ଦେଖାଉଥିବା କଥା ଜାଣିବା ପରେ ଜ୍ୟୋତିଷୀ ଜଣକ ଅପ୍ରସ୍ତୁତ ହୋଇଗଲେ ଏବଂ ପରିସ୍ଥିତିକୁ ସୁଧାରିବା ପାଇଁ ବାଟ ଖୋଜିଲେ। ଶେଷରେ ସେ ଜାନକୀଙ୍କର ଜାତକ ମଧ୍ୟ ପରୀକ୍ଷା କଲେ ଏବଂ କହିଲେ ଯେ କିଛିଦିନ ପାଇଁ ସେ ଦୁହେଁ ଅଲଗା ରହିଲେ ହୁଏତ କିଛି ଲାଭ ମିଳିପାରେ। କିନ୍ତୁ କୋମଲତାମ୍ମାଲ ଜାଣିଥିଲେ ଯେ ମା'ଙ୍କ କଥା କେବେ ବି ଭାଙ୍ଗୁ ନ ଥିବା ରାମାନୁଜନ୍ ଜାନକୀଙ୍କୁ ପାଖରେ ରଖିବା ବିଷୟରେ ଅଟଳ।

ଅନେକ ରୋଗୀ ଶେଷ ଅବସ୍ଥାରେ ମଧ୍ୟ ବଞ୍ଚିରହିବାର ଆଶାକୁ ଧରିରଖିଥା'ନ୍ତି। କିନ୍ତୁ ରାମାନୁଜନ୍‌ଙ୍କ ମନରେ ସେଭଳି ଅଯଥା ବିଶ୍ୱାସ ନ ଥିଲା। ଶେଷ କେତେ ମାସରେ ଡାକ୍ତରମାନଙ୍କୁ ସେ କହୁଥିଲେ ଯେ ବଞ୍ଚିବା ପାଇଁ ଆଉ ତାଙ୍କର ଇଚ୍ଛା ନାହିଁ। ଆଗରୁ ଅବଶ୍ୟ ସେ ବିଶ୍ୱବିଦ୍ୟାଳୟକୁ ଲେଖିଥିଲେ ଯେ ସୁସ୍ଥ ହେବା ପରେ ସେ ଅଧ୍ୟାପକ ପଦବୀ ଗ୍ରହଣ କରିବେ। ଜାନୁଆରି ବେଳକୁ ମଧ୍ୟ ସେ ଆଶା ଛାଡ଼ି ନ ଥିଲେ। ହାର୍ଡିଙ୍କ ପାଖକୁ ମକ୍-ଥିଟା ଫଳନ ବିଷୟରେ ଲେଖିଲା ବେଳେ

ସେ କିଛି ଗଣିତ ପତ୍ରିକାର ଗ୍ରାହକ ହେବାର ଇଛା ଜଣାଇଥିଲେ।

କିନ୍ତୁ ରାମାନୁଜନ୍‌ଙ୍କର ମଧ୍ୟ ଏକ ଅନ୍ଧବିଶ୍ୱାସୀ ଦିଗ ରହିଥିଲା, ଯାହା ପରିସ୍ଥିତି ବିଷୟରେ ତାଙ୍କୁ ଏକ ନୈରାଶ୍ୟଜନକ, କିନ୍ତୁ ସଠିକ, ଚିତ୍ର ଦେଉଥିଲା। ଅନେକ ଦିନ ତଳୁ ସେ ନିଜର ଜାତକ ନିଜେ ପରୀକ୍ଷା କରି ଆସନ୍ନ ମୃତ୍ୟୁ କଥା କହିଥିଲେ। ଚେତ୍‌ପୁଟ୍‌ରେ ରହିବାକୁ ଆସିଲା ବେଳେ ଥଟ୍ଟାରେ ସେ କହିଥିଲେ ଯେ ଏବେ ମୃତ୍ୟୁ 'ଚଟ୍-ପଟ୍' ଆସିବ।

ଏହି ସମୟରେ ସେ ଜାନକୀଙ୍କର ଅତି ନିକଟ ହୋଇପାରିଥିଲେ। ରାଗରେ ତାଙ୍କୁ ପାଟିକରୁ ନ ଥିଲା ବେଳେ ଜାନକୀଙ୍କ ପ୍ରତି ତାଙ୍କର ବ୍ୟବହାର ଉଷ୍ମ ଓ ହାଲୁକା ଥିଲା। ଜାନକୀ କହିଥିଲେ, "ସେ ମୋ ପ୍ରତି ପ୍ରାୟ ସବୁବେଳେ ସଦୟ ରହୁଥିଲେ। ତାଙ୍କର କଥାବାର୍ତ୍ତାରେ ଥଟ୍ଟାମଜା ରହୁଥିଲା।" ଜାନକୀଙ୍କ ମନକୁ ହାଲୁକା କରିବା ପାଇଁ ସେ ଇଂଲଣ୍ଡରେ ତାଙ୍କର ଅନୁଭୂତି ବିଷୟରେ କହୁଥିଲେ।

ଧୀରେ ଧୀରେ ତାଙ୍କ ମନ ଛୋଟ ଛୋଟ ନିତିଦିନିଆ କଥାରେ ସୀମିତ ରହିଲା। ଦରକାର ପଡ଼ିଲେ ଗୋଟିଏ ଛୋଟ ଘଣ୍ଟି ବଜାଇ ସେ ଜାନକୀଙ୍କୁ ଡାକୁଥିଲେ। ବର୍ତ୍ତମାନର ଦୁଃଖ ଓ ହତାଶାକୁ ସେ ତାଙ୍କର ପୁରୁଣା ଶାନ୍ତ ସ୍ୱଭାବ ତଳେ ଯଥାସମ୍ଭବ ଲୁଚାଇ ରଖିବାକୁ ଚେଷ୍ଟା କରୁଥିଲେ। ତଥାପି ଅଧିକାଂଶ ସମୟରେ ସେ ରାଗରୋଷରେ ବୁଡ଼ି ରହୁଥିଲେ। ତାଙ୍କର ମନ ଅତି ଅସ୍ଥିର ଅବସ୍ଥାରେ ରହୁଥିଲା ଏବଂ ସାମାନ୍ୟ କଥାରେ ସେ ରାଗି ଉଠୁଥିଲେ। ଜାନକୀ ପରେ ବୁଝିଲେ ଯେ ରୋଗ ତାଙ୍କର ମନକୁ ପ୍ରଭାବିତ କରିଛି। ଆଗରୁ ଅବଶ୍ୟ ଇଂଲଣ୍ଡରେ ହାର୍ଡି ଏକଥା ବୁଝିଥିଲେ, ଭାରତ ଫେରିବା ପରେ ରାମାନୁଜନ୍‌ଙ୍କ ସାଙ୍ଗମାନେ ମଧ୍ୟ ତାହା ଜାଣୁଥିଲେ।

ରେଳ ଷ୍ଟେସନ୍‌ରେ ରାମାନୁଜନ୍‌ଙ୍କ ଶୀତଳ ବ୍ୟବହାରରେ ବିବ୍ରତ ଅନୁଭବ କରିଥିବା ସାଙ୍ଗ ନରସିଂହ ଆୟେଙ୍ଗାର ଏବେ ରାମାନୁଜନ୍‌ଙ୍କୁ ଦେଖିବାକୁ ଆସିଲେ। ତାଙ୍କର ପ୍ରତିକ୍ରିୟା ଥିଲା, "ମୋ ପାଇଁ ତାଙ୍କର ସେହି ଅବସ୍ଥା ଦେଖିବା ଅତି ଦୁଃଖର କଥା ଥିଲା। ଦେହରେ ପ୍ରାଣ ରହିଥିଲେ ମଧ୍ୟ ମନରେ ସେ ଏ ଦୁନିଆ ପାଇଁ ମରିସାରିଥିଲେ। ଏକଦା ତାଙ୍କର ଘନିଷ୍ଠ ସାଙ୍ଗମାନଙ୍କ ପାଇଁ ମଧ୍ୟ ଏପରି ମନେ ହେଉଥିଲା।"

ଆହୁରି ପରେ ତାଙ୍କ ଦେହରେ କେବଳ ହାଡ଼ ଓ ଚମ ରହିଥିବା ଭଳି ମନେ ହେଉଥିଲା ବୋଲି ଜାନକୀ ମନେପକାଉଥିଲେ। ଗୋଡ଼ରେ ଓ ଛାତିରେ ଅତିଶୟ କଷ୍ଟର ଅଭିଯୋଗ ମଧ୍ୟ ସେ କରୁଥିଲେ। ତାହା କମାଇବା ପାଇଁ ଜାନକୀ ଉଷୁମ ସେକ ଦେଉଥିଲେ। ଜର ଓ କଷ୍ଟ, ପାରିବାରିକ ବିବାଦ ଓ ନିଜର ଅଶାନ୍ତ ମନ ସତ୍ତ୍ୱେ ରାମାନୁଜନ୍ ବିଛଣାରେ ଶୋଇରହି, ତକିଆ ସାହାଯ୍ୟରେ ମୁଣ୍ଡକୁ ଟେକି ରଖି ଗଣିତ କାମ କରୁଥିଲେ। ତାଙ୍କର ମାଗିବା ଅନୁସାରେ ଜାନକୀ ସିଲଟ, କାଗଜ ଆଦି ଯୋଗାଇ ଦେଉଥିଲେ ଏବଂ ରାମାନୁଜନ୍ ସିଲଟରେ ହିସାବ ସାରି କାଗଜରେ ଲେଖିଲା ପରେ ଜାନକୀ ସେସବୁକୁ ଏକାଠି କରି ଚମଡ଼ା ଟ୍ରଙ୍କରେ ରଖୁଥିଲେ। ଜାନକୀ କହୁଥିଲେ, "ଘରକୁ ଆସୁଥିବା ଲୋକଙ୍କ ସାଙ୍ଗରେ ସେ କଥାବାର୍ତ୍ତା କରୁ ନ ଥିଲେ। ସବୁବେଳେ କେବଳ ଗଣିତ...। ମୃତ୍ୟୁର ଚାରି ଦିନ ପୂର୍ବ ଯାଏଁ ସେ କାଗଜରେ ଗାରଉଥିଲେ।"

1920 ମସିହା ଏପ୍ରିଲ 26 ଦିନ ଭୋରରେ ରାମାନୁଜନ୍ ଚେତାଶୂନ୍ୟ ହୋଇପଡ଼ିଲେ। ଦୁଇ ଘଣ୍ଟା ଧରି ଜାନକୀ ତାଙ୍କ ପାଖରେ ବସି ତାଙ୍କ ପାଟିରେ ପାଣିଆ କ୍ଷୀର ଦେବାର ଚେଷ୍ଟା ଚଳାଇ

ରଖିଲେ। ରାତି ପାହିବାର ଅଳ୍ପ ସମୟ ପରେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା। ଶେଷ ବେଳକୁ ତାଙ୍କ ପାଖରେ ସ୍ତ୍ରୀ, ବାପା ମା', ଦୁଇ ଭାଇ ଏବଂ ଅଳ୍ପ କେତେଜଣ ସାଙ୍ଗ ଉପସ୍ଥିତ ଥିଲେ। ସେତେବେଳକୁ ତାଙ୍କର ବୟସ ହୋଇଥିଲା ବତିଶ ବର୍ଷ।

ଚେତ୍‌ପୁଟ୍ ପାଖରେ ଏକ ଶ୍ମଶାନରେ ସେହି ଦିନ ତାଙ୍କ ଶେଷକୃତ୍ୟ ସମ୍ପନ୍ନ ହୋଇଥିଲା। କିନ୍ତୁ ନୈଷ୍ଠିକ ବ୍ରାହ୍ମଣମାନେ ସେଥିରୁ ଦୂରେଇ ରହିଥିଲେ। ରାମାନୁଜନ୍ ଦରିଆପାରି ହୋଇଥିଲେ, ଫେରିବା ପରେ ଅତି ରୁଗ୍‌ଣ ଥିବାରୁ ପ୍ରାୟଶ୍ଚିତ ପାଇଁ ରାମେଶ୍ୱରମ୍ ଯାଇପାରି ନ ଥିଲେ। ତେଣୁ ବ୍ରାହ୍ମଣ ସମାଜର ଦୃଷ୍ଟିରେ ତଥାପି ସେ କଳଙ୍କିତ ଥିଲେ। ରାମଚନ୍ଦ୍ର ରାଓ ତାଙ୍କର ଜାମାତା ଓ ପୁତୁରା ରାମାନୁଜନ୍‌ଙ୍କ ସାଙ୍ଗ ରାଜଗୋପାଳଚାରୀଙ୍କ ଜରିଆରେ ଶବଦାହର ବ୍ୟବସ୍ଥା କରାଇଥିଲେ।

ତା'ପର ଦିନ ସରକାରୀ ନଥିରେ କ୍ରମିକ ସଂଖ୍ୟା 2284ରେ ରାମାନୁଜନ୍‌ଙ୍କ ମୃତ୍ୟୁ ଦରଜ କରାଯାଇଥିଲା।

## 4. ଭାରତର ସନ୍ତାନ

ଜ୍ୟୋତିଃପଦାର୍ଥ ବିଜ୍ଞାନୀ ସୁବ୍ରମନ୍ୟନ୍ ଚନ୍ଦ୍ରଶେଖର ସେତେବେଳେ ଉତ୍ତର ଭାରତର ଅଂଶ ଥିବା ଲାହୋରଠାରେ ବଢ଼ିଥିଲେ ଏବଂ ଆଠ ବର୍ଷ ବୟସରେ ସେ ମାନ୍ଦ୍ରାଜ ଆସିଥିଲେ। ସମୟକ୍ରମେ ସେ ପ୍ରେସିଡେନ୍‌ସି କଲେଜରେ ପଢ଼ିଲେ ଏବଂ କେମ୍ବ୍ରିଜର ଟ୍ରିନିଟି କଲେଜକୁ ଗଲେ। ସେଠାରେ ସେ ହାର୍ଡିଙ୍କୁ ଭେଟିଥିଲେ। ଆହୁରି ପରେ ଜ୍ୟୋତିର୍ବିଜ୍ଞାନ କ୍ଷେତ୍ରରେ ବିଶେଷ ଗବେଷଣା କରି 1983 ମସିହାରେ ନୋବେଲ ପୁରସ୍କାର ପାଇଲେ। କୃଷ୍ଣଗର୍ତ୍ତର ତାତ୍ତ୍ୱିକ ପୃଷ୍ଠଭୂମିର ଅବଧାରଣା ସେ ପ୍ରଥମେ ଦେଇଥିଲେ ଏବଂ ତାହା ସହିତ ତାଙ୍କ ନାଁ ସବୁଦିନ ପାଇଁ ଯୋଡ଼ା ହୋଇରହିଛି। 1920 ମସିହାରେ ସେ ମାତ୍ର ନ' ବର୍ଷ ବୟସର ହୋଇଥିଲେ। ତଥାପି ତାଙ୍କର ସ୍ୱଷ୍ଟ ଭାବରେ ମନେଥିଲା ଯେ ଏପ୍ରିଲ ମାସ ଶେଷ ବେଳକୁ ଦିନେ ତାଙ୍କ ମା' ରାମାନୁଜନ୍‌ଙ୍କ ମୃତ୍ୟୁ ବିଷୟରେ ଖବର କାଗଜରୁ ଜାଣିବାକୁ ପାଇଲେ ଓ ଚନ୍ଦ୍ରଶେଖରଙ୍କୁ ସେକଥା କହିଥିଲେ। ପ୍ରାୟ ସତୁରି ବର୍ଷ ପରେ ଚନ୍ଦ୍ରଶେଖର ତାଙ୍କର ଆମେରିକୀୟ ଶ୍ରୋତାମାନଙ୍କୁ କହିଥିଲେ:

> ରାମାନୁଜନ୍ କି ପ୍ରକାରର ଗଣିତଜ୍ଞ ଥିଲେ ବା ବୈଜ୍ଞାନିକ କୃତି ଜିନିଷଟା କ'ଣ ଥିଲା ସେ ବିଷୟରେ ମୋର କିଛି ବି ଧାରଣା ନ ଥିଲା। କିନ୍ତୁ ଗୋଟିଏ କଥା ପାଇଁ ଖୁସି ହୋଇଥିଲି - ମୋ ଭଳି ପରିସ୍ଥିତିରେ ବଢ଼ିଥିବା କେହି ଜଣେ ମୋର ଧାରଣା ବାହାରେ ଥିବା ଉଚ୍ଚ କୃତିତ୍ୱ ଦେଖାଇ ପାରିଛି।
>
> ରାମାନୁଜନ୍‌ଙ୍କ ଯୁବାବସ୍ଥା ବିଜ୍ଞାନ ଦୃଷ୍ଟିରୁ ନିଷ୍ଫଳା ପରିବେଶରେ କଟିଥିଲା, ଭାରତରେ ତାଙ୍କ ଜୀବନ କଷ୍ଟକର ଥିଲା, ଅଧିକାଂଶ ଭାରତୀୟଙ୍କୁ ଅଲୌକିକ ମନେ ହେଉଥିବା ଘଟଣାଚକ୍ରରେ ସେ କେମ୍ବ୍ରିଜ ଯାଇଥିଲେ, ସେଠାରେ ବିଶିଷ୍ଟ ଗଣିତଜ୍ଞମାନଙ୍କ ସମର୍ଥନ ଓ ସାହଚର୍ଯ୍ୟ ପାଇଥିଲେ ଏବଂ ଭାରତକୁ ଫେରିବା ବେଳକୁ ସମସ୍ତଙ୍କର ହୃଦବୋଧ ହୋଇଥିଲା ଯେ ଯଥା ସମୟରେ ସେ ଏହି ଶତାବ୍ଦୀର ସବୁଠାରୁ ବେଶି ମୌଳିକତା ଦେଖାଇଥିବା ଗଣିତଜ୍ଞଙ୍କ ଭିତରୁ ଜଣେ ଭାବରେ ଗଣାହେବେ। ନିଜର ସୀମିତ ବୌଦ୍ଧିକ ପରିବେଷ୍ଟନୀକୁ ଡେଇଁ ରାମାନୁଜନ୍‌ଙ୍କ ଭଳି ଉପରକୁ ଉଠିବା ଦିଗରେ କୌଣସି ଉଚ୍ଚାକାଂକ୍ଷୀ ଭାରତୀୟ ଛାତ୍ରକୁ ଉଦ୍‌ବୁଦ୍ଧ କରିବା ପାଇଁ ଏହିସବୁ କଥା ଯଥେଷ୍ଟ, ଯଥେଷ୍ଟରୁ ଅଧିକ ଥିଲା।

ଆଉ ଥରେ ସୁବ୍ରମନ୍ୟନ୍ କହିଥିଲେ, "1920 ମସିହା ବେଳର ଭାରତରେ ଆମେ ମହାତ୍ମା ଗାନ୍ଧି, ନେହରୁ, ରବୀନ୍ଦ୍ରନାଥ ଠାକୁର ଓ ରାମାନୁଜନ୍ଙ୍କୁ ନେଇ ଗର୍ବିତ ହେଉଥିଲୁ। ଆମେ ଗର୍ବ କରୁଥିଲୁ ଯେ ପୃଥିବୀର ଅନ୍ୟ କୌଣସି ଜାଗାରେ ହେଉଥିବା କାମର ସମକକ୍ଷ କାମ ଆମେ କରିପାରିବୁ।" ଭାରତୀୟ ଗଣିତ କ୍ଷେତ୍ରରେ ରାମାନୁଜନ୍ଙ୍କ ପ୍ରଭାବ ଆହୁରି ଗଭୀର ଥିଲା। ଚନ୍ଦ୍ରଶେଖର କହିଥିଲେ, "ଏହା କହିଲେ ଅନ୍ୟାୟ ହେବନାହିଁ ଯେ ରାମାନୁଜନ୍ଙ୍କ ପରେ ତିନି ଚାରି ଦଶନ୍ଧି ଭିତରେ ଗଣିତ କ୍ଷେତ୍ରରେ ବିଶେଷ ଦକ୍ଷତା ଦେଖାଇଥିବା ଭାରତୀୟ ଗଣିତଜ୍ଞମାନେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ତାଙ୍କର ଉଦାହରଣ ଦ୍ୱାରା ଉଦ୍‌ବୁଦ୍ଧ ହୋଇଥିଲେ।" ପ୍ରେସିଡେନ୍‌ସି କଲେଜର ଜଣେ ବିଚକ୍ଷଣ ଗଣିତ ଛାତ୍ର ଟି. ବିଜୟରାଘବନ୍ ଅବିକଳ ଭାବରେ ରାମାନୁଜନ୍ଙ୍କୁ ଅନୁସରଣ କରିବା ଲକ୍ଷ୍ୟରେ ଜାଣିଶୁଣି କଲେଜ ପଢ଼ାରେ ଅବହେଳା କରିଥିଲେ ଓ ପରୀକ୍ଷାରେ ଫେଲ୍ ହୋଇଥିଲେ।

ମୃତ୍ୟୁ ପରେ ରାମାନୁଜନ୍ଙ୍କ ପ୍ରଭାବ ଭାରତରେ ଅନେକ ବର୍ଷ ଯାଏଁ ଅନୁଭୂତ ହୋଇଥିଲା। ରାମାନୁଜନ୍ଙ୍କ ଜୀବନର ଶେଷ ବର୍ଷର କଷ୍ଟକର ଅନୁଭୂତି ପରେ ତାଙ୍କ ପରିବାର ନିତିଦିନିଆ ଜଞ୍ଜାଳରେ ବୁଡ଼ି ରହିଥିଲେ। ତଥାପି ସେମାନେ ରାମାନୁଜନ୍ଙ୍କ ଅଭାବ ତୀବ୍ର ଭାବରେ ଅନୁଭବ କରୁଥିଲେ।

ରାମାନୁଜନ୍ଙ୍କ ଜୀବନର ଶେଷ କେତେ ମାସ ପାଇଁ ଡାକ୍ତର ଚନ୍ଦ୍ରଶେଖର ତାଙ୍କ ଚିକିତ୍ସା ଦାୟିତ୍ୱ ନେଇଥିଲେ। 1930 ଦଶକରେ ରାମାନୁଜନ୍ଙ୍କର ଜଣେ ପୁରୁଣା ସାଙ୍ଗ ତାଙ୍କୁ ପଚାରିଥିଲେ ରାମାନୁଜନ୍ଙ୍କୁ ବଞ୍ଚାଇବା ପାଇଁ ଆଉ କିଛି କରାଯାଇ ପାରିଥା'ନ୍ତା କି? ଚନ୍ଦ୍ରଶେଖର ରାଗି ଉଠିଲେ ଓ କହିଲେ ଯେ ରାମାନୁଜନ୍ଙ୍କୁ ବଞ୍ଚାଯାଇ ପାରିଥା'ନ୍ତା, ତାଙ୍କୁ ବଞ୍ଚାଇବା ଉଚିତ ଥିଲା। ତାଙ୍କର ମତ ଥିଲା ଯେ ରାମାନୁଜନ୍ଙ୍କ ମୃତ୍ୟୁ ପାଇଁ ତାଙ୍କର ସ୍ତ୍ରୀ ଓ ମା ଅନ୍ତତଃ ଆଂଶିକ ଭାବରେ ଦାୟୀ। ରାମାନୁଜନ୍ଙ୍କ ମୃତ୍ୟୁର ପରଦିନ ସେ ତାଙ୍କ ଡାଏରିରେ ଲେଖିଥିଲେ:

> ମୋର ଉପଦେଶ ମାନିବା ପାଇଁ ଯଦି ରାମାନୁଜନ୍ଙ୍କୁ ଛାଡ଼ି ଦିଆଯାଇଥା'ନ୍ତା ତେବେ ହୁଏତ ଏହି ଦୁଃଖଦ ଘଟଣା ଘଟି ନ ଥା'ନ୍ତା। ରୋଗର ପ୍ରାଥମିକ ଅବସ୍ଥାରେ ଅବହେଳା, ଯାହା ହୁଏତ ତାଙ୍କର ସହକର୍ମୀଙ୍କ ଅଜ୍ଞାନତାରୁ ଘଟିଥିଲା ଏବଂ ପରେ ପରିବାରର, ମା ଓ ସ୍ତ୍ରୀଙ୍କର, ଅବହେଳା (ଅପରାଧ କହିବା ପାଇଁ ମୋର ଇଚ୍ଛା ହେଉଛି) ଯୋଗୁ ଏହି ଦୁଃଖଦ ଘଟଣା ଘଟିଲା।

ଡାକ୍ତର ଚନ୍ଦ୍ରଶେଖର ତାଙ୍କର ଅତି ବିଶିଷ୍ଟ ରୋଗୀଙ୍କୁ ହରାଇଥିବାରୁ କ୍ଷୁବ୍ଧ ହୋଇଥିବା ସ୍ୱାଭାବିକ ଥିଲା। ସେ କେବଳ ରାମାନୁଜନ୍ଙ୍କ କଥା ହିଁ ଜାଣିଥିଲେ ଏବଂ ଭାବୁଥିଲେ ଯେ ମା ଓ ସ୍ତ୍ରୀ କେବଳ ସମ୍ପତ୍ତି ପାଇଁ ଚିନ୍ତା କରୁଛନ୍ତି। କିନ୍ତୁ ପରିବାର ଲୋକଙ୍କ ପାଇଁ ରାମାନୁଜନ୍ ଯେ ଏକମାତ୍ର ଉପାର୍ଜନକ୍ଷମ ବ୍ୟକ୍ତି ଥିଲେ ସେକଥା ଚନ୍ଦ୍ରଶେଖର ବୋଧହୁଏ ବୁଝିବା ଅବସ୍ଥାରେ ନ ଥିଲେ। ଏବେ ରାମାନୁଜନ୍ଙ୍କ ଅବର୍ତ୍ତମାନରେ ସେ ଯାହା କିଛି ବି ଛାଡ଼ିଯାଇଥିଲେ ସେଥିପାଇଁ ଟଣାଓଟରା ଚାଲିଥିଲା।

ଏପ୍ରିଲ 29 ତାରିଖରେ, କହିବାକୁ ଗଲେ ରାମାନୁଜନ୍ଙ୍କ ଜୁଇ ପୂରା ଶୀତଳ ହେବା ଆଗରୁ, ତାଙ୍କ ଅଠରବର୍ଷୀୟ ଭାଇ ଲକ୍ଷ୍ମୀ ନରସିଂହନ୍ ହାର୍ଡିଙ୍କ ପାଖକୁ ରାମାନୁଜନ୍ଙ୍କ ମୃତ୍ୟୁର ଖବର

ପଠାଇଲେ। ହାର୍ଡି ବୋଧହୁଏ ସେ ଖବର ପାଇସାରିଥିଲେ। ବେଶ୍ କଡ଼ା ଭାଷା ବ୍ୟବହାର କରି ଲକ୍ଷ୍ମୀ ନରସିଂହନ୍ ସେହି ଚିଠିରେ ଅଭିଯୋଗ କରିଥିଲେ ଯେ ରାମାନୁଜନ୍‌ଙ୍କ କାଗଜପତ୍ର ସବୁ ଏବେ ପୂରାପୂରି ତାଙ୍କ ସ୍ତ୍ରୀଙ୍କର ନିୟନ୍ତ୍ରଣରେ ରହିଛି। ରାମଚନ୍ଦ୍ର ରାଓଙ୍କ ଜାମାତାଙ୍କଠାରୁ ସେ ଶୁଣିଥିଲେ ଯେ ସରକାର ଜାନକୀଙ୍କ ପାଇଁ ଅଳ୍ପ ପରିମାଣର ମାସିକ ଭତ୍ତାର ବ୍ୟବସ୍ଥା କରିବେ। ତେଣୁ ହାର୍ଡିଙ୍କ ପାଖକୁ ସେ ଲେଖିଥିଲେ, "ମୁଁ ଦୁଃଖିତ ଯେ ମୋର ପରିବାର ପାଇଁ ସେଭଳି କିଛି କରାଯାଇନାହିଁ।" ଏଥିରୁ ଜଣାପଡୁଥିଲା ଯେ ଜାନକୀଙ୍କୁ ସେମାନେ ପରିବାରର ଅଂଶ ଭାବରେ ଗ୍ରହଣ କରୁ ନ ଥିଲେ।

ଲକ୍ଷ୍ମୀ ନରସିଂହନ୍‌ଙ୍କର ଚିଠି ଏକ ଦୟନୀୟ ବିଳାପ ଭଳି ମନେହେଉଥିଲା। ସେଥିରେ ସେ ସୂଚାଇଥିଲେ ରାମାନୁଜନ୍ କିପରି କୌଣସି ଭଲ ଚାକିରିରେ ରହି ପରିବାରର ଦାୟିତ୍ୱ ନେବା ବଦଳରେ ଗଣିତ ଅଧ୍ୟୟନ ପାଇଁ ଇଂଲଣ୍ଡ ଚାଲିଗଲେ; ପ୍ରାୟ ସେତିକିବେଳେ ତାଙ୍କ ବାପା କିପରି ଦୃଷ୍ଟିଶକ୍ତି ହରାଇଲେ; ଏବେ ଅନ୍ଧ ବାପା, ଛୋଟି ଜେଜେମା ଏବଂ ସ୍ଥୂଳକାୟା ମା' ସମସ୍ତେ ତାଙ୍କ ଉପରେ ନିର୍ଭରଶୀଳ। କିନ୍ତୁ ଗତ ବର୍ଷ ସାରା ସେ ଭାଇଙ୍କୁ ସାହାଯ୍ୟ କରିବାରେ ବ୍ୟସ୍ତ ରହି ନିଜେ ମଧ୍ୟ କିଛି ଉପାର୍ଜନର ବ୍ୟବସ୍ଥା କରିପାରିନାହାନ୍ତି। ଆହୁରି ସେ ଲେଖିଥିଲେ:

> ମତେ ସୁରକ୍ଷା ଦେବା ପାଇଁ ମୋର ବା ବାପାଙ୍କର କେହି ଭାଇ ନାହାନ୍ତି। ଆପଣ ଜାଣିଥିବେ ଯେ ଆମର ସମ୍ପତ୍ତି ବୋଲି କିଛି ନାହିଁ। ପଢ଼ିବା ପାଇଁ ମୋର ବହୁତ ଆଗ୍ରହ ରହିଛି ...। ଦୁଃଖର ସହିତ ମୁଁ କହୁଛି ଯେ ଗଣିତରେ ମୋର ରୁଚି ନାହିଁ। ସେକ୍ସପିଅର୍, ୱର୍ଡସ୍‌ୱର୍ଥ, ଟେନିସନ୍ ଆଦିଙ୍କ ଲେଖା ପଢ଼ିବାକୁ ମୁଁ ଭଲପାଏ। ... ପରିବାରକୁ କିପରି ଖାଦ୍ୟ ଯୋଗାଇବି ତା ମୁଁ ଜାଣେନାହିଁ। ତେଣୁ ଆପଣଙ୍କୁ ମୁଁ ବିନୀତ ଅନୁରୋଧ କରୁଛି ଯେ ଆମକୁ ଏକ ମାସିକ ଭତ୍ତା ଦେବା ପାଇଁ ଆପଣ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟକୁ ଚିଠି ଲେଖନ୍ତୁ। ମୁଁ ଶୁଣିଛି ଯେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟଠାରୁ ଭାଇ କିଛି ପଇସା ପାଇବାର ଅଛି।
>
> ସଂକ୍ଷେପରେ କହିଲେ, ମୁଁ ଅଳ୍ପ ବୟସର ଯୁବକ। ପ୍ରତିଟି ଦିନ ଅତି କଷ୍ଟରେ କଟୁଛି। ସେମାନଙ୍କୁ କିପରି ସୁରକ୍ଷା ଦେବି ତାହା ମୁଁ ଜାଣେନାହିଁ। ଆମର ଭରଣ ପୋଷଣ ପାଇଁ କିଛି ବ୍ୟବସ୍ଥା କରା ନ ଗଲେ ଆମକୁ ଦ୍ୱାର ଦ୍ୱାର ବୁଲି ଭିକ ମାଗିବାକୁ ପଡ଼ିବ। ଆପଣଙ୍କ ହାତରେ ମୁଁ ଏହିସବୁ କଥା ଛାଡ଼ି ଦେଉଛି। ଆମକୁ ରକ୍ଷା କରିବା ଆପଣଙ୍କ ଦାୟିତ୍ୱ।

ହାର୍ଡି ଏହି ବିଷୟରେ କିଛି କରିଥିବେ ବୋଲି ଭାବିବାର କିଛି କାରଣ ନାହିଁ। ସଂଯୋଗବଶତଃ ରାମାନୁଜନ୍‌ଙ୍କୁ ଜନ୍ମ ଦେଇ ନ ଥିଲେ ସେହି ପରିବାରର ଭାଗ୍ୟ ଯାହା ହୋଇଥା'ନ୍ତା ତାହା ହିଁ ହେଲା। ସେମାନେ ପ୍ରାୟ ଅଜ୍ଞାତ ଅବସ୍ଥାକୁ ଫେରିଗଲେ।

ରାମାନୁଜନ୍‌ଙ୍କ ମୃତ୍ୟୁର କିଛି ମାସ ପରେ ତାଙ୍କ ବାପା ଅସୁସ୍ଥ ହୋଇପଡ଼ିଲେ ଏବଂ ନାରାୟଣ ଆୟାରଙ୍କ ଘରକୁ ଅଣାଯାଇଥିଲେ। ନଭେମ୍ବର ମାସରେ ତାଙ୍କର ମୃତ୍ୟୁ ଯାଏଁ କୋମଳତାମ୍ମାଲ୍ ଓ ନାରାୟଣ ଆୟାରଙ୍କ ସ୍ତ୍ରୀ ସେଠାରେ ତାଙ୍କର ଯତ୍ନ ନେଉଥିଲେ। ଆଗରୁ ସେହି ଘରେ ରାମାନୁଜନ୍ ଓ ନାରାୟଣ ଆୟାର ଡେରି ରାତି ଯାଏଁ ବସି ଗଣିତ କାମ କରୁଥିଲେ।

କୋମଳତାମ୍ମାଲ୍ ପୁଅର ମୃତ୍ୟୁଜନିତ ଆଘାତରୁ କେବେ ବି ମୁକ୍ତି ପାଇଲେନାହିଁ। ତାଙ୍କର

ଆଶାବାଦୀ ମନୋଭାବ ହଜିଗଲା, ଅନେକ ସମୟରେ ସେ ବିଷର୍ଣ୍ଣ ଅବସ୍ଥାରେ ରହିଲେ। ସାତ ବର୍ଷ ଧରି ନୀରବ ରହିବା ପରେ 1927 ମସିହାରେ ସେ ହାର୍ଡିଙ୍କ ପାଖକୁ ଖଣ୍ଡେ ଚିଠି ଲେଖିଲେ। ତାଙ୍କର ତାମିଲ କଥାକୁ ଇଂରାଜୀରେ ଲେଖାଇବା ପାଇଁ ସେ କାହାର ସାହାଯ୍ୟ ନେଇଥିଲେ। ଚିଠିରେ ସେ ଲେଖିଥିଲେ ଯେ ପୁଅ ଲକ୍ଷ୍ମୀ ନରସିଂହନ୍ ଇଣ୍ଟରମିଡିଏଟ୍ ପାସ୍ କରି ଏବେ ଟ୍ରିପ୍ଲିକେନ୍‌ଠାରେ ଡାକ ବିଭାଗରେ କାମ କରିଛି। ସାନ ପୁଅ ତିରୁନାରାୟଣନ୍ ପ୍ରେସିଡେନ୍‌ସି କଲେଜରୁ ସେହି ବର୍ଷ ବି.ଏ. ପାସ୍ କରିଛି।

ତିନି ପୃଷ୍ଠାର ଚିଠିରେ ସେ ମୁଖ୍ୟତଃ ପରିବାରର ଦୁର୍ବଳ ଆର୍ଥିକ ଅବସ୍ଥା କଥା ଓ ନିଜର ଅସୁବିଧା ଲେଖିଥିଲେ। ଚିଠିରେ ସେ ତାଙ୍କର ମନ ଖୋଲି ଲେଖିଥିଲେ, "1914 ମସିହାରେ ମୁଁ ପୁଅକୁ ଇଂଲଣ୍ଡ ପଠାଇଲାବେଳେ ଆଶା କରିଥିଲି ଯେ ମୋର ଦରିଦ୍ର ପରିବାର ଧନୀ ହୋଇପାରିବ ଏବଂ ମୋର ପୁଅ ବିଖ୍ୟାତ ହେବ। ଆଚିଲିସ୍ ଭଳି ସେ ଚିରସ୍ଥାୟୀ ଖ୍ୟାତି ପାଇଲା, ଆଚିଲିସ୍ ଭଳି ସେ ଅଳ୍ପ ବୟସରେ ପ୍ରାଣ ହରାଇଲା।" ତାଙ୍କ ପୁଅମାନଙ୍କୁ ଉଚ୍ଚତର ଚାକିରି ଦେବାପାଇଁ ସରକାରଙ୍କୁ କହିବାକୁ ହାର୍ଡିଙ୍କୁ ସେ ଅନୁରୋଧ କରିଥିଲେ। ହାର୍ଡି ଚାକିରି ବିଷୟରେ କିଛି କରିଥିଲେ କି ନାହିଁ ତାହା ଜଣାନାହିଁ। କିନ୍ତୁ ତିରୁନାରାୟଣନ୍ ପଦୋନ୍ନତି ପାଇ ଆସିଷ୍ଟାଣ୍ଟ ପୋଷ୍ଟମାଷ୍ଟର ହୋଇଥିଲେ। ଅଧିକ ଜାକଜମକ ଚଳଣି ଦେଖାଉଥିବା ଲକ୍ଷ୍ମୀ ନରସିଂହନ୍ ଅଳ୍ପ ବୟସରେ ପ୍ରାଣ ହରାଇଥିଲେ।

1930 ଦଶକର ଶେଷ ଆଡ଼କୁ କୋମଲତାମ୍ମାଲ୍ ପରିବାରର ପୁରୁଣା ସାଙ୍ଗ ଅନନ୍ତରମଣ୍‌ଙ୍କ ଘରକୁ ଯାଉଥିଲେ। ରାମାନୁଜନ୍ ତାଙ୍କ ପିଲାଦିନେ ଅନେକ ସମୟରେ ତାଙ୍କ ଘରେ ଖାଉଥିଲେ। କୋମଲତାମ୍ମାଲ୍ କହୁଥିଲେ ଯେ ସେମାନଙ୍କୁ ଦେଖିଲେ ତାଙ୍କର ମନେହୁଏ ଯେ ସେ ତାଙ୍କ ପୁଅ ଚିନ୍ନାସ୍ୱାମୀଙ୍କୁ ଦେଖୁଛନ୍ତି ଏବଂ ସେଥିରେ ସେ ସାନ୍ତ୍ୱନା ପାଉଛନ୍ତି।

ରାମାନୁଜନ୍‌ଙ୍କ ପରିବାରରୁ ଅଲଗା ହୋଇ ଜାନକୀ ତାଙ୍କ ନିଜ ବାଟରେ ଗଲେ। ମୃତ୍ୟୁ ବେଳକୁ ରାମାନୁଜନ୍ ଜାନକୀଙ୍କ ପାଇଁ ବ୍ୟସ୍ତ ହେଉଥିଲେ, କାରଣ ମାତ୍ର ତେଇଶ ବର୍ଷରେ ସେ ବିଧବା ହେବାକୁ ଯାଉଥିଲେ ଏବଂ ପରିବାର ଭିତରେ ବିଧବାମାନଙ୍କର ସ୍ଥିତି ଭଲ ରହୁ ନ ଥିଲା। ତାଙ୍କର ବିଶେଷ ଶିକ୍ଷା ନ ଥିଲା ବା କୌଣସି ବୃତ୍ତିଗତ ଦକ୍ଷତା ନ ଥିଲା। ରାମାନୁଜନ୍‌ଙ୍କ ମୃତ୍ୟୁର ଦୁଇ ଦିନ ଆଗରୁ ଜାନକୀଙ୍କ ମା ଓ ଭାଇ ଚେଟ୍‌ପୁଟ୍ ଆସିଥିଲେ। ସେମାନେ ବୁଝୁଥିଲେ ଯେ ଆଗକୁ ଜାନକୀ କୋମଲତାମ୍ମାଲ୍ ବା ପରିବାରର ଅନ୍ୟମାନଙ୍କଠାରୁ ସାହାଯ୍ୟ ସହାନୁଭୂତି ପାଇବେନାହିଁ। ତେଣୁ ରାମାନୁଜନ୍‌ଙ୍କ ଶେଷକୃତ୍ୟ ପରେ ସେମାନେ ଜାନକୀଙ୍କୁ ରାଜେନ୍ଦ୍ରମ୍ ନେଇ ଆସିଲେ।

ଏହା ପରେ ଛ'ବର୍ଷ ଧରି ଜାନକୀ ବମ୍ବେରେ ଆୟକର ଅଧିକାରୀ ପଦବୀରେ ଥିବା ତାଙ୍କ ଭାଇଙ୍କ ସହିତ ରହିଲେ। ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ରାମାନୁଜନ୍‌ଙ୍କ କାଗଜପତ୍ରର ସ୍ୱତ୍ତ୍ୱାଧିକାର ପାଇଁ ତାଙ୍କୁ ମାସକୁ କୋଡ଼ିଏ ଟଙ୍କା ଦେବାପାଇଁ ପ୍ରସ୍ତାବ ଦେଲା ପରେ ସେ ମାନ୍ଦ୍ରାଜକୁ ଫେରିଆସିଲେ। କିଛି ଦିନ ପାଇଁ ସେ ଭଉଣୀଙ୍କ ସହିତ ଟ୍ରିପ୍ଲିକେନ୍‌ରେ ରହିବା ପରେ ସେ ନିଜ ପାଇଁ ଗୋଟିଏ ଘର ଭଡ଼ା ନେଇ ଅଲଗା ରହିବାର ବ୍ୟବସ୍ଥା କଲେ। ହନୁମନ୍ତରାୟଣ୍ ସରଣୀରେ ତାଙ୍କର ନୂଆ ଘରଟି ରାମାନୁଜନ୍ ଇଂଲଣ୍ଡ ଯିବା ଆଗରୁ ରହୁଥିବା ଘରର ପାଖରେ ଥିଲା। ସେଠାରେ ସେ ପ୍ରାୟ ପଚାଶ ବର୍ଷ ଧରି ରହିଥିଲେ।

ବମ୍ବେରେ ଥିଲାବେଳେ ସେ ସିଲାଇ ଶିଖିଥିଲେ, ତେଣୁ ତାକୁ ଆଧାର କରି ସେ କିଛି ଉପାର୍ଜନ କରିବା ଆରମ୍ଭ କଲେ। କେବେ ଭାରତ ଗଲେ ରାମାନୁଜନ୍‌ଙ୍କର ଭଲ ଫଟୋଟିଏ ସଂଗ୍ରହ କରିବା ପାଇଁ ହାର୍ଡି ସୁବ୍ରମନ୍ୟନ୍ ଚନ୍ଦ୍ରଶେଖରଙ୍କୁ କହିଥିଲେ। ଫଟୋ ପାଇଁ 1937 ମସିହାରେ ଚନ୍ଦ୍ରଶେଖର ଜାନକୀଙ୍କୁ ଖୋଜି ବାହାର କଲେ। ସେ ଦେଖିଲେ ଯେ ଜାନକୀ ଖୁବ୍ ଅସୁବିଧାରେ ଚଳୁଛନ୍ତି। ରାମାନୁଜନ୍ ତାଙ୍କ ପାଇଁ ଯାହା ବି କିଛି ସମ୍ବଳ ଛାଡ଼ିଯାଇଥିଲେ ତାକୁ ଜାନକୀଙ୍କର କିଛି ଅସାଧୁ ସମ୍ପର୍କୀୟ ଠକି ନେଇଥିଲେ। କିଛିବର୍ଷ ତଳେ ପ୍ରକାଶ ପାଇଥିବା ରାମାନୁଜନ୍‌ଙ୍କର ନିବନ୍ଧ ସଂଗ୍ରହ ଖଣ୍ଡେ ମଧ୍ୟ ସେ ପାଇପାରି ନ ଥିଲେ।

1948 ମସିହା ବେଳକୁ ନାରାୟଣନ୍ ନାମକ ଛୋଟ ପିଲାର ଯତ୍ନ ନେଉଥିଲେ। ନାରାୟଣନ୍‌ଙ୍କ ଅସୁସ୍ଥ ମା ଚିକିତ୍ସା ପାଇଁ ଡାକ୍ତରଖାନାରେ ଥିଲେ ଏବଂ ନାରାୟଣନ୍ ନିଜେ ଆନ୍ତ୍ରିକ ଜ୍ୱରରେ ପୀଡ଼ିତ ଥିଲେ। ଜାନକୀ ତାଙ୍କର ଯତ୍ନ ନେବା ସହିତ ବହିପତ୍ର ମଧ୍ୟ କିଣିଦେଲେ। ନାରାୟଣନ୍‌ଙ୍କ ବାପା ଓ ମା ଦୁହିଁଙ୍କର ମୃତ୍ୟୁ ହେବାରୁ ସେ ଜାନକୀଙ୍କ ସହିତ ରହିଲେ। କିନ୍ତୁ ନାରାୟଣନ୍‌ଙ୍କ ଯତ୍ନ ନେବା ସାଙ୍ଗେ ସାଙ୍ଗେ ନିଜର ସିଲାଇ କାମ ଚଳାଇ ରଖିବା ଜାନକୀଙ୍କ ପାଇଁ କଷ୍ଟକର ହେଲା। ତେଣୁ ସେ କିଛିଦିନ ପାଇଁ ଏକ ଆବାସିକ ବିଦ୍ୟାଳୟରେ ରହି ପଢ଼ିଲେ। ପନ୍ଦର ବର୍ଷ ବୟସରେ ନାରାୟଣନ୍ ଜାନକୀଙ୍କ ପାଖକୁ ଫେରିଆସିଲେ ଏବଂ ଜାନକୀ ତାଙ୍କୁ ପୋଷ୍ୟପୁତ୍ର ଭାବରେ ଗ୍ରହଣ କଲେ।

x x x

ଜର୍ଣ୍ଣାଲ ଅଫ୍ ଦି ଇଣ୍ଡିଆନ୍ ମାଥେମାଟିକାଲ୍ ସୋସାଇଟିର ପ୍ରକାଶନ ବେଶ୍ ପଛୁଆ ରହିଯାଇଥିଲା। ତେଣୁ 1919 ମସିହା ଡିସେମ୍ବର ମାସର ପତ୍ରିକା 1920 ମସିହା ଏପ୍ରିଲ ପରେ ପ୍ରକାଶିତ ହେଲା ଏବଂ ସେଥିରେ ରାମାନୁଜନ୍‌ଙ୍କ ମୃତ୍ୟୁ ସମ୍ବାଦ ପ୍ରଚାରିତ ହୋଇଥିଲା। ପତ୍ରିକା ଭିତରେ ପୂରା ଯାଇଥିବା ଶାଗୁଆ କାଗଜରେ କଳା ବାକ୍ସ ଭିତରେ ଛପା ହୋଇଥିଲା:

ସ୍ୱର୍ଗତଃ ଶ୍ରୀ ଏସ୍. ରାମାନୁଜନ୍

> 26 ଏପ୍ରିଲ 1920 ଦିନ ମାନ୍ଦ୍ରାଜର ଚେଟ୍‌ପୁଟ୍‌ସ୍ଥିତ ତାଙ୍କ ବାସ ଭବନରେ ଶ୍ରୀ ଏସ୍. ରାମାନୁଜନ୍, ବି.ଏ., ଏଫ୍.ଆର୍.ଏସ୍.,ଙ୍କର ପରଲୋକ ଗମନର ସମ୍ବାଦ ଆମେ ଗଭୀର ଦୁଃଖର ସହିତ ଘୋଷଣା କରୁଛୁ। ତାଙ୍କ ଜୀବନ ଓ କାମର ବିବରଣୀ ପତ୍ରିକାର ଏକ ଭବିଷ୍ୟତ ସଂଖ୍ୟାରେ ପ୍ରକାଶ ପାଇବ।

ସାତ ମାସ ପରେ ସେହି ପତ୍ରିକାରେ ଦୁଇଟି ଶୋକ ସମ୍ବାଦ ବାହାରିଥିଲା। ପ୍ରଥମଟି ପି. ଭି. ଶେଷୁ ଆୟାର ଲେଖିଥିଲେ। ସେଥିରେ ସେ ରାମାନୁଜନ୍‌ଙ୍କ ଜୀବନ ବିଷୟରେ ବିଭିନ୍ନ ତଥ୍ୟ ଓ ସମୟକ୍ରମ ଦେଇଥିଲେ। ସେହି ତଥ୍ୟ ବୋଧହୁଏ ତାଙ୍କ ଅନୁରୋଧରେ ଲକ୍ଷ୍ମୀ ନରସିଂହନ୍ ଏକାଠି କରିଥିଲେ। ଦ୍ୱିତୀୟଟି ରାମଚନ୍ଦ୍ର ରାଓଙ୍କର ଥିଲା ଏବଂ ତାହା ଅନ୍ୟ ଏକ ପତ୍ରିକାରୁ ପୁନଃମୁଦ୍ରିତ ହୋଇଥିଲା। ପ୍ରଥମର ତୁଳନାରେ ତାହା ବେଶ୍ ଛାନ୍ଦମୟ ଥିଲା:

> ଏବଂ ସେ ଆଉ ନାହାନ୍ତି। ସେ, ଯାହାଙ୍କ ନାମ ଭାରତକୁ ଉଜ୍ଜ୍ୱଳ କରିଥିଲା, ଯାହାର କର୍ମଜୀବନ ବିଦେଶୀ ଶିକ୍ଷା ବ୍ୟବସ୍ଥାକୁ ଭୁଲ ବୋଲି ପ୍ରମାଣିତ କରିଥିଲା, ଭାରତର ଅତୀତକୁ ଭୁଲିଯାଇ ତା'ର

> ବୌଦ୍ଧିକ ଦକ୍ଷତା ବିଷୟରେ ସନ୍ଦେହ କରୁଥିବା ଲୋକଙ୍କୁ ଚେତାଇଦେବା ପାଇଁ ଯାହାର ନାମ ନିଆଯାଉଥିଲା। ...

ଭାରତୀୟମାନଙ୍କ ପାଇଁ ରାମାନୁଜନ୍‌ଙ୍କ ଜୀବନରେ ଅସରନ୍ତି ଆଗ୍ରହର ବିଷୟ ଭରିରହିଥିଲା। ସ୍କୁଲରେ ତାଙ୍କର ବିଫଳତାକୁ ଅପାରଗ ଓ ଅନମନୀୟ ଶିକ୍ଷାବ୍ୟବସ୍ଥାର କୁଫଳ ଭାବରେ ଦେଖାଯାଉଥିଲା। ହାର୍ଡି ମଧ୍ୟ ଏହିଭଳି ମତ ଦେଇଥିଲେ। ଇଂରେଜମାନଙ୍କ ପାଇଁ ତାଙ୍କର ନିର୍ଦ୍ଧନରୁ ଧନବାନ ଜୀବନ ଏକ ନାଟକୀୟ କାହାଣୀ ଭଳି ଲାଗୁଥିଲା। ରାମାନୁଜନ୍‌ଙ୍କର ସାଦାସିଧା ପୋଷାକ ଓ ଆଚରଣ ପଛରେ ଲୁଚିଥିବା ବୌଦ୍ଧିକ ଜ୍ୟୋତି ଏତେ ବଳିଷ୍ଠ ଥିଲା ଯେ ସେ ଦୁନିଆର ଅଗଭୀର ପ୍ରଶଂସାକୁ ହେୟ ମନେ କରୁଥିଲେ। ରାମଚନ୍ଦ୍ର ରାଓ ଏହି ମର୍ମରେ ଲେଖିଥିଲେ:

> ଦୁଇଟି ମହାଦେଶରେ ତାଙ୍କର ଗବେଷଣା ଫଳ ପ୍ରକାଶିତ ହେଉଥିଲା ବେଳେ ସେ ସେହିଭଳି ପିଲାଳିଆ ରହିଥିଲେ। ତାଙ୍କ ବେଶ ପୋଷାକରେ ବା ଆଚାର ବ୍ୟବହାରରେ ଏହାର ପ୍ରଭାବ ପଡ଼ି ନ ଥିଲା। ତାଙ୍କର ଉଦାର ମୁଖମଣ୍ଡଳ ଓ ସରଳତା ଅପରିବର୍ତ୍ତିତ ରହିଥିଲା। ଦର୍ଶନାର୍ଥୀ ତାଙ୍କ ପାଖକୁ ଆସୁଥିଲେ ଏବଂ ବିସ୍ମିତ ହେଉଥିଲେ ଯେ ସେ କ'ଣ ଏହି ଲୋକ ...। ଗୋଟିଏ ଶବ୍ଦରେ ରାମାନୁଜନ୍‌ଙ୍କୁ ବୁଝାଇବାକୁ ହେଲେ ମୁଁ କହିବି, ଭାରତୀୟତା।

ମୃତ୍ୟୁ ଆଗରୁ ମଧ୍ୟ ଭାରତୀୟତାର ଗୌରବ ବଢ଼ାଇବା ଦିଗରେ ରାମାନୁଜନ୍‌ଙ୍କୁ ଏକ ଆଶୀର୍ବାଦ ଭଳି ଦେଖାଯାଉଥିଲା। ଜର୍ଣ୍ଣାଲ୍ ଅଫ୍ ଦି ଇଣ୍ଡିଆନ୍ ମାଥେମାଟିକାଲ୍ ସୋସାଇଟିରେ ଲେଖାଯାଇଥିଲା, "ତାଙ୍କର ଅନନ୍ୟ ଗାଣିତିକ ପ୍ରତିଭା ଏବଂ ମୂଲ୍ୟବାନ ଓ ମୌଳିକ କାମ ବଳରେ ବାହାର ଦୁନିଆର ଆଖିରେ ସେ ଭାରତର ସମ୍ମାନ ବଢ଼ାଇ ଦେଇଛନ୍ତି।" ସୁବ୍ରମଣ୍ୟନ୍ ଚନ୍ଦ୍ରଶେଖର ସଠିକ ଭାବରେ ମତ ଦେଇଥିଲେ, "ସାଧାରଣଠାରୁ ରାମାନୁଜନ୍ ଏତେ ଉଚ୍ଚ ସ୍ତରର ଥିଲେ ଯେ ତାଙ୍କର ଭାରତୀୟ ଭାବରେ ଜନ୍ମ ହେବାକୁ ଏକ ଆକସ୍ମିକ ଘଟଣା ଭାବରେ ଦେଖିବା ଦରକାର।" ଅନେକ ଭାରତୀୟ ବିଭିନ୍ନ କ୍ଷେତ୍ରରେ ପାଶ୍ଚାତ୍ୟରେ ବା ସାରା ପୃଥିବୀରେ ପ୍ରତିଷ୍ଠା ଲାଭ କରିଥିଲେ, କିନ୍ତୁ ବିଜ୍ଞାନ କ୍ଷେତ୍ରରେ ରାମାନୁଜନ୍‌ଙ୍କଠାରୁ ଅଧିକ ଭାରତୀୟ କେହି ନ ଥିଲେ।

ତେବେ ଭାରତୀୟତାର ସ୍ୱରୂପ କ'ଣ ଥିଲା?

ଏହାର ଗୋଟିଏ ଦିଗ ଥିଲା ବ୍ୟାପକ ଦାରିଦ୍ର୍ୟ ଏବଂ ଜୀବନର ନ୍ୟୁନତମ ଆବଶ୍ୟକତା ପୂରଣ ପାଇଁ ଅନବରତ ସଂଘର୍ଷ। କୁଣ୍ଠିତ ମନରେ ହେଲେ ମଧ୍ୟ ରାମାନୁଜନ୍ ନିଜର ବୌଦ୍ଧିକ କାମ ଚଳାଇ ରଖିବା ପାଇଁ ସେହି ସଂଘର୍ଷରେ ଭାଗ ନେଇଥିଲେ।

ଭାରତର ପ୍ରାଚ୍ୟ ଗୁଣଧର୍ମ ପାଶ୍ଚାତ୍ୟଠାରୁ ଅଲଗା ଥିଲା ଏବଂ ସ୍ୱାଧୀନ ଭାବରେ ବିକଶିତ ହୋଇଥିଲା। ରାମାନୁଜନ୍‌ଙ୍କ ଜୀବନର ଗଠନଶୀଳ ସମୟ କଟିଥିଲା ତାଙ୍କ ନିଜର ଜନ୍ମସ୍ଥାନରେ ବା ତା'ଠାରୁ ଅନତି ଦୂରରେ। ଏହି ପରିବେଶରେ ସେ ତାଙ୍କର ଏକକ କାମ ମଧ୍ୟ କରିଥିଲେ। ଶୈଶବରେ ବା ଯୁବାବସ୍ଥାରେ ତାଙ୍କ ଜୀବନ ଉପରେ ଆକର୍ଷଣୀୟ ପାଶ୍ଚାତ୍ୟ ଜୀବନଧାରାର କୌଣସି ପ୍ରଭାବ ପଡ଼ି ନ ଥିଲା ଏବଂ ଭାରତ ବାହାରକୁ ଯିବାପାଇଁ ମଧ୍ୟ ତାଙ୍କ ମନରେ କୌଣସି

ସ୍ୱତନ୍ତ୍ର ଆଗ୍ରହ ଦେଖାଯାଇ ନ ଥିଲା। ଇଂଲଣ୍ଡ ଗଲା ପରେ ମଧ୍ୟ ସେଠାରେ ତାଙ୍କର ରୂପଭେକ ତାଙ୍କ ପାଇଁ ବିରକ୍ତିକର ଥିଲା।

ଆଧ୍ୟାତ୍ମିକତା ଭାରତରେ ସର୍ବୋଚ୍ଚ ସ୍ଥାନରେ ରହିଥିଲା। ହିନ୍ଦୁ ଦେବଦେବୀଙ୍କ ଉପରେ ରାମାନୁଜନ୍‌ଙ୍କର ଗଭୀର ବିଶ୍ୱାସ ରହିଥିଲା ଏବଂ ବୋଧହୁଏ ଶେଷ ଜୀବନରେ ମଧ୍ୟ ତାହା ଅତୁଟ ରହିଥିଲା। ଦେବୀ ନାମଗିରିଙ୍କ ନାଁ ସେ ଅନେକ ସମୟରେ ନେଉଥିଲେ। ଦକ୍ଷିଣ ଭାରତର ପ୍ରାୟ ସବୁ ବିଶ୍ୱାସ, ମୂଲ୍ୟବୋଧ ଓ ଜୀବନଶୈଳୀକୁ ସେ ଗ୍ରହଣ କରିଥିଲେ।

ମନସ୍ତତ୍ତ୍ୱବିତ୍ ଆଶିଷ ନନ୍ଦୀ ତାଙ୍କର ଅଲ୍‌ଟର୍‌ନେଟିଭ୍ ସାଇନ୍ସ ବହିରେ ଦୁଇ ଜଣ ବିଶିଷ୍ଟ ଭାରତୀୟ ବୈଜ୍ଞାନିକଙ୍କ ଭିତରେ ତୁଳନା କରିଥିଲେ। ଜଣେ ଥିଲେ ଗଣିତଜ୍ଞ ରାମାନୁଜନ୍, ଅନ୍ୟ ଜଣକ ଥିଲେ ପଦାର୍ଥ ବିଜ୍ଞାନୀ ଓ ଉଦ୍ଭିଦ ଶରୀରତତ୍ତ୍ୱବିତ୍ ଜଗଦୀଶ ଚନ୍ଦ୍ର ବୋଷ। ନିଜ ଭିତରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦିଗର ଦ୍ୱନ୍ଦ୍ୱକୁ ନେଇ ବୋଷ ସବୁବେଳେ ବିବ୍ରତ ଅନୁଭବ କରୁଥିଲେ। କିନ୍ତୁ ଅଧିକ ସ୍ୱୟଂସମ୍ପୂର୍ଣ୍ଣ ରାମାନୁଜନ୍ ସେଭଳି ଅନୁଭୂତିରୁ ମୁକ୍ତ ରହିଥିଲେ। ନନ୍ଦୀଙ୍କ ଭାଷାରେ, "ତାଙ୍କର ଜାତୀୟତାବୋଧରେ ଏବଂ ପାଶ୍ଚାତ୍ୟ ଢାଞ୍ଚାର ଆଧୁନିକତାରେ ବୋଷ ଅତି ଗଭୀର ଭାବରେ ପାଶ୍ଚାତ୍ୟ ସହିତ ଯୋଡ଼ି ହୋଇଯାଇଥିଲେ। ପାଶ୍ଚାତ୍ୟ ପାଇଁ ତାଙ୍କର ପ୍ରେମ ଓ ଘୃଣା ଉଭୟ ପାଇଁ ଏହା ପ୍ରଯୁଜ୍ୟ ଥିଲା।" ଅନ୍ୟ ପକ୍ଷରେ ରାମାନୁଜନ୍ ଯାହା ମନେ ହେଉଥିଲେ, ତାହା ହିଁ ଥିଲେ - ସମ୍ପୂର୍ଣ୍ଣ ଭାବରେ ଜଣେ ଦକ୍ଷିଣ ଭାରତୀୟ ବ୍ରାହ୍ମଣ। ଅନ୍ୟ ଭାରତୀୟଙ୍କ ତୁଳନାରେ ପାଶ୍ଚାତ୍ୟ ଓ ତା'ର ରୀତିନୀତି ରାମାନୁଜନ୍‌ଙ୍କୁ ପ୍ରାୟ ଆକର୍ଷିତ କରି ନ ଥିଲା।

କଥାରେ ନୁହେଁ ନିଜର ଜୀବନଶୈଳୀରେ ଓ କାମରେ ରାମାନୁଜନ୍ ଭାରତୀୟ ଆତ୍ମାର ପରିଚୟ ଦେଉଥିଲେ। ରାମାନୁଜନ୍‌ଙ୍କ ବିଷୟରେ ଏକ ସ୍ମରଣିକାର ସମ୍ପାଦକ ମାନ୍ଦ୍ରାଜର ଜଣେ ଗଣିତ ଶିକ୍ଷକ ପି. କେ. ଶ୍ରୀନିବାସନ୍ ଲେଖିଥିଲେ, "ଇଂରେଜମାନେ ଭାବୁଥିଲେ ଯେ ଭାରତୀୟମାନେ ନିକୃଷ୍ଟ, ରାମାନୁଜନ୍ ତାହା ଭୁଲ ବୋଲି ଦେଖାଇଦେଲେ। ଆମର ଆତ୍ମବିଶ୍ୱାସକୁ ସେ ଅତି ମାତ୍ରାରେ ବଢ଼ାଇ ଦେଇଥିଲେ।"

ଇ. ଏଚ୍. ନେଭିଲ୍‌ଙ୍କ ମତରେ ଗଣିତ ଭଳି କଠୋର ଓ ଶୁଦ୍ଧ କ୍ଷେତ୍ରରେ ରାମାନୁଜନ୍ ତାଙ୍କର କୃତିତ୍ୱ ଦେଖାଇଥିବାରୁ ତା'ର ପ୍ରଭାବ ବହୁଗୁଣିତ ହୋଇଥିଲା। 1941 ମସିହାରେ ନେଭିଲ୍ ଏକ ବେତାର ଭାଷଣ ପ୍ରସ୍ତୁତ କରିଥିଲେ, କିନ୍ତୁ ସମୟର ଅଭାବରୁ ହେଉ ବା କୌଣସି ରାଜନୈତିକ କାରଣରୁ ହେଉ, ସେଥିରୁ କିଛି ଅଂଶ ପ୍ରଚାରିତ ହୋଇ ନ ଥିଲା। ସେହି ଅଂଶରୁ କିଛି ଥିଲା:

> ଜଣେ ଗଣିତଜ୍ଞ ହୋଇଥିବାରୁ ରାମାନୁଜନ୍‌ଙ୍କ କର୍ମଜୀବନ ଭାରତ ଓ ଇଂଲଣ୍ଡ ଭିତରେ ସମ୍ପର୍କର ବିକାଶ ପାଇଁ ଅତି ଗୁରୁତ୍ୱପୂର୍ଣ୍ଣ। ଭାରତରୁ ବିଖ୍ୟାତ ବୈଜ୍ଞାନିକ ଆଗରୁ ବାହାରିଛନ୍ତି, କିନ୍ତୁ ବୋଷ ଓ ରମଣ ଦୁହେଁ ବିଦେଶରେ ଶିକ୍ଷାଲାଭ କରିଥିଲେ। ଯେଉଁ ମହାନ ଗବେଷଣାଗାରରେ ସେମାନଙ୍କର ଗଠନଶୀଳ ବର୍ଷଗୁଡ଼ିକ କଟିଥିଲା ଏବଂ ଯେଉଁ ବିଶିଷ୍ଟ ଶିକ୍ଷକମାନେ ତାଙ୍କୁ ପଢ଼ାଇଥିଲେ ସେମାନଙ୍କଠାରୁ ଏହି ଦୁଇ ଜଣଙ୍କର ପ୍ରେରଣାର କେତେ ଅଂଶ ଆସିଥିଲା ତାହା କେହି କହିପାରିବନାହିଁ। ଭାରତରୁ କେତେ ମହାନ କବି ଓ ଦାର୍ଶନିକ ବାହାରିଛନ୍ତି, କିନ୍ତୁ ଅନ୍ୟ ଦେଶର ସାହିତ୍ୟ ପ୍ରତି ସବୁବେଳେ କିଛି ମାତ୍ରାର ପୃଷ୍ଠପୋଷକତା ଦେଖିବାକୁ ମିଳିଥାଏ। କେବଳ ଗଣିତର ମାନକ ସବୁ ପ୍ରକାରର ପ୍ରଶ୍ନର ଊର୍ଦ୍ଧ୍ୱରେ ରହିଥାଏ। ତେଣୁ ରାମାନୁଜନ୍ ହେଉଛନ୍ତି ପ୍ରଥମ ଭାରତୀୟ

> ଯାହାଙ୍କର ଅନ୍ତର୍ନିହିତ ପ୍ରତିଭା ଇଂଲଣ୍ଡର ସର୍ବଶ୍ରେଷ୍ଠ ପ୍ରତିଭାର ସମକକ୍ଷ ବୋଲି ଇଂରେଜମାନେ ବୁଝିଲେ। ପାଶ୍ଚାତ୍ୟ ଜଗତରେ ବିଶ୍ୱାସ ରହିଆସିଛି ଯେ ଶ୍ୱେତାଙ୍ଗମାନେ କୃଷ୍ଣାଙ୍ଗମାନଙ୍କ ତୁଳନାରେ ସ୍ୱାଭାବିକ ଭାବରେ ଉଚ୍ଚତର। ଅସଂଖ୍ୟ ମାନବବାଦୀ ଯୁକ୍ତି ଓ ରାଜନୈତିକ ନିବେଦନ ସତ୍ତ୍ୱେ ଏହି ଘୃଣ୍ୟ ଚିନ୍ତାଧାରା ବଞ୍ଚିରହିଛି ଏବଂ ଇଂଲଣ୍ଡ ଓ ଭାରତ ଭିତରେ ସହଯୋଗ ପାଇଁ ଅନେକ ଉଦ୍ୟମକୁ ବିଷାକ୍ତ କରିଦେଇଛି। ଏବେ ରାମାନୁଜନ୍ ଏହା ଉପରେ ଏକ ମରଣାନ୍ତକ ଆଘାତ ଆଣିଛନ୍ତି।

1920 ମସିହା ଜୁନ 10 ତାରିଖ ଦିନ ଲଣ୍ଡନ ଗଣିତ ସମାଜର ଅଧିବେଶନରେ ରାମାନୁଜନ୍‌ଙ୍କ ବିୟୋଗରେ ଗଣିତ ସମାଜର କ୍ଷତି ବିଷୟରେ ସଭାପତି ସୂଚନା ଦେଇଥିଲେ ଏବଂ ମେଜର ମାକ୍‌ମୋହନ୍ ରାମାନୁଜନ୍‌ଙ୍କର ଗଣିତ କୃତି ବିଷୟରେ ଆଲୋଚନା କରିଥିଲେ।

ମକ୍-ଥିଟା ଫଳନ ବିଷୟରେ ରାମାନୁଜନ୍‌ଙ୍କର ଉଦ୍ଦୀପନାଭରା ଚିଠି ପାଇବାର ଏତେ କମ୍ ସମୟ ପରେ ତାଙ୍କର ମୃତ୍ୟୁ ସମ୍ବାଦ ହାର୍ଡିଙ୍କ ପାଇଁ ଦାରୁଣ ଆଘାତ ଥିଲା। ନେଚର ପତ୍ରିକା ପାଇଁ ସେ ଏକ ସଂକ୍ଷିପ୍ତ ମୃତ୍ୟୁ ସୂଚନା ଲେଖିଥିଲେ ଏବଂ କେତେ ମାସ ପରେ ନେଭିଲ୍ ସେଥିରେ ଅଧିକ ତଥ୍ୟ ଯୋଡ଼ିଥିଲେ। ଲଣ୍ଡନ ମାଥେମାଟିକାଲ୍ ସୋସାଇଟି ବିବରଣୀ ପାଇଁ ହାର୍ଡି ରାମାନୁଜନ୍‌ଙ୍କ ବିଷୟରେ ଗୋଟିଏ ଅତି ଦୀର୍ଘ ଲେଖା ଦେଇଥିଲେ।

ଆମେରିକାନ୍ ମାଥେମାଟିକାଲ୍ ମନ୍ଥଲିର କିଛି ପୃଷ୍ଠାରେ ବିଦେଶୀ ପତ୍ରିକାରେ ବାହାରୁଥିବା ବିଭିନ୍ନ ନିବନ୍ଧର ସାରାଂଶ ଦିଆଯାଏ। ସାଧାରଣତଃ ସେହି ଉପସ୍ଥାପନା ବେଶ୍ ନିରସ ହୋଇଥାଏ। କିନ୍ତୁ ରାମାନୁଜନ୍‌ଙ୍କ ଆବିଷ୍କାରର ବିଶଦ୍ ବର୍ଣ୍ଣନା ସେଥିରେ ଅତି ସରସ ଭାବରେ ପରିବେଶିତ ହୋଇଥିଲା। ଏପରିକି ରାମାନୁଜନ୍‌ଙ୍କ ଚେହେରାର ବର୍ଣ୍ଣନା ଦିଆଯାଇଥିଲା ଏବଂ "ଆଲୋଚନା ବେଳେ ସେ କିପରି ଉଜ୍ଜୀବିତ ହୋଇ ସରୁ ଆଙ୍ଗୁଠିଗୁଡ଼ିକ ଚଳାଇ ତାଙ୍କର ହାବଭାବ ଜଣାନ୍ତି" ସେ ବିଷୟରେ କୁହାଯାଇଥିଲା।

ରାମାନୁଜନ୍‌ଙ୍କ ମୃତ୍ୟୁ ପରେ କୌଣସି ବାଟରେ ତାଙ୍କର କାଗଜପତ୍ର ସବୁ ମାଡ୍ରାଜ ବିଶ୍ୱବିଦ୍ୟାଳୟକୁ ଚାଲିଆସିଥିଲା। ପରେ ଜାନକୀ ଅଭିଯୋଗ କରିଥିଲେ ଯେ ରାମାନୁଜନ୍‌ଙ୍କ ଶେଷକୃତ୍ୟ ସମୟରେ ହିଁ ଶେଷୁ ଆୟାର ସେସବୁ ଉଠାଇ ନେଇଥିଲେ। 1923 ମସିହା ଅଗଷ୍ଟ 30 ତାରିଖରେ ଡିଉଜ୍‌ବରି ରାମାନୁଜନ୍‌ଙ୍କର ମୂଳ ନୋଟ୍ ଖାତାଗୁଡ଼ିକ ଛଡ଼ା ବାକି ସବୁ କାଗଜ ହାର୍ଡିଙ୍କ ପାଖକୁ ପଠାଇ ଦେଇଥିଲେ।

1921 ମସିହାରେ ରାମାନୁଜନ୍‌ଙ୍କର ନିବନ୍ଧଗୁଡ଼ିକ ଭିତରୁ ଶେଷଟି ପ୍ରକାଶିତ କଲେ। ଏହାପରେ ସେ ରାମାନୁଜନ୍‌ଙ୍କ କାମକୁ ଆଧାର କରି ନିଜର ନିବନ୍ଧମାନ ପ୍ରକାଶ କରିବା ଆରମ୍ଭ କଲେ। 1920 ଦଶକରେ ଆହୁରି କେତେ ଗଣିତଜ୍ଞ ମଧ୍ୟ ରାମାନୁଜନ୍‌ଙ୍କ କାମର ବ୍ୟାଖ୍ୟା ଓ ବିକାଶରେ ଲାଗିଲେ। 1922 ମସିହାରେ ମୋର୍ଡେଲ୍ "ସର୍ବଶ୍ରୀ ରାମାନୁଜନ୍, ଡାର୍ଲିଙ୍ଗ୍ ଓ ରଜର୍ସ ଅଧ୍ୟୟନ କରିଥିବା କିଛି ମଡୁଲାର ସମ୍ପର୍କ ଉପରେ ଏକ ଟୀକା" ଶୀର୍ଷକ ଏକ ନିବନ୍ଧ ଲେଖିଥିଲେ। ତା'ପର ବର୍ଷ ଲଣ୍ଡନ ମାଥେମାଟିକାଲ୍ ସୋସାଇଟିର ବିବରଣୀରେ ପ୍ରକାଶିତ ହୋଇଥିବା ବି. ଏମ୍. ୱିଲ୍‌ସନ୍‌ଙ୍କ ନିବନ୍ଧ ଥିଲା "ରାମାନୁଜନ୍‌ଙ୍କର କିଛି ସୂତ୍ରର ପ୍ରମାଣ"।

ରାମାନୁଜନ୍‌ଙ୍କ ମୃତ୍ୟୁ ବିଷୟରେ ଜାଣିବାର ଅଳ୍ପ ଦିନ ପରେ ହାର୍ଡି ଡିଉଜ୍‌ବରିଙ୍କ ପାଖକୁ ଲେଖିଥିଲେ, "ରାମାନୁଜନ୍‌ଙ୍କର ନିବନ୍ଧଗୁଡ଼ିକର ଏକ ସଂକଳନ ପ୍ରକାଶ କରିବା କଥା ମାନ୍ଦ୍ରାଜ କର୍ତ୍ତୃପକ୍ଷ ବିଚାର କରିବେ କି? ଏଭଳି ଜଣେ ବିଚକ୍ଷଣ ବ୍ୟକ୍ତିଙ୍କର ଏକ ସ୍ଥାୟୀ ସ୍ମାରକୀ ରହିବା ଉଚିତ ଏବଂ ତାଙ୍କ କାମର ଏକ ସଂକଳନ ସେଥିପାଇଁ ସବୁଠାରୁ ବେଶି ଉପଯୁକ୍ତ ହେବ।" ଅନେକ ଚିଠିପତ୍ର ଦିଆନିଆ ପରେ 1927 ମସିହାରେ କେମ୍ବ୍ରିଜ ୟୁନିଭର୍ସିଟି ପ୍ରେସ୍ ରାମାନୁଜନ୍‌ଙ୍କର ନିବନ୍ଧ ସଂକଳନ ପ୍ରକାଶ କଲା। 355 ପୃଷ୍ଠାର ସେହି ସ୍ମାରକୀ ଗ୍ରନ୍ଥରେ ରାମାନୁଜନ୍‌ଙ୍କର ପ୍ରାୟ ସବୁ ପୂର୍ବପ୍ରକାଶିତ ଲେଖା ସ୍ଥାନ ପାଇଥିଲା। ଭାରତରେ ସେ କରିଥିବା ପ୍ରଥମ ପର୍ଯ୍ୟାୟର କାମ ସେଥିରେ ଥିଲା, ବିଭାଜନ ଓ ଅତିଯୌଗିକ ସଂଖ୍ୟା ବିଷୟରେ ନିବନ୍ଧଗୁଡ଼ିକ ମଧ୍ୟ ରହିଥିଲା। ଜର୍ଣ୍ଣାଲ ଅଫ୍ ଦି ଇଣ୍ଡିଆନ୍ ମାଥେମାଟିକାଲ୍ ସୋସାଇଟିରେ ବାହାରିଥିବା ତାଙ୍କର ବିଭିନ୍ନ ପ୍ରଶ୍ନ ଏବଂ ହାର୍ଡିଙ୍କୁ ଲେଖିଥିବା ଚିଠିର ଗାଣିତିକ ଅଂଶ ସେହି ସଂକଳନରେ ଦିଆଯାଇଥିଲା।

ସଂକଳନ ପ୍ରକାଶିତ ହେବା ଫଳରେ ରାମାନୁଜନ୍‌ଙ୍କ କାମ ଅନେକ ଗଣିତଜ୍ଞଙ୍କ ଦୃଷ୍ଟିକୁ ଆସିଲା ଏବଂ ସେଥିପ୍ରତି ଆଗ୍ରହର ବନ୍ୟା ଦେଖାଗଲା। ପରବର୍ତ୍ତୀ କିଛିବର୍ଷ ଧରି ଅନେକ ନିବନ୍ଧ ପ୍ରକାଶିତ ହେବାକୁ ଲାଗିଲା। ସେସବୁର ଶୀର୍ଷକର କିଛି ଉଦାହରଣ ଥିଲା - "ରାମାନୁଜନ୍‌ଙ୍କର ଦୁଇଟି ଦାବି", "ରାମାନୁଜନ୍ ଉପସ୍ଥାପିତ କରିଥିବା ଏକ ସମସ୍ୟା ବିଷୟରେ ଟୀକା", "ରାମାନୁଜନଙ୍କର ପାଟୀଗଣିତ ଫଳନ $\tau(n)$ ଉପରେ ଟୀକା"। 1928 ମସିହାରେ ହାର୍ଡି ରାମାନୁଜନ୍‌ଙ୍କ ନୋଟ୍ ଖାତା ଓ ଅନ୍ୟ ସବୁ ପାଣ୍ଡୁଲିପି, ଚିଠି ଓ କାଗଜପତ୍ର ଜି. ଏନ୍. ୱାଟ୍‌ସନ୍‌ଙ୍କୁ ଦେଇଦେଲେ। ସେସବୁକୁ ନେଇ ବି. ଏମ୍. ୱିଲ୍‌ସନ୍‌ଙ୍କ ସହିତ ମିଶି ୱାଟ୍‌ସନ୍ ଏକ ଦୁଃସାହସିକ ଗାଣିତିକ ଅଭିଯାନ ଆରମ୍ଭ କଲେ। ଦ୍ୱିତୀୟ ବିଶ୍ୱଯୁଦ୍ଧର ଶେଷ ଯାଏଁ ରାମାନୁଜନ୍‌ଙ୍କ ନୋଟ୍ ଖାତାର ସମ୍ପାଦନା କାମରେ ୱାଟ୍‌ସନ୍ ଲାଗିରହିଲେ ଏବଂ ଦୁଇ ଡଜନରୁ ଅଧିକ ଦୀର୍ଘ ନିବନ୍ଧ ପ୍ରକାଶ କରିଥିଲେ।

ଗଣିତଜ୍ଞମାନଙ୍କ ପାଇଁ ରାମାନୁଜନ୍ ବଞ୍ଚି ରହିଥିଲେ।

1932 ମସିହାରେ ଆମେରିକୀୟ ସଂଖ୍ୟାତତ୍ତ୍ୱବିତ୍ ରବର୍ଟ କାର୍‌ମାଇକେଲ୍ ଲେଖିଥିଲେ, "ଆମ ପିଢ଼ିର ସମୟକାଳରେ ଶ୍ରୀନିବାସ ରାମାନୁଜନ୍‌ଙ୍କ ତୁଳନାରେ ଅଧିକ ରୋମାଣ୍ଟିକ୍ ବ୍ୟକ୍ତିତ୍ୱର କେହି ମଣିଷ ଗଣିତ କ୍ଷେତ୍ରରେ ଦେଖାଯାଇ ନ ଥିଲେ। ଏପରିକି ମଣିଷର ପୂରା ଇତିହାସ ପାଇଁ ଏବଂ ସବୁ ପ୍ରକାରର ବୌଦ୍ଧିକ ପ୍ରଚେଷ୍ଟାର କ୍ଷେତ୍ର ପାଇଁ ମଧ୍ୟ ଏହା କୁହାଯାଇପାରେ। ନିଜର ବିଚକ୍ଷଣତା ପାଇଁ ଓ ପ୍ରତିକୂଳ ପରିବେଶରେ ଦେଖାଇଥିବା କୃତିତ୍ୱ ପାଇଁ ରାମାନୁଜନ୍‌ଙ୍କ ଭଳି ଆଉ କେହି ଏତେ ଆଗ୍ରହ ଜନ୍ମାଇ ନ ଥିଲେ ବା ଏକ ନିର୍ଦ୍ଦିଷ୍ଟ ପ୍ରକାରର ପ୍ରଶଂସା ଉଦ୍ରେକ କରିପାରି ନ ଥିଲେ।"

କିଛିବର୍ଷ ପରେ ଆତ୍ମୀୟତାର ସହିତ ମୋର୍ଡେଲ୍ ଲେଖିଥିଲେ, "ଗତ କେତେ ପିଢ଼ିର ଗଣିତଜ୍ଞଙ୍କ ଭିତରେ ପ୍ରାୟ ଆଉ କାହା ପାଖରେ ଏତେ ମାନବିକ ଆଗ୍ରହ ଭରିରହି ନ ଥିଲା। ତାଙ୍କର ଜୀବନୀ ହେଉଛି ଗୁରୁତର ବାଧାବିଘ୍ନର ସାମନା କରି ଭାରତରୁ ବାହାରିଥିବା ଗଣିତଜ୍ଞମାନଙ୍କ ଭିତରେ ଖ୍ୟାତିର ସର୍ବୋଚ୍ଚ ସ୍ତରକୁ ଉଠିଥିବା ଏବଂ ଅତି ବିଶିଷ୍ଟ ସମ୍ମାନ ପାଇବା ପରେ ଅଳ୍ପ ବୟସରେ ମୃତ୍ୟୁମୁଖରେ ପଡ଼ିଥିବା ଜଣେ ଅଜ୍ଞାତ ଭାରତୀୟର କାହାଣୀ।"

ରାମାନୁଜନ୍‌ଙ୍କର ଜୀବନ କାହାଣୀ ଗଣିତଜ୍ଞଙ୍କମାନଙ୍କୁ ବିଶେଷ ଭାବରେ ଆକର୍ଷିତ କରୁଥିଲା।

ସେମାନଙ୍କ ପାଇଁ ତାଙ୍କର ଗଣିତ ତା'ଠାରୁ ଆହୁରି ଅଧିକ ଆଗ୍ରହର ବିଷୟ ଥିଲା। 1931 ମସିହାରେ ହଙ୍ଗେରିର ବୁଦାପେଷ୍ଟ ବିଶ୍ୱବିଦ୍ୟାଳୟରେ ପଢୁଥିବା ବାଳପ୍ରତିଭା ଅଠର ବର୍ଷ ବୟସ୍କ ପଲ୍ ଏର୍ଡୋସ୍ ମୌଳିକ ସଂଖ୍ୟା ବିଷୟରେ ଏକ ନିବନ୍ଧ ଲେଖିଥିଲେ। ତାଙ୍କ ଶିକ୍ଷକ ସେହିଭଳି ଏକ ପ୍ରମାଣ ବିଷୟରେ ରାମାନୁଜନ୍‌ଙ୍କ ନିବନ୍ଧ ସଂକଳନରେ ପଢ଼ିବାକୁ ଉପଦେଶ ଦେଲେ। ଅତି ଆଗ୍ରହର ସହିତ ଏର୍ଡୋସ୍ ସାଙ୍ଗେ ସାଙ୍ଗେ ତାହା ପଢ଼ିଲେ। ତା'ର ପରବର୍ଷ କୌଣସି ପୂର୍ଣ୍ଣ ସଂଖ୍ୟାର ମୌଳିକ ଗୁଣିତକ ସଂଖ୍ୟା ବିଷୟରେ ହାର୍ଡି-ରାମାନୁଜନ୍ ନିବନ୍ଧ ମଧ୍ୟ ଦେଖିଲେ।

ଯୌଗିକ ସଂଖ୍ୟା ଭିତରୁ କେତେକର ଅତି ବେଶି ସଂଖ୍ୟାର ଗୁଣିତକ ରହିଥା'ନ୍ତି। ରାମାନୁଜନ୍ ସେଗୁଡ଼ିକୁ ଅତିଯୌଗିକ ସଂଖ୍ୟା ନାଁ ଦେଇଥିଲେ ଏବଂ ସେଗୁଡ଼ିକର ଗୁଣଧର୍ମକୁ ଅନୁଧ୍ୟାନ କରି ଏକ ଦୀର୍ଘ ନିବନ୍ଧ ସେ ଲେଖିଥିଲେ। ଉଦାହରଣ ସ୍ୱରୂପ, 12=2x2x3 ଏବଂ 14=7x2। ଏଠାରେ ଦେଖାଯାଉଛି ଯେ 12ର ତିନିଟି ମୌଳିକ ଗୁଣିତକ ଥିବାବେଳେ 14ର ଦୁଇଟି ରହିଛି। ସେହିଭଳି ଦେଖିହେବ ଯେ 15ର ଦୁଇଟି ଓ 16ରେ ଚାରିଟି ମୌଳିକ ଗୁଣିତକ ମିଳିପାରିବ। ପରୀକ୍ଷା କଲେ ଦେଖାଯିବ ଯେ ବିଭିନ୍ନ ସଂଖ୍ୟାର ଗୁଣିତକ ସଂଖ୍ୟା ବିଭିନ୍ନ ପ୍ରକାରର ହେଉଛି। ହାର୍ଡି ଓ ରାମାନୁଜନ୍ ସେହି ବିଭିନ୍ନତାର ଧାରା ବୁଝିବାର ଚେଷ୍ଟାକରି ନ ଥିଲେ, ବରଂ ଗୁଣିତକ ସଂଖ୍ୟାର ଏକ ହାରାହାରି ମୂଲ୍ୟ ବାହାର କରିବାକୁ ଚେଷ୍ଟା କରୁଥିଲେ। ଠିକ୍ ଯେପରି ପଶା ଖେଳରେ କାଠି ଗଡ଼ାଇଲେ କେଉଁ କେଉଁ ସଂଖ୍ୟା ଆସିବ ତାହା କହିହେବନାହିଁ, କିନ୍ତୁ କେଉଁ କେଉଁ ସଂଖ୍ୟାର ମିଶ୍ରଣ କେତେ ଥର ଆସିବ ତା'ର ହାରାହାରି ସମ୍ଭାବ୍ୟତାର ସୂଚନା ଦେଇହେବ।

ଅତି ସରଳ ଭାବରେ କହିଲେ, ହାର୍ଡି ଓ ରାମାନୁଜନ୍ ଦେଖିଲେ ଯେ ଅଧିକାଂଶ ପୂର୍ଣ୍ଣ ସଂଖ୍ୟା ପାଇଁ ମୌଳିକ ଗୁଣିତକର ସଂଖ୍ୟା ହେଉଛି ଲଗ୍ ଲଗ୍ n। ଅର୍ଥାତ ସଂଖ୍ୟାଟିର ଲଗାରିଦମ୍ ବାହାର କରି ସେହି ମୂଲ୍ୟର ଲଗାରିଦମ୍ ନେଲେ ଯେଉଁ ସଂଖ୍ୟା ମିଳିବ ତାହା ହେବ ମୂଳ ସଂଖ୍ୟାର ମୌଳିକ ଗୁଣିତକଗୁଡ଼ିକର ସଂଖ୍ୟା। ମୂଳ ସଂଖ୍ୟାଟି ଯେତେ ବଡ଼ ହେବ, ମୌଳିକ ଗୁଣିତକ ସଂଖ୍ୟା ସେତେ ସଠିକ ହେବ। ଏହା ଏକ କଞ୍ଚା ଆକଳନ ଥିଲା, କିନ୍ତୁ ଆଗରୁ ଆଉ କେହି ଏତେ ସଠିକତା ପାଇ ନ ଥିଲେ। ଏହାର ପ୍ରମାଣ ପାଇଁ ହାର୍ଡି ଓ ରାମାନୁଜନ୍‌ଙ୍କୁ ତେଇଶି ପୃଷ୍ଠାର ଗାଣିତିକ ଯୁକ୍ତି ଦେବାକୁ ପଡ଼ିଥିଲା।

ପରେ ହାର୍ଡି ଏର୍ଡୋସ୍‌ଙ୍କୁ କହିଥିଲେ ଯେ କୋଡ଼ିଏ ବର୍ଷ ଧରି ତାଙ୍କର ଏହି ପ୍ରମେୟ ମଲା ଭଳି ପଡ଼ିରହିଲା। 1934 ମସିହାରେ ପୁଣି ତା ଉପରେ କାମ ଆରମ୍ଭ ହେଲା ଏବଂ 1939 ମସିହାରେ ଏର୍ଡୋସ୍ ଓ ମାର୍କ କାକ୍ ଏହାକୁ ଆହୁରି ଉନ୍ନତ କରି ଏକ ନୂଆ ପ୍ରମେୟ ପ୍ରକାଶ କଲେ। ଏବେ ଏହାର ଗୁରୁତ୍ୱ ବୁଝାଗଲା ଏବଂ ଗଣିତଜ୍ଞମାନେ 1917 ମସିହାର ହାର୍ଡି-ରାମାନୁଜନ୍ ନିବନ୍ଧ ଏହି ବିଭାଗର ମୂଳଦୁଆ ପକାଇଥିବାର ମାନ୍ୟତା ପାଇଲା। ଗଣିତର ସେହି ବିଭାଗଟି ପର ସମୟରେ ସମ୍ଭାବ୍ୟତାତ୍ମକ ସଂଖ୍ୟାତତ୍ତ୍ୱ (ପ୍ରୋବେବିଲିଷ୍ଟିକ୍ ନମ୍ବର ଥିଓରି) ନାମରେ ପରିଚିତ ହେଲା।

1934 ମସିହାରେ ନରୱେ ଦେଶର ଜଣେ ସ୍କୁଲ ଛାତ୍ର ଅଟ୍‌ଲି ସେଲ୍‌ବର୍ଗ ଗୋଟିଏ ଗଣିତ ପତ୍ରିକାରେ ରାମାନୁଜନ୍‌ଙ୍କ ବିଷୟରେ ଲେଖାଟିଏ ପଢ଼ିଲେ। ଲେଖକ ସେଥିରେ ରାମାନୁଜନ୍‌ଙ୍କୁ ଜଣେ 'ଅସାଧାରଣ ଗାଣିତିକ ପ୍ରତିଭା' ଭାବରେ ବର୍ଣ୍ଣନା କରିଥିଲେ। ଅନେକ ବର୍ଷ ପରେ ସେଲ୍‌ବର୍ଗ

ମାନ୍ଦ୍ରାଜରେ ଏକ ଭାଷଣରେ କହିଥିଲେ ଯେ ନରୱେର ଭାଷାରେ 'ଅସାଧାରଣ' ପାଇଁ ବ୍ୟବହାର କରାଯାଇଥିବା ଶବ୍ଦର ଅର୍ଥ ଥିଲା 'କିଛିମାତ୍ରାରେ ବିଚିତ୍ର'।

ସେହି ରଚନାରେ ରାମାନୁଜନ୍‌ଙ୍କ କାମର କିଛି ଉଦାହରଣ ଦିଆଯାଇଥିଲା। ତାହା ସେଲ୍‌ବର୍ଗଙ୍କୁ ଗଭୀର ଭାବରେ ପ୍ରଭାବିତ କଲା ଏବଂ ତାଙ୍କୁ ବଶୀଭୂତ କରିପକାଇଲା। ସେଲ୍‌ବର୍ଗଙ୍କ ଭାଇ ମଧ୍ୟ ଗଣିତରେ ଆଗ୍ରହ ରଖୁଥିଲେ ଏବଂ ରାମାନୁଜନ୍‌ଙ୍କ ନିବନ୍ଧ ସଂକଳନ ଖଣ୍ଡେ ଘରକୁ ଆଣିଥିଲେ। ସେଲ୍‌ବର୍ଗଙ୍କ ଭାଷାରେ ତାଙ୍କ ପାଇଁ ସେହି ବହିଟି ଥିଲା, "ଐଶୀସତ୍ୟ ପ୍ରକଟନ ଭଳି - ମୋ ପାଇଁ ତାହା ସମ୍ପୂର୍ଣ୍ଣ ନୂଆ ଦୁନିଆ ଭଳି ଥିଲା, ମୁଁ ଦେଖିଥିବା ଅନ୍ୟ ଯେ କୌଣସି ଗଣିତ ବହିଠାରୁ ତାହା ପୂରା ଅଲଗା ଥିଲା - ତାହା ଅତି ମାତ୍ରାରେ ମର୍ମସ୍ପର୍ଶୀ ଥିଲା। ବର୍ଷ ବର୍ଷ ଧରି ସେଥିରୁ ମିଳୁଥିବା ଉଦ୍ଦୀପନା ଓ ତା'ର ରହସ୍ୟମୟତା ଅତୁଟ ରହିଥିଲା। ମୋର ଗଣିତ କାମ ଆରମ୍ଭ କରିବା ପାଇଁ ତାହା ହିଁ ପ୍ରେରଣା ଯୋଗାଇଥିଲା।"

ପରେ ସେଲ୍‌ବର୍ଗ ବାପାଙ୍କଠାରୁ ସେହି ବହିରୁ ଖଣ୍ଡେ ଉପହାର ପାଇଥିଲେ ଏବଂ ଏବେ ମଧ୍ୟ ସେ ତାକୁ ସାଙ୍ଗରେ ଧରି ବୁଲୁଛନ୍ତି ବୋଲି ବମ୍ବେରେ ଆଉ ଗୋଟିଏ ଭାଷଣରେ କହିଥିଲେ।

1942 ମସିହାରେ ହାର୍ଡିଙ୍କ ପୁରୁଣା ସ୍କୁଲ ୱିଞ୍ଚେଷ୍ଟରଠାରେ ଫ୍ରିମାନ୍ ଡାଇସନ୍ ଜଣେ ଦ୍ୱିତୀୟ ବର୍ଷର ଛାତ୍ର ଥିଲେ। ସେବର୍ଷର ଗଣିତ ପୁରସ୍କାର ଭାବରେ ସେ ହାର୍ଡି ଓ ଇ. ଏମ୍. ରାଇଟ୍ ଲେଖିଥିବା ସଂଖ୍ୟାତତ୍ତ୍ୱ ବହି ଖଣ୍ଡେ ପାଇଲେ। ତାଙ୍କୁ ସବୁଠାରୁ ବେଶି ଭଲ ଲାଗିଥିଲା ସେହି ବହିର ଊନବିଂଶ ଅଧ୍ୟାୟ ଯାହାର ବିଷୟ ଥିଲା ବିଭାଜନ ସଂଖ୍ୟା। ସେଥିରେ ରାମାନୁଜନ୍ ଆବିଷ୍କାର କରିଥିବା ବିଭାଜନ ସଂଖ୍ୟାର ସର୍ବସମତା ବିଷୟ ଆଲୋଚିତ ହୋଇଥିଲା ଏବଂ ତାହା ଡାଇସନ୍‌ଙ୍କ ମନରେ ବିଶେଷ କୌତୂହଳ ସୃଷ୍ଟି କଲା। ସେହି ସର୍ବସମତା ଗୁଣର ଅର୍ଥ କ'ଣ ହୋଇପାରେ ସେବିଷୟରେ କିଛି କଳ୍ପନା କଲେ ଏବଂ 'ପାହ୍ୟା' ବା ରାଙ୍କ୍ ନାମକ ଏକ ଅବଧାରଣା ସୃଷ୍ଟି କଲେ। କୌଣସି ବିଭାଜନର ସବୁଠାରୁ ବଡ଼ ଅଂଶ ବିଯୁକ୍ତ ଅଂଶଗୁଡ଼ିକର ସଂଖ୍ୟା ସେହି ବିଭାଜନର ପାହ୍ୟା ହେବ ବୋଲି ସେ କହିଥିଲେ। ୨ର ଉଦାହରଣ ନେଲେ ଦେଖିହେବ ଯେ 9=6+2+1, ତେଣୁ ଏହାର ପାହ୍ୟା ହେବ ସବୁଠାରୁ ବଡ଼ ଅଂଶ 6 ବିଯୁକ୍ତ ଅଂଶଗୁଡ଼ିକର ସଂଖ୍ୟା 3 ବା 6−3=3। ଡାଇସନ୍ ଅନୁମାନ କଲେ ଯେ ରାମାନୁଜନ୍‌ଙ୍କ ସର୍ବସମତା ଗୁଣର ଅର୍ଥ ହେବ କିଛି ବିଭାଜନ ତାଙ୍କର ପାହ୍ୟା ଅନୁସାରେ ସମାନ ଶ୍ରେଣୀରେ ରହିବେ।

ଡାଇସନ୍‌ଙ୍କ ମତରେ, "ରାମାନୁଜନ୍‌ଙ୍କ ବିଷୟରେ ଏହା ଥିଲା ସବୁଠାରୁ ବେଶି ଚମତ୍କାର କଥା। ସେ ଅନେକ କଥା ଆବିଷ୍କାର କରିଥିଲେ, ତଥାପି ଅନ୍ୟମାନେ ଆବିଷ୍କାର କରିବା ପାଇଁ ସେ ତାଠାରୁ ବେଶ୍ ଅଧିକ ତାଙ୍କ ବଗିଚାରେ ଛାଡ଼ିଯାଇଥିଲେ। ସେହି ଖୁସିର ଦିନ ପରେ ଚଉରାଳିଶ ବର୍ଷ ବିତିଗଲାଣି, ସେ ସମୟ ଭିତରେ ମୁଁ ମଝିରେ ମଝିରେ ରାମାନୁଜନ୍‌ଙ୍କ ବଗିଚାକୁ ଫେରି ଆସିଛି। ପ୍ରତି ଥର ଫେରିବା ବେଳେ ସଜ ଫୁଲ ଫୁଟିଥିବାର ମୁଁ ଦେଖିଛି।"

ଦୁଇବର୍ଷ ପରେ ଡାଇସନ୍ ଇଂଲଣ୍ଡର ବିମାନବାହିନୀର ବୋମାବର୍ଷୀ ବିଭାଗରେ ପରିସଂଖ୍ୟାନବିତ୍ ଭାବରେ କାମ କରୁଥିଲେ ଏବଂ ଜର୍ମାନିରେ ଘଟୁଥିବା ବ୍ୟାପକ କ୍ଷୟକ୍ଷତି

ଦେଖିବାକୁ ପାଉଥିଲେ। ସନ୍ଧ୍ୟା ସମୟରେ ସେ ଆଉ ଜଣେ ଗଣିତଜ୍ଞଙ୍କ ପାଖକୁ ରାମାନୁଜନ୍ ପ୍ରଥମେ ଉଠାଇଥିବା କିଛି ସମସ୍ୟା ବିଷୟରେ ଚିଠି ଲେଖୁଥିଲେ। ଗୋଟିଏ ସନ୍ଧ୍ୟାର ଚିଠିରେ ସେ ଲେଖିଥିଲେ, "ଏହା ଏକ ଲମ୍ବା, କଠୋର ଓ ଦୁଃଖଭରା ଶୀତ ଋତୁ। ଥଣ୍ଡା ଓ ଅନ୍ଧାର ସନ୍ଧ୍ୟାରେ, 1944 ମସିହାର ମୃତ୍ୟୁ ଓ କ୍ଷୟକ୍ଷତି ଭିତରେ ମୁଁ ଯେତେବେଳେ ଏହି ସୁନ୍ଦର ଅଭେଦଗୁଡ଼ିକୁ ଲେଖିଚାଲିଥିଲି, ସେତେବେଳେ ମୁଁ ରାମାନୁଜନ୍ଙ୍କର ଅତି ନିକଟ ହୋଇଥିଲା ଭଳି ଅନୁଭବ କରୁଥିଲି। 1917 ମସିହାର ମୃତ୍ୟୁ ଓ କ୍ଷୟକ୍ଷତି ଭିତରେ ସେ ଆହୁରି ଅଧିକ ସୁନ୍ଦର ଅଭେଦମାନ ଲେଖିଚାଲିଥିଲେ।"

ଏହି ଭାବରେ ବର୍ଷ ବର୍ଷ ବିତିଚାଲିଥିଲେ ମଧ୍ୟ ରାମାନୁଜନ୍ ସ୍ମୃତିରୁ ହଜିଯାଇ ନ ଥିଲେ। ତାଙ୍କର ମୃତ୍ୟୁ ପରଠାରୁ 1940 ମସିହା ଯାଏଁ ତାଙ୍କ କାମ ସମ୍ପର୍କରେ 140ଟି ନିବନ୍ଧ ପ୍ରକାଶିତ ହୋଇଥିଲା। 1950 ଦଶକର ଶେଷ ଆଡ଼କୁ ଗଣିତଜ୍ଞ ମୋରିସ୍ ନିଉମାନ୍ ତାଙ୍କର ଗୋଟିଏ ଭାଷଣର ଆରମ୍ଭରେ କହିଥିଲେ, "ବିଶ୍ଳେଷଣାତ୍ମକ ସଂଖ୍ୟାତତ୍ତ୍ୱ କ୍ଷେତ୍ରରେ ଅନେକ ବିଷୟ ଭଳି ବିଭାଜନ ଫଳନର ସର୍ବସମତା ଗୁଣଧର୍ମର ଅଧ୍ୟୟନର ଆରମ୍ଭ ରାମାନୁଜନ୍ ହିଁ କରିଥିଲେ।" ରାମାନୁଜନ୍ଙ୍କ ପ୍ରଥମ ପର୍ଯ୍ୟାୟର ଫଳାଫଳ ନିଉମାନ୍ଙ୍କ କାମ ପାଇଁ ଭିତ୍ତି ଯୋଗାଇଥିଲା। 1987 ମସିହାରେ ତାଙ୍କର ଜନ୍ମ ଶତବାର୍ଷିକୀ ବେଳକୁ ରାମାନୁଜନ୍ଙ୍କ ଖ୍ୟାତି ଦୃଢ଼ ଭାବରେ ପ୍ରତିଷ୍ଠିତ ହୋଇ ରହିଥିଲା।

ହାୱାର୍ଡ ଇଭ୍ସ୍ ତାଙ୍କର 'ଗଣିତର ଇତିହାସ ପରିଚିତି' (*ଇଣ୍ଟ୍ରୋଡକ୍ସନ୍ ଟୁ ଦି ହିଷ୍ଟୋରି ଅଫ୍ ମାଥେମାଟିକ୍ସ୍*) ବହିରେ ବିଭିନ୍ନ କାଳରେ ଗଣିତ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ କାମର ଗୋଟିଏ ତାଲିକା ଦେଇଥିଲେ। ଉଦାହରଣ ସ୍ୱରୂପ, 1906 ମସିହା ଥିଲା ଫ୍ରେସେଟ୍ଙ୍କ କାମର ବର୍ଷ, 1907 ମସିହା ବ୍ରାଉଅର୍ଙ୍କର। ଏହା ପରେ ନ' ବର୍ଷ ଧରି କିଛି ଘଟି ନ ଥିଲା ଯାହା ଇଭ୍ସ୍ଙ୍କ ମତରେ ଉଲ୍ଲେଖନୀୟ ଥିଲା। ସେହି ଲମ୍ବା ନିଷ୍ଫଳା ସମୟ ପରେ 1916 ମସିହାରେ ଆସିଲା ଆଇନ୍ଷ୍ଟାଇନ୍ଙ୍କ ସାର୍ବତ୍ରିକ ଆପେକ୍ଷିକ ତତ୍ତ୍ୱ। ଇଭ୍ସ୍ଙ୍କ ଲେଖାରେ ଏହାର ପରର ବିଶେଷ ଘଟଣା ଥିଲା:

ହାର୍ଡି ଓ ରାମାନୁଜନ୍ (ବିଶ୍ଳେଷଣାତ୍ମକ ସଂଖ୍ୟାତତ୍ତ୍ୱ)

ଏସବୁ ସତ୍ତ୍ୱେ ବିଂଶ ଶତାବ୍ଦୀର ମଝି ଭାଗରେ ରାମାନୁଜନ୍ଙ୍କ ବିଷୟରେ ସବୁ ଚିନ୍ତା ଦୁଃଖଦ ଓ ଅପୂରା ମନେହେଉଥିଲା। ସମସ୍ତଙ୍କ ମନରେ କ୍ଷୋଭ ଆସୁଥିଲା ଯେ ତାଙ୍କ ପାଇଁ ଆହୁରି ଉଚ୍ଚକୁ ଯିବା ସମ୍ଭବ ହେଲାନାହିଁ। ଏଭଳି ଚିନ୍ତା କରିବାରେ ହାର୍ଡି ପ୍ରଥମ ଥିଲେ। ଅନେକ ବର୍ଷ ଧରି ରାମାନୁଜନ୍ କିପରି ଗାଣିତିକ ମରୁଭୂମିରେ ରହିଥିଲେ ତାହା ସେ ସୂଚାଇ ଦେଇଥିଲେ ଏବଂ କହିଥିଲେ, "ଅଳ୍ପ ବୟସରେ ଯଦି ସେ ଆବିଷ୍କୃତ ହୋଇଥା'ନ୍ତେ ଓ ଟିକିଏ ଶୃଙ୍ଖଳିତ କରାଯାଇ ପାରିଥା'ନ୍ତେ, ବୋଧହୁଏ ସେ ଆହୁରି ବଡ଼ ଗଣିତଜ୍ଞ ହୋଇଥା'ନ୍ତେ। ଅଧିକ ପରିମାଣର ନୂଆ କଥା ସେ ଆବିଷ୍କାର କରିପାରିଥା'ନ୍ତେ ଏବଂ ନିଶ୍ଚିତ ଭାବରେ ସେ ସବୁର ଗୁରୁତ୍ୱ ବେଶି ହୋଇଥା'ନ୍ତା।" 1927 ମସିହାରେ ରାମାନୁଜନ୍ ନିବନ୍ଧ ସଂକଳନର ସମୀକ୍ଷା କଲାବେଳେ ଲିଟଲ୍ଉଡ୍ ମଧ୍ୟ ସେହିଭଳି ଚିନ୍ତାଧାରା ଦେଖାଇ ଲେଖିଥିଲେ, "100 ବା 150 ବର୍ଷ ତଳେ ଗଣିତ କ୍ଷେତ୍ରରେ ଆବିର୍ଭୂତ ହୋଇଥିଲେ ରାମାନୁଜନ୍ କେତେ ବଡ଼ ଗଣିତଜ୍ଞ ହୋଇଥା'ନ୍ତେ? ଠିକଣା ସମୟରେ ସେ ଅଏଲର୍ଙ୍କ ସଂସ୍ପର୍ଶରେ ଆସିଥିଲେ କ'ଣ ହୋଇଥା'ନ୍ତା?"

କିନ୍ତୁ ଏସବୁ ଘଟି ନ ଥିଲା। ଦୁଃଖର କଥା ହେଲେ ମଧ୍ୟ ରାମାନୁଜନ୍ ଅଳ୍ପ ବୟସରେ ଆବିଷ୍କୃତ ହୋଇ ନ ଥିଲେ, 100 ବା 150 ବର୍ଷ ତଳେ କାମ କରି ନ ଥିଲେ।

ଏହା ଭିତରେ ଗଣିତର ନୂଆ ନୂଆ କ୍ଷେତ୍ର ବିକଶିତ ହେବାକୁ ଲାଗିଲା ରାମାନୁଜନ୍‌ଙ୍କ କାମ ସହିତ ଯାହାର କିଛି ସମ୍ପର୍କ ନ ଥିଲା। ଏହିସବୁ କ୍ଷେତ୍ର ପ୍ରତି ଅଧିକ ଆଗ୍ରହ ଦେଖାଯିବାକୁ ଲାଗିଲା, ଫଳରେ ରାମାନୁଜନ୍‌ଙ୍କ କାମ କିଛି ବର୍ଷ ପାଇଁ ଅନ୍ଧାରରେ ରହିଗଲା। କେବଳ କିଛି ନିର୍ଦ୍ଦିଷ୍ଟ ପ୍ରକାରର ଗଣିତଜ୍ଞ ନିବନ୍ଧ ସଂକଳନର ଭକ୍ତ ଥିଲେ, କିନ୍ତୁ ତା'ର ବିକ୍ରି ସଂଖ୍ୟା ଅତି ବେଶି ନ ଥିଲା। ପ୍ରକାଶନର ପ୍ରଥମ ବର୍ଷରେ ଏଥିରୁ 42 ଖଣ୍ଡ ବିକ୍ରି ହୋଇଥିଲା, ଦ୍ୱିତୀୟ ବର୍ଷରେ 209 ଖଣ୍ଡ। 1929 ମସିହାର ଶେଷ ବେଳକୁ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ପ୍ରେସ୍‌ର ଜଣେ ଅଧିକାରୀ ହାର୍ଡିଙ୍କୁ ଜଣାଇଥିଲେ ଯେ ତାଙ୍କ ଆକଳନରେ ପ୍ରଥମ ମୁଦ୍ରଣର 750 ଖଣ୍ଡ ଯାକ ବିକ୍ରି ହେବା ପାଇଁ ଆହୁରି ଦଶ ବର୍ଷ ଲାଗିଯିବ। ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଫ୍ରିମାନ୍ ଡାଇସନ୍ ଯେତେବେଳେ ଯୁକ୍ତରାଷ୍ଟ୍ର ଆମେରିକାକୁ ଗଲେ, ସେ ଦେଖିଲେ ଯେ ରାମାନୁଜନ୍‌ଙ୍କ ଭକ୍ତ ଭାବରେ ସେ ଏକାକୀ। ସେ ସମୟର ଆଗୁଆ ଗଣିତଜ୍ଞମାନଙ୍କ ପାଇଁ ରାମାନୁଜନ୍‌ଙ୍କ କାମ ଥିଲା ପଛୁଆ ଅଞ୍ଚଳ, ଊନବିଂଶ ଶତାବ୍ଦୀର ପୁରୁଣା କଥା।

କିନ୍ତୁ ସମୟକ୍ରମେ ତାହା ବଦଳିବାର ଥିଲା।

## 5. ରାମାନୁଜନ୍‌ଙ୍କ ପୁନର୍ଜନ୍ମ

1950 ଦଶକରେ ଗୋଟିଏ ବିଶେଷ ଘଟଣା ଘଟିଥିଲା। ଏସ୍. ରାମଶେଷନ୍, ଯାହାଙ୍କ ବାପା ରାମାନୁଜନ୍‌ଙ୍କୁ ଜାଣିଥିଲେ, ଥରେ ବମ୍ବେରେ କିଛି ସାଙ୍ଗଙ୍କୁ ଭେଟିବାକୁ ଯାଇଥିଲେ। ସେଠାରେ ଗୋଟିଏ ପ୍ରେସ୍‌ର ପଛ କୋଠରୀରେ ତାଙ୍କୁ ଜଣେ କିଛି ପୁରୁଣା ମାଟିଆ ହୋଇଯାଇଥିବା କାଗଜ ଦେଖାଇଲେ। ସେହି କାଗଜରେ ଅନେକ କୁହୁକ ବର୍ଗ ଓ ସୁନ୍ଦର ଗାଣିତିକ ସୂତ୍ର ଭଲ ହସ୍ତାକ୍ଷରରେ ସୁସଜ୍ଜିତ ଭାବରେ ଲେଖାହୋଇଥିଲା। ସେ ବିଶ୍ୱାସ କରିପାରିଲେନାହିଁ ଯେ ରାମାନୁଜନ୍‌ଙ୍କ ନୋଟ୍ ଖାତାକୁ ସେ ଦେଖୁଛନ୍ତି, ଯାହା ବିଷୟରେ ସେ ପ୍ରଥମେ 1937 ମସିହାରେ ବାପାଙ୍କଠାରୁ ଶୁଣିଥିଲେ। ତାହା ଥିଲା ରାମଚନ୍ଦ୍ର ରାଓଙ୍କ ପାଖରେ ଥିବା ବିଖ୍ୟାତ 'ଛିଣ୍ଡା ନୋଟ୍ ଖାତା'। 'ଖାତାର ଭଙ୍ଗୁର ପୃଷ୍ଠାଗୁଡ଼ିକ ଉପରେ ଆଙ୍ଗୁଠି ଚଳାଇ ସେ ଅନୁଭବ କରିବାକୁ ଚେଷ୍ଟା କଲେ ବିନା ଚାକିରିରେ ଓ ସବୁଦିଗରୁ ଅନ୍ଧକାରମୟ ମନେହେଉଥିବା ଜୀବନ ଭିତରେ ରାମାନୁଜନ୍ କିପରି ମୁହଁରେ ହସ ଫୁଟାଇ ସେହି ପୃଷ୍ଠାଗୁଡ଼ିକୁ ଭରିଚାଲିଥିବେ।'

କମର୍ସିଆଲ୍ ପ୍ରିଣ୍ଟିଙ୍ଗ୍ ପ୍ରେସ୍‌ଠାରେ ରାମଶେଷନ୍‌ଙ୍କ ସାଙ୍ଗମାନେ 'ସେମାନେ କରିଥିବା ସବୁଠାରୁ ବେଶି ଉଦ୍ଦୀପନାଭରା କାମ' ହାତକୁ ନେଲେ। 1957 ମସିହାରେ ସାର୍ ଦୋରାବ୍‌ଜୀ ଟାଟା ଟ୍ରଷ୍ଟର ଆର୍ଥିକ ସହାୟତାରେ ଟାଟା ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଫଣ୍ଡାମେଣ୍ଟାଲ୍ ରିସର୍ଚ୍ଚ ରାମାନୁଜନ୍‌ଙ୍କର ନୋଟ୍ ଖାତାର ଅବିକଳ ମୁଦ୍ରଣ କରାଇଲା। ଖାତା ଦୁଇଟି ବେଶ୍ ବଡ଼ ଥିଲା - ମୋଟ ଓଜନ ଚାରି କିଲୋଗ୍ରାମ୍‌ରୁ ବେଶିଥିଲା - ଏବଂ କାଗଜ ଖୁବ୍ ଭଙ୍ଗୁର ହୋଇଯାଇଥିଲା।

ଆଗରୁ ବାହାରିଥିବା ସଂକଳନରେ ରାମାନୁଜନ୍‌ଙ୍କର ପ୍ରକାଶିତ ନିବନ୍ଧ ଓ ହାର୍ଡିଙ୍କ ପାଖକୁ ସେ ଦେଇଥିବା ଚିଠି ସବୁ ରହିଥିଲା। ଲିଟଲ୍‌ଉଡ୍‌ଙ୍କ ମତ ଥିଲା, "ନୋଟ୍ ଖାତାଗୁଡ଼ିକ ରାମାନୁଜନ୍‌ଙ୍କ

ଚିନ୍ତାଧାରାର ସ୍ପଷ୍ଟତର ଚିତ୍ର ଦେଇପାରିବା।" ରାମାନୁଜନ୍‌ଙ୍କ ପ୍ରକାଶିତ ନିବନ୍ଧଗୁଡ଼ିକରେ ହାର୍ଡିଙ୍କ ସମ୍ପାଦନାର ଗଭୀର ଛାପ ରହିଥିଲା ଏବଂ ପ୍ରକାଶନ ପାଇଁ ସେଗୁଡ଼ିକ ମାର୍ଜିତ ଓ ସଜ୍ଜିତ କରାଯାଇଥିଲା। କିନ୍ତୁ ନୋଟ୍ ଖାତାଗୁଡ଼ିକରେ ରାମାନୁଜନ୍‌ଙ୍କର ନିଜସ୍ୱ ଚିନ୍ତାଧାରା ଓ ରଚନା ଶୈଳୀ ସ୍ୱାଭାବିକ ଭାବରେ ଉପସ୍ଥାପିତ ହୋଇଥିଲା।

ମାନ୍ଦ୍ରାଜର ଜର୍ଜଟାଉନର ଲିଙ୍ଗି ଚେଟ୍ଟି ସରଣୀର ଶେଷ ମୁଣ୍ଡରେ ଥିବା ମଲ୍ଲିକେଶ୍ୱରର୍ ମନ୍ଦିରଟି ପ୍ରାୟ ତିନି ଶହ ବର୍ଷ ପୁରୁଣା। 1962 ମସିହା ଅକ୍ଟୋବର 8 ତାରିଖ ଦିନ କିଛି ଲୋକ ସେହି ମନ୍ଦିରର କାରୁକାର୍ଯ୍ୟଭରା ଗୋପୁରମ୍ ତଳେ ଏକାଠି ହେଲେ। ମୁଥାଲପେଟ୍ ହାଇସ୍କୁଲର ଗଣିତ ଶିକ୍ଷକ ପି. କେ. ଶ୍ରୀନିବାସନ୍ ଗୋଟିଏ ନୂଆ କାମ ଆରମ୍ଭ କରିବା ପାଇଁ ତାଙ୍କର ସେହି ସାଙ୍ଗମାନଙ୍କୁ ଡାକିଥିଲେ। କୋଡ଼ିଏ ବର୍ଷ ତଳେ ଶ୍ରୀନିବାସନ୍ ରାମାନୁଜନ୍‌ଙ୍କ ବିଷୟରେ ପ୍ରଥମେ ପଢ଼ିଥିଲେ ଏବଂ ତାଙ୍କ ଛାତ୍ରମାନଙ୍କୁ ରାମାନୁଜନ୍‌ଙ୍କ ଉଦାହରଣରେ ଅନୁପ୍ରାଣିତ କରିବା ଦିଗରେ ସେହି ଦିନରୁ ଚେଷ୍ଟା ଚଳାଇଥିଲେ। ଆଠବର୍ଷ ତଳେ ଜଣେ ସାଙ୍ଗ ଶ୍ରୀନିବାସନ୍‌ଙ୍କୁ ଜାନକୀ ଓ ରାମାନୁଜନ୍‌ଙ୍କ ସାନଭାଇ ତିରୁନାରାୟଣନ୍‌ଙ୍କ ସହିତ ଭେଟ କରାଇଥିଲେ। ଏବେ ରାମାନୁଜନ୍‌ଙ୍କର ପଞ୍ଚସ୍ତରିତମ ଜନ୍ମଦିନ ପାଖେଇ ଆସୁଥିଲା ଏବଂ ସେହି ଅବସରରେ ଏକ ସ୍ମରଣିକା ବାହାର କରିବା ପାଇଁ ଶ୍ରୀନିବାସନ୍ ଲାଗିପଡ଼ିଥିଲେ।

ତାଙ୍କର ପୁରାତନ ଛାତ୍ରମାନଙ୍କୁ ଶ୍ରୀନିବାସନ୍ ଏହି କାମରେ ଲଗାଇଥିଲେ, ଖବର କାଗଜରେ ବିଜ୍ଞାପନ ଛପାଇ ସେ ଅନ୍ୟମାନଙ୍କୁ ସାମିଲ କରାଇବାର ଚେଷ୍ଟା ଚଳାଇଥିଲେ। ରାମାନୁଜନ୍‌ଙ୍କୁ ଜାଣିଥିବା ଲୋକମାନଙ୍କର ସ୍ମୃତି ଓ ତାଙ୍କର ଚିଠିପତ୍ର ସଂଗ୍ରହ କରିବା କାମରେ ଶ୍ରୀନିବାସନ୍ ଲାଗିପଡ଼ିଥିଲେ। ପୁରୁଣା ବାକ୍ସ ଓ ଆଲମାରି ଘାଣ୍ଟି କାଗଜ ଆଦି ଖୋଜିବା ପାଇଁ ଶ୍ରୀନିବାସନ୍ ବୟସ୍କ ଲୋକଙ୍କ ପଛରେ ଲାଗିରହୁଥିଲେ। ବେଳେ ବେଳେ କାହା ସହିତ ଲମ୍ବା ସାକ୍ଷାତକାରର ବିବରଣୀ ଲେଖିବା ପାଇଁ ସେ ଉଭୟ ଇଂରାଜୀ ଓ ତାମିଲ ଜାଣିଥିବା ଲୋକମାନଙ୍କର ସାହାଯ୍ୟ ନେଉଥିଲେ।

ଦକ୍ଷିଣ ଭାରତ ସାରା ରାମାନୁଜନ୍‌ଙ୍କର ପଞ୍ଚସ୍ତରିତମ ଜନ୍ମ ଦିବସ ପାଳିତ ହେଲା। କୁମ୍ଭକୋଣମ୍‌ର ଟାଉନ୍ ହାଇସ୍କୁଲ ଗୋଟିଏ କୋଠାକୁ ରାମାନୁଜନ୍‌ଙ୍କ ନାମରେ ନାମିତ କଲା। ତାଙ୍କ ସମ୍ମାନରେ ଭାରତରେ ଗୋଟିଏ ସ୍ୱତନ୍ତ୍ର ଡାକଟିକଟ ପ୍ରଚଳିତ କରାଗଲା ଏବଂ ପନ୍ଦର ନୂଆ ପଇସା ମୂଲ୍ୟର ସେହି ଟିକଟର ପଚିଶ ଲକ୍ଷ ଖଣ୍ଡଯାକ ପ୍ରଥମ ଦିନରେ ହିଁ ବିକ୍ରି ହୋଇଗଲା। ମାନ୍ଦ୍ରାଜରେ ଅନୁଷ୍ଠିତ ଗୋଟିଏ ବଡ଼ ସ୍ମାରକୀ ସମାରୋହରେ ରାମାନୁଜନ୍‌ଙ୍କୁ ଜାଣିଥିବା ବା ତାଙ୍କ ବିଷୟରେ ଆଗ୍ରହୀ ଥିବା ଅନେକ ଲୋକ ଯୋଗ ଦେଇଥିଲେ। ଶ୍ରୀନିବାସନ୍ ତାଙ୍କର ପୁରୁଣା ଛାତ୍ରବାହିନୀକୁ ଲଗାଇ ସଭାକୁ ଆସିଥିବା ଲୋକମାନଙ୍କର ସ୍ମୃତି, ମତାମତ ଆଦି ସଂଗ୍ରହ କରିଥିଲେ।

ଶ୍ରୀନିବାସନ୍ କୁମ୍ଭକୋଣମ୍‌ରେ ଥିବା ରାମାନୁଜନ୍‌ଙ୍କ ପୁରୁଣା ଘରକୁ ମଧ୍ୟ ଯାଇଥିଲେ ଏବଂ ସେଠାରେ ଥିବା ପୁରୁଣା ଆଲମାରି ଖୋଲି ଦେଖିବା ପାଇଁ ତିରୁନାରାୟଣନ୍ ତାଙ୍କୁ ଅନୁମତି ଦେଇଥିଲେ। ତାଲା ପଡ଼ି ରହିଥିବା ଗୋଟିଏ କୋଠରି ଭିତରେ ସେ ଆଲମାରୀ ଧୂଳି ଅଳନ୍ଧୁରେ ବୁଡ଼ିକରି ରହିଥିଲା। ସେଥିରେ କିଛି ମୂଲ୍ୟବାନ କାଗଜ ଥିବାର ସମ୍ଭାବନା ନାହିଁ ବୋଲି

ତିରୁନାରାୟଣନ୍ କହିଥିଲେ। ତଥାପି ଶ୍ରୀନିବାସନ୍ ତାକୁ ଖୋଲି ଅସରପା ଝାଡ଼ି ଖୋଜାଖୋଜି କରି ଏକ ଅମୂଲ୍ୟ ଚିଠି ପାଇଲେ – ଇଂଲଣ୍ଡରୁ ବାପାଙ୍କ ପାଖକୁ ରାମାନୁଜନ୍ ଲେଖିଥିବା ଚିଠି।

ଚିଠିପତ୍ର ଓ ସ୍ମୃତି ଆଦିର ସେହି ସଂକଳନ ଶ୍ରୀନିବାସନ୍‌ଙ୍କ ଦ୍ୱାରା 1968 ମସିହାରେ ପ୍ରକାଶିତ ହେଲା। 1967 ମସିହାରୁ 1984 ମସିହା ଭିତରେ ଇଂରାଜୀ ଓ ବିଭିନ୍ନ ଭାରତୀୟ ଭାଷାରେ ରାମାନୁଜନ୍‌ଙ୍କର କେତେଗୁଡ଼ିଏ ଜୀବନୀ ଲେଖାଯାଇଥିଲା।

1974 ମସିହାରେ ଡିଲାଇନ୍ ଟାଉ ଅନୁମାନୋକ୍ତିର ପ୍ରମାଣ ଦେଲେ।

ପ୍ରାୟ ଷାଠିଏ ବର୍ଷ ତଳେ, 1916 ମସିହାରେ, ରାମାନୁଜନ୍ ଗୋଟିଏ ନିବନ୍ଧ ପ୍ରକାଶ କରିଥିଲେ ଯାହାର ଶୀର୍ଷକ ଥିଲା "କିଛି ପାଟୀଗାଣିତିକ ଫଳନ ବିଷୟରେ''। ସଂଖ୍ୟାମାନଙ୍କର ଗୁଣଧର୍ମକୁ ବୁଝିବାର ଚେଷ୍ଟାରୁ ଏଭଳି ଫଳନ ବାହାରୁ ଥିଲା। ରାମାନୁଜନ୍ ଆଗରୁ ଏଭଳି ଦୁଇଟି ଫଳନ ଉପରେ କାମ କରିଥିଲେ। ତାହା ଥିଲା ମୌଳିକଗୁଡ଼ିକର ସଂଖ୍ୟା $\pi(n)$ ଓ ବିଭାଜନ ସଂଖ୍ୟା $p(n)$। ଆଉ ଗୋଟିଏ ଥିଲା $\tau(n)$ ବା 'ଟାଉ' ଫଳନ।

$\sigma_5(n)$କୁ ରାମାନୁଜନ୍ nର ଭାଜକମାନଙ୍କର ଘାତ 5ର ସମଷ୍ଟି ଭାବରେ ବ୍ୟାଖ୍ୟା କରିଥିଲେ। ଉଦାହରଣ ସ୍ୱରୂପ, $n=6$ ହେଲେ 6ରେ ଭାଜକଗୁଡ଼ିକ ହେବେ 6, 3, 2 ଓ 1। ଯଦି $s=3$ ହୁଏ ଭାଜକଗୁଡ଼ିକର ଘାତ 3 ବା ଘନଫଳର ସମଷ୍ଟି $\sigma_3(6)$ର ହେବ $6^3+3^3+2^3+1^3=252$। ଅଲଗା ଅଲଗା ସଂଖ୍ୟା ପାଇଁ ଏହି ମୂଲ୍ୟ ହିସାବ କରି ବାହାର କରାଯାଇପାରେ, କିନ୍ତୁ କୌଣସି ସୂତ୍ର ସାହାଯ୍ୟରେ $\sigma_s(n)$ର ମୂଲ୍ୟ ସହଜରେ ମିଳିପାରିବ କି? ଏହି ପ୍ରଶ୍ନର ସମାଧାନ ପାଇଁ ରାମାନୁଜନ୍‌ଙ୍କୁ ପନ୍ଦର ପୃଷ୍ଠାର ଗଣିତ କରିବାକୁ ପଡ଼ିଲା ଏବଂ ଶେଷରେ ଯେଉଁ ଧାରା ସେ ବାହାର କଲେ ତାହା ଥିଲା 'ଟାଉ' ଫଳନ। ଏହାର କୋଡ଼ିଏ ବର୍ଷ ପରେ ଏହି ଫଳନ ବିଷୟରେ ହାର୍ଡି ଲେଖିଥିଲେ, "ଅତି ଚମତ୍କାର ଏବଂ ଏବେ ମଧ୍ୟ ପୂରା ବୁଝାପଡ଼ିନାହିଁ''। ସଂଖ୍ୟାତତ୍ତ୍ୱ କ୍ଷେତ୍ରରେ ଏଭଳି ପରିସ୍ଥିତି ବେଶ୍ ସାଧାରଣ ଥିଲା, ଯେଉଁଠି ସରଳ ମନେହେଉଥିବା ସମସ୍ୟାର ସମାଧାନ ଖୋଜିଲା ବେଳେ ଅତି ଗଭୀର ଓ ଜଟିଳ ଗଣିତର ସାମନା କରିବାକୁ ପଡୁଥିଲା।

ସାଧାରଣ ଭାବରେ ପରିଚିତ ହେଉଥିବା ଟାଉ ଅନୁମାନୋକ୍ତିକୁ ହାର୍ଡି ରାମାନୁଜନ୍‌ଙ୍କ ଉପକଳ୍ପନା କହୁଥିଲେ। ତାହା $\tau(n)$ର ସଠିକ ମୂଲ୍ୟ ପାଇଁ କୌଣସି ସୂତ୍ର ଦେଉ ନ ଥିଲା, ବରଂ ତା'ର ସନ୍ନିକଟ ମୂଲ୍ୟ ଦେଉଥିଲା। ସେହି ସନ୍ନିକଟ ମୂଲ୍ୟର ରୂପ $0(n^{11/2+\varepsilon})$ ଭଳି ହେବ ବୋଲି ରାମାନୁଜନ୍ ସୂଚନା ଦେଇଥିଲେ, ଯେଉଁଠି $\varepsilon$ କିଛି ଛୋଟ ସଂଖ୍ୟା ହେବ।

ଟାଟା ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଫଣ୍ଡାମେଣ୍ଟାଲ୍ ରିସର୍ଚ୍ଚର ଏସ୍. ରାଘବନ୍ କହିଥିଲେ ଯେ ରାମାନୁଜନ୍‌ଙ୍କର ଅନୁମାନୋକ୍ତି ପ୍ରାୟ ଷାଠିଏ ବର୍ଷ ଧରି ଅନେକ ବିଶିଷ୍ଟ ଗଣିତଜ୍ଞଙ୍କୁ ପରାସ୍ତ କରିଥିଲା ଏବଂ ସଂଖ୍ୟାତତ୍ତ୍ୱର ଏକ ଗୁରୁତ୍ୱପୂର୍ଣ୍ଣ ଅସମାହିତ ସମସ୍ୟା ଭାବରେ ରହିଥିଲା। ରାମାନୁଜନ୍ ନିଜେ କେବଳ ଏକ ଆଂଶିକ ସମାଧାନ ଦେଇପାରିଥିଲେ। 1918 ମସିହା ବେଳକୁ ହାର୍ଡି ସେହି ସମାଧାନକୁ ଆଉ ଟିକିଏ ଉନ୍ନତ କରିପାରିଥିଲେ। 1927 ମସିହାରେ କ୍ଲୁଷ୍ଟର୍‌ମାନ, 1933 ମସିହାରେ ଡାଭେନ୍‌ପୋର୍ଟ ଓ ସାଲି ସଠିକ ଉତ୍ତରର ଆହୁରି ପାଖକୁ ଆସିପାରିଲେ।

ଶେଷରେ 1939 ମସିହାରେ ହାର୍ଡିଙ୍କର ଛାତ୍ର ରବର୍ଟ ରାନ୍‌କିନ୍ ପ୍ରମାଣ କଲେ ଯେ ଟାଉ ଫଳନର ସଠିକ ମୂଲ୍ୟ ହେଉଛି $1(n)=0(n^{29/5})$।

ସଠିକ ମୂଲ୍ୟ ନିର୍ଦ୍ଧାରଣର ସୂତ୍ର ବାହାରିଗଲେ ମଧ୍ୟ ଅନୁମାନୋକ୍ତିର ବିଧିବଦ୍ଧ ପ୍ରମାଣ ମିଳି ନ ଥିଲା। ଗଣିତର ଗୋଟିଏ ନୂଆ ବିଭାଗ ବୀଜଗାଣିତିକ ଜ୍ୟାମିତିର ଶକ୍ତିଶାଳୀ ଧାରା ବ୍ୟବହାର କରି ବେଲ୍‌ଜିଅମ୍‌ର ଗଣିତଜ୍ଞ ପିଏର୍ ଡିଲାଇନ୍ 1974 ମସିହାରେ ଉପଯୁକ୍ତ ପ୍ରମାଣ ଯୋଗାଇଲେ। ବିଂଶ ଶତାବ୍ଦୀର ଗଣିତ କ୍ଷେତ୍ରରେ ଏହା ଏକ ବିଶେଷ ଘଟଣା ଭାବରେ ସ୍ୱୀକୃତ ହେଲା ଏବଂ ସେଥିପାଇଁ ଡିଲାଇନ୍ ଫିଲ୍‌ଡ୍‌ସ୍ ପଦକ ପାଇଲେ। ଗଣିତ କ୍ଷେତ୍ରରେ ଫିଲ୍‌ଡ୍‌ସ୍ ପଦକ ନୋବେଲ ପୁରସ୍କାର ଭଳି ମର୍ଯ୍ୟାଦାବନ୍ତ ଥିଲା।

ରାମାନୁଜନ୍‌ଙ୍କ ଖ୍ୟାତିକୁ ଏହା ଆହୁରି ଦୃଢ଼ କରିଥିଲା।

1984 ମସିହାରେ ବ୍ରୁସ୍ ବର୍ଣ୍ଣ ରାମାନୁଜନ୍‌ଙ୍କ ଖ୍ୟାତିର ହ୍ରାସ ଓ ବୃଦ୍ଧିକୁ ମହାନ ସଙ୍ଗୀତଜ୍ଞ ଯୋହାନ୍ ସେବାଷ୍ଟିଆନ୍ ବାକ୍‌ଙ୍କ ଅବସ୍ଥା ସହିତ ତୁଳନା କରିଥିଲେ। 1750 ମସିହାରେ ମୃତ୍ୟୁବରଣ କରିଥିବା ବାକ୍ ଅନେକ ବର୍ଷ ଧରି ଅଜ୍ଞାତ ରହିଥିଲେ। ତାଙ୍କର କୃତିତ୍ୱ ଲୋକଲୋଚନକୁ ଆସିଲା 1829 ମସିହା ମାର୍ଚ୍ଚ 11 ଦିନ, ଯେତେବେଳେ ଫେଲିକ୍ସ ମେଣ୍ଡେଲ୍‌ସନ୍ ବାକ୍‌ଙ୍କର ସେଣ୍ଟ୍ ମାଥିଉଜ୍ ପ୍ୟାସନ୍ ଯନ୍ତ୍ରସଙ୍ଗୀତ ପରିବେଷଣ କରିଥିଲେ। ବର୍ଣ୍ଣ କହିଥିଲେ ଯେ ରାମାନୁଜନ୍‌ଙ୍କ କ୍ଷେତ୍ରରେ ସେହିଭଳି ଘଟିଥିଲା 1976 ମସିହାରେ ଯେତେବେଳେ ଜର୍ଜ ଆଣ୍ଡ୍ରିଉଜ୍ ରାମାନୁଜନ୍‌ଙ୍କର 'ହଜିଥିବା ନୋଟ୍ ଖାତା'କୁ ଆବିଷ୍କାର କଲେ।

ଯୁକ୍ତରାଷ୍ଟ୍ର ଆମେରିକାର ୱିସ୍‌କନ୍‌ସିନ୍ ବିଶ୍ୱବିଦ୍ୟାଳୟଠାରେ କାମକରୁଥିବା ଯୁବ ଅଧ୍ୟାପକ ଜର୍ଜ ଆଣ୍ଡ୍ରିଉଜ୍ 1976 ମସିହା ଏପ୍ରିଲ୍ ଶେଷ ଆଡ଼କୁ ଗୋଟିଏ ସମ୍ମିଳନୀରେ ଯୋଗଦେବାକୁ ସପ୍ତାହକ ପାଇଁ ଫ୍ରାନ୍‌ସ୍ ଯାଉଥିଲେ। କିନ୍ତୁ ସେ ଦେଖିଲେ ଯେ ସପ୍ତାହେ ରହି ଫେରିବା ତୁଳନାରେ ସେଠାରେ ତିନି ସପ୍ତାହ କଟାଇଲେ ତାଙ୍କୁ ଉଡ଼ାଜାହାଜ ଭଡ଼ା କମ୍ ପଡ଼ିବ। ତେଣୁ ଅଧିକା ଦିନଗୁଡ଼ିକରେ ସେ, ତାଙ୍କ ସ୍ତ୍ରୀ ଓ ଦୁଇ ଝିଅଙ୍କୁ ନେଇ କେମ୍ବ୍ରିଜକୁ ଯିବା ପାଇଁ ଠିକ୍ କଲେ। 1965 ମସିହାରେ ଜି. ଏନ୍. ୱାଟ୍‌ସନ୍‌ଙ୍କ ମୃତ୍ୟୁ ଘଟିଥିଲା ଏବଂ ତାଙ୍କର କାଗଜପତ୍ର ସବୁ କେମ୍ବ୍ରିଜରେ ରହିଥିଲା। ଆଣ୍ଡ୍ରିଉଜ୍ ସେଗୁଡ଼ିକୁ ଦେଖିବାକୁ ଚାହିଁଲେ।

ରୟାଲ୍ ସୋସାଇଟିର ଫେଲୋ ୱାଟ୍‌ସନ୍ ଜଣେ ବିଶିଷ୍ଟ ପାରମ୍ପରିକ ବିଶ୍ଳେଷକ ଥିଲେ ଏବଂ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆଗରୁ ଅନେକ ବର୍ଷ ଧରି ସେ ରାମାନୁଜନ୍‌ଙ୍କ ଖାତା ଓ କାଗଜ ଉପରେ କାମ କରୁଥିଲେ। ୱାଟ୍‌ସନ୍‌ଙ୍କ ମୃତ୍ୟୁ ପରେ ରୟାଲ ସୋସାଇଟି ତାଙ୍କର ଜଣେ ସହଯୋଗୀଙ୍କ ପୁଅ ଜେ. ଏମ୍. ହ୍ୱିଟେକର୍‌ଙ୍କୁ ତାଙ୍କ ମୃତ୍ୟୁ ସୂଚନା ଲେଖିବାକୁ ଦାୟିତ୍ୱ ଦେଲା। ୱାଟ୍‌ସନ୍‌ଙ୍କ ପତ୍ନୀଙ୍କ ଅନୁମତି ପାଇ ହ୍ୱିଟେକର୍ ୱାଟ୍‌ସନ୍‌ଙ୍କ କାଗଜପତ୍ର ଦେଖିବାକୁ ଗଲେ। ସେଠାରେ ସେ ଦେଖିଲେ:

> ବେଶ୍ ବଡ଼ କୋଠରିର ଚଟାଣ ସାରା ପ୍ରାୟ ଫୁଟେ ଉଚ୍ଚାରେ କାଗଜ ଗଦାହୋଇଛି। ସବୁକିଛି ଗୋଳିଆମିଶା ହୋଇ ରହିଥିଲା ଏବଂ ଅଳ୍ପଦିନ ପରେ ପୋଡ଼ା ହେବାର ଯୋଜନା ଥିଲା। ୱାଟ୍‌ସନ୍ କେବେ କିଛି ଫୋପାଡୁ ନ ଥିଲେ। ତେଣୁ କାଗଜର ଗଦା ଭିତରେ ହାତ ପୁରାଇ କିଛି ଭିଡ଼ି ଆଣିଲେ

ତାହା ଗଣିତ ଲେଖା ହୋଇପାରେ ବା ଖଣ୍ଡେ ରସିଦ ବା ପୁରୁଣା ଆୟକର ବିବରଣୀ ହୋଇପାରେ। ଅତି ଅସାଧାରଣ ସୌଭାଗ୍ୟବଶତଃ ମୋ ହାତରେ ରାମାନୁଜନ୍‌ଙ୍କର କିଛି କାଗଜ ପଡ଼ିଗଲା।

ତାହା ଥିଲା ପ୍ରାୟ 140 ପୃଷ୍ଠା। 1923 ମସିହାରେ ଡିଉଜ୍‌ବରି ହାର୍ଡିଙ୍କ ପାଖକୁ ସେହି କାଗଜ ସବୁ ପଠାଇଥିଲେ ଓ ହାର୍ଡି ତାହା ୱାଟ୍‌ସନ୍‌ଙ୍କୁ ଦେଇଥିଲେ। ହ୍ୱିଟେକର୍ ତାହା ରବର୍ଟ ରାନ୍‌କିନ୍‌ଙ୍କୁ ଦେଇଦେଲେ ଏବଂ 1968 ମସିହାରେ ରାନ୍‌କିନ୍ ସେସବୁ ଟ୍ରିନିଟି କଲେଜକୁ ଫେରାଇଦେଲେ।

ହ୍ୱିଟେକର୍ ଓ ରାନ୍‌କିନ୍ ଦୁହେଁ ଉଚ୍ଚ ସ୍ତରର ଗଣିତଜ୍ଞ ଥିଲେ, କିନ୍ତୁ ରାମାନୁଜନ୍‌ଙ୍କ ପ୍ରକାଶିତ କାମ ଓ ସେହି କାଗଜ ଭିତରେ ସୂକ୍ଷ୍ମ ପ୍ରଭେଦ ଧରିବା ପାଇଁ ତାଙ୍କର ସ୍ୱତନ୍ତ୍ର ଦକ୍ଷତା ନ ଥିଲା। ଆଣ୍ଡ୍ରିଉଜ୍ କିନ୍ତୁ କାଗଜର ବିଶେଷତା ବିଷୟରେ ସାଙ୍ଗେ ସାଙ୍ଗେ ଜାଣିପାରିଲେ। ସେଥିରୁ କିଛି ମକ୍-ଥିଟା ଫଳନ ସମ୍ପର୍କିତ ଥିଲା ଯେଉଁ ବିଷୟରେ ଆଣ୍ଡ୍ରିଉଜ୍ ତାଙ୍କ ପି.ଏଚ୍.ଡି. ସନ୍ଦର୍ଭ ଲେଖିଥିଲେ। ସେ ବୁଝିଗଲେ ଯେ ରାମାନୁଜନ୍‌ଙ୍କର ସେହି କାଗଜସବୁ ଭାରତରେ ତାଙ୍କ ଜୀବନର ଶେଷ ବର୍ଷରେ ଲେଖାଯାଇଥିଲା।

କିଛି ଅତି ଚମତ୍କାର ଜିନିଷ ତାଙ୍କ ହାତକୁ ଆସିଥିବାରୁ ତାଙ୍କ ମନ ଉଦ୍ଦୀପନାରେ ଭରିଗଲା। କାଗଜଗୁଡ଼ିକର ନକଲ ନେବା ପାଇଁ ସେ ଚାହିଁଲେ। ନିଉଟନ୍, ବାଇରନ୍, ମିଲ୍‌ଟନ୍‌ଙ୍କ ଭଳି କେମ୍ବ୍ରିଜର ମହାମନିଷୀମାନଙ୍କର ପ୍ରତିମୂର୍ତ୍ତି ତଳେ ସେ ଭୀତ ଭାବରେ ଯାଇ ପାଠାଗାରର ଅଧିକାରୀଙ୍କୁ ନକଲ କରିବା ପାଇଁ ଅନୁମତି ମାଗିଲେ। ତାଙ୍କର ଡର ଥିଲା ଯେ ତାହା ହୁଏତ ସମ୍ଭବ ହେବନାହିଁ। କିଛି ସମୟ ପରେ ତାଙ୍କୁ ସାବଧାନ କରିଦିଆଗଲା ଯେ ସେଥିପାଇଁ ତାଙ୍କୁ ସାତ ପାଉଣ୍ଡ ଖର୍ଚ୍ଚ କରିବାକୁ ହେବ, କାରଣ ଯୁକ୍ତରାଷ୍ଟ୍ର ଆମେରିକାକୁ ବିମାନଡାକରେ ପଠାଇବା ପାଇଁ ସେତିକି ମାସୁଲ ପଡ଼ିବ। ତାହା ପାଉଥିବାରୁ ଆଣ୍ଡ୍ରିଉଜ୍ ଅତି ଆଶ୍ୱସ୍ତ ହେଲେ, କାରଣ ସେହି କାଗଜତକ ପାଇବା ପାଇଁ ସେ ତାଙ୍କ ଘର ବନ୍ଧା ପକାଇବାକୁ ପ୍ରସ୍ତୁତ ଥିଲେ।

ଅଳ୍ପ ଦିନ ଭିତରେ ସେ ତାଙ୍କର ଗୋଟିଏ ନିବନ୍ଧରେ ସେହି କାଗଜଗୁଡ଼ିକୁ ରାମାନୁଜନ୍‌ଙ୍କ 'ହଜିଥିବା ନୋଟ୍ ଖାତା' ନାମରେ ନାମିତ କଲେ। ଗଣିତଜ୍ଞ ଏମ୍ମା ଲେହ୍‌ମର୍ ସେହି ଆବିଷ୍କାରକୁ ବିଥୋଭେନ୍‌ଙ୍କ ଦଶମ ସିମ୍ଫୋନିର ପୂରା ଗୀତିଲିପିର ଆବିଷ୍କାର ସହିତ ତୁଳନା କରିଥିଲେ।

ଏହି ଆବିଷ୍କାର ଓ ନାମକରଣ ଇଂଲଣ୍ଡରେ କିଛି ଲୋକଙ୍କୁ କ୍ଷୁବ୍ଧ କରିଥିଲା। ରବର୍ଟ ରାନ୍‌କିନ୍ କହିଥିଲେ ଯେ ତାହା 'ଖାତା' ନ ଥିଲା, କିଛି ଖୋଲା କାଗଜ ଥିଲା ଏବଂ ତାହା ହଜି ନ ଥିଲା, ରେନ୍ ଲାଇବ୍ରେରିରେ ସୁରକ୍ଷିତ ହୋଇ ରହିଥିଲା। ଆଣ୍ଡ୍ରିଉଜ୍ ପରେ ଲେଖିଥିଲେ, "ତଥାପି ସେହି ପାଣ୍ଡୁଲିପି ଓ ସେଥିରେ ଥିବା ଚମତ୍କାର ଫଳାଫଳ 55 ବର୍ଷରୁ ବେଶି ସମୟ ଧରି ଗାଣିତିକ ସମାଜ ପାଇଁ ଅଜଣା ହୋଇ ରହିଗଲା।" ଏହି ଦୃଷ୍ଟିରୁ ତାକୁ ହଜିଯାଇଥିବା କହିବାରେ କିଛି ଭୁଲ ନାହିଁ। ବିଲୁପ୍ତି ମୁହଁରୁ ତାକୁ ରକ୍ଷାକରିବା ହ୍ୱିଟେକର୍ ଓ ରାନ୍‌କିନ୍‌ଙ୍କର ଅବଦାନ ଥିଲା। କିନ୍ତୁ ତା'ର ମୂଲ୍ୟକୁ ବୁଝିବା ଥିଲା ଆଣ୍ଡ୍ରିଉଜ୍‌ଙ୍କ ଅବଦାନ।

1974 ମସିହା ଜାନୁଆରି ମାସରେ ବ୍ରୁସ୍ ବର୍ଣ୍ଣ୍ଟ ତାଙ୍କର ଦୁଇବର୍ଷ ତଳର କିଛି କାଗଜ ଦେଖିବାକୁ ପାଇଲେ। ସେଥିରେ ସେ ରାମାନୁଜନ୍‌ଙ୍କ ନୋଟ୍ ଖାତାର କିଛି ସୂତ୍ରର ପ୍ରମାଣ ଲେଖିଥିଲେ। ରାମାନୁଜନ୍‌ଙ୍କ ଖାତାର ମୁଦ୍ରିତ ନକଲ ଆଣି ସେଥିରେ ଥିବା ସୂତ୍ରଗୁଡ଼ିକୁ ସେ ପରୀକ୍ଷା କରିବାରେ

ଲାଗିଲେ। ଅନେକଗୁଡ଼ିଏ ଏକାଭଳି ମନେ ହେଉଥିବା ସୂତ୍ର ସେ ଦେଖିଲେ ଯାହା ଅନେକ ଚେଷ୍ଟା ପରେ ମଧ୍ୟ ସେ ପ୍ରମାଣ କରିପାରିଲେନାହିଁ। ତାହା ତାଙ୍କୁ ଖୁବ୍ ବିବ୍ରତ କଲା। ଚତୁର୍ଦ୍ଦଶ ଅଧ୍ୟାୟର ସବୁତକ ସୂତ୍ରର ପ୍ରମାଣ ବାହାର କରିବା ପାଇଁ ଲକ୍ଷ୍ୟ ରଖିଲେ। ଏଥିପାଇଁ ତାଙ୍କୁ ବର୍ଷେ ଲାଗିଗଲା। ଆଣ୍ଡ୍ରିଉଜ୍‌ଙ୍କଠାରୁ ସେ ପରେ ଜାଣିଲେ ଯେ ୱାଟ୍‌ସନ୍ ଓ ୱିଲ୍‌ସନ୍ ରାମାନୁଜନ୍‌ଙ୍କ ନୋଟ୍ ଖାତାରେ ଥିବା ପ୍ରମେୟଗୁଡ଼ିକର ପ୍ରମାଣ ବାହାର କରିବା ପାଇଁ ଅନେକ ବର୍ଷ ଧରି କାମ କରିଥିଲେ ଏବଂ ସେମାନଙ୍କର କାଗଜ ସବୁ ସାଇତା ହୋଇ ରହିଛି। 1977 ମସିହା ମେ ମାସରୁ ବର୍ଣ୍ଣ ଅନ୍ୟ ସବୁ କାମ ଛାଡ଼ିଦେଇ ରାମାନୁଜନ୍‌ଙ୍କ ନୋଟ୍ ଖାତାଗୁଡ଼ିକର ସମ୍ପାଦନାରେ ଲାଗିରହିଲେ।

1978ରୁ 1988 ମସିହା ଭିତରେ ପ୍ରାୟ 300 ପ୍ରକାଶିତ ନିବନ୍ଧର ଶୀର୍ଷକରେ ବା ସାରାଂଶରେ ରାମାନୁଜନ୍‌ଙ୍କ ନାଁ ରହିଥିଲା। ଗଣିତର ବିଭିନ୍ନ କ୍ଷେତ୍ର ଓ ତତ୍ତ୍ୱ ସହିତ ରାମାନୁଜନ୍‌ଙ୍କ କାମର ସମ୍ପର୍କ ଦେଖିବାକୁ ମିଳୁଥିଲା। ଡାଇସନ୍ କହିଥିଲେ, "ଗଲା କୋଡ଼ିଏ ବର୍ଷରେ ଅନେକ ଲୋକ ରାମାନୁଜନ୍‌ଙ୍କୁ ପୁଣି ଗୁରୁତ୍ୱ ଦେବାକୁ ଆରମ୍ଭ କଲେଣି। ତାଙ୍କର ଅନେକ ଅନୁମାନୋକ୍ତି କେବଳ ସୁଦୃଶ୍ୟ ସୂତ୍ର ନ ଥିଲା, ବରଂ ସେଥିରେ ତତ୍ତ୍ୱ ଓ ଗଭୀରତା ରହିଥିଲା।" ଶୁଦ୍ଧ ଗଣିତର ପରିସର ଡେଇଁ ତାହା ପ୍ରାୟୋଗିକ ମୂଲ୍ୟ ମଧ୍ୟ ଦେଖାଉଥିଲା।

## 6. ଉନ୍ନତ ବ୍ଲାଷ୍ଟଫର୍ଣ୍ଣେସ୍?

ହାର୍ଡି ଶୁଦ୍ଧତାର ଉପାସକ ଥିଲେ। ତାଙ୍କ କାମର 'ମୂଲ୍ୟହୀନତା' ଉପରେ ସେ ଜୋର ଦେଉଥିଲେ। ସେ କହୁଥିଲେ, "ଯେଉଁ ସବୁ ସମସ୍ୟାର ସମାଧାନରେ ମୁଁ ମୋର ସର୍ବାଧିକ ଶକ୍ତି ଖଟାଉଛି ସମାଜର ସାଧାରଣ ଜୀବନ ପାଇଁ ସେସବୁର ଗୁରୁତ୍ୱ ବିଷୟରେ ପଚରାଗଲେ ମୁଁ ହାର ମାନିଯିବି।" ସମାଜ ପାଇଁ ଉପଯୋଗୀ ଆବିଷ୍କାର କରିବାର କାମ ସେ ଇଞ୍ଜିନିଅର୍, ରସାୟନ ବିଜ୍ଞାନୀ ଓ ଅନ୍ୟମାନଙ୍କ ପାଇଁ ଛାଡ଼ି ଦେଇଥିଲେ ଓ କହିଥିଲେ, "ମଣିଷ ସମାଜର ଦୁଃଖକଷ୍ଟ ଦୂର କରିବାର ଭାର ଜଣେ ଶୁଦ୍ଧ ଗଣିତଜ୍ଞ ତା'ର ସୁଖୀ ସହକର୍ମୀମାନଙ୍କ ପାଇଁ ଛାଡ଼ିଦେବା ଦରକାର।"

ବିଭିନ୍ନ ସମସ୍ୟାରେ ବୁଡ଼ି ରହିଥିବା ଭାରତରେ ଜ୍ଞାନର ମୂଲ୍ୟାୟନ ପାଇଁ ତା'ର ପ୍ରାୟୋଗିକ ଦିଗ ଉପରେ ଗୁରୁତ୍ୱ ଦେବା ସ୍ୱାଭାବିକ ଥିଲା। ରାମାନୁଜନ୍‌ଙ୍କ ଆବିଷ୍କାରକୁ ମଧ୍ୟ ସେହି କଷଟିରେ ପରଖିବା ପାଇଁ ଆଗ୍ରହ ଦେଖା ଯାଉଥିଲା। 1987 ମସିହା ଡିସେମ୍ବର 19 ତାରିଖର ସଂଖ୍ୟାରେ ହିନ୍ଦୁ ସମ୍ବାଦପତ୍ର ପାଠକମାନଙ୍କୁ ଆଶ୍ୱାସନା ଦେଇଥିଲା ଯେ, "ରାମାନୁଜନ୍‌ଙ୍କର ଅନେକ ପ୍ରମେୟ ଯୁକ୍ତରାଷ୍ଟ୍ର ଆମେରିକାରେ ଏବେ କଣିକା ପଦାର୍ଥ ବିଜ୍ଞାନ, ସାଂଖ୍ୟିକୀୟ ଯାନ୍ତ୍ରିକୀ, କମ୍ପ୍ୟୁଟର ବିଜ୍ଞାନ ଓ ମହାକାଶ ଯାତ୍ରା ଭଳି ଅନେକ କ୍ଷେତ୍ରରେ ବ୍ୟବହୃତ ହେଉଛି। ରାମାନୁଜନ୍‌ଙ୍କ ଜୀବନକାଳ ଭିତରେ ଏହିସବୁ ବିଷୟ ସୃଷ୍ଟି ହୋଇ ନ ଥିଲା।" କିନ୍ତୁ ତାଙ୍କ କାମର ପ୍ରାୟୋଗିକ ମୂଲ୍ୟ ଦେଖାଇବାର ଚେଷ୍ଟା ଅନେକ ଆଗରୁ ଆରମ୍ଭ ହୋଇଥିଲା।

ରାମାନୁଜନ୍‌ଙ୍କ ମୃତ୍ୟୁର ଅଳ୍ପଦିନ ପରେ ଭାରତୀୟ ଗଣିତ ସମାଜର ତୃତୀୟ ସମ୍ମିଳନୀ ଲାହୋରଠାରେ ଅନୁଷ୍ଠିତ ହୋଇଥିଲା। ସେଠାରେ ସମସ୍ତେ ରାମାନୁଜନ୍‌ଙ୍କ ବିଷୟରେ ଆଲୋଚନା କରିଚାଲିଥିଲେ। ଗଣିତ ସମାଜର ସଭାପତି ବାଲକ୍ ରାମ୍ କହିଥିଲେ, "ରାମାନୁଜନ୍‌ଙ୍କ ନାଁ ଧରିବା

ମାତ୍ରକେ ଭାରତରେ ବିଜ୍ଞାନ ଗବେଷଣା ବ୍ୟବସ୍ଥା ଓ ତାହା ପାଇଁ ପାଣ୍ଠି ବିଷୟରେ ପ୍ରଶ୍ନ ଉଠେ।'' ମୌଳିକ ଓ ପ୍ରାୟୋଗିକ ବିଜ୍ଞାନ ଭିତରେ ସନ୍ତୁଳନ ରକ୍ଷା କରିବାର ଗୁରୁତ୍ୱ ବିଷୟରେ ସେ କହିଥିଲେ ଯେ ଜଣେ ଇଞ୍ଜିନିଅର୍ ତା'ର କାମ ପାଇଁ ଉପଯୁକ୍ତ ମୂଲ୍ୟ ପାଇପାରେ, ଏପରିକି ଏଡିସନ୍‌ଙ୍କ ଭଳି ନିଜର ଆବିଷ୍କାର ବଳରେ ବେଶ୍ ଅର୍ଥ ଉପାର୍ଜନ କରିପାରେ। କିନ୍ତୁ ମୌଳିକ ଜ୍ଞାନାର୍ଜନ ପାଇଁ ସମାଜ ବ୍ୟବସ୍ଥା କରିବା ଦରକାର କି? ଏହି ପ୍ରଶ୍ନର ଉତ୍ତରରେ ସେ କହିଥିଲେ ଯେ ନିଶ୍ଚିତ ଭାବରେ ହଁ। ତାଙ୍କର ମତ ଥିଲା:

> ଚିନ୍ତନ ଓ ଶିକ୍ଷାଦାନ ପାଇଁ ଯେଉଁମାନଙ୍କୁ ଯଥେଷ୍ଟ ଅବସର ମିଳୁଥାଏ ସେହିଭଳି ଚିନ୍ତାଶୀଳ ବ୍ୟକ୍ତି ଓ ଶିକ୍ଷକମାନଙ୍କଠାରୁ ଦିଗ୍‌ଦର୍ଶନ ନ ପାଇଲେ ପ୍ରଗତି ପାଇଁ ସବୁ ଚେଷ୍ଟା ଯେ ବିଫଳ ହେବ, ସେକଥା ସବୁ ପ୍ରତିଷ୍ଠିତ ସମାଜ ସଚେତନ ଭାବରେ ବା ଅସଚେତନ ଭାବରେ ବୁଝିଥା'ନ୍ତି। ତେଣୁ ଦେଖାଯାଏ ଯେ ସମାଜରେ ଜ୍ଞାନୀ ଲୋକମାନଙ୍କୁ ସ୍ୱତନ୍ତ୍ର ସୁରକ୍ଷା ଓ ସୁବିଧା ଯୋଗାଇ ଦିଆଯାଏ। ଏହା ଫଳରେ ସେମାନେ ଯଥେଷ୍ଟ ଅବସର ଓ ମାନସିକ ଉତ୍ସାହ ପାଇପାରନ୍ତି ଯାହା ସେମାନେ ହରାଉଥିବା ଆର୍ଥିକ ପାରିତୋଷିକର ଅଭାବକୁ ପୂରଣ କରେ।

ଅର୍ଥାତ୍, ଭାରତ ଯଦି ପ୍ରଗତି ପଥରେ ଆଗେଇବାକୁ ଚାହୁଁଥାଏ ତେବେ ତାକୁ ରାମାନୁଜନ୍‌ଙ୍କ ଭଳି ଲୋକମାନଙ୍କୁ ସୁରକ୍ଷା ଓ ସୁବିଧା ଯୋଗାଇବାକୁ ହେବ। ଦୀର୍ଘମିଆଦୀ ଭିତ୍ତିରେ ଏହାର ସୁଫଳ ନିଶ୍ଚୟ ମିଳିବ।

1962 ମସିହାରେ ରାମାନୁଜନ୍‌ଙ୍କ ଉପରେ ଡାକଟିକଟ ବାହାରିବା ବେଳେ ଡାକ ବିଭାଗ ତରଫରୁ ଦିଆଯାଇଥିବା ବିବରଣୀରେ ରାମାନୁଜନ୍‌ଙ୍କ କାମର ସମ୍ଭାବ୍ୟ ପ୍ରୟୋଗ ବିଷୟରେ କିଛି ସୂଚନା ଦିଆଯାଇଥିଲା। ସେଥିରେ କୁହାଯାଇଥିଲା, "ଭିନ୍ନ ପରିପ୍ରେକ୍ଷୀରେ ରିମାନ ଜେଟା ଫଳନ ଉପରେ ରାମାନୁଜନ୍‌ଙ୍କର ଓ ଅନ୍ୟମାନଙ୍କର କାମର ଫଳାଫଳ ଏବେ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ କାମ ଦେଉଛି। ତାପମାତ୍ରାମିତି ବା ପାଇରୋମେଟ୍ରି କ୍ଷେତ୍ରରେ ଏହାର ପ୍ରୟୋଗ ଫଳରେ ଉନ୍ନତ ବ୍ଲାଷ୍ଟଫର୍ଣ୍ଣେସ୍ ତିଆରି ପାଇଁ ବାଟ ବାହାରୁଛି।'' ସେଥିରେ ସୂଚନା ରହିଥିଲା ଯେ ପରମାଣୁ ବିଜ୍ଞାନ କ୍ଷେତ୍ରରେ ପ୍ରୟୋଗ ପାଇଁ ତାଙ୍କର ମକ୍-ଥିଟା ଫଳନ ଓ ମଡୁଲାର୍ ସମୀକରଣ ଆଦି କାମର ଅନୁଧ୍ୟାନ କରାଯାଉଛି।

ପରୋକ୍ଷ ଭାବରେ ହେଲେ ମଧ୍ୟ ପ୍ଲାଷ୍ଟିକ ଅଣୁର ଗଠନ ବୁଝିବାରେ ଓ ଟେଲିଫୋନ୍ ତାର ବିଛାଇବାର ଧାରା ସ୍ଥିର କରିବାରେ ରାମାନୁଜନ୍‌ଙ୍କର ବିଭାଜନ ସଂଖ୍ୟା କାମ ସାହାଯ୍ୟ କରୁଛି। ଏପରିକି କର୍କଟ ରୋଗର ଆରମ୍ଭ ସମୟରେ ଜୀବକୋଷର ବ୍ୟବହାରକୁ ବୁଝିବା ପାଇଁ ରାମାନୁଜନ୍‌ଙ୍କ ମକ୍-ଥିଟା ଫଳନ ପ୍ରୟୋଗ ଉପରେ ଗବେଷଣା କରାଯାଇଛି।

ରାମାନୁଜନ୍‌ଙ୍କ କାମର ଅଧିକ ପ୍ରଭାବ ଦେଖିବାକୁ ମିଳିଛି ଗଣିତର ଅନ୍ୟାନ୍ୟ ବିଭାଗରେ। ଷ୍ଟ୍ରିଙ୍ଗ୍ ତତ୍ତ୍ୱର ବ୍ୟାଖ୍ୟା କରିବାରେ ରାମାନୁଜନ୍‌ଙ୍କ ବିଭାଜନ ଓ ମଡୁଲାର ଫର୍ମ ସମ୍ପର୍କିତ କାମ ସାହାଯ୍ୟ କରୁଛି। ସାଂଖ୍ୟିକୀୟ ଯାନ୍ତ୍ରିକୀର କିଛି ସମସ୍ୟାକୁ ବୁଝିବାରେ ରଜର୍ସ-ରାମାନୁଜନ୍ ଅଭେଦ କାମରେ ଲାଗୁଛି।

1920 ମସିହା ବେଳକୁ କେହି କମ୍ପ୍ୟୁଟର ବିଷୟରେ ସ୍ୱପ୍ନ ମଧ୍ୟ ଦେଖି ନ ଥିଲେ। କିନ୍ତୁ

ସେତେବେଳେ ରାମାନୁଜନ୍ କରିଥିବା କିଛି କାମ ଏବେ ସେହି କ୍ଷେତ୍ରରେ ବ୍ୟବହୃତ ହେଉଛି। ତାଙ୍କ ଖାତାରେ ଥିବା ଗୋଟିଏ ମଡୁଲାର ସମୀକରଣର ଆଧାରରେ ତିଆରି ହୋଇଥିବା କାରିକା ସାହାଯ୍ୟରେ ପାଇର ମୂଲ୍ୟ ସବୁଠାରୁ ବେଶି ବେଗରେ ବାହାର କରାଯାଇ ପାରୁଛି। ବୀଜଗାଣିତିକ ସମୀକରଣଗୁଡ଼ିକର ମାନସିକ ସମାଧାନ କରିବାରେ ରାମାନୁଜନ୍ ଏତେ କ୍ଷିପ୍ର ଓ ଦକ୍ଷ ଥିଲେ ଯେ ଜର୍ଜ ଆଣ୍ଡ୍ରିଉଜ୍ ତାଙ୍କୁ ଏକ କମ୍ପ୍ୟୁଟର ସହିତ ତୁଳନା କରିଥିଲେ।

ରାମାନୁଜନ୍‌ଙ୍କ କାମର ପ୍ରୟୋଗାତ୍ମକ ଦିଗ ଖୋଜିବା ପାଇଁ ଏଭଳି ବ୍ୟଗ୍ରତା ଅଦରକାରୀ ଓ ଅତିରଞ୍ଜନ ବୋଲି ଫ୍ରିମାନ୍ ଡାଇସନ୍ ମତ ଦେଇଛନ୍ତି। ଉଦାହରଣ ସ୍ୱରୂପ, ଷ୍ଟ୍ରିଙ୍ଗ୍ ତତ୍ତ୍ୱ ବିଷୟରେ କାମ କରିବା ପାଇଁ ରାମାନୁଜନ୍‌ଙ୍କ ଗଣିତ ପଢ଼ିବା ଦରକାର ନାହିଁ। ଏହି କ୍ଷେତ୍ରରେ ସେହି ଗଣିତର ଭୂମିକା ଅତି ପରୋକ୍ଷ।

ମୋଟ ଉପରେ ଦେଖିଲେ ରାମାନୁଜନ୍‌ଙ୍କ ଗଣିତର ଆକର୍ଷଣ ତା'ର ବ୍ୟାବହାରିକ ସମ୍ଭାବନାରୁ ଆସୁନାହିଁ। ତାହା ଆସୁଛି ତା'ର ଗାଣିତିକ ସୌନ୍ଦର୍ଯ୍ୟରୁ, ତା'ର ଗଭୀରତା ଓ ରହସ୍ୟମୟତାରୁ। ହାର୍ଡିଙ୍କୁ ତାହା ବିମୋହିତ କରିଥିଲା। ଡାଇସନ୍, ସେଲ୍‌ବର୍ଗ, ଏର୍ଡୋସ୍ ଓ ଆହୁରି ଅନେକ ତା'ର ପ୍ରେମରେ ପଡ଼ିଯାଇଥିଲେ। ୱିସ୍‌କନ୍‌ସିନ୍ ବିଶ୍ୱବିଦ୍ୟାଳୟର ଗଣିତଜ୍ଞ ରିଚାର୍ଡ ଆସ୍କି ରାମାନୁଜନ୍‌ଙ୍କ କାମ ସହିତ ଗଭୀର ଭାବରେ ଜଡ଼ିତ ଥିଲେ ଏବଂ ତାଙ୍କର ମତ ଥିଲା, "ଭଲ ଗଣିତଜ୍ଞମାନେ ଆରମ୍ଭରୁ ରାମାନୁଜନ୍‌ଙ୍କ କାମ ପ୍ରତି ଆଦର ଦେଖାନ୍ତି। ଅନ୍ୟମାନେ ଆବଶ୍ୟକତା ଦୃଷ୍ଟିରୁ ତାଙ୍କ ଗଣିତରୁ କିଛି ବ୍ୟବହାର କରନ୍ତି ଏବଂ ତାହା ଫଳରେ ରାମାନୁଜନ୍‌ଙ୍କ କାମର ମୂଲ୍ୟ ବୁଝନ୍ତି।" ଜର୍ଜ ଆଣ୍ଡ୍ରିଉଜ୍ ଯୁବକ ଅବସ୍ଥାରେ ରାମାନୁଜନ୍-ହାର୍ଡି ବିଭାଜନ ସୂତ୍ର ବିଷୟରେ ଜାଣିଲା ପରେ ତାଙ୍କ ପ୍ରତିକ୍ରିୟା ବିଷୟରେ କହିଥିଲେ, "ପ୍ରଥମ ଥର ପାଇଁ ତାହା ଦେଖିଲା ପରେ ମୁଁ ଅତି ମାତ୍ରାରେ ବିସ୍ମିତ ହୋଇଥିଲି। ମୁଁ ତାହା ବିଶ୍ୱାସ କରିପାରିଲିନାହିଁ। ତାହା ଯେତେବେଳେ ମତେ ବୁଝାଇଦିଆଗଲା ଓ ତା'ର ବିକାଶଧାରା ବିଷୟରେ ଯେତେବେଳେ ମୁଁ ନିଜେ ବୁଝିପାରିଲି ... ମୁଁ ନିଶ୍ଚିତ ହେଲି ଯେ ଗଣିତର ଏହି ବିଭାଗରେ ହିଁ ମୁଁ କାମ କରିବି।"

ରାମାନୁଜନ୍‌ଙ୍କ ଗଣିତକୁ ବୁଝିବା ପାଇଁ ଯେଉଁ ଜ୍ଞାନ ଓ ପୃଷ୍ଠଭୂମି ଦରକାର ତାହା ଅଧିକାଂଶ ଲୋକଙ୍କ ପାଖରେ ନ ଥାଏ। ତେଣୁ ଖୁବ୍ କମ୍ ଲୋକ ସେହି କାମର ପ୍ରକୃତ ସ୍ୱାଦ ପାଇପାରନ୍ତି, ତା'ର ପ୍ରକୃତ ମୂଲ୍ୟ ବୁଝନ୍ତି। ସେଭଳି ଗଣିତଜ୍ଞ ଓ ପଦାର୍ଥ ବିଜ୍ଞାନୀଙ୍କ ସଂଖ୍ୟା ହୁଏତ କେତେ ଶହ ବା କେତେ ହଜାର ମାତ୍ର ହେବ। ବାକି ସମସ୍ତେ ବିଶେଷଜ୍ଞଙ୍କ କଥାକୁ ବିଶ୍ୱାସ କରି, କିଛି ଅସ୍ପଷ୍ଟ ଧାରଣା ମନରେ ଧରି, ଆମୋଦିତ ଅନୁଭବ କରନ୍ତି। କିଛି ବିଶେଷଜ୍ଞ ସାଧାରଣ ଲୋକମାନେ ପରିଚିତ ଥିବା ବିଷୟ ସହିତ ତୁଳନା କରି ରାମାନୁଜନ୍‌ଙ୍କ କାମର ବୋଧଗମ୍ୟ ଧାରଣା ଦେବାକୁ ଚେଷ୍ଟା କରନ୍ତି।

ୱାଟ୍‌ସନ୍, ବର୍ଣ୍ଣ ଆଦି ରାମାନୁଜନ୍‌ଙ୍କ ବିଷୟରେ ନିଜର ଉଦ୍ଦୀପନାକୁ ବୁଝାଇବା ପାଇଁ ସେହିଭଳି ବାଟ ଧରିଛନ୍ତି। କୁହାଯାଇପାରିବ ଯେ ପିଲାଟିଏ ଲଡୁଟିଏ ପାଇଲା ଭଳି ସେମାନେ ଖୁସି ହୋଇଥିଲେ ବା ଜଣେ ପାହାଡ଼ ଚଢ଼ାଳି କୌଣସି ଉଚ୍ଚ ଶୃଙ୍ଗ ଉପରେ ପହଞ୍ଚି ଚାରିପାଖର ଦୃଶ୍ୟରେ ବିହ୍ୱଳିତ ହେଲା ଭଳି ଅନୁଭୂତି ପାଇଥିଲେ।

ରାମାନୁଜନ୍‌ଙ୍କ କୃତି ସବୁଦିନ ପାଇଁ ବଞ୍ଚି ରହିବ। କିନ୍ତୁ ଗାନ୍ଧିଜୀ ବା ସେକ୍ସପିଅର୍‌ଙ୍କ କାମ ଭଳି ତାହା ଜନସାଧାରଣଙ୍କ ମନରେ ରହିବନାହିଁ। କିନ୍ତୁ ସେହି କାମକୁ ବୁଝୁଥିବା ଓ ଆଗେଇ ନେଉଥିବା ଲୋକଙ୍କ ମାଧ୍ୟମରେ ତାହା ମାନବ ସମାଜର ଜ୍ଞାନଭଣ୍ଡାରର ଅଂଶ ହୋଇ ରହିବ। ଶୁଦ୍ଧ ଗଣିତଜ୍ଞର କାମ ବିଷୟରେ ହାର୍ଡି କହିଥିଲେ, "ଆମେ ଯାହା କରୁଛେ ତାହା ଛୋଟ ହୋଇପାରେ, କିନ୍ତୁ ତା'ର ଚରିତ୍ରରେ ଚିରସ୍ଥାୟୀ ହେବାର ଗୁଣ ରହିଛି। ସଙ୍ଗୀତ ହେଉ ବା ଜ୍ୟାମିତିକ ପ୍ରମେୟ ହେଉ ସ୍ଥାୟୀତ୍ୱର ଗୁଣ ବହନ କରୁଥିବା କିଛି ବି ସୃଷ୍ଟି କରିଥିବା ହେଉଛି ଏଭଳି ଏକ କାମ ଯାହା ଅଧିକାଂଶ ମଣିଷଙ୍କର ଦକ୍ଷତାର ବାହାରେ।"

1987 ମସିହାରେ ରାମାନୁଜନ୍‌ଙ୍କ ଜନ୍ମ ଶତବାର୍ଷିକୀ ଆସିବା ବେଳକୁ ତାଙ୍କର ଖ୍ୟାତି ଏକ ନୂଆ ରୂପରେ ଚମକୁଥିଲା। ଭାରତ ଭିତରେ ତାଙ୍କୁ ନୋବେଲ ପୁରସ୍କାର ବିଜେତା ବୈଜ୍ଞାନିକ ସି. ଭି. ରମଣ ଓ ଜବାହରଲାଲ୍ ନେହେରୁଙ୍କ ସହିତ ତୁଳନା କରାଯାଉଥିଲା। ସେହି ଦୁଇ ବିଶିଷ୍ଟ ଭାରତୀୟଙ୍କର ଜନ୍ମ ଶତବାର୍ଷିକୀ ମଧ୍ୟ ପ୍ରାୟ ଏହି ସମୟରେ ପଡୁଥିଲା। ଏହି ଅବସରରେ ଭାରତରେ ରାମାନୁଜନ୍‌ଙ୍କ ଉପରେ ତିନିଟି ସିନେମା ପ୍ରସ୍ତୁତ କରାଯାଇଥିଲା। 1986 ମସିହାରେ ପ୍ରତିଷ୍ଠିତ ହୋଇଥିବା ରାମାନୁଜନ୍ ମାଥେମାଟିକାଲ୍ ସୋସାଇଟି ତା'ର ପତ୍ରିକାର ପ୍ରଥମ ସଂଖ୍ୟା ଏହି ସମୟରେ ପ୍ରକାଶ କରିଥିଲା।

ରାମାନୁଜନ୍‌ଙ୍କ କାମ ପ୍ରତି ଆଗ୍ରହକୁ ପୁନଃପ୍ରତିଷ୍ଠିତ କରାଇବା ଦିଗରେ ଆମେରିକାର ତିନି ଜଣ ଗଣିତଜ୍ଞଙ୍କର ସବୁଠାରୁ ବେଶି ଅବଦାନ ରହିଥିଲା। ସେହି ତିନି ଜଣ - ଆଣ୍ଡ୍ରିଉଜ୍, ଆସ୍କି ଓ ବର୍ଣ୍ଡ - ଶତବାର୍ଷିକୀ ପାଳନ ସମୟରେ ଭାରତର ବିଭିନ୍ନ ଜାଗାରେ ଅନେକ ଭାଷଣ ଦେଇଥିଲେ। ମାନ୍ଦ୍ରାଜରେ ନରୋସା ପ୍ରକାଶନ ସଂସ୍ଥା ରାମାନୁଜନ୍‌ଙ୍କ ହଜିଥିବା ଖାତାକୁ ପ୍ରକାଶ କରିଥିଲେ ଏବଂ ତା'ର ପ୍ରଥମ ଖଣ୍ଡରେ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧି ସ୍ୱାକ୍ଷର କରି ଜାନକୀଙ୍କୁ ଦେଇଥିଲେ।

କୁମ୍ଭକୋଣମ୍‌ର ରାସ୍ତାରେ ରାମାନୁଜନ୍‌ଙ୍କର ଫଟୋକୁ ବାଜା ଓ ନାଚ ସହିତ ଶୋଭାଯାତ୍ରାରେ ନିଆଯାଇଥିଲା। ପିଲା ବଡ଼ ସମସ୍ତେ ସେଥିରେ ଭାଗ ନେଇଥିଲେ ଓ ପୁଷ୍ପାଞ୍ଜଳୀ ସହିତ ତାଙ୍କ ପ୍ରତି ସମ୍ମାନ ଜଣାଇଥିଲେ।

ଆନ୍ନା ବିଶ୍ୱବିଦ୍ୟାଳୟ ତା'ର କମ୍ପ୍ୟୁଟର କେନ୍ଦ୍ରକୁ ରାମାନୁଜନ୍‌ଙ୍କ ନାମରେ ନାମିତ କରିଥିଲା। ସେଠାରେ ଆଣ୍ଡ୍ରିଉଜ୍ ଉପସ୍ଥିତ ଥିଲେ ଏବଂ ଜାନକୀଙ୍କୁ ଏକ ଶାଲ ଉପହାର ଦେଇଥିଲେ। ଆବେଗଭରା କଣ୍ଠରେ ଆଣ୍ଡ୍ରିଉଜ୍ ମୃତ୍ୟୁଶଯ୍ୟାରେ ପଡ଼ିଥିବା ରାମାନୁଜନ୍‌ଙ୍କ ଗଣିତ କାଗଜକୁ ସୁରକ୍ଷିତ ରଖିଥିବାରୁ ସେ ଜାନକୀଙ୍କୁ କୃତଜ୍ଞତା ଜଣାଇଥିଲେ। ଏହି କାଗଜ ପରେ ହଜିଥିବା ନୋଟ୍ ଖାତା ରୂପରେ ପ୍ରକାଶିତ ହୋଇଥିଲା।

ବିଶ୍ୱଯୁଦ୍ଧ ପରେ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ହୃଦୟଙ୍ଗମ କଲା ଯେ ଜାନକୀଙ୍କୁ ମିଳୁଥିବା କୋଡ଼ିଏ ଟଙ୍କାର ମାସିକ ଭତ୍ତା ଏବେ ଯଥେଷ୍ଟ ନ ଥିଲା ଏବଂ ତାହା 125 ଟଙ୍କାକୁ ବଢ଼ାଇଦେଲା। ତାଙ୍କର ପାଳିତ ପୁତ୍ର ନାରାୟଣନ୍‌ଙ୍କୁ କଲେଜରେ ପଢ଼ାଇବା ପାଇଁ ତାହା ଜାନକୀଙ୍କୁ ସମର୍ଥ କଲା। ପଢ଼ା ଶେଷରେ ନାରାୟଣନ୍ ଭାରତୀୟ ଷ୍ଟେଟ୍ ବ୍ୟାଙ୍କରେ ଚାକିରି ପାଇଲେ ଏବଂ ବିବାହ କରି

ସମୟକ୍ରମେ ତିନିଟି ସନ୍ତାନଙ୍କ ବାପା ହେଲେ। ପଚିଶ ବର୍ଷର ଚାକିରି ପରେ ସେ ଅବସର ନେଲେ ଓ ଜାନକୀଙ୍କ ଯତ୍ନ ନେବାରେ ସମୟ କଟାଇଲେ।

ଅନେକ ବର୍ଷର କଷ୍ଟକର ଓ ଅଜ୍ଞାତ ଜୀବନ ବିତାଇବା ପରେ ଗଣିତଜ୍ଞମାନେ ରାମାନୁଜନ୍‌ଙ୍କୁ ପୁନଃ ଆବିଷ୍କାର କରିବା ସହିତ ଜାନକୀ ମଧ୍ୟ ସମସ୍ତଙ୍କର ଧ୍ୟାନ ଆକର୍ଷଣ କଲେ। ତାଙ୍କର କଥା କହିବାରେ ମଧ୍ୟ ଦୃଢ଼ତା ଆସିଲା। ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ତାଙ୍କୁ ଅବସର ଭତ୍ତା ଦେବା ସମୟରେ ସେ ତାହାକୁ ସ୍ୱାଗତ କଲେ, କିନ୍ତୁ କହିଥିଲେ ଯେ ଷାଠିଏ ବର୍ଷ ତଳେ ମିଳିଥିଲେ ତାହା ତାଙ୍କ ପାଇଁ ଖୁବ୍ ଅଧିକ ମୂଲ୍ୟବାନ ହୋଇଥା'ନ୍ତା। 1981 ମସିହାରେ ସେ ଜଣେ ସାମ୍ବାଦିକଙ୍କୁ କହିଥିଲେ, "ଅନେକ ବର୍ଷ ତଳେ ପ୍ରତିଶ୍ରୁତି ମିଳିଥିଲା ଯେ ମୋ ସ୍ୱାମୀଙ୍କ ସ୍ମୃତିରେ ଗୋଟିଏ ପ୍ରତିମୂର୍ତ୍ତି ବସାଯିବ। ସେ ପ୍ରତିମୂର୍ତ୍ତି କାହିଁ?"

ପ୍ରତିମୂର୍ତ୍ତି ବିଷୟରେ ଜାନକୀଙ୍କ କ୍ଷୋଭ ଜାଣିଲା ପରେ ଡିକ୍ ଆସ୍କି ଭାବିଲେ, "ସେ ଯଦି ପ୍ରତିମୂର୍ତ୍ତିଟିଏ ଚାହୁଁଛନ୍ତି, ଏହା ଯୋଗାଇଦେବା ରାମାନୁଜନ୍‌ଙ୍କ ଓ ତାଙ୍କ ପାଇଁ ସେତକ ନିଶ୍ଚୟ ଆମର ଦେୟ।" ଆସ୍କିଙ୍କର ପରିଚିତ ଆମେରିକୀୟ ମୂର୍ତ୍ତିଶିଳ୍ପୀ ପଲ୍ ଗ୍ରାନଲଣ୍ଡ ଅନ୍ତତଃ ତିନିଟି ମୂର୍ତ୍ତି ପାଇଁ ବରାଦ ପାଇଲେ କାମଟି କରିବେ ବୋଲି କହିଲେ। ଆସ୍କି ଓ ତାଙ୍କ ସ୍ତ୍ରୀ ଗୋଟିଏ କିଣିବେ, ଜ୍ୟୋତିପଦାର୍ଥ ବିଜ୍ଞାନୀ ଚନ୍ଦ୍ରଶେଖର ଗୋଟିଏ ନେବେ, ଆଉ ଗୋଟିଏ ଯିବ ଜାନକୀଙ୍କ ପାଇଁ। କାମ ଆରମ୍ଭ ହେବା ପାଇଁ ଏହା ଯଥେଷ୍ଟ ଥିଲା, କିନ୍ତୁ ସେ ବିଷୟରେ ପ୍ରଚାର ହେବା ପରେ ଆଉ ସାତଟିର ବରାଦ ଆସିଗଲା। ଜାନକୀଙ୍କୁ ମୂର୍ତ୍ତି ଯୋଗାଇବା ପାଇଁ 3000 ଡଲାର ଦରକାର ଥିଲା, ଏହା ଗୋଟିଏ ସମସ୍ୟା ଭାବରେ ଦେଖାଗଲା। ଆସ୍କି କିଛି ପାଣ୍ଠି ବିଭିନ୍ନ ଅନୁଷ୍ଠାନରୁ ସଂଗ୍ରହ କଲେ, କିନ୍ତୁ ଅଧିକାଂଶ ଭାଗ ଆସିଲା ବିଭିନ୍ନ ଦେଶର ଗଣିତଜ୍ଞମାନଙ୍କର ପଚିଶ ଡଲାରର ବ୍ୟକ୍ତିଗତ ଦାନରୁ। ମାନ୍ଦ୍ରାଜରେ ଜାନକୀଙ୍କ ଘରେ ଗ୍ରାନଲଣ୍ଡ ତିଆରି କରିଥିବା ରାମାନୁଜନ୍‌ଙ୍କର କାଂସ୍ୟ ପ୍ରତିମୂର୍ତ୍ତି ବସାଗଲା।

ଶତବାର୍ଷିକୀ ପାଖେଇ ଆସିଲାରୁ ଜାନକୀଙ୍କ ଘର ଗୋଟିଏ ତୀର୍ଥସ୍ଥାନ ପାଲଟିଗଲା। ମାନ୍ଦ୍ରାଜକୁ ଆସୁଥିବା ସବୁ ଗଣିତଜ୍ଞ ରାମାନୁଜନ୍‌ଙ୍କୁ ପ୍ରଣତୀ ଜଣାଇବା ପାଇଁ ସେଠାକୁ ଆସିବାକୁ ଲାଗିଲେ। ଇଂଲଣ୍ଡର ବିବିସି ଟେଲିଭିଜନ୍ କମ୍ପାନି ରାମାନୁଜନ୍ ଜନ୍ମ ଶତବାର୍ଷିକୀ ଉପଲକ୍ଷ୍ୟେ ଗୋଟିଏ ସ୍ୱତନ୍ତ୍ର ବୃତ୍ତଚିତ୍ର ତିଆରି କରିଥିଲା। *ଲେଟର୍ସ ଫ୍ରମ୍ ଆନ୍ ଇଣ୍ଡିଆନ୍ କ୍ଲର୍କ* (ଜଣେ ଭାରତୀୟ କିରାଣିଙ୍କଠାରୁ ଚିଠି) ନାମକ ସେହି ଚିତ୍ରରେ ଜାନକୀଙ୍କୁ ଦେଖିବାକୁ ମିଳିଥିଲା। ସେହି ବୃତ୍ତଚିତ୍ରଟି ଆମେରିକାରେ ମଧ୍ୟ ଟେଲିଭିଜନ୍ ମାଧ୍ୟମରେ ପ୍ରଦର୍ଶିତ ହୋଇଥିଲା। 1987 ମସିହା ଅଗଷ୍ଟ ମାସରେ ଗୋଟିଏ ନ୍ୟାସ ତରଫରୁ ଜାନକୀଙ୍କୁ କୋଡ଼ିଏ ହଜାର ଟଙ୍କାର ଥଳୀ ଭେଟି ଦିଆଯାଇଥିଲା ଏବଂ ମାସିକ ହଜାରେ ଟଙ୍କାର ଭତ୍ତା ଦେବାର ବ୍ୟବସ୍ଥା କରାଯାଇଥିଲା। ସେତେବେଳେ ଜାନକୀ ଅନୁରୋଧ କରିଥିଲେ ଯେ ଅଳ୍ପ ବୟସର ପ୍ରତିଭାବାନ୍ ଗଣିତ ଛାତ୍ରମାନଙ୍କୁ ବୃତ୍ତି ଦେବା ପାଇଁ ଗୋଟିଏ ଶ୍ରୀନିବାସ ରାମାନୁଜନ୍ ନ୍ୟାସ ସୃଷ୍ଟି କରାଯାଉ। 1988 ମସିହା ଫେବୃଆରି ମାସରେ ଟ୍ରିନିଟି କଲେଜ ପରିଷଦ ତାଙ୍କର ସଦିଚ୍ଛା ଜଣାଇବା ପାଇଁ ବାର୍ଷିକ 2000 ପାଉଣ୍ଡ ଅନୁଦାନ ବ୍ୟବସ୍ଥା କଲେ। ଅନ୍ୟ ସୂଚନା ନ ମିଳିବା ପର୍ଯ୍ୟନ୍ତ ତାହା ଦିଆଯିବାର ବ୍ୟବସ୍ଥା କରାଯାଇଥିଲା।

ଶତବାର୍ଷିକୀ ଅବସରରେ ଟି. ଭି. ରଙ୍ଗାସ୍ୱାମୀ ନାମକ ମାନ୍ଦ୍ରାଜର ଜଣେ ତାମିଲ୍ ସାମ୍ବାଦିକ ରାମାନୁଜନ୍‌ଙ୍କ ଉପରେ ଏକତିରିଶ ଭାଗର ଗୋଟିଏ ଖବର କାଗଜ ସ୍ତମ୍ଭ ଲେଖିବା ଆରମ୍ଭ କଲେ। ମାସ ମାସ ଧରି ସେ ଚିଠି, କାଗଜ, ତଥ୍ୟ, ସ୍ମୃତି ସବୁ ଏକାଠି କରିବାରେ ଲାଗିଲେ। ସେ ଜାନକୀଙ୍କ ଘର ପାଖରେ ରହୁଥିଲେ ଏବଂ ପ୍ରାୟ ପ୍ରତିଦିନ ଅପରାହ୍ଣରେ ସେମାନେ ବସି କଥା ହେଉଥିଲେ। ଦିନେ ଶେଷ ବେଳକୁ ରାମାନୁଜନ୍ ରହୁଥିବା ଘର 'ଗୋମେତ୍ର'ର ଫଟୋ ଜାନକୀଙ୍କୁ ଦେଖାଇଲେ। ସେଠାରେ ଜାନକୀ ରାମାନୁଜନ୍‌ଙ୍କ ଯତ୍ନ ନେଉଥିଲେ ଓ ରାମାନୁଜନ୍ ଶେଷ ନିଃଶ୍ୱାସ ଛାଡ଼ିଥିଲେ। ସେଦିନ ପରେ ଷାଠିଏ ବର୍ଷ ବିତିଯାଇଥିଲା, ତଥାପି କୁଞ୍ଚିତ ଚର୍ମଧାରୀ ବୃଦ୍ଧା ଜାନକୀ ସେହି ସ୍ମୃତିରେ ଭାଙ୍ଗିପଡ଼ି କାନ୍ଦିପକାଇଲେ।

## 7. ସ୍ୱୟଂମ୍ଭୁ

ରାମାନୁଜନ୍‌ଙ୍କୁ ପ୍ରଶଂସା କରିବା ଭିତରେ ବେଳେ ବେଳେ କିଛି ଅପ୍ରିୟ ତିକ୍ତତା ଫୁଟି ଉଠୁଥିଲା। ଦାରିଦ୍ର୍ୟ ଏବଂ ପ୍ରଶାସନିକ ଓ ଆନୁଷ୍ଠାନିକ ଅନମନୀୟତା 1905 ମସିହାରେ କିପରି ତାଙ୍କୁ ପ୍ରାୟ ସମ୍ପୂର୍ଣ୍ଣ ଭାବରେ ପରାହତ କରିଥିଲା ସେ କଥା ଭୁଲିବା ସହଜ ନ ଥିଲା। ଭାରତ ପାଇଁ ରାମାନୁଜନ୍ ନିଶ୍ଚୟ ଏକ ପ୍ରେରଣା ଥିଲେ, କିନ୍ତୁ ଏକ ତିରସ୍କାର ମଧ୍ୟ ଥିଲେ। ରାମାନୁଜନ୍ ଯେ ସବୁଦିନ ପାଇଁ ହଜିଯିବାର ଏତେ ପାଖକୁ ଆସିଥିଲେ ଭାରତ ତାହା ଘଟିବାକୁ ଦେଲା କିପରି? ତାଙ୍କୁ କାହିଁକି ଅଧିକ ସହାୟତା ଓ ଉତ୍ସାହ ମିଳିଲାନାହିଁ? ତାଙ୍କୁ ବିଖ୍ୟାତ କରିବା ପାଇଁ ବିଦେଶୀମାନଙ୍କର ସମ୍ପୃକ୍ତି କାହିଁକି ଦରକାର ପଡ଼ିଲା?

ଇଂଲଣ୍ଡର ବିଖ୍ୟାତ ଜୀବବିଜ୍ଞାନୀ ଜେ. ବି. ଏସ୍. ହାଲ୍‌ଡେନ୍ ତାଙ୍କ ଜୀବନର ଶେଷ କେତେ ବର୍ଷ ଭାରତରେ କଟାଇଥିଲେ। 1960 ଦଶକର ଆରମ୍ଭରେ ସେ ଅଭିଯୋଗ କରିଥିଲେ:

> ଆଜିର ଭାରତରେ ରାମାନୁଜନ୍ କୌଣସି ଛୋଟିଆ କଲେଜରେ ଲେକ୍ଚରର୍ ଚାକିରିଟିଏ ମଧ୍ୟ ପାଇପାରିବେନାହିଁ, କାରଣ ତାଙ୍କର କିଛି ଡିଗ୍ରୀ ନ ଥିଲା। ଜାତୀୟ ସ୍ତରର ଚାକିରି ପାଇବା ତ ଆହୁରି ଦୂରର କଥା। ଭାରତ ପାଇଁ ଏହା ଅତି ଲାଜର କଥା। ଏକଥା ସତ ଯେ ରୟାଲ ସୋସାଇଟିର ଫେଲୋ ହେବା ପରେ ଭାରତରେ ତାଙ୍କୁ ଏକ ପଦବୀ ଯଚାଯାଇଥିଲା। କିନ୍ତୁ ବିଦେଶୀ ସ୍ୱୀକୃତିକୁ ଅପେକ୍ଷା କରିବାଟା ଭାରତ ପକ୍ଷରେ ଦୁର୍ଭାଗ୍ୟଜନକ। ଇଂଲଣ୍ଡରେ ରାମନୁଜନ୍‌ଙ୍କ କାମର ମୂଲ୍ୟକୁ ପ୍ରଥମରୁ ହିଁ ଚିହ୍ନା ଯାଇଥିଲା। ଭାରତରେ ଯଦି ତାହା ଘଟିପାରିଥା'ନ୍ତା, ତେବେ ତାଙ୍କୁ ଇଂଲଣ୍ଡ ଯିବାକୁ ପଡ଼ି ନ ଥା'ନ୍ତା ଏବଂ ହୁଏତ ସେ ଆଜି ମଧ୍ୟ ଜୀବିତ ଥା'ନ୍ତେ। ରାମାନୁଜନ୍‌ଙ୍କୁ ସ୍ୱୀକୃତି ମିଳି ନ ଥିବାର ଦୋଷ ଆମେ ଇଂରେଜ ଶାସନ ଉପରେ ନଦିଦେଇପାରିବା। କିନ୍ତୁ ଆଜି ମଧ୍ୟ ଘଟୁଥିବା ସେଭଳି ଘଟଣା ପାଇଁ ତାହା କରିପାରିବାନାହିଁ ...।

ପ୍ରଫେସର ଶ୍ରୀନିବାସ ରାମାନୁଜନ୍ ଇଣ୍ଟର୍‌ନାସନାଲ୍ ମେମୋରିଆଲ୍ କମିଟି 1974 ମସିହାରେ ତାଙ୍କର ଜନ୍ମଦିନରେ ଗୋଟିଏ ସ୍ମରଣିକା ପ୍ରକାଶ କରିଥିଲା। ସେଥିରେ ସବୁ ପ୍ରକାରର ଦକ୍ଷିଣ ଭାରତୀୟ ବ୍ୟାବସାୟିକ ପ୍ରତିଷ୍ଠାନ ରାମାନୁଜନ୍‌ଙ୍କ ପ୍ରତି ସମ୍ମାନର ଅର୍ଘ୍ୟ ରୂପରେ ବିଜ୍ଞାପନମାନ ଦେଇଥିଲେ। ରାମାନୁଜନ୍‌ଙ୍କୁ ସମ୍ମାନ ଜଣାଇବା କାମରୁ ସେମାନେ ନିଜ ପ୍ରତି କିଛି

ସମ୍ମାନ ହାସଲ କରୁଥିଲେ। ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧି ତାଙ୍କ ବାର୍ତ୍ତାରେ ଲେଖିଥିଲେ ଯେ 'ଶିକ୍ଷା'ରୁ ବଞ୍ଚିତ ହୋଇଥିବା ବିଚକ୍ଷଣତା ବଳରେ ରାମାନୁଜନ ବିଜ୍ଞାନ ଜଗତକୁ ଚମକାଇ ଦେଇଥିଲେ ଏବଂ ବିଶ୍ୱାସ ରଖିଥିଲେ ଯେ ତାଙ୍କର କାମ ପିଢ଼ି ପିଢ଼ି ଧରି ଭବିଷ୍ୟତର ଭାରତୀୟ ଯୁବକ ଯୁବତୀଙ୍କୁ ଉଦ୍‌ବୁଦ୍ଧ କରିଚାଲିବ। ସ୍ମରଣିକାର ସମ୍ପାଦକ ଏସ୍. ରାମକ୍ରିଷ୍ଣନ୍ ସେଥିରେ ଯୋଡ଼ିଥିଲେ, "ଏବେ ମଧ୍ୟ ଅଜଣା ଭାବରେ ସଢୁଥିବା ଜୀବନ୍ତ ରାମାନୁଜନ୍‌ମାନଙ୍କୁ ସ୍ୱାଧୀନ ଭାରତ ଯେପରି ଭୁଲି ନ ଯାଏ।"

ଭାରତର ଏକ ପ୍ରତୀକ ଭାବରେ ରାମାନୁଜନ୍‌ଙ୍କର ଅବଦାନର ତାହା ଆଉ ଗୋଟିଏ ଦିଗ ଥିଲା - ଅଜଣା ଭାବରେ ସଢୁଥିବା ଜୀବନ ପାଇଁ ଧ୍ୟାନ ଆକର୍ଷଣ କରିବା। 1946 ମସିହାରେ ତାଙ୍କର ଡିସ୍କଭରି ଅଫ୍ ଇଣ୍ଡିଆ ବହିରେ ନେହେରୁ ଏହି ବିଷୟରେ ଲେଖିଥିଲେ:

> ରାମାନୁଜନ୍‌ଙ୍କ ସଂକ୍ଷିପ୍ତ ଜୀବନ ଓ ଅକାଳ ବିୟୋଗ ଭାରତୀୟ ଅବସ୍ଥାର ସୂଚକ। ଆମର ଲକ୍ଷ ଲକ୍ଷ ଲୋକଙ୍କ ଭିତରୁ କେତେଜଣ କିଛି ବି ଶିକ୍ଷା ପା'ନ୍ତି; କେତେ ଜଣ ଅନାହାରର ସୀମାରେ ଥା'ନ୍ତି ...। ସେମାନଙ୍କ ପାଇଁ ଯଦି ଜୀବନର ଦ୍ୱାର ଖୋଲିଯାଏ, ଯଦି ସେମାନଙ୍କୁ ଖାଦ୍ୟ ମିଳନ୍ତା, ରହିବା ପାଇଁ ସୁସ୍ଥ ପରିବେଶ, ଶିକ୍ଷା ଓ ନିଜର ବିକାଶ ପାଇଁ ସୁଯୋଗ ଆଦି ମିଳିପାରନ୍ତା, ତେବେ ସେମାନଙ୍କ ଭିତରୁ କେତେ ଜଣ ବିଶିଷ୍ଟ ବିଜ୍ଞାନୀ ହୁଅନ୍ତେ, ଶିଳ୍ପପତି, ଲେଖକ ବା କଳାକାର ହୋଇ ନୂଆ ଭାରତ ଓ ନୂଆ ପୃଥିବୀ ଗଢ଼ିବାରେ ସହାୟକ ହୁଅନ୍ତେ?

ରାମାନୁଜନ୍ ଛାଡ଼ିବାର ଅନେକ ସମୟ ପରେ ଆର୍. ବିଶ୍ୱନାଥନ୍ ତାଙ୍କ ପୁରୁଣା ସ୍କୁଲ, କୁମ୍ଭକୋଣମ୍‌ର ଟାଉନ ହାଇର ପ୍ରଧାନ ଶିକ୍ଷକ ହୋଇଥିଲେ। ସେ କହୁଥିଲେ ଯେ ଯଥେଷ୍ଟ ସମ୍ବଳ ମିଳିଲେ ସେ ଆହୁରି ଅନେକ ରାମାନୁଜନ୍ ସୃଷ୍ଟି କରିପାରିବେ। ତେବେ ଏହି କଥା ପ୍ରତି ସନ୍ଦେହର ଯଥେଷ୍ଟ ଅବକାଶ ରହିଛି। କାରଣ ପର୍ଯ୍ୟାପ୍ତ ସମ୍ବଳ ଖଟାଉଥିବା ଇଂଲଣ୍ଡ, ୟୁରୋପ ବା ଆମେରିକାରେ କେତେ ଜଣ ରାମାନୁଜନ୍ ବାହାରୁଛନ୍ତି? ଏସବୁ ଦେଶରେ ସମୃଦ୍ଧ ବୌଦ୍ଧିକ ପରମ୍ପରା ରହିଛି, ସବୁ ପ୍ରକାରର ସ୍ୱାଧୀନତା ଓ ସୁଯୋଗ ମିଳୁଛି। ତଥାପି ବିଶ୍ୱନାଥନ୍‌ଙ୍କ କଥାରେ ଏକ ବୃହତ୍ତର ସତ୍ୟ ପ୍ରତିଫଳିତ ହେଉଛି - ଭାରତରେ ବିଶାଳ ପରିମାଣର ପ୍ରତିଭା ଓ ଦକ୍ଷତା ରହିଛି, କିନ୍ତୁ ତା'ର ବିକାଶ ପାଇଁ ସୁଯୋଗ ନାହିଁ। ରାମାନୁଜନ୍ ଭାରତର ବୌଦ୍ଧିକ ଓ ଆଧ୍ୟାତ୍ମିକ ବଳର ପ୍ରତୀକ ଥିଲେ ଏବଂ ତା'ର ବିନିଯୋଗ ହୋଇ ନ ପାରୁଥିବା ସମ୍ବଳର ମଧ୍ୟ।

କେହି ପ୍ରଶ୍ନ କରିପାରେ - ରାମାନୁଜନ୍‌ଙ୍କ କାହାଣୀରୁ କ'ଣ ଏକଥା ଜଣାପଡୁନାହିଁ ଯେ ଶେଷରେ ପ୍ରତିଭାର ଜୟ ହେବ? ସବୁ ଅସୁବିଧା ସତ୍ତ୍ୱେ ରାମାନୁଜନ୍ ଯଦି ସାରା ପୃଥିବୀର ଦୃଷ୍ଟି ଆକର୍ଷଣ କରିପାରିଲେ ଏବଂ ନିଜର ଚିରସ୍ଥାୟୀ ଛାପ ଛାଡ଼ିଗଲେ, ସେଭଳି ବିଶେଷ ପ୍ରତିଭାର ଅଧିକାରୀ ଅନ୍ୟ ଯେ କେହି କ'ଣ ସେପରି କରିପାରିବନାହିଁ?

ରାମାନୁଜନ୍‌ଙ୍କ ବିଷୟ ଭଲ ଭାବରେ ଅନୁଧ୍ୟାନ କଲେ ଉପର ପ୍ରଶ୍ନର ଉତ୍ତର ହେବ - ନାହିଁ। ରାମାନୁଜନ୍ ବେଶ୍ ଲମ୍ବା ସମୟ ଧରି କଷ୍ଟ ଭୋଗିଥିଲେ, ଅନେକ ଥର ତାଙ୍କ ଭବିଷ୍ୟତ ସୂତା ଖିଅକରେ ଝୁଲିବା ଅବସ୍ଥାକୁ ଆସିଥିଲା, ଅଜଣା ଭାବରେ ମରିବା ଅବସ୍ଥାର ଅତି ପାଖକୁ ସେ ଆସିଥିଲେ। ଏସବୁରୁ ଉଦ୍ଧାର ପାଇଥିଲେ ମଧ୍ୟ ସେ ତାଙ୍କ ଦକ୍ଷତାର ପୂର୍ଣ୍ଣ ବିକଶିତ ଅବସ୍ଥାରେ

ପହଞ୍ଚିବା ଯାଏଁ ବଞ୍ଚିରହିଲେନାହିଁ। ଏହି ଦୃଷ୍ଟିରୁ ରାମାନୁଜନ୍‌ଙ୍କ ଜୀବନ କାହାଣୀରେ ସଫଳତାର ଯେତିକି ଛାପ ରହିଛି, ବାଧାବିଘ୍ନର ଛାପ ମଧ୍ୟ ସେତିକି ରହିଛି।

ଭାରତର ଅଗଣିତ ଲୋକଙ୍କ ତୁଳନାରେ ରାମାନୁଜନ୍ ବେଶ୍ ସୁବିଧାଜନକ ଅବସ୍ଥାରେ ଥିଲେ। ତାଙ୍କ ପରିବାର ଗରିବ ଥିଲା, କିନ୍ତୁ ଦୁଃସ୍ଥ ନ ଥିଲା। ଜ୍ଞାନ ଆହରଣ ପ୍ରତି ଆଗ୍ରହୀ ଥିବା ବ୍ରାହ୍ମଣ କୂଳରେ ସେ ଜନ୍ମ ହୋଇଥିଲେ। ତାଙ୍କର ଆଡ଼ବାୟାମିକୁ ସହିବା ପାଇଁ ଓ ତାଙ୍କର ସ୍ୱାର୍ଥକୁ ଜଗିବା ପାଇଁ ମା ସବୁବେଳେ ପ୍ରସ୍ତୁତ ଥିଲେ। ତାଙ୍କର ଆଡ଼ବାୟାମି ସାଧାରଣ ଭାବରେ ଯାହାଙ୍କୁ ବିମୁଖ କରିଥା'ନ୍ତା, ତାଙ୍କର ନିରୀହତା ସେମାନଙ୍କ ମନକୁ ଜିଣିପାରୁଥିଲା। ନିଜ ଉପରେ ଏବଂ ନିଜର ଦକ୍ଷତା ବିଷୟରେ ତାଙ୍କ ମନରେ ଏକ ବିଚିତ୍ର ଓ ଦୃଢ଼ ବିଶ୍ୱାସ ରହିଥିଲା।

ଏସବୁ ଗୁଣ ଯଦି ତାଙ୍କ ପାଖରେ ନ ଥା'ନ୍ତା? ମା' ଯଦି ତାଙ୍କ ପ୍ରତି ଏତେ ସହନଶୀଳ ହୋଇ ନ ଥା'ନ୍ତେ? ତାଙ୍କଠାରେ ଯଦି ଆକର୍ଷଣୀୟ ନିରୀହତା ବା ଦୃଢ଼ ଆତ୍ମବିଶ୍ୱାସ ନ ଥା'ନ୍ତା? ବୋଧହୁଏ ତାଙ୍କ ଭାଇମାନଙ୍କ ଭଳି ସେ କେଉଁ ସରକାରୀ ଚାକିରିରେ ଅଜଣା ଅଶୁଣା ହୋଇ ରହିଯାଇଥା'ନ୍ତେ। ସାମାଜିକ ବ୍ୟବସ୍ଥାର ବିଫଳତାର ସେ ଆଉ ଏକ ଉଦାହରଣ ହୋଇଥା'ନ୍ତେ।

ଏହି ଦୃଷ୍ଟିରୁ ଦେଖିଲେ ରାମାନୁଜନ୍ ଭାରତ ପାଇଁ ଯେତିକି ଗୌରବର ବସ୍ତୁ ଥିଲେ, ସେତିକି ଲଜ୍ଜାକର ମଧ୍ୟ ଥିଲେ। ପ୍ରତିଭାସମ୍ପନ୍ନ ଅନ୍ୟ ରାମାନୁଜନ୍‌ମାନେ ସଫଳ ହେବା ପାଇଁ କିଭଳି ବାଧାବିଘ୍ନର ସାମନା କରିବେ ତାହା ତାଙ୍କ ଜୀବନୀ ମନେପକାଇ ଦେଉଥିଲା। ଦକ୍ଷିଣ ଭାରତୀୟ ବିଚକ୍ଷଣତାର ପ୍ରତୀକ ଭାବରେ ତାଙ୍କୁ ଦେଖିବା ଖୁସିର କଥା ଥିଲା, କିନ୍ତୁ ତାଙ୍କ କଷ୍ଟକର ଜୀବନର କଥା ବେଶ୍ ଦୁଃଖଦ ଥିଲା।

1968 ମସିହାରେ ଇଣ୍ଡିଆନ୍ ନାସନାଲ୍ ସାଇନ୍ସ ଏକାଡେମି ତରଫରୁ ଏସ୍. ଚନ୍ଦ୍ରଶେଖରଙ୍କୁ ଶ୍ରୀନିବାସ ରାମାନୁଜନ୍ ପଦକ ଦିଆଯାଇଥିଲା। ସେଥିପାଇଁ ଅନୁଷ୍ଠିତ ଉତ୍ସବରେ ସେ ତାଙ୍କ ବକ୍ତବ୍ୟରେ ରାମାନୁଜନ୍‌ଙ୍କର ଆତ୍ମହତ୍ୟା ଉଦ୍ୟମ ବିଷୟରେ କହିଥିଲେ। ଏଥିପ୍ରତି ପ୍ରବଳ ପ୍ରତିକ୍ରିୟା ଦେଖାଯାଇଥିଲା। ସେ ବିଷୟରେ ସେ କହିଥିଲେ, "ମୁଁ ଆଶ୍ଚର୍ଯ୍ୟ ଓ ଚକିତ ହେଲି ଯେ ରାମାନୁଜନ୍‌ଙ୍କର ମାନହାନୀ କରୁଛି ବୋଲି ଅନେକ ଲୋକ ମତେ ଦୋଷ ଦେବାରେ ଲାଗିଲେ।" ଦୋଷ ଦେଉଥିବା ଲୋକଙ୍କ ଭିତରେ ବିଶିଷ୍ଟ ବିଜ୍ଞାନୀ ସି. ଭି. ରମଣ ମଧ୍ୟ ଥିଲେ। ଏଭଳି କହି ସେ ନିଜର ପ୍ରତିଷ୍ଠା ବଢ଼ାଇବାକୁ ଚାହୁଁଛନ୍ତି ବୋଲି କେହି କେହି ଆକ୍ଷେପ ମଧ୍ୟ କରିଥିଲେ। ଚନ୍ଦ୍ରଶେଖରଙ୍କ ଦୋଷ ଥିଲା ଯେ ସେ ରାମାନୁଜନ୍‌ଙ୍କୁ ଜଣେ ସାଧାରଣ ମଣିଷ ଭାବରେ ଦେଖାଉଥିଲେ।

ରାମାନୁଜନ୍‌ଙ୍କ ସମୟ ଭଳି ଆଜି ମଧ୍ୟ ଭାରତର ଭଲ ଛାତ୍ରମାନେ ଉନ୍ନତ ଶିକ୍ଷା ପାଇଁ ବିଦେଶ ଯାଉଛନ୍ତି। ଏହା ଫଳରେ ସେମାନେ ରାମାନୁଜନ୍‌ଙ୍କୁ ପ୍ରାୟ ମାରିଦେଇଥିବା ଯାନ୍ତ୍ରିକ ଓ ଅନମନୀୟ ଭାରତୀୟ ଶିକ୍ଷା ବ୍ୟବସ୍ଥାର କବଳରୁ ମୁକ୍ତି ପାଆନ୍ତି। ମୃତ୍ୟୁର ଅନେକ ଦିନ ପରେ ଏବେ ରାମାନୁଜନ୍‌ଙ୍କୁ ପ୍ରଶଂସା କରିବା ଖୁବ୍ ସହଜ କଥା। କିନ୍ତୁ ଶିକ୍ଷା ବ୍ୟବସ୍ଥାକୁ ସୁଧାରି ନୂଆ ରାମାନୁଜନ୍ ସୃଷ୍ଟିକରିବା ଦିଗରେ କୌଣସି ଚେଷ୍ଟା ନାହିଁ।

1951 ମସିହାରେ ଧନୀ ବ୍ୟବସାୟୀ ଆଲାଗାପ୍ପା ଚେଟ୍ଟିଆର୍ ରାମାନୁଜନ୍‌ଙ୍କ ସମ୍ମାନରେ ଗୋଟିଏ ଅନୁଷ୍ଠାନ ଆରମ୍ଭ କରିଥିଲେ। କିନ୍ତୁ ତାଙ୍କର ମୃତ୍ୟୁ ପରେ ସେହି ରାମାନୁଜନ୍ ପ୍ରତିଷ୍ଠାନ

ଗୁରୁତର ଆର୍ଥିକ ଅସୁବିଧାରେ ପଡ଼ିଲା ଏବଂ ବନ୍ଦ ହେବା ଅବସ୍ଥାକୁ ଆସିଲା। 1957 ମସିହାରେ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ସହିତ ତାକୁ ମିଶାଇଦିଆଯାଇ *ସେଣ୍ଟର ଫର୍ ଆଡ୍‌ଭାନ୍‌ସ୍‌ଡ ଷ୍ଟଡିଜ୍ ଇନ୍ ମାଥେମାଟିକ୍‌ସ୍* ନାମରେ ନାମିତ କରାଗଲା। ଆଜି ମଧ୍ୟ ସେହି ଅନୁଷ୍ଠାନ ବଞ୍ଚିରହିଛି, କିନ୍ତୁ ରାମାନୁଜନ୍‌ଙ୍କ ଗଣିତ କ୍ଷେତ୍ରରେ ତାହା କାମ କରୁନାହିଁ ବା ନାଁରୁ ଆଶା କରାଯାଉଥିବା ଉନ୍ନତମାନ ଦେଖାଉନାହିଁ।

ରାମାନୁଜନ୍‌ଙ୍କ ଜନ୍ମ ଶତବାର୍ଷିକୀ ପାଳନ ବେଳେ ଅନେକ ଅଶ୍ୱସ୍ତିକର ପ୍ରଶ୍ନ ଉଠିବା ସ୍ୱାଭାବିକ ଥିଲା। ସାମ୍ପ୍ରତିକ ରାମାନୁଜନ୍‌ମାନଙ୍କୁ ମିଳୁଥିବା ସୀମିତ ସୁଯୋଗ ଏବଂ ସେମାନେ ସାମନା କରୁଥିବା ବିଭିନ୍ନ ବାଧା ବିଷୟରେ ପ୍ରଶ୍ନ ଉଠୁଥିଲା। ରାମାନୁଜନ୍‌ଙ୍କର 1914 ମସିହା ଆଗର ଗବେଷଣାର ବିବରଣୀ ଭାରତରେ ଥିବା ଅବସ୍ଥାରେ ହଜିଯାଇଥିଲା। ସେହି ବିଷୟରେ ମଧ୍ୟ ପ୍ରଶ୍ନ ଉଠିଥିଲା ଏବଂ କ୍ଷୋଭ ପ୍ରକାଶିତ ହୋଇଥିଲା ଯେ ଭାରତୀୟ ଗଣିତଜ୍ଞମାନେ କାହିଁକି ରାମାନୁଜନ୍‌ଙ୍କ କାମକୁ ପ୍ରତିଷ୍ଠିତ କରାଇବା ଦିଗରେ କିଛି ଚେଷ୍ଟା କଲେ ନାହିଁ? ଆମେରିକୀୟ ଗଣିତଜ୍ଞମାନଙ୍କ ଉଦ୍ୟମରୁ ହିଁ ଆଧୁନିକ ଗଣିତ କ୍ଷେତ୍ରରେ ରାମାନୁଜନ୍ ତାଙ୍କର ଯୋଗ୍ୟ ସ୍ଥାନ ପାଇପାରିଲେ। କୁମ୍ଭକୋଣମ୍‌ଠାରେ ଗୋଟିଏ ସଭାରେ ଏସ୍. ରାମଶେଷନ୍ ଶ୍ରୋତାମାନଙ୍କୁ ଭାବିବାକୁ କହିଥିଲେ:

> ରାମାନୁଜନ୍‌ଙ୍କ ଜନ୍ମର ଶହେବର୍ଷ ପରେ ଆଜି କେତେ ଜଣ କୁଳସଚିବ ବା କୁଳପତି ଜଣେ ଅଣସ୍ନାତକ ଛାତ୍ରକୁ ଗବେଷଣା ବୃତ୍ତି ... ଦେବାକୁ ଆଗେଇ ଆସିବେ? ଏହା ହେଉଛି ସ୍ୱାଧୀନତା ପାଇବାର ଚାଳିଶ ବର୍ଷ ପରର କଥା, ଯେତେବେଳେ ଆମେ ଭାରତୀୟ ପ୍ରତିଭାକୁ ଉତ୍ସାହିତ କରୁ ନ ଥିବାର ଦୋଷ କେଉଁ ବିଦେଶୀ ଶାସକଙ୍କୁ ଦେଇପାରିବାନାହିଁ।

ଇଲଷ୍ଟ୍ରେଟେଡ୍ ୱିକ୍ଲି ଅଫ୍ ଇଣ୍ଡିଆ ପତ୍ରିକାରେ ପ୍ରକାଶିତ ଗୋଟିଏ ପ୍ରବନ୍ଧରେ ମତ ଦିଆଯାଇଥିଲା, "ହୁଏତ ଆଜିର ନିଷ୍ପ୍ରଭ ଭାରତୀୟ ବୌଦ୍ଧିକତା ପାଇଁ ରାମାନୁଜନ୍‌ଙ୍କ ପ୍ରତିଭାର ଔଜ୍ଜଲ୍ୟ କଠୋର ମନେହେଉଛି।"

ପ୍ରେରଣା, ତିରସ୍କାର... ରାମାନୁଜନ୍‌ଙ୍କ ଜୀବନକୁ ଭାରତ ପାଇଁ ଏହିଭଳି ଅନେକ ରୂପରେ ଦେଖାଯାଇପାରିବ। ତାଙ୍କ ଜୀବନରୁ ଅନେକ ପ୍ରକାରର ଶିକ୍ଷା ମିଳିପାରିବ, ତାଙ୍କ ନାଁକୁ ଅନେକ ଭାବରେ ବ୍ୟବହାର କରାଯାଇପାରିବ। ଭାରତୀୟ ଗଣିତ ସମାଜର ଗୋଟିଏ ଅଧିବେଶନରେ କୁହାଯାଇଥିଲା, "ବିଖ୍ୟାତ ଗଣିତଜ୍ଞ ଶ୍ରୀ ରାମାନୁଜନ୍, ଏଫ୍.ଆର୍.ଏସ୍., ନିଜକୁ ଗଣିତ ଗବେଷଣାରେ ନିୟୋଜିତ କରିବା ଲକ୍ଷ୍ୟରେ ଯେବେ କିଛି ସାହାଯ୍ୟ ଚାହିଁଥିଲେ, ଆମର ଆର୍ଥିକ ଦୁର୍ବଳତା ସ୍ପଷ୍ଟ ହୋଇଯାଇଥିଲା ...।" ଜଣେ ପାଠାଗାର ନିର୍ଦ୍ଦେଶକ ରାମାନୁଜନ୍‌ଙ୍କ ବହିପ୍ରେମର ଓ ତାଙ୍କ ଜୀବନରେ ବହିର ପ୍ରଭାବର ଉଦାହରଣ ଦେଉଥିଲେ। ବର୍ଷ ବର୍ଷ ଧରି ବିଭିନ୍ନ ସମୟରେ ବିଭିନ୍ନ ବ୍ୟକ୍ତି ବିଭିନ୍ନ ପରିପ୍ରେକ୍ଷୀରେ ରାମାନୁଜନ୍‌ଙ୍କର ଅବତାରଣା କରିଛନ୍ତି - ପ୍ରେରଣା, ଚେତାବନୀ, ଦୃଷ୍ଟାନ୍ତ ଆଦିର ରୂପରେ। ରାମଚନ୍ଦ୍ର ରାଓ ସେଭଳି କରିଥିଲେ, ହାର୍ଡି ଓ ନେହେରୁ ମଧ୍ୟ କରିଥିଲେ।

ଅସମୟରେ ମୃତ୍ୟୁ ହେବା ଫଳରେ ରାମାନୁଜନ୍‌ଙ୍କ ଜୀବନର ବିକାଶ ଓ ସମାପ୍ତି ଯୋଜନାବଦ୍ଧ ଭାବରେ ହୋଇପାରିଲାନାହିଁ। ଦୌଡ଼ର ଶେଷରେ ସେ ପହଞ୍ଚି ପାରିଲେନାହିଁ, ଅଧାରେ ହିଁ ହଠାତ୍

ଅଟକି ଗଲେ। ତେଣୁ ଆଗକୁ କ'ଣ ଘଟିଥା'ନ୍ତା ତାହା ଜାଣିବାର ବାଟ ରହିଲାନାହିଁ। ତାଙ୍କ ମୃତ୍ୟୁର ଅନେକ ବର୍ଷ ପରେ ଏବେ ବିଭିନ୍ନ କଳ୍ପନାରେ ତାହା ପୂର୍ଣ୍ଣାଙ୍ଗ ହେଉଛି। କଳ୍ପନା କରୁଥିବା ଲୋକମାନେ ନିଜ ନିଜର ଚିନ୍ତନ ଅନୁସାରେ ତାକୁ ଭିନ୍ନ ଭିନ୍ନ ରୂପ ଦେଉଛନ୍ତି।

ସ୍କୁଲ କଲେଜରେ ରାମାନୁଜନ୍‌ଙ୍କ ବିଫଳତା କ'ଣ ପ୍ରକୃତରେ ପ୍ରତିଭାର ବିକାଶ କ୍ଷେତ୍ରରେ ଭାରତର ବିଫଳତାକୁ ସୂଚାଏ? ରାମଚନ୍ଦ୍ର ରାଓ ଓ ନାରାୟଣ ଆୟାରଙ୍କ ଚେଷ୍ଟାରେ ରାମାନୁଜନ୍ ଯେ ଉଦ୍ଧାର ପାଇଥିଲେ ତାହା କ'ଣ ଭାରତର ସାମାଜିକ ବ୍ୟବସ୍ଥାର ସଫଳତା ଭାବରେ ଗଣାଯାଇପାରେ? ତାଙ୍କ କଥା କ'ଣ ବିଦେଶୀ ଶାସନ ଦ୍ୱାରା ଦେଶୀୟ ପ୍ରତିଭାର ଦମନର ଉଦାହରଣ ଥିଲା? ବା ଶାସକଦେଶର ସ୍ୱାର୍ଥ ପାଇଁ – ଇଂରେଜ ଗଣିତ ପାଇଁ – ତାଙ୍କୁ କ'ଣ ଅପହରଣ କରାଯାଇଥିଲା? ନା ତାଙ୍କୁ ପ୍ରତିଷ୍ଠିତ କରିବା ଇଂରେଜମାନଙ୍କର ମହାନୁଭବତାର ପରିଚାୟକ ଥିଲା?

ଆହୁରି ମଧ୍ୟ ପ୍ରଶ୍ନ ଆସେ ଯେ ଆରମ୍ଭରୁ ଯଦି ସେ ଉପଯୁକ୍ତ ମାର୍ଗଦର୍ଶକ ପାଇଥା'ନ୍ତେ ତେବେ କ'ଣ ସେ ଆହୁରି ଆଗକୁ ଯାଇପାରିଥା'ନ୍ତେ? ଗସ୍ ବା ନିଉଟନ୍‌ଙ୍କ ସ୍ତରକୁ କ'ଣ ସେ ଉଠିପାରିଥା'ନ୍ତେ? ବା ଅସୁବିଧା ଭିତରେ ନିଜେ ନିଜେ କାମ କରିବା ଫଳରେ ନୂଆ ବାଟ ବାହାର କରିବାରେ ସେ ସଫଳ ହେଲେ ଏବଂ ତାହା ତାଙ୍କ ମୌଳିକତାକୁ ବଢ଼ାଇଦେଲା?

ତାଙ୍କର ପ୍ରତିଭା କ'ଣ କେବଳ ତାଙ୍କ ବୌଦ୍ଧିକ ଶକ୍ତିର ଫଳ ଥିଲା ନା ତା ପଛରେ କିଛି ରହସ୍ୟମୟ ବା ଅଲୌକିକ ପ୍ରଭାବ ରହିଥିଲା? ରାମାନୁଜନ୍‌ଙ୍କ ପ୍ରତିଭା କେବଳ ଆଂଶିକ ଭାବରେ ପ୍ରକାଶିତ ହୋଇଥିଲା ନା କେମ୍ବ୍ରିଜରେ ସେ କଟାଇଥିବା ପାଞ୍ଚ ବର୍ଷରେ ସେ ଦେଖାଇଥିବା ଫଳାଫଳ ତାଙ୍କ ପ୍ରତିଭାର ପୂର୍ଣ୍ଣାଙ୍ଗ ପ୍ରତିଫଳନ ଥିଲା।

ଏହିଭଳି ସବୁ ପ୍ରଶ୍ନ ପାଇଁ ମାତ୍ର ଗୋଟିଏ ଗୋଟିଏ ଉତ୍ତର ଦେବା ସମ୍ଭବ ନ ଥିଲା। ତେଣୁ ଇଚ୍ଛା ଅନୁସାରେ ବିଭିନ୍ନ ଲୋକ ବିଭିନ୍ନ ଉତ୍ତରକୁ ପସନ୍ଦ କରୁଥିଲେ। ମୋଟ ଉପରେ ଦେଖିଲେ ରାମାନୁଜନ୍‌ଙ୍କ ଜୀବନତଥ୍ୟ ଅତି ଗଭୀର ଥିଲା ଏବଂ ସେଥିରେ ଦ୍ୱନ୍ଦ୍ୱ ଭରିରହିଥିଲା। ବିଶ୍ଳେଷକର ମନ ଅନୁସାରେ ବା ସମୟର ରୀତିନୀତିକୁ ନେଇ ତା'ର ବ୍ୟାଖ୍ୟା ଅଲଗା ହେଉଥିଲା।

ରାମାନୁଜନ୍‌ଙ୍କ ପରିବାରରେ ଆଗରୁ କେହି ଗଣିତଜ୍ଞ ନ ଥିଲେ ବା କାହାରିଠାରେ କିଛି ବିଶେଷ ଗାଣିତିକ ମାନସିକତା ଦେଖାଯାଇ ନ ଥିଲା। ତେବେ ରାମାନୁଜନ୍‌ଙ୍କଠାରେ ଏହି ପ୍ରତିଭା ବିକଶିତ ହେଲା କିପରି?

ରାମାନୁଜନ୍‌ଙ୍କୁ ଆବିଷ୍କାର କରିଥିବାର ବା ତାଙ୍କ ଜୀବନରେ ବିଶେଷ ପ୍ରଭାବ ପକାଇଥିବାର ଦାବି ଅନେକ ଲୋକ କରନ୍ତି। ରାମସ୍ୱାମୀ ଆୟାର କହୁଥିଲେ ଯେ ସେ ଦୁଇଟି କଥା ପାଇଁ ବିଶେଷ ଗର୍ବିତ – ଭାରତୀୟ ଗଣିତ ସମାଜର ଆରମ୍ଭ ପାଇଁ ଓ ରାମାନୁଜନ୍‌ଙ୍କୁ ଆବିଷ୍କାର କରିଥିବା ପାଇଁ। ନାରାୟଣ ଆୟାରଙ୍କ ପରିବାର ଗର୍ବର ସହିତ ସୂଚାଇ ଦିଅନ୍ତି ଯେ ସେ ହିଁ ରାମାନୁଜନ୍‌ଙ୍କୁ ହଜିଯିବାରୁ ରକ୍ଷା କରିଥିଲେ। ଅନେକ ଲୋକ ଦାବି କରନ୍ତି ଯେ ଇଂଲଣ୍ଡ ଯିବା ପାଇଁ ସେମାନେ ହିଁ ରାମାନୁଜନ୍‌ଙ୍କୁ ପ୍ରବର୍ତ୍ତାଇଥିଲେ। ଅନେକେ ରାମାନୁଜନ୍‌ଙ୍କୁ ତାଙ୍କ ମା'ଙ୍କର ସୃଷ୍ଟି ଭାବରେ ଦେଖନ୍ତି।

ଦୁହିଁଙ୍କର ମାନସିକତା ଏକା ପ୍ରକାରର ଥିଲା ଏବଂ ରାମାନୁଜନ୍‌ଙ୍କ ସଫଳତା ପାଇଁ ମା'ଙ୍କ ହୃଦୟ ସମର୍ପିତ ଥିଲା।

ଇଂଲଣ୍ଡରେ ହାର୍ଡି ରାମାନୁଜନ୍‌ଙ୍କ ଜୀବନରେ ନିଜର ଭୂମିକା ବିଷୟରେ ବେଶ୍ ଖୁସି ଥିଲେ; ମାନ୍ଦ୍ରାଜରେ ରାମାନୁଜନ୍‌ଙ୍କ ସହିତ କଟାଇଥିବା ଦିନଗୁଡ଼ିକୁ ନେଭିଲ୍ ଖୁସିରେ ମନେପକାଉଥିଲେ। ନେଭିଲ୍ ସୂଚାଇ ଦେଉଥିଲେ ଯେ ଯଦି ସେ ରାମାନୁଜନ୍ ଓ ତାଙ୍କ ସାଙ୍ଗମାନଙ୍କର ମନରେ ଇଂଲଣ୍ଡ ଯିବା ବିଷୟରେ ଆସ୍ଥା ଆଣିପାରିନଥା'ନ୍ତେ, ତେବେ ରାମାନୁଜନ୍ ହୁଏତ କେବେ ଇଂଲଣ୍ଡ ଆସି ନ ଥା'ନ୍ତେ। ହାର୍ଡିଙ୍କ ଭୂମିକାର ପ୍ରାଥମିକତାକୁ ସମସ୍ତେ ଅବଶ୍ୟ ଗ୍ରହଣ କରୁଥିଲେ। ଏର୍ଡୋସ୍ ଲେଖିଥିଲେ ଯେ ଗଣିତ କ୍ଷେତ୍ରରେ ତାଙ୍କର ଶ୍ରେଷ୍ଠ ଅବଦାନ ବିଷୟରେ ହାର୍ଡିଙ୍କୁ ଯେତେବେଳେ ପଚରାଯାଇଥିଲା, ବିନା ଦ୍ୱିଧାରେ ସେ କହିଥିଲେ, "ରାମାନୁଜନ୍‌ଙ୍କୁ ଆବିଷ୍କାର କରିବା"। ଅନ୍ୟ ସମୟରେ ମଧ୍ୟ ହାର୍ଡି ରାମାନୁଜନ୍‌ଙ୍କୁ "ମୋର ଆବିଷ୍କାର" ଭାବରେ ବର୍ଣ୍ଣନା କରିଥିବା କଥା ଲିଖିତ ବିବରଣୀରେ ରହିଛି।

ଅନେକ ଦୃଷ୍ଟିରୁ ରାମାନୁଜନ୍ ହାର୍ଡିଙ୍କ ଆବିଷ୍କାର ହିଁ ଥିଲେ। କିନ୍ତୁ ରାମାନୁଜନ୍‌ଙ୍କର ଏକ ଅଧିକ ସନ୍ତୋଷଜନକ ବର୍ଣ୍ଣନା 1987 ମସିହାରେ ଇଲଷ୍ଟ୍ରେଟେଡ୍ ୱିକ୍ଲି ଅଫ୍ ଇଣ୍ଡିଆ ପତ୍ରିକାରେ ଦିଆଯାଇଥିଲା। କେବଳ 'ଆର୍.ଜି.କେ.' ଭାବରେ ପରିଚୟ ଦେଇଥିବା ଜଣେ ଲେଖକଙ୍କ ମତରେ ରାମାନୁଜନ୍ ଥିଲେ 'ସ୍ୱୟଂଭୂ' - ନିଜେ ନିଜକୁ ସୃଷ୍ଟି କରିଥିବା ବ୍ୟକ୍ତି। ଭାରତର ମାଟିରେ ହିଁ ସେ ନିଜେ ନିଜେ ବଢ଼ିଥିଲେ। ଦୃଢ଼ ଆତ୍ମବିଶ୍ୱାସ ତାଙ୍କୁ ଆଗେଇ ନେଇଥିଲା।

ତାଙ୍କ ପାଇଁ ସବୁକିଛି ନିଜ ସହିତ ଯୋଡ଼ାଥିଲା। ନିଜର ଗଣିତ ଚିନ୍ତାରେ ଅନ୍ୟ ସବୁକିଛିକୁ ସେ ଉପେକ୍ଷା କରୁଥିଲେ। ପରିବାରର ବା ଅନ୍ୟ କିଛି ସାମାଜିକ ଦାୟିତ୍ୱ ନେବାପାଇଁ ସେ ପ୍ରସ୍ତୁତ ନ ଥିଲେ। ସଫଳତା ପାଇବା ପରେ ହୁଏତ ସେ ଏହି ବିଷୟରେ କିଛି ମାତ୍ରାରେ ସଚେତନ ହେଲେ ଏବଂ ନିଜ ପ୍ରତି ଅନ୍ୟମାନଙ୍କର ମନୋଭାବକୁ ଖାତିର କଲେ।

ଭାରତରେ ବିଭିନ୍ନ ଗଣିତଜ୍ଞଙ୍କ ପାଖରୁ ସାହାଯ୍ୟ ପାଇବାରେ ନିରାଶ ହେବା ପରେ ସେ ବିଦେଶକୁ ଚାହିଁଲେ। ବେକର୍ ଓ ହବସନ୍‌ଙ୍କ ପାଖରୁ ଉତ୍ସାହ ସେ ପାଇ ନ ଥିଲେ, ତେଣୁ ହାର୍ଡିଙ୍କ ପାଖକୁ ଚିଠି ଲେଖିଲେ। 1912-13 ମସିହାର ଘଟଣାଗୁଡ଼ିକୁ ଘାଣ୍ଟିକରି ଦେଖିଲେ କହିବାକୁ ହେବ ଯେ ହାର୍ଡି ରାମାନୁଜନ୍‌ଙ୍କୁ ନୁହେଁ, ରାମାନୁଜନ୍ ହାର୍ଡିଙ୍କୁ ଆବିଷ୍କାର କରିଥିଲେ। ଇଂଲଣ୍ଡ ଯିବା ପାଇଁ ତାଙ୍କର ବଳିଷ୍ଠ ସ୍ୱପ୍ନକୁ ଫଳବତୀ କରିବା ପାଇଁ ହୁଏତ ସେ ଅବଚେତନ ମାନସରେ ଦେବୀ ନାମଗିରିଙ୍କ 'ସ୍ୱପ୍ନାଦେଶ'କୁ ସୃଷ୍ଟି କଲେ।

ଗଣିତ କ୍ଷେତ୍ରରେ ରାମାନୁଜନ୍ ପ୍ରମାଣର ଆବଶ୍ୟକତାକୁ ପାରମ୍ପରିକ ଦୃଷ୍ଟିରେ ଦେଖୁ ନ ଥିଲେ। ତାଙ୍କର ପ୍ରମେୟର ସଠିକତା ବିଷୟରେ ବିଶ୍ୱାସ ହିଁ ତାଙ୍କ ପାଇଁ ଯଥେଷ୍ଟ ଥିଲା। ଅନ୍ୟ କାହା ପାଇଁ ତା'ର ପ୍ରମାଣ ଦେବାର ଆବଶ୍ୟକତାକୁ ସେ ହୁଏତ ଜରୁରୀ ମନେକରୁ ନ ଥିଲେ। ସେହି ମନୋଭାବ ହୁଏତ ସେ ସାଧାରଣ ଜୀବନ ପ୍ରତି ଦେଖାଉଥିଲେ। ନିଜେ ସେ ନିଜକୁ ଗଢ଼ିଥିଲେ ଏବଂ ନିଜ ପାଇଁ ବଞ୍ଚିଥିଲେ। ନିଜର ମୂଲ୍ୟ ବିଷୟରେ ସେ ଆଉ କାହାକୁ ପ୍ରମାଣ ଦେବା କଥା ଚିନ୍ତା କରୁ ନ ଥିଲେ।

ରାମାନୁଜନ୍ ପ୍ରକୃତରେ କ'ଣ ଚାହୁଁଥିଲେ? ଗୋଟିଏ ମତରେ ସେ କିଛି ଚାହୁଁ ନ ଥିଲେ, କିନ୍ତୁ ସବୁ ଚାହୁଁଥିଲେ।

ନିଜର କାମରେ ଲାଗିରହିବା ପାଇଁ ଓ ପରିବାରର ଆବଶ୍ୟକତା ପୂରଣ ପାଇଁ ଦରକାର ହେଉଥିବାଠାରୁ ଅଧିକ ଧନସମ୍ପତ୍ତି ପାଇଁ ସେ ଲାଳାୟିତ ନ ଥିଲେ। ସମ୍ମାନ, ସହାନୁଭୂତି ଓ ଇତିହାସର ପୃଷ୍ଠାରେ ତାଙ୍କର ଉପଯୁକ୍ତ ମୂଲ୍ୟାୟନ ସେ ଚାହୁଁଥିଲେ। ତାଙ୍କର ସବୁଠାରୁ ବଡ଼ ଚାହିଦା ଥିଲା କାମ କରିବା ପାଇଁ ପୂର୍ଣ୍ଣ ସ୍ୱାଧୀନତା - ତାଙ୍କର ଚିନ୍ତା, ସ୍ୱପ୍ନ, ସୃଜନ ଆଗରେ ଯେପରି କୌଣସି ବାଧା ନ ଆସେ; ନିଜର ମାନସ ଦୁନିଆରେ ସେ ଯେପରି ବୁଡ଼ି ରହିପାରନ୍ତି। ଏହା କିଛି ଛୋଟିଆ ମାଗୁଣି ନ ଥିଲା, ତଥାପି ତାହା ସେ ଶେଷରେ ପାଇଥିଲେ। ତାଙ୍କର ଇପ୍ସିତ 'ଅବସର' ତାଙ୍କୁ ମିଳିଥିଲା।

ଦକ୍ଷିଣ ଭାରତରେ ସମସ୍ତେ ଆଜି ରାମାନୁଜନ୍‌ଙ୍କୁ ଜାଣନ୍ତି। ଏପରିକି ସାଧାରଣ ଶ୍ରମଜୀବୀମାନେ ମଧ୍ୟ ତାଙ୍କ ବିଷୟରେ ଅସ୍ପଷ୍ଟ ଭାବରେ ଜାଣନ୍ତି, ପାଶ୍ଚାତ୍ୟରେ ଯେପରି ସମସ୍ତେ ଆଇନ୍‌ଷ୍ଟାଇନ୍‌ଙ୍କ ସହ ପରିଚିତ ଅଟନ୍ତି। ତାଙ୍କ କାମ ବିଷୟରେ କେହି ବିଶେଷ ଜାଣନ୍ତି ନାହିଁ, କିନ୍ତୁ ତାଙ୍କ ଜୀବନ କାହାଣୀ ସହିତ ସମସ୍ତେ ଊଣା ଅଧିକେ ପରିଚିତ। ନିଜ ପସନ୍ଦର କାମରେ ଆଗେଇବା ପାଇଁ ତାଙ୍କର ସଂଘର୍ଷର କାହାଣୀ ସବୁ ମନରେ ଛାପ ପକାଏ। ରାମାନୁଜନ୍‌ଙ୍କୁ ତାହା ଏକ ପ୍ରତୀକର ରୂପ ଦିଏ - ବିଚକ୍ଷଣତାର ପ୍ରତୀକ, ବିଚକ୍ଷଣତାର ପଥରେ ଆସୁଥିବା ବାଧାର ପ୍ରତୀକ ଏବଂ ନିଜର ସୃଜନଶୀଳ ଜୀବନରେ ବୁଡ଼ିରହିବାର ସନ୍ତୋଷର ପ୍ରତୀକ।

## ୨

# ଶେଷକଥା

ରାମାନୁଜନ୍‌ଙ୍କ ମୃତ୍ୟୁ ସମ୍ବାଦ ପାଇଲା ବେଳକୁ ହାର୍ଡି ଟ୍ରିନିଟି ଛାଡ଼ିସାରିଥିଲେ। 1919 ମସିହା ଡିସେମ୍ବର ମାସରେ ଡାକ୍ତରଙ୍କ ଚାପ ଫଳରେ ରାମାନୁଜନ୍ କୁମ୍ଭକୋଣମ୍ ଛାଡ଼ି ମାନ୍ଦ୍ରାଜ ବାହାରୁଥିଲେ। ପ୍ରାୟ ସେତିକି ବେଳକୁ ହାର୍ଡି ଟ୍ରିନିଟି କଲେଜର ମାଷ୍ଟର ଜେ. ଜେ. ଥମ୍ପସନ୍‌ଙ୍କୁ ଜଣାଇଥିଲେ ଯେ ସେ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟର ସାଭିଲିଆନ୍ ଅଧ୍ୟାପକ ପଦବୀ ଗ୍ରହଣ କରୁଛନ୍ତି। ସେହି ପଦବୀ ସହିତ ନିଉ କଲେଜର ଫେଲୋସିପ୍ ତାଙ୍କୁ ମିଳିବାର ଥିଲା, ତେଣୁ ତାହା ସେ ଗ୍ରହଣ କରିବା ସହିତ ଟ୍ରିନିଟିଠାରେ ତାଙ୍କ ଫେଲୋସିପ୍ ଆପେ ଆପେ ଖାଲି ହୋଇଯିବ। ସେ ଟ୍ରିନିଟି ଛାଡ଼ିବାର ଗୋଟିଏ କାରଣ ଥିଲା କେମ୍ବ୍ରିଜଠାରେ ତାଙ୍କ ଉପରେ ପଡୁଥିବା ପ୍ରଶାସନିକ ଦାୟିତ୍ୱର ବୋଝ। ଇସ୍ତଫାପତ୍ରରେ ସେ ଲେଖିଥିଲେ, "ଗବେଷଣା ହେଉଛି ମୋ ଜୀବନର ମୁଖ୍ୟ ଓ ଚିରସ୍ଥାୟୀ ସୁଖ। ସେଥିପାଇଁ ମୁଁ ମୋର ସବୁ ସୁଯୋଗ ସଂରକ୍ଷିତ ରଖିବାକୁ ଚାହେଁ। ଏହା କରିବାକୁ ହେଲେ କମ୍ ଦାୟିତ୍ୱ ଓ ଅଧିକ ଅବସର ଦେଉଥିବା ପଦବୀ ମୋର ଦରକାର।" ଏହା ତାଙ୍କୁ ମିଳିବ ବୋଲି ଅକ୍ସଫୋର୍ଡ ପ୍ରତିଶ୍ରୁତି ଦେଇଛି।

ଯଦିଓ ସେ ଇସ୍ତଫାପତ୍ରରେ ତାହା ଲେଖି ନ ଥିଲେ, ଯୁଦ୍ଧ ସମୟର ତିକ୍ତତା ଯୋଗୁ କେମ୍ବ୍ରିଜରେ ରହିବା ତାଙ୍କ ପାଇଁ ଆଉ ଖୁସିର କଥା ନ ଥିଲା। କେମ୍ବ୍ରିଜରେ ରାମାନୁଜନ୍‌ଙ୍କ ଅବର୍ତ୍ତମାନ ମଧ୍ୟ ଆଉ ଏକ କାରଣ ଥିଲା। ସ୍ନୋ ଲେଖିଥିଲେ, "ରାମାନୁଜନ୍ ଯଦି ନ ଥା'ନ୍ତେ 1914–18 ମସିହାର ଯୁଦ୍ଧ ସମୟ ହାର୍ଡିଙ୍କ ପାଇଁ ଅନ୍ଧକାରମୟ ହୋଇଥା'ନ୍ତା। କଲେଜ ବିବାଦର ତିକ୍ତତା ଭିତରେ ରାମାନୁଜନ୍‌ଙ୍କ କାମ ହାର୍ଡିଙ୍କୁ ସାନ୍ତ୍ୱନା ଦେଉଥିଲା।" ଏବେ ରାମାନୁଜନ୍ ଆଉ ନ ଥିଲେ। ତିରିଶ ବର୍ଷ ଧରି ତାଙ୍କର ଘର ହୋଇଥିବା ଟ୍ରିନିଟି ତାଙ୍କ ପାଇଁ ଅତି ଅପ୍ରୀତିକର ହୋଇପଡ଼ିଥିଲା। କେତେ ଜଣ ସହକର୍ମୀଙ୍କ ସହିତ ତାଙ୍କର କଥାବାର୍ତ୍ତା ପ୍ରାୟ ନ ଥିଲା। ସାଭିଲିଆନ୍ ଅଧ୍ୟାପକ ପଦ ପାଇଁ ଦରଖାସ୍ତ କରିବାକୁ ବିଦେଶରେ ଅଧିକାଂଶ ସମୟ କଟାଇଥିବା ଜଣେ ବୟସ୍କ ଗଣିତଜ୍ଞ ଡବ୍ଲିଉ. ଏଚ୍. ୟଙ୍ଗ୍‌ଙ୍କୁ ହାର୍ଡି ପ୍ରବର୍ତ୍ତାଇ ଥିଲେ। ପରେ କିନ୍ତୁ ତାଙ୍କର ଦରଖାସ୍ତ ଫେରାଇ ନେବାକୁ ହାର୍ଡି ତାଙ୍କୁ ଅନୁରୋଧ କଲେ ଏବଂ ୟଙ୍ଗ୍ ତାହା କରିଥିଲେ। ୟଙ୍ଗ୍‌ଙ୍କ ପୁଅ କହିଥିଲେ ଯେ ହାର୍ଡି କୌଣସିମତେ କେମ୍ବ୍ରିଜ ଛାଡ଼ି ଚାଲିଯିବାକୁ ଚାହୁଁଥିଲେ। ଅକ୍ସଫୋର୍ଡଠାରେ ସାଭିଲିଆନ୍ ଅଧ୍ୟାପକ ପଦ ତାଙ୍କୁ ସେହି ସୁଯୋଗ ଯୋଗାଇଲା।

କେମ୍ବ୍ରିଜଠାରୁ ଶହେ ମାଇଲ ଭିତରେ ଅବସ୍ଥିତ ଅକ୍ସଫୋର୍ଡ ଇଂଲଣ୍ଡର ଅନ୍ୟ ମହାନ ବିଶ୍ୱବିଦ୍ୟାଳୟ ଥିଲା। ଜାସ୍ପର୍ ରୋଜ୍ ଓ ଜନ୍ ଜିମାନ୍ ତାଙ୍କର କାମ୍ଫୋର୍ଡ ଅବ୍‌ଜର୍ଭଡ୍ ବହିରେ କେମ୍ବ୍ରିଜ ଓ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟ ଦୁଇଟିର ଏକ ମିଳିତ ବିବରଣୀ ଦେବାକୁ ଚେଷ୍ଟା କରିଥିଲେ। ସେମାନେ ଲେଖିଥିଲେ, "ଅକ୍ସଫୋର୍ଡ ସହରରେ ରାସ୍ତାଗୁଡ଼ିକ ପ୍ରଶସ୍ତ ଓ ଭଲ, କେମ୍ବ୍ରିଜ ରାସ୍ତା ସବୁ ଅଙ୍କାବଙ୍କା। କେମ୍ବ୍ରିଜର ମୁଖ୍ୟ କୋଠାଗୁଡ଼ିକ ଖେଳାଇ ହୋଇ, ପ୍ରାୟ ଦେଖା ନ ଗଲା ଭଳି ରହିଛନ୍ତି ଓ ସେସବୁର ଆଗରେ ପ୍ରାଙ୍ଗଣ ଓ ଉଦ୍ୟାନ ରହିଛି। ଅକ୍ସଫୋର୍ଡ ସୁସଙ୍ଗତ। ଅକ୍ସଫୋର୍ଡ ଦର୍ଶକକୁ ଅଭିଭୂତ କରିପକାଏ, କେମ୍ବ୍ରିଜ କିନ୍ତୁ ରହସ୍ୟମୟ ମନେହୁଏ।" ବୌଦ୍ଧିକ ଦୃଷ୍ଟିରୁ କେମ୍ବ୍ରିଜ ବିଜ୍ଞାନ ଆଡ଼କୁ ଅଧିକ ଢଳିଥାଏ, ଅକ୍ସଫୋର୍ଡ ପ୍ରାଚୀନ ଶାସ୍ତ୍ର ଆଡ଼କୁ।

ଅକ୍ସଫୋର୍ଡର ପ୍ରାୟ ଦୁଇ ଡଜନ କଲେଜ ଭିତରୁ ନିଉ କଲେଜ ଗୋଟିଏ ଥିଲା। ତାହା ଗୋଟିଏ ପାଚିରିଘେରା ସହର ଭଳି ଗଢ଼ା ହୋଇଥିଲା। ମଧ୍ୟଯୁଗୀୟ ଦୁର୍ଗ ଭଳି ଭିତରୁ ତୀର ଚଳାଇବା ପାଇଁ ତା'ର ପାଚିରି ଦେହରେ ସରୁ ଫାଙ୍କମାନ ରହିଥିଲା। ପାଚିରି ଭିତରେ କଲେଜର ଗଛଲତା ଓ ବଗିଚା ସବୁ ରହିଥିଲା। ନିଉ କଲେଜକୁ ଆସିବା ହାର୍ଡିଙ୍କ ପାଇଁ ଜୀବନରେ ଗୋଟିଏ ଘେରା ପୂରାକରିବା ଭଳି କଥା ଥିଲା। ଏହି କଲେଜ 1379 ମସିହାରେ ୱିଲିଅମ୍ ଅଫ୍ ୱାଇକେହାମ୍‌ଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା। ତା'ର ଆଠ ବର୍ଷ ପରେ ଏହି କଲେଜ ପାଇଁ ଛାତ୍ରଙ୍କୁ ପ୍ରସ୍ତୁତ କରିବା ପାଇଁ ସେ ୱିଞ୍ଚେଷ୍ଟର ହାଇସ୍କୁଲ ଆରମ୍ଭ କଲେ। ପଚିଶ ବର୍ଷ ତଳେ ହାର୍ଡିଙ୍କର ଅଧିକାଂଶ ୱିଞ୍ଚେଷ୍ଟର ସହପାଠୀ ଏଠାରେ ପଢ଼ିବାକୁ ଆସିଥିଲେ। ସେଣ୍ଟ ଅବିନ୍‌ଙ୍କ ବହି ଦ୍ୱାରା ପ୍ରଭାବିତ ହୋଇ ଟ୍ରିନିଟି ଯିବାକୁ ଚାହିଁ ନ ଥିଲେ ହାର୍ଡି ମଧ୍ୟ ଏଠାରେ ହିଁ ପଢ଼ିଥା'ନ୍ତେ।

ଅକ୍ସଫୋର୍ଡ ଆସିବାର ଅଳ୍ପ କେତେମାସ ପରେ ମାନ୍ଦ୍ରାଜରୁ ହାର୍ଡିଙ୍କ ପାଖକୁ ଖବର ଆସିଲା: ବିଶ୍ୱବିଦ୍ୟାଳୟ ସିଣ୍ଡିକେଟ୍‌ର ନିର୍ଦ୍ଦେଶକ୍ରମେ ଆପଣଙ୍କୁ ମୁଁ ଗଭୀର ଦୁଃଖର ସହିତ ଏପ୍ରିଲ ୨୬ ସକାଳେ ଘଟିଥିବା ଶ୍ରୀ ଏସ୍. ରାମାନୁଜନ୍, ଏଫ୍.ଆର୍.ଏସ୍.,ଙ୍କ ତିରୋଧାନର ଖବର ଜଣାଉଛି।

ଡିଉଜ୍‌ବରିଙ୍କ ପାଖକୁ ସେହି ଚିଠିର ଉତ୍ତରରେ ହାର୍ଡି ଲେଖିଥିଲେ, "ରାମାନୁଜନ୍‌ଙ୍କ ମୃତ୍ୟୁର ଖବର ମୋତେ ବିସ୍ମିତ କଲା ଓ ଗଭୀର ଆଘାତ ଦେଲା। ... ସେ ଇଂଲଣ୍ଡ ଛାଡ଼ିଲାବେଳେ ବିଶ୍ୱାସ କରାଯାଉଥିଲା ଯେ ବେଶ୍ ଅସୁସ୍ଥ ଥିଲେ ମଧ୍ୟ ସେ ଆରୋଗ୍ୟତା ଆଡ଼କୁ ଗତି କରୁଥିଲେ। ତାଙ୍କର ଓଜନ ବେଶ୍ ବଢ଼ିଥିଲା ଏବଂ ପ୍ରାୟ ଦୁଇ ମାସ ତଳେ ତାଙ୍କଠାରୁ ପାଇଥିବା ଗଣିତଭରା ଚିଠିରୁ ସେ ପ୍ରଫୁଲ୍ଲ ଜଣାପଡୁଥିଲେ।"

ହାର୍ଡିଙ୍କ ଚିଠିରୁ ମନେ ହେଉଥିଲା ଯେ ରାମାନୁଜନ୍‌ଙ୍କ ମୃତ୍ୟୁ ପାଇଁ ସେ ନିଜକୁ କିଛି ମାତ୍ରାରେ ଦୋଷୀ ମନେକରୁଥିଲେ। କହିବାକୁ ଗଲେ ରାମାନୁଜନ୍ ପ୍ରାୟ ହାର୍ଡିଙ୍କ ଦାୟିତ୍ୱରେ ଇଂଲଣ୍ଡ ଆସିଥିଲେ ଓ କେମ୍ବ୍ରିଜରେ କାମ କରୁଥିଲେ। ଏବେ ସେ କ'ଣ ନିଜ ଉପରୁ ଦୋଷ ଛଡ଼ାଇବାକୁ ଚେଷ୍ଟା କରୁଥିଲେ? ସେ କ'ଣ କହିବାକୁ ଚାହୁଁଥିଲେ ଯେ ଇଂଲଣ୍ଡରେ ରୋଗର ଉପଶମ ପରେ ଭାରତ ଫେରିବା ପାଇଁ ଜାହାଜରେ ବସିବା ପରେ ରାମାନୁଜନ୍‌ଙ୍କର ସ୍ୱାସ୍ଥ୍ୟରେ ଅବନତି ଆସିଛି?

ହାର୍ଡିଙ୍କ ଉପରେ ରାମାନୁଜନ୍‌ଙ୍କ ମୃତ୍ୟୁର ଗଭୀର ପ୍ରଭାବ ବିଷୟରେ କୌଣସି ସନ୍ଦେହର ଅବକାଶ ନ ଥିଲା। ସେ କହିଥିଲେ, "ରାମାନୁଜନ୍‌ଙ୍କ ପାଖରେ ମୁଁ କେତେ ମାତ୍ରାରେ ଋଣୀ ତାହା

କହିବା ମୋ ପକ୍ଷରେ ବଡ଼ କଷ୍ଟର କଥା। ତାଙ୍କୁ ଜାଣିବା ପରଠାରୁ ତାଙ୍କର ମୌଳିକତା ମୋ ପାଇଁ ନୂଆ ଚିନ୍ତାର ଏକ ନିରବଚ୍ଛିନ୍ନ ଉତ୍ସ ଭାବରେ କାମ କରିଆସିଛି। ତାଙ୍କର ମୃତ୍ୟୁ ମୋ ଜୀବନର ସବୁଠାରୁ ବଡ଼ ଧକ୍କା ରୂପରେ ଆସିଛି।''

ଯୁଦ୍ଧ ସରିଥିଲେ ମଧ୍ୟ ପରିସ୍ଥିତି ସାଧାରଣ ଅବସ୍ଥାକୁ ଫେରି ନ ଥିଲା। ଜର୍ମାନିବାସୀଙ୍କୁ ବିଶ୍ୱାସ କରିବାକୁ କେହି ପ୍ରସ୍ତୁତ ନ ଥିଲେ। ଇଂଲଣ୍ଡ ଓ ଫ୍ରାନ୍ସ୍ ଦେଶର ଅନେକ ଗଣିତଜ୍ଞ ମଧ୍ୟ ଜର୍ମାନିର ଗଣିତଜ୍ଞମାନଙ୍କ ପ୍ରତି ଅତି ତିକ୍ତ ମନୋଭାବ ଦେଖାଉଥିଲେ ଏବଂ ବିଭିନ୍ନ ଆନ୍ତର୍ଜାତିକ ସମ୍ମିଳନୀରୁ ସେମାନଙ୍କୁ ବାସନ୍ଦ କରିବାକୁ ଦାବି ଉଠାଉଥିଲେ।

ହାର୍ଡିଙ୍କ ପାଇଁ ଯୁଦ୍ଧର ବର୍ବରତା ଘୃଣ୍ୟ ଥିଲା। ବୟସ୍କ ରାଜନେତାମାନେ ଯୁବକମାନଙ୍କୁ ହାଣ ମୁହଁକୁ ପଠାଉଥିବା କଥା ତାଙ୍କୁ ଅତି ବିରକ୍ତିକର ଲାଗୁଥିଲା। ୟୁରୋପର ଗଣିତଜ୍ଞ ସାଥୀମାନଙ୍କଠାରୁ ବିଚ୍ଛିନ୍ନ ହୋଇପଡ଼ିବା ତାଙ୍କ ପାଇଁ ଯନ୍ତ୍ରଣାଦାୟକ ଥିଲା। ଯୁଦ୍ଧ ସରିବା ପରେ ଏବେ ତା'ର କ୍ଷତକୁ ଶୁଖାଇଦେବାକୁ ଚାହୁଁଥିଲେ। ତେଣୁ ଖବର କାଗଜରେ ବାହାରୁଥିବା ଉତ୍ତେଜକ ଲେଖା ବିରୋଧରେ ସେ ପ୍ରତିବାଦ ପଠାଉଥିଲେ। ଶାନ୍ତି ପ୍ରକ୍ରିୟାରେ ସେ ସକ୍ରିୟ ରହୁଥିଲେ ଏବଂ ଗଣିତଜ୍ଞମାନଙ୍କ ଭିତରେ ସୁସମ୍ପର୍କ ଫେରାଇ ଆଣିବା ଦିଗରେ ବିଶେଷ ଚେଷ୍ଟା କରୁଥିଲେ। ସେ ସ୍ପଷ୍ଟ ଭାବରେ ଘୋଷଣା କରିଥିଲେ ଯେ କୌଣସି ଦେଶର ଗଣିତଜ୍ଞଙ୍କୁ ବାସନ୍ଦ କରୁଥିବା ସମ୍ମିଳନୀରେ ସେ ଯୋଗ ଦେବେନାହିଁ। 1920 ଓ 1924 ମସିହାରେ ସେଭଳି ଦୁଇଟି ଆନ୍ତର୍ଜାତିକ ସମ୍ମିଳନୀକୁ ବର୍ଜନ କରି ତାଙ୍କ କଥାକୁ କାମରେ ଦେଖାଇଥିଲେ।

ଯୁଦ୍ଧବିରତି, ଇଂଲଣ୍ଡରୁ ରାମାନୁଜନ୍‌ଙ୍କ ପ୍ରସ୍ଥାନ, ନିଜେ ଅକ୍ସଫୋର୍ଡକୁ ଆସିବା ଏବଂ ରାମାନୁଜନ୍‌ଙ୍କ ମୃତ୍ୟୁ – ହାର୍ଡିଙ୍କ ଜୀବନରେ ଏହିଭଳି ପ୍ରଭାବଶାଳୀ ଘଟଣାମାନ ମାତ୍ର ଅଠର ମାସ ଭିତରେ ଘଟିଗଲା। ତଥାପି ନିଉ କଲେଜର ନୂଆ ପରିବେଶକୁ ସେ ସହଜରେ ଆଦରି ନେବାରେ ଲାଗିଲେ। କେମ୍ବ୍ରିଜ ତୁଳନାରେ ଏହା ତାଙ୍କୁ ଅଧିକ ସୁହାଇଲା ଭଳି ମନେହେଉଥିଲା। ସ୍ନୋ ଏହାକୁ "ହାର୍ଡିଙ୍କ ଜୀବନର ସବୁଠାରୁ ବେଶି ସୁଖଦାୟକ ସମୟ'' ଭାବରେ ବର୍ଣ୍ଣନା କରିଥିଲେ। ନୂଆ ଜାଗାରେ ସମସ୍ତେ ତାଙ୍କୁ ଗ୍ରହଣ କରୁଥିଲେ ଓ ତାଙ୍କ ପ୍ରତି ବିଶେଷ ଧ୍ୟାନ ଦେଉଥିଲେ। ହାର୍ଡିଙ୍କର ଆକର୍ଷଣୀୟ କଥୋପକଥନ ନୂଆ ଶ୍ରୋତାଙ୍କ ମନ ଜିଣିବାରେ ଲାଗିଲା। ବେଳେ ବେଳେ ମନେ ହେଉଥିଲା ଯେ ସମସ୍ତେ ହାର୍ଡିଙ୍କ କଥା ଶୁଣିବା ପାଇଁ ଅପେକ୍ଷା କରି ରହିଛନ୍ତି। ବିଶ୍ୱବିଦ୍ୟାଳୟର କର୍ମଚାରୀମାନେ ମଧ୍ୟ ହାର୍ଡିଙ୍କୁ ବିଶେଷ ଭାବରେ ସମ୍ମାନ ଦେଖାଉଥିଲେ।

ଲିଟଲ୍‌ଉଡ୍‌ଙ୍କ ସହିତ ତାଙ୍କର ମିଳିତ ଗଣିତ କାମ ଡାକ ଜରିଆରେ ଚାଲୁରହିଲା। 1928–29ର ଶିକ୍ଷାବର୍ଷଟି ହାର୍ଡି ଯୁକ୍ତରାଷ୍ଟ୍ର ଆମେରିକାରେ କଟାଇଲେ। ସେ ମୁଖ୍ୟତଃ ପ୍ରିନ୍ସ୍‌ଟନ୍ ବିଶ୍ୱବିଦ୍ୟାଳୟଠାରେ କାମ କରୁଥିଲେ, କିନ୍ତୁ ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଭାଷଣ ଦେବା ପାଇଁ ସେ ଅନେକ ଜାଗା ବୁଲୁଥିଲେ। ବର୍ଷ ଶେଷରେ ଆଉ କିଛି ଅଧିକ ସମୟ ସେଠାରେ କଟାଇବା ପାଇଁ ପ୍ରିନ୍ସ୍‌ଟନ୍ ବିଶ୍ୱବିଦ୍ୟାଳୟ ତରଫରୁ ତାଙ୍କୁ ଅନୁରୋଧ କରାଗଲା। ଏହା ତାଙ୍କ ପାଇଁ ଏକ ଖୁସିର ସମୟ ଥିଲା, କିନ୍ତୁ ଅକ୍ସଫୋର୍ଡଠାରେ ନିଜର ଦାୟିତ୍ୱ ଦୃଷ୍ଟିରୁ ସେ ଫେରିଆସିଲେ।

ଆମେରିକାରେ ଥିବାବେଳେ ସେ ବେସ୍‌ବଲ୍ ଖେଳ ପ୍ରତି ଆଗ୍ରହୀ ହୋଇପଡ଼ିଲେ ଏବଂ ତା

ସହିତ ଯୋଡ଼ା ବିଭିନ୍ନ ସମସ୍ୟାର ସମାଧାନ ଖୋଜିବାରେ ମୁଣ୍ଡ ଖେଳାଉଥିଲେ। ତାଙ୍କର କ୍ରିକେଟ ଓ ଟେନିସ୍ ଆଗ୍ରହ ଆଗଭଳି ରହିଥିଲା। ଟେନିସ୍ ଖେଳରେ ସେ କିଛି ଉନ୍ନତି ଦେଖାଇଲେ। ମୋଟ ଉପରେ ଦେଖିଲେ ଅକ୍ସଫୋର୍ଡଠାରେ ହାର୍ଡି ବେଶ୍ ଖୁସି ଥିଲେ। ତଥାପି 1931 ମସିହା ବେଳକୁ ସେ କେମ୍ବ୍ରିଜ ଫେରିଆସିଲେ।

ଇ. ଡବ୍ଲିଉ. ହବ୍‌ସନ୍‌ଙ୍କ ମୃତ୍ୟୁ ପରେ କେମ୍ବ୍ରିଜରେ ସାଡ୍‌ଲେରିଆନ୍ ଅଧ୍ୟାପକ ପଦବୀ ଖାଲିପଡ଼ିଲା ଏବଂ ସେହି ବରିଷ୍ଠ ପଦବୀ ଏବେ ହାର୍ଡିଙ୍କୁ ଯଚାଯାଉଥିଲା। ଦୁଇଟି କାରଣରୁ ହାର୍ଡି କେମ୍ବ୍ରିଜ ଫେରିବା ପାଇଁ ଆଗ୍ରହୀ ହେଲେ। ପ୍ରଥମରେ ଗଣିତ କ୍ଷେତ୍ରରେ ଅକ୍ସଫୋର୍ଡ ତୁଳନାରେ କେମ୍ବ୍ରିଜର ସ୍ଥାନ ଉଚ୍ଚତର ଥିଲା ଏବଂ ଏବେ ତାଙ୍କୁ ଗଣିତ ବିଭାଗର ଉଚ୍ଚ ପଦବୀ ମିଳିବାକୁ ଥିଲା। ଦ୍ୱିତୀୟ କାରଣଟି ଥିଲା ଦୁଇ ବିଶ୍ୱବିଦ୍ୟାଳୟର ଅବସର ଗ୍ରହଣ ପାଇଁ ନିୟମ। ଅକ୍ସଫୋର୍ଡଠାରେ ପଞ୍ଚଷଠି ବର୍ଷ ବୟସ ପୂରିଲେ ତାଙ୍କୁ ସେଠାରୁ ବାହାରିଯିବାକୁ ପଡ଼ିବ। କିନ୍ତୁ କେମ୍ବ୍ରିଜର ଟ୍ରିନିଟି କଲେଜରେ ସେ ମୃତ୍ୟୁ ପର୍ଯ୍ୟନ୍ତ ରହିପାରିବେ।

ହାର୍ଡିଙ୍କର ଯୁଦ୍ଧବିରୋଧୀ ମତାମତ ଆଗରୁ ଅପ୍ରିୟ ଥିଲା। ଏବେ କିନ୍ତୁ ତାହା ସମସ୍ତେ ପ୍ରାୟ ଭୁଲିଯାଇଥିଲେ। ବରଂ ଅନେକ ସମୟରେ ଏବେ ତାହା ପ୍ରଶଂସା ପାଇବାକୁ ଲାଗିଲା। ତାଙ୍କୁ ଫେରିପାଇଥିବାରୁ କେମ୍ବ୍ରିଜର ଯୁବ ଗଣିତଜ୍ଞମାନେ ଖୁବ୍ ଖୁସି ଥିଲେ। ଶୁଦ୍ଧ ଗଣିତ କ୍ଷେତ୍ରରେ ସେ ଶୁଦ୍ଧତମ ଥିଲେ ବୋଲି ସେମାନେ ଗର୍ବ କରୁଥିଲେ। ଏହି ସମୟକୁ କେମ୍ବ୍ରିଜ ଗଣିତର ସୁବର୍ଣ୍ଣ ଯୁଗ ବୋଲି ଲରେନ୍ସ ୟଙ୍ଗ୍ କହିଥିଲେ। ଆତ୍ମିକ ଓ ବୌଦ୍ଧିକ ଦୃଷ୍ଟିରୁ କେମ୍ବ୍ରିଜ ଏବେ ୟୁରୋପ ଓ ଆମେରିକାର ବିଖ୍ୟାତ ବିଶ୍ୱବିଦ୍ୟାଳୟଗୁଡ଼ିକର ସମକକ୍ଷ ଥିଲା। ଜର୍ମାନିର ଅତ୍ୟାଚାରୀ ଶାସନ କବଳରୁ ମୁକ୍ତି ପାଇବା ପାଇଁ ପଳାଇ ଆସିଥିବା ଅନେକ ଗଣିତଜ୍ଞ କେମ୍ବ୍ରିଜରେ ଯୋଗ ଦେଉଥିଲେ।

ସୋସାଇଟି ଫର୍ ଦି ପ୍ରୋଟେକ୍ସନ୍ ଅଫ୍ ସାଇନ୍ସ ଆଣ୍ଡ ଲର୍ଣ୍ଣିଙ୍ଗ ଅନୁଷ୍ଠାନର ସହଯୋଗରେ 1933 ମସିହା ବେଳକୁ ହାର୍ଡି ତାଙ୍କର ପ୍ରଭାବ ଖଟାଇ ଇହୁଦୀ ଓ ଅନ୍ୟ ବିତାଡ଼ିତ ଲୋକମାନଙ୍କୁ ଇଂଲଣ୍ଡ ଭଳି ନିରାପଦ ସ୍ଥାନକୁ ଆଣିବାରେ ସାହାଯ୍ୟ କରୁଥିଲେ। ରିସ୍‌ଜ୍, ବୋହ୍‌ର୍ ଓ ଲାଣ୍ଡାଉ ଆଦି ବିଶିଷ୍ଟ ଗଣିତଜ୍ଞଙ୍କୁ ଉଦ୍ଧାର କରିଆଣିବାରେ ସେ ସକ୍ଷମ ହୋଇଥିଲେ। ଏ. ଭି. ହିଲ୍ ଲେଖିଥିଲେ, "ଅନେକ ଦିଗରୁ ହାର୍ଡି ସଂସାରୀ ନଥିଲେ, କିନ୍ତୁ ସହକର୍ମୀମାନଙ୍କର ଅସୁବିଧା ଓ ବିପଦ ସମୟରେ ସେ ଗଭୀର ଉଦ୍‌ବେଗ ପ୍ରକଟ କରୁଥିଲେ। ଏହା ତାଙ୍କର ଉଦାର ମାନବିକତାର ନିଦର୍ଶନ ହେବା ସହିତ ସଚ୍ଚୋଟତା ଓ ଜ୍ଞାନୀସମ୍ପ୍ରଦାୟ ପ୍ରତି ତାଙ୍କର ଅନୁରକ୍ତିର ସୂଚନା ଦେଉଥିଲା।"

ଇହୁଦୀବିରୋଧୀ କାର୍ଯ୍ୟକଳାପରେ ଲିପ୍ତ ଥିବା ଜର୍ମାନ ଅନୁଷ୍ଠାନଗୁଡ଼ିକଠାରୁ ସେ ନିଜକୁ ଦୂରେଇ ନେଇଥିଲେ। ବର୍ଲିନ ବିଶ୍ୱବିଦ୍ୟାଳୟର ଜଣେ ଅଧ୍ୟାପକ ଗଣିତ କ୍ଷେତ୍ରରେ ସୃଜନଶୀଳତା ସହିତ ବଂଶ ଓ ବର୍ଣ୍ଣର ସମ୍ପର୍କ ରହିଛି ବୋଲି ଦାବି କରୁଥିଲେ। 1934 ମସିହାରେ ହାର୍ଡି ଏହାର ପ୍ରତିବାଦ କରି ନେଚର୍ ପତ୍ରିକାରେ ତାଙ୍କର ଦୃଢ଼ ମତ ପ୍ରକାଶ କରିଥିଲେ।

ସାଧାରଣତଃ ହାର୍ଡି ଦୁର୍ବଳ ପକ୍ଷର ସମର୍ଥନରେ ବାହାରୁଥିଲେ ଏବଂ ତାଙ୍କର ରାଜନୈତିକ ଚିନ୍ତାଧାରା ବାମପନ୍ଥୀ ଥିଲା। 1927 ମସିହା ଯାଏଁ ସେ ନ୍ୟାସନାଲ ୟୁନିଅନ୍ ଅଫ୍ ସାଇଣ୍ଟିଫିକ୍ ୱାର୍କର୍‌ସ୍‌ର ସଦସ୍ୟ ଥିଲେ ଏବଂ ତାହା ପାଇଁ ନୂଆ ସଦସ୍ୟ ସଂଗ୍ରହ କରିବା ପାଇଁ ଭାଷଣ

ଦେଉଥିଲେ। ବିଜ୍ଞାନୀ ଶ୍ରୋତାମାନଙ୍କ ପାଇଁ ସେ ଦେଇଥିବା ସେଭଳି ଗୋଟିଏ ଭାଷଣର ବର୍ଣ୍ଣନାରେ ଜେ.ବି.ଏସ୍. ହାଲ୍‌ଡେନ୍ କହିଥିଲେ, "ଆମର କାମ କୋଇଲା ଖଣିର ଶ୍ରମିକମାନଙ୍କ କାମଠାରୁ ବହୁତ ଅଲଗା, ତଥାପି ଆମେ ପୁଞ୍ଜିବାଦୀଙ୍କ ଅପେକ୍ଷା କୋଇଲା ଖଣିର ଶ୍ରମିକମାନଙ୍କର ନିକଟତର। ଅନ୍ତତଃ ପକ୍ଷେ ଆମେ ଓ କୋଇଲା ଖଣିର ଶ୍ରମିକମାନେ ଉଭୟେ କୁଶଳୀ କର୍ମୀ, ଅନ୍ୟମାନଙ୍କ ପରିଶ୍ରମରୁ ଲାଭ ଉଠାଉଥିବା ଲୋକ ନୁହେଁ। ଯଦି କେବେ ତାଙ୍କୁ ପକ୍ଷ ନେବାକୁ ପଡ଼େ ତେବେ ସେ ଶ୍ରମିକଙ୍କ ପଟରେ ଛିଡ଼ାହେବେ।" ହାର୍ଡିଙ୍କ କୋଠରିରେ ସମସ୍ତେ ଦେଖିପାରିବା ଭଳି ଆଇନ୍‌ଷ୍ଟାଇନ୍, କ୍ରିକେଟ ଖେଳାଳି ଜାକ୍ ହବ୍‌ସ୍ ଓ ଲେନିନ୍‌ଙ୍କର ଫଟୋ ରହିଥିଲା।

ଗଣିତଜ୍ଞମାନଙ୍କ ଭିତରେ ହାର୍ଡି, ଲିଟଲ୍‌ଉଡ୍ ଓ ତାଙ୍କର ଅନ୍ୟ ସହକର୍ମୀମାନେ ମୁଖ୍ୟ ସ୍ରୋତର ପ୍ରବକ୍ତା ଭାବରେ ଗଣାଯାଉଥିଲେ। ପଚିଶ ବର୍ଷ ତଳେ ଗଣିତ କ୍ଷେତ୍ରରେ ସଠିକତା ଓ ପରିଶୁଦ୍ଧତା ସପକ୍ଷରେ ସେ ଯେଉଁ ବିପ୍ଳବ ଆରମ୍ଭ କରିଥିଲେ ତାହା ଏବେ ସୁପ୍ରତିଷ୍ଠିତ ରୂପ ନେଇଥିଲା। କିଛି ଗଣିତଜ୍ଞ ଅବଶ୍ୟ ଅଭିଯୋଗ କରୁଥିଲେ ଯେ ଏହି ଧାରାର ପ୍ରଭାବରେ ବୀଜଗଣିତ, ଫଳନ ବିଶ୍ଳେଷଣ ଏବଂ ଶୁଦ୍ଧ ଗଣିତର ଅନ୍ତର୍ଭୁକ୍ତ ଅନ୍ୟ କେତେ ବିଭାଗର ବିକାଶ ବାଧା ପାଉଛି। 1930 ଦଶକରେ ହାର୍ଡିଙ୍କୁ ଏବେ ପୁରୁଣା ପିଢ଼ିର ଗଣିତଜ୍ଞ ଭାବରେ ଦେଖାଯାଉଥିଲା।

ଏହି ସମୟ ଭିତରେ ହାର୍ଡି ବିଭିନ୍ନ ଦେଶରୁ ଛୋଟ ବଡ଼ ଅନେକ ପୁରସ୍କାର ଓ ସମ୍ମାନ ପାଇଥିଲେ। ତାଙ୍କ ପାଇଁ ଏହା ମଧ୍ୟ ସବୁଠାରୁ ଫଳପ୍ରଦ ସମୟ ଥିଲା ଏବଂ ତାଙ୍କ ବିଷୟରେ ଯାହା ସବୁ ପରେ କିଂବଦନ୍ତିର ରୂପ ନେଲା ଏହି ସମୟରେ ହିଁ ଘଟିଥିଲା। ଏତିକିବେଳେ ଥରେ ତାଙ୍କର ନୂଆବର୍ଷର ସଂକଳ୍ପ ଥିଲା:

1. ରିମାନ୍ ଉପକଳ୍ପନାର ପ୍ରମାଣ ଦେବା।
2. ଓଭାଲଠାରେ ଶେଷ ଟେଷ୍ଟର ଚତୁର୍ଥ ପାଳିରେ ଅପରାଜିତ 211 ରନ୍ କରିବା।
3. ଭଗବାନ ନ ଥିବାର ସପକ୍ଷରେ ଦୃଢ଼ ଯୁକ୍ତି ବାହାର କରିବା, ଯାହା ଜନସାଧାରଣଙ୍କ ପାଇଁ ଗ୍ରହଣଯୋଗ୍ୟ ହେବ।
4. ଏଭରେଷ୍ଟ ଶୃଙ୍ଗ ଉପରେ ପହଞ୍ଚିବାରେ ପ୍ରଥମ ମଣିଷ ହେବା।
5. ସୋଭିଏତ୍ ୟୁନିଅନ୍, ଇଂଲଣ୍ଡ ଓ ଜର୍ମାନିର ପ୍ରଥମ ରାଷ୍ଟ୍ରପତି ହେବା।
6. ମୁସୋଲିନିଙ୍କୁ ହତ୍ୟା କରିବା।

ଏହିଭଳି କାର୍ଯ୍ୟକଳାପ ସବୁକୁ ସେ 'ପୁରୁଣା ମଦ' ଆଚରଣ ନାଁରେ ବର୍ଣ୍ଣନା କରୁଥିଲେ। ତାଙ୍କ ଭାଷାରେ ଏହା ଥିଲା ପୁରୁଣା ମଦ ଭଳି "ଯାହା ଅଲଗା ସ୍ୱାଦର, ଯାହାକୁ କେବଳ ବିଶେଷ ଜ୍ଞାନ ଥିବା ଲୋକମାନେ ବୁଝିପାରିବେ, କିନ୍ତୁ ତାହା ଗ୍ରହଣୀୟତାର ସୀମା ଭିତରେ।" କହିବାକୁ ଗଲେ ତାହା ଥିଲା ଏକ ପ୍ରକାରର ଯୋଜନାବଦ୍ଧ ଆଡ଼ବାୟାମି, ଯୁବସୁଲଭ ଚପଳତାର ପରିପକ୍ୱ ରୂପ।

ତାହା ହିଁ ହାର୍ଡିଙ୍କ କ୍ଷେତ୍ରରେ ଘଟୁଥିଲା। ସେ ଏବେ ବୃଦ୍ଧାବସ୍ଥାକୁ ଆସୁଥିଲେ। 1931 ମସିହାରେ ତାଙ୍କୁ ଚଉବନ ବର୍ଷ ହୋଇଥିବା ବେଳେ ଏହାର ସୂଚନା ଦେଖିବାକୁ ମିଳୁଥିଲା। ସେହି ସମୟରେ କେମ୍ବ୍ରିଜକୁ ବର୍ଷକ ପାଇଁ ଫେରିଥିବା ନର୍ବର୍ଟ ୱାଇନର୍ ଲକ୍ଷ୍ୟ କରିଥିଲେ, "କୋଡ଼ିଏ ବର୍ଷ

ତଳେ ରସେଲ୍‌ଙ୍କ କୋଠରିରେ ମୁଁ ଯୁବକ ହାର୍ଡିଙ୍କୁ ଭେଟିଥିଲି। ଏବେ ତାଙ୍କର ବାର୍ଦ୍ଧକ୍ୟକବଳିତ କୁଞ୍ଚିତ ରୂପ ମୁଁ ଦେଖୁଛି।'' ହାର୍ଡି ମଧ୍ୟ ଏ ବିଷୟରେ ସଚେତନ ଥିଲେ। କେମ୍ବ୍ରିଜକୁ ଫେରିଲା ପରେ ଗଣିତଜ୍ଞମାନଙ୍କ ଭିତରେ ନୂଆ ଯୁବକମାନଙ୍କୁ ଦେଖି ସେ ବିଚଳିତ ଅନୁଭବ କରୁଥିଲେ। ସେ ଲେଖିଥିଲେ, ''ଏଭଳି ଯୁବସୁଲଭ କ୍ଷିପ୍ରତା ଓ ଶକ୍ତି ବୟସ୍କମାନଙ୍କ ପାଇଁ ବେଶ୍ ଭୀତିପ୍ରଦ ମନେହୁଏ।''

1939 ମସିହାରେ ଦିନେ ତାଙ୍କର ବହି ଥାକରୁ ଧୂଳି ଝାଡୁଥିବାବେଳେ ହାର୍ଡିଙ୍କର ପ୍ରଥମ ହୃଦଘାତ ଘଟିଲା। ସେତେବେଳକୁ ତାଙ୍କର ବୟସ ବାଷଠି ବର୍ଷ ହୋଇଥିଲା। ଏହା ପରେ ସେ ଆଉ ଟେନିସ୍, ସ୍କ୍ୱାସ୍ ବା କ୍ରିକେଟ ଖେଳିପାରିଲେନାହିଁ। ତାଙ୍କର ସୃଜନଶୀଳତା କମିଗଲା - ତାଙ୍କର ଗୁରୁତ୍ୱପୂର୍ଣ୍ଣ ନିବନ୍ଧଗୁଡ଼ିକର ତାଲିକାରୁ ଦେଖିବାକୁ ମିଳୁଥିଲା ଯେ 1935 ମସିହା ପରର କୌଣସି ନିବନ୍ଧ ସେଥିରେ ସ୍ଥାନ ପାଇ ନ ଥିଲା। ସୂଚନାଯୋଗ୍ୟ ଯେ ରାମାନୁଜନ୍‌ଙ୍କ ସହିତ ତାଙ୍କର ସବୁ ମିଳିତ ପ୍ରକାଶନ ସେହି ତାଲିକାରେ ଥିଲା। କେବଳ ଗୁଣାତ୍ମକ ନୁହେଁ ସଂଖ୍ୟାତ୍ମକ ଦୃଷ୍ଟିରୁ ମଧ୍ୟ ତାଙ୍କର ନିବନ୍ଧ ପ୍ରକାଶନ କମିଗଲା।

ଗାଣିତିକ ଦକ୍ଷତାର ଅବକ୍ଷୟ ତାଙ୍କୁ ଅବସାଦଗ୍ରସ୍ତ କରିପକାଇଲା। ଦ୍ୱିତୀୟ ବିଶ୍ୱଯୁଦ୍ଧ ତାଙ୍କ ଅବସାଦକୁ ବଢ଼ାଇଦେଲା। ତାଙ୍କର ଏହି ଅବକ୍ଷୟ କିନ୍ତୁ ସମସ୍ତଙ୍କ ପାଇଁ ସ୍ପଷ୍ଟ ନ ଥିଲା। 1941 ମସିହାରେ ହାର୍ଡିଙ୍କ ପୁରୁଣା ସ୍କୁଲ ୱିଞ୍ଚେଷ୍ଟରରୁ ଆସିଥିବା ଛାତ୍ର ଫ୍ରିମାନ୍ ଡାଇସନ୍ ଦୁଇବର୍ଷ ଧରି ହାର୍ଡିଙ୍କ ଶ୍ରେଣୀରେ ବସୁଥିଲେ, କିନ୍ତୁ ସେ ହାର୍ଡିଙ୍କ ଦକ୍ଷତା କମିଥିବାର ସୂଚନା ପାଇ ନ ଥିଲେ। ତାଙ୍କ ପାଇଁ ହାର୍ଡି ସେବେ ମଧ୍ୟ ଜଣେ ଦେବତା ଭଳି ଥିଲେ। ଡାଇସନ୍ ଓ ଆଉ ତିନି ଜଣ ଆଗୁଆ ଛାତ୍ର ଗୋଟିଏ ଛୋଟ କୋଠରିରେ ହାର୍ଡିଙ୍କଠାରୁ ମାତ୍ର କେତେ ଫୁଟ ଦୂରରେ ବସି ତାଙ୍କ କଥା ଶୁଣୁଥିଲେ। ଡାଇସନ୍‌ଙ୍କ ଅନୁଭୂତିରେ:

> ତାଙ୍କର ପଢ଼ାଇବା ଶୈଳୀ ଅତି ସରସ ଓ ସଠିକ୍ ଥିଲା ଏବଂ ସେଥିରୁ ସେ ଯେ ଆବେଗମୟ ଆନନ୍ଦ ପାଉଥିଲେ ତାହା ଜାଣିହେଉଥିଲା...। ପ୍ରତ୍ୟେକ ଭାଷଣ କୌଣସି କଳାକୃତି ଭଳି ଯତ୍ନର ସହିତ ପ୍ରସ୍ତୁତ କରାଯାଉଥିଲା, ଶ୍ରେଣୀର ସମୟ ସରିଆସିଲା ବେଳକୁ ବିଷୟଟିର ବୌଦ୍ଧିକ ନିଷ୍କର୍ଷ ଉଦ୍ଭାସିତ ହୋଇଉଠୁଥିଲା। ମୋ ପାଇଁ ସେହି ଭାଷଣଗୁଡ଼ିକ ଅତି ଆନନ୍ଦଦାୟକ ଥିଲା ଏବଂ ବେଳେ ବେଳେ ଆମ ଆଗରେ ଧଳା କ୍ରିକେଟ ସୁଏଟର ପିନ୍ଧି ବସିଥିବା ସେହି କ୍ଷିଣାଙ୍ଗ ବୃଦ୍ଧଙ୍କୁ କୁଣ୍ଢାଇ ପକାଇବା ପାଇଁ ମୋର ପ୍ରବଳ ଇଚ୍ଛା ହେଉଥିଲା। ତାହା କରି ମୁଁ ଦେଖାଇବାକୁ ଚାହୁଁଥିଲି ଯେ ଆମମାନଙ୍କ ପାଇଁ ଭାଷଣ ଦେଇ ଚାଲିଥିବାରୁ ଆମେ କେତେ ଗଭୀର ଭାବରେ କୃତଜ୍ଞ।

1942 ମସିହାରେ ହାର୍ଡି ସାଡ୍ଲେରିଆନ୍ ଅଧ୍ୟାପକ ପଦବୀରୁ ଅବସର ନେଲେ।

ତା'ର ପୂର୍ବବର୍ଷ ଗୋଟିଏ ରଗ୍‌ବି ଖେଳ ଦେଖୁଥିବା ବେଳେ ପିକ୍‌ଚର୍ ପୋଷ୍ଟ ପତ୍ରିକାର ସାମ୍ବାଦିକ ତାଙ୍କର ଫଟୋ ଉଠାଇଥିଲେ। ଶୀତଦିନର ପୋଷାକରେ ଗୁଡ଼ାଇହୋଇ ହାତରେ ସିଗାରେଟ୍ ଧରି ସେ ଖେଳ ଦେଖିବାରେ ମଜ୍ଜିଯାଇଥିଲେ। ଫଟୋଟି ତାଙ୍କ ଭଉଣୀଙ୍କ ମନକୁ ପାଇ ନ ଥିଲା, କାରଣ ସେଥିରେ ହାର୍ଡି ଖୁବ୍ ବୁଢ଼ା ଦେଖାଯାଉଥିଲେ।

କିନ୍ତୁ ହାର୍ଡି ବୁଢ଼ା ହିଁ ହୋଇଯାଇଥିଲେ।

1946 ମସିହା ବେଳକୁ ସେ ପ୍ରାୟ ଅକର୍ମଣ୍ୟ ଅବସ୍ଥାରେ ପହଞ୍ଚିଥିଲେ। ସ୍ନୋ'ଙ୍କ ବର୍ଣ୍ଣନାରେ ତାଙ୍କର ଦେହ ଭାଙ୍ଗିପଡ଼ିଥିଲା, ମାତ୍ର କେତୋଟି ପାଦ ପକାଇଲା ପରେ ସେ ଅଣନିଶ୍ୱାସୀ ହୋଇପଡୁଥିଲେ। ତାଙ୍କର ଯତ୍ନ ନେବା ପାଇଁ ଭଉଣୀ ଆଗେଇ ଆସିଥିଲେ, କିନ୍ତୁ କେମ୍ବ୍ରିଜର କଠୋର ନିୟମ ଅନୁସାରେ ରାତିରେ ସେ ସେଠାରେ ରହିପାରୁ ନ ଥିଲେ।

1947 ମସିହାର ଆରମ୍ଭରେ ଅତ୍ୟଧିକ ନିଦ ବଟିକା ଖାଇ ହାର୍ଡି ନିଜର ଜୀବନ ନେବାକୁ ଚେଷ୍ଟା କରିଥିଲେ। କିନ୍ତୁ ତାହା ଏତେ ବେଶି ଥିଲା ଯେ ତାଙ୍କର ବାନ୍ତି ହୋଇଗଲା। ସେ ବଞ୍ଚିଗଲେ, କିନ୍ତୁ ପଡ଼ିଯାଇ ମୁଣ୍ଡରେ ଆଘାତ ପାଇଥିଲେ।

ସେହିବର୍ଷ ରୟାଲ ସୋସାଇଟି ତା'ର ଉଚ୍ଚତମ ସମ୍ମାନ – କୋପ୍ଲି ପଦକ – ହାର୍ଡିଙ୍କୁ ଦେବାକୁ ସ୍ଥିର କଲା। ଏହି ଘୋଷଣାର ପ୍ରତିକ୍ରିୟାରେ ହାର୍ଡି ସ୍ନୋ'ଙ୍କୁ କହିଥିଲେ, "ଏବେ ମୁଁ ଜାଣୁଛି ଯେ ମୋର ଶେଷ ସମୟ ଆସିଗଲା। ସମ୍ମାନ ଜଣାଇବା ପାଇଁ ଲୋକମାନେ ଯେତେବେଳେ ବ୍ୟଗ୍ରତା ଦେଖାନ୍ତି, ସେଥିରୁ କେବଳ ଏହି ସିଦ୍ଧାନ୍ତ ବାହାରେ।"

ନଭେମ୍ବର 24 ତାରିଖରେ ତାଙ୍କର ଭାଇ ଫିଲିପ୍‌ସ୍‌ଙ୍କ ପାଖକୁ ଚିଠିରେ ସ୍ନୋ ଲେଖିଥିଲେ, "ହାର୍ଡି ଏବେ ମୃତ୍ୟୁର ଅପେକ୍ଷାରେ – ତାହା କେବେ ଆସିବ କେହି ଜାଣନ୍ତିନାହିଁ, କିନ୍ତୁ ସେ ଚାହୁଁଛନ୍ତି ଯେ ତାହା ଶୀଘ୍ର ଆସୁ – ଏବଂ ତାଙ୍କର ବିଛଣା ପାଖରେ ବସିରହି ମୁଁ ମୋର ସବୁ ଖାଲି ସମୟ କଟାଉଛି।"

ହାର୍ଡିଙ୍କ ଇଛାକୁ ସମ୍ମାନ ଦେଇ ମୃତ୍ୟୁ ଶୀଘ୍ର ଆସିଲା। ତାହା ଘଟିଲା 1947 ମସିହା ଡିସେମ୍ବର 1 ତାରିଖ ଦିନ, ଯେଉଁଦିନ ତାଙ୍କୁ କୋପ୍ଲି ପଦକ ଦିଆଯିବାର ଥିଲା। ଭଉଣୀଙ୍କ ପାଇଁ ସବୁ ବ୍ୟବସ୍ଥା କରିବା ପରେ ତାଙ୍କର ବେଶ୍ ପରିମାଣର ସଞ୍ଚୟ ଏବଂ ପୁସ୍ତକ ସ୍ୱତ୍ତ୍ୱ ପାଇଁ ପ୍ରାପ୍ୟ ସବୁ ସେ ଲଣ୍ଡନ ମାଥେମାଟିକାଲ ସୋସାଇଟିକୁ ଦାନ କରିଥିଲେ। ନର୍ବର୍ଟ ୱାଇନର୍‌ଙ୍କ ଭାଷାରେ, "ତାଙ୍କର ତିରୋଧାନ ଏକ ମହାନ ଯୁଗର ସମାପ୍ତି ଭଳି ଧାରଣା ଦେଉଛି।"

1939 ମସିହାର ହୃଦଘାତ ପରେ ହାର୍ଡିଙ୍କର ଶାରୀରିକ ଓ ମାନସିକ ଅବକ୍ଷୟ ବଢ଼ିଚାଲିଲା ଏବଂ ତା'ର ଶେଷ ପରିଣତି ଥିଲା ତାଙ୍କର ଆତ୍ମହତ୍ୟା ଉଦ୍ୟମ। ଏହି ସମୟରେ, ଫ୍ରାନ୍‌ସ୍ ନାଜି ଅଧୀନକୁ ଆସିବାର ପ୍ରାୟ ମାସେ ପରେ, ସେ ତାଙ୍କର ଏ *ମାଥେମାଟିସିଆନ୍‌ସ୍ ଆପୋଲୋଜି* (ଗଣିତଜ୍ଞର ଆତ୍ମଚିନ୍ତନ) ବହିକୁ ଚୂଡ଼ାନ୍ତ ରୂପ ଦେଲେ। ଗଣିତର ପ୍ରଶଂସାରେ ତାହା ଲେଖାଯାଇଥିଲା। ସ୍ନୋ'ଙ୍କ ଭାଷାରେ ସେହି ବହିଟି ଥିଲା "ଦୁଃଖଭରା ସ୍ମୃତିର କାହାଣୀ"। ତାହା ଥିଲା ସୃଜନଶୀଳତାର ଶୀର୍ଷରୁ ଖସିଆସିଥିବା ଏବଂ ସେହି କଥା ନିଜେ ଜାଣୁଥିବା ଜଣେ ବ୍ୟକ୍ତିଙ୍କର ରଚନା। ତା ବିଷୟରେ ହାର୍ଡି ଲେଖିଥିଲେ, "ଜଣେ ପେଷାଦାର ଗଣିତଜ୍ଞଙ୍କ ପାଇଁ ଗଣିତ ବିଷୟରେ ଲେଖିବା କାମ ଦୁଃଖଦ ଅନୁଭୂତି ଦିଏ।" ଗଣିତଜ୍ଞଙ୍କ ସମେତ ସବୁ ସୃଜନଶୀଳ ବ୍ୟକ୍ତିଙ୍କ କ୍ଷେତ୍ରରେ ଏହା ସତ ମନେହୁଏ। ହାର୍ଡିଙ୍କ କ୍ଷେତ୍ରରେ ଦୁଃଖର କାରଣ ଥିଲା ଯେ ସେ ଗଣିତ କରିବା ବଦଳରେ ଗଣିତ ବିଷୟରେ ଲେଖୁଥିଲେ। କେବଳ ତାହା ହିଁ କରିବା ପାଇଁ ସେ ସକ୍ଷମ ଥିଲେ।

ତାଙ୍କର ଦୁଃଖର କାରଣ ଥିଲା ଯେ ତାଙ୍କର ମୂଲ୍ୟବାନ ଓ ପୂର୍ଣ୍ଣାଙ୍ଗ ଜୀବନ ଏବେ ସରିବାକୁ ଯାଉଛି। ଜୀବନକୁ ଅବାଟରେ କଟାଇ ନଷ୍ଟ କରିଥିବାର ତିକ୍ତତା ଅନୁଭବ କରିବା ପାଇଁ ତାଙ୍କର

କୌଣସି ବି କାରଣ ନ ଥିଲା। ଗର୍ବ, ଆନନ୍ଦ ଓ ଗଭୀର ଆତ୍ମସନ୍ତୋଷ ରୂପରେ ତାଙ୍କର ମନୋଭାବ ଆତ୍ମଚିନ୍ତନ ବହିରେ ପ୍ରତିଫଳିତ ହେଉଥିଲା:

> ଯେତେବେଳେ ମୋ ମନରେ ବିଷାଦ ଆସେ ବା ଯେବେ ମୁଁ ବିରକ୍ତିକର ଓ ବୃଥା ଆସ୍ଫାଳନକାରୀଙ୍କ କଥା ଶୁଣିବାକୁ ବାଧ୍ୟ ହୁଏ, ମୁଁ ମନେ ମନେ କହେ, "ମୁଁ ଅନ୍ତତଃ ଗୋଟିଏ କଥା କରିଛି ଯାହା ତମେ କେବେ ବି କରିପାରି ନ ଥା'ନ୍ତ, ତାହା ହେଉଛି ଲିଟଲ୍‌ଉଡ୍ ଓ ରାମାନୁଜନ୍‌ଙ୍କ ସହିତ ପ୍ରାୟ ସମସ୍କନ୍ଧ ଭାବରେ ମୁଁ ସହଯୋଗ କରିଥିବା କଥା।"

କୋଡ଼ିଏ ବର୍ଷ ପରେ ପୁଣି ରାମାନୁଜନ୍‌ଙ୍କ ଚିନ୍ତା! ରାମାନୁଜନ୍ ସବୁଦିନ ପାଇଁ ଏକ ଉଜ୍ଜ୍ୱଳ ଶିଖା ରୂପରେ ତାଙ୍କ ସ୍ମୃତିର ଅଂଶ ହୋଇ ରହିଥିଲେ। ମ୍ୟାରି କାର୍ଟରାଇଟ୍ 1920 ଦଶକରେ ହାର୍ଡିଙ୍କର ଛାତ୍ରୀ ଥିଲେ ଏବଂ ହାର୍ଡି ତାଙ୍କୁ ଇଂଲଣ୍ଡର ଶ୍ରେଷ୍ଠ ମହିଳା ଗଣିତଜ୍ଞ ଭାବରେ ବର୍ଣ୍ଣନା କରିଥିଲେ। ସେ କହିଥିଲେ, "ଯେଉଁ କଥା ହାର୍ଡିଙ୍କୁ ବିଶେଷ ଆଲୋଡ଼ିତ କରୁଥିଲା ସେ ବିଷୟରେ ସେ ପ୍ରାୟ କିଛି କହୁ ନ ଥିଲେ।" କିନ୍ତୁ ଲେଖିଲାବେଳେ ସେ ଅଧିକ ମୁକ୍ତ ଅନୁଭବ କରୁଥିଲେ। ତାଙ୍କର ଏକ ଲେଖାରେ ସେ ନିଜ ଉପରେ ରାମାନୁଜନ୍‌ଙ୍କ ପ୍ରଭାବ ବିଷୟରେ ଲେଖିଥିଲେ, "କେବଳ ଜଣଙ୍କୁ ଛାଡ଼ିଦେଲେ (ଲିଟଲ୍‌ଉଡ୍?) ସାରା ପୃଥିବୀର ଅନ୍ୟ କାହା ତୁଳନାରେ ମୁଁ ତାଙ୍କ ପାଖରେ ସବୁଠାରୁ ବେଶି ଋଣୀ ଏବଂ ତାଙ୍କ ସହିତ ମୋର ସମ୍ପର୍କ ମୋ ଜୀବନର ଏକ ରୋମାଣ୍ଟିକ ଘଟଣା ଥିଲା।"

ରାମାନୁଜନ୍‌ଙ୍କ ମୃତ୍ୟୁ ପରେ କେତେ ବର୍ଷ ଧରି ହାର୍ଡି ରାମାନୁଜନ୍‌ଙ୍କ ଖାତା ଓ କାଗଜ ସବୁକୁ ଦେଖିବାରେ ଲାଗିଲେ। ତାହା କିଛି ସହଜ ବା ଶୀଘ୍ର କରିହେବା ଭଳି କାମ ନଥିଲା, କାରଣ ତାଙ୍କ ଭାଷାରେ, "ତାଙ୍କର ସବୁ କାମର ସମ୍ପାଦନା ସାବଧାନତା ସହକାରେ କରିବା ଦରକାର।" ତଥାପି 1921 ମସିହା ବେଳକୁ ସେ ରାମାନୁଜନ୍‌ଙ୍କ ଲେଖାରୁ ଯଥେଷ୍ଟ ତଥ୍ୟ ଉଦ୍ଧାର କରି ବିଭାଜନର ସର୍ବସମତା ଗୁଣଧର୍ମ ବିଷୟରେ ଏକ ନିବନ୍ଧ ଲେଖିବାକୁ ଆରମ୍ଭ କଲେ। ସେହି ବିଷୟରେ ରାମାନୁଜନ୍‌ଙ୍କର ବିଖ୍ୟାତ ନିବନ୍ଧ ଆଗରୁ ପ୍ରକାଶିତ ହୋଇଥିଲା ଏବଂ ନୂଆ ନିବନ୍ଧଟି ତା'ର ଉତ୍ତରାର୍ଦ୍ଧର ରୂପ ନେଉଥିଲା। ସେ ବିଷୟରେ ହାର୍ଡି ଲେଖିଥିଲେ, "ନିବନ୍ଧଟି ଅତି ମାତ୍ରାରେ ଅସମ୍ପୂର୍ଣ୍ଣ ଏବଂ ପୂର୍ଣ୍ଣାଙ୍ଗ ରୂପରେ ପ୍ରକାଶିତ ହେବା ପାଇଁ ସାବଧାନତା ସହକାରେ ତା'ର ସମ୍ପାଦନା କରିବାକୁ ହେବ। ସେଥିରୁ ମୁଁ ତିନିଟି ସରଳତମ କିନ୍ତୁ ଅତି ଚମତ୍କାର ଉଦାହରଣ ଦେଉଛି। ତାହା ହେଉଛି ଜଣେ ଅତି ଅସାଧାରଣ ଗଣିତଜ୍ଞଙ୍କର କାମର ଛୋଟ କିନ୍ତୁ ସ୍ୱଭାବସିଦ୍ଧ ଉଦାହରଣ।"

ଏହି ସମୟରେ ପ୍ରକାଶିତ ହାର୍ଡିଙ୍କ ନିଜର ନିବନ୍ଧଗୁଡ଼ିକରେ ମଧ୍ୟ ରାମାନୁଜନ୍‌ଙ୍କ ନାଁ ଅନେକ ଜାଗାରେ ଦେଖିବାକୁ ମିଳୁଥିଲା। ଲିଟଲ୍‌ଉଡ୍ ଓ ରାମାନୁଜନ୍‌ଙ୍କ ସହିତ କାମ କରିବାର ସୁଯୋଗ ପାଇଁ ହାର୍ଡି କୃତଜ୍ଞତା ଜଣାଇ ଲେଖିଥିଲେ, "ମୋର ଶ୍ରେଷ୍ଠ କାମଗୁଡ଼ିକ ସେ ଦୁହିଁଙ୍କ କାମ ସହିତ ଛନ୍ଦି ହୋଇରହିଛି। ଏହା ସ୍ପଷ୍ଟ ଯେ ସେମାନଙ୍କ ସହିତ ମୋର ସଂଯୁକ୍ତି ମୋ ଜୀବନ ପାଇଁ ନିର୍ଣ୍ଣାୟକ ଘଟଣା ଥିଲା।"

ରାମାନୁଜନ୍‌ଙ୍କୁ ଭେଟିଲା ବେଳେ ହାର୍ଡିଙ୍କୁ ମାତ୍ର ସଇଁତିରିଶ ବର୍ଷ ବୟସ ହୋଇଥିଲା। ସେତେବେଳକୁ ସେ ଏଫ୍.ଆର୍.ଏସ୍. ହୋଇସାରିଥିଲେ ଏବଂ ଲିଟଲ୍‌ଉଡ୍‌ଙ୍କ ସହିତ ତାଙ୍କର

ସହଯୋଗ ଆରମ୍ଭ ହେଉଥିଲା। ଏହା ପୂର୍ବରୁ ସେ କରିଥିବା କାମ ଅନ୍ୟମାନଙ୍କ ଆଖିରେ ଅତି ଉଚ୍ଚମାନର ଥିଲା, କିନ୍ତୁ ତାଙ୍କ ନିଜ ମତରେ ତାହା ଉଲ୍ଲେଖନୀୟ ନ ଥିଲା।

ଏହି ସମୟରେ ଅକସ୍ମାତ ତାଙ୍କ ଜୀବନରେ ରାମାନୁଜନ୍‌ଙ୍କ ଆବିର୍ଭାବ ଘଟିଲା।

ଆଉ କିଛି ନ ହେଲେ ବି ହାର୍ଡିଙ୍କ ପାଇଁ ଅତି ଘୃଣ୍ୟ ଟ୍ରାଇପସ୍ ବ୍ୟବସ୍ଥା ପ୍ରତି ରାମାନୁଜନ୍ ଏକ ଜୀବନ୍ତ ତିରସ୍କାର ଥିଲେ। ରାମାନୁଜନ୍‌ଙ୍କର ଜନ୍ମଗତ ବିଚକ୍ଷଣତା ଏବଂ ସିଲଟ ଉପରେ ଘଣ୍ଟା ଘଣ୍ଟାର ପରିଶ୍ରମ ତାଙ୍କର ଶିକ୍ଷାର ଅଭାବକୁ ପ୍ରାୟ ଭରଣା କରିଦେଇଥିଲା। ଏବଂ ଗଣିତ ପ୍ରତି ସେ ଏତେ ଅନୁରକ୍ତ ଥିଲେ ଯେ କଲେଜ ଡିଗ୍ରୀ ପାଇଁ ଦରକାର ହେଉଥିବା ଅନ୍ୟ ବିଷୟ ସବୁ ପଢ଼ିବାକୁ ଚାହୁଁ ନ ଥିଲେ। ହାର୍ଡି କହୁଥିଲେ ଯେ "ସେହି ଅଭାଗା ଓ ଏକଲା ହିନ୍ଦୁ ୟୁରୋପର ମିଳିତ ଜ୍ଞାନଭଣ୍ଡାରର ମୁକାବିଲା କରି" ଶହେବର୍ଷର ଗଣିତକୁ ପୁନଃଆବିଷ୍କାର କରିଥିଲେ ଏବଂ ଆଗାମୀ ଶହେବର୍ଷ ଧରି ଗଣିତଜ୍ଞମାନଙ୍କୁ ମୋହିତ କରିରଖିବା ଭଳି ନୂଆ ଆବିଷ୍କାରମାନ କରିଥିଲେ। ଏ ସବୁ କାମ ପାଇଁ ତାଙ୍କର କେହି ଟ୍ରାଇପସ୍ କୋଚ୍ ଦରକାର ପଡ଼ି ନ ଥିଲେ।

ଏଭଳି ଲୋକ ପ୍ରତି ହାର୍ଡି ବିମୋହିତ ହୋଇପଡ଼ିବା ସ୍ୱାଭାବିକ ଥିଲା।

ସେହି ସମୟରୁ ଆରମ୍ଭ କରି ପରବର୍ତ୍ତୀ ପଞ୍ଚତିରିଶ ବର୍ଷ ଧରି ରାମାନୁଜନ୍‌ଙ୍କ ପୃଷ୍ଠପୋଷକତା କରିବା ପାଇଁ ଓ ତାଙ୍କର ଗଣିତ କୃତିକୁ ଆଗେଇ ନେବା ପାଇଁ ସେ ସାଧ୍ୟମତେ ଚେଷ୍ଟା କରିଥିଲେ। ରାମାନୁଜନ୍‌ଙ୍କୁ ସେ ଉତ୍ସାହିତ କଲେ, ତାଙ୍କର ବିଚକ୍ଷଣତାକୁ ସ୍ୱୀକାର କଲେ। ରାମାନୁଜନ୍‌ଙ୍କୁ ସେ ଇଂଲଣ୍ଡକୁ ଆଣିଲେ, ଆଧୁନିକ ବିଶ୍ଳେଷଣ ବିଷୟରେ ତାଲିମ ଦେଲେ। ଏବଂ ରାମାନୁଜନ୍‌ଙ୍କ ଜୀବନକାଳ ଭିତରେ ଓ ମୃତ୍ୟୁ ପରେ ହାର୍ଡି ତାଙ୍କର ବଳିଷ୍ଠ ଲେଖକୀୟ ଦକ୍ଷତାକୁ ରାମାନୁଜନ୍‌ଙ୍କ ସେବାରେ ଲଗାଇଥିଲେ।

ହାର୍ଡିଙ୍କ ରଚନା ଶୈଳୀ ଉଚ୍ଚ ପ୍ରଶଂସିତ ଥିଲା। ଗଣିତ ବିଷୟରେ ତାଙ୍କର ବିଭିନ୍ନ ଲେଖା ଓ ରାମାନୁଜନ୍‌ଙ୍କ ମୃତ୍ୟୁ ସମ୍ବାଦ ବିଶେଷ ଭାବରେ ଆଦୃତ ହୋଇଥିଲା। ହାର୍ଡିଙ୍କ ଲେଖା ପାଠକର ମନରେ ରାମାନୁଜନ୍‌ଙ୍କ ବିଷୟରେ ଅନେକ କଳ୍ପନା ସୃଷ୍ଟି କଲା ଏବଂ ତାଙ୍କ ପ୍ରତି ଗଣିତଜ୍ଞମାନଙ୍କ ମନର ଦ୍ୱାର ଖୋଲିଦେଲା।

ଏହାର ଆରମ୍ଭ ଥିଲା 1916 ମସିହାରେ। ରାମାନୁଜନ୍‌ଙ୍କ କାମର ଯେଉଁ ବିବରଣୀ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟକୁ ହାର୍ଡି ପଠାଇଥିଲେ ତାକୁ ପ୍ରକାଶ କରିବା ପାଇଁ ସମସ୍ତେ ଚାହିଁଲେ। ହାର୍ଡି ସେଥିରେ ରାମାନୁଜନ୍‌ଙ୍କ "ବିଭିନ୍ନ ବିଚିତ୍ର ଓ ଆଗ୍ରହଜନକ ସୂତ୍ର" ବିଷୟରେ ଏବଂ ତାଙ୍କର "ଅନ୍ୟ ଯେ କୌଣସି ଜୀବିତ ଗଣିତଜ୍ଞଙ୍କ ସମକକ୍ଷ ହେଲାଭଳି ସ୍ୱତନ୍ତ୍ର ଧରଣର ଅସାଧାରଣ ଗାଣିତିକ ଶକ୍ତି" ବିଷୟରେ ଲେଖିଥିଲେ। ଆହୁରି ମଧ୍ୟ ସେ ଲେଖିଥିଲେ, "ରାମାନୁଜନ୍‌ଙ୍କ ଗାଣିତିକ ପ୍ରତିଭା ପାରମ୍ପରିକ ୟୁରୋପୀୟ ଧାରାରେ ଶିକ୍ଷା ପାଇଥିବା ଗଣିତଜ୍ଞମାନଙ୍କର ପ୍ରତିଭା ତୁଳନାରେ ବେଶ୍ ଅଲଗା ପ୍ରକାରର", ତାଙ୍କ କାମରେ ତାଙ୍କର "ବିସ୍ମୟକର ଅନନ୍ୟତା ଓ ଶକ୍ତି" ଦେଖାଯାଉଥିଲା, ରାମାନୁଜନ୍‌ଙ୍କ ରୂପରେ "ଭାରତ ଏବେ ଉଚ୍ଚତମ ବର୍ଗର ଜଣେ ଶୁଦ୍ଧ ଗଣିତଜ୍ଞଙ୍କୁ ପାଇଛି"।

ଗାଣିତିକ ପତ୍ରିକାରେ ସାଧାରଣତଃ ନିରସ ଓ ଶୁଖିଲା ଭାଷା ଦେଖିବାକୁ ମିଳିଥାଏ। ତେଣୁ ହାର୍ଡିଙ୍କର ଏହିଭଳି ଲେଖା ସବୁ ପ୍ରକାରର ଗଣିତଜ୍ଞଙ୍କ ଧ୍ୟାନ ଆକର୍ଷଣ କରିବା ସ୍ୱାଭାବିକ ଥିଲା।

କେହି ଜଣେ ଥରେ କହିଥିଲେ ଯେ ହାର୍ଡି ଜଣେ ଚମତ୍କାର ବିଜ୍ଞାପନ ଲେଖାଳି ବା ଲୋକସମ୍ପର୍କ ଅଧିକାରୀ ହୋଇପାରିଥା'ନ୍ତେ।

ହାର୍ଡି ଲେଖିଥିବା ରାମାନୁଜନ୍ଙ୍କ ମୃତ୍ୟୁ ସୂଚକ ନିବନ୍ଧ ବେଶ୍ ଲମ୍ବା ଥିଲା ଏବଂ 1921 ମସିହାରେ ପ୍ରଥମେ ପ୍ରୋସିଡିଙ୍ଗ୍ସ୍ ଅଫ୍ ଲଣ୍ଡନ ମାଥେମାଟିକାଲ୍ ସୋସାଇଟିରେ ପ୍ରକାଶ ପାଇଥିଲା। କିଛିଦିନ ପରେ ତାହା ପ୍ରୋସିଡିଙ୍ଗ୍ସ୍ ଅଫ୍ ଦି ରୟାଲ୍ ସୋସାଇଟିରେ ଏବଂ 1927 ମସିହାରେ ରାମାନୁଜନ୍ଙ୍କ ନିବନ୍ଧ ସଂକଳନରେ ପୁନଃମୁଦ୍ରିତ ହୋଇଥିଲା। ସେଥିରେ ହାର୍ଡି ରାମାନୁଜନ୍ଙ୍କ କାହାଣୀ କହିଥିଲେ। ତାହା ଆବେଗମୟ ହୋଇଥିଲା ଓ ତା'ର ଭାଷା ମନରେ ଲାଖି ରହୁଥିଲା। ତାଙ୍କର ଉପସଂହାର ଥିଲା:

> ରାମାନୁଜନ୍ଙ୍କ କାମର ଗୋଟିଏ ଗୁଣ ରହିଛି ଯାହାକୁ କେହି ଅସ୍ୱୀକାର କରିପାରିବେନାହିଁ – ତା'ର ଗଭୀର ଓ ଅଖଣ୍ଡନୀୟ ମୌଳିକତା। ଯୁବାବସ୍ଥାରେ ଆବିଷ୍କୃତ ହୋଇ କିଛି ମାତ୍ରାରେ ଶୃଙ୍ଖଳିତ କରାଯାଇପାରିଥିଲେ ସେ ହୁଏତ ଆହୁରି ବଡ଼ ଗଣିତଜ୍ଞ ହୋଇପାରିଥା'ନ୍ତେ। ସେ ଅଧିକ ନୂଆ କଥା ଆବିଷ୍କାର କରିଥା'ନ୍ତେ ଯାହା ନିଶ୍ଚିତ ଭାବରେ ବେଶି ଗୁରୁତ୍ୱପୂର୍ଣ୍ଣ ହୋଇଥା'ନ୍ତା। ଅପର ପକ୍ଷରେ ତାଙ୍କର 'ରାମାନୁଜନତ୍ୱ' କମିଯାଇଥା'ନ୍ତା ଏବଂ ସେ ବେଶି ମାତ୍ରାରେ ଜଣେ ୟୁରୋପୀୟ ଅଧ୍ୟାପକ ହୋଇଥା'ନ୍ତେ। ସେଥିରେ ବୋଧହୁଏ ଲାଭ ଅପେକ୍ଷା ବେଶି କ୍ଷତି ହୋଇଥା'ନ୍ତା।

ହାର୍ଡିଙ୍କୁ 1931 ମସିହାରେ ପ୍ରଥମ ଥର ପାଇଁ ଭେଟିଥିବା ସ୍ନୋ କହିଥିଲେ ଯେ ହାର୍ଡି ସାଧାରଣ ଭାବରେ ଚୁପଚାପ ସ୍ୱଭାବର ଥିଲେ, କିନ୍ତୁ ରାମାନୁଜନ୍ଙ୍କୁ ଆବିଷ୍କାର କରିଥିବା ବିଷୟରେ ସେ ଚୁପ ରହୁ ନ ଥିଲେ। ମ୍ୟାରି କାର୍ଟରାଇଟ୍ କହୁଥିଲେ ଯେ ରାମାନୁଜନ୍ଙ୍କୁ ଆବିଷ୍କାର କରିଥିବା ବିଷୟରେ ହାର୍ଡି ଖୁବ୍ ଗର୍ବିତ ଥିଲେ। ରାମାନୁଜନ୍ ହାର୍ଡିଙ୍କ ଜୀବନକୁ ସମୃଦ୍ଧ କରିଥିଲେ, ତେଣୁ ରାମାନୁଜନ୍ଙ୍କୁ ଭୁଲିବାକୁ ଚାହୁଁ ନ ଥିଲେ।

1936 ମସିହାରେ ହାର୍ଡି ଏସ୍. ଚନ୍ଦ୍ରଶେଖରଙ୍କ ପାଖକୁ ଲେଖିଥିଲେ ଯେ କେମ୍ବ୍ରିଜରେ ଓ ହାର୍ଭାର୍ଡଠାରେ ସେ ରାମାନୁଜନ୍ଙ୍କ ଉପରେ କିଛି ଭାଷଣ ଦେବାକୁ ଯାଉଛନ୍ତି। ପର ସମୟରେ ସେହି ଭାଷଣକୁ ଆଧାର କରି *ରାମାନୁଜନ୍: ଟ୍ୱେଲ୍ଭ୍ ଲେକ୍ଚର୍ସ ଅନ୍ ସବ୍‌ଜେକ୍ଟସ୍ ସଜେଷ୍ଟେଡ୍ ବାଇ ହିଜ୍ ଲାଇଫ୍ ଆଣ୍ଡ ୱାର୍କ* (ରାମାନୁଜନ୍ଙ୍କ ଜୀବନ ଓ କାମରୁ ଧାରଣା ମିଳୁଥିବା ବିଷୟଗୁଡ଼ିକ ଉପରେ ବାରଟି ଭାଷଣ) ବହି ଲେଖିଥିଲେ। ଜଣେ ସମୀକ୍ଷକ ସେହି ବହିକୁ ହାର୍ଡିଙ୍କର ପ୍ରେମାର୍ଘ୍ୟ ଭାବରେ ବର୍ଣ୍ଣନା କରିଥିଲେ।

ସେହି ଭାଷଣଗୁଡ଼ିକ ହାର୍ଭାର୍ଡ ବିଶ୍ୱବିଦ୍ୟାଳୟର ତିନିଶହ ବର୍ଷ ପୂର୍ତ୍ତି ସମାରୋହ ଅବସରରେ ଦିଆଯାଇଥିଲା। ସେଥିପାଇଁ ଆୟୋଜିତ ବର୍ଣ୍ଣାଢ୍ୟ ଉତ୍ସବରେ ପୃଥିବୀର ବାଷଠି ଜଣ ବିଶିଷ୍ଟ ବୁଦ୍ଧିଜୀବୀଙ୍କୁ ସମ୍ମାନିତ କରାଯାଇଥିଲା। ସେମାନଙ୍କ ଭିତରୁ ହାର୍ଡି ଜଣେ ଥିଲେ। ତାଙ୍କର ପରିଚୟ ବିଷୟରେ ସୂଚନା ଥିଲା, "ଜଣେ ଇଂରେଜ ଗଣିତଜ୍ଞ ଯିଏ ଗଣିତର ବିକାଶକୁ ଏଭଳି ଏକ ଉଚ୍ଚ ସ୍ତରରେ ପହଞ୍ଚାଇ ପାରିଥିଲେ ଯାହାକୁ ତାଙ୍କ ପୂର୍ବ ପିଢ଼ିର ବ୍ୟକ୍ତିମାନେ ଅପହଞ୍ଚ ମନେ କରୁଥିଲେ।"

ହାର୍ଭାର୍ଡ ସମାରୋହର ପ୍ରଥମ ସନ୍ଧ୍ୟାରେ ହାର୍ଡିଙ୍କର ଭାଷଣ ସମୟ ଥିଲା। ଏବେ ତାଙ୍କ ବୟସ

ପ୍ରାୟ ଷାଠିଏ ବର୍ଷ, ମୁଣ୍ଡବାଳ ପାଚିଯାଇଥିଲା ଏବଂ ଚେହେରାରେ ବିଜ୍ଞତାର ଛାପ ଫୁଟୁଥିଲା। ତାଙ୍କର ସ୍ୱଭାବଗତ ମାର୍ଜିତ ଭାଷା ଓ ସ୍ୱରରେ ସେ ଆରମ୍ଭ କଲେ:

> ଏହି ଭାଷଣଗୁଡ଼ିକରେ ମୁଁ ମୋ ନିଜ ପାଇଁ ଅତି କଷ୍ଟକର ଲକ୍ଷ୍ୟ ଧାର୍ଯ୍ୟ କରିଛି। ସେଥିରେ ବିଫଳତା ପାଇଁ ମୁଁ ଯଦି ସଫେଇ ଦେବାକୁ ଆରମ୍ଭ କରିବି ତେବେ ସେହି ଭାଷଣ କେବେ ସମ୍ଭବ ହେବନାହିଁ। ଗଣିତର ସାମ୍ପ୍ରତିକ ଇତିହାସରେ ଦେଖାଦେଇଥିବା ସବୁଠାରୁ ଅଧିକ ରୋମାଣ୍ଟିକ ବ୍ୟକ୍ତିଙ୍କ ବିଷୟରେ ଏକ ଯୁକ୍ତିଯୁକ୍ତ ଧାରଣା ମୋ ନିଜ ମନରେ ସୃଷ୍ଟି କରିବା ପାଇଁ ଏବଂ ଆପଣମାନଙ୍କ ମନରେ ସୃଷ୍ଟି କରିବା ଦିଗରେ ସାହାଯ୍ୟ କରିବା ପାଇଁ ମୁଁ ଚେଷ୍ଟା କରିବି। ମୋ ନିଜ ମନରେ ଏହି ଧାରଣାକୁ ରୂପ ଦେବା ପାଇଁ ମୁଁ ଆଗରୁ ଚେଷ୍ଟା କରିନାହିଁ। ସେହି ବ୍ୟକ୍ତିଙ୍କ ଜୀବନରେ ବିରୋଧାଭାସ ଓ ଦ୍ୱନ୍ଦ୍ୱ ଭରିରହିଛି, ଯାହାର ମୂଲ୍ୟାୟନ କରିବାରେ ଆମକୁ ଜଣାଥିବା ପ୍ରାୟ ସବୁ ଧାରା ବିଫଳ, ଏବଂ ଯାହା ବିଷୟରେ ଗୋଟିଏ କଥାରେ ଆମେ ସମସ୍ତେ ବୋଧହୁଏ ଏକମତ ହେବା - କେତେ ଦିଗରୁ ସେ ଏକ ଅତି ମହାନ ଗଣିତଜ୍ଞ ଥିଲେ।

ଏହି ଉପକ୍ରମ ସହିତ ହାର୍ଡି ରାମାନୁଜନ୍‌ଙ୍କ କାହାଣୀ କହିଚାଲିଲେ। ସେତେବେଳେ ତାଙ୍କ ଆଖି ଆଗରେ ଭାସିଯାଉଥିଲା ସେହି ମୁହୂର୍ତ୍ତର ଦୃଶ୍ୟ - ଯେତେବେଳେ ସୂତ୍ର ପରେ ସୂତ୍ର ଭରିଥିବା ଲଫାପାଟି ଭାରତରୁ ଆସି ପହଞ୍ଚିଥିଲା।

# ଟୀକା ଓ ଗ୍ରନ୍ଥସୂଚୀ

ମୂଳ ଇଂରାଜୀ ବହିରେ ବିଭିନ୍ନ ତଥ୍ୟ, ଉକ୍ତି ଓ ବର୍ଣ୍ଣନାର ସମର୍ଥନରେ ବ୍ୟାପକ ଟୀକା ରହିଛି। ସେଥିରୁ ଅନେକର ଆଧାର ହେଉଛି ଲେଖକଙ୍କର ବ୍ୟକ୍ତିଗତ କଥୋପକଥନ ବା ପତ୍ରାଳାପର ଫଳ। ଆହୁରି ଅନେକ ଆସିଛି ଅପ୍ରକାଶିତ ଦଲିଲ ଓ ଚିଠିପତ୍ରରୁ। ସାଧାରଣ ପାଠକଙ୍କ ପାଇଁ ସେସବୁ ପାଇବା ସମ୍ଭବ ନୁହେଁ। ରଚନାର ସ୍ୱାଦ ପାଇବା ପାଇଁ ଏବଂ ମୂଳ ବିଷୟବସ୍ତୁକୁ ବୁଝିବା ପାଇଁ ସେଗୁଡ଼ିକ ଜରୁରୀ ମଧ୍ୟ ନୁହେଁ। ତେଣୁ ସେଗୁଡ଼ିକ ଏଠାରେ ଦିଆଯାଇନାହିଁ। ଆଗ୍ରହୀ ପାଠକମାନେ ଇଂରାଜୀ ବହିରୁ ସେସବୁ ସହଜରେ ପାଇପାରିବେ।

ଲେଖକଙ୍କର ଗ୍ରନ୍ଥସୂଚୀ ମଧ୍ୟ ବ୍ୟାପକ। ସେଥିରୁ ଅଧିକାଂଶ ଦୁର୍ଲଭ ଏବଂ ସାଧାରଣ ପାଠକର ବ୍ୟବହାର ଉପଯୋଗୀ ନୁହେଁ। ଏଠାରେ ତେଣୁ ମୂଳ ଗ୍ରନ୍ଥସୂଚୀର ଏକ ନିର୍ବାଚିତ ଅଂଶ ଦିଆଯାଇଛି। ରାମାନୁଜନ୍‌ଙ୍କ ଜୀବନ ଓ ସାଧନା ବିଷୟରେ ଅଧିକ ଜଣାଉଥିବା ସାଧନଗୁଡ଼ିକୁ ଏଥିରେ ଅଗ୍ରାଧିକାର ଦିଆଯାଇଛି।


ଆଟ୍‌କିନ୍‌ସନ୍, ଟମାସ୍ ଡିନ୍‌ହାମ୍, *କେମ୍ବ୍ରିଜ୍ ଡେସ୍‌କ୍ରାଇବ୍‌ଡ୍ ଆଣ୍ଡ ଇଲସ୍‌ଟ୍ରେଟେଡ୍*, ଲଣ୍ଡନ: ମାକ୍‌ମିଲାନ୍, 1987।

ଆଣ୍ଡ୍ରିଉଜ୍, ଜର୍ଜ ଇ., "*ଆନ୍ ଇଣ୍ଟ୍ରୋଡକ୍ସନ୍ ଟୁ ରାମାନୁଜନ୍ସ୍ 'ଲଷ୍ଟ'ନୋଟ୍‌ବୁକ୍*", ଆମେରିକାନ୍ ମାଥେମାଟିକାଲ୍ ମନ୍ଥଲି, **86**, (1979): 89-108 ।

ଆଣ୍ଡ୍ରିଉଜ୍, ଜର୍ଜ ଇ., *ନମ୍ବର ଥିଓରି*. ଫିଲାଡେଲ୍‌ଫିଆ: ଡବ୍ଲିଉ. ବି. ସଣ୍ଡର୍ସ୍ କୋ., 1971।

ଆଣ୍ଡ୍ରିଉଜ୍, ଜର୍ଜ ଇ., ରିଚାର୍ଡ ଏ. ଆସ୍କି, ବ୍ରୁସ୍ ସି. ବର୍ଣ୍ଟ, କେ. ଜି. ରାମନାଥନ୍, ଓ ରବର୍ଟ ଏ. ରାନ୍‌କିନ୍, *ରାମାନୁଜନ୍ ରିଭିଜିଟେଡ୍*, ସାନ୍ ଡିଏଗୋ: ଏକାଡେମିକ୍ ପ୍ରେସ୍, 1988।

"ଆର୍. ଜି. କେ.", "*ଟୁ ଜିନିଅସ୍*', ଇଲଷ୍ଟ୍ରେଟେଡ୍ ୱିକ୍‌ଲି ଅଫ୍ ଇଣ୍ଡିଆ, 20 ଡିସେମ୍ବର, 1987, 26–30।

ଆସ୍କି, ରିଚାର୍ଡ ଏ., "*ରାମାନୁଜନ୍ ଆଣ୍ଡ ହାଇପର୍‌ଜୋମେଟ୍ରିକ୍ ଆଣ୍ଡ ବେସିକ୍ ହାଇପର୍‌ଜୋମେଟ୍ରିକ୍ ସିରିଜ୍*", ରାମାନୁଜନ୍ ଇଣ୍ଟର୍‌ନାସନାଲ୍ ସିମ୍ପୋଜିଅମ୍ ଇନ୍ ଆନାଲିସିସ୍, ସଂ. ଏନ୍. କେ. ଥାକରେ, ମାକ୍‌ମିଲାନ୍ ଇଣ୍ଡିଆ, 1989।

ଆସୋସିଏସନ୍ ଅଫ୍ ମାଥେମାଟିକ୍ସ୍ ଟିଚର୍ସ୍ ଅଫ ଇଣ୍ଡିଆ, *ରାମାନୁଜନ୍ ସେଣ୍ଟେନାରି ୟିଅର୍ ସୋଭେନିଅର୍*, ପ୍ରୋସିଡିଙ୍ଗ୍ସ୍ ଅଫ୍ ଟ୍ୱେଣ୍ଟିସେକେଣ୍ଡ ଆନୁଆଲ୍ କନ୍ଫରେନ୍ସ୍, 3-6 ଡିସେମ୍ବର 1987।

ଇଭ୍ସ୍, ହାୱାର୍ଡ, *ଆନ୍ ଇଣ୍ଟ୍ରୋଡକ୍ସନ୍ ଟୁ ଦି ହିଷ୍ଟ୍ରି ଅଫ୍ ମାଥେମାଟିକ୍ସ୍*, ଫୋର୍ଥ୍ ଏଡିସନ୍, ନିଉୟର୍କ: ହୋଲ୍ଟ୍, ରାଇନ୍‌ହାର୍ଟ ହୋଲ୍ଟ୍ ଆଣ୍ଡ ୱିନ୍‌ଷ୍ଟନ୍, 1976।

*ଇମ୍ପେରିଆଲ୍ ଗେଜେଟିଅର୍*, ମାଡ୍ରାସ୍ ପ୍ରେସିଡେନ୍ସି, 1908।

ଏଲିସ୍, ହାଭେଲକ୍, *ଏ ଷ୍ଟଡ଼ି ଅଫ୍ ବ୍ରିଟିସ୍ ଜିନିଅସ୍*, ଲଣ୍ଡନ: ହର୍ଷ୍ଟ ଆଣ୍ଡ ବ୍ଲାକେଟ୍, 1904।

କ୍ଲାର୍କ୍, ରୋନାଲ୍ଡ୍ ଡବ୍ଲିଉ., *ଦି ଲାଇଫ୍ ଅଫ୍ ବର୍ଟ୍ରାଣ୍ଡ ରସେଲ୍*, ନିଉୟର୍କ: ନଫ୍, 1976।

କଲିନ୍ସ୍, ରାଣ୍ଡାଲ୍, *ଦି କେସ୍ ଅଫ୍ ଦି ଫିଲୋସଫର୍ସ୍ ରିଙ୍ଗ ବାଇ ଡ. ଜନ୍ ଏଚ୍. ୱାଟ୍‌ସନ୍*, ନିଉୟର୍କ: କ୍ରାଉନ୍ ପବ୍ଲିସର୍ସ୍, 1978।

କିଚର୍, ଫିଲିପ୍, *ଦି ନେଚର୍ ଅଫ୍ ମାଥେମାଟିକାଲ୍ ନଲେଜ୍*, ନିଉୟର୍କ: ଅକ୍ସ୍‌ଫୋର୍ଡ ୟୁନିଭର୍ସିଟି ପ୍ରେସ୍, 1983।

ଗ୍ଲିକ୍, ଜେମ୍ସ୍, "*ଆନ୍ ଆଇସୋଲେଟେଡ୍ ଜିନିଅସ୍ ଇଜ୍ ଗିଭେନ୍ ହିଜ୍ ଡିଉ*", ନିଉୟର୍କ ଟାଇମ୍ସ୍, ଜୁଲାଇ 14, 1987, 17।

ଟର୍ଣ୍ଣବୁଲ୍, ଏଚ୍. ଡବ୍ଲିଉ., *ଦି ଗ୍ରେଟ୍ ମାଥେମାଟିସିଆନ୍ସ୍*, ଲଣ୍ଡନ: ମେଥୁଏନ୍ ଆଣ୍ଡ କୋ., 1929।

ଡିକନ୍, ରିଚାର୍ଡ, *ଦି କେମ୍ବ୍ରିଜ୍ ଆପୋଷ୍ଟୋଲ୍ସ୍*, ଲଣ୍ଡନ: ରବର୍ଟ ରଏସ୍ ଲି., 1985।

ଥମ୍ସନ୍, ଜେ. ଜେ., *ରିକଲେକ୍ସନ୍ସ୍ ଆଣ୍ଡ ରିଫ୍ଲେକ୍ସନ୍ସ୍*, ନିଉୟର୍କ: ମାକ୍‌ମିଲାନ୍, 1937।

ଥର୍ଷ୍ଟନ୍, ଏଡ୍‌ଗାର୍, *ଦି ମାଡ୍ରାସ ପ୍ରେସିଡେନ୍ସି*, କେମ୍ବ୍ରିଜ ୟୁନିଭର୍ସିଟି ପ୍ରେସ୍, 1914।

ନନ୍ଦି, ଆଶିଷ, *ଅଲ୍‌ଟର୍‌ନେଟିଭ୍ ସାଇନ୍‌ସେସ୍: କ୍ରିଏଟିଭିଟି ଆଣ୍ଡ ଅଥେଣ୍ଟିସିଟି ଇନ୍ ଟୁ ଇଣ୍ଡିଆନ୍ ସାଇଣ୍ଟିଷ୍ଟସ୍*, ନୂଆଦିଲ୍ଲୀ: ଆଲାଏଡ୍ ପବ୍ଲିସର୍ସ୍, 1980।

ନାଗରାଜନ୍, କେ. ଆର୍., ଆଣ୍ଡ ଟି. ସୁନ୍ଦରରାଜନ୍, ସଂ., *ଶ୍ରୀନିବାସ ରାମାନୁଜନ୍,* 1887–1920*: ଏ ଟ୍ରିବ୍ୟୁଟ୍*, ମାଡ୍ରାସ୍: ମାକ୍‌ମିଲାନ୍ ଇଣ୍ଡିଆ, 1988।

ନିଉମାନ୍, ଏମ୍. ଏଚ୍. ଏ., ଆଦି, "*ଗଡ୍‌ଫ୍ରି ହାର୍‌ଲ୍ଡ ହାର୍ଡି,* 1877–1947", ମାଥେମାଟିକାଲ୍ ଗେଜେଟ୍, **32** (1948), 49–51।

ନେଭିଲ୍, ଇ. ଏଚ୍., "*ଦି ଲେଟ୍ ଶ୍ରୀନିବାସ ରାମାନୁଜନ୍*", ନେଚର୍, **106**, ନଂ. 2673 (ଜାନୁଆରି 1921): 661–662।

ନେଭିଲ୍, ଇ. ଏଚ୍., "*ଶ୍ରୀନିବାସ ରାମାନୁଜନ୍*", ନେଚର୍, **149**, ନଂ. 3776 (ମାର୍ଚ୍ଚ 1942): 292–295।

ଫୁଲର୍, ବାମ୍ପ୍‌ଫିଲ୍ଡ, *ଦି ଏମ୍ପାୟାର୍ ଅଫ୍ ଇଣ୍ଡିଆ*, ଲଣ୍ଡନ: ସାର୍ ଆଇଜାକ୍ ପିଟ୍‌ମାନ୍ ଆଣ୍ଡ ସନ୍ସ୍, 1913।

ପୋଲ୍ୟା, ଜର୍ଜ, "*ସମ୍ ମାଥେମାଟିସିଆନ୍ସ୍ ଆଇ ହାଭ୍ ନୋନ୍*", ଆମେରିକାନ୍ ମାଥେମାଟିକାଲ୍ ମନ୍ଥଲି, 76 (1969), 746–753।

ବର୍କିଲ୍, ଜେ. ସି., "*ଜନ୍ ଏଡେନ୍ସର୍ ଲିଟଲ୍‌ଉଡ୍*", ବୁଲେଟିନ୍ ଅଫ୍ ଦି ଲଣ୍ଡନ ମାଥେମାଟିକାଲ୍ ସୋସାଇଟି, 11 (1979), 59–103।

ବର୍ଣ୍ଣ, ବ୍ରୁସ୍ ସି., "*ଏ ପିଲ୍‌ଗ୍ରିମେଜ୍*", ମାଥେମାଟିକାଲ୍ ଇଣ୍ଟେଲିଜେନ୍ସର୍ **8**, ନଂ.1 (1986), 25–30।

ବର୍ଣ୍ଣ, ବ୍ରୁସ୍ ସି., "*ରାମାନୁଜନ୍*–100 *ୟିଅର୍ସ ଓଲ୍ଡ୍ (ଫ୍ୟାସନ୍ଡ୍) ଅର୍* 100 *ୟିଅର୍ସ ନିଉ (ଫ୍ୟାଙ୍ଗଲ୍ଡ୍)?*", ମାଥେମାଟିକାଲ୍ ଇଣ୍ଟେଲିଜେନ୍ସର୍ **10**, ନଂ.3 (1988), 24–29।

ବର୍ଣ୍ଣ, ବ୍ରୁସ୍ ସି., *ରାମାନୁଜନ୍ସ ନୋଟ୍‌ବୁକ୍ସ*, 5 ପାର୍ଟସ୍, ନିଉୟର୍କ: ସ୍ପ୍ରିଙ୍ଗର୍-ଭର୍ଲାଗ୍, 1985–1998।

ବର୍ଣ୍ଣ, ବ୍ରୁସ୍ ସି.,"*କ୍ୱାର୍ଟଲି ରିପୋର୍ଟସ୍ ଅଫ୍ ଏସ୍. ରାମାନୁଜନ୍*", ଆମେରିକାନ୍ ମାଥେମାଟିକାଲ୍ ମନ୍ଥଲି **90**, ନଂ. 8 (ଅକ୍ଟୋବର 1983), 505–516।

ବାର୍‌ଲୋ, ଗ୍ଲିନ୍, *ଦି ଷ୍ଟୋରି ଅଫ୍ ମାଡ୍ରାସ୍*, ଲଣ୍ଡନ୍, ହମ୍ଫ୍ରି ମିଲ୍‌ପୋର୍ଡ, ଅକ୍ସଫୋର୍ଡ ୟୁନିଭର୍ସିଟି ପ୍ରେସ୍, 1921।

ବାର୍‌ହାମ୍, ଜେନ୍, *ବ୍ୟାକ୍‌ଷ୍ଟେଆର୍ସ କେମ୍ବ୍ରିଜ୍*, ହର୍ଟସ୍, ଇଂଲଣ୍ଡ: ଏଲିସନ୍ସ ଏଡିସନ୍।

ବାଲାକ୍ରିଷ୍ଣନ୍, ଆର୍., କେ. ଏସ୍. ପଦ୍ମନାଭନ୍, ଓ ଭି. ଥଙ୍ଗରାଜ, *ପ୍ରୋସିଡିଙ୍ଗସ୍ ଅଫ୍ ଦି ରାମାନୁଜନ୍ ସେଣ୍ଟେନିଆଲ୍ ଇଣ୍ଟର୍‌ନାସନାଲ କନ୍‌ଫରେନ୍ସ*, 15-18 ଡିସେମ୍ବର, 1987, ଆନାମାଲାଇ ୟୁନିଭର୍ସିଟି, ଆନାମାଲାଇନଗର, ରାମାନୁଜନ୍ ମାଥେମାଟିକାଲ୍ ସୋସାଇଟି, 1988।

ବାଲାସୁବ୍ରମନ୍ୟନ୍, ଏସ୍. ଆର୍., *ଦି ଲେଟର ଚୋଲା ଟେମ୍ପଲ୍ସ*, ମୁଗ୍‌ଦାଲା ଟ୍ରଷ୍ଟ, 1975।

ବେଟ୍‌ମାନ୍, ପି., ଓ ଏଚ୍. ଡାଏମଣ୍ଡ, "*ଜନ୍ ଇ. ଲିଟଲ୍‌ଉଡ୍* (1885-1977)" ମାଥେମାଟିକାଲ୍ ଇଣ୍ଟେଲିଜେନ୍ସର୍ 1 (1978), 28-33।

ବେଲ୍, ଇ. ଟି., *ମେନ୍ ଅଫ୍ ମାଥେମାଟିକ୍ସ*, ନିଉୟର୍କ: ସାଇମନ୍ ଆଣ୍ଡ ସୁଷ୍ଟର୍, 1986।

ବୋର୍‌ୱିନ୍, ଜନାଥନ୍ ଏମ୍., ଓ ପିଟର୍ ବି. ବୋର୍‌ୱିନ୍, "*ରାମାନୁଜନ୍ ଆଣ୍ଡ ପାଇ*", ସାଇଣ୍ଟିଫିକ୍ ଆମେରିକାନ୍, **258**, ନଂ. 2, (ଫେବୃଆରି 1988), 112–117।

ବୋଲୋବାସ୍, ବେଲା, "*ରାମାନୁଜନ୍–ଏ ଗ୍ଲିମ୍ପସ୍ ଅଫ୍ ହିଜ୍ ଲାଇଫ୍ ଆଣ୍ଡ ହିଜ୍ ମାଥେମାଟିକ୍ସ*", କେମ୍ବ୍ରିଜ୍ ରିଭିଉ, ଜୁନ୍ 1988, 76–80।

ବୋଲୋବାସ୍, ବେଲା, ସଂ. *ଲିଟଲ୍‌ଉଡ୍ସ ମିସେଲେନି*, କେମ୍ବ୍ରିଜ୍: କେମ୍ବ୍ରିଜ୍ ୟୁନିଭର୍ସିଟି ପ୍ରେସ୍, 1986।

ଭାନୁମୂର୍ତ୍ତି, କଲ୍ୟାଣଲକ୍ଷ୍ମୀ, "[*ରାମାନୁଜନ୍*] *ଦି ମ୍ୟାନ୍ ବିହାଇଣ୍ଡ ହିଜ୍ ମାଥେମାଟିକ୍ସ*", ଦି ହିନ୍ଦୁ, 20 ଡିସେମ୍ବର, 1987।

ଭାରତୀ, ରାମାନନ୍ଦ, *ପ୍ରଫେସର ଶ୍ରୀନିବାସ ରାମାନୁଜନ୍ କମ୍‌ମେମୋରେସନ୍ ଭଲ୍ୟୁମ୍*, ମାଡ୍ରାସ୍: ଜୁପିଟର୍ ପ୍ରେସ୍, 1974।

ଭେଙ୍କଟରମଣ, ଜି., 3 ପାର୍ଟ ସିରିଜ୍ ଅନ୍ ରାମାନୁଜନ୍, ଦି ହିନ୍ଦୁ: "*ୱାନ୍ସ ଇନ୍ ଏ ଫିଉ ସେଞ୍ଚୁରିଜ୍*", 20 ଡିସେମ୍ବର 1987; "*ଏ ଟର୍ଣ୍ଣିଙ୍ଗ ପଏଣ୍ଟ ଫର୍ ରାମାନୁଜନ୍*", 27 ଡିସେମ୍ବର 1987; "*ଦି ଲେଟର୍ ୟିଅର୍ସ ଅଫ୍ ରାମାନୁଜନ୍*" 5 ଜାନୁଆରି, 1988।

ମୁଥିଆ, ଏସ୍., *ମାଡ୍ରାସ୍ ଡିସ୍କଭର୍ଡ୍*, ନୂଆ ଦିଲ୍ଲୀ: ଆଫିଲିଏଟେଡ୍ ଇଷ୍ଟ-ୱେଷ୍ଟ ପ୍ରେସ୍, 1987।

ମୋର୍ଡେଲ୍, ଏଲ୍. ଜେ., "*ରାମାନୁଜନ୍*", ନେଚର୍, **148**, ନଂ.3761 (ନଭେମ୍ବର 1941), 642–647।

ୟଙ୍ଗ୍, ଲରେନ୍ସ୍, *ମାଥେମାଟିସିଆନ୍ସ୍ ଆଣ୍ଡ ଦେଆର୍ ଟାଇମ୍ସ୍,* ଆମ୍ଷ୍ଟରଡାମ୍: ନର୍ଥ-ହଲାଣ୍ଡ ପବ୍ଲିସିଙ୍ଗ୍ କୋ., 1981।

ରଙ୍ଗନାଥନ୍, ଏସ୍. ଆର୍., *ରାମାନୁଜନ୍: ଦି ମ୍ୟାନ୍ ଆଣ୍ଡ ଦି ମାଥେମାଟିସିଆନ୍,* ବମ୍ବେ: ଏସିଆ ପବ୍ଲିସିଙ୍ଗ ହାଉସ୍, 1967।

"ରାଗାମି" [ଛଦ୍ମ ନାମ], *ରାମାନୁଜନ୍, ଦି ମାଥେମାଟିକାଲ୍ ଜିନିଅସ୍* [ତାମିଲ], ଧାରାବାହିକ, ଦିନମଣି କାଦିର୍ (ସାପ୍ତାହିକ), 1985–1987।

ରାଜଗୋପାଲନ୍, କେ. ଆର୍., *ଶ୍ରୀନିବାସ ରାମାନୁଜନ୍,* ମାଡ୍ରାସ୍: ଶ୍ରୀ ଅରବିନ୍ଦ-ଭାରତୀ, 1988।

ରାନ୍‌କିନ୍, ଆର୍. ଏ.,"*ରାମାନୁଜନ୍ ଆଜ୍ ଏ ପେସେଣ୍ଟ*", ପ୍ରୋସିଡିଙ୍ଗ୍ସ୍ ଅଫ୍ ଦି ଇଣ୍ଡିଆନ୍ ଏକାଡେମି ଅଫ୍ ସାଇନ୍ସେସ୍ (ମାଥେମାଟିକାଲ୍ ସାଇନ୍ସେସ୍) **93**, ନଂ.2-3 (ଡିସେ. 1984), 79–90।

ରାନ୍‌କିନ୍, ଆର୍. ଏ.,"*ରାମାନୁଜନ୍ସ୍ ମାନୁସ୍କ୍ରିପ୍ଟସ୍ ଆଣ୍ଡ ନୋଟ୍‌ବୁକ୍ସ୍*", ବୁଲେଟିନ୍ ଅଫ୍ ଦି ଲଣ୍ଡନ ମାଥେମାଟିକାଲ୍ ସୋସାଇଟି, **14** (1982), 81–97।

ରାନ୍‌କିନ୍, ଆର୍. ଏ.,"*ରାମାନୁଜନ୍ସ୍ ମାନୁସ୍କ୍ରିପ୍ଟସ୍ ଆଣ୍ଡ ନୋଟ୍‌ବୁକ୍ସ୍,* II", ବୁଲେଟିନ୍ ଅଫ୍ ଦି ଲଣ୍ଡନ ମାଥେମାଟିକାଲ୍ ସୋସାଇଟି, **21** (1989), 351–365।

ରାନ୍‌କିନ୍, ଆର୍. ଏ.,"*ଶ୍ରୀନିବାସ ରାମାନୁଜନ୍* (1887–1920)", ବୁଲେଟିନ୍ ଅଫ୍ ଦି ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମାଥେମାଟିକ୍ସ୍ ଆଣ୍ଡ ଇଟ୍ସ୍ ଆପ୍ଲିକେସନ୍ସ୍, **23**, ନଂ. 10/11 ସୋସାଇଟି (ଅକ୍ଟୋବର/ ନଭେମ୍ବର 1987), 145–152।

ରାମ୍, ସୁରେଶ, *ଶ୍ରୀନିବାସ ରାମାନୁଜନ୍,* ନୂଆଦିଲ୍ଲୀ: ନାସନାଲ ବୁକ୍ ଟ୍ରଷ୍ଟ, 1972।

ରାମଚନ୍ଦ୍ର ରାଓ, ଆର୍., "*ଇନ୍ ମେମୋରିଅମ୍: ଏସ୍. ରାମାନୁଜନ୍*", ଜର୍ଣ୍ଣାଲ୍ ଅଫ୍ ଦି ଇଣ୍ଡିଆନ୍ ମାଥେମାଟିକାଲ୍ ସୋସାଇଟି, **12**, ନଂ. 3 (ଜୁନ୍ 1920), 87–90।

ରାମନାଥନ୍, କେ. ଜି., "*ରାମାନୁଜନ୍: ଏ ଲାଇଫ୍ ସ୍କେଚ୍*", ସାଇନ୍ସ ଏଜ୍, ଡିସେମ୍ବର 1987, 19–26।

ରାମଶେଷନ୍, ଏସ୍., "*ଶ୍ରୀନିବାସ ରାମାନୁଜନ୍*", ପ୍ରୋସିଡିଙ୍ଗ୍ସ୍ ଅଫ୍ ଦି ରାମାନୁଜନ୍ ସେଣ୍ଟେନିଆଲ୍ ଇଣ୍ଟର୍‌ନାସନାଲ୍ କନ୍‌ଫରେନ୍ସ୍, 15–18 ଡିସେମ୍ବର, 1987, 1–14।

ରାମାନୁଜନ୍, ଶ୍ରୀନିବାସ, *କଲେକ୍ଟେଡ୍ ପେପର୍ସ୍ ଅଫ୍ ଶ୍ରୀନିବାସ ରାମାନୁଜନ୍,* ସଂ. ଜି. ଏଚ୍. ହାର୍ଡି, ପି. ଭି. ଶେଷୁ ଆୟାର୍, ଆଣ୍ଡ ବି. ଏମ୍. ୱିଲ୍‌ସନ୍, କେମ୍ବ୍ରିଜ ୟୁନିଭରସିଟି ପ୍ରେସ୍, 1927।

ରାମାନୁଜନ୍, ଶ୍ରୀନିବାସ, *ଦି ଲଷ୍ଟ ନୋଟ୍‌ବୁକ୍ ଆଣ୍ଡ ଅଦର୍ ଅନ୍‌ପବ୍ଲିସ୍ଡ୍ ପେପର୍ସ୍,* ନୂଆଦିଲ୍ଲୀ: ନରୋସା ପବ୍ଲିସିଙ୍ଗ ହାଉସ୍, 1988।

ରାମାନୁଜନ୍, ଶ୍ରୀନିବାସ, *ନୋଟ୍‌ବୁକ୍ସ୍,* 2 ଭଲ୍ୟୁମ୍ସ୍, ବମ୍ବେ: ଟାଟା ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଫଣ୍ଡାମେଣ୍ଟାଲ୍ ରିସର୍ଚ୍ଚ, 1957। ନୂତନ ପରିଷ୍କୃତ ସଂସ୍କରଣ 2012।

ରୁଜ୍ ବଲ୍, ଡବ୍ଲିଉ. ଡବ୍ଲିଉ., *ଏ ହିଷ୍ଟ୍ରି ଅଫ୍ ଦି ଷ୍ଟଡି ଅଫ୍ ମାଥେମାଟିକ୍ସ୍ ଆଟ୍ କେମ୍ବ୍ରିଜ,* କେମ୍ବ୍ରିଜ୍: କେମ୍ବ୍ରିଜ ୟୁନିଭରସିଟି ପ୍ରେସ୍, 1889।

ରୋଜ୍, ଜାସ୍ପର୍, *କାମ୍‌ଫୋର୍ଡ ଅବ୍‌ଜରଭ୍‌ଡ୍,* ଲଣ୍ଡନ: ଭିକ୍ଟର ଗୋଲାଞ୍ଜ, 1964।

ଲିଟଲ୍‌ଉଡ୍, ଜେ. ଇ., "*ଆଡ୍‌ଭେଞ୍ଚର୍ସ୍ ଇନ୍ ବାଲିଷ୍ଟିକ୍ସ୍,* 1915–1918", ବୁଲେଟିନ୍ ଅଫ୍ ଦି ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମାଥେମାଟିକ୍ସ୍ ଆଣ୍ଡ ଇଟ୍ସ୍ ଆପ୍ଲିକେସନ୍ସ୍, ସେପ୍ଟେମ୍ବର/ଅକ୍ଟୋବର 1974, 323–328।

ଲିଟଲ୍‌ଉଡ୍, ଜେ. ଇ., "*ଦି ମାଥେମାଟିସିଆନ୍ସ୍ ଆର୍ଟ ଅଫ୍ ୱାର୍କ*", ରକେଫେଲର୍ ୟୁନିଭର୍ସିଟି ରିଭିଉ, **5**, (ସେପ୍ଟେମ୍ବର-ଅକ୍ଟୋବର 1967), 1–7।

ଲିଟଲ୍‌ଉଡ୍, ଜେ. ଇ., "*ମାଥେମାଟିକାଲ୍ ଲାଇଫ୍ ଆଣ୍ଡ ଟିଚିଙ୍ଗ ଇନ୍ କେମ୍ବ୍ରିଜ ସିନ୍ସ୍* 1880", ଲେକ୍ଚର ନୋଟ୍ସ୍।

ଲିଟଲ୍‌ଉଡ୍, ଜେ. ଇ., "*ରେମିନିସେନ୍ସ୍ ଅଫ୍ କେମ୍ବ୍ରିଜ ଆଣ୍ଡ ଏଲ୍‌ସ୍‌ହ୍ୱେର୍*", ଲେକ୍ଚର ନୋଟ୍ସ୍।

ଲିଟଲ୍‌ଉଡ୍, ଜେ. ଇ., *ଏ ମାଥେମାଟିସିଆନ୍ସ୍ ମିସେଲେନି*, ଲଣ୍ଡନ: ମେଥୁଏନ୍ ଆଣ୍ଡ କୋ., 1953।

ଲେଭି, ପଲ୍, *ମୁର୍: ଜି. ଇ. ମୁର୍ ଆଣ୍ଡ ଦି କେମ୍ବ୍ରିଜ ଆପୋଷ୍ଟୋଲ୍ସ୍*, ନିଉୟର୍କ: ହୋଲ୍ଟ, ରାଇନ୍‌ହାର୍ଟ ଆଣ୍ଡ ୱିନ୍‌ଷ୍ଟନ୍, 1979।

ୱାଘ୍, ଡି. ବି., "*ଶ୍ରୀନିବାସ ରାମାନୁଜନ୍: ନମ୍ବର ଥିଓରିଷ୍ଟ ଏକ୍ସ୍‌ଟ୍ରାଡିନାରି*", ଭବନ୍ସ୍ ଜର୍ଣ୍ଣାଲ **33**, ନଂ. 23 (ଜୁଲାଇ 1–15, 1987), 21–29।

ୱିନର୍, ନର୍‌ବର୍ଟ, "*ଗଡ୍‌ଫ୍ରି ହାରଲ୍ଡ୍ ହାର୍ଡି* 1877–1947", ବୁଲେଟିନ୍ ଅଫ୍ ଦି ଆମେରିକାନ୍ ମାଥେମାଟିକାଲ ସୋସାଇଟି, **55** (1949), 72–77।

ୱିନର୍, ନର୍‌ବର୍ଟ, *ଆଇ ଆମ୍ ଏ ମାଥେମାଟିସିଆନ୍*, ଗାର୍ଡେନ୍ ସିଟି, ନିଉୟର୍କ: ଡବଲ୍‌ଡେ, 1956।

ୱିନର୍, ନର୍‌ବର୍ଟ, *ଏକ୍ସ-ପ୍ରୋଡିଜି*, ନିଉୟର୍କ, ସାଇମନ୍ ଆଣ୍ଡ ସୁଷ୍ଟର୍, 1953।

ୱିଲିଅମ୍ସ୍, ମ୍ୟାରି ଏଲିଜାବେଥ୍, *ଏ ବିବ୍ଲିଓଗ୍ରାଫି ଅଫ୍ ଜନ୍ ଏଡେନ୍ସର ଲିଟଲ୍‌ଉଡ୍*, ଏଲିଜାବେଥ୍, ନିଉଜର୍ସି: ପେଜାଣ୍ଟ-ପସେଡନ୍ ପ୍ରେସ୍, 1974।

ଶ୍ରୀନିବାସ, ଏମ୍. ଏନ୍., *ସୋସିଆଲ୍ ଚେଞ୍ଜ ଇନ୍ ମଡର୍ଣ୍ଣ ଇଣ୍ଡିଆ*, ବର୍କଲି: ୟୁନିଭର୍ସିଟି ଅଫ୍ କାଲିଫୋର୍ଣ୍ଣିଆ ପ୍ରେସ୍, 1971।

ଶ୍ରୀନିବାସଚାରୀ, ସି. ଏସ୍., *ହିଷ୍ଟ୍ରି ଅଫ୍ ଦି ସିଟି ଅଫ୍ ମାଡ୍ରାସ*, ମାଡ୍ରାସ: ପି. ଭରଦାଚାରି ଆଣ୍ଡ କୋ., 1939।

ଶ୍ରୀନିବାସନ୍, ପି. କେ., ସଂ. *ରାମାନୁଜନ୍ ମେମୋରିଆଲ୍ ନମ୍ବର*, ଭଲ୍ୟୁମ୍ 1, ଲେଟର୍ସ୍ ଆଣ୍ଡ ରେମିନିସେନ୍‌ସେସ୍, ମାଡ୍ରାସ: ମୁଥିଆଲ୍‌ପେଟ୍ ହାଇ ସ୍କୁଲ, 1968।

ଶ୍ରୀନିବାସନ୍, ପି. କେ., ସଂ. *ରାମାନୁଜନ୍ ମେମୋରିଆଲ୍ ନମ୍ବର*, ଭଲ୍ୟୁମ୍ 2, ଆନ୍ ଇନ୍‌ସ୍ପିରେସନ୍, ମାଡ୍ରାସ: ମୁଥିଆଲ୍‌ପେଟ୍ ହାଇ ସ୍କୁଲ, 1967।

ଶେଷୁ ଆୟାର, ପି. ଭି., "*ଦି ଲେଟ୍ ମି. ଏସ୍. ରାମାନୁଜନ୍, ବି. ଏ., ଏଫ୍. ଆର୍. ଏସ୍.*", ଜର୍ଣ୍ଣାଲ୍ ଅଫ୍ ଦି ଇଣ୍ଡିଆନ୍ ମାଥେମାଟିକାଲ୍ ସୋସାଇଟି, **12**, ନଂ. 3 (ଜୁନ୍ 1920), 81–86।

ଶେଷୁ ଆୟାର, ପି. ଭି., ଓ ଆର୍ ରାମଚନ୍ଦ୍ର ରାଓ, "*ଶ୍ରୀନିବାସ ରାମାନୁଜନ୍*", ଇନ୍ କଲେକ୍ଟେଡ୍ ପେପରସ୍ ଅଫ୍ ଶ୍ରୀନିବାସ ରାମାନୁଜନ୍, ସଂ. ଜି. ଏଚ୍. ହାର୍ଡି, ପି. ଭି. ଶେଷୁ ଆୟାର ଆଣ୍ଡ ବି. ଏମ୍. ୱିଲ୍‌ସନ୍, କେମ୍ବ୍ରିଜ ୟୁନିଭର୍ସିଟି ପ୍ରେସ୍, 1927, xi-xix।

ଷ୍ଟବ୍‌ସ୍, ଚାର୍ଲସ୍, ଡବ୍ଲିଉ., *ଦି ଷ୍ଟୋରି ଅଫ୍ କେମ୍ବ୍ରିଜ*, ଲଣ୍ଡନ: ଜେ. ଏମ୍. ଡେଣ୍ଟ ଆଣ୍ଡ କୋ., 1905।

ଷ୍ଟ୍ରଇକ୍, ଡିର୍କ ଜେ., *ଏ କନ୍‌ସାଇଜ୍ ହିଷ୍ଟ୍ରି ଅଫ୍ ମାଥେମାଟିକ୍‌ସ୍*, ଫୋର୍ଥ ରିଭାଇଜ୍‌ଡ୍ ଏଡ୍., ନିଉୟର୍କ: ଡୋଭର, 1987।

ସ୍ନୋ, ଫିଲିପ୍, *ଷ୍ଟ୍ରେଞ୍ଜର ଆଣ୍ଡ ବ୍ରଦର*, ଲଣ୍ଡନ: ମାକ୍‌ମିଲାନ, 1982।

ସ୍ନୋ, ସି. ପି., "*ଦି ମାଥେମାଟିସିଆନ୍ ଅନ୍ କ୍ରିକେଟ୍*", ସଟର୍‌ଡେ ବୁକ୍, ଏଇଟ୍‌ଥ୍ ୟିଅର୍, 1941–1942।

ସ୍ନୋ, ସି. ପି., *ଭେରାଇଟି ଅଫ୍ ମେନ୍*, ନିଉୟର୍କ: ଚାର୍ଲସ୍ ସ୍କ୍ରିବ୍‌ନର୍‌ସ୍ ସନ୍‌ସ୍, 1966।

ସିଂଘ, ଅମର କୁମାର, "*ଦି ଇମ୍ପାକ୍ଟ ଅଫ୍ ଫରେନ୍ ଷ୍ଟଡି: ଦି ଇଣ୍ଡିଆନ୍ ଏକ୍‌ସ୍‌ପିରିଏନ୍‌ସ୍*", ମିନର୍ଭା, ଅଟମ୍, 1962।

ସିଂଘ, ଅମର କୁମାର, *ଇଣ୍ଡିଆନ୍ ଷ୍ଟୁଡେଣ୍ଟସ୍ ଇନ୍ ବ୍ରିଟେନ୍, ଲଣ୍ଡନ:* ଏସିଆ ପବ୍ଲିସିଙ୍ଗ୍ ହାଉସ୍, 1963।

ସିଂଘ, ଜଗଜିତ୍, "*ଶ୍ରୀନିବାସ ରାମାନୁଜନ୍: ଏ ସର୍ଟ ବାୟୋଗ୍ରାଫି*", 2 ପାର୍ଟସ୍, ମାଥେମାଟିକାଲ୍ ଏଜୁକେସନ୍, ଜୁଲାଇ-ସେପ୍ଟେମ୍ବର ଓ ଅକ୍ଟୋବର-ଡିସେମ୍ବର 1987।

*ସେଣ୍ଟେନାରି ସେଲିବ୍ରେସନ୍ ସୋଭେନିଅର୍*, କୁମ୍ଭକୋଣମ୍, ଟାଉନ୍ ହାଇ ସ୍କୁଲ, 1964।

ହ୍ୱାଇଟ୍‌ହେଡ୍, ହେନେରି, *ଦି ଭିଲେଜ୍ ଗଡ୍‌ସ୍ ଅଫ୍ ସାଉଥ୍ ଇଣ୍ଡିଆ*, କାଲ୍‌କାଟା: ଦି ଆସୋସିଏସନ୍ ପ୍ରେସ୍, 1916।

ହାଦାମାର୍ଡ, ଜାକ୍, *ଦି ସାଇକୋଲୋଜି ଅଫ୍ ଇନ୍‌ଭେନ୍‌ସନ୍ ଇନ୍ ଦି ମାଥେମାଟିକାଲ୍ ଫିଲ୍‌ଡ*, ପ୍ରିନ୍‌ସ୍‌ଟନ୍: ପ୍ରିନ୍‌ସ୍‌ଟନ୍ ୟୁନିଭର୍‌ସିଟି ପ୍ରେସ୍, 1949।

ହାର୍ଡି, ଜି. ଏଚ୍., "*ଓବିଚୁଆରି, ଏସ୍. ରାମାନୁଜନ୍*", ନେଚର୍ **105** (ଜୁନ୍ 17, 1920), 494–495।

ହାର୍ଡି, ଜି. ଏଚ୍., *ଏ କୋର୍ଷ ଇନ୍ ପିଓର୍ ମାଥେମାଟିକ୍‌ସ୍*, କେମ୍ବ୍ରିଜ ୟୁନିଭର୍‌ସିଟି ପ୍ରେସ୍, 1908।

ହାର୍ଡି, ଜି. ଏଚ୍., *ଏ ମାଥେମାଟିସିଆନ୍‌ସ୍ ଆପୋଲୋଜି*, କେମ୍ବ୍ରିଜ ୟୁନିଭର୍‌ସିଟି ପ୍ରେସ୍, 1940, ସି. ପି. ସ୍ନୋ'ଙ୍କ ମୁଖବନ୍ଧ ସହିତ ପୁନର୍ମୁଦ୍ରିତ, 1967।

ହାର୍ଡି, ଜି. ଏଚ୍., *କଲେକ୍‌ଟେଡ୍ ପେପର୍‌ସ୍ ଅଫ୍ ଜି. ଏଚ୍ ହାର୍ଡି*, ଅକ୍ସଫୋର୍ଡ: କ୍ଲାରେଣ୍ଡନ୍ ପ୍ରେସ୍, 1979।

ହାର୍ଡି, ଜି. ଏଚ୍., *ବର୍ଟ୍ରାଣ୍ଡ ରସେଲ୍ ଆଣ୍ଡ ଟ୍ରିନିଟି*, କେମ୍ବ୍ରିଜ ୟୁନିଭର୍‌ସିଟି ପ୍ରେସ୍, 1970।

ହାର୍ଡି, ଜି. ଏଚ୍., *ରାମାନୁଜନ୍*, କେମ୍ବ୍ରିଜ ୟୁନିଭର୍‌ସିଟି ପ୍ରେସ୍, 1940। ତୃତୀୟ ସଂସ୍କରଣ, ନିଉୟର୍କ: ଚେଲ୍‌ସି, 1978।

ହାର୍ଡି, ଜି. ଏଚ୍., *ସମ୍ ଫେମସ୍ ପ୍ରୋବ୍‌ଲେମ୍‌ସ୍ ଅଫ୍ ଦି ଥିଓରି ଅଫ୍ ନମ୍ବର୍‌ସ୍*, ଅକ୍ସଫୋର୍ଡ: କ୍ଲାରେଣ୍ଡନ୍ ପ୍ରେସ୍, 1920।

ହାୱାର୍ଥ, ଟି. ଇ. ବି., *କେମ୍ବ୍ରିଜ ବିଟୁଇନ୍ ଦି ଟୁ ୱାର୍‌ସ୍*, ଲଣ୍ଡନ: କଲିନ୍‌ସ୍, 1978।

# ଲେଖକୀୟ ସୂଚନା ଓ କୃତଜ୍ଞତା ଜ୍ଞାପନ

ରାମାନୁଜନ୍‌ଙ୍କ ଜୀବନୀ ଲେଖିବାର କାମରେ ମତେ ଦୁଇଟି 'ବିଦେଶୀ' ସଂସ୍କୃତିର ବାଧାର ସାମନା କରିବାକୁ ପଡ଼ିଲା। ତା ସହିତ ସାମନା କରିବାକୁ ପଡ଼ିଲା ଏକ କଷ୍ଟକର ବିଷୟର ଓ ଦୂର ଅତୀତର ସମୟକାଳର। ଏଥିରୁ କୌଣସି କ୍ଷେତ୍ରରେ ମୁଁ ବିଶାରଦ ନୁହେଁ। ତେଣୁ ଏହି ବାଧାଗୁଡ଼ିକୁ ଡେଇଁବା ପାଇଁ ମୁଁ ଅନେକ ଲୋକଙ୍କର ସାହାଯ୍ୟ ନେଇଛି। ସେମାନଙ୍କ ପ୍ରତି ମୁଁ ବିଶେଷ ଭାବରେ କୃତଜ୍ଞ। ସେମାନେ ସାକ୍ଷାତକାର ଦେବାରେ, ଗଣିତର ବିଭିନ୍ନ ଦୁର୍ବୋଧ୍ୟ ବିଷୟ ବା ଭାରତୀୟ ସଂସ୍କୃତିର ସୂକ୍ଷ୍ମ ଦିଗଗୁଡ଼ିକୁ ବୁଝାଇବାରେ, ପାଠାଗାର ଓ ଅଭିଲେଖାଗାର ସବୁରୁ ଦୁର୍ଲଭ କାଗଜପତ୍ର ବାହାର କରିବାରେ, ବହିର ପ୍ରାରମ୍ଭିକ ଲେଖାକୁ ପଢ଼ି ମତାମତ ଦେବାରେ, ଇଂଲଣ୍ଡ, ଭାରତ ଓ ବାଲ୍ଟିମୋର ଠାରେ ବନ୍ଧୁତ୍ୱ ଓ ସହାୟତା ଯୋଗାଇବାରେ କେବେ ବି କୁଣ୍ଠିତ ହୋଇନାହାନ୍ତି। ଧନ୍ୟବାଦ ଦେବା ପାଇଁ ବହିର ଏତେ ଜାଗା ନେବା ମୋ ପାଇଁ ଦ୍ୱିଧାର କଥା, କିନ୍ତୁ ସେମାନଙ୍କ ପାଖରେ ମୁଁ କେତେ ଯେ ଋଣୀ ତାହା ସୂଚାଇବା ପାଇଁ ଏହା ଯଥାର୍ଥ।

ବହି ଲେଖିବାର ଚାପରୁ ଆସୁଥିବା ମୋର ମାତ୍ରାଧିକ ମାନସିକ ଅସ୍ଥିରତାକୁ ମୋର ସ୍ତ୍ରୀ ଜୁଡି ଅକୁଣ୍ଠିତ ଭାବରେ ସହିନେଇଛନ୍ତି। ତାଙ୍କର ପୋଷଣ, ଉତ୍ସାହପ୍ରଦାନ ଓ ସହାୟତା ପାଇଁ ମୁଁ ଅତି ମାତ୍ରାରେ ଋଣୀ। ଏହି ଅମୂର୍ତ୍ତ କଥାଗୁଡ଼ିକ ମିଳୁଥିଲା ବେଳେ ସାଧାରଣ ବୋଲି ମନେହୁଏ, କିନ୍ତୁ ନ ମିଳୁଥିଲେ ଜୀବନ ଅସହ୍ୟ ମନେହୁଏ।

ଏକ ଗୁରୁତ୍ୱପୂର୍ଣ୍ଣ ସମୟରେ ଜୁଡି ଓ ମୋର ଭଉଣୀ ରେଚେଲ୍ ମୁଁ ଶୁଣିବାକୁ ଚାହୁଁଥିବା ମତ ଦେବାକୁ ରାଜି ନ ଥିଲେ। ଫଳରେ ଗଣିତ ବିଷୟରେ ଲେଖିବାର ଏକ ଅଲଗା ଶୈଳୀ ମତେ ଆଦରିବାକୁ ପଡ଼ିଲା। ସେଥିପାଇଁ ମୁଁ ସେ ଦୁହିଁଙ୍କ ପାଖରେ ଏବଂ ସେମାନଙ୍କ ଅରାଜିପଣିଆ ପାଖରେ କୃତଜ୍ଞ।

ଡେଭିକୁ ମୋର ଧନ୍ୟବାଦ, କାରଣ ତା'ର ବାପା ଭାରତ ଓ ଇଂଲଣ୍ଡରେ ତିନି ମାସ କଟାଇବା ପରେ ପ୍ରାୟ ଦେଢ଼ ବର୍ଷ ଧରି ବହିଲେଖାରେ ବ୍ୟସ୍ତ ରହିଲେ ଏବଂ ତା ଜୀବନରୁ ପ୍ରାୟ ଉଭେଇଗଲେ। ଶେଷରେ ଦିନେ ପାଞ୍ଚ ବର୍ଷିଆ ଡେଭି ପଚାରିଲା, "ରାମାନୁଜନ୍ ବହି କେମିତି ଆଗଉଛି?" ମୁଁ ଆଶା କରୁଛି ଯେ ଦିନେ ସେ ବହିଟି ନିଜେ ପଢ଼ିବ ଓ ବହି ବିଷୟରେ ତା'ର ପ୍ରଶ୍ନର ଉତ୍ତର ନିଜେ ପାଇବ।

କୃତଜ୍ଞତା ମୋର ମା ଓ ବାପା – ବି ଓ ଚାର୍ଲସ୍ କାନିଗେଲ – ଙ୍କୁ। ଶବ୍ଦ, ସଂଖ୍ୟା, ବ୍ୟକ୍ତି ଓ ଅବଧାରଣା ପ୍ରତି ମୋର ଆଗ୍ରହର ମୂଳଦୁଆ ପକାଇବା ପାଇଁ ସେମାନେ ହିଁ ଦାୟୀ।

ମୋର କୃତଜ୍ଞତା –

ମାଇକେଲ୍, କେଭିନ୍ ଓ ଜନାଥନ୍‌ଙ୍କୁ, ହ୍ୟାରି ଓ ରେଚେଲ୍ ଏବଂ ଏଲିସେ ଓ ଲିଜ୍‌ଙ୍କୁ – ଏମାନେ ସମସ୍ତେ ନିଜ ନିଜର ବାଟରେ ମୋ ଜୀବନର ଅବିଚ୍ଛେଦ୍ୟ ଅଂଶ।

ବିଲ୍ ଷ୍ଟମ୍ପଙ୍କୁ, କୋଡ଼ିଏ ବର୍ଷ ତଳେ ଜଣେ ଯୁବ ଲେଖକଙ୍କୁ ଉତ୍ସାହିତ କରିଥିବାରୁ।

ମାନ୍ଦ୍ରାଜର ଭି. ବିଶ୍ୱନାଥନ୍‌ଙ୍କୁ, ଖୁନ୍ଦାଖୁନ୍ଦି ଅଟୋରିକ୍ସାରେ ଜଣେ ଅନିଶ୍ଚିତ ଆମେରିକୀୟଙ୍କ ପାଇଁ ଯାଗା କରିଦେଇଥିବାରୁ ଏବଂ ଆହୁରି ଅନେକ ବାଟରେ ସାହାଯ୍ୟ କରିଥିବାରୁ। ତାଙ୍କ ଭାଇ ମାଡ୍ରାସ ପୋର୍ଟ ଟ୍ରଷ୍ଟରେ କାମକରୁଥିବା ଭି. ମୀନାକ୍ଷୀସୁନ୍ଦରମ୍, ଏସ୍. ଶଙ୍କର ନାରାୟଣ ଓ ଭି. ସୁବ୍ରମନ୍ୟମ୍ ଏବଂ ତାଙ୍କ ପରିବାରର ଅନ୍ୟ ସଦସ୍ୟମାନେ ମତେ ଯେଉଁ ସଦୟ ବନ୍ଧୁତ୍ୱ ଦେଇଛନ୍ତି ତା'ର ପ୍ରତିଦାନ ଦେବା ସମ୍ଭବ ହେବନାହିଁ।

ସମ୍ବନ୍ଦମ୍, ବିଜୟ, ମହାଲିଙ୍ଗମ୍‌ଙ୍କୁ ଓ ସେମାନଙ୍କର ପରିବାରର ସଦସ୍ୟମାନଙ୍କୁ, ତାଙ୍କର ବ୍ୟାପକ ଆତିଥ୍ୟ ପାଇଁ।

ତିନିଜଣିଆ ଦଳଙ୍କୁ – ପେନ୍‌ସିଲ୍‌ଭାନିଆ ଷ୍ଟେଟ୍ ୟୁନିଭର୍‌ସିଟିର ଜର୍ଜ ଆଣ୍ଡ୍ରୁଜ୍, ୱିସ୍‌କନ୍‌ସିନ୍ ବିଶ୍ୱବିଦ୍ୟାଳୟର ରିଚାର୍ଡ ଆସ୍କି, ଓ ଇଲିନଏ ବିଶ୍ୱବିଦ୍ୟାଳୟର ବ୍ରୁସ୍ ବର୍ଣ୍ଟ – ରାମାନୁଜନ୍‌ଙ୍କ ଗଣିତ ବିଷୟରେ ଧାରଣା ଦେବାଠାରୁ ଆରମ୍ଭକରି ବିଭିନ୍ନ ପର୍ଯ୍ୟାୟରେ ଏହି ବହିର ପାଣ୍ଡୁଲିପି ପଢ଼ିବା ସହିତ ଅସରନ୍ତି ଉପଦେଶ ଓ ଉତ୍ସାହ ଯୋଗାଇଚାଲିଥିବା ପାଇଁ। ସେମାନଙ୍କ ସାହାଯ୍ୟ ବିନା ଏହି ବହି ଲେଖିବା ସମ୍ଭବ ହୋଇ ନ ଥାନ୍ତା।

ଗ୍ଲାସ୍‌ଗୋ (ସ୍କଟ୍‌ଲାଣ୍ଡ)ର ରବର୍ଟ ରାନ୍‌କିନ୍‌ଙ୍କୁ, ରାମାନୁଜନ୍ ଓ ହାର୍ଡିଙ୍କର ଜୀବନ ଉପରେ ଯାହାଙ୍କର ଗବେଷଣା ଏହି ବହି ପାଇଁ ଅନେକ ତଥ୍ୟ ଯୋଗାଇଛି ଏବଂ ଯିଏ ମହାସାଗରର ସେପାଖରୁ ମୋର ଅସଂଖ୍ୟ ପ୍ରଶ୍ନର ଉତ୍ତର ଅକୁଣ୍ଠିତ ଭାବରେ ଦେଇଛନ୍ତି।

ଫ୍ରିମାନ୍ ଡାଇସନ୍‌ଙ୍କୁ, ବହି ଲେଖାରେ ଗଭୀର ଆଗ୍ରହ ଦେଖାଇଥିବାରୁ, ପୁରୁଣା ଚିଠିପତ୍ର ଖୋଜି ବାହାର କରିବା ସହିତ ପାଣ୍ଡୁଲିପି ପଢ଼ି ଅନେକ ଉପଦେଶ ଦେଇଥିବାରୁ।

ବାର୍‌ବାରା ଗ୍ରସ୍‌ମାନ୍‌ଙ୍କୁ, ଏହି ବହି ଚିନ୍ତାରୁ ବାହାରିଥିଲା ଏବଂ ଯିଏ ନିଜ ବ୍ୟକ୍ତିତ୍ୱର ସବୁ ଯୋର ତା ପଛରେ ଲଗାଇ ଦେଇଥିଲେ। ସଦୟ ବ୍ୟକ୍ତିତ୍ୱ ଓ ନିଷ୍ଠା ପାଇଁ ଜଏ ସ୍ମିଥ୍‌ଙ୍କୁ। ବିଭିନ୍ନ ପ୍ରକାରର ସାହାଯ୍ୟ ପାଇଁ ସ୍କ୍ରିବ୍‌ନର୍ ପ୍ରକାଶନ ସଂସ୍ଥାର ଏରିକ୍ ହବିଙ୍ଗ୍, ଡେଭିଡ୍ ଫ୍ରଷ୍ଟ ଓ ଅନ୍ୟ ସମସ୍ତଙ୍କୁ। ଯୋ ଇଂଲିସ୍ ଖାପରଟିଆନ୍‌ଙ୍କୁ, ତାଙ୍କର ଚମତ୍କାର କପି ଏଡିଟିଙ୍ଗ ପାଇଁ।

ଭକି ବିଜୁର୍‌ଙ୍କୁ, ମୋର ପ୍ରତିନିଧି ଭାବରେ ଯିଏ ଏହି ବହିର ଜନ୍ମ ପାଇଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ତୁଲାଇଛନ୍ତି ଏବଂ ଅତି ଦକ୍ଷ ଭାବରେ ମୋର ପ୍ରତିନିଧିତ୍ୱ କରିଛନ୍ତି।

ଜେନ୍ ଆଲେକ୍‌ଜାଣ୍ଡର୍‌ଙ୍କୁ, ଯିଏ ମୋତେ ପ୍ରଥମ ଥର ପାଇଁ ଭାରତ ପଠାଇଲେ ଏବଂ ତା'ପର ଠାରୁ ସାଥୀ ହୋଇ ରହିଗଲେ।

ଏମାନଙ୍କ ବ୍ୟତୀତ ଆହୁରି ଅନେକ ବ୍ୟକ୍ତି ଛୋଟ ବଡ଼ ଅନେକ ବାଟରେ ଏହି ବହିକୁ ସମ୍ଭବ କରିବାରେ ସାହାଯ୍ୟ କରିଛନ୍ତି। ସେ ସମସ୍ତଙ୍କୁ ମନେ ପକାଇବା ଖୁବ୍ କଷ୍ଟର କଥା। ଯାହାର ନାଁ ମୁଁ ମନେ ପକାଇପାରିନାହିଁ, ସେମାନଙ୍କୁ ମୋର କ୍ଷମା ପ୍ରାର୍ଥନା।

ଏମାନଙ୍କ ପ୍ରତି ମୁଁ କୃତଜ୍ଞତା ସ୍ୱିକାର କରୁଛି –
ଆମେରିକାରେ: ସୁଦର୍ଶନ ଭାଟିଆ ଓ ଆଶା ରିଜ୍‌ସିଂହାନି। ଭି. ଅନନ୍ତରମଣ ଓ ମାଳିନୀ। ଅଶ୍ୱିନ୍ ରାଜନ। ରଞ୍ଜନ ରଏ, ବେଲୋଏଟ୍ କଲେଜ। ହେନେରି ଏସ୍. ଟ୍ରପ୍, ହମ୍‌ବୋଲ୍ଟ ଷ୍ଟେଟ୍ ୟୁନିଭର୍‌ସିଟି। ଏସ୍. ଚନ୍ଦ୍ରଶେଖର, ୟୁନିଭର୍‌ସିଟି ଅଫ୍ ଚିକାଗୋ। ଆର୍ଥର୍ ମାଗିଡ। ଗ୍ୟାରି ଲେଭେନ୍‌ଥାଲ୍। ଆନ୍ ଫିଙ୍କବାଇନର ଓ କାଲ୍ ୱାକର୍। କେନ୍ ଗର୍ସମାନ। ଲି ଓ ଫିଲିସ୍ ଜାସ୍‌ଲୋ। ମିଲ୍‌ଡ୍ରେଡ୍ ଫଷ୍ଟର। କାରୋଲିନ୍, କ୍ୟାଥି, ରେଡ୍ ବେଲୁନ୍‌ର ଅନ୍ୟ ସମସ୍ତେ। ୱିଲିଅମ୍ ଡାୟାଲ୍ ଓ ଟମାସ୍ ସ୍ଲେକି, ସେଣ୍ଟ ଜନ୍‌ସ୍ କଲେଜ, ଆନାପୋଲିସ୍। ୱାରେନ୍ କୋର୍ଣ୍ଣବର୍ଗ, *ମାସାଇକ୍* ପତ୍ରିକା। ଜାସେକ୍ ମୋଷ୍ଟୱିନ୍, ଜନ୍‌ସ୍ ହପ୍‌କିନ୍‌ସ୍ ହସ୍ପିଟାଲ, ଷ୍ଟିଭ୍ ଫିସର ଆଲାନ୍ ସି। ଆଡ୍ରିଏନ୍ ପିଅର୍ସ, ଜନ୍‌ସ୍ ହପ୍‌କିନ୍‌ସ୍ ୟୁନିଭର୍‌ସିଟି, ଜନ୍ ହାଲ୍‌ପେରିନ୍, ଭାନ୍‌ଡର୍‌ବିଲ୍ଟ ୟୁନିଭର୍‌ସିଟି, ମରିସ୍ ସେଣ୍ଟ ପିଅର୍, ମୋର୍ଗାନ୍ ଷ୍ଟେଟ୍ ୟୁନିଭର୍‌ସିଟି। ସୁଜେନ୍ ହଲାଣ୍ଡ, ହାର୍ଭାର୍ଡ ମାଗାଜିନ୍। ଜର୍ଜ ଡବ୍ଲିଉ. କମ୍‌ଷ୍ଟକ୍, ଜନ୍‌ସ୍ ହପ୍‌କିନ୍‌ସ୍ ୟୁନିଭର୍‌ସିଟି ସ୍କୁଲ୍ ଅଫ୍ ହାଇଜିନ୍ ଆଣ୍ ପବ୍ଲିକ୍ ହେଲ୍‌ଥ। ଏସ୍ ଭାର୍ଗବ, ୟୁନିଭର୍‌ସିଟି ଅଫ୍ ଇଲିନଏ, ଅର୍ବାନା। ୱେନ୍ ମାର୍କେଟ୍, ୟୁନିଭର୍‌ସିଟି ଅଫ୍ ବାଲ୍ଟିମୋର୍।

ଇଂଲଣ୍ଡରେ: ଏମ୍ମା ଓ ଜନାଥନ୍ ଲେ, କ୍ରାନ୍‌ଲେ ସ୍କୁଲ। କେଭିନ୍ ଗ୍ରେ, ଟ୍ରିନିଟି କଲେଜ। ବେଲା ବୋଲୋବାସ୍, ଟ୍ରିନିଟି କଲେଜ। ଚାର୍ଲସ୍ ବର୍କିଲ୍, କେମ୍ବ୍ରିଜ। ମ୍ୟାରି କାର୍ଟ୍‌ରାଇଟ୍, କେମ୍ବ୍ରିଜ। ରାଜିଭ କ୍ରିଷ୍ଣନ୍, କ୍ରାଏଷ୍ଟସ୍ କଲେଜ। ରଜର ଡେଭିଡ୍ ହୁଗ୍ କଷ୍ଟେନ୍‌ସ୍, ୱିଞ୍ଚେଷ୍ଟର କଲେଜ। ଗଏ ନିଉକମ୍ବ, ଟ୍ରିନିଟି କଲେଜ। ଭିନ୍‌ସ୍ ଡାର୍ଲି, ଟ୍ରିନିଟି କଲେଜ। ଜନ୍ ଭିକର୍‌ସ୍, ସେଣ୍ଟ ଜନ୍‌ସ୍ କଲେଜ। ଆର୍. ରବ୍‌ସନ୍, ଟ୍ରିନିଟି କଲେଜ। କନ୍‌ଷ୍ଟାନ୍‌ସ୍ ୱିଲିସ୍, କେମ୍ବ୍ରିଜ। ଡିବୋରା ଓ ବ୍ରାୟାନ୍ ଜେ. ବି. ଗୁଲ୍‌ଡ୍, ପଟ୍‌ନି। ଥିଓଡୋର୍ ସୁଚାଟ୍ ଓ ଲୁଇଜ୍ ହାର୍‌ପର୍, ଲଣ୍ଡନ। ପଲ୍ ଓ କ୍ଲାର୍କ ଫ୍ରିଡ୍‌ମାନ୍, ଲଣ୍ଡନ। ଏସ୍. ଜେ. ମାନ୍, କ୍ରାନ୍‌ଲେ ସ୍କୁଲ। ସୁଜାନ୍ ଏମ୍. ଓକ୍‌ସ୍, ଲଣ୍ଡନ ମାଥେମାଟିକାଲ ସୋସାଇଟି। ଜେ. ଡି. ୱେବ୍, କେମ୍ବ୍ରିଜ ସିଟି କାଉନ୍‌ସିଲ। ଟମ୍ ଡଏଗ୍, କେମ୍ବ୍ରିଜ ଫୋକ୍ ମିଉଜିଅମ୍। ପ୍ୟାଟ୍ କ୍ୟାଟେନ୍‌ହର୍ଣ୍ଡ, ଇଣ୍ଡିଆ ଅଫିସ୍ ଲାଇବ୍ରେରି।

ଭାରତରେ: ଜାନକୀ ଆମ୍ମାଲ୍, ରାମାନୁଜନ୍‌ଙ୍କ ବିଧବା ପତ୍ନୀ, ଓ ତାଙ୍କର ପାଳିତ ପୁତ୍ର ଡବ୍ଲିଉ. ନାରାୟଣନ୍ ଓ ପରିବାର, ଟ୍ରିପ୍ଲିକେନ୍, ମାଡ୍ରାସ। ଟି. ଭି. ରଙ୍ଗାସ୍ୱାମୀ ("ରାଗାମି"), ଟ୍ରିପ୍ଲିକେନ୍, ମାଡ୍ରାସ। ଏ. ପି. ଭିକ୍ଟର, କୁଆଲା ଲୁମ୍‌ପୁର, ମାଲେସିଆ। ପି. କେ. ଶ୍ରୀନିବାସନ୍, ଆସୋସିଏସନ୍ ଅଫ୍ ମାଥେମାଟିକ୍‌ସ୍ ଟିଚର୍‌ସ୍ ଆଫ୍ ଇଣ୍ଡିଆ, ମାଡ୍ରାସ। ଟି. ଏମ୍. ଶ୍ରୀନିଭାସନ୍ ଓ ଟି. ଏମ୍. କସ୍ତୁରୀରଙ୍ଗନ, ମାଡ୍ରାସ। ଜନ୍ ହର୍ବର୍ଟ ଆନନ୍ଦ, ମାଇଲାପୋର୍, ମାଡ୍ରାସ। ଆର୍. ଜନାର୍ଥନନ୍, କୁମ୍ଭକୋଣମ୍। ଆର୍. ଭିଶ୍ୱନାଥନ୍, ପ୍ରଧାନ ଶିକ୍ଷକ, ଓ ଭି. ଭୈୟନାଥନ୍, ଉପପ୍ରଧାନ ଶିକ୍ଷକ, ଟାଉନ ହାୟର୍ ସେକଣ୍ଡାରି ସ୍କୁଲ, କୁମ୍ଭକୋଣମ୍। ଏସ୍. ସୁବରଥିନାନ୍, ଇରୋଡ୍। ଏ ନଜିମୁଦ୍ଦିନ୍ ଓ ଏଚ୍. ଶର୍ମିଲା, ମାଡ୍ରାସ। କେ. ଇଲାଙ୍ଗୋଭାନ୍, କୋଦୁମୁଡ଼ି।ଆର୍. ଚନ୍ଦ୍ରଶେଖର, କୋଦୁମୁଡ଼ି। ଏ. ସଙ୍ଗୁତୁଭାନ୍, ଇରୋଡ୍। ଏଲ୍. ରାଜଗୋପାଳନ୍, ଏସ୍. ଏଲାଙ୍ଗୋ ଓ ଡି. ଜି. ରାମମୂର୍ତ୍ତି, କୁମ୍ଭକୋଣମ୍।

ଏସ୍. ଗୋଭନ୍ଦରାଜା ଭଟ୍ଟାଚାରିଆର୍ ଓ ପି. ଭାସୁନାଥନ୍, ଉପ୍ପିଲିଆପାନ୍ କୋଏଲ୍, ତିରୁନାଗେଶ୍ୱରମ୍। ଟି. ୟୁ. ଭାନୁମୂର୍ତ୍ତି ଓ କଲ୍ୟାଣଲକ୍ଷ୍ମୀ, ମାଡ୍ରାସ। ଏମ୍. ଭିନ୍ନାନାଶନ, କୁମ୍ଭକୋଣମ୍। କେ. ଏସ୍. ପଦ୍ମନାଭନ୍, ରାମାନୁଜନ୍ ଇନ୍ଷ୍ଟିଚୁଟ୍, ମାଡ୍ରାସ। କେ. ନାରାୟଣନ୍ ଓ ଓ. ଭି. ଚନ୍ଦ୍ରଶେଖର, ଦି ହିନ୍ଦୁ। ଏ. ରଙ୍ଗନାଥନ୍, ମାଡ୍ରାସ। କେ. ରାଜଲକ୍ଷ୍ମୀ, କୁମ୍ଭକୋଣମ୍। ଟି. ସି. କ୍ରିଷ୍ଣା ଓ ପରିବାର, ମାଡ୍ରାସ। ଭାମା ଶ୍ରୀନିଭାସନ୍, ୟୁନିଭର୍ସିଟି ଅଫ୍ ଇଲିନଏ, ଚିକାଗୋ। ପି. ପି. କୁଲ୍‌କାର୍ଣ୍ଣି, ନାଗପୁର। ଏବଂ, ମାଡ୍ରାସର ଅବିସ୍ମରଣୀୟ ହରି।

ଯୁକ୍ତରାଷ୍ଟ୍ର ଆମେରିକା, ଇଂଲଣ୍ଡ ଓ ଭାରତର ଅନେକ ଲାଇବ୍ରେରିର କର୍ମଚାରୀଙ୍କ ପ୍ରତି ମୁଁ ମୋର କୃତଜ୍ଞତା ଜଣାଉଛି। ନିର୍ଲିପ୍ତ କିନ୍ତୁ ଦକ୍ଷ ଭାବରେ ସେମାନେ ତାଙ୍କଠାରୁ ଆଶା କରାଯାଉଥିବା ସାହାଯ୍ୟ ବିନା ଦ୍ୱିଧାରେ ଯୋଗାଇ ଦେଇଛନ୍ତି। ଅବଶ୍ୟ ତାହା ମଧ୍ୟ ଏକ ସମସ୍ୟା – କାରଣ ବହି ବା ଦଲିଲଟିଏ ମିଳିଗଲେ ଆମେ ଭାବୁ ଯେ ସେମାନେ ତାଙ୍କ କାମ ହିଁ କରିଛନ୍ତି, କିନ୍ତୁ ନ ମିଳିଲେ  ଆମେ ଅଭିଯୋଗ ଆଣୁ। ଭାରତରେ ପାଞ୍ଚ ସପ୍ତାହ କଟାଇବା ଭିତରେ ମୁଁ ସେଠାର ଲାଇବ୍ରେରିଗୁଡ଼ିକର ଅବସ୍ଥା ବିଷୟରେ ସଚେତନ ହେଲି। ପାଶ୍ଚାତ୍ୟ ଦେଶମାନଙ୍କରେ ଯେଉଁ ବ୍ୟୟବହୁଳ ଧାରାରେ ବହିଗୁଡ଼ିକର ରକ୍ଷଣାବେକ୍ଷଣ କରାଯାଏ ତାହା ଭାରତରେ ସମ୍ଭବ ହୁଏନାହିଁ। ଗୋଟିଏ ଲାଇବ୍ରେରିରେ ଚଟାଣରେ ବହି ସବୁ ଏପରି ଗଦା ହୋଇଥିଲା ଯେ ନୂଆ ବହିର ପୃଷ୍ଠାଗୁଡ଼ିକ ମଧ୍ୟ ନଷ୍ଟ ହେବାକୁ ଆରମ୍ଭ କରିଥିଲା। ତଥାପି ଲାଇବ୍ରେରି ବହିଗୁଡ଼ିକର ବ୍ୟବହାର ଭାରତ ଭଳି ଅନ୍ୟ ଜାଗାରେ ମୁଁ ଦେଖିନାହିଁ। ଇରୋଡ୍ ଠାରେ ଗୋଟିଏ ଛୋଟ ଲାଇବ୍ରେରିରେ ମୁଁ ଦେଖିଲି ଯେ ସବୁ ଟେବୁଲରେ ସବୁ ଚଉକିରେ ଲୋକ ବସି ପଢୁଛନ୍ତି। ଏପରିକି କିଛି ଲୋକ ଛିଡ଼ାହୋଇ ବହି ଓଲଟାଉଛନ୍ତି।

ତଳେ ଦିଆଯାଇଥିବା ଲାଇବ୍ରେରି ଓ ଅଭିଲେଖାଗାରଗୁଡ଼ିକର କର୍ମକର୍ତ୍ତା ଓ କର୍ମଚାରୀମାନଙ୍କ  ପ୍ରତି ମୁଁ ବିଶେଷ ଭାବରେ କୃତଜ୍ଞ।

ବାଲ୍ଟିମୋର୍: ଜନ୍ସ୍ ହପ୍‌କିନ୍ସ୍ ୟୁନିଭର୍ସିଟିର ଦି ମିଲ୍ଟନ୍ ଏସ୍. ଆଇଜେନ୍‌ହାୱାର୍ ଲାଇବ୍ରେରି। ୱିଲିଅମ୍ ଏଚ୍. ୱେଲ୍ଚ୍ ମେଡିକାଲ ଲାଇବ୍ରେରି। ଇନକ୍ ପ୍ରାଟ୍ ଫ୍ରି ଲାଇବ୍ରେରି–ସେଣ୍ଟ୍ରାଲ ଲାଇବ୍ରେରି, ସେଣ୍ଟ ପଲ୍ ଷ୍ଟ୍ରିଟ୍ ବ୍ରାଞ୍ଚ, ଏବଂ ଟେଲିଫୋନ୍ ସୂଚନା ସେବା।

ୱାସିଙ୍ଗଟନ୍, ଡି. ସି.: ଲାଇବ୍ରେରି ଅଫ୍ କଙ୍ଗ୍ରେସ୍।

କେମ୍ବ୍ରିଜ, ମାସାଚୁସେଟ୍ସ୍: ହାର୍ଭାର୍ଡ ୟୁନିଭର୍ସିଟି ଆର୍କାଇଭ୍ସ୍।

ପ୍ରିନ୍ସ୍‌ଟନ୍, ନିୟୁ ଜର୍ସି: ସିଲି ଜି. ମଡ୍ ମାନୁସ୍କ୍ରିପ୍ଟ ଲାଇବ୍ରେରି।

କେମ୍ବ୍ରିଜ, ଇଂଲଣ୍ଡ: କେମ୍ବ୍ରିଜ ୟୁନିଭର୍ସିଟି ଲାଇବ୍ରେରି ଓ ଟ୍ରିନିଟି, ସେଣ୍ଟ ଜନ୍ସ୍, ଗନ୍‌ଭିଲ୍ ଆଣ୍ଡ କେଅସ୍ କଲେଜମାନଙ୍କର ଲାଇବ୍ରେରି। ସାଇଣ୍ଟିଫିକ୍ ପିରିଅଡିକାଲ୍ସ୍ ଲାଇବ୍ରେରି। କେମ୍ବ୍ରିଜସାୟାର କଲେକ୍ସନ୍। କେମ୍ବ୍ରିଜ ଫୋକ୍ ମିଉଜିଅମ୍।

